ବନ୍ଧୁପ୍ରତୀମ ଭାରତବର୍ଷ ଓ ତା'ର ଐତିହାସିକ ଅତୀତ ଏବଂ ସାଂପ୍ରତିକ ସମସ୍ୟାବଳୀ ସଂପର୍କରେ ସୋଭିଏତ୍ ଜନସାଧାରଣଙ୍କ ଆଗ୍ରହ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି । ବିଶ୍ୱ ଐତିହାସିକ ପ୍ରକ୍ରିୟାରେ ଏହି ମହାନ୍ ଦେଶର ଅତୀତ ଏବଂ ବର୍ତ୍ତମାନର ଭୂମିକା ସାଙ୍ଗକୁ ସୋଭିଏତ୍ ୟୁନିଅନ୍ ଏବଂ ଭାରତ ମଧ୍ୟରେ ପ୍ରତିଷ୍ଠିତ ସୁଦୃଢ଼ ରାଜନୈତିକ, ଅର୍ଥନୈତିକ ଏବଂ ସାଂସ୍କୃତିକ ସଂପର୍କରାଜି ହେଉଛି ସେମାନଙ୍କ ଆଗ୍ରହର ବିଷୟ ।

୧୯୫୯ରୁ ୧୯୬୯ ମଧ୍ୟରେ ସୋଭିଏତ୍ ଇତିହାସବିଦ୍ – ଭାରତ ବିଶାରଦମାନଙ୍କ ଦ୍ୱାରା ରଚିତ ଚାରି ଖଣ୍ଡ ବିଶିଷ୍ଟ "ଭାରତ ଇତିହାସ" ସୋଭିଏତ୍ ୟୁନିଅନ୍‌ରେ ପ୍ରକାଶ ପାଇଥିଲା । ଏହି ପୁସ୍ତକଟି ବିଶେଷ ଭାବେ ଆଦର ଲାଭ କରିଥିଲା ଭାରତରେ । ଏହା ପରେ "ଭାରତ ଇତିହାସ"ର ଏକ ସଂକ୍ଷିପ୍ତ ରୂପରେଖ ମଧ୍ୟ ପ୍ରକାଶ ପାଇଥିଲା । ଏଥିରେ ସନ୍ନିବିଷ୍ଟ ଥିଲା ବିଭିନ୍ନ ସୋଭିଏତ୍ ତଥା ବିଦେଶୀ ଗବେଷଣା ଲବ୍ଧ ତଥ୍ୟସମୂହ ।

ବର୍ତ୍ତମାନ ପୁସ୍ତକଟି ହେଉଛି ଏହି ସଂକ୍ଷିପ୍ତ ଭାଷ୍ୟର ପରିମାର୍ଜିତ ଏବଂ ପରିବର୍ଦ୍ଧିତ ରୂପ । ଏହା ବିଶେଷ କରି ବିଦେଶୀ ପାଠକମାନଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଛି ।

ପୁସ୍ତକଟିର ରଚୟିତାବୃନ୍ଦ ହେଲେ ଭାରତର ପ୍ରାଚୀନ ତଥା ଆଧୁନିକ ଇତିହାସ ଉପରେ ସଫଳତାର ସହିତ କର୍ମରତ ପ୍ରଖ୍ୟାତ ସୋଭିଏତ୍ ଇତିହାସବିତ୍ – ଭାରତ ବିଶାରଦ ।



ପ୍ରଗତି ପ୍ରକାଶନ

# ଭାରତ ଇତିହାସ

କୋକା ଆନ୍ତୋନଭା
ଗ୍ରିଗୋରି ବୋନ୍‌ଗାର୍ଦ-ଲେଭିନ୍
ଗ୍ରିଗୋରି କୋଟୋଭସ୍କି

## ଦୁଇ ଖଣ୍ଡ ବିଶିଷ୍ଟ

## ୧ମ ଖଣ୍ଡ

,



ମସ୍କୋ
ପ୍ରଗତି ପ୍ରକାଶନ

ଅନୁବାଦ – ବୈଷ୍ଣବ ଚରଣ ପରିଡ଼ା

ମୁଖ୍ୟ ପରିବେଶକ :
ନବଯୁଗ ଗ୍ରନ୍ଥାଳୟ,
ବକ୍ସିବଜାର ରୋଡ,
କଟକ-୧

К. А. Антонова, Г. М. Бонгард-Левин,
Г. Г. Котовский

ИСТОРИЯ ИНДИИ

В 2-х книгах

Книга первая

*на языке ория*

K. Antonova, G. Bongard-Levin, G. Kotovsky

A HISTORY OF INDIA

In Two Books

Book I

*in Oriya*



ସୋଭିଏତ୍ ୟୁନିଅନ୍‌ରେ ମୁଦ୍ରିତ

A $\frac{0506000000-127}{014(01)-85}$ 325—84

# ସୂଚୀପତ୍ର

## ପ୍ରାଚୀନ ଭାରତ (ଗ୍ରିଗୋରି ବୋନ୍‌ଗାର୍ଡ-ଲେଭିନ୍)

### ସଭ୍ୟତାର ଅୟମାରମ୍ଭ



### ମଗଧ ଓ ମୌର୍ଯ୍ୟ ଯୁଗରେ ଭାରତ



### କୁଷାଣ ଓ ଗୁପ୍ତ ଯୁଗରେ ଭାରତ

## ମଧ୍ୟଯୁଗୀୟ ଭାରତ (କୋକା ଆଲୋଚନା)

### ଷଷ୍ଠ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତ



### ଦିଲ୍ଲୀରେ ସୁଲତାନ୍ ରାଜତ୍ୱ ଅମଳର ଭାରତ

### (ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାରମ୍ଭ କାଳ)



### ମୋଗଲ ସାମ୍ରାଜ୍ୟ କାଳରେ ଭାରତ (ଷୋଡ଼ଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ)

# ସଭ୍ୟତାର ଅଭ୍ୟୁଦୟ

# ପ୍ରସ୍ତରଯୁଗରେ ଭାରତ

## ପ୍ରତ୍ନପ୍ରସ୍ତରଯୁଗୀୟ ଖନନକ୍ଷେତ୍ର

ବିଶ୍ୱର ସର୍ବାଧିକ ପ୍ରାଚୀନ ସଭ୍ୟତାଗୁଡ଼ିକ ମଧ୍ୟରୁ ଗୋଟିକର ଉନ୍ମେଷ ଭାରତରେ ଘଟିଥିଲା । ଏଠାରେ ଏଭଳି ଏକ ଅତି ଉନ୍ନତ ସଂସ୍କୃତି ଗଢ଼ି ଉଠିଥିଲା, ଯାହାକି ଏହି ଦେଶର ପରବର୍ତ୍ତୀ ବିକାଶକୁ ତଥା ପ୍ରାଚ୍ୟ, ମଧ୍ୟ ଏବଂ ଦକ୍ଷିଣ-ପୂର୍ବ ଏସିଆ ତଥା ଦୂର ପ୍ରାଚ୍ୟର ବହୁ ଜାତିଙ୍କର ସଂସ୍କୃତିକୁ ବିପୁଳ ଭାବେ ପ୍ରଭାବିତ କରିଥିଲା । ପ୍ରତ୍ନତାତ୍ତ୍ୱିକ ଆବିଷ୍କାରଗୁଡ଼ିକରୁ ଜଣାଯାଏ ଯେ, ମାନବ ସମାଜର ଅତି ଆଦିମ କାଳରୁ ଭାରତରେ ଲୋକେ ବାସ କରୁଥିଲେ ।

ଏ ଦେଶର ବହୁ ଅଞ୍ଚଳରୁ ନିମ୍ନତର ପ୍ରତ୍ନପ୍ରସ୍ତରଯୁଗର ପ୍ରସ୍ତର ହତିଆର ଆଦି ମିଳିଛି । ନିମ୍ନତର ପ୍ରସ୍ତରଯୁଗୀୟ ସଂସ୍କୃତିର ଦୁଇଟି କେନ୍ଦ୍ର ପରସ୍ପରଠାରୁ ସ୍ୱତନ୍ତ୍ର ଭାବେ ଏକଦା ବିକାଶ ଲାଭ କରିଥିଲା : ଉତ୍ତରରେ ସୋନ୍ ସଂସ୍କୃତି (ବର୍ତ୍ତମାନ ପାକିସ୍ତାନର ସୋନ୍ ନଦୀ ତୀରବର୍ତ୍ତୀ) ଏବଂ ଦାକ୍ଷିଣାତ୍ୟରେ ତଥାକଥିତ ମାନ୍ଦ୍ରାଜୀ ସଂସ୍କୃତି । ଏହି ଦୁଇଟି ସ୍ଥାନ ପ୍ରତ୍ନପ୍ରସ୍ତରଯୁଗୀୟ ମଣିଷର ବସବାସ ପକ୍ଷରେ ଅଧିକ ଅନୁକୂଳ ନଦୀ ଉପତ୍ୟକାରେ ଅବସ୍ଥିତ ଥିଲା । ଏ ଦୁଇଟି ମଧ୍ୟରୁ ୧୮୬୩ ମସିହାରେ ମାନ୍ଦ୍ରାଜ ଅଞ୍ଚଳରେ ଅବସ୍ଥିତ କେନ୍ଦ୍ରଟି ପ୍ରଥମେ ଆବିଷ୍କୃତ ହୋଇଥିଲା । ତେଣୁ କରି ଦକ୍ଷିଣ ଭାରତରେ ନିମ୍ନତର ପ୍ରସ୍ତରଯୁଗର ବୈଶିଷ୍ଟ୍ୟସୂଚକ କୁରାଢ଼ି ଆଦି ଯେଉଁସବୁ ହତିଆର ମିଳିଛି, ସେସବୁ ମାନ୍ଦ୍ରାଜୀ କୁରାଢ଼ି ନାମରେ ପରିଚିତ ହୋଇ ଆସିଛି । ଦେଶର ଉତ୍ତରାଞ୍ଚଳରେ ନିମ୍ନତର ପ୍ରତ୍ନପ୍ରସ୍ତରଯୁଗୀୟ ଖନନକ୍ଷେତ୍ରଗୁଡ଼ିକରେ ଯେଉଁସବୁ ହତିଆର ମିଳିଛି, ସେଗୁଡ଼ିକ କିନ୍ତୁ ସଂପୂର୍ଣ୍ଣ ଭିନ୍ନ ଧରଣର, ଯଥା, ବଡ଼ ବଡ଼ ପଥର ଖଣ୍ଡ କାଟିବାର ହତିଆର । ଏହି ହତିଆରକୁ ପଥରକଟା ହତିଆର ବୋଲି କୁହାଯାଇଛି । ଭାରତର ଅନ୍ୟାନ୍ୟ ଅଞ୍ଚଳରେ, ଯଥା, ମଧ୍ୟ ଏବଂ ପଶ୍ଚିମ ଭାରତରେ ବି ପ୍ରତ୍ନପ୍ରସ୍ତରଯୁଗର ହତିଆରସବୁ ମିଳିଛି । ସେସବୁକୁ ଦେଖିଲେ, ମନେ ହୁଏ, ସେଠାରେ ସୋନ୍ ଏବଂ ମାନ୍ଦ୍ରାଜର ସାଂସ୍କୃତିକ ଐତିହ୍ୟ ଯେମିତି ପରସ୍ପର ସହିତ ଖାପ ଖାଇ ମିଳିମିଶି ଯାଇଛି । ନୂତନ ଗବେଷଣା ଦ୍ୱାରା ଦେଖାଯାଏ ଯେ, ଦେଶର ଦକ୍ଷିଣାଞ୍ଚଳରେ ମାନ୍ଦ୍ରାଜୀ କୁରାଢ଼ିର ପ୍ରାଧାନ୍ୟ ରହିଥିଲା ବେଳେ ଉତ୍ତର ଆଡ଼କୁ ଆମେ ଯେତେ ଆଗେଇବା, ସେତେ ସୋନ୍ ଅଞ୍ଚଳୀୟ ହତିଆରର ସଂଖ୍ୟା ବୃଦ୍ଧି ପାଇବାରେ ଲାଗୁଛି ।

ଏହିସବୁ ହତିଆରର ଆକାର ପ୍ରକାରରେ ପାର୍ଥକ୍ୟ ଦେଖା ଦେବାର, ଅବଶ୍ୟ, ସବୁଠାରୁ ବଡ଼ କାରଣ ହେଉଛି, ଏଇ ଦୁଇ ଅଞ୍ଚଳର ପ୍ରାକୃତିକ ପରିବେଶ ମଧ୍ୟରେ ପାର୍ଥକ୍ୟ ଏବଂ ହତିଆର ତିଆରି ଉପଯୋଗୀ ପଥର ମିଳିବାର ସମ୍ଭାବନା । ଏହି ଧରଣର ସର୍ବାଧିକ ଖନନକ୍ଷେତ୍ର ଦାକ୍ଷିଣାତ୍ୟର ନଦୀ

ଉପତ୍ୟକାର ଗୁହାମାନଙ୍କରେ ଏବଂ ଉତ୍ତର ଭାରତର ପର୍ବତମାଳାର ପାଦଦେଶରେ ଆବିଷ୍କୃତ ହୋଇଛି । ଏହିସବୁ ଆବିଷ୍କାର, ଅବଶ୍ୟ, ଆକସ୍ମିକ ଘଟଣା ନୁହେଁ, କାରଣ ଉପରୋକ୍ତ ଅଞ୍ଚଳଗୁଡ଼ିକର ଜଳବାୟୁ ଯେମିତି ଅନୁକୂଳ, ସେଇଭଳି ଶିକାରଯୋଗ୍ୟ ପଶୁ ମଧ୍ୟ ପ୍ରଚୁର । ସେ ଯୁଗର ମଣିଷର ପ୍ରଧାନ ଜୀବିକା ଥିଲା ପଶୁଶିକାର ଏବଂ ଆହାରଯୋଗ୍ୟ ଫଳମୂଳ ସଂଗ୍ରହ । ଲୋକେ ସେତେବେଳେ ବଡ଼ ବଡ଼ ଦଳ ହୋଇ ବାସ କରୁଥିଲେ । ତତ୍‌କାଳୀନ ଅତ୍ୟନ୍ତ କଠିନ ପରିବେଶରେ ଜୀବନଧାରଣ ପାଇଁ ଏହା ଥିଲା ଅପରିହାର୍ଯ୍ୟ ।

ମାନବ ସମାଜର କ୍ରମବିକାଶ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ହେଲା ଉଚ୍ଚତର ପ୍ରତ୍ନପ୍ରସ୍ତରଯୁଗକୁ ଉତ୍ତରଣ । ଆଜି ଆମେ ଯେଉଁମାନଙ୍କୁ "ହୋମୋ ସ୍ୟାପିଏନସ୍‌" ବା ନରଗୋଷ୍ଠୀ ବୋଲି ଜାଣେ, ସେମାନଙ୍କର ଉଦ୍‌ଭବ ଘଟିଥିଲା ଏହି ଯୁଗରେ ।

ସାଂପ୍ରତିକ କାଳରେ ଭାରତର ପ୍ରତ୍ନତତ୍ତ୍ୱବିଦ୍‌ମାନେ ଏହି ଉଚ୍ଚତର ପ୍ରତ୍ନପ୍ରସ୍ତର ଯୁଗର ଅନେକ ନିଦର୍ଶନକ୍ଷେତ୍ର ଖୋଳି ବାହାର କରିଛନ୍ତି । ସେସବୁରୁ ଦେଖାଯାଏ ଯେ, ଏହି ଯୁଗରେ ଗୋଷ୍ଠୀବଦ୍ଧ ସଂପ୍ରଦାୟର ଉଦ୍‌ଭବ ଫଳରେ ମାନବସମାଜରେ ବଡ଼ ବଡ଼ ପରିବର୍ତ୍ତନମାନ ଘଟିଥିଲା ।

ନୃତତ୍ତ୍ୱବିଦ୍‌ମାନେ ମନେ କରନ୍ତି ଯେ, ଉଚ୍ଚତର ପ୍ରତ୍ନପ୍ରସ୍ତରଯୁଗରେ ନିଗ୍ରୋ ଗୋତ୍ରୀୟ ଜନଗୋଷ୍ଠୀର ପ୍ରାଧାନ୍ୟ ଥିଲା । ପରେ ମଧ୍ୟପ୍ରସ୍ତରଯୁଗରେ ଭାରତର ପଶ୍ଚିମରେ ଆବିର୍ଭୂତ ହେଲେ ୟୁରୋପୀୟ ଏବଂ ପୂର୍ବରେ ମଙ୍ଗୋଲୀୟ ଗୋତ୍ରର ନରଗୋଷ୍ଠୀ । ଏହି ମଧ୍ୟପ୍ରସ୍ତରଯୁଗରେ ପଶୁପାଳନ ଆରମ୍ଭ ହୋଇଥିଲା ଏବଂ ଏହି ଯୁଗର ଅବସାନ ଘଟିଥିଲା ମୃତ୍‌ଶିଳ୍ପର ଆବିର୍ଭାବ ଏବଂ କ୍ରମଶଃ କୃଷିକାର୍ଯ୍ୟକୁ ଉତ୍ତରଣ ମଧ୍ୟ ଦେଇ ।

## ମଧ୍ୟପ୍ରସ୍ତରଯୁଗ ଓ ନବପ୍ରସ୍ତରଯୁଗ

ଭାରତରେ ମଧ୍ୟପ୍ରସ୍ତରଯୁଗର ସବୁଠାରୁ ସୁପରିଚିତ ନିଦର୍ଶନକ୍ଷେତ୍ରଟି ହେଉଛି ଗୁଜରାଟର ଲାଂଘ୍‌ନାଜ ବସତିଟି । ଏହି ବସତିର ମାଟିତଳୁ ଉଦ୍ଧାର କରାଯାଇଥିବା ବିଭିନ୍ନ ଜିନିଷକୁ ଦେଖିଲେ ଜାଣି ହୁଏ, ମଧ୍ୟପ୍ରସ୍ତରଯୁଗ ଏବଂ ନବପ୍ରସ୍ତରଯୁଗର ପ୍ରାଥମିକ ପର୍ଯ୍ୟାୟର ଆଦି ଯୁଗରେ ଲୋକେ କିପରି ଜୀବନଯାପନ କରୁଥିଲେ । ଏଠାକାର ଖନନକାର୍ଯ୍ୟ ଦ୍ୱାରା ଦେଖାଯାଇଛି ଯେ, ଏହି ଯୁଗରେ ମଣିଷ ଯେଉଁସବୁ ହତିଆର ବ୍ୟବହାର କରୁଥିଲା, ସେସବୁ ମଧ୍ୟରେ ପ୍ରଧାନ ଥିଲା ପଥରରେ ତିଆରି ଅସ୍ତ୍ର ଫଳକ ଏବଂ ତୀରର ଅଗ ହିସାବରେ ବ୍ୟବହୃତ ହେଉଥିଲା ଜ୍ୟାମିତିକ ଆକାରର ଛୋଟ ଛୋଟ ପଥର ଟୁକୁରା ।

ପ୍ରତ୍ନତତ୍ତ୍ୱବିଦ୍‌ମାନେ ଲାଂଘ୍‌ନାଜର ଇତିହାସରେ ଦୁଇଟି ସ୍ୱତନ୍ତ୍ର ପର୍ବକୁ ବିଶେଷ ଭାବେ ଚିହ୍ନିତ କରିଛନ୍ତି । ପ୍ରଥମ ପର୍ବଟିର ଶେଷ ଆଡ଼କୁ ହାତତିଆରି ମାଟିପାତ୍ରର ଉଦ୍‌ଭବ ଘଟିଥିଲା ଏବଂ ଦ୍ୱିତୀୟ ପର୍ବଟିରେ (ନବପ୍ରସ୍ତରଯୁଗର ପ୍ରାରମ୍ଭରେ) ଦେଖା ଦେଲା କୁମ୍ଭାର ଚକରେ ତିଆରି ନକସାକରା ମାଟିପାତ୍ର । ଉପରୋକ୍ତ ପ୍ରଥମ ପର୍ବରେ ସ୍ଥାନୀୟ ଅଧିବାସୀମାନଙ୍କର ପ୍ରଧାନ ଜୀବିକା ଥିଲା ପଶୁଶିକାର ଏବଂ ମାଛଧରା । ଦ୍ୱିତୀୟ ପର୍ଯ୍ୟାୟରେ ଗୃହବାସ କ୍ରମଶଃ ବିକାଶ ଲାଭ କରିଥିଲା ।

ଘଂଘ୍‌ନାଳ ଅଞ୍ଚଳରୁ ଯେଉଁସବୁ ଜିନିଷ ମିଳିଛି, ସେସବୁ ମଧ୍ୟରେ ଅଛି ହରିଣ, କୃଷ୍ଣସାର, ଗଣ୍ଡା, ବଣୁଆ ଘୁଷୁରି ଏବଂ ଷଣ୍ଢର ହାଡ଼ ।

ଭାରତର ଅନ୍ୟ ଅଞ୍ଚଳରେ ମଧ୍ୟ, ଯଥା ଦାକ୍ଷିଣାତ୍ୟ (ତିନେଭେଲି ନିକଟରେ) ଏବଂ ପୂର୍ବ ଭାରତରେ (ପଶ୍ଚିମ ବଂଗର ବୀରଭାନପୁର) ମଧ୍ୟପ୍ରସ୍ତରଯୁଗର ବସତିର ନିଦର୍ଶନ ମିଳିଛି । ଏହିସବୁ ସ୍ଥାନରେ ମିଳିଛି ବିଭିନ୍ନ ଆକାରର ପଥର ହତିଆରର ଟୁକୁରା । ପଥର ଟୁକୁରାରେ ଶାଣ ଦେଇ ଅସ୍ତ୍ର ତିଆରି କରିବାର ଏହି କାରୁକୌଶଳଟି ମଧ୍ୟ ପ୍ରଚଳିତ ଥିଲା ପୂର୍ବବର୍ତ୍ତୀ ପର୍ବରେ, ମଣିଷ ଯେତେବେଳେ ଧାତୁରେ ହତିଆର ତିଆରି କରିବାକୁ ଆରମ୍ଭ କଲା ।

ଏପରିକି ସେଇ ସୁଦୂର ମଧ୍ୟପ୍ରସ୍ତରଯୁଗରୁ ବି ଭାରତର ବିଭିନ୍ନ ଅଞ୍ଚଳରେ ଅସମାନ ଗତିରେ ସଭ୍ୟତାର ବିକାଶ ଘଟି ଆସିଥିଲା । ଖ୍ରୀଷ୍ଟ ପୂର୍ବ ଚତୁର୍ଥ ସହସ୍ରାବ୍ଦର ପ୍ରାରମ୍ଭରେ ଦକ୍ଷିଣ ଭାରତରେ ମଧ୍ୟପ୍ରସ୍ତରଯୁଗୀୟ ବସତିଗୁଡ଼ିକର ଅଧିବାସୀମାନେ ପଶୁଶିକାର ଏବଂ ମାଛ ଧରିବାରେ ନିଯୋଜିତ ଥିଲା ବେଳେ ଉତ୍ତରସ୍ଥ ସିନ୍ଧୁ ଦେଶରେ ସ୍ଥାୟୀ କୃଷିଭିତ୍ତିକ ଗୋଷ୍ଠୀଗୁଡ଼ିକର ସଂଖ୍ୟା ଦ୍ରୁତ ଗତିରେ ବଢ଼ି ଚାଲିଥିଲା । ଏହାର ପରବର୍ତ୍ତୀ ନବପ୍ରସ୍ତରଯୁଗ ଏବଂ ତାମ୍ରପ୍ରସ୍ତରଯୁଗଗୁଡ଼ିକରେ ମଧ୍ୟ ଏହି ଏକା ରକମର ଅସମାନ ବିକାଶ ଲକ୍ଷ୍ୟ କରାଯାଏ ।

ନବପ୍ରସ୍ତରଯୁଗରେ କୃଷିକର୍ମ ଏବଂ ପଶୁପାଳନ ବିକାଶ ଲାଭକଲା ଏବଂ ମଣିଷ କ୍ରମଶଃ ଯାଯାବର ଜୀବନ ପରିତ୍ୟାଗ କରି ଅପେକ୍ଷାକୃତ ସ୍ଥାୟୀ ବସବାସ ଗଢ଼ିବାକୁ ଅନୁପ୍ରାଣିତ ହେଲା । ଏହି ଧରଣର ସର୍ବାପେକ୍ଷା ଉନ୍ନତ ନବପ୍ରସ୍ତରଯୁଗୀୟ ସଂସ୍କୃତିର ପରିଚୟ ମିଳେ ବେଲୁଚିସ୍ତାନ ଏବଂ ସିନ୍ଧୁ ପ୍ରଦେଶରେ । ମନେ ହୁଏ, ଏସବୁ ସିନ୍ଧୁ ଉପତ୍ୟକାର ଆସନ୍ନ ନଗର ସଭ୍ୟତାର ଉନ୍ମେଷ ଆଡ଼କୁ ଆଗେଇ ଯାଉଥିଲା ।

କିଲି-ଗୁଲ୍-ମହମ୍ମଦରେ (ବର୍ତ୍ତମାନ ପାକିସ୍ତାନ ଅନ୍ତର୍ଗତ କ୍ୱେଟା ଉପତ୍ୟକାରେ) ଖନନ କାର୍ଯ୍ୟର ଫଳାଫଳ ଅନୁସାରେ, ଖ୍ରୀଷ୍ଟ ପୂର୍ବ ଚତୁର୍ଥ ସହସ୍ରାବ୍ଦର ପ୍ରାରମ୍ଭରେ ଉତ୍ତର ବେଲୁଚିସ୍ତାନରେ ପଶୁପାଳନ ଏବଂ ଶସ୍ୟ ଚାଷ କାର୍ଯ୍ୟରେ ନିଯୋଜିତ ନବପ୍ରସ୍ତରଯୁଗୀୟ ଉପଜାତିମାନେ ବାସ କରୁଥିଲେ । ଏହିସବୁ ଉପଜାତିର ଲୋକେ ଇଟାକୁ ଖରାରେ ଶୁଖାଇ ଘର ତିଆରି କରୁଥିଲେ ଏବଂ ଜୀବଜନ୍ତୁଙ୍କୁ (ମେଣ୍ଢା ଆଉ ଛେଳି) ମଧ୍ୟ ପୋଷ ମନେଇଥିଲେ । ସେ ପର୍ଯ୍ୟନ୍ତ ଧାତୁର ବ୍ୟବହାର ସେମାନେ ଜାଣି ନଥିଲେ । ସେମାନଙ୍କ ହତିଆରସବୁ ଥିଲା, ମୁଖ୍ୟତଃ, ପଥରରେ ତିଆରି, ସେଥିରେ ସେମାନେ ଦାମିକିଆ ଜ୍ୟାସ୍‌ପାର ଆଉ କ୍ୟାଲିସାଡାନି ମଣିର ଟୁକୁରା ଏବଂ ଝକ୍‌ମକି ପଥର ଜୋଡ଼ି ଦେଉଥିଲେ । ପରବର୍ତ୍ତୀ ଯୁଗରେ ମାଟିପାତ୍ରର ଉଦ୍‌ଭବ ଘଟିଥିଲା ଏଠାରେ ଏବଂ ପରିଶେଷରେ ଧାତୁ ବ୍ୟବହାରର ଲକ୍ଷଣ ମଧ୍ୟ ଦେଖିବାକୁ ମିଳେ । ଏଠାକାର ଖନନ କାର୍ଯ୍ୟ ବେଳେ ସ୍ଥାନୀୟ ଗୃହପାଳିତ ପଶୁମାନଙ୍କର ଯେଉଁସବୁ ହାଡ଼ ମିଳିଥିଲା, ସେଥିରୁ ଏଭଳି ଏକ ମତ ସପକ୍ଷରେ ଯୁକ୍ତି ମିଳେ ଯେ, ସେଠାରେ ଯେଉଁ ସଂସ୍କୃତି ସେତେବେଳେ ଗଢ଼ି ଉଠିଥିଲା, ତା'ର ଉତ୍ପତ୍ତି ଘଟିଥିଲା ସେଇଠାରୁ । ଏପର୍ଯ୍ୟନ୍ତ ଏହିଭଳି ଏକା ଧରଣର ସଂସ୍କୃତିର କେନ୍ଦ୍ର ଆବିଷ୍କୃତ ହୋଇଛି ପୂର୍ବ ବେଲୁଚିସ୍ତାନର ରାଣା ଘୁଣ୍ଡାଇରେ । ଇରାନ୍‌ର ନବପ୍ରସ୍ତରଯୁଗୀୟ ସଂସ୍କୃତି ସହିତ ଏହି ଶେଷୋକ୍ତ ସଂସ୍କୃତିର ସୁନିର୍ଦ୍ଦିଷ୍ଟ ନାନା ସାଦୃଶ୍ୟ ଦେଖିବାକୁ ମିଳେ ।

କିଲି-ଗୁଲ୍-ମହମ୍ମଦର ଅଦୂରରେ ଥିବା ଡାମ ସାଦାତରେ ଖନନ କାର୍ଯ୍ୟ ଚଳାଇବା ଫଳରେ

ନବପ୍ରସ୍ତରଯୁଗ ଏବଂ ତାମ୍ରପ୍ରସ୍ତରଯୁଗର ପ୍ରଥମ କାଳର ସୁନିର୍ଦ୍ଦିଷ୍ଟ ସ୍ତରବିଭକ୍ତିର ବିବରଣ ଆବିଷ୍କୃତ ହୋଇଛି । ତେଜସ୍କ୍ରିୟ କାର୍ବନ୍ ଆଇସୋଟୋପ ପଦ୍ଧତି ପ୍ରୟୋଗ କରି ପ୍ରତ୍ନତତ୍ତ୍ୱବିଦ୍‌ମାନେ ପ୍ରମାଣ କରିବାକୁ ସକ୍ଷମ ହୋଇଛନ୍ତି ଯେ, ଏଠାକାର ସର୍ବାପେକ୍ଷା ପ୍ରାଚୀନ ସ୍ତରଟି ଖ୍ରୀଷ୍ଟ ପୂର୍ବ ସତେଇଶ, କିମ୍ବା ଛବିଶ ଶତାବ୍ଦୀରେ ସୃଷ୍ଟି ହୋଇଥିଲା । ଏହାର ପରବର୍ତ୍ତୀ ଯୁଗରେ (ଖ୍ରୀଷ୍ଟ ପୂର୍ବ ଛବିଶରୁ ତେଇଶ ଶତାବ୍ଦୀର ମଧ୍ୟବର୍ତ୍ତୀ) ସ୍ତରଟିକୁ ଏହି ସ୍ତରରେ ମିଳିଥିବା ପୋଡ଼ାମାଟିର ଛୋଟ ଛୋଟ ମୂର୍ତ୍ତି, ବାଣ୍ଟିସ୍‌ଦିଆ ମାଟିପାତ୍ର ଏବଂ ଚମ୍ପାରେ ତିଆରି ବିଭିନ୍ନ ଜିନିଷ ଦ୍ୱାରା ଚିହ୍ନିତ କରିବା ସମ୍ଭବ ହୋଇଛି ।

ଇତିମଧ୍ୟରେ ଭାରତର ଉତ୍ତରାଞ୍ଚଳରେ କାଶ୍ମୀରର ଶ୍ରୀନଗର ନିକଟରେ ଆବିଷ୍କୃତ ହୋଇଥିବା ବୁର୍ଜୋହୋମ୍ ବସତିରେ ଅପେକ୍ଷାକୃତ ଆଦିମ ଧରଣର କେତେକ ନବପ୍ରସ୍ତରଯୁଗୀୟ ସଂସ୍କୃତିର ନିଦର୍ଶନ ମିଳିଛି । ଏଠାରେ କାଦୁଅଚକଟା ମାଟିରେ ଗାତ କରି ତିଆରି କରାଯାଇଥିବା ପ୍ରାଚୀନ ବାସସ୍ଥାନର ନିଦର୍ଶନ ଆବିଷ୍କୃତ ହୋଇଛି । ଏହିସବୁ ଗାତର ମୁହଁରେ ତିଆରି ହୋଇଥିବା କେତେକ ଚୁଲୀ ମଧ୍ୟ ଦେଖିବାକୁ ମିଳିଛି ଏବଂ ହାତତିଆରି ଏବଂ ଅମସୃଣ ମାଟିପାତ୍ର ମଧ୍ୟ ମିଳିଛି । ଏହା ଛଡ଼ା ସେଠାରେ ମିଳିଛି ପ୍ରଚୁର ସଂଖ୍ୟକ ହାଡ଼ରେ ତିଆରି ମାଛ ମାରିବାର ଛୋଟ ଛୋଟ ବର୍ଚ୍ଛା, ଫୋଡ଼ଣୀ ଏବଂ ଡାମଣ ଆଦି । ଏଥିରୁ ବୁଝାଯାଏ, ଏଠାକାର ଅଧିବାସୀମାନଙ୍କର ପ୍ରଧାନ ଜୀବିକା ଥିଲା ମାଛ ଧରିବା । ଏଠାରେ ଜମି ଚାଷ କରିବା ଆରମ୍ଭ ହୋଇଥିଲା ଆଉରି କେଇ ଶତାବ୍ଦୀ ପରେ, ଖ୍ରୀଷ୍ଟ ପୂର୍ବ ଊନବିଂଶ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ମଧ୍ୟରେ । ଏହି ପରବର୍ତ୍ତୀ କାଳରେ ମଧ୍ୟ ସେଠି ମାଟି, କିମ୍ବା ଖରାପୋଡ଼ା ଇଟା ତିଆରି ଘର ଏଠି ସେଠି ତିଆରି ହେଉଥିଲା ବୋଲି ଦେଖିବାକୁ ମିଳିଛି ।

ଭାରତର ଦକ୍ଷିଣାଂଶରେ ସବୁଠାରୁ ସୁପରିଚିତ ନବପ୍ରସ୍ତରଯୁଗୀୟ ବସତିର ନିଦର୍ଶନ ଆବିଷ୍କୃତ ହୋଇଛି ସାଙ୍ଗାନାକାଲ୍ଲୁ (ବେଲ୍ଲାରି ଜିଲ୍ଲା) ଓ ପିକ୍‌ଲିହାଲରେ ଖନନ କାର୍ଯ୍ୟ ଦ୍ୱାରା । ଏହିସବୁ ବସତିରୁ ମିଳିଥିବା ପଥର ତିଆରି ମସୃଣ ହତିଆର ଏବଂ ହାତତିଆରି ମାଟିପାତ୍ରଗୁଡ଼ିକ ହେଉଛି ନବପ୍ରସ୍ତରଯୁଗର ପ୍ରାରମ୍ଭ କାଳର ଏବଂ ଏସବୁ ଆନୁମାନିକ ଖ୍ରୀଷ୍ଟ ପୂର୍ବ ଏକବିଂଶ ଶତାବ୍ଦୀର ବୋଲି ଧାର୍ଯ୍ୟ କରାଯାଇଛି । ଏହି ସମୟରେ ଏଠାରେ ମେଣ୍ଢା ଏବଂ ଛେଳି ଗୃହପାଳିତ ପଶୁରେ ପରିଣତ ହୋଇଥିଲେ ଏବଂ ପ୍ରଧାନତଃ ଛୋଟ ଛୋଟ ପାହାଡ଼ ଉପରେ, କିମ୍ବା ପାହାଡ଼ ମଧ୍ୟସ୍ଥ ସରୁସରୁ ଗୋହିରୀ ମଧ୍ୟରେ ବସତି ଘରସବୁ ତିଆରି ହୋଇଥିଲା ।

ପିକ୍‌ଲିହାଲ ବସତିରେ ରହୁଥିବା ଲୋକଙ୍କର ଜୀବିକା ଥିଲା ପଶୁପାଳନ ଏବଂ ଜମି ଚାଷ କରିବା । ଏଠାରେ ଗୃହପାଳିତ ପଶୁମାନଙ୍କୁ ରଖିବା ପାଇଁ ବିଶେଷ ଭାବେ ତିଆରି ଖୁଆଡ଼ସବୁ ଏବଂ ମାଟି ଆଉ ବାଉଁଶରେ ତିଆରି ବାସଗୃହ ମିଳିଛି । କେତେକ ବିଶେଷଜ୍ଞଙ୍କ ମତରେ, ଏହିସବୁ ବାସଗୃହ ସ୍ଥାପନ କରିଥିଲେ ସେଇସବୁ ଇରାନୀୟ ଉପଜାତି, ଯେଉଁମାନେ ଭାରତ ମଧ୍ୟକୁ ଏତେ ଦୂର ପର୍ଯ୍ୟନ୍ତ ପଶି ଆସିଥିଲେ । ତେବେ ଏଠାରେ ମିଳିଥିବା ଅନ୍ୟାନ୍ୟ ପ୍ରମାଣାଦି ଏହି ମତର ବିରୁଦ୍ଧରେ ଯାଏ । ସେସବୁ ବରଂ ସ୍ଥାନୀୟ ପରମ୍ପରା ସହିତ ଏହାର ଯୋଗସୂତ୍ର ଥିବାର ଇଙ୍ଗିତ ପ୍ରଦାନ କରେ ।

ପୂର୍ବ ଭାରତର ନବପ୍ରସ୍ତରଯୁଗର ସଂସ୍କୃତିଗୁଡ଼ିକ ମଧ୍ୟରେ ଦୁଇଟି ସୁନିର୍ଦ୍ଦିଷ୍ଟ ଆଞ୍ଚଳିକ ସଂସ୍କୃତି

ଦେଖିବାକୁ ମିଳେ ; ଗୋଟିଏ ବିହାର-ଓଡ଼ିଶାର ଏବଂ ଅନ୍ୟଟି ଆସାମର । ଶେଷୋକ୍ତଟିରେ ଦକ୍ଷିଣ-ପୂର୍ବ ଏସିଆର ନବପ୍ରସ୍ତରଯୁଗୀୟ ସଂସ୍କୃତିଗୁଡ଼ିକର ପ୍ରଭାବ ପରିଲକ୍ଷିତ ହେଲା ବେଳେ ବିହାର-ଓଡ଼ିଶାର ପ୍ରାଥମିକ ସଂସ୍କୃତିରେ ସ୍ଥାନୀୟ ବୈଶିଷ୍ଟ୍ୟଗୁଡ଼ିକର ପ୍ରାଧାନ୍ୟ ପରିସ୍ଫୁଟ ହୋଇଛି ।

ଉତ୍ତର, ପୂର୍ବ ଏବଂ ଦକ୍ଷିଣ ଭାରତରେ ଏହି ନବପ୍ରସ୍ତରଯୁଗର ଏବଂ ତାମ୍ରପ୍ରସ୍ତରଯୁଗର ପ୍ରାଥମିକ କାଳର ସଂସ୍କୃତିଗୁଡ଼ିକ ବିକଶିତ ହୋଇଥିଲା ବେଳେ ସିନ୍ଧୁ ଉପତ୍ୟକାରେ ବ୍ରୋଞ୍ଜଯୁଗର ଏକ ଉନ୍ନତ ସଭ୍ୟତା ପ୍ରତିଷ୍ଠିତ ହୋଇ ସାରିଥିଲା ।

# ହରପ୍ପା ସଭ୍ୟତା

ଏଭଳି ଏକ ସମୟ ଥିଲା, ଯେତେବେଳେ ପଣ୍ଡିତମାନେ ସାଧାରଣ ଭାବେ ମନେ କରୁଥିଲେ ଯେ, ଭାରତରେ ଅନେକ ପରେ ସଭ୍ୟତାର ଅଭ୍ୟୁଦୟ ଘଟିଥିଲା । ବସ୍ତୁତଃ, କେତେକ ପଣ୍ଡିତ ଏଭଳି ମତ ଦେଇଥିଲେ ଯେ, ଆର୍ଯ୍ୟ ଉପଜାତିଗୁଡ଼ିକ ଭାରତ ମଧ୍ୟକୁ ବାହାରୁ ସଭ୍ୟତାର ଆମଦାନୀ କରିଥିଲେ । ପ୍ରାଚୀନ ଭାରତୀୟ ସଂସ୍କୃତିର ବିଚ୍ଛିନ୍ନ ଚରିତ୍ର କଥା ଏବଂ ପ୍ରାଚୀନ ପ୍ରାଚ୍ୟ ଦୁନିଆର ଅନ୍ୟାନ୍ୟ ଦେଶର ସଂସ୍କୃତି ତୁଳନାରେ ଭାରତୀୟ ସଂସ୍କୃତିର ପଶ୍ଚାଦ୍‌ପଦତା କଥା ସେତେବେଳେ ଅନେକ ସମୟରେ କୁହାଯାଉଥିଲା ।

ତେବେ ହରପ୍ପା ସଭ୍ୟତାର ଆବିଷ୍କାର ଏବଂ ସେ ସଂପର୍କରେ ଅନୁଧ୍ୟାନ ଫଳରେ ଏବେ ଭାରତୀୟ ସଭ୍ୟତାର ପ୍ରାଚୀନତା ଏବଂ ତା'ର ଗଭୀର ମୌଳିକ ପ୍ରକୃତି ସଂପର୍କରେ ଉଲ୍ଲେଖଯୋଗ୍ୟ ପ୍ରମାଣସବୁ ମିଳିଛି । ୧୮୭୫ ମସିହାରେ ଇଂରେଜ ପ୍ରତ୍ନତତ୍ତ୍ୱବିଦ୍ ଆଲେକ୍‌ଜାଣ୍ଡାର କନିଂହାମ୍ ହରପ୍ପାରେ (ବର୍ତ୍ତମାନ ପାକିସ୍ତାନ ଅନ୍ତର୍ଗତ ପଶ୍ଚିମ ପଞ୍ଜାବର ମୁଲତାନ୍ ଜିଲ୍ଲାରେ ଅବସ୍ଥିତ) ଗୋଟିଏ ମୋହର ଆବିଷ୍କାର କରିଥିଲେ । ମୋହରଟି ଉପରେ ଅପରିଚିତ ଲିପି ଖୋଦାଇ ହୋଇଥିଲା । କିନ୍ତୁ ସେଠାରେ ବୈଜ୍ଞାନିକ ପଦ୍ଧତିରେ ଖନନ କାର୍ଯ୍ୟ ଆରମ୍ଭ ହୋଇଥିଲା ମାତ୍ର ଏ ଶତାବ୍ଦୀର ତୃତୀୟ ଦଶକରେ । ଦୁଇଜଣ ଭାରତୀୟ ପ୍ରତ୍ନତତ୍ତ୍ୱବିଦ୍, ଡ଼ି.ଆର୍.ସାହ୍‌ନି ଏବଂ ରାଖାଲଦାସ ବନ୍ଦୋପାଧ୍ୟାୟ ଏହି ଖନନ କାର୍ଯ୍ୟ ପରିଚାଳନା କରି ହରପ୍ପା ଏବଂ ମୋହେଞ୍ଜୋ-ଦାରୋରେ (ବର୍ତ୍ତମାନ ପାକିସ୍ତାନର ସିନ୍ଧୁ ପ୍ରଦେଶର ଲରକାନା ଜିଲାରେ ଅବସ୍ଥିତ) ଦୁଇଟି ପ୍ରାଚୀନ ନଗର ଆବିଷ୍କାର କରିଥିଲେ । ତା'ପରେ ନବଆବିଷ୍କୃତ ଏହି ସଭ୍ୟତାର ନିଦର୍ଶନ ବିଭିନ୍ନ ଦେଶର ଐତିହାସିକ ଏବଂ ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କ ମଧ୍ୟରେ ବିପୁଳ ଆଗ୍ରହ ସଞ୍ଚାର କରିଥିଲା ।

## ହରପ୍ପା ସଭ୍ୟତାର ଉତ୍ପତ୍ତି ସଂପର୍କରେ
## ବିଭିନ୍ନ ତତ୍ତ୍ୱ ଓ ନୂତନ ତଥ୍ୟ

ହରପ୍ପା ସଭ୍ୟତାର ଗବେଷଣା ସହିତ ସଂଶ୍ଳିଷ୍ଟ ସମସ୍ୟାବଳୀ ମଧ୍ୟରେ ଏ ସଭ୍ୟତାର ଉତ୍ପତ୍ତି ବିଷୟଟି ହେଉଛି ସର୍ବାପେକ୍ଷା ଜଟିଳ । ଏ ସଂପର୍କରେ ବିଭିନ୍ନ ପ୍ରକାରର ମତ ପ୍ରଚାରିତ ହୋଇଛି ।

ସେସବୁ ମଧ୍ୟରୁ ଗୋଟିଏ ହେଲା, ହରପ୍ପା ସଂସ୍କୃତିର ଭିତ୍ତି ହେଉଛି ସୁମେର ସଂସ୍କୃତି । ଏହା ଛଡ଼ା ଆଉ ଗୋଟିଏ ମତ ହେଲା, ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକ ଥିଲେ ହରପ୍ପା ସଭ୍ୟତାର ପ୍ରତିଷ୍ଠାତା, ଅର୍ଥାତ୍, ଏହି ମତାନୁଯାୟୀ ହରପ୍ପା ସଭ୍ୟତାକୁ ବୈଦିକ ସଭ୍ୟତା ବୋଲି ଧରି ନେବାକୁ ହେବ । ଏପରିକି ବିଶିଷ୍ଟ ପ୍ରତ୍ନତତ୍ତ୍ୱବିତ୍ ଆର୍. ହାଇନେ-ଗେଲ୍ଡନାର ମତ ଦେଇଥିଲେ ଯେ, ସିନ୍ଧୁ ଉପତ୍ୟକାରେ ଏହି ସଭ୍ୟତାର ଆବିର୍ଭାବ ଏକଦା ହଠାତ୍ ଶୂନ୍ୟରୁ ଖସି ପଡ଼ିଲା ଭଳି ଘଟିଥିଲା । କାରଣ ଖନନ କାର୍ଯ୍ୟ ଚଳାଇ ପ୍ରଥମେ ପ୍ରଥମେ ଏ ସଭ୍ୟତାର କୌଣସି ପୂର୍ବବର୍ତ୍ତୀ ନିଦର୍ଶନ ମିଳି ନଥିଲା । ସାଂପ୍ରତିକ ବର୍ତ୍ତମାନଙ୍କରେ, ଅବଶ୍ୟ, ସ୍ଥାନୀୟ ଭାବେ ଏହି ସଂସ୍କୃତିର ଉପରି ସଂପର୍କରେ ଗୁରୁତ୍ୱପୂର୍ଣ୍ଣ ନୂଆ ଉପାଦାନମାନ ସଂଗୃହୀତ ହୋଇଛି । କିନ୍ତୁ ଦୁର୍ଭାଗ୍ୟ ବଶତଃ, ମାଟିତଳେ ପ୍ରବହମାନ ଜଳ ସ୍ରୋତ ଥିବାରୁ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ପକ୍ଷରେ ଆଜି ପର୍ଯ୍ୟନ୍ତ ମୋହେଞ୍ଜୋ-ଦାରୋର ସର୍ବନିମ୍ନ ସ୍ତରଟିକୁ ଅନୁସନ୍ଧାନ କରି ଦେଖିବା ସମ୍ଭବ ହୋଇ ପାରିନି ।

ବେଲୁଚିସ୍ତାନ ଏବଂ ସିନ୍ଧୁ ପ୍ରଦେଶର ବିଭିନ୍ନ ସ୍ଥାନରେ ଖନନ କାର୍ଯ୍ୟ ପରିଚାଳନା ଫଳରେ ଜଣାଯାଇଛି ଯେ, ଖ୍ରୀଷ୍ଟ ପୂର୍ବ ଚତୁର୍ଥ ଏବଂ ତୃତୀୟ ସହସ୍ରାବ୍ଦରେ ଏହିସବୁ ଅଞ୍ଚଳରେ ଏଭଳି ସଂସ୍କୃତିସବୁ ପ୍ରତିଷ୍ଠିତ ହୋଇଥିଲା, ଯେଉଁସବୁର ଅର୍ଥନୈତିକ ଭିତ୍ତି ଥିଲା କୃଷିକର୍ମ । ହରପ୍ପା ସଭ୍ୟତାର ପ୍ରାରମ୍ଭିକ କାଳ ସହିତ ବିଭିନ୍ନ ଦିଗରୁ ଏସବୁର ଅନେକ ସାଦୃଶ୍ୟ ଥିଲା ଏବଂ ସେସବୁ ସହିତ ହରପ୍ପାର ଜନବସତିଗୁଡ଼ିକ ଦୀର୍ଘ ଦିନ ଧରି ଯୋଗାଯୋଗ ରକ୍ଷା ପାରିଥିଲେ (ଡବ୍ଲ୍ୟୁ. ଏ. ଫେୟାରସେର୍ଭିସ୍, ବି.ଡ୍ୟ. କାର୍ଦି, ଜେ.ଏମ୍. କାସାଲ୍ ପ୍ରଭୃତିଙ୍କ ଗବେଷଣାରୁ ଏହିସବୁ ତଥ୍ୟ ମିଳିଛି) । ସିନ୍ଧୁ ପ୍ରଦେଶରେ କୃଷିଭିତ୍ତିକ ସଂସ୍କୃତିର ଉଦ୍‌ଭବ ପରେ ଘଟିଥିଲା । ଏଥିରୁ ଏହି କଥାଟି ଅନୁମାନ କରିବା ସପକ୍ଷରେ ସମର୍ଥନ ମିଳେ ଯେ, ବେଲୁଚିସ୍ତାନ ଏବଂ ଦକ୍ଷିଣ ଆଫ୍‌ଗାନିସ୍ତାନରୁ କେତେକ ଉପଜାତି ଏହି ଅଞ୍ଚଳ ପର୍ଯ୍ୟନ୍ତ ଅନୁପ୍ରବେଶ କରିଥିଲେ ।

ଏକଥା ସ୍ପଷ୍ଟ ଯେ, ସିନ୍ଧୁ ନଦୀର ଉପତ୍ୟକାରେ ହରପ୍ପାର ଜନବସତିଗୁଡ଼ିକର ହଠାତ୍ ରାତାରାତି ଆବିର୍ଭାବ ହୋଇ ନଥିଲା ଏବଂ ସମସ୍ତ ଜନବସତି ମଧ୍ୟ ଏକାବେଳକେ ଆବିର୍ଭୂତ ହୋଇ ନଥିଲେ । ପ୍ରଥମେ ବିଶେଷ ଏକ କେନ୍ଦ୍ରରେ ନଗର ସଂସ୍କୃତି ଗଢ଼ି ଉଠିଥିଲା ବୋଲି ଜଣାଯାଏ, ତା'ପରେ ଲୋକେ କ୍ରମଶଃ ଏଣେ ତେଣେ ବିଛେଇ ହୋଇ ପଡ଼ି ଅନ୍ୟାନ୍ୟ ବସତିସବୁ ଗଢ଼ିଥିଲେ । ଏ ସଂପର୍କରେ ଆମ୍ରି ବସତି ଘେନି ଫରାସୀ ପ୍ରତ୍ନତତ୍ତ୍ୱବିତ୍ ଜେ.ଏମ୍. କାସାଲ୍‌ଙ୍କ ଗବେଷଣା ବିଶେଷ ଆଗ୍ରହ ସୃଷ୍ଟି କରିଥାଏ । କାସାଲ୍ ଆମ୍ରି ବସତିର ହରପ୍ପାପୂର୍ବ ଯୁଗରୁ ହରପ୍ପାର ଶେଷ ଯୁଗ ପର୍ଯ୍ୟନ୍ତ ବିସ୍ତୃତ ସ୍ତରବିନ୍ୟାସକୁ ନେଇ ଏକ ଚିତ୍ର ରଚନା କରିଛନ୍ତି । ଏହି ସ୍ତରବିନ୍ୟାସ ମଧ୍ୟରୁ ବିଭିନ୍ନ ସଂସ୍କୃତିର ସ୍ଥାନୀୟ ବିକାଶର ଧାରା ସଂପର୍କରେ ଅନୁଧ୍ୟାନ କରାଯାଇଥାଏ । ଯେତେବେଳେ କୁମ୍ଭାର ଚକ୍ରର ବିନା ସାହାଯ୍ୟରେ ମାଟିପାତ୍ରସବୁ ହାତରେ ତିଆରି ହେଉଥିଲା, ଗୃହ ନିର୍ମାଣ କେବଳ ଆରମ୍ଭ ହେଉଥିଲା, ଧାତୁର ବ୍ୟବହାର ବିରଳ ଥିଲା, ସେତେବେଳଠୁଁ ଆରମ୍ଭ କରି ନକସାପକା ମାଟିପାତ୍ର ଏବଂ ଅପୋଡ଼ା କଞ୍ଚା ଇଟାରେ ତିଆରି ଅପେକ୍ଷାକୃତ ସ୍ଥାୟୀ ଘର ଦ୍ୱାରର ଯୁଗ ଲକ୍ଷଣଚିହ୍ନିତ ଅପେକ୍ଷାକୃତ ଉନ୍ନତ ସ୍ତରଗୁଡ଼ିକ ପର୍ଯ୍ୟନ୍ତ ଅନୁଧାବନ କରିବା ଏହି ସ୍ତରବିନ୍ୟାସ ଦ୍ୱାରା ସମ୍ଭବ ହୋଇଛି । ଏଠାକାର ହରପ୍ପାପୂର୍ବ ଯୁଗର ନିମ୍ନତର ସ୍ତରଗୁଡ଼ିକ ସହିତ ବେଲୁଚିସ୍ତାନର ପ୍ରଥମ ଅବସ୍ଥାର କୃଷିଭିତ୍ତିକ ସଂସ୍କୃତିସମୂହର ବିଭିନ୍ନ ଧରଣର ସାଦୃଶ୍ୟ ରହିଥିବାର ଲକ୍ଷ୍ୟ କରାଯାଇଛି ।

ଏହି ହରପ୍ପାପୂର୍ବ ଯୁଗର ପରବର୍ତ୍ତୀ ସ୍ତରଗୁଡ଼ିକରେ ଯେଉଁସବୁ ମାଟିପାତ୍ର ମିଳିଛି, ସେସବୁ ସିନ୍ଧୁ ଉପତ୍ୟକାର ହରପ୍ପା ଜନବସତିଗୁଡ଼ିକର ପ୍ରଥମ କାଳରେ ତିଆରି ହୋଇଥିଲା । ପରିଶେଷରେ, ଏଠାକାର ଖନନ କାର୍ଯ୍ୟ ଫଳରେ ପ୍ରମାଣିତ ହୋଇଛି ଯେ, ଆମ୍ରି ସଂସ୍କୃତିର ବିଶେଷ ପରମ୍ପରାସମୂହ ହରପ୍ପାର ପରମ୍ପରାର ପାଖେପାଖେ ସହାବସ୍ଥାନ କରିଥିଲା ।

ହରପ୍ପା ସଂସ୍କୃତି ଏବଂ ତା'ର ପୂର୍ବବର୍ତ୍ତୀ ଆମ୍ରି ସଂସ୍କୃତି ମଧ୍ୟରେ ପରସ୍ପର ଯୋଗସୂତ୍ର ସଂକ୍ରାନ୍ତ ପ୍ରଶ୍ନଟି ପ୍ରତ୍ନତତ୍ତ୍ୱଗତ ବୈଜ୍ଞାନିକ ସାହିତ୍ୟରେ ତୁମୁଳ ବିତର୍କର ବିଷୟ ହୋଇ ରହିଛି । ଗୋଟିଏ ଦିଗରେ, ଏହି ଦୁଇଟି ସଂସ୍କୃତି ମଧ୍ୟରେ ସହଜାତ ଏକ ସଂପର୍କକୁ ସ୍ୱୀକାର କରି ନେବା ପାଇଁ ଏ. ଘୋଷ ମତ ଦେଲା ବେଳେ, ଅନ୍ୟ ଦିଗରେ, ଜେ.ଏମ୍. କାସାଲ୍ ମନେ କରନ୍ତି ଯେ, ହରପ୍ପାର ସଂସ୍କୃତି ଆପଣାଛାଏଁ ବା ସ୍ୱତଃସ୍ଫୂର୍ତ୍ତ ଭାବେ ଆମ୍ରିର ରୂପ ପରିଗ୍ରହ କରି ନଥିଲା, ବରଂ, କ୍ରମେ କ୍ରମେ ତାକୁ ଆମ୍ରି ଉପରେ "ଲଦି ଦିଆଯାଇଥିଲା" ।

ହରପ୍ପାରେ ସହରର ଦୁର୍ଗପ୍ରାଚୀର ତଳେ ଆମ୍ରି ସଂସ୍କୃତିର ନିଦର୍ଶନ ସ୍ୱରୂପ ମିଳିଛି ମାଟିପାତ୍ର ଏବଂ ମୋହେଞ୍ଜୋ-ଦାରୋର ନିମ୍ନତର ସ୍ତରଗୁଡ଼ିକରେ ମିଳିଛି ବେଲୁଚିସ୍ତାନର ସଂସ୍କୃତିର ନିଦର୍ଶନ ମାଟିପାତ୍ର । ଏହି ଘଟଣାରୁ ପରିଷ୍କାର ବୁଝାଯାଏ ଯେ, କେବଳ ସିନ୍ଧୁ ଉପତ୍ୟକାର ବସତିସମୂହ ଓ ବେଲୁଚିସ୍ତାନ ଏବଂ ସିନ୍ଧୁ ପ୍ରଦେଶର କୃଷିଜୀବୀ ସଂସ୍କୃତିସମୂହ ମଧ୍ୟରେ ଘନିଷ୍ଠ ସଂପର୍କ ଥିଲା, ତା ନୁହେଁ, ହରପ୍ପା ସଭ୍ୟତାର ନିଜସ୍ୱ ସ୍ଥାନୀୟ ଭିତ୍ତି ମଧ୍ୟ ଥିଲା । ଏହି ସଭ୍ୟତା ଗଢ଼ି ଉଠିଥିଲା ଏହି ଅଞ୍ଚଳର ପରମ୍ପରା ଏବଂ ସବୁଠାରୁ ଅଧିକ ପରିମାଣରେ ସିନ୍ଧୁ ନଦୀର ଉପତ୍ୟକାର କୃଷିଭିତ୍ତିକ ପରମ୍ପରା ଉପରେ ଭିତ୍ତି କରି । ଏଥି ସଙ୍ଗେ ସଙ୍ଗେ ଏହି ସଭ୍ୟତା ଥିଲା ନୂଆ ଏକ ପର୍ଯ୍ୟାୟର ପ୍ରତିନିଧି, ବ୍ରୋଞ୍ଜଯୁଗର ଏକ ଅଭିନବ ନଗର ସଭ୍ୟତା ।

ପାକିସ୍ତାନର ପ୍ରତ୍ନତତ୍ତ୍ୱବିତ୍‌ମାନେ ଆଧୁନିକ ଖାଇରପୁର ସହରର ନିକଟବର୍ତ୍ତୀ କୋଟ୍-ଦିଜିରେ ଚଳେଇଥିବା ଖନନ କାର୍ଯ୍ୟରୁ ପ୍ରମାଣ ମିଳିଛି ଯେ, ଏହି ଅଞ୍ଚଳରେ ହରପ୍ପାପୂର୍ବ ଯୁଗରେ ଏକ ଉନ୍ନତ ଧରଣର ସଂସ୍କୃତି ପ୍ରତିଷ୍ଠିତ ଥିଲା । ଏଠାକାର ମାଟିକୁ ଖୋଳି ବିଶେଷଜ୍ଞମାନେ ଏକ ନଗର ଦୁର୍ଗ ଏବଂ କେଇ ଧାଡ଼ି ରୀତିମତ ବାସଗୃହ ଆବିଷ୍କାର କରିଛନ୍ତି । କୋଟ୍-ଦିଜିର ପ୍ରାଥମିକ ଯୁଗର ମାଟିପାତ୍ରଗୁଡ଼ିକ ସହିତ ସିନ୍ଧୁ ପ୍ରଦେଶ ଏବଂ ବେଲୁଚିସ୍ତାନର କୃଷିଭିତ୍ତିକ ବାସଗୃହଗୁଡ଼ିକର ଏବଂ ସିନ୍ଧୁ ଉପତ୍ୟକାର ହରପ୍ପାପୂର୍ବ ଯୁଗର ମାଟିପାତ୍ରଗୁଡ଼ିକ ମଧ୍ୟରେ ସାଦୃଶ୍ୟ ଅଛି ଏବଂ କୋଟ୍-ଦିଜିର ପରବର୍ତ୍ତୀ କାଳର ମାଟିପାତ୍ର ସହିତ ଖୋଦ୍ ହରପ୍ପାର ମାଟିପାତ୍ରର ମେଳ ମଧ୍ୟ ରହିଛି । ଏହା ଦ୍ୱାରା ସେଠାକାର ସ୍ଥାନୀୟ ଐତିହ୍ୟର କ୍ରମବିକାଶର ସୂତ୍ରଟିକୁ ବାହାର କରିବା ସମ୍ଭବ । ଏଣେ ହରପ୍ପା ସଭ୍ୟତାର ଅବ୍ୟବହିତ ପୂର୍ବର ଏକ ଯୁଗର ସନ୍ଧାନ ଭାରତୀୟ ପ୍ରତ୍ନତତ୍ତ୍ୱବିଦ୍‌ମାନେ ପାଇଛନ୍ତି । ରାଜସ୍ଥାନର କାଲିବାଙ୍ଗା ଅନ୍ତର୍ଗତ ଏକ ସ୍ଥାନରେ ସେମାନେ ଖନନ କାର୍ଯ୍ୟ ପରିଚାଳନା କରି ଦୁଇଟି କୁଦ ଉପରେ ହରପ୍ପା ବାସୀଙ୍କର ପୂର୍ବବର୍ତ୍ତୀ ଲୋକଙ୍କର ବସତିଗୁଡ଼ିକ ଆବିଷ୍କାର କରିଛନ୍ତି । ତା'ପରେ ସେଠାରେ ସେମାନେ ଯେଉଁସବୁ ଘରଦ୍ୱାର ଆବିଷ୍କାର କରିଛନ୍ତି, ସେସବୁଥିରୁ ଜଣାଯାଏ, ସେସବୁ ହେଉଛି ସ୍ପଷ୍ଟତଃ ହରପ୍ପା ସଂସ୍କୃତିର ପ୍ରତିଷ୍ଠାତାମାନଙ୍କ କୀର୍ତ୍ତି । ଏଠାରେ ହରପ୍ପାପୂର୍ବ ଯୁଗର ବସତିଗୁଡ଼ିକରୁ ମିଳିଥିବା ମାଟିପାତ୍ରଗୁଡ଼ିକ ଆମ୍ରି ଏବଂ କୋଟ୍-ଦିଜିରେ ମିଳିଥିବା ମାଟିପାତ୍ର ସହିତ ବହୁ ଦିଗରୁ ଏକାଭଳି । ଏହିସବୁ ଆବିଷ୍କାର ଫଳରେ ପଣ୍ଡିତମାନଙ୍କ ପକ୍ଷରେ ହରପ୍ପା

ସଂସ୍କୃତିର ଉଦ୍‌ଭବ ଏବଂ ବିକାଶର ସୂତ୍ର ତଥା ହରପ୍‌ପାର ପ୍ରାରମ୍ଭିକ କାଳର ସଂସ୍କୃତି ଆଉ ପରମ୍ପରା ସହିତ ଅପେକ୍ଷାକୃତ ପୋଖତ ହରପ୍‌ପା ଯୁଗର ସଂସ୍କୃତି ଓ ପରମ୍ପରାର ସହାବସ୍ଥାନର ସୂତ୍ରଟିକୁ ଖୋଜି ବାହାର କରିବା ସମ୍ଭବ ହୁଏ ।

ଗତ କେତେ ବର୍ଷ ଧରି ଭାରତୀୟ ପ୍ରତ୍ନତତ୍ତ୍ୱବିତ୍‌ମାନେ ହରପ୍‌ପାର ତଥା ପ୍ରାରମ୍ଭିକ କାଳର ହରପ୍‌ପା ସଂସ୍କୃତିର ଆଉରି ଅନେକ ନୂଆ ନୂଆ ନିଦର୍ଶନ ଆବିଷ୍କାର କରିବାକୁ ସମର୍ଥ ହୋଇଛନ୍ତି । ଏହା ଫଳରେ ହରପ୍‌ପା ସଭ୍ୟତାର ଉତ୍ପତ୍ତି ସଂପର୍କରେ ନୂଆ ତତ୍ତ୍ୱର ଉଦ୍‌ଭବ ଘଟିଛି । ହରପ୍‌ପାର ସଭ୍ୟତା ପ୍ରାକ୍‌ହରପ୍‌ପା ଏବଂ ଆଦି ହରପ୍‌ପା ସଂସ୍କୃତିଗୁଡ଼ିକ ମଧ୍ୟରୁ ଗଢ଼ି ଉଠିଛି – ଏହି ତତ୍ତ୍ୱଟି ବ୍ୟତୀତ ଆଉରି ଏକ ମତ ପ୍ରଚଳିତ ହୋଇଛି ଯେ, ଆଦି ହରପ୍‌ପା, ଅର୍ଥାତ୍, ଗ୍ରାମୀଣ ଢଙ୍ଗର ସଂସ୍କୃତିଗୁଡ଼ିକ ସହିତ ଖୋଦ୍ ହରପ୍‌ପା, ଅର୍ଥାତ୍, ନଗର ସଭ୍ୟତା, ସମ୍ଭବତଃ, ଲଗାଇଗି ହୋଇ ପ୍ରତିଷ୍ଠିତ ଥିଲା ଏବଂ ସମାନ୍ତରାଳ ଧାରାରେ ଏକଦା ବିକଶିତ ହେଉଥିଲା । ବସ୍ତୁତଃ, ନଗର ଜୀବନ ଏବଂ ବଡ଼ ବଡ଼ ନଗର ଜନପଦର ଉଦ୍‌ଭବ ସେତେବେଳେ ନୂତନ ଏକ କାଳପର୍ଯ୍ୟାୟର, ସମସ୍ତ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ସହ ପରିପକ୍ୱ ହରପ୍‌ପା ସଭ୍ୟତାର ଜନ୍ମକୁ ଘୋଷଣା କରିଥିଲା (ଯଥା, ଲିପି ଖୋଦିତ ମୋହର, ବର୍ଣ୍ଣଲିପି, ଲିଖନ କଳା ଏବଂ ମାଟିପାତ୍ର ଉପରେ ମୌଳିକ ଧରଣର ଅଳଙ୍କରଣ, ଆଦି) ।

ନଗର ସଭ୍ୟତା ଆଡ଼କୁ ପ୍ରବଣତା, ଅବଶ୍ୟ, ଆଦି ହରପ୍‌ପା ଠାରୁ ଆରମ୍ଭ କରି ଆଫ୍‌ଗାନିସ୍ତାନ, ବେଲୁଚିସ୍ତାନ ଏବଂ ସିନ୍ଧୁ ପ୍ରଦେଶର ଅନେକ ଖନନକ୍ଷେତ୍ରରେ ଦେଖିବାକୁ ମିଳିଥାଏ । ତେବେ, ଏ ଧରଣର ଉନ୍ନତ ନଗର ସଭ୍ୟତାର ଉଦ୍‌ଭବ ଘଟିଥିଲା କେବଳ ସିନ୍ଧୁ ନଦୀର ଉପତ୍ୟକାରେ ।

ଏହି ଶେଷୋକ୍ତ ସଭ୍ୟତାର ବିକାଶ ପକ୍ଷରେ ଆଞ୍ଚଳିକ ଭୌଗୋଳିକ ପରିବେଶ, ଅର୍ଥାତ୍, ସିନ୍ଧୁ ନଦୀ ଏବଂ ଜାଲ ଭଳି ତା'ର ଶାଖା ନଦୀଗୁଡ଼ିକର ବିସ୍ତାର, ଅବଶ୍ୟ, ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ନଦୀମାତୃକ ଏହି ଅଞ୍ଚଳଟି ବୈଷୟିକ ସଂସ୍କୃତି ଏବଂ ଅର୍ଥନୈତିକ ବିକାଶର ଏବଂ ନଗର ଜନପଦର, ବାଣିଜ୍ୟ ଏବଂ କାରିଗରି କେନ୍ଦ୍ରଗୁଡ଼ିକ ପ୍ରତିଷ୍ଠା ଦିଗରେ ସର୍ବାପେକ୍ଷା ଅନୁକୂଳ ପୃଷ୍ଠଭୂମି ଯୋଗାଇ ଦେଇଥିଲା । ହରପ୍‌ପା ଯୁଗର ଜନବସତିଗୁଡ଼ିକ ସିନ୍ଧୁ ନଦୀ ଏବଂ ତା'ର ଶାଖା ନଦୀଗୁଡ଼ିକର ତୀର ଦେଶରେ ବିପୁଳ ସଂଖ୍ୟାରେ ଗଢ଼ି ଉଠିବା ଏକ ଆକସ୍ମିକ ଘଟଣା ନୁହେଁ । ଏ ପ୍ରସଙ୍ଗରେ ଉଲ୍ଲେଖ କରାଯାଇ ପାରେ ଯେ, ଗଙ୍ଗା ଏବଂ ଯମୁନା ନଦୀର ଉତ୍ତର ଉପତ୍ୟକାରେ ହରପ୍‌ପା ଯୁଗର ଅନେକ ଜନବସତି ମଧ୍ୟ ଆବିଷ୍କୃତ ହୋଇଛି ।

ହରପ୍‌ପା ସଂସ୍କୃତିର ଉତ୍ପତ୍ତି ସଂପର୍କରେ ଏବେ ବି ଅନେକ କଥା ରହିଛି, ଯାହାକୁ ବିଶ୍ଳେଷଣ ଏବଂ ସ୍ପଷ୍ଟ କରିବାକୁ ପଡ଼ିବ । କିନ୍ତୁ, ଏଥିରେ ସନ୍ଦେହ ନାହିଁ ଯେ, ସଭ୍ୟତାର ଉତ୍ପତ୍ତି ସହିତ ବାହାର ଦୁନିଆର, ଯଥା ଆର୍ଯ୍ୟ ଆଉ ସୁମେର ସଭ୍ୟତାର ପ୍ରଭାବ ସଂପର୍କିତ ତତ୍ତ୍ୱଗୁଡ଼ିକ ଏବେ କେବଳ ପେଶାଦାର ଐତିହାସିକମାନଙ୍କର କୌତୂହଳକର ବିଷୟରେ ପର୍ଯ୍ୟବସିତ ହୋଇଯାଇଛି ।

## ହରପ୍‌ପା ସଭ୍ୟତାର ପରିସର ଆଉ ବ୍ୟାପ୍ତି

ଚଳିତ ଶତାବ୍ଦୀର ତୃତୀୟ ଦଶକରେ ଯେତେବେଳେ ହରପ୍‌ପା ସଭ୍ୟତା ନେଇ ଅନୁସନ୍ଧାନ ଆରମ୍ଭ ହେଲା, ସେତେବେଳେ ମନେ ହେଉଥିଲା, ଏହି ସଂସ୍କୃତିର ଭୌଗୋଳିକ ବିସ୍ତାରର ପରିସର ଅପେକ୍ଷାକୃତ

ସଂକୀର୍ଣ୍ଣ ହୋଇଥିବ । ବାସ୍ତବିକ, ପ୍ରଥମେ ହରପ୍ପା ଯୁଗର ଜନବସତିଗୁଡ଼ିକ କେବଳ ସିନ୍ଧୁ ଉପତ୍ୟକାରେ ଆବିଷ୍କୃତ ହୋଇଥିଲା । ତେବେ, ବର୍ତ୍ତମାନ ପ୍ରତ୍ନତାତ୍ତ୍ୱିକ ଗବେଷଣା ଫଳରେ ଜଣାଯାଇଛି ଯେ, ହରପ୍ପା ସଭ୍ୟତାର ଅସ୍ତିତ୍ୱ ବିଶାଳ ଏକ ଭୂଖଣ୍ଡ ବ୍ୟାପି ପରିବ୍ୟାପ୍ତ ଥିଲା । ଉତ୍ତରରୁ ଦକ୍ଷିଣକୁ ଏହାର ବିସ୍ତାର ଥିଲା ୧,୧୦୦ କିଲୋମିଟରରୁ ଅଧିକ ଏବଂ ପୂର୍ବରୁ ପଶ୍ଚିମକୁ ଥିଲା ୧,୬୦୦ କିଲୋମିଟରରୁ ବେଶି ।

କାଥିଆବାଡ଼ ଉପଦ୍ୱୀପରେ ଖନନ କାର୍ଯ୍ୟ ପରିଚାଳନା ଦ୍ୱାରା ଜଣାଯାଇଛି ଯେ, ସିନ୍ଧୁ ଉପତ୍ୟକାରୁ ଜନଗୋଷ୍ଠୀ କ୍ରମଶଃ ଦକ୍ଷିଣକୁ ଯାଇ ନୂଆ ନୂଆ ଅଞ୍ଚଳରେ ଜନବସତି ଗଢ଼ି ତୋଳିଥିଲେ । ବର୍ତ୍ତମାନ ହରପ୍ପା ଯୁଗର ଯେଉଁସବୁ ଜନବସତି ସର୍ବାପେକ୍ଷା ଦକ୍ଷିଣରେ ଆବିଷ୍କୃତ ହୋଇଛି, ସେସବୁ ନର୍ମଦା ନଦୀର ମୁହାଣ ନିକଟରେ ମଧ୍ୟ ମିଳିଛି । ତେବେ ଏକଥାଟି ମଧ୍ୟ ସମ୍ଭବ ଯେ, ହରପ୍ପାର ଜନଗୋଷ୍ଠୀ ଏହାଠାରୁ ଆଉରି ଦକ୍ଷିଣକୁ ଅନୁପ୍ରବେଶ କରିଥିଲେ । ସେମାନେ ଦେଶର ପୂର୍ବାଞ୍ଚଳକୁ ମଧ୍ୟ ଖେଦି ଯାଇଥିଲେ ଏବଂ ଗଲାବେଳେ ନୂଆ ନୂଆ ଅଞ୍ଚଳ "ଅଧିକାର କରିଥିଲେ" । ତା ଅର୍ଥ, ହରପ୍ପା ସଂସ୍କୃତିର କେତେକ ପ୍ରକାରଭେଦ କେତେକ ସ୍ଥାନରେ ମୁଣ୍ଡ ଟେକି ଉଠିଥିଲା, ଯଦିଓ ମୋଟ ଉପରେ କହିବାକୁ ଗଲେ, ଏସବୁ ଥିଲା ସୁପ୍ରତିଷ୍ଠିତ ପରମ୍ପରା ସଂପନ୍ନ ଏକ ଅଭିନ୍ନ ସଂସ୍କୃତି ।

ସୌରାଷ୍ଟ୍ର ଏବଂ କାଥିଆବାଡ଼ ଉପଦ୍ୱୀପରେ ସଂପ୍ରତି ଖନନ କାର୍ଯ୍ୟ ଫଳରେ ଆବିଷ୍କୃତ ହୋଇଥିବା ହରପ୍ପା ଯୁଗର ଜନବସତିଗୁଡ଼ିକ ପୁଣି ସେଇ ପ୍ରଶ୍ନଟି ପ୍ରତି ବିଶେଷଜ୍ଞମାନଙ୍କର ଦୃଷ୍ଟି ଆକର୍ଷଣ କରିଛି ଯେ, ଏତେ ଦୂରଦୂରାନ୍ତ ଅଞ୍ଚଳରେ ହରପ୍ପାର ଜନଗୋଷ୍ଠୀ ଖେଳେଇ ହୋଇ ପଡ଼ିବାର କାରଣ କ'ଣ ଏବଂ ସେମାନେ ଏତେ ଦୂରରେ ଆସି ପହଞ୍ଚିଲେ କିପରି ?

ସିନ୍ଧୁ ଉପତ୍ୟକାର ସଭ୍ୟତାର ତଥାକଥିତ ଶେଷ ପର୍ଯ୍ୟାୟରେ ପ୍ରଧାନ ନଗର କେନ୍ଦ୍ରଗୁଡ଼ିକର ଗୁରୁତ୍ୱ ହ୍ରାସ ପାଇବାକୁ ଆରମ୍ଭ କଲା ବେଳେ ହିଁ କେବଳ ହରପ୍ପାର ଜନଗୋଷ୍ଠୀ ଦେଶର ଦକ୍ଷିଣ ଏବଂ ପୂର୍ବ ଅଞ୍ଚଳକୁ ଯାତ୍ରା କରିଥିଲେ ବୋଲି କେତେକ ବିଶେଷଜ୍ଞ ପୂର୍ବେ ମନେ କରୁଥିଲେ । ଆଉ କେତେକ ଏହି ଧରଣର ବ୍ୟାପକ "ସ୍ଥାନାନ୍ତର ଗମନର" କାରଣ ହିସାବରେ ଭୌଗୋଳିକ ପରିବେଶର ପରିବର୍ତ୍ତନ, କିମ୍ବା ବହିରାକ୍ରମଣ ବୋଲି ମନେ କରୁଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ସୌରାଷ୍ଟ୍ର, ଗୁଜରାଟ ଓ କାଥିଆବାଡ଼ ଉପଦ୍ୱୀପରେ ପୂର୍ଣ୍ଣ ବିକଶିତ ହରପ୍ପା ସଭ୍ୟତାର ନଗର କେନ୍ଦ୍ରଗୁଡ଼ିକୁ (ଯଥା, ଗୁଜରାଟରେ ସାର୍କୋଟାଦ୍ ନାମକ ନଗର ବସତି) ଆବିଷ୍କୃତ ହେବା ଫଳରେ ପଣ୍ଡିତମାନେ ଏବେ ମନେ କରୁଛନ୍ତି ଯେ, ସିନ୍ଧୁ ଉପତ୍ୟକାର ନଗରସମୂହର ଅଧିବାସୀମାନେ ନିଶ୍ଚୟ କୃଷି, ବ୍ୟବସାୟ ବାଣିଜ୍ୟ ଏବଂ କାରିଗରିର ଅଧିକ ବିକାଶ କରିବା ଉଦ୍ଦେଶ୍ୟରେ ଉପଯୁକ୍ତ ଜମି ଆଦି ସନ୍ଧାନରେ ବିଭିନ୍ନ ଅଞ୍ଚଳରେ ଖେଳେଇ ହୋଇ ପଡ଼ିଥିଲେ । ଅର୍ଥାତ୍, ଏ କ୍ଷେତ୍ରରେ ଆମେ ଦେଖିବାକୁ ପାଏଁ, ହରପ୍ପା ସଭ୍ୟତାର "ସଂପ୍ରସାରଣର" ଏହା ହେଉଛି ଏକ ସ୍ୱାଭାବିକ ପ୍ରକ୍ରିୟା ।

ଐତିହାସିକମାନେ ମନେ କରନ୍ତି ଯେ, ହରପ୍ପାର ଜନଗୋଷ୍ଠୀ ସାଧାରଣତଃ ସ୍ଥଳପଥ ଏବଂ ନଦୀ ପଥରେ ବିଭିନ୍ନ ଆଡ଼କୁ ଗତି କରିଥିଲେ (ସମୁଦ୍ର ପଥରେ ସେମାନେ ବିଭିନ୍ନ ସ୍ଥାନକୁ ଯାଇଥିଲେ ବୋଲି ଏସ୍.ଆର. ରାଓଙ୍କ ତତ୍ତ୍ୱଟି ଯୁକ୍ତିସଂଗତ ନୁହେଁ) । କାଥିଆବାଡ଼ ଉପଦ୍ୱୀପରେ ଖନନ କାର୍ଯ୍ୟ ପରିଚାଳନା ଫଳରେ ଜଣାଯାଇଛି ଯେ, ସେଠାରେ ହରପ୍ପାର ସଂସ୍କୃତି ଏବଂ ତାମ୍ରପ୍ରସ୍ତରଯୁଗୀୟ ସ୍ଥାନୀୟ ସଂସ୍କୃତି ପରସ୍ପରକୁ ନାନା ଭାବେ ପ୍ରଭାବିତ କରିଥିଲା ।

ତେଣୁ ଆମେ ଧରି ନେଇ ପାରେ ଯେ, ଏହି ବିଶାଳ ସଭ୍ୟତା ମଧ୍ୟରେ ଯେଉଁ ବହୁବିଧ ପ୍ରକାରଭେଦ ଲକ୍ଷ୍ୟ କରାଯାଏ, ତାହା ବିଭିନ୍ନ ନରଗୋଷ୍ଠୀର ଉପସ୍ଥିତି ଏବଂ ହରପ୍ପା ସଭ୍ୟତାର ପ୍ରତିଷ୍ଠାତାମାନେ ଯେଉଁସବୁ ବିଭିନ୍ନ ଅଞ୍ଚଳରେ ଆବିର୍ଭୂତ ହୋଇଥିଲେ, ସେଠାରେ ସ୍ଥାନୀୟ ବିକାଶର ଅସମାନ ସ୍ତରର ପ୍ରତିଫଳନ ମାତ୍ର ।

## ହରପ୍ପା ସଭ୍ୟତାର କାଳ ନିରୂପଣ

ବିଭିନ୍ନ ଧରଣର ପ୍ରମାଣ ଭିତ୍ତିରେ ବିଶେଷଜ୍ଞମାନେ ଏବେ ହରପ୍ପା ସଭ୍ୟତାର କାଳ ନିରୂପଣ କରିବାକୁ ସକ୍ଷମ ହୋଇଛନ୍ତି । ଏହି କାର୍ଯ୍ୟଟି ସେମାନେ କରିଛନ୍ତି ସିନ୍ଧୁ ଉପତ୍ୟକା ଏବଂ ମେସୋପଟେମିଆରୁ ମିଳିଥିବା ପୁରାତନ ନିଦର୍ଶନଗୁଡ଼ିକ ମଧ୍ୟରେ ତୁଳନା କରି (ଯଥା, ସିନ୍ଧୁ ଉପତ୍ୟକାର ଲିପି ଖୋଦିତ ମୋହର ଟାଇଗ୍ରିସ୍ ଏବଂ ଇଉଫ୍ରେଟିସ୍‌ର ମଧ୍ୟବର୍ତ୍ତୀ କେତେକ ସହରରେ ମିଳିଛି), ମାଟିପାତ୍ରଗୁଡ଼ିକର ବର୍ଣ୍ଣାଳୀ ବିଶ୍ଳେଷଣ କରି, ସଂପ୍ରତି ବ୍ୟବହୃତ ତେଜସ୍କ୍ରିୟ କାର୍ବନ୍-୧୪ ପଦ୍ଧତି ଦ୍ୱାରା ଏବଂ ପ୍ରାଚ୍ୟ ଦୁନିଆ ସହିତ ବାଣିଜ୍ୟ ସଂକ୍ରାନ୍ତ ଆକ୍କାଡୀୟ ବିବରଣ ଉପରେ ନିର୍ଭର କରି । ବିଶେଷଜ୍ଞମାନେ ପ୍ରଥମେ ହରପ୍ପା ସଂସ୍କୃତିର କାଳକୁ ଆହୁରି ପ୍ରାଚୀନ ବୋଲି ଅନୁମାନ କରୁଥିଲେ । ସେମାନଙ୍କର ଏହି ଅନୁମାନର ଭିତ୍ତି ଥିଲା ସୁମେର ଓ ଭାରତରେ ସଭ୍ୟତାର ବିକାଶ କ୍ଷେତ୍ରରେ ଯେଉଁ ବହୁବିଧ ସାଦୃଶ୍ୟ ଦେଖାଯାଏ, ସେସବୁଥିରୁ ଟଣାଯାଇଥିବା ସାଧାରଣ ସିଦ୍ଧାନ୍ତସମୂହ । ବିଖ୍ୟାତ ଇଂରେଜ ପ୍ରତ୍ନତତ୍ତ୍ୱବିତ୍ ଏବଂ "ଭାରତୀୟ ପ୍ରତ୍ନତତ୍ତ୍ୱର" ଅନ୍ୟତମ ଜନକ ସାର୍ ଜହନ୍ ମାର୍ଶାଲ ଖ୍ରୀଷ୍ଟ ପୂର୍ବ ୩୨୫୦ରୁ ୨୭୫୦ କାଳକୁ ସିନ୍ଧୁ ସଭ୍ୟତାର ଜୀବନକାଳ ବୋଲି ବର୍ଣ୍ଣନା କରିଥିଲେ । କିନ୍ତୁ ପରେ ପ୍ରାଚୀନ ମେସୋପଟେମିଆର ସହରମାନଙ୍କରେ ଖନନ କାର୍ଯ୍ୟ ପରିଚାଳନା ବେଳେ ସିନ୍ଧୁ ଉପତ୍ୟକା ଧରଣର କେତେକ ମୋହର ଆବିଷ୍କାର ହେବା ଦ୍ୱାରା ଜଣାଗଲା ଯେ, ଏହିସବୁ ମୋହରଗୁଡ଼ିକ ମଧ୍ୟରୁ ଅଧିକାଂଶ ସାର୍ଗନ୍‌ଙ୍କ ରାଜତ୍ୱକାଳର (ଖ୍ରୀଷ୍ଟ ପୂର୍ବ ୨୩୧୬ ମସିହାରୁ ୨୨୬୧ ମସିହା), ଇସିନ୍ ଯୁଗ (ଖ୍ରୀଷ୍ଟ ପୂର୍ବ ୨୦୧୭ ମସିହାରୁ ୧୭୯୪ ମସିହା) ଏବଂ ଲର୍‌ସା ଯୁଗ (ଖ୍ରୀଷ୍ଟ ପୂର୍ବ ୨୦୨୫ ମସିହାରୁ ୧୭୬୩ ମସିହା) ସହିତ ସଂପୃକ୍ତ । ଏହିସବୁ ଆବିଷ୍କାର ଫଳରେ ବିଶେଷଜ୍ଞମାନେ ଶେଷକୁ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ, ମେସୋପଟେମିଆ ଓ ଭାରତ ମଧ୍ୟରେ ଘନିଷ୍ଠତମ ସଂପର୍କର ସମୟକାଳ ଖ୍ରୀଷ୍ଟ ପୂର୍ବ ତେଇଶ ଶହରୁ ଅଠର ଶହ ମଧ୍ୟରେ ନିର୍ଦ୍ଦିଷ୍ଟ କରାଯାଇ ପାରେ ।

ଏହା ବିଶେଷ ଭାବେ ଲକ୍ଷଣୀୟ ଯେ, ଆକ୍କାଡୀୟ ଯେଉଁସବୁ ବିବରଣୀରେ ପ୍ରାଚ୍ୟଦେଶୀୟ ଅଞ୍ଚଳଗୁଡ଼ିକ ସହିତ, ବିଶେଷ କରି ପ୍ରତ୍ନତତ୍ତ୍ୱବିତ୍‌ମାନେ ଯେଉଁସବୁ ଅଞ୍ଚଳକୁ ସିନ୍ଧୁ ଉପତ୍ୟକା ଓ ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ବୋଲି ଚିହ୍ନିତ କରିଛନ୍ତି, ସେଇ ଦିଲ୍‌ମୁନ୍ ଓ ମେଲୁହ୍‌ହାର ସହିତ, ବାଣିଜ୍ୟ ସଂପର୍କର ସବୁଠାରୁ ଅଧିକ ଉଲ୍ଲେଖ ଅଛି, ସେସବୁ ଉର୍‌ଏର ତୃତୀୟ ରାଜବଂଶର (ଖ୍ରୀଷ୍ଟ ପୂର୍ବ ୨୧୧୮ ମସିହାରୁ ୨୦୦୭ ମସିହାର ମଧ୍ୟବର୍ତ୍ତୀ) ଏବଂ ଲର୍‌ସାର ରାଜବଂଶ ଅମଳର । ଲର୍‌ସାର ରାଜା ଗୁଙ୍ଗୁନୁମାଙ୍କ ରାଜତ୍ୱକାଳରେ ଦଶମ ବର୍ଷର (ଖ୍ରୀଷ୍ଟ ପୂର୍ବ ୧୯୨୩ ମସିହାର)

ତାରିଖ ଚିହ୍ନିତ କୀଳକାକୃତି ଫଳକଗୁଡ଼ିକ ମଧ୍ୟସ୍ଥ ଗୋଟିକରେ ସିନ୍ଧୁ ଉପତ୍ୟକା ଧରଣର ମୋହରର ଏକ ଛାପ ମିଳିଲା ଫଳରେ ବିଶେଷଜ୍ଞମାନଙ୍କ ମଧ୍ୟରେ ଗଭୀର ଆଗ୍ରହ ସୃଷ୍ଟି ହୋଇଥିଲା । ଉପରୋକ୍ତ ସମସ୍ତ ତଥ୍ୟ ଏହି ଧାରଣାର ସପକ୍ଷରେ ପ୍ରମାଣ ଯୋଗାଏ ଯେ, ସିନ୍ଧୁ ଉପତ୍ୟକାରେ ନଗର ଜନବସତିଗୁଡ଼ିକର ବିକାଶ ଘଟିଥିଲା ଖ୍ରୀଷ୍ଟ ପୂର୍ବ ତୃତୀୟ ସହସ୍ରାବ୍ଦର ଶେଷ ଆଡ଼କୁ ଏବଂ ଦ୍ୱିତୀୟ ସହସ୍ରାବ୍ଦର ପ୍ରାରମ୍ଭରେ । ମେସୋପଟେମିୟାର ପ୍ରାଚୀନ ସହରଗୁଡ଼ିକର ଖନନ କାର୍ଯ୍ୟ ଚଳାଇବା ସମୟରେ ସେଠାରେ କାସ୍‌ସୀୟ ଯୁଗ ସହିତ ସଂପୃକ୍ତ ସ୍ତରଗୁଡ଼ିକରେ ମଧ୍ୟ ସିନ୍ଧୁ ଉପତ୍ୟକାର ମୋହର ମିଳିଛି । ଏଥିରୁ ମନେ ହୁଏ ଯେ, ଏହି ପର୍ଯ୍ୟାୟରେ ବି ଏହି ଅଞ୍ଚଳ ସହିତ ସିନ୍ଧୁ ଉପତ୍ୟକାର ଯୋଗସୂତ୍ର ଥିଲା । ହରପ୍‌ପାର ଖନନକ୍ଷେତ୍ରଗୁଡ଼ିକର (ଉଚ୍ଚତର ସ୍ତରସମୂହରେ ଯେଉଁ ଫଇଆଁସ (ବା ଅଳଙ୍କରଣ କରା ପୋଡ଼ା ମାଟିରେ ତିଆରି) ଗୁଟି ମିଳିଛି, ବର୍ଣ୍ଣାଳୀ ବିଶ୍ଳେଷଣ ଫଳରେ ଦେଖାଯାଇଛି ଯେ, ସେସବୁ କ୍ରୀଟ୍ ଦ୍ୱୀପର ନୋସୋସ୍‌ରେ (ଖ୍ରୀଷ୍ଟ ପୂର୍ବ ଷୋଡ଼ଶ ଶତାବ୍ଦୀର) ପ୍ରାପ୍ତ ଗୁଟିକାଗୁଡ଼ିକ ସହିତ ସମାନ । ଏହା ଫଳରେ ହରପ୍‌ପା ସଭ୍ୟତାର ଶେଷ ସମୟକାଳଟି ଖ୍ରୀଷ୍ଟ ପୂର୍ବ ଷୋଡ଼ଶ ଶତାବ୍ଦୀ ବୋଲି ନିର୍ଣ୍ଣୟ କରିବା ସମ୍ଭବ ହୋଇଛି ।

ତେଜସ୍କ୍ରିୟ କାର୍ବନ-୧୪ ପଦ୍ଧତି ଦ୍ୱାରା କାଳ ନିର୍ଣ୍ଣୟ କରିବାକୁ ଯାଇ ଉପରୋକ୍ତ ମସିହା ନିର୍ଣ୍ଣୟରେ କେତେକ ଏପାଖ ସେପାଖ କରିବାକୁ ପଡ଼ିଛି । ବର୍ତ୍ତମାନ ବିଶେଷଜ୍ଞମାନେ କାଲିବାଙ୍ଗାରେ ଅବସ୍ଥିତ ହରପ୍‌ପା ଯୁଗର ସଂସ୍କୃତିର ପ୍ରାଥମିକ ସ୍ତରଗୁଡ଼ିକ ଖ୍ରୀଷ୍ଟ ପୂର୍ବ ୨୨ଶ ଶତାବ୍ଦୀରେ ଆବିର୍ଭୂତ ହୋଇଥିଲା ବୋଲି ନିର୍ଣ୍ଣୟ କରିବାକୁ ସମର୍ଥ ହୋଇଛନ୍ତି । ହରପ୍‌ପା ସଂସ୍କୃତିର ଶେଷ ସ୍ତରଟି ଖ୍ରୀଷ୍ଟ ପୂର୍ବ ୧୮ଶ ଏବଂ ୧୭ଶ ଶତାବ୍ଦୀର ମଧ୍ୟବର୍ତ୍ତୀ ବୋଲି ଏବେ ଜଣା ପଡ଼ିଛି । ମୋହେଞ୍ଜୋ-ଦାରୋର ଖନନକ୍ଷେତ୍ରରୁ ମିଳିଥିବା ସାକ୍ଷ୍ୟ ପ୍ରମାଣାଦିରୁ ଏକା ରକମର ସମୟକାଳର ଇଙ୍ଗିତ ଦେଇଥାଏ : ଏହି ସଭ୍ୟତାର ସମୃଦ୍ଧି କାଳଟି ଖ୍ରୀଷ୍ଟ ପୂର୍ବ ୨୨ଶରୁ ୧୯ଶ ଶତାବ୍ଦୀ ମଧ୍ୟରେ ଏବଂ ମନେ ହୁଏ, ସଭ୍ୟତାଟି, ସମ୍ଭବତଃ, ଖ୍ରୀଷ୍ଟ ପୂର୍ବ ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ ତିଷ୍ଠି ଥିଲା (± ୧୧୫ ବର୍ଷ) ।

ଅଳ୍ପ କାଳ ଆଗେ "ଡେନ୍‌ଡ୍ରୋକ୍ରୋନଲଜି" ବା ବୃକ୍ଷବଳୟ ସାହାଯ୍ୟରେ କାଳ ନିର୍ଣ୍ଣୟ ବିଦ୍ୟା ନାମକ ପୁରାକାଳର ବର୍ଷ ନିର୍ଣ୍ଣୟର ନୂତନ ଏକ ପଦ୍ଧତି ଆବିଷ୍କୃତ ହୋଇଛି । ଏହି ପଦ୍ଧତି ସାହାଯ୍ୟରେ ହରପ୍‌ପା ଯୁଗର ନଗର ଜନବସତିଗୁଡ଼ିକର ଯେଉଁ ବୟସ ନିଶ୍ଚିତ ହୋଇଛି, ତାହା ବିଶେଷଜ୍ଞମାନଙ୍କୁ ପୁଣି ସେଇ ତତ୍ତ୍ୱ ନିକଟକୁ ଘେନି ଆସୁଛି, ଯେଉଁ ତତ୍ତ୍ୱ ଅନୁଯାୟୀ ସିନ୍ଧୁ ଉପତ୍ୟକା ସଭ୍ୟତାର ବୟସକୁ, ସମ୍ଭବତଃ, ଆଉ କେତେ ଶତାବ୍ଦୀ ପଛେଇ ନେବାକୁ ହେବ ।

ସିନ୍ଧୁ ଉପତ୍ୟକା ସଭ୍ୟତାର ବୟସ ନିର୍ଣ୍ଣୟ କରିବାକୁ ଚେଷ୍ଟା କଲା ବେଳେ ଏହି କଥାଟି ମନେ ରଖିବା ବିଶେଷ ଦରକାର ଯେ, ଭାରତର ଉପରୋକ୍ତ ବିଭିନ୍ନ ଅଞ୍ଚଳରେ ହରପ୍‌ପା ଯୁଗର ନଗର ଏବଂ ଜନବସତିଗୁଡ଼ିକ ଦୀର୍ଘ କାଳ ଧରି ଅବସ୍ଥିତ ଥିଲା । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇ ପାରେ, କାଥିଆବାଡ଼ ଉପଦ୍ୱୀପରେ ଖନନ କାର୍ଯ୍ୟ ଫଳରେ ଦେଖିବାକୁ ମିଳିଛି ଯେ, ସିନ୍ଧୁ ଉପତ୍ୟକାର ପ୍ରଧାନ ନଗର କେନ୍ଦ୍ରଗୁଡ଼ିକର ବିଲୋପ ପରେ ମଧ୍ୟ ହରପ୍‌ପା ଯୁଗର ସଂସ୍କୃତିର ବାହକ ନଗର ଜନପଦମାନ ସେପର୍ଯ୍ୟନ୍ତ ସେଠାରେ ଅସ୍ତିତ୍ୱ ବଜାଏ ରଖିଥିଲା, ଯଦିଓ ସେସବୁର ଚେହେରାରେ ଅନେକ ପରିବର୍ତ୍ତନ ଘଟିଥିଲା । ପଞ୍ଜାବ ଏବଂ ହରିଆନାରେ ନୂଆ ନୂଆ ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ଫଳରେ ଭାରତୀୟ ବିଶେଷଜ୍ଞମାନେ ଏଭଳିସବୁ ସାକ୍ଷ୍ୟ ପ୍ରମାଣ ପାଇଛନ୍ତି, ଯେଉଁଥିରୁ ଜଣାଯାଏ,

ହରପ୍ପା ସଭ୍ୟତାର ଅନ୍ତର୍ଭୁକ୍ତ ଅଞ୍ଚଳର "ପୂର୍ବ" ପ୍ରାନ୍ତୀୟ ସୀମା ପରେ ମଧ୍ୟ ହରପ୍ପା ଯୁଗର ବସତି ଟିକ୍କି ରହିଥିଲା ।

## ନଗର ଏବଂ ତା'ର ଗଠନ ବୈଶିଷ୍ଟ୍ୟ

ବଡ଼ ବଡ଼ ସହର ଏବଂ ନଗର ପରିକଳ୍ପନା ଏବଂ ନଗର ସ୍ଥାପତ୍ୟର ସୁଠାମ ଏବଂ ସୁନିର୍ଦ୍ଦିଷ୍ଟ ବ୍ୟବସ୍ଥାଦିର ଅସ୍ତିତ୍ୱ ପ୍ରମାଣ କରେ ଯେ, ହରପ୍ପା ସଭ୍ୟତା ଏକଦା ଉନ୍ନତିର ଏକ ସୁଉଚ୍ଚ ସ୍ତରରେ ଅବତୀର୍ଣ୍ଣ ହୋଇଥିଲା ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ଏହି ସଭ୍ୟତାର ଅନ୍ତର୍ଗତ କେତେକ ପ୍ରଧାନ ସହରର ଧ୍ୱଂସାବଶେଷ ଆବିଷ୍କାର କରିଛନ୍ତି । ସେସବୁ ମଧ୍ୟରେ ବୃହତ୍ତମ ହେଉଛି ହରପ୍ପା ଏବଂ ମୋହେଞ୍ଜୋ-ଦାରୋ ।

ମୋହେଞ୍ଜୋ-ଦାରୋ ସହରଟି ଆନୁମାନିକ ଅଢ଼େଇ ବର୍ଗ କିଲୋମିଟର ଧରି ବିସ୍ତୃତ ଥିଲା ଏବଂ ତା'ର ଲୋକ ସଂଖ୍ୟା ପ୍ରାୟ ୩୫ ହଜାର ପର୍ଯ୍ୟନ୍ତ ହୋଇଥିବ ବୋଲି ଅନୁମାନ କରାଯାଏ (ଯେଉଁଠି କେତେକ ବିଶେଷଜ୍ଞଙ୍କ ମତରେ, ଏହି ସହରର ଲୋକ ସଂଖ୍ୟା ଆଉରି ଅନେକ ବେଶି ଥିଲା । ଏପରିକି କେତେକ ମନେ କରନ୍ତି, ଏହି ସଂଖ୍ୟାଟି ଏକ ଲକ୍ଷ ଥିଲା ବୋଲି) ।

ଉପରୋକ୍ତ ଖନନ କାର୍ଯ୍ୟର ଫଳାଫଳକୁ ବିଗ୍ଭର କଲେ, ଜଣାଯାଏ ଯେ, ହରପ୍ପା ସଭ୍ୟତାର ନଗର କେନ୍ଦ୍ରଗୁଡ଼ିକ ମଧ୍ୟରୁ ପ୍ରତ୍ୟେକ ଗୋଟିଏ ପରିକଳ୍ପନା ଅନୁଯାୟୀ ନିର୍ମିତ ହୋଇଥିଲା । ବଡ଼ ବଡ଼ ସହରଗୁଡ଼ିକର ଥିଲା ଦୁଇଟି ପ୍ରଧାନ ଅଂଶ । ଏସବୁର ଥିଲା ଗୋଟିଏ ନଗର ଦୁର୍ଗ, ଯେଉଁଠି ସହରର କର୍ତ୍ତୃପକ୍ଷଙ୍କ ଲୋକମାନେ ବାସ କରୁଥିଲେ ଏବଂ ଅନ୍ୟ ଅଂଶଟି ଥିଲା ତଥାକଥିତ ନୀଚ ସହର, ଏଠାରେ ବାସଗୃହସବୁ ଥିଲା । ସହରର ଏହି ଦ୍ୱିତୀୟ ଅଂଶଟି ସାଧାରଣତଃ ନିର୍ମିତ ହେଉଥିଲା ଆୟତକ୍ଷେତ୍ର ଆକାରରେ । ଅନ୍ୟ ପକ୍ଷରେ, ସହରର ନଗର ଦୁର୍ଗଟି ଥିଲା ସହରର ଅନ୍ୟ ଅଂଶଠାରୁ ଅଧିକ ଉଚ୍ଚ, ଇଟା ନିର୍ମିତ ବେଶ୍ ଉଚ୍ଚ ଏକ ମଞ୍ଚ ଉପରେ । ଏହି ଉଚ୍ଚ ମଞ୍ଚଟି ନଗର ଦୁର୍ଗଟିକୁ ବନ୍ୟା ଦାଉରୁ ରକ୍ଷା କରୁଥିଲା ଏବଂ ଏହି ବନ୍ୟା ଥିଲା ଏଠାରେ ସର୍ବାପେକ୍ଷା ଭୟଙ୍କର ପ୍ରାକୃତିକ ବିପର୍ଯ୍ୟୟ ମଧ୍ୟରୁ ଅନ୍ୟତମ, ଯାହାକି ମଝିରେ ମଝିରେ ସିନ୍ଧୁ ଉପତ୍ୟକାର ସହରଗୁଡ଼ିକୁ ଗ୍ରାସ କରୁଥିଲା । ସହରର ଉପରୋକ୍ତ ଅଂଶ ଦୁଇଟି ମଧ୍ୟରେ ଯୋଗାଯୋଗ ସ୍ପଷ୍ଟତଃ ସୀମାବଦ୍ଧ ଥିଲା । ଯଥା, ଦୃଷ୍ଟାନ୍ତ ସ୍ୱରୂପ, କାଲିବାଙ୍ଗାର ଖନନ କାର୍ଯ୍ୟ ଫଳରେ ଦେଖାଯାଇଛି ଯେ, ନଗର ଦୁର୍ଗ ସହିତ "ନୀଚ ସହରର" ଯୋଗାଯୋଗର ପଥ ଥିଲା ମାତ୍ର ଦୁଇଟି ଫାଟକ । ଏଥିରୁ ଜଣାଯାଉଛି, ଦରକାର ପଡ଼ିଲେ, ଏହି ଦୁଇଟି ଯୋଗାଯୋଗ ପଥକୁ ବନ୍ଦ କରି ଦିଆଯାଉଥିଲା ଏବଂ ନଗର କର୍ତ୍ତୃପକ୍ଷ ନିଜକୁ ସାଧାରଣ ଲୋକଙ୍କ ଠାରୁ ବିଚ୍ଛିନ୍ନ କରି ନେଇ ପାରୁଥିଲେ । ସାର୍କୋଟାଦ୍ ଜନବସତିରେ ନଗର ଦୁର୍ଗଟିକୁ "ନୀଚ ସହର ଠାରୁ" ଏକ ଦୁର୍ଗ ପ୍ରାଚୀର ଦ୍ୱାରା ପୃଥକ୍ କରି ଦିଆଯାଇଥିଲା ।

ହରପ୍ପାରେ ନଗର ଦୁର୍ଗର ସୀମାରେ ଶୋଭାଯାତ୍ରାଦି କରିବା ପାଇଁ ଏକ ବିଶେଷ ଧରଣର ରାଜପଥ ନିର୍ମିତ ହୋଇଥିଲା । ଏଥିରୁ ପରିଷ୍କାର ବୁଝାଯାଏ ଯେ, ଏହି ରାଜପଥ ଦେଇ ସେନାବାହିନୀ

ସାମରିକ କାଇଦାରେ ଯାଉଥିଲେ, କିମ୍ବା ବିଭିନ୍ନ ପ୍ରକାରର ଶୋଭାଯାତ୍ରାର ଆୟୋଜନ ହେଉଥିଲା । ଦୁର୍ଗଟି ମୋଟା ପ୍ରାଚୀର ଏବଂ ଗମ୍ବୁଜ ଦ୍ୱାରା ସୁରକ୍ଷିତ ହୋଇଥିଲା । କାଲିବାଙ୍ଗାର ଖନନ କାର୍ଯ୍ୟ ଦ୍ୱାରା ଦେଖାଯାଇଛି ଯେ, ନଗର ଦୁର୍ଗର ବାହାର ପ୍ରତିରକ୍ଷା ବ୍ୟବସ୍ଥା ହିସାବରେ ପ୍ରକାଣ୍ଡ ଏବଂ ଚଉଡ଼ା ଇଟା ତିଆରି ଏକ ପ୍ରାଚୀର ଥିଲା ଏବଂ ତନ୍‌ମଧ୍ୟରେ ଧର୍ମୀୟ କାର୍ଯ୍ୟକଳାପ ପରିଚାଳନାର ଉପଯୋଗୀ ଏବଂ ଆପାତତଃ ଦୃଷ୍ଟିରେ ଶାସନ କାର୍ଯ୍ୟ ପରିଚାଳନା ପାଇଁ କୋଠା ଘରସବୁ ଥିଲା । ମୋହେଞ୍ଜୋ-ଦାରୋର ନଗର ଦୁର୍ଗରେ ବଡ଼ ଏକ ଜଳାଧାର ମଧ୍ୟ ଦେଖିବାକୁ ମିଳିଛି (ଏହାର ପ୍ରସ୍ଥ ୭ ମିଟର, ଦୈର୍ଘ୍ୟ ୧୨ ମିଟର ଏବଂ ଗଭୀରତା ପ୍ରାୟ ୨.୫ ମିଟର) । ଏହା, ସମ୍ଭବତଃ, କୌଣସି ଧର୍ମୀୟ ଅଟ୍ଟାଳିକା ବା ମନ୍ଦିରର ଅଂଶ ଥିଲା ଏବଂ ବିଶେଷ ଆନୁଷ୍ଠାନିକ ପୁଣ୍ୟସ୍ନାନ କାର୍ଯ୍ୟରେ ହୁଏତ ବ୍ୟବହୃତ ହେଉଥିଲା । ଜଳ ତୋଳିବାର ଏକ ବିଶେଷ ବ୍ୟବସ୍ଥା ଦ୍ୱାରା କୂଅରୁ ସ୍ୱଚ୍ଛ ଜଳ ସର୍ବଦା ଜଳାଧାରକୁ ଆସି ପାରୁଥିଲା । ଜଳାଶୟର ଅଳ୍ପ ଦୂରରେ ଥିଲା ଜନସାଧାରଣଙ୍କ ଦ୍ୱାରା ବ୍ୟବହୃତ ଶସ୍ୟଗୋଲାସବୁ ଏବଂ ସ୍ତମ୍ଭବସା ମଣ୍ଡପ । ଏଠାରେ, ସମ୍ଭବତଃ, ଜନସଭା ବସୁଥିଲା (କିମ୍ବା, ଆଉ କେତେକ ବିଶେଷଜ୍ଞଙ୍କ ମତରେ, ସହରର ହାଟ ହିସାବରେ ଏହା ବ୍ୟବହୃତ ହେଉଥିଲା) । ଏଠାରେ ଖନନ କାର୍ଯ୍ୟ ପରିଚାଳନା କରି ଏହିସବୁ ସ୍ତମ୍ଭର ଭିତ୍ତି ପିଣ୍ଡଗୁଡ଼ିକ ବାହାର କରାଯାଇଛି । ସେଥିରୁ ଅନୁମିତ ହୁଏ, ସ୍ତମ୍ଭଗୁଡ଼ିକ କାଠରେ ତିଆରି ହୋଇଥିଲା ଏବଂ ଏହି କାରଣରୁ ସେସବୁ ତିଷ୍ଠି ପାରି ନି ।

ହରପ୍ପା ନଗରରେ ମଧ୍ୟ ଏହି ଧରଣର ସର୍ବସାଧାରଣ ଶସ୍ୟଗୋଲାସବୁ ଆବିଷ୍କୃତ ହୋଇଛି । ସେସବୁ ଥିଲା ନଗର ଦୁର୍ଗର ଉତ୍ତର ଆଡ଼କୁ, ନଦୀ ନିକଟରେ । ଏଠାରେ ଗୋଲାଗୁଡ଼ିକର ନିକଟରେ ମିଳିଛି ପଥର ତିଆରି ବିଶେଷ ଧରଣର କେତେକ ମଞ୍ଚ । ଏଥିରୁ ଅନୁମିତ ହୁଏ, ଏହିସବୁ ମଞ୍ଚରେ ଶସ୍ୟ ଝଡ଼ାଝଡ଼ି ହେଉଥିଲା । ପ୍ରତ୍ନତତ୍ତ୍ୱବିଦ୍‌ମାନେ ଏଠାରେ ପଥର ମେଜିଆର ଫାଙ୍କରେ ଗହମ ଆଉ ଯଅଦାନା ସମେତ ଶିଷା ବି ପାଇଛନ୍ତି । ସମ୍ଭବତଃ, ନୌକା ସାହାଯ୍ୟରେ ଏହିସବୁ ଶସ୍ୟ ନଦୀ ପଥରେ ଅଣାଯାଉଥିଲା ଏବଂ ତା'ପରେ ଗୋଲାରେ ମହଜୁଦ୍ କରି ରଖାଯାଉଥିଲା ।

"ନୀଚ ସହର"ରେ ଯେଉଁସବୁ ସାଧାରଣ ଘରବାଡ଼ି ଥିଲା ସେସବୁ ସୁନିର୍ଦ୍ଦିଷ୍ଟ ଏକ ପରିକଳ୍ପନା ଅନୁଯାୟୀ ତିଆରି ହୋଇଥିଲା । ସହରର ଏହି ଅଂଶରେ କେତେକ ପ୍ରଧାନ ରାସ୍ତା ଥିଲା । ମୋହେଞ୍ଜୋ-ଦାରୋରେ ଏହିସବୁ ରାସ୍ତାର ଚଉଡ଼ା ୧୦ ମିଟର ପର୍ଯ୍ୟନ୍ତ ବି ହୋଇଥିଲା । ଛୋଟ ଛୋଟ ରାସ୍ତାସବୁ ବଡ଼ ବଡ଼ ରାସ୍ତା ସହିତ ସମକୋଣ ଭାବେ ଯୁକ୍ତ ହୋଇଥିଲା ଏବଂ ଛୋଟ ରାସ୍ତାଗୁଡ଼ିକ କେତେକ କ୍ଷେତ୍ରରେ ଏତେ ସରୁଥିଲା ଯେ, ସେସବୁ ମଧ୍ୟ ଦେଇ ଠେଲା ଗାଡ଼ି ଗଲା ଭଳି ଜାଗା ବି ନଥିଲା ।

ଘରଗୁଡ଼ିକର ଆକାର ପ୍ରକାର ଥିଲା ବିଭିନ୍ନ ରକମର । କେତେକ ତିନିତାଲା ଘର ମଧ୍ୟ ଥିଲା (ଘରଗୁଡ଼ିକର ସିଡ଼ିର ଭଗ୍ନାବଶେଷରୁ ଏହା ଅନୁମିତ ହୁଏ) ଏବଂ ସେସବୁର ଛାତ ଥିଲା ସମତଳ ଆଉ ଚେପ୍‌ଟା । ସେସବୁ ଥିଲା ସ୍ପଷ୍ଟତଃ ସଂଗତିସଂପନ୍ନ ନାଗରିକମାନଙ୍କର ଘର । ସେସବୁଥିରେ ଝରକା ବୋଲି କିଛି ନଥିଲା, ଘର ଭିତରକୁ ଆଲୋକ ଏବଂ ପବନ ଯାତାୟତ କରୁଥିଲା କାନ୍ଥ ଉପରେ ଥିବା ଛୋଟ ଛୋଟ ଜଳକବାଟି ଦେଇ । ଘରଗୁଡ଼ିକର ଦରିଜାସବୁ କାଠରେ ତିଆରି ହୋଇଥିଲା । କାଠ ଛଡ଼ା ପିଟାକାଦୁଅ କାଠ ମଧ୍ୟ ଘର ତିଆରିରେ ବ୍ୟବହୃତ ହେଉଥିଲା । ପ୍ରତ୍ୟେକ ଘର ସହିତ ଥିଲା ଏକ ବିଶେଷ ଧରଣର ବାହାର ଘର ଏବଂ ଗୋଟିଏ ଲେଖାଏଁ ଅଗଣା । ସେଇ ଅଗଣାରେ

ତିଆରି ହେଉଥିଲା ରୋଷେଇଘର । ରୋଷେଇଘରେ ବିଶେଷ ଧରଣର ଚୁଲୀସବୁ ଏବଂ ଶସ୍ୟ ଆଉ ତେଲ ସାଇତି ରଖିବା ପାଇଁ ବଡ଼ ବଡ଼ ହାଣ୍ଡି ଥିଲା । ବିଶେଷ ଧରଣର ଏକ ଚୁଲୀରେ ରୁଟି ସେକା ହେଉଥିଲା । ଛୋଟ ଛୋଟ ପଶୁ ବି ଏହି ଅଗଣାରେ ରହୁଥିଲେ ।

"ନୀଚ ସହରରେ" ମଧ୍ୟ ଧର୍ମୀୟ ଉତ୍ସବ ପାଳନ ପାଇଁ ଘର ଥିଲା ବୋଲି ଅନୁମାନ କରାଯାଏ । ଇଂରେଜ ପ୍ରତ୍ନତତ୍ତ୍ୱବିଦ୍ ମାର୍ଟିମାର ହୁଇଲର ମୋହେଞ୍ଜୋ-ଦାରୋର ପ୍ରକାଣ୍ଡ ଏକ ମଞ୍ଚ ଉପରେ ସ୍ଥାପିତ ଏକ କୋଠା ଆବିଷ୍କାର କରିଛନ୍ତି । କୋଠାଟିରେ ଉପରକୁ ଉଠିବାର ସିଢ଼ି ଏବଂ ପଥର ନିର୍ମିତ ଭାସ୍କର୍ଯ୍ୟ ମୂର୍ତ୍ତିର ଟୁକୁରାସବୁ ମଧ୍ୟ ମିଳିଛି । ଏଥିରୁ ସେ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ, ସମଗ୍ର କୋଠାଟି ଦିନେ ଏକ ମନ୍ଦିର ଥିଲା ।

ଘର ତିଆରି କରିବାର ପ୍ରଧାନ ଉପାଦାନ ଥିଲା ପୋଡ଼ା ଇଟା । ଅପୋଡ଼ା କଞ୍ଚାମାଟିର ଇଟା ମଧ୍ୟ ବ୍ୟବହୃତ ହେଉଥିଲା ବୋଲି ଜଣାଯାଇଛି । କାଲିବାଙ୍ଗାରେ ପୋଡ଼ା ଇଟା ପ୍ରଧାନତଃ ବ୍ୟବହୃତ ହେଉଥିଲା କୂଅ ଏବଂ ସ୍ନାନାଗାର ଆଦି ନିର୍ମାଣରେ ।

ଏହିସବୁ ସହରର ପାନୀୟ ଜଳ ସରବରାହ ଏବଂ ଆବର୍ଜନା ନିଷ୍କାଶନ ପାଇଁ ନଗରକର୍ତ୍ତାମାନଙ୍କୁ ବହୁତ ନଜର ଦେବାକୁ ପଡ଼ୁଥିଲା ବୋଲି ଜଣାଯାଏ । ସହରର ପ୍ରାୟ ପ୍ରତ୍ୟେକଟି ଘରେ ଗୋଟିଏ ଲେଖାଏଁ କୂଅ ଥିଲା ଏବଂ ଜନସାଧାରଣଙ୍କ ବ୍ୟବହାର ପାଇଁ ବଡ଼ ବଡ଼ ରାସ୍ତାର ଧାରେ ଧାରେ କୂଅ ଖୋଳା ହେଉଥିଲା । ସିନ୍ଧୁ ସଭ୍ୟତା ଅନ୍ତର୍ଗତ ସହରଗୁଡ଼ିକରେ ମଇଳା ଆବର୍ଜନା ଏବଂ ଦୂଷିତ ଜଳ ଆଦି ନିଷ୍କାଶନର ଯେଉଁ ବ୍ୟବସ୍ଥା ଦେଖିବାକୁ ମିଳେ, ତାହା ପ୍ରାଚୀନ ପ୍ରାଚ୍ୟ ଦେଶଗୁଡ଼ିକ ମଧ୍ୟରେ ସର୍ବାପେକ୍ଷା ଏକ ଉନ୍ନତ ବ୍ୟବସ୍ଥା ବୋଲି ମନେ କରାଯାଏ । ସହରର ରାସ୍ତାଗୁଡ଼ିକ ମଧ୍ୟରେ କେଉଁଠି କେଉଁଠି ଏଭଳିସବୁ ବିଶେଷ ଗାତ ଥିଲା, ଯାହା ମଧ୍ୟ ଦେଇ ତରଳ ଆବର୍ଜନା ବାହାରି ଯାଉଥିଲା ବିଶେଷ ନାଳ ମଧ୍ୟକୁ । ସେଇସବୁ ନାଳକୁ ନିୟମିତ ଭାବେ ଯେ ପରିଷ୍କାର କରାଯାଉଥିଲା, ଏଥିରେ ସନ୍ଦେହ ନାହିଁ । ସେସବୁ ନିର୍ମିତ ହେଉଥିଲା ଇଟା ଦେଇ ଏବଂ ସେସବୁର ଉପର ଢାଙ୍କୁଣୀ ବି ତିଆରି ହେଉଥିଲା ଇଟା କିମ୍ବା ପଥର ଫଳକ ଦ୍ୱାରା । ସ୍ଥାନୀୟ ଜଳବାୟୁର ଅବସ୍ଥା, ସହରର ଜନବସତିର ଘନତା ଏବଂ ସ୍ୱାସ୍ଥ୍ୟରକ୍ଷା ବ୍ୟବସ୍ଥାର ତତ୍କାଳୀନ ନିମ୍ନ ମାନର ବସ୍ତୁର ଦୃଷ୍ଟିରୁ ପାନୀୟ ଜଳ ସରବରାହ ଏବଂ ଆବର୍ଜନା ନିଷ୍କାଶନର ଏହି ସୁଦକ୍ଷ ଏବଂ ଉଚ୍ଚ ମାନର ବ୍ୟବସ୍ଥା ଯେ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା, ଏ ବିଷୟରେ କୌଣସି ସନ୍ଦେହ ନଥିଲା ।

ସୌରାଷ୍ଟ୍ରର ଲୋଥାଲରେ ହରପ୍ପା ଯୁଗର ଆଉ ଏକ ସହର ଆବିଷ୍କୃତ ହୋଇଛି । ସହରଟିର ପରିକଳ୍ପନା ବଡ଼ ମୌଳିକ ଧରଣର । ଏହି ସହରଟି ଏକଦା କେବଳ ଯେ ଏକ ବାଣିଜ୍ୟ କେନ୍ଦ୍ର ଥିଲା, ତା ନୁହେଁ । ସ୍ପଷ୍ଟତଃ, ଏହା ଏକ ବନ୍ଦର ଥିଲା ବୋଲି ଜଣାଯାଏ । ସମଗ୍ର ସହରଟି ପଥର ପ୍ରାଚୀର ଦ୍ୱାରା ଘେରା ହୋଇଥିଲା ଏବଂ ଜନବସତିଗୁଡ଼ିକ ବିଶେଷ ଧରଣର ଏଭଳି ଏକ ଉନ୍ନତ ଭିତ୍ତି ଉପରେ ସ୍ତର ସ୍ତର ହୋଇ ବିନ୍ୟସ୍ତ ଥିଲା, ଯା ଫଳରେ ବନ୍ୟାକବଳରୁ ସହରଟି ରକ୍ଷା ପାଉ ଯାଉଥିଲା । ଏହି ନଗର ବସତିର ପୂର୍ବ ଦିଗକୁ ଥିଲା ଜାହାଜ ନିର୍ମାଣ ଏବଂ ମରାମତର ଗୋଟିଏ କର୍ମଶାଳା (କର୍ମଶାଳାର ଆୟତନ ଥିଲା ୨୧୮ ମିଟର × ୩୭ ମିଟର) । କେତୋଟି ନାଳ ଦ୍ୱାରା କର୍ମଶାଳାଟି ଯୁକ୍ତ ହୋଇଥିଲା ନଦୀ ସହିତ ଏବଂ ତା'ପରେ ନଦୀ ଜରିଆରେ ସମୁଦ୍ର ସହିତ । ଖନନ କାର୍ଯ୍ୟ ପରିଚାଳନା ଫଳରେ ଏଠାରେ ଅଢ଼େଇ କିଲୋମିଟରରୁ ବେଶି ଲମ୍ବର ଗୋଟିଏ କେନାଲର ନିଦର୍ଶନ

ମଧ୍ୟ ମିଳିଛି । ସହରର ଅବଶିଷ୍ଟାଂଶରେ ଥିଲା କେବଳ ବାସଗୃହସବୁ ଏବଂ ପ୍ରଧାନ ରାସ୍ତାଗୁଡ଼ିକ ଥିଲା ପ୍ରାୟ ଛଅ ମିଟର ଚଉଡ଼ା ଏବଂ ଉପରାସ୍ତାଗୁଡ଼ିକ ଥିଲା ସରୁ, ଦୁଇ ମିଟରରୁ ଅଧିକ ଚଉଡ଼ା ନୁହେଁ । ଏଠାରେ ପ୍ରଧାନ ରାସ୍ତାଗୁଡ଼ିକର ପାଖେ ପାଖେ ହସ୍ତଶିଳ୍ପୀ କାରିଗରମାନଙ୍କର ଘରସବୁ ମିଳିଛି ।

## ଅଧିବାସୀମାନଙ୍କର ଜୀବିକା

ନଗର ନିର୍ମାଣ କ୍ଷେତ୍ରରେ ବିକାଶର ଉନ୍ନତ ସ୍ତରକୁ ଉଠିବା ସତ୍ତ୍ୱେ ସିନ୍ଧୁ ଉପତ୍ୟକାର ଲୋକସଂଖ୍ୟାର ଅଧିକାଂଶ ସେତେବେଳେ ବାସ କରୁଥିଲେ ଗ୍ରାମର ଜନବସତିଗୁଡ଼ିକରେ । ସେମାନେ ମୁଖ୍ୟତଃ କୃଷିକର୍ମରେ ବ୍ୟାପୃତ ରହୁଥିଲେ । ସିନ୍ଧୁ ଉପତ୍ୟକା ଥିଲା ପ୍ରାଚୀନ ଜଗତରେ ଆଦି କୃଷି କେନ୍ଦ୍ରଗୁଡ଼ିକ ମଧ୍ୟରୁ ଅନ୍ୟତମ । ସଭ୍ୟତାର ଏକେବାରେ ଆଦିମ କାଳରୁ ବିଭିନ୍ନ ଧରଣର ଫସଲ ଏଠାରେ ଚାଷ ହେଉଥିଲା । ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କ ଆବିଷ୍କାରକୁ ଭିତ୍ତି କରି ବିଚାର କଲେ, ହରପ୍ପା ସଭ୍ୟତାର ଲୋକେ ଦୁଇ ପ୍ରକାରର ଗହମ, ଯଅ, ତିଳ ଏବଂ ବରଗୁଡ଼ି ଚାଷ କରୁଥିଲେ । ସିନ୍ଧୁ ଉପତ୍ୟକାର ଜନବସତିଗୁଡ଼ିକରେ କିନ୍ତୁ ଧାନ ଚାଷର କୌଣସି ନିଦର୍ଶନ ମିଳି ନାହିଁ । ତେବେ ଲୋଥାଲ ଏବଂ ରଙ୍ଗପୁରରେ (ସୌରାଷ୍ଟ୍ର) କାଦୁଅମାଟିର ସ୍ତର ମଧ୍ୟରେ ଏବଂ ମାଟିପାତ୍ର ଟୁକୁରା ଭିତରେ ଧାନର ତୁଷ ଦେଖିବାକୁ ମିଳିଛି । ଏଥିରୁ ଆମେ ଧରି ନେଇ ପାରେ ଯେ, ସୌରାଷ୍ଟ୍ରର ଏହି ଅଞ୍ଚଳର ଲୋକେ ଧାନ ଚାଷ କରୁଥିଲେ । ମୋହେଞ୍ଜୋ-ଦାରୋରେ ଖନନ କାର୍ଯ୍ୟ ଚଳାଇବା ବେଳେ ଛୋଟ ଟୁକୁରାଏ ସୂତାଲୁଗା ମିଳିଛି । ଏଥିରୁ ସ୍ପଷ୍ଟ ବୁଝାଯାଏ ଯେ, ସେତେବେଳେ ଏହି ଅଞ୍ଚଳରେ କପା ଚାଷ ହେଉଥିଲା । ଫୁଲଫଳ ବଗିଚା ମଧ୍ୟ ସେତେବେଳେ କରାଯାଉଥିଲା । ଏହି ଯୁଗରେ କୃଷକମାନେ ସିନ୍ଧୁ ନଦୀର ବନ୍ୟାକୁ କାର୍ଯ୍ୟରେ ଲଗାଇବାର କୌଶଳ ଜାଣିଥିଲେ ଏବଂ, ସମ୍ଭବତଃ, ଜମିରେ ଜଳସେଚନ ବ୍ୟବସ୍ଥା ମଧ୍ୟ କରୁଥିଲେ । କେତେକ ବିଶେଷଜ୍ଞଙ୍କ ମତରେ (ଦୃଷ୍ଟାନ୍ତ ସ୍ୱରୂପ, ଡି.ଡି.କୋସାମ୍ବି), ସେତେବେଳେ ଲଙ୍ଗଳର ବ୍ୟବହାର ଜଣା ନଥିଲା ଏବଂ କୃଷକମାନେ ଜମି ଚାଷ କରୁଥିଲେ ଏକ ଧରଣର ହାଲୁକା ମଇ ଭଳି ଜଣ୍ଡା ଦ୍ୱାରା ।

କିନ୍ତୁ କାଲିବାଙ୍ଗାରେ ପ୍ରାକ୍‌ହରପ୍ପା ଯୁଗର ସ୍ତରଗୁଡ଼ିକର ଖନନ କାର୍ଯ୍ୟ ଚାଲୁଥିଲା ବେଳେ ସେଠାରେ ଜମି ଚାଷ ହେଉଥିବା ଲଙ୍ଗଳର କେତେକ ଟୁକୁରା ମିଳିଥିଲା । ଏବଂ ଏହିଥିରୁ ମନେ କରାଯାଏ ଯେ, ଏପରିକି ପ୍ରାକ୍‌ହରପ୍ପା ଯୁଗର ଲୋକେ ମଧ୍ୟ ଲଙ୍ଗଳ ବ୍ୟବହାର କରୁଥିଲେ । ତେଣୁ ହରପ୍ପାର ଲୋକେ କୃଷିରେ ବ୍ୟବହୃତ ଏହି ଗୁରୁତ୍ୱପୂର୍ଣ୍ଣ ଯନ୍ତ୍ରଟିକୁ ଯେ ବ୍ୟବହାର କରୁଥିଲେ, ସେ ବିଷୟରେ ସନ୍ଦେହ ନାହିଁ ।

ସିନ୍ଧୁ ସଭ୍ୟତା ଯୁଗରେ ଗୃହପାଳିତ ପଶୁମାନଙ୍କର ରକ୍ଷଣାବେକ୍ଷଣ ଗୁରୁତ୍ୱପୂର୍ଣ୍ଣ ଥିଲା । ଏହି ସମୟର ଗୃହପାଳିତ ପଶୁମାନଙ୍କ ମଧ୍ୟରେ ଥିଲେ ମେଣ୍ଢା, ଛେଳି, ଗୋରୁ ଏବଂ କୁକୁର । କୁକୁଡ଼ା ଚାଷ ମଧ୍ୟ ସେତେବେଳେ ହେଉଥିଲା । ମନେ ହୁଏ, ସେତେବେଳେ ହାତୀକୁ ମଧ୍ୟ ପୋଷ ମନାଯାଉଥିଲା । ସେଠାକାର ଲୋକେ ଯେ ସେତେବେଳେ ଘୋଡ଼ାକୁ ଗୃହପାଳିତ ପଶୁ ରୂପେ

ବ୍ୟବହାର କରୁଥିଲେ, ତା'ର କୌଣସି ପ୍ରତ୍ୟକ୍ଷ ପ୍ରମାଣ ଏପର୍ଯ୍ୟନ୍ତ ମିଳିନି । ତେବେ ଏହି ପ୍ରଶ୍ନଟି ନେଇ ଏପର୍ଯ୍ୟନ୍ତ ଗବେଷଣା ଚାଲିଛି ।

ତମ୍ବା ଏବଂ ବ୍ରୋଞ୍ଜ ଥିଲା ସେତେବେଳେ ପ୍ରଧାନ ଧାତୁ, ଯେଉଁଥିରେ ସେମାନେ ଯନ୍ତ୍ରପାତି, ପାତ୍ର, ଅସ୍ତ୍ରଶସ୍ତ୍ର ଏବଂ ଅନ୍ୟାନ୍ୟ ଜିନିଷ ତିଆରି କରୁଥିଲେ । ଧାତୁକୁ ତରଳେଇବା, ଢଳେଇ କରିବା ଏବଂ ଯୋଡ଼ ଦେବା କୌଶଳ ସେତେବେଳକୁ ପ୍ରୟୋଗ କରାଯାଉଥିଲା । ଏହି ସମୟରେ ଧାତୁ ନିର୍ମିତ ବିଭିନ୍ନ ବସ୍ତୁର ରାସାୟନିକ ବିଶ୍ଳେଷଣ ଫଳରେ ଦେଖାଯାଇଛି ଯେ, ସ୍ୱଳ୍ପ ପରିମାଣର ନିକେଲ ଏବଂ ଆର୍ସେନିକର ମିଶ୍ରଣ ସେତେବେଳେ କରାଯାଉଥିଲା । ଧାତୁରେ ଛୋଟ ଛୋଟ ମୂର୍ତ୍ତି ବି ସେତେବେଳେ ତଥାକଥିତ cire perdue (ମହମ ଲଗେଇବା) ପଦ୍ଧତିରେ ନିର୍ମାଣ କରାଯାଉଥିଲା ।

ତେବେ ଏହା ଦ୍ୱାରା ଯେ ପଥରର ଗୁରୁତ୍ୱ ସେତେବେଳେ କମି ଯାଇଥିଲା, ତା ନୁହେଁ । ବରଂ, ପଥରକୁ ଖୋଳି ଦୈନନ୍ଦିନ ବ୍ୟବହାର୍ଯ୍ୟ ବିଭିନ୍ନ ଜିନିଷ ଏବଂ ଅଳଙ୍କାର ଆଦି ତିଆରି ହେଉଥିଲା । କିନ୍ତୁ ସିନ୍ଧୁ ଉପତ୍ୟକାର ଜନବସତିଗୁଡ଼ିକରେ ଲୁହାର କୌଣସି ନିଦର୍ଶନ ମିଳି ନାହିଁ । ଧାତୁ ହିସାବରେ ଲୁହା ଭାରତୀୟ ଇତିହାସର ଏକ ପରବର୍ତ୍ତୀ ସ୍ତରରେ ଆବିର୍ଭୂତ ହୋଇଥିଲା ।

ସିନ୍ଧୁ ସଭ୍ୟତା ଯୁଗର ସ୍ୱର୍ଣ୍ଣକାରମାନେ ରୁପା ଏବଂ ସୁନାରେ ଅଳଙ୍କାର ତିଆରି କରୁଥିଲେ । ସ୍ଥାନୀୟ ଅଭିଜାତ ସଂପ୍ରଦାୟର ନାଗରିକମାନଙ୍କ ମଧ୍ୟରେ ଦାମିକିଆ ଅଳଙ୍କାରର ଯଥେଷ୍ଟ ଜନପ୍ରିୟତା ଥିଲା ।

ସୂତାକଟା ଏବଂ ଲୁଗା ବୁଣା ଭଳି କୁଟୀରଶିଳ୍ପର ବ୍ୟାପକ ପ୍ରଚଳନ ହରପ୍ପା ସଭ୍ୟତା ଅମଳରେ ଘଟିଥିଲା । ସେଇଭଳି ହାଡ଼ ଏବଂ ଧାତୁ ଉପରେ ଖୋଦେଇ କାମ ଏବଂ ମାଟିପାତ୍ର ନିର୍ମାଣ ଶିଳ୍ପ ମଧ୍ୟ ବହୁଳ ଭାବେ ପ୍ରଚଳିତ ଥିଲା । ସିନ୍ଧୁ ଉପତ୍ୟକାରେ ଖନନ କାର୍ଯ୍ୟ ଚଳେଇଲା ବେଳେ ଅନେକ ଘରୁ ସୂତାକଟା ଅରଟ ମିଳିଥିଲା । ଏହି ଅମଳର ମାଟିପାତ୍ରଗୁଡ଼ିକରେ ମଧ୍ୟ ବିଭିନ୍ନ ଚିତ୍ର ଏବଂ ଅଲଙ୍କରଣ କରାଯାଇଥିଲା । ତେବେ ସେସବୁ ଉପରେ ଆୟତକ୍ଷେତ୍ର ଆକାରର ନକସା ଏବଂ ଗଛବୃଛର ବିମୂର୍ତ୍ତ ଛବି ଅଙ୍କାଯାଉଥିଲା । କୁମ୍ଭାର ଚକରେ ହାଣ୍ଡି ଏବଂ ଥାଳି ତିଆରି ହେଉଥିଲା ଏବଂ ତା'ପରେ ସେସବୁ ବିଶେଷ ଧରଣର ଭାଟିରେ ପୋଡ଼ା ହେଉଥିଲା । ପ୍ରଲେପ ଦିଆ ଚକ୍‌ଚକ୍ ମାଟିପାତ୍ର ମଧ୍ୟ ତିଆରି ହେଉଥିଲା ସେତେବେଳେ ।

## ରାଜନୈତିକ ସଂଗଠନ ଏବଂ ସାମାଜିକ ବ୍ୟବସ୍ଥା

ସିନ୍ଧୁ ଉପତ୍ୟକା ସଭ୍ୟତାର ରାଜନୈତିକ ସଂଗଠନ ସଂପର୍କିତ ବିଷୟଟି ଏବେ ବି ବିଶେଷଜ୍ଞମାନଙ୍କ ମଧ୍ୟରେ ବିତର୍କମୂଳକ ହୋଇ ରହିଛି । ମୋହେଞ୍ଜୋ-ଦାରୋ, ହରପ୍ପା, କାଲିବାଙ୍ଗା ଏବଂ ଅନ୍ୟାନ୍ୟ ନଗର ବସତିରେ ନଗର ଦୁର୍ଗର ଅବସ୍ଥିତି ଆବିଷ୍କାର ହେବା ଫଳରେ ଏହି ସମାଜରେ ଶ୍ରେଣୀ ବିନ୍ୟାସର ଅସ୍ତିତ୍ୱ ଥିଲା ବୋଲି ଯେଉଁ ଧାରଣା କରାଯାଏ, ତାହା ସମର୍ଥିତ ହେଉଛି । ଶ୍ରେଣୀ ସମାଜ ଉଦ୍‌ଭବ ହେବା ପୂର୍ବରୁ ସିନ୍ଧୁ ଉପତ୍ୟକା ସଭ୍ୟତାର ଉଦ୍‌ଭବ ଘଟିଥିଲା ବୋଲି କେତେକ ବିଦେଶୀ ବିଶେଷଜ୍ଞ ମତ ପୋଷଣ କରିଥାନ୍ତି, କିନ୍ତୁ ସେମାନଙ୍କର ଏହି ଧାରଣାଟି ଏପର୍ଯ୍ୟନ୍ତ ମାଟି ତଳୁ ମିଳିଥିବା ତଥ୍ୟ ପ୍ରମାଣାଦି ଦ୍ୱାରା ଯଥାର୍ଥ ଭାବେ ସମର୍ଥିତ ନୁହେଁ ।

ଉପରୋକ୍ତ ଏହିସବୁ ସହରରେ ଅବସ୍ଥିତ ନଗର ଦୁର୍ଗଗୁଡ଼ିକରେ ଖୁବ୍ ସମ୍ଭବତଃ ନଗର ଶାସକଙ୍କର (କିମ୍ବା ଶାସକମାନଙ୍କର) ସହରକାର୍ଯ୍ୟାଳୟ ଏବଂ ପ୍ରାସାଦ ଅବସ୍ଥିତ ଥିଲା । ସହରମାନଙ୍କର ମୁଖ୍ୟ ଶାସନକେନ୍ଦ୍ର ଏହି ନଗର ଦୁର୍ଗରେ ଅବସ୍ଥିତ ଥିଲା ବୋଲି ମନେ କରାଯାଏ ଏବଂ ଏହିସବୁ କେନ୍ଦ୍ରରୁ ସହରଗୁଡ଼ିକର ଜଳ ଯୋଗାଣ ଏବଂ ଆବର୍ଜନା ନିଷ୍କାଶନର ଜଟିଳ ବ୍ୟବସ୍ଥାସବୁ ନିୟନ୍ତ୍ରିତ ହେଉଥିଲା । ସାର୍ବସାଧାରଣ ଖାଦ୍ୟ ଗୋଲାଗୁଡ଼ିକର ଦାୟିତ୍ୱ ଯେ ପୌରଶାସନର ଏହି ପ୍ରତିଷ୍ଠାନଗୁଡ଼ିକର ଥିଲା, ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ଏହା ସ୍ପଷ୍ଟ ଯେ, ପ୍ରତ୍ୟେକ ସହରରେ ଗୋଟିଏ ଲେଖାଏଁ ବିଶେଷ ନଗର ପରିଷଦର ଅସ୍ତିତ୍ୱ ଥିଲା । ଏହିସବୁ ପରିଷଦର ସଦସ୍ୟମାନେ ଏକ ପ୍ରକାରର ସମ୍ମିଳନୀ ମଣ୍ଡପରେ – ମୋହେଞ୍ଜୋ-ଦାରୋର ଖନନକ୍ଷେତ୍ରରେ ଯେମିତି ଆବିଷ୍କୃତ ହୋଇଛି – ମଝିରେ ମଝିରେ ଏକତ୍ରିତ ହେଉଥିଲେ, ଏହା ସମ୍ଭବ ବୋଲି ମନେ ହୁଏ ।

ଭାରତୀୟ ପ୍ରତ୍ନତତ୍ତ୍ୱବିଦ୍‌ମାନେ କାଲିବାଙ୍ଗାରେ ଯେଉଁ ଖନନ କାର୍ଯ୍ୟ ଚଳାଇଥିଲେ, ତା ଫଳରେ ବହୁ କୌତୂହଳୋଦ୍ଦୀପକ ତଥ୍ୟ ଉଦ୍‌ଘାଟିତ ହୋଇଛି । ଯଥା, ଏଠାରେ କେବଳ ନଗର ଦୁର୍ଗଟି ନୁହେଁ, "ନୀଚ ସହର" ମଧ୍ୟ ବୁରୁଜ ଯୁକ୍ତ ପ୍ରାଚୀର ଦ୍ୱାରା ଘେରା ଥିଲା ବୋଲି ଜଣାଯାଇଛି । କାଲିବାଙ୍ଗାର ଥିଲା ଦୁଇଟି ଅଂଶ – ଉତ୍ତର ଏବଂ ଦକ୍ଷିଣ ଅଂଶ । ଉତ୍ତର ଅଂଶଟିରେ ଥିଲା ବାସଗୃହସବୁ, କିନ୍ତୁ ନଗର ଦୁର୍ଗର ଦକ୍ଷିଣାଂଶରେ ଏଭଳି କୌଣସି ଗୃହ ନଥିଲା । ଏହି ଶେଷୋକ୍ତ ଅଂଶରେ ଖରାରେ ସେକା ହୋଇଥିବା ଇଟାରେ ତିଆରି କେତୋଟି ବିରାଟ ଭିତ୍ତି ମଞ୍ଚ ଆବିଷ୍କୃତ ହୋଇଛି । ସେସବୁ ମଧ୍ୟରୁ ଗୋଟିକର "ଶୀର୍ଷଦେଶରେ" କେତୋଟି ବେଦୀର ଭଗ୍ନାବଶେଷ ମିଳିଛି । ଏହି ଘଟଣାଟି କେତେକ ଭାରତୀୟ ବିଶେଷଜ୍ଞଙ୍କ ମତରେ (ଯଥା, ବି.ବି. ଲାଲଙ୍କ ମତରେ), ଏହି ଅନୁମାନ ସପକ୍ଷରେ ଯୁକ୍ତି ଯୋଗାଇ ଦେଉଛି ଯେ, ନଗର ଦୁର୍ଗର ଦକ୍ଷିଣାଂଶରେ ନଗର କର୍ତ୍ତାଙ୍କ ବାସଭବନ ନଥିଲା, ଏଠାରେ ଥିଲା ଧର୍ମୀୟ ଅନୁଷ୍ଠାନାଦି ପାଳନ ପାଇଁ ବିଶେଷ ଧରଣର ମନ୍ଦିରାଦି । ଏହି ବିଶେଷ କ୍ଷେତ୍ରରେ ନଗର ଦୁର୍ଗର ଉତ୍ତରାଂଶରେ ଅବସ୍ଥିତ ଲୋକବସତିଗୁଡ଼ିକ ପୁରୋହିତମାନଙ୍କ ବାସଗୃହ ବି ହୋଇ ପାରେ ।

ଇତିପୂର୍ବରୁ କୁହାଯାଇଛି, ସିନ୍ଧୁ ସଭ୍ୟତାର ବୃହତ୍ତମ ନଗର କେନ୍ଦ୍ର ଦୁଇଟି ଥିଲା ମୋହେଞ୍ଜୋ-ଦାରୋ ଓ ହରପ୍ପା । କେତେକ ବିଶେଷଜ୍ଞ ମନେ କରନ୍ତି, ଏହି ସହର ଦୁଇଟି, ସମ୍ଭବତଃ ଗୋଟିଏ ଅଖଣ୍ଡ ରାଜନୈତିକ ସଂଘର, କିମ୍ବା ପୃଥକ୍ ଦୁଇଟି ଏକକର ଦୁଇଟି ରାଜଧାନୀ ଥିଲା । ତେବେ ଏଠାର ସଂଶ୍ଳିଷ୍ଟ ବିଶାଳ ଅଞ୍ଚଳରେ ଯେଉଁସବୁ ଲୋକବସତି ବିଛୁଡ଼ି ହୋଇ ରହିଥିଲା, ସେସବୁର ଶାସନ କାର୍ଯ୍ୟ ପରିଚାଳନାର ପ୍ରଧାନ କେନ୍ଦ୍ର ଏବଂ ସେଇ କେନ୍ଦ୍ରର ଶାସନ ପଦ୍ଧତିସମୂହର ଧରଣ କିପରି ଥିଲା, ସେସବୁ ପ୍ରଶ୍ନର ଉତ୍ତର ଏପର୍ଯ୍ୟନ୍ତ ମିଳି ନାହିଁ । ଏ ପ୍ରସଙ୍ଗରେ ତାତ୍ପର୍ଯ୍ୟପୂର୍ଣ୍ଣ କଥାଟି ହେଉଛି, ଏକଦା ଏହି ଅଞ୍ଚଳରେ ଓଜନ ଏବଂ ମାପଚୁପ କରିବାର ଗୋଟିଏ ଅଖଣ୍ଡ ରୀତି, ଗୋଟିଏ ଲିଖନ ପଦ୍ଧତି, ସହରଗୁଡ଼ିକର ବିନ୍ୟାସ ଏବଂ ଗୃହ ନିର୍ମାଣର କାରୁକୌଶଳ ମଧ୍ୟରେ ଅତ୍ୟନ୍ତ ଘନିଷ୍ଠ ସାଦୃଶ୍ୟ ଆଦି ଲକ୍ଷ୍ୟ କରାଯାଇଛି ।

ହରପ୍ପା ଯୁଗର ସହରଗୁଡ଼ିକରେ ରାଜନୈତିକ ଶାସନ ବ୍ୟବସ୍ଥାର ଚରିତ୍ର ଏବଂ ଏହି ସଭ୍ୟତା ଅମଳରେ ସମଗ୍ର ସମାଜର ଶ୍ରେଣୀଗତ ଗଢ଼ଣର ଚେହେରା ସଂପର୍କିତ ବିଷୟଟି ଏବେ ବି ତୁମୁଳ ବିତର୍କର ବିଷୟ ହୋଇ ରହିଛି । କେତେକ ବିଶେଷଜ୍ଞଙ୍କ (ଯଥା, ସୋଭିଏତ୍ ୟୁନିଅନ୍‌ର ଭି.ଭି.

ସ୍ତରେ ଏବଂ ଜର୍ମାନ୍ ଗଣତାନ୍ତ୍ରିକ ପ୍ରଜାତନ୍ତ୍ରର ଡବ୍ଲ୍ୟୁ.ରୁବେନ୍) ମତରେ, ହରପ୍ପା ସଭ୍ୟତା ଗଢ଼ି ଉଠିଥିଲା ଏକ ଧରଣର କ୍ରୀତଦାସ ମାଲିକାନା ପ୍ରଥାକୁ ଭିତ୍ତି କରି । ତେବେ ଏହି ତଥ୍ୟର ସପକ୍ଷରେ ଏପର୍ଯ୍ୟନ୍ତ ପର୍ଯ୍ୟାପ୍ତ ତଥ୍ୟ ପ୍ରମାଣ ମିଳି ନାହିଁ । ଆଉ କେତେକ ବିଶେଷଜ୍ଞ ଏହି ସଭ୍ୟତାର ରାଜନୈତିକ ସଂଗଠନ ସହିତ ପ୍ରାଚୀନ ମେସୋପଟେମିୟାର ରାଜନୈତିକ ସଂଗଠନକୁ ତୁଳନା କରିଛନ୍ତି । ସେମାନେ ଅନୁମାନ କରନ୍ତି, ସିନ୍ଧୁ ଉପତ୍ୟକାରେ ମଧ୍ୟ ଅସଲ ପରିଚାଳକ ଥିଲେ ପୁରୋହିତ ସଂପ୍ରଦାୟ । ଏହି ସଂପ୍ରଦାୟଟି ଥିଲା ସମସ୍ତ ଜମିର ମାଲିକ । ତେବେ ଏକଥା ସମ୍ଭବ ଯେ, ହରପ୍ପା ଯୁଗର ସହରଗୁଡ଼ିକରେ ରାଷ୍ଟ୍ର ଶାସନର ଚରିତ୍ର ଥିଲା କ୍ଷମତାସଂପନ୍ନ ଅଳ୍ପସଂଖ୍ୟକ ବ୍ୟକ୍ତିଙ୍କ ଦ୍ୱାରା ପରିଚାଳିତ ପ୍ରଜାତାନ୍ତ୍ରିକ ସମାଜ ।

ସିନ୍ଧୁ ଉପତ୍ୟକାରେ ଖନନ କାର୍ଯ୍ୟ ପରିଚାଳନା ଫଳରେ ଜଣାଯାଇଛି ଯେ, ସମାଜରେ ସଂପତ୍ତି କ୍ଷେତ୍ରରେ ଲକ୍ଷଣୀୟ ଅସାମ୍ୟ ରହିଥିଲା । ବଡ଼ ବଡ଼ ଗୃହଗୁଡ଼ିକରେ ସଂଗତିସଂପନ୍ନ ନାଗରିକମାନେ, ଅର୍ଥାତ୍, ବଣିକ, ଅବସ୍ଥାସଂପନ୍ନ କାରିଗରମାନେ ଯେ ବାସ କରୁଥିଲେ, ଏହା ପରିଷ୍କାର ବୁଝାଯାଏ । ଦରିଦ୍ର ଲୋକେ ଅତି ଛୋଟ ଛୋଟ କୁଡ଼ିଆରେ ମୁଣ୍ଡ ଗୁଞ୍ଜିକି ରହୁଥିଲେ । ମୃତ୍ୟୁ ପରେ କବର ଦେବାର ପ୍ରଚଳିତ ପ୍ରଥାରୁ ମଧ୍ୟ ସଂପତ୍ତି କ୍ଷେତ୍ରରେ ଲକ୍ଷଣୀୟ ପାର୍ଥକ୍ୟ ଦୃଷ୍ଟିରେ ପଡ଼ିଥାଏ । ଧନୀ ନାଗରିକମାନଙ୍କୁ କବର ଦିଆଯାଉଥିଲା ନାନାବିଧ ରତ୍ନାଳଙ୍କାର ଏବଂ ଅଳଙ୍କରଣ କରା ପାତ୍ର ମଧ୍ୟରେ । ଦରିଦ୍ରମାନଙ୍କର କବରର ସାଜସଜ୍ଜା ଏବଂ ଉପକରଣ ଥିଲା ଅତି ସାଦାସିଧା । ବିଶେଷଜ୍ଞମାନେ ଅନୁମାନ କରନ୍ତି, ହରପ୍ପା ଯୁଗର ସହରଗୁଡ଼ିକରେ କ୍ରୀତଦାସ ମଧ୍ୟ ଥିଲେ । ସେମାନେ ଦୀନହୀନ କୁଟୀରରେ ବାସ କରୁଥିଲେ ଏବଂ ଫସଲ ଅମଳ କରୁଥିଲେ, ଭାରୀ ବୋଝ ବହୁଥିଲେ ଏବଂ, ସମ୍ଭବତଃ, ଭୂଗର୍ଭସ୍ଥ ନର୍ଦ୍ଦମାର ଆବର୍ଜନା ଆଦି ହାତ ଦେଇ ପରିଷ୍କାର କରୁଥିଲେ । ହରପ୍ପାର ନଗର ଦୁର୍ଗର ପ୍ରାଚୀରର ଆଖପାଖରେ ସର୍ବସାଧାରଣ ଶସ୍ୟ ଗୋଲାଗୁଡ଼ିକ ନିକଟରେ ଏବଂ ଫସଲ ଅମଳର ମଞ୍ଚଗୁଡ଼ିକର ଖୁବ୍ ପାଖକୁ ଲାଗି ଏଭଳିସବୁ ଦୀନହୀନ କୁଟୀର ମିଳିଛି, ଯେଉଁଗୁଡ଼ିକୁ ଦେଖିଲେ, ସ୍ପଷ୍ଟ ମନେ ହୁଏ ଯେ, ସେଠାରେ ଗୋତି ମଜୁରିଆ, କିମ୍ବା କ୍ରୀତଦାସମାନେ ରହୁଥିଲେ । କାଲିବାଙ୍ଗା, କିମ୍ବା ଲୋଥାଲରେ ଏଭଳି କୌଣସି କୁଟୀର କିନ୍ତୁ ମିଳିନି । ବିଶେଷଜ୍ଞମାନେ (ଯଥା, ଫରାସୀ ପ୍ରତ୍ନତତ୍ତ୍ୱବିଦ୍ ଜେ.ଏମ୍.କାସାଲ୍) ଏହା ଫଳରେ ମନେ କରନ୍ତି ଯେ, ଶେଷୋକ୍ତ ସହରଗୁଡ଼ିକର ଶାସନ ବ୍ୟବସ୍ଥା ହରପ୍ପାରେ କ୍ଷମତାଧିଷ୍ଠ ଆଧିପତ୍ୟ ଜାହିରକାରୀ ଶାସନ ବ୍ୟବସ୍ଥା ଠାରୁ ଅପେକ୍ଷାକୃତ ଉଦାର ଥିଲା । ଯଦିଓ ଏଭଳି ଏକ ସିଦ୍ଧାନ୍ତରେ ଉପନୀତ ହେବା ସପକ୍ଷରେ ଏସବୁ ସାକ୍ଷ୍ୟ ପ୍ରମାଣ ଯଥେଷ୍ଟ ନୁହେଁ, ତେବେ ହରପ୍ପା ଯୁଗର ଗୋଟିଏ ସହର ଠାରୁ ଆଉ ଏକ ସହରର ରାଜନୈତିକ ସଂଗଠନର ତାରତମ୍ୟ ଥିବାଟା ସମ୍ଭବ ବୋଲି ମନେ ହୁଏ । ସିନ୍ଧୁ ସଭ୍ୟତାରେ କ୍ରୀତଦାସମାନେ ଥିଲେ ବୋଲି ଇଂରେଜ ପ୍ରତ୍ନତତ୍ତ୍ୱବିଦ୍ ପଣ୍ଡିତ ଡି.ଏଚ୍. ଗର୍ଡନ୍ ଏକ ଅତ୍ୟନ୍ତ କୌତୂହଳୋଦ୍ଦୀପକ ବକ୍ତବ୍ୟ ଉପସ୍ଥାପିତ କରିଛନ୍ତି । ସେ କହିଛନ୍ତି, ଏଠାରେ ମିଳିଥିବା କେତେକ ପୋଡ଼ାମାଟିର ମୂର୍ତ୍ତି ବାସ୍ତବରେ କ୍ରୀତଦାସଙ୍କ ମୂର୍ତ୍ତି ଛଡ଼ା ଆଉ କିଛି ନୁହେଁ (ଏଗୁଡ଼ିକ ହେଉଛି ଉପବିଷ୍ଟ ନାରୀପୁରୁଷ ମୂର୍ତ୍ତି । ଏମାନେ ଦୁଇ ହାତରେ ଆଣ୍ଠୁ ଦୁଇଟିକୁ ଧରି ବସିଛନ୍ତି ଏବଂ ମୁଣ୍ଡରେ ଟୋପି ପିନ୍ଧିଛନ୍ତି ) । ଏହା ଛଡ଼ା ଜେ.ଏମ୍.କାସାଲ୍ ବି ଖୁବ୍ ସରଳ

ଏବଂ ସଂକ୍ଷିପ୍ତ "ଲିଖନ" ଯୁକ୍ତ ଏକପରଖିଆ କ୍ଷୁଦ୍ର ମୋହରକୁ ଶ୍ରମିକ ଏବଂ କ୍ରୀତଦାସଙ୍କ "ପରିଚୟପତ୍ର" ବୋଲି ବର୍ଣ୍ଣନା କରିଛନ୍ତି ।

ସେ ଯାହା ହେଉ, ଏସବୁକୁ ମିଳେଇ ବିଗ୍ଭର କଲେ, ଜଣାଯାଏ ଯେ, ଖନନ କାର୍ଯ୍ୟ ଫଳରେ ସିନ୍ଧୁ ସଭ୍ୟତାରେ ଅନେକଗୁଡ଼ିଏ ସାମାଜିକ ସଂପ୍ରଦାୟର ଅସ୍ତିତ୍ୱର ଇଙ୍ଗିତ ମିଳେ । ସେସବୁ ମଧ୍ୟରେ ଥିଲେ ପୁରୋହିତ, ବଣିକ, କାରିଗର ଏବଂ ଗୋଟି ଶ୍ରମିକ ସଂପ୍ରଦାୟ । ସୁନିର୍ଦ୍ଦିଷ୍ଟ ଏକ ସାମରିକ ଗୋଷ୍ଠୀ ଯେ ଏଠାରେ ଥିଲେ, ସେ ବିଷୟରେ କୌଣସି ସନ୍ଦେହ ନାହିଁ । ଏହି ସାମାଜିକ ସ୍ତରବିନ୍ୟାସର ଅସ୍ତିତ୍ୱ ଦେଖି କେତେକ ବିଶେଷଜ୍ଞ ହରପ୍ପା ସଭ୍ୟତା ଅମଳରେ ଭ୍ରୁଣାକାରରେ ପରବର୍ତ୍ତୀ ବର୍ଣ୍ଣଭିତ୍ତିକ ସମାଜର ଅସ୍ତିତ୍ୱ ଥିଲା ବୋଲି ମନେ କରିଥାନ୍ତି ।

## ବ୍ୟବସାୟ ବାଣିଜ୍ୟ ଏବଂ ବୈଦେଶିକ ସଂପର୍କ

ହରପ୍ପା ସଭ୍ୟତା ଅମଳରେ ସହରସବୁ ଥିଲା ଆଭ୍ୟନ୍ତରୀଣ ଏବଂ ବହିର୍ବାଣିଜ୍ୟର କେନ୍ଦ୍ର । ବିଦେଶ ସହିତ ସେତେବେଳେ ସମୁଦ୍ର ଏବଂ ସ୍ଥଳ ପଥରେ ବ୍ୟବସାୟ ବାଣିଜ୍ୟ ଗ୍ଭଲୁଥିଲା । ମଧ୍ୟ ପ୍ରାଚ୍ୟରୁ ମିଳୁଥିବା ପ୍ରତ୍ନତାତ୍ତ୍ୱିକ ଉପାଦାନ ଏବଂ ଲିଖିତ ପ୍ରମାଣରୁ ବାଣିଜ୍ୟିକ ବିକାଶ ତଥା ବାଣିଜ୍ୟିକ ଯୋଗାଯୋଗ ଦିଗ ସଂପର୍କରେ ଜଣା ପଡ଼େ । ମୋହେଞ୍ଜୋ-ଦାରୋରେ ଖନନ କାର୍ଯ୍ୟ ଗ୍ଭଲିଥିଲା ବେଳେ ଦୁଇ ଚକାବାଲା ଏକ ଖେଳନା ଗାଡ଼ିର ମଡେଲ ମିଳିଥିଲା । ମନେ ହୁଏ, ଏହି ଧରଣର ବଡ଼ ବଡ଼ ଗାଡ଼ି ମାଲପତ୍ର ନେବା ଆଣିବା ପାଇଁ ସେତେବେଳେ ସିନ୍ଧୁ ଉପତ୍ୟକାରେ ବ୍ୟବହୃତ ହେଉଥିଲା । ସିନ୍ଧୁ ଉପତ୍ୟକାର ସହରଗୁଡ଼ିକ ସହିତ ଦକ୍ଷିଣ ଭାରତର କେତେକ ଅଂଶ ମଧ୍ୟରେ ବାଣିଜ୍ୟ ସଂପର୍କ ପ୍ରତିଷ୍ଠିତ ଥିଲା ଏବଂ ଦକ୍ଷିଣ ଭାରତରୁ ମୂଲ୍ୟବାନ ଧାତୁସମୂହ ହରପ୍ପା ଅଞ୍ଚଳକୁ ଅଣାଯାଉଥିଲା । ତା'ଛଡ଼ା, ସାଂପ୍ରତିକ କାଳରେ ପ୍ରମାଣ ମିଳିଛି ଯେ, ହରପ୍ପା ସଭ୍ୟତାର ସହରଗୁଡ଼ିକ ସହିତ ଦକ୍ଷିଣ ତୁର୍କମେନିୟାର ତଦାନୀନ୍ତନ ବସତିଗୁଡ଼ିକର ବି ବାଣିଜ୍ୟ କାରବାର ଗ୍ଭଲୁଥିଲା (ଆଲତିନ୍-ତିପିରେ ଭି.ଏମ୍.ମାସୋନ୍‌ଙ୍କ ଆବିଷ୍କାର ଅନୁଯାୟୀ) ।

ମୋହର, କଣ୍ଠୀ, କୋଉଡ଼ି ଏବଂ ହରପ୍ପା ସଭ୍ୟତାର ବୈଶିଷ୍ଟ୍ୟସୂଚକ ଅନ୍ୟାନ୍ୟ ଜିନିଷ ମେସୋପଟେମିୟାର ସହରଗୁଡ଼ିକରେ ଏବଂ ମେସୋପଟେମିୟା ଧରଣର ମୋହର ସିନ୍ଧୁ ଉପତ୍ୟକାରେ ସହରମାନଙ୍କରେ ଆବିଷ୍କୃତ ହୋଇଛି । ଏହା ଦ୍ୱାରା ପ୍ରମାଣିତ ହେଉଛି ଯେ, ସିନ୍ଧୁ ଉପତ୍ୟକା ଏବଂ ସୁମେର ସଭ୍ୟତା ମଧ୍ୟରେ ଏକଦା ଘନିଷ୍ଠ ବାଣିଜ୍ୟ ସଂପର୍କ ପ୍ରତିଷ୍ଠିତ ଥିଲା । ସୁମେର ଅଞ୍ଚଳରେ ଖନନ କାର୍ଯ୍ୟ ଚଳାଇଲା ବେଳେ ହରପ୍ପା ମୋହରର ଛାପ ଥିବା ଟୁକୁରାଏ କପଡ଼ା ମଧ୍ୟ ଆବିଷ୍କୃତ ହୋଇଛି । ମନେ ହୁଏ, ସୁମେର ସହିତ ବାଣିଜ୍ୟିକ ସଂପର୍କ ଗ୍ଭଲୁଥିଲା ସମୁଦ୍ର ପଥରେ ବାହରେନ୍ ଦେଇ । କାରଣ ବାହରେନ୍‌ରେ ହରପ୍ପା ଯୁଗର ସ୍ମାରକ ଚିହ୍ନିତ ପାତ୍ର ଆବିଷ୍କୃତ ହୋଇଛି । ଲୋଥାଲରେ ମଧ୍ୟ ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ବିଦେଶ ସହିତ ବ୍ୟାପକ ଆକାରରେ ସାମୁଦ୍ରିକ ବାଣିଜ୍ୟ ଗ୍ଭଲୁଥିବାର ସାକ୍ଷ୍ୟ ପ୍ରଦାନ କରେ । ସେଠାରେ ଖନନ କାର୍ଯ୍ୟ ପରିଗ୍ଭଳନା ଦ୍ୱାରା ଏକ ବିରାଟ ବୋଇତ ଘାଟ, ଆଗନ୍ତୁକ ବୋଇତଗୁଡ଼ିକୁ ଖଟେଇବା ପାଇଁ ଡକ୍ ଏବଂ ପଥର ତିଆରି

ଅନେକ ଇଙ୍ଗର ମିଳିଛି । ମୋହେଞ୍ଜୋ-ଦାରୋ ଏବଂ ହରପ୍ପାରେ ମିଳିଥିବା କେତେକ ମୋହର ଏବଂ ପୋଡ଼ା ମାଟିର ଫଳକ ଉପରେ ବୋଇତର ଚିତ୍ର ଖୋଦାଇ କରାଯାଇଛି । ଲେଥାଲରେ ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କ ଭାଗ୍ୟ ଆଉରି ବେଶି ପ୍ରସନ୍ନ ହେବା ଫଳରେ ସେମାନେ ସେଠାରେ ବୋଇତର ଏକ ପୋଡ଼ା ମାଟିରେ ତିଆରି ମଡେଲ ଏବଂ ସେଇ ମଡେଲ ବୋଇତର, ଆପାତଃ ଦୃଷ୍ଟିରେ ଦେଖିବାକୁ ମାସ୍ତୁଲର ଖୁଣ୍ଟକୁ ଅଟକାଇବା ପାଇଁ ଏକ ଗହୀରିଆ ଜାଗାର ଚିହ୍ନ ପାଇଛନ୍ତି ।

ବାହରେନ୍ ଏବଂ ମେସୋପଟେମିୟାର ସହରଗୁଡ଼ିକରେ ଯେଉଁଭଳି ଗୋଲାକାର ମୋହର ମିଳିଛି, ପ୍ରାୟ ସେଇଭଳି ମୋହର ମିଳିଛି ଲେଥାଲରେ ।

ଆକ୍କାଡ୍ ଦେଶର ବିବରଣୀରେ ଉଲ୍ଲେଖ ଅଛି, ସେଠାର ବଣିକମାନେ ସମୁଦ୍ର ପାର ହୋଇ ଦିଲ୍‌ମୁନ୍, ମାଗାନ୍ ଏବଂ ମେଲୁହ୍‌ହା ପ୍ରଭୃତି ଦେଶକୁ ଯାଉଥିଲେ ।

କେତେକ ପ୍ରତ୍ନତତ୍ତ୍ୱବିଦ୍ ଏହି ଦିଲ୍‌ମୁନ୍‌କୁ ଉପରୋକ୍ତ ବାହରେନ୍ ବୋଲି ଚିହ୍ନିତ କରିଛନ୍ତି ଏବଂ ଆଉ କେତେକ ଏହି ନାମଟିକୁ ହରପ୍ପା ସଭ୍ୟତାର ଅନ୍ତର୍ଗତ କେତେକ ଅଞ୍ଚଳର ପରିଚୟାତ୍ମକ ସୂଚକ ବୋଲି ବ୍ୟାଖ୍ୟା କରିଛନ୍ତି । ଏହା ଛଡ଼ା ମାଗାନ୍‌କୁ ଅନେକେ ବେଲୁଚିସ୍ତାନ ଅନ୍ତର୍ଗତ ଏକ ସ୍ଥାନ ଏବଂ ମେଲୁହ୍‌ହାକୁ ଖୋଦ୍ ମୋହେଞ୍ଜୋ-ଦାରୋ, କିମ୍ବା ଭାରତର ପଶ୍ଚିମ ଉପକୂଳସ୍ଥ କୌଣସି ଜନବସତି ବୋଲି ଅଭିହିତ କରିଛନ୍ତି । ଉପରୋକ୍ତ ଏହିସବୁ ସ୍ଥାନକୁ ଯଥାର୍ଥ ଭାବେ ଚିହ୍ନିତ କରିବା ସମସ୍ୟାଟି ଯଦିଓ ଏପର୍ଯ୍ୟନ୍ତ ଅସମାହିତ ରହିଯାଇଛି, ତେବେ ହରପ୍ପା ସଭ୍ୟତାର ସହରଗୁଡ଼ିକ ସହିତ ମେସୋପଟେମିୟାର ଏକଦା ଯେ ବାଣିଜ୍ୟିକ ଏବଂ ସାଂସ୍କୃତିକ ସଂପର୍କ ରହିଥିଲା, ସେ ସଂପର୍କରେ ସନ୍ଦେହର ଅବକାଶ ନାହିଁ ।

## ଧର୍ମବିଶ୍ୱାସ

ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ଫଳରେ ହରପ୍ପା ସଭ୍ୟତା ଅମଳରେ ଜନସାଧାରଣଙ୍କର ଧର୍ମବିଶ୍ୱାସର ସ୍ୱରୂପ କ'ଣ ଥିଲା, ସେ ସଂପର୍କରେ ଆମେ କେତେକ ଧାରଣା ଲାଭ କରିଥାଏ । ଏହି ଯୁଗର ସହରସ୍ଥ ନଗର ଦୁର୍ଗ ଏବଂ ବସତି ଅଞ୍ଚଳରେ ଏଭଳିସବୁ ଅଟ୍ଟାଳିକା ମିଳିଛି, ଯାହାକୁ ବିଶେଷଜ୍ଞମାନେ ମନ୍ଦିର ବୋଲି ଚିହ୍ନିତ କରିଛନ୍ତି । ଏଭଳି ଭାବେ ଚିହ୍ନିତ କରିବା ପଛରେ ଯଥେଷ୍ଟ ଯୁକ୍ତି ମଧ୍ୟ ରହିଛି । ସ୍ପଷ୍ଟତଃ, ଏହିସବୁ ମନ୍ଦିର ଏବଂ ଧର୍ମୀୟ ପୁଣ୍ୟ ସ୍ନାନ ସରୋବରଗୁଡ଼ିକ ମଧ୍ୟରେ ଏବଂ ଏସବୁ ସହିତ ମୋହେଞ୍ଜୋ-ଦାରୋ ତଥା ହରପ୍ପାରେ ମିଳିଥିବା ପଥର ମୂର୍ତ୍ତିଗୁଡ଼ିକର କିଛି ଯୋଗସୂତ୍ର ରହିଛି । ବହୁ ବିଶେଷଜ୍ଞଙ୍କ ମତରେ, ଏହିସବୁ ମନ୍ଦିର ଏବଂ କେତେକ ପଥର ମୂର୍ତ୍ତି କୌଣସି ଏକ ପୁରୁଷ ଦେବତାଙ୍କ ନାମରେ ଉତ୍ସର୍ଗିତ ଥିଲା, ଯାହାଙ୍କୁ ଶିବଙ୍କ ଆଦିପୁରୁଷ ସହିତ ତୁଳନା କରାଯାଇ ପାରେ । ଏଠାରେ ମିଳିଥିବା ମୋହରଗୁଡ଼ିକ ମଧ୍ୟରୁ ଗୋଟିକରେ ଏକ ପିଢ଼ ଉପରେ ଏକ ଧରଣର ଯୋଗାସନରେ ଉପବିଷ୍ଟ ତ୍ରିଆନନ ଏକ ଦେବ ମୂର୍ତ୍ତି ଖୋଦିତ ହୋଇଛି । ମୂର୍ତ୍ତିଟି ସହିତ ଯୁକ୍ତ ହୋଇ ରହିଛନ୍ତି କେତୋଟି କୃଷ୍ଣସାର ମୃଗର ଛୋଟ ଛୋଟ ମୂର୍ତ୍ତି । ଦେବ ମୂର୍ତ୍ତିଟିର କେଶଗୁଚ୍ଛ ଦୁଇଟି ଶୃଙ୍ଗ ଆକାରରେ ବିନ୍ୟସ୍ତ ହୋଇଛି । ମୂର୍ତ୍ତିଟିର ଦୁଇ ପାଖରେ ଦଣ୍ଡାୟମାନ

ବନ୍ୟ ପଶୁସବୁ । ସାର୍‌ ଜହନ୍‌ ମାର୍ଶାଲ ଏଠାକାର ଖନନ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରୁଥିଲା ବେଳେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ଏହି ଦେବ ମୂର୍ତ୍ତିଟି ହେଉଛି ପଶୁପତି ଶିବଙ୍କର, ଅର୍ଥାତ୍‌, ଗବାଦି ପଶୁର ପୃଷ୍ଠପୋଷକ ଏବଂ ରକ୍ଷକ ଶିବଙ୍କର ମୂର୍ତ୍ତି । ପ୍ରସଙ୍ଗତ, ଏହା ସ୍ମରଣଯୋଗ୍ୟ ଯେ, ଆଦି ହିନ୍ଦୁ ଶାସ୍ତ୍ରରେ ଶିବଙ୍କୁ ଯୋଗୀ ଏବଂ ଶୃଙ୍ଗ ଭଳି ବିନ୍ୟସ୍ତ ଜଟାଜୁଟ ଧାରୀ ଦେବତା ବୋଲି ବର୍ଣ୍ଣନା କରାଯାଇଥାଏ । ଏହି ବ୍ୟାଖ୍ୟାଟି ବର୍ତ୍ତମାନ ଅନ୍ୟାନ୍ୟ ବହୁ ପ୍ରତ୍ନତତ୍ତ୍ୱବିଦ୍‌ଙ୍କ ଦ୍ୱାରା ସମର୍ଥିତ । ମନେ ହୁଏ, ଏହା ଫଳରେ ହରପ୍‌ପା ସଭ୍ୟତା ଅମଳରେ ଜନସାଧାରଣଙ୍କ ମଧ୍ୟରେ ପ୍ରଚଳିତ ଧ୍ୟାନଧାରଣା ସହିତ ପରବର୍ତ୍ତୀ ହିନ୍ଦୁ ଧର୍ମର ଏକ ଯୋଗସୂତ୍ର ବାହାର କରାଯାଇ ପାରେ । ଏହାକୁ ଆଉ ଗୋଟିଏ ତଥ୍ୟ ମଧ୍ୟ ସମର୍ଥନ ଯୋଗାଇଥାଏ ବୋଲି ମନେ ହୁଏ । ସେ ହେଉଛି, ମୋହର ଉପରେ ଖୋଦିତ ଷଣ୍ଢ, ବ୍ୟାଘ୍ର ପ୍ରଭୃତି ପଶୁମୂର୍ତ୍ତି । ହିନ୍ଦୁ ଧର୍ମବିଶ୍ୱାସ ଅନୁଯାୟୀ ବିଶେଷ ଦେବତା ବିଶେଷ ବିଶେଷ ଜୀବଜନ୍ତୁଙ୍କ ସହିତ ସଂପୃକ୍ତ । ଉପାସ୍ୟ ଦେବଦେବୀଙ୍କ ସହିତ ଜୀବଜନ୍ତୁଙ୍କର ଖୋଦନ ଥିଲା, ସମ୍ଭବତଃ, ପୂର୍ବତନ "ଟୋଟେମ୍‌"ଗତ ଧର୍ମବିଶ୍ୱାସର ପ୍ରଭାବ । ଏହି ଧରଣର କେତେକ ପ୍ରାଣୀ ଥିଲେ ପୂର୍ବବର୍ତ୍ତୀ ନାନା ଉପଜାତି ଗୋଷ୍ଠୀଙ୍କର "ଟୋଟେମ୍‌", ବା ପ୍ରତୀକ ।

ପ୍ରାଚୀନ ଭାରତର ପରବର୍ତ୍ତୀ ଯୁଗର ଐତିହାସିକ ଏବଂ ସାଂସ୍କୃତିକ ବିକାଶକୁ ହରପ୍‌ପା ସଭ୍ୟତାର ପରମ୍ପରା ଏବଂ ଐତିହ୍ୟ ନିଶ୍ଚୟ ପ୍ରଭାବିତ କରିଥିବ, ଏହି ଧାରଣାଟି ପ୍ରତି ସଂପ୍ରତି କେତେକ ପଣ୍ଡିତ (ଏ.ଘୋଷ୍‌ଙ୍କ ସମେତ) ସନ୍ଦେହ ପ୍ରକାଶ କରିଛନ୍ତି । ତ୍ରିମୁଖ ଦେବ ମୂର୍ତ୍ତିଟି ଯେ "ହିନ୍ଦୁ" ଦେବତାଙ୍କ ଆଦି ରୂପ, ଏହି ମତଟିକୁ ସେମାନେ ପ୍ରତ୍ୟାଖ୍ୟାନ କରିଛନ୍ତି ।

କାଳର କବଳରୁ ବର୍ତ୍ତିଥିବା ମୋହରଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବେ ବିଚାର କଲେ, ସିନ୍ଧୁ ଉପତ୍ୟକାର ସହରଗୁଡ଼ିକରେ ଅଗ୍ନି, ଜଳ, ବୃକ୍ଷ ପୂଜା ପ୍ରଚଳିତ ଥିଲା ବୋଲି କୁହାଯାଇ ପାରେ । ଲୋଥାଲ ଏବଂ କାଲିବାଙ୍ଗାରେ ଏହି ପୂଜାବେଦୀର ଧ୍ୱଂସାବଶେଷ ମଧ୍ୟ ମିଳିଛି ।

ହରପ୍‌ପା ଅମଳର ମୋହରଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ବିଶେଷଜ୍ଞମାନେ ଏହି ସମୟର ଲୋକଙ୍କର ବିଶ୍ୱ ବ୍ରହ୍ମାଣ୍ଡ ସଂପର୍କରେ ଧାରଣାର କେତେକ ଦିଗ ସହିତ ପରିଚିତ ହୋଇଛନ୍ତି । ସେଇସବୁ ଧ୍ୟାନଧାରଣା ମଧ୍ୟରୁ ଅନେକ ପ୍ରତ୍ୟକ୍ଷ ହିନ୍ଦୁ ଧର୍ମର ଧର୍ମୀୟ ମତାଦର୍ଶରାଜିର ସମାନ୍ତରାଳ ଧାରଣା ବୋଲି ଜଣାଯାଇଛି ।

ଏ କ୍ଷେତ୍ରରେ ବିଶେଷ କୌତୂହଳୋଦ୍ଦୀପକ ବିଷୟଟି ହେଉଛି, ହରପ୍‌ପା ଯୁଗର ଉପରୋକ୍ତ କେତେକ କିମ୍ବଦନ୍ତୀ ସହିତ କେତେକ ସୁମେରୀୟ କିମ୍ବଦନ୍ତୀର ସାଦୃଶ୍ୟ । ବିଶେଷ କରି ସୁମେରୀୟ ବୀର ଗିଲଗାମେଶ୍‌ଙ୍କ ସୁପରିଚିତ କିମ୍ବଦନ୍ତୀଟିର କେତେକ ଘଟଣା ସହିତ ପ୍ରଥମୋକ୍ତ କିମ୍ବଦନ୍ତୀର ଆଶ୍ଚର୍ଯ୍ୟକର ସାଦୃଶ୍ୟ ରହିଛି । ତେବେ ହରପ୍‌ପା ଯୁଗର ଆଲେଚ୍ୟ ମୋହରଟିରେ ବୀର ନାୟକକୁ ସିଂହ ପରିବର୍ତ୍ତେ ବ୍ୟାଘ୍ରପଲକୁ ପରିଚାଳନା କରୁଥିବାର ଦେଖାଯାଏ ।

ଏହା ଛଡ଼ା ସିନ୍ଧୁ ଉପତ୍ୟକାରେ ଅନେକ ପୋଡ଼ା ମାଟିର ସ୍ତ୍ରୀ ମୂର୍ତ୍ତି ମିଳିଛି । ସେଠାରେ ମାତୃ-ଦେବୀ ଉପାସନା ଥିଲା ବୋଲି ଏଗୁଡ଼ିକ ତା'ର ସାକ୍ଷ୍ୟ ଦିଏ ।

ହରପ୍‌ପା ଯୁଗ ମଣିଷର ଧର୍ମବିଶ୍ୱାସ ଏବଂ ସେମାନଙ୍କ ସାଂସ୍କୃତିକ ବିକାଶ ସଂପର୍କରେ ଏପର୍ଯ୍ୟନ୍ତ ପ୍ରଚଳିତ ବହୁବିଧ ଧାରଣା ମଧ୍ୟରୁ ଅନେକ ହେଉଛି କେବଳ ଅନୁମାନ । ଏସବୁର ସତ୍ୟତାକୁ ପରୀକ୍ଷା କରିବାକୁ ହେବ ସେତିକିବେଳେ, ଯେତେବେଳେ ପ୍ରତ୍ନତତ୍ତ୍ୱବିତ୍‌ମାନେ ସିନ୍ଧୁ ସଭ୍ୟତାର

ବର୍ଣ୍ଣଲିପିର ପାଠୋଦ୍ଧାର କରି ପାରିବେ । ତେବେ ଇତି ମଧ୍ୟରେ ଯେଉଁସବୁ ପ୍ରମାଣ ମିଳିଛି, ସେସବୁର ଭିତ୍ତିରେ ଏକଥା ଅସ୍ୱୀକାର କରିବା ଅସମ୍ଭବ ଯେ, ହରପ୍ପା ସଭ୍ୟତାର ଐତିହ୍ୟସମୂହ ପରବର୍ତ୍ତୀ ବୈଦିକ ଯୁଗର ଉପଜାତିମାନଙ୍କର ବିକାଶରେ ଏକଦା ସୁନିର୍ଦ୍ଦିଷ୍ଟ ପ୍ରଭାବ ପାତ କରିଥିଲା ।

## ଭାଷା ଏବଂ ବର୍ଣ୍ଣଲିପି

ଦୁର୍ଭାଗ୍ୟର କଥା, ହରପ୍ପା ସଭ୍ୟତାର ବର୍ଣ୍ଣଲିପିର ପାଠୋଦ୍ଧାର ଏପର୍ଯ୍ୟନ୍ତ ସମ୍ଭବ ହୋଇ ପାରିନି । ତେବେ ଏହି ଲିପିର ଅସ୍ତିତ୍ୱ ପ୍ରମାଣ ଦେଉଛି ଯେ, ଏହି ସଭ୍ୟତାର ବିକାଶ କେତେ ଉଚ୍ଚ ସ୍ତରକୁ ଉଠିଥିଲା । ଏପର୍ଯ୍ୟନ୍ତ ଖୋଦେଇ କରାଯାଇଥିବା ଲିପିଯୁକ୍ତ ଦୁଇ ହଜାରରୁ ଅଧିକ ମୋହର ଆବିଷ୍କୃତ ହୋଇଛି ଏବଂ ଏହା ଛଡ଼ା ମାଟିପାତ୍ର ଏବଂ ଧାତୁ ତିଆରି ଜିନିଷପତ୍ର ଉପରେ ଖୋଦିତ ଅନେକଗୁଡ଼ିଏ ଲିପି ମିଳିଛି । ବିଶେଷଜ୍ଞମାନଙ୍କ ମତରେ, ଉପରୋକ୍ତ ଏହିସବୁ ମୋହର ପଣ୍ୟଦ୍ରବ୍ୟ ପାଇଁ ରସିଦ୍ ହୋଇ ପାରେ ଏବଂ ସେସବୁ ମୋହର ମଧ୍ୟରୁ କେତେକ ମୋହରରେ ଛୋଟ ଛୋଟ ଛିଦ୍ର ରହିଥିବାରୁ ସେସବୁ ମନ୍ତ୍ରପୂତ କବଚ ବି ହୋଇ ପାରେ । ଖୁବ୍ ସମ୍ଭବତଃ, ଏହି ଧରଣର ଲିପି କେବଳ ମୋହର ଉପରେ ଖୋଦେଇ ହୋଇନି, ଯେଉଁସବୁ ଜିନିଷ ଉପରେ ଲେଖିବାଟା ଅପେକ୍ଷାକୃତ ସହଜ (ଯଥା, ତାଳ ଆଉ ଖଜୁରି), ସେସବୁ ଉପରେ ବହୁ ଲିପି ଲେଖାଯାଇଥିଲା । ତେବେ ଏହି ଶେଷୋକ୍ତ ଉପାଦାନଗୁଡ଼ିକ ସହଜରେ ନଷ୍ଟ ହୋଇଯାଏ ବୋଲି ଏ ଧରଣର ଲିପି ଏତେ କାଳ ଧରି ତିଷ୍ଠି ପାରିନି ଏବଂ ତେଣୁ ଖନନ କାର୍ଯ୍ୟ ବେଳେ ମିଳି ନାହିଁ ବୋଲି ମନେ ହୁଏ । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ଏଠାରେ ମାଟିନିର୍ମିତ ଏକ ଦୁଆତ ଆବିଷ୍କାର ହେବା ଫଳରେ ବିଶେଷ ଆଗ୍ରହ ସୃଷ୍ଟି ହୋଇଛି ।

ଏହି ଅଞ୍ଚଳରୁ ମିଳିଥିବା ମୋହରଗୁଡ଼ିକରେ ଖୋଦିତ ବର୍ଣ୍ଣ ବା ଅକ୍ଷରଗୁଡ଼ିକର ସଂଖ୍ୟା ହେବ ପ୍ରାୟ ୪୦୦ । ବିଶେଷଜ୍ଞମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ, ଏସବୁ ମଧ୍ୟରୁ ଅଧିକାଂଶ ହେଉଛି ଧ୍ୱନିନିର୍ଦ୍ଦେଶକ ଚିହ୍ନ ଏବଂ ଆଉ କେତେକ ଭାବ ନିର୍ଦ୍ଦେଶକ ପ୍ରତୀକ ବା ଭାବଲେଖ । ଖୋଦିତ ଲିପିଗୁଡ଼ିକ ପ୍ରାୟ ସଂକ୍ଷିପ୍ତ ଆକାରର । ବିଶେଷ ଧରଣର ଦାଗ ଦ୍ୱାରା ସଂଖ୍ୟା ଉଲ୍ଲେଖ କରାଯାଇଛି । କାଲିବାଙ୍ଗାରେ ଏପରି ଏକ ଭଙ୍ଗା ମାଟିପାତ୍ର ମିଳିଛି, ଯେଉଁଥିରୁ ସ୍ପଷ୍ଟ ବୁଝାଯାଏ ଯେ, ସେତେବେଳେ ଡାହାଣରୁ ବାଆଁକୁ ଲେଖା ହେଉଥିଲା ।

ଗତ କେଇ ଦଶକ ଧରି ପ୍ରତ୍ନତତ୍ତ୍ୱବିଦ୍‌ମାନେ ଏହି ଲିପିର ପାଠୋଦ୍ଧାରର ଚେଷ୍ଟା କରି ଆସିଛନ୍ତି । ଏ ସଂପର୍କରେ ବିଭିନ୍ନ ତତ୍ତ୍ୱ ମଧ୍ୟ ଉପସ୍ଥାପିତ କରାଯାଇଛି । ସୁପରିଚିତ ପଣ୍ଡିତ ବେଡ୍‌ରିଚ୍ ହ୍ରତ୍‌ସ୍‌ନି ହରପ୍ପା ଲିପିକୁ ହିଟାଇଟ୍ ଚିତ୍ରଲିପିର ଜ୍ଞାତି ବୋଲି ବର୍ଣ୍ଣନା କରିଛନ୍ତି । କିନ୍ତୁ ଅନୁସନ୍ଧାନ ଦ୍ୱାରା ଏହି ଆତ୍ମୀୟ ସଂବନ୍ଧର କୌଣସି ଫଳ ମିଳିନି । ଖୋଦିତ ଲିପିର ପାଠୋଦ୍ଧାର କରିବାକୁ ହେଲେ, ପ୍ରଥମେ ନିର୍ଣ୍ଣୟ କରିବାକୁ ହେବ, ସିନ୍ଧୁ ଉପତ୍ୟକାର ଅଧିବାସୀମାନେ କେଉଁ ଭାଷାରେ କଥା କହୁଥିଲେ ଏବଂ ଲେଖୁଥିଲେ । ବହୁ ସୁପରିଚିତ ପଣ୍ଡିତ (ଟି.ବାରୋ ଓ ଏମ୍.

ବି . ଏମେନଙ୍କ ସମେତ) ମନେ କରନ୍ତି ଯେ , ଏହି ଅଧିବାସୀମାନଙ୍କର ଭାଷା ଦ୍ରାବିଡ଼ (ଆଦି ଦ୍ରାବିଡ଼) ଭାଷା ଗୋଷ୍ଠୀର ଅନ୍ତର୍ଭୁକ୍ତ ଥିଲା ।

ଯେଉଁସବୁ ପ୍ରତ୍ନତତ୍ତ୍ୱବିତ୍ ହରପ୍ପା ସଭ୍ୟତାର "ଲିଖିତ ପାଠ" କମ୍ପ୍ୟୁଟର ଯନ୍ତ୍ର ସାହାଯ୍ୟରେ ବିଶ୍ଳେଷଣ କରିଛନ୍ତି (ସୋଭିଏତ୍ ଏବଂ ଫିନ୍‌ଲାଣ୍ଡର ଗବେଷକମାନେ ସ୍ୱତନ୍ତ୍ର ଭାବେ ଏହି ବିଶ୍ଳେଷଣ କରିଛନ୍ତି) , ସେମାନେ ମଧ୍ୟ ଏହି ଉପରୋକ୍ତ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ସେମାନଙ୍କ ମତରେ , ଏହି ଆଦି ଭାରତୀୟ ଭାଷାକୁ (ଅର୍ଥାତ୍ , ହରପ୍ପା ସଭ୍ୟତାର "ଲିଖିତ ପାଠର ଭାଷାକୁ") ଦ୍ରାବିଡ଼ ଭାଷା ଗୋଷ୍ଠୀର ଅନ୍ୟତମ ବୋଲି ଗଣ୍ୟ କରାଯାଇ ପାରେ । ତେବେ ଏ ପ୍ରସଙ୍ଗରେ ମନେ ରଖିବାକୁ ହେବ ଯେ , ଏହା ଭାରତର ବର୍ତ୍ତମାନ ପ୍ରଚଳିତ ଦ୍ରାବିଡ଼ ଭାଷାଗୁଡ଼ିକ ମଧ୍ୟରୁ ଗୋଟିଏ ନୁହେଁ , ଏହା ହେଉଛି ଏକ ଆଦି ଦ୍ରାବିଡ଼ ଭାଷା । ଏହି ଭାଷାର ପୁନର୍ଗଠନର କାର୍ଯ୍ୟ ଏହି ବିଶେଷ କ୍ଷେତ୍ରର ବିଶେଷଜ୍ଞମାନେ ସଫଳତାର ସହିତ କରି ଚାଲିଛନ୍ତି । ହରପ୍ପା ଲିପିର ପାଠୋଦ୍ଧାର ସମ୍ଭବ ହୋଇ ପାରନ୍ତା , ଯଦି ଦ୍ୱିଭାଷାର ଏକ ପାଠ , ଅର୍ଥାତ୍ , ଦୁଇଟି ବିଭିନ୍ନ ଭାଷାରେ ଲିପିବଦ୍ଧ, ଏକା ପାଠଯୁକ୍ତ ଗୋଟିଏ ଲେଖା ମିଳନ୍ତା । ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଫଳରେ ମିଳିଥିବା ହରପ୍ପା ସଭ୍ୟତାର ଓ ମେସୋପଟେମିୟାର ସହରଗୁଡ଼ିକ ମଧ୍ୟରେ ଘନିଷ୍ଠ ଯୋଗସୂତ୍ରର ଇଙ୍ଗିତବହନକାରୀ ତଥ୍ୟ ପ୍ରମାଣସମୂହର କଥା ଯଦି ଆମେ ମନେ ରଖେଁ , ତେବେ ଏଭଳି ଆଶା ପୋଷଣ କରିବା ଆମମାନଙ୍କ ପକ୍ଷରେ ଅସମୀଚୀନ ହେବ ନାହିଁ ଯେ , ଏହିଭଳି ଏକ ଦ୍ୱିଭାଷିକ ପାଠଯୁକ୍ତ ଲିଖନ , ହୁଏତ , ମିଳିଯିବ ।

## ସିନ୍ଧୁ ନଗର ସଭ୍ୟତାର ପତନ

ସାଂପ୍ରତିକ କାଳରେ ଖନନ କାର୍ଯ୍ୟ ଚଳେଇବା ଫଳରେ ହରପ୍ପା ସଭ୍ୟତା ଉପରେ ଯେଉଁ ଆଲୋକପାତ ହୋଇଛି , ତଦ୍ୱାରା ଏହି ସଭ୍ୟତାକୁ ଆଉ ଅପରିବର୍ତ୍ତନୀୟ ଏବଂ ଅନମନୀୟ ବୋଲି ବିଗ୍ରହ କରାଯାଇ ପାରିବ ନାହିଁ । ହରପ୍ପା ସଂସ୍କୃତିର ଆଭ୍ୟନ୍ତରୀଣ ବିକାଶର ବିଷୟଟି ସଂପର୍କରେ ଅନୁସନ୍ଧାନ ଚଳେଇବା ଫଳରେ ଏହି ସଂସ୍କୃତିର ଅନ୍ତର୍ଭୁକ୍ତ ସହରଗୁଡ଼ିକର ଜୀବନରେ କେତେକ ସୁନିର୍ଦ୍ଦିଷ୍ଟ ପର୍ଯ୍ୟାୟର ସନ୍ଧାନ ମିଳିଛି । ସମୃଦ୍ଧିର ଏକ ପର୍ଯ୍ୟାୟ ପରେ ସେମାନଙ୍କ ଜୀବନରେ ଅବକ୍ଷୟର ଏକ ଯୁଗ ଆସିଥିଲା ବୋଲି ଜଣାଯାଇଛି । ଏହି ଯୁଗର ଚିତ୍ରଟି ବିଶେଷ ପରିଷ୍କାର ଭାବେ ଫୁଟି ଉଠିଛି ମୋହେଞ୍ଜୋ-ଦାରୋ , ହରପ୍ପା , କାଲିବାଙ୍ଗା ପ୍ରଭୃତି ସହରରେ ଖନନ କାର୍ଯ୍ୟ ଫଳରେ ଆବିଷ୍କୃତ ତଥ୍ୟ ପ୍ରମାଣ ଦ୍ୱାରା । ସେସବୁରୁ ଦେଖିବାକୁ ମିଳେ , ତଥାକଥିତ ଏହି ପରବର୍ତ୍ତୀ ଯୁଗରେ ମୋହେଞ୍ଜୋ-ଦାରୋରେ ନିର୍ମାଣ କାର୍ଯ୍ୟ କୌଣସି ଧରାବନ୍ଧା ପରିକଳ୍ପନା ବିନା ଚାଲୁଥିଲା । ଆଉରି ଦେଖିବାକୁ ମିଳିଛି , ଏହି ସହର ମଧ୍ୟରେ ପୂର୍ବର ବଡ଼ ବଡ଼ ସରକାରୀ ଅଟ୍ଟାଳିକାଗୁଡ଼ିକ ମଧ୍ୟରୁ କେତେକ ଭାଙ୍ଗି ପଡ଼ିଥିଲା ଏବଂ ସେସବୁ ଜାଗାରେ ଛୋଟ ଛୋଟ ଘରସବୁ ଦେଖା ଦେଇଥିଲା । ଜଳ ଯୋଗାଣ ବ୍ୟବସ୍ଥା ମଧ୍ୟ ଏହି ସମୟରେ ମରାମତି ଅଭାବରୁ ଅକାମି ହୋଇ ପଡ଼ିଥିଲା । ହରପ୍ପାର ଅନେକ କୋଠାବାଡ଼ି ଏହି ସମୟରେ ଧ୍ୱଂସସ୍ତୂପରେ ପରିଣତ ହୋଇଛି । ପୂର୍ବବର୍ତ୍ତୀ

ଯୁଗର ଉନ୍ନତ ବ୍ୟବସାୟ ବାଣିଜ୍ୟରେ ମଧ୍ୟ ଭଟା ଦେଖା ଦେଇଛି ସେଇ ସମୟରେ । ମାଟିପାତ୍ର ନିର୍ମାଣର କୃତ୍‌କୌଶଳ ମଧ୍ୟ ବଦଳି ଯାଇଛି, ପାତ୍ର ଦେହରେ ନକସା ଅଳଙ୍କରଣର କାର୍ଯ୍ୟ ପୂର୍ବ ଅପେକ୍ଷା କମି ଯାଇଛି ଏବଂ ମାଟିପାତ୍ରର ଗୁଣଗତ ମାନରେ ମଧ୍ୟ ଅବନତି ଘଟିଛି ।

କିନ୍ତୁ ହରପ୍ପା ସଭ୍ୟତାର ସହରଗୁଡ଼ିକର ଅଧଃପତନ ଘଟିଲା କାହିଁକି ? ଏହି ପ୍ରଶ୍ନଟି ବିଶେଷଜ୍ଞମାନଙ୍କ ମଧ୍ୟରେ ଏକ ଚମତ୍କାର ବିତର୍କର ବିଷୟ । ଦୀର୍ଘ କାଳ ଧରି ଏ ସଂପର୍କରେ ସର୍ବାପେକ୍ଷା ଜନପ୍ରିୟ ବ୍ୟାଖ୍ୟାଟି ଥିଲା, ହରପ୍ପା ଅମଳର ସହରଗୁଡ଼ିକର ଏବଂ ସଂପୂର୍ଣ୍ଣ ହରପ୍ପା ସଭ୍ୟତାର ଧ୍ୱଂସର ଅବ୍ୟବହିତ କାରଣ ହେଲା ଆର୍ଯ୍ୟ ଉପଜାତିଙ୍କର ଆକ୍ରମଣ । କିନ୍ତୁ ଆଉରି ସାଂପ୍ରତିକ ଅନୁସନ୍ଧାନ ଫଳରେ ଏବେ ଜଣାଯାଇଛି ଯେ, ଏଠାରେ କେତେକ ସହର କୌଣସି ବିଦେଶୀ ଉପଜାତିର ଆଗମନ ପୂର୍ବରୁ ଆଭ୍ୟନ୍ତରୀଣ ବିଭିନ୍ନ କାରଣରୁ ହୀନବଳ ହୋଇ ଧ୍ୱଂସ ପାଇ ଯାଇଥିଲେ । ବିଶେଷଜ୍ଞମାନଙ୍କ ମତରେ, ଚାଷ ଜମି ଲୁଣା ମାରିଯିବା, ବନ୍ୟା, ରାଜପୁତାନା ମରୁଭୂମିର ସଂପ୍ରସାରଣ ଏବଂ ସିନ୍ଧୁ ନଦୀର ଗତିପଥ ପରିବର୍ତ୍ତନ ଉପରୋକ୍ତ ସେଇସବୁ ଆଭ୍ୟନ୍ତରୀଣ ବିପର୍ଯ୍ୟୟର କାରଣ ମଧ୍ୟରୁ କେତୋଟି ।

ମୋହେଞ୍ଜୋ-ଦାରୋ ଅଞ୍ଚଳରେ ଜଳାନୁସନ୍ଧାନବିଦ୍ୟା ସଂପର୍କିତ ଗବେଷଣା ଚଳେଇ ବିଶେଷଜ୍ଞମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ବହୁଦିନ ପୂର୍ବେ ଏହି ସହରରୁ ସ୍ୱଳ୍ପ ଦୂରବର୍ତ୍ତୀ ଏକ ଅଞ୍ଚଳର ଭୂସ୍ତର ବିନ୍ୟାସର ତ୍ରୁଟି ହେତୁ ଏକ ଆଲୋଡ଼ନ କେନ୍ଦ୍ରରେ ପରିଣତ ହୋଇଥିଲା ଏବଂ ସେଇ କାରଣରୁ ସହରଟି ଧ୍ୱଂସ ପାଇ ଯାଇଥିଲା । ଆଉ କେତେକ ବିଶେଷଜ୍ଞଙ୍କ ମତରେ, ମୋହେଞ୍ଜୋ-ଦାରୋର ଧ୍ୱଂସର ପ୍ରଧାନ କାରଣ ହେଉଛି ବାରମ୍ବାର ବନ୍ୟା । ସହରଟି ଏହା ଦ୍ୱାରା କେତେ ଥର ବୁଡ଼ିଯିବା ଫଳରେ ଅଧିବାସୀମାନେ ବାଧ୍ୟ ହୋଇ ସହର ଛାଡ଼ି ଅନ୍ୟତ୍ର ଚାଲି ଯାଇଥିଲେ । ଏକଥା ମଧ୍ୟ ସମ୍ଭବ ଯେ, ମୋହେଞ୍ଜୋ-ଦାରୋ ଛଡ଼ା ଆଉ କେତେକ ସହର ଏହି ଭାବେ ବନ୍ୟା ବିପର୍ଯ୍ୟସ୍ତ ହୋଇଥିଲେ । ମୋହେଞ୍ଜୋ-ଦାରୋ ଧ୍ୱଂସର କାରଣ ବ୍ୟାଖ୍ୟା କରିବାକୁ ଯାଇ ସଂପ୍ରତି ଆଉ ଗୋଟିଏ ତତ୍ତ୍ୱ ମଧ୍ୟ ଉପସ୍ଥାପିତ କରାଯାଇଛି । ସେ ତତ୍ତ୍ୱଟି ହେଉଛି, ସିନ୍ଧୁ ନଦୀର ଗତିପଥ ପରିବର୍ତ୍ତିତ ହୋଇଯିବା ଫଳରେ ଏକଦା ଯେଉଁ ପ୍ରଚଣ୍ଡ ମରୁଡ଼ି ଦେଖା ଦେଇଥିଲା, ତଦ୍ୱାରା ସହରଟି ନିଃସ୍ୱ ହୋଇ ପଡ଼ିଥିଲା ଏବଂ ତା ଫଳରେ ବିଦେଶୀ ଆକ୍ରମଣକାରୀମାନଙ୍କ ପକ୍ଷରେ ଏହାକୁ ଦଖଲ କରି ନେବା ପକ୍ଷରେ ସହଜତର ହେଲା ।

ତେବେ ଉପରୋକ୍ତ ଏହିସବୁ ତତ୍ତ୍ୱ ବିଶେଷ ବିଶେଷ ଜନପଦ ବା ସହରର ଅବକ୍ଷୟ ବା ପତନ ସହିତ ସଂଯୁକ୍ତ । ଖ୍ରୀଷ୍ଟ ପୂର୍ବ ଅଷ୍ଟାଦଶ ଏବଂ ସପ୍ତଦଶ ଶତାବ୍ଦୀରେ ସମଗ୍ର ହରପ୍ପା ସଭ୍ୟତା କାହିଁକି ଧ୍ୱଂସ ପାଇ ଯାଇଥିଲା, ତା'ର ବ୍ୟାଖ୍ୟା କିନ୍ତୁ ଏସବୁଥିରେ ମିଳେ ନାହିଁ । ତେବେ ମନେ ହୁଏ, ସମ୍ଭବତଃ, ଏହାର ଗୋଟିଏ ବ୍ୟାଖ୍ୟା ଏଇଆ ହୋଇ ପାରେ ଯେ, ହରପ୍ପା ଯୁଗୀୟ ସମାଜରେ ପ୍ରଧାନ ପରିବର୍ତ୍ତନଗୁଡ଼ିକ ଘଟିବା ମୂଳରେ ଥିଲା ବିଶାଳ ଭୂଖଣ୍ଡ ବ୍ୟାପୀ ଏହି ସଭ୍ୟତାର ଦ୍ରୁତ ସଂପ୍ରସାରଣ ଏବଂ ସଭ୍ୟତାର ବିକାଶ ଦିଗରୁ ପଶ୍ଚାତ୍‌ପଦ ଅଞ୍ଚଳଗୁଡ଼ିକ ଏହାର ଅନ୍ତର୍ଭୁକ୍ତ ହେବା ଫଳରେ ଏହି ସଂସ୍କୃତିର ବର୍ବରତା ପ୍ରାପ୍ତି ତଥା ଦୂଷିତକରଣ । ଏହି ଶେଷୋକ୍ତ ମତଟି, ଅବଶ୍ୟ, ଆଉରି ଅନୁସନ୍ଧାନ ଏବଂ ଗବେଷଣା ଆବଶ୍ୟକ କରେ । ତେବେ ଇତି ମଧ୍ୟରେ ଏହି ବିଷୟଟି କିନ୍ତୁ ସ୍ପଷ୍ଟ ହୋଇ ଯାଇଛି ଯେ, ଆଭ୍ୟନ୍ତରୀଣ ଘଟଣାବଳୀ ଥିଲା ହରପ୍ପା ସଭ୍ୟତା ପତନର ଏବଂ ଏହି ସଭ୍ୟତା ଅନ୍ତର୍ଗତ ସହରଗୁଡ଼ିକର ଅବକ୍ଷୟର ପ୍ରଧାନ କାରଣ ।

କାଥିଆବାଡ଼ ଉପଦ୍ୱୀପ ଭଳି ସିନ୍ଧୁ ସଭ୍ୟତାର ଉପାନ୍ତ ଅଞ୍ଚଳଗୁଡ଼ିକରେ ମଧ୍ୟ ଏଇ ସଭ୍ୟତାର ଏକା ଧରଣର ଅବକ୍ଷୟ ଲକ୍ଷ୍ୟ କରାଯାଏ । ଏହି ବିଷୟଟି କମ୍ କୌତୂହଳୋଦ୍ଦୀପକ ନୁହେଁ । ଲୋଥାଲରେ ଏହି ଅବକ୍ଷୟର ପ୍ରଥମ ଲକ୍ଷଣଗୁଡ଼ିକ ଧରା ପଡ଼ିଥିଲା ସୁଦୂର ଖ୍ରୀଷ୍ଟ ପୂର୍ବ ଊନବିଂଶ ଶତାବ୍ଦୀରେ । ତା'ପରେ ପରବର୍ତ୍ତୀ ଦୁଇ ଶତାବ୍ଦୀ ମଧ୍ୟରେ ଏହି ବୃହତ୍ ବନ୍ଦରନଗରୀ ଏବଂ ସେତେବେଳେ ଆଭ୍ୟନ୍ତରୀଣ ବିଭିନ୍ନ ସଂକଟରେ ଜର୍ଜରିତ ସିନ୍ଧୁ ଉପତ୍ୟକାର ପ୍ରଧାନ ନଗରଗୁଡ଼ିକ ମଧ୍ୟରେ ଯୋଗସୂତ୍ର କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇ ଶେଷକୁ ବିଲୁପ୍ତ ହୋଇଗଲା । କାଥିଆବାଡ଼ ଉପଦ୍ୱୀପରେ ତଥାକଥିତ ହରପ୍ପା ଯୁଗ ପରେ ଦେଖା ଦେଇଥିଲା ନୂଆ ଏକ ହରପ୍ପାଭୋର ଯୁଗ । ସେଇ ଯୁଗରେ ସ୍ଥାନୀୟ ସଂସ୍କୃତି କିଛି ପରିମାଣରେ ପରିବର୍ତ୍ତିତ ହୋଇଥିଲା, ଯଦିଓ ତା'ର ବିକାଶର ଧାରାରେ କୌଣସି ବିରତି ଘଟି ନଥିଲା । ଖନନ କାର୍ଯ୍ୟ ଫଳରେ ଦେଖାଯାଇଛି ଯେ, ଏହି ଅଞ୍ଚଳରେ ହରପ୍ପା ଯୁଗର ସଭ୍ୟତାର ଅବନତ ଅବସ୍ଥା କୌଣସି ମତେ ବହିଃଶତ୍ରୁର ଆକ୍ରମଣ ସହିତ ସଂପୃକ୍ତ ନଥିଲା । ସିନ୍ଧୁ ଉପତ୍ୟକା କ୍ଷେତ୍ରରେ ବିଷୟଟି ଏହିଭଳି ଘଟିଥିବା ସମ୍ଭବ । ସେଠାରେ କେତେକ ସହର କ୍ଷେତ୍ରରେ ବିକାଶର ଅପେକ୍ଷାକୃତ ପରବର୍ତ୍ତୀ ପର୍ଯ୍ୟାୟରେ, ଅବଶ୍ୟ, ଏହି ଅଞ୍ଚଳରେ ବିଦେଶୀ ଉପଜାତିଗୁଡ଼ିକର ଅନୁପ୍ରବେଶ ବୋଲି ଜଣାଯାଏ । ତେବେ ଏ ପ୍ରସଙ୍ଗରେ ଲକ୍ଷଣୀୟ ବିଷୟଟି ହେଉଛି, ଏହି ପର୍ଯ୍ୟାୟରେ ହରପ୍ପା ସହରଟିକୁ ବିଦେଶୀମାନଙ୍କ ଆକ୍ରମଣରୁ ରକ୍ଷା କରିବା ପାଇଁ ସହରଗୁଡ଼ିକର ପ୍ରତିରକ୍ଷାକାରୀ ଦୁର୍ଗ ବ୍ୟବସ୍ଥାକୁ ଦୃଢ଼ କରି ଗଢ଼ାଯାଇଥିଲା । ହରପ୍ପାରେ ଏବଂ ଉପରୋକ୍ତ ଏହିସବୁ ସହରରେ ଆବିଷ୍କୃତ ହୋଇଥିବା ବ୍ୟାପକ ହତ୍ୟାକାଣ୍ଡର ନିଦର୍ଶନ ଏବଂ ରାସ୍ତା ଉପରେ ପଡ଼ିଥିବା ମଣିଷର ଅସ୍ଥିକଙ୍କାଳ (ସ୍ପଷ୍ଟତଃ ଜଣାଯାଏ, ଆକ୍ରମଣକାରୀ ଶତ୍ରୁ ସହିତ ଲଢ଼ାଇ କରିବାକୁ ଯାଇ ନିହତ ହୋଇଥିବା ସହରବାସୀଙ୍କର ଦେହାବଶେଷ) ସୂଚନା ଦିଏ ଯେ, ଏକଦା ସହରବାସୀ ଏବଂ ବହିରାଗତ ଶତ୍ରୁ ଉପଜାତିମାନଙ୍କ ମଧ୍ୟରେ ଘୋର ଯୁଦ୍ଧ ଚାଲିଥିଲା ।

ଖନନ କାର୍ଯ୍ୟର ଫଳାଫଳ ଅନୁଯାୟୀ ବିଚାର କଲେ, ଜଣାଯାଏ ଯେ, ଯେଉଁସବୁ ଉପଜାତି ସିନ୍ଧୁ ଉପତ୍ୟକାରେ ପ୍ରବେଶ କରିଥିଲେ, ସେମାନେ ଥିଲେ ଏକାଧିକ ନରଗୋଷ୍ଠୀର ଅନ୍ତର୍ଗତ । ଏମାନଙ୍କ ମଧ୍ୟରେ ଥିଲେ ବେଲୁଚିସ୍ତାନର କେଉଟି ଉପଜାତି ଏବଂ ଇରାନ୍‌ର ଉପଜାତିମାନଙ୍କ ସହିତ ଘନିଷ୍ଠ ମେଳ ଥିବା ଆଉ କେତେକ ଉପଜାତି । ଏହା ଛଡ଼ା ଆଉ କେତେକ ଉପଜାତି ଗୋଷ୍ଠୀ ବି ଆସିଥିଲେ, ସେମାନଙ୍କର ନରଗୋଷ୍ଠୀଗତ ବିଚାର ଦୃଷ୍ଟିରୁ ହରପ୍ପା ସଭ୍ୟତାର ଲୋକଙ୍କ ସହିତ ପାର୍ଥକ୍ୟ ନଥିଲା । ଏମାନେ ହରପ୍ପା ସଭ୍ୟତାର ସହରଗୁଡ଼ିକର ଅଦୂରରେ ବାସ କରୁଥିଲେ । ଯେଉଁସବୁ ବିଦେଶୀ ଉପଜାତି ସିନ୍ଧୁ ଉପତ୍ୟକାର ସହରଗୁଡ଼ିକୁ ଆକ୍ରମଣ କରିଥିଲେ, ଲୋକ ସଂଖ୍ୟା ଦୃଷ୍ଟିରୁ ସେମାନେ ଅଧିକ ନଥିଲେ । ବେଳେ ବେଳେ ଏହିପରି ଗୋଟିଏ ଗୋଟିଏ ଉପଜାତିର ଉପସ୍ଥିତିର ଚିହ୍ନ ହରପ୍ପା ଯୁଗର ଗୋଟିଏ ମାତ୍ର ଜନବସତିରେ ସୀମିତ ଥିବାର ଦେଖାଯାଇଛି । ତେବେ ଏକଥା ସ୍ୱୀକାର କରିବାକୁ ହେବ ଯେ, ଏହିସବୁ ଆକ୍ରମଣକାରୀ ଉପଜାତି ହରପ୍ପା ସଭ୍ୟତାର ପ୍ରଧାନ ନଗର କେନ୍ଦ୍ରଗୁଡ଼ିକର ପତନ୍ତ ଅବସ୍ଥାକୁ ତା'ର ଚୂଡ଼ାନ୍ତ ପରିଣତି ଆଡ଼କୁ ଠେଲି ଦେଇଥିଲେ । ଏହିସବୁ ଆକ୍ରମଣକାରୀ ଉପଜାତିଗୁଡ଼ିକ ମଧ୍ୟରୁ କେତେକଙ୍କୁ ଭାରତୀୟ-ଆର୍ଯ୍ୟ ଗୋଷ୍ଠୀଭୁକ୍ତ ବୋଲି ଆଖ୍ୟାୟିତ କରାଯାଇ ପାରେ । ତେବେ ବିଷୟଟିକୁ ସାମଗ୍ରିକ ଭାବେ ବିଚାର କଲେ, ଦେଖାଯାଏ ଯେ, ହରପ୍ପା ସଭ୍ୟତାର ଅବକ୍ଷୟ ସହିତ ଭାରତରେ ଆର୍ଯ୍ୟମାନଙ୍କର

ଅନୁପ୍ରବେଶକୁ ସିଧାସଳଖ ଯୋଡ଼ି ଦେବାର ଯେଉଁ ପ୍ରଥାଗତ ତତ୍ତ୍ୱଟି ପ୍ରଚଳିତ ଅଛି, ତା'ର ଏକ ମୌଳିକ ପୁନର୍ବିଗ୍ଭର ଦରକାର । ଅବଶ୍ୟ, ଭାରତରେ ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକର ଯେ ଏକଦା ଅନୁପ୍ରବେଶ ଘଟିଥିଲା, ଏହି ବାସ୍ତବ ସତ୍ୟଟି କିନ୍ତୁ ଏହା ଦ୍ୱାରା ଖଣ୍ଡିତ ହେଉ ନାହିଁ ।

# ମଧ୍ୟ, ପଶ୍ଚିମ ଓ ପୂର୍ବ ଭାରତରେ ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି

ସିନ୍ଧୁ ଉପତ୍ୟକା ସଭ୍ୟତାର ସମୃଦ୍ଧି କାଳରେ ଏହି ସଭ୍ୟତାର ସୀମା ବାହାରେ ଧାତୁର ବ୍ୟବହାର ଥିଲା ଅତି ଆଦିମ ସ୍ତରରେ । ତାମ୍ରପ୍ରସ୍ତରଯୁଗରେ ଭାରତର ବିଭିନ୍ନ ଅଞ୍ଚଳର ଏହି ଧରଣର ଅସମ ବିକାଶ ଆହୁରି ଅଧିକ ସ୍ପଷ୍ଟ ହୋଇ ଉଠିଥିଲା ।

ମଧ୍ୟ ଏବଂ ପଶ୍ଚିମ ଭାରତରେ ଏହି ଯୁଗର ପ୍ରତ୍ନତାତ୍ତ୍ୱିକ ଆବିଷ୍କାରସମୂହ ସେତେବେଳକାର ବିକଶିତ ହରପ୍ପା ସଂସ୍କୃତିର ପ୍ରଭାବର ପ୍ରମାଣ ଦେଇଥାଏ । ତେବେ ଦେଶର ଦକ୍ଷିଣ ଏବଂ ପୂର୍ବାଞ୍ଚଳରେ ଏହି ପ୍ରଭାବ ଥିଲା ଅନେକ କମ୍ ।

କାଥିଆବାଡ଼ ଉପଦ୍ୱୀପର ଏହି ସମୟର ଜନବସତିଗୁଡ଼ିକର ବୈଶିଷ୍ଟ୍ୟ ହେଲା ଉନ୍ନତ ହରପ୍ପା ଯୁଗର ଐତିହ୍ୟ ସହିତ ଅପେକ୍ଷାକୃତ ପ୍ରାଚୀନ ସ୍ଥାନୀୟ ନବପ୍ରସ୍ତରଯୁଗୀୟ ସଂସ୍କୃତିର ବିଭିନ୍ନ ଉପାଦାନର ଏକ ପ୍ରକାରର ମିଶ୍ରଣ । ପୁଣି ସମୟର ଗତି ସଙ୍ଗେ ସଙ୍ଗେ ଉପରୋକ୍ତ ହରପ୍ପାଯୁଗୀୟ ଐତିହ୍ୟଗୁଡ଼ିକ ମଧ୍ୟ ଏହି ଅଞ୍ଚଳରୁ କ୍ରମଶଃ ଲୋପ ପାଇ ଯାଇଥିଲା ।

କାଥିଆବାଡ଼ର ଉତ୍ତର-ପୂର୍ବ ଦିଗରେ ତଥାକଥିତ ବାନାସ ସଂସ୍କୃତିଭୁକ୍ତ (ଆଞ୍ଚଳିକ ବାନାସ ନଦୀର ନାମାନୁଯାୟୀ) କେତେକ ଜନବସତି ଆବିଷ୍କୃତ ହୋଇଛି । ଏହିସବୁ ବସତି ମଧ୍ୟରେ ସବୁଠାରୁ ପ୍ରାଚୀନଟି ହେଉଛି ଖ୍ରୀଷ୍ଟ ପୂର୍ବ ୨ ହଜାର (କିମ୍ବା ୧୮୦୦) ବର୍ଷ ପୁରୁଣା । ଉପରୋକ୍ତ ଏହି ଜନବସତିଗୁଡ଼ିକ ତତ୍କାଳୀନ ଅନ୍ୟାନ୍ୟ ଜନବସତିଠାରୁ ଭିନ୍ନ ଏବଂ ସ୍ୱତନ୍ତ୍ର । କାରଣ, ଏଠାରେ ପଥରର ହତିଆର ("ପ୍ରସ୍ତର ଫଳକ ନିର୍ମାଣ ଶିଳ୍ପ" ଥିଲା ସିନ୍ଧୁ ପ୍ରଦେଶର ହରପ୍ପାଯୁଗୀୟ ସଂସ୍କୃତିର ଏବଂ କାଥିଆବାଡ଼ ହରପ୍ପାପରଯୁଗୀୟ ସଂସ୍କୃତିର ଏକ ସୁନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ) ଏବଂ ପ୍ରଚୁର ସଂଖ୍ୟକ ତମ୍ବାରେ ତିଆରି ଜିନିଷପତ୍ର ନଥିଲା । ଜନପଦଗୁଡ଼ିକର ଅଧିବାସୀମାନେ ପୁରୁଣାକାଳିଆ ପଥର ଏବଂ ମାଟି ଘରେ ବାସ କରୁଥିଲେ । ଏଠାରେ ଯେଉଁସବୁ ମାଟିଶିଳ୍ପର ନିଦର୍ଶନ ମିଳିଛି, ତାହା କାଥିଆବାଡ଼ର ତତ୍କାଳୀନ ପ୍ରଚଳିତ ଶିଳ୍ପ ଠାରୁ ପୃଥକ୍ । ଏଠାକାର ଏହି ବିଶିଷ୍ଟ ସଂସ୍କୃତିର ପରିଗ୍ଭୟକ ଏକ ଜନପଦରେ ହରପ୍ପାଯୁଗୀୟ ବସତିଗୁଡ଼ିକର ବୈଶିଷ୍ଟ୍ୟସୂଚକ ଏକ ଭିତ୍ତି ମଞ୍ଚର ଭଗ୍ନାବଶେଷ ମିଳିଛି ।

ନର୍ଭଦାତଲି, ନେଭାସା, ନାସିକ ଏବଂ ଯୋର୍ବାରେ ଭାରତୀୟ ପ୍ରତ୍ନତତ୍ତ୍ୱବିଦ୍‌ମାନେ ଯେଉଁ ଗବେଷଣା ଚଳେଇଥିଲେ, ତା ଫଳରେ ମାଳବ ଓ ମହାରାଷ୍ଟ୍ରର ପ୍ରାଚୀନ କାଳର ଅଧିବାସୀମାନେ କିପରି ଜୀବନଯାପନ କରୁଥିଲେ, ତା'ର କେତେକ ଆଭାସ ମିଳିଛି । ତାମ୍ରପ୍ରସ୍ତରଯୁଗରେ ଏହି ଅଞ୍ଚଳର ଲୋକଙ୍କର ପେଶା ଥିଲା ଗ୍ଭଷବାସ ଏବଂ ପଶୁପାଳନ । ସେମାନେ ଗହମ, ଧାନ ଏବଂ

କେଇ ପ୍ରକାରର ଶିଳ୍ପ ସୃଷ୍ଟି କରୁଥିଲେ । ମେଣ୍ଢା ଏବଂ ଛେଳି ପାଳୁଥିଲେ । ଖ୍ରୀଷ୍ଟ ପୂର୍ବ ତ୍ରୟୋଦଶ ଶତାବ୍ଦୀର ଏଠାକାର ଭୂସ୍ତରରେ ପୁରୁଣା ଏକ ମୋଟା ରେଶମ ଆଉ ତୁଳାର ମିଶ୍ରଣରେ ତିଆରି ଟୁକୁରାଏ ସୂତା ମିଳିଛି । ଏଥିରୁ ଜଣାଯାଏ ଯେ, ଏହି ଯୁଗରେ ଏଠାକାର ଲୋକେ ତନ୍ତ ଶିଳ୍ପକାର୍ଯ୍ୟ ଜାଣିଥିଲେ । ହରପ୍ପାର ଜନବସତିଗୁଡ଼ିକ ଭଳି ଏଠାରେ ପ୍ରଚୁର ପରିମାଣର ପ୍ରସ୍ତର ଫଳକ ବ୍ୟବହୃତ ହେଉଥିଲା । କିନ୍ତୁ ତମ୍ବା ତିଆରି ଜିନିଷ ବ୍ୟବହୃତ ହେଉଥିଲା ଖୁବ୍ ଅଳ୍ପ । ଏହି ଅଞ୍ଚଳର ସମସ୍ତ ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତିର ବୈଶିଷ୍ଟ୍ୟ କୁମ୍ଭାର ଚକରେ ତିଆରି ସେଇସବୁ କଳା ଏବଂ ଲାଲ ରଙ୍ଗର ମାଟିପାତ୍ର ମଧ୍ୟ ଏସବୁ ଜାଗାରେ ମିଳିଛି । ଶକ୍ତ ଏବଂ ସ୍ଥାୟୀ ଉପାଦାନ ଦ୍ୱାରା ଘରସବୁ ତିଆରି ହେଉଥିଲା, କାନ୍ଥର ଭିତର ଏବଂ ବାହାର ପଟେ କାଦୁଅର ପ୍ରଲେପ ଦିଆଯାଉଥିଲା । ବେଳେ ବେଳେ କାଠ ଦେଇ କୁଡ଼ିଆ ଘର ମଧ୍ୟ ତିଆରି ହେଉଥିଲା । ନଭ୍ଦାତଲିରେ ଖନନ କାର୍ଯ୍ୟ ଫଳରେ ତିନି ରକମର ବାସଗୃହ ଦେଖିବାକୁ ମିଳିଛି : ଗୋଲ, ବର୍ଗାକାର ଏବଂ ଆୟତାକାର । ଏହିସବୁ ବାସଗୃହ ଥିଲା ଛୋଟ ଛୋଟ, ସବୁଠାରୁ ବଡ଼ ଘରର ଦୈର୍ଘ୍ୟପ୍ରସ୍ଥ ୪ ମିଟର × ୩ ମିଟରରୁ ଅଧିକ ନଥିଲା । ତେଜସ୍କ୍ରିୟ କାର୍ବନ-୧୪ ପଦ୍ଧତି ବିଶ୍ଳେଷଣ ଦ୍ୱାରା ଦେଖାଯାଇଛି ଯେ, ଏହି ଅଞ୍ଚଳରେ ତାମ୍ରପ୍ରସ୍ତରଯୁଗର ସୂତ୍ରପାତ ଘଟିଥିଲା ଖ୍ରୀଷ୍ଟ ପୂର୍ବ ୧୭ ଶତାବ୍ଦୀ, କିମ୍ବା ୧୬ଶ ଶତାବ୍ଦୀରେ ।

ଏହାର ଆଉରି ଦକ୍ଷିଣକୁ – ନାସିକ ଏବଂ ଯୋର୍ବାରେ ହରପ୍ପାଯୁଗୀୟ ସଂସ୍କୃତିର କେତେକ ପ୍ରଭାବ ଲକ୍ଷ୍ୟ କରାଯାଏ । ଏକା ରକମର ମାଟିପାତ୍ର ଏବଂ ଧାତୁ ନିର୍ମିତ ହତିଆର ମଧ୍ୟ ଏଠାରେ ମିଳିଛି । ତେବେ ସାଧାରଣ ଭାବେ କହିବାକୁ ଗଲେ, ଯେତେ ଅଧିକ ଦକ୍ଷିଣକୁ ଗଲା ହରପ୍ପା ସଭ୍ୟତାର ପ୍ରଭାବ ସେତେ କ୍ଷୀଣରୁ କ୍ଷୀଣତର ମନେ ହୁଏ । ପୂର୍ବ ଭାରତର ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି ସହିତ ଏସବୁ ସ୍ଥାନର କେତେକ ଯୋଗସୂତ୍ର ଲକ୍ଷ୍ୟ କରାଯାଏ । ଯୋର୍ବାରେ ତାମ୍ରପ୍ରସ୍ତରଯୁଗୀୟ ସ୍ତରଗୁଡ଼ିକ ଖ୍ରୀଷ୍ଟ ପୂର୍ବ ୧୪ଶରୁ ୧୧ଶ ଶତାବ୍ଦୀ ମଧ୍ୟରେ ସମୃଦ୍ଧି ଲାଭ କରିଥିଲା ।

ମଧ୍ୟ ଭାରତ ଏବଂ ଦାକ୍ଷିଣାତ୍ୟରେ ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତିର ଉଦ୍ଭବ ବିଷୟଟି ଏପର୍ଯ୍ୟନ୍ତ ବିଶେଷଜ୍ଞମାନଙ୍କ ମଧ୍ୟରେ ବିତର୍କମୂଳକ ହୋଇ ରହିଛି । ଏହାର ମୂଳ ଉତ୍ସ ଇରାନୀୟ ନା ଏହା ଉପରେ ଭାରତୀୟ-ଆର୍ଯ୍ୟ ସଂସ୍କୃତିର ପ୍ରଭାବ ପଡ଼ିଥିଲା, ଏହାକୁ ପ୍ରମାଣ କରିବା ଉଦ୍ଦେଶ୍ୟରେ ବହୁବିଧ ତତ୍ତ୍ୱ ଉପସ୍ଥାପିତ କରାଯାଇଛି । ତେବେ ଏସବୁ ଠାରୁ ଅଧିକ ବିଶ୍ୱାସଜନକ ମନେ ହୁଏ ଏହି ମତଟି ଯେ, ମଧ୍ୟ ଭାରତର ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି ସ୍ଥାନୀୟ ଉତ୍ସ ବହୁ ବିଦେଶୀ ସଂସ୍କୃତିର ପ୍ରଭାବ ସତ୍ତ୍ୱେ ଏହି ଅଞ୍ଚଳରେ ପୂର୍ବବର୍ତ୍ତୀ ନବପ୍ରସ୍ତରଯୁଗୀୟ ସଂସ୍କୃତିଗୁଡ଼ିକ ମଧ୍ୟରୁ ଏକଦା ବିକଶିତ ହୋଇ ଉଠିଥିଲା । ସମ୍ଭବତଃ, ଏହି ଅଞ୍ଚଳର ଅଧିବାସୀ ଉପଜାତିଗୁଡ଼ିକ ନରଗୋଷ୍ଠୀ ଦୃଷ୍ଟିରୁ ଥିଲେ ହରପ୍ପା ବାସୀମାନଙ୍କର ସଗୋତ୍ର । ତେବେ ଏ ପ୍ରସଙ୍ଗରେ, ଅବଶ୍ୟ, ମନେ ରଖିବାକୁ ହେବ ଯେ, ତାମ୍ରପ୍ରସ୍ତରଯୁଗରେ ଭାରତର ଏକ ବିଶାଳ ଅଂଶରେ ଜନବସତିର ସୂତ୍ରପାତ ଘଟି ନଥିଲା ଏବଂ ଅନ୍ୟାନ୍ୟ ବହୁ ଅଞ୍ଚଳରେ କେବଳ ଏପରିସବୁ ଉପଜାତି ବାସ କରୁଥିଲେ, ଯେଉଁମାନେ କି ବିକାଶର ଖୁବ୍ ନିମ୍ନ ସ୍ତରରେ ଥିଲେ ।

ଭାରତୀୟ ପ୍ରତ୍ନତତ୍ତ୍ୱବିଦ୍ମାନେ ପୂର୍ବ ଭାରତରେ ଏକ ସ୍ୱତନ୍ତ୍ର ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି ଆବିଷ୍କାର କରିଛନ୍ତି । ଏହା ହେଉଛି ତଥାକଥିତ "ତାମ୍ର ଭଣ୍ଡାର ଏବଂ ଗେରୁଆ ମାଟିପାତ୍ର" ସଂସ୍କୃତି । ଏହି ସଂସ୍କୃତିର ପ୍ରତିଷ୍ଠାତା ଥିଲେ କୃଷକମାନେ । ତେବେ ଶିକାର ଏବଂ ମାଛ ଧରିବା ସେତେବେଳକୁ

ସେମାନଙ୍କ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ତାମ୍ର ନିର୍ମିତ ବହୁ ବିଚିତ୍ର ଧରଣର ହତିଆର ସେମାନେ ତିଆରି କରୁଥିଲେ, ଯଥା ଚେପ୍‌ଟା କୁରାଢ଼ୀ, ଛୋଟ ବଡ଼ ବିଭିନ୍ନ ଧରଣର ବଟାଳି, ମାଛ ମାରିବା ଚେଣ୍ଡା, ଆଦି । ଏହି ସଂସ୍କୃତିର ପ୍ରତିଷ୍ଠାତାମାନଙ୍କର ଉତ୍ପତ୍ତି ସଂପର୍କରେ ବିଭିନ୍ନ ରକମର ତତ୍ତ୍ୱ ପେଶ୍ କରାଯାଇଥାଏ । ମଧ୍ୟ ଭାରତରୁ କେତେକ ଉପଜାତି ପୂର୍ବାଞ୍ଚଳକୁ ଆସି ଏହି ସଂସ୍କୃତି ପ୍ରତିଷ୍ଠା କରିଥିଲେ ବୋଲି ଏକ ମତକୁ କେତେକ ବିଶେଷଜ୍ଞ ମଧ୍ୟ ସମର୍ଥନ କରିଥାନ୍ତି । ଅନ୍ୟ କେତେକ ମନେ କରନ୍ତି, ଏହି ସଂସ୍କୃତିର ଚେର ନିହିତ ଥିଲା ହରପ୍‌ପା ସଂସ୍କୃତି ମଧ୍ୟରେ । ଆଉ କେତେକ ବିଖ୍ୟାତ ପ୍ରତ୍ନତତ୍ତ୍ୱବିଦ୍ ଏବଂ ଆର୍.ହାଇନେ-ଗେଲ୍‌ଡନାର ମନେ କରନ୍ତି, "ତାମ୍ର ଭଣ୍ଡାର" ସଂସ୍କୃତିର ପ୍ରତିଷ୍ଠାତା ଥିଲେ କେତେକ ଆର୍ଯ୍ୟ ଉପଜାତି ।

ତେବେ ସଂପ୍ରତି ଭାରତରେ ଯେଉଁସବୁ ଅନୁସନ୍ଧାନ କାର୍ଯ୍ୟ ଚାଲିଛି, ସେଥିରୁ "ତାମ୍ର ଭଣ୍ଡାର" ସଂସ୍କୃତିକୁ କ୍ରମଶଃ ଅଧିକରୁ ଅଧିକ ନିଶ୍ଚିତ ଭାବେ ମୁଣ୍ଡା ଉପଜାତିଗୁଡ଼ିକର ପୂର୍ବପୁରୁଷମାନଙ୍କ ସହିତ ସଂପୃକ୍ତ କରିବାର ପ୍ରବଣତା ଦେଖା ଦେଇଛି । ଗଙ୍ଗା-ଯମୁନାର ଅବବାହିକା ଅଞ୍ଚଳର "ତାମ୍ର ଭଣ୍ଡାରର" ଏହି ସଂସ୍କୃତି ଖ୍ରୀଷ୍ଟ ପୂର୍ବ ୧୨ଶ ଏବଂ ୧୧ଶ ଶତାବ୍ଦୀରେ ଏ ଅଞ୍ଚଳର ଅନେକ ଜନପଦରେ "ଚିତ୍ରକରା ଧୂସର ମାଟିପାତ୍ର" ସଭ୍ୟତାକୁ ସ୍ଥାନ ଛାଡ଼ି ଦେଇଥିଲା । ଆଉ କେତେକ ଅଞ୍ଚଳରେ "ତାମ୍ର ଭଣ୍ଡାର" ସଂସ୍କୃତି ଅନେକ ଦୀର୍ଘ କାଳ ପର୍ଯ୍ୟନ୍ତ ତିଷ୍ଠି ରହିଥିଲା ଏବଂ ଅନେକ ପରେ ଉନ୍ନତ ସଂସ୍କୃତିଗୁଡ଼ିକ ସଂସ୍ପର୍ଶରେ ଆସି ହାର ମାନିଥିଲା ।

ସଂପ୍ରତି ପୂର୍ବ ଭାରତରେ ଏପରି କେତେକ ନୂତନ ତାମ୍ରପ୍ରସ୍ତରଯୁଗୀୟ ଜନବସତି ଆବିଷ୍କୃତ ହୋଇଛି, ଯାହା ସହିତ "ତାମ୍ର ଭଣ୍ଡାର" ସଂସ୍କୃତିର କୌଣସି ସାମଞ୍ଜସ୍ୟ ନାହିଁ । ଯଥା, ଉତ୍ତର ବିହାରର ଚିରାନ୍ଦରେ ଦେଖିବାକୁ ମିଳିଛି ଯେ, ସେଠାକାର ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି (କଳା ଏବଂ ଲାଲ ରଙ୍ଗର ମାଟିପାତ୍ରର ବୈଶିଷ୍ଟ୍ୟ ଚିହ୍ନିତ) ସିଧାସଳଖ ସ୍ଥାନୀୟ ନବପ୍ରସ୍ତରଯୁଗୀୟ ସଂସ୍କୃତି ମଧ୍ୟରୁ ବିକଶିତ ହୋଇଥିଲା । ଚିରାନ୍ଦର କଳା ଏବଂ ଲାଲ ରଙ୍ଗର ମାଟିପାତ୍ର ସହିତ ପଶ୍ଚିମ ଏବଂ ମଧ୍ୟ ଭାରତର ତାମ୍ରପ୍ରସ୍ତରଯୁଗୀୟ ମାଟିପାତ୍ରର ସାଦୃଶ୍ୟଟି ବଡ଼ କୌତୂହଳୋଦ୍ଦୀପକ । ତେଜସ୍କ୍ରିୟ କାର୍ବନ-୧୪ ପଦ୍ଧତି ସାହାଯ୍ୟରେ ଆବିଷ୍କୃତ ହୋଇଛି ଯେ, ଚିରାନ୍ଦର ପରବର୍ତ୍ତୀ ତାମ୍ରପ୍ରସ୍ତରଯୁଗୀୟ ସ୍ତରଗୁଡ଼ିକ ଖ୍ରୀଷ୍ଟ ପୂର୍ବ ୮ମ ଶତାବ୍ଦୀରେ ଉଦ୍‌ଭୂତ ହୋଇଥିଲା । ଏହାର ଅଳ୍ପ କାଳ ପରେ ଲୁହା ଏବଂ ତଥାକଥିତ ଉତ୍ତରାଞ୍ଚଳୀୟ କଳା ରଙ୍ଗର ପାଲିସ୍ ଦିଆ ମାଟିପାତ୍ରର ଆବିର୍ଭାବ ଘଟିଥିଲା ।

ଏସବୁକୁ ହିସାବକୁ ନେଲେ, ନବପ୍ରସ୍ତର ଏବଂ ତାମ୍ରପ୍ରସ୍ତରଯୁଗଗୁଡ଼ିକରେ ଭାରତର ଅଧିବାସୀ ନରଗୋଷ୍ଠୀଗୁଡ଼ିକ ମଧ୍ୟରେ ଯେଉଁ ବୈଚିତ୍ର୍ୟ ଓ ବିକାଶର ଅସମତା ପରିଲକ୍ଷିତ ହୁଏ, ତାହା ଦେଶର ଐତିହାସିକ, ସାଂସ୍କୃତିକ ଓ ସାମାଜିକ ବିକାଶର ପରବର୍ତ୍ତୀ ଗତିପଥକୁ ଲକ୍ଷ୍ୟଣୀୟ ଭାବେ ପ୍ରଭାବିତ କରିଥିଲା ।

# ଭାରତୀୟ-ଆର୍ଯ୍ୟ ଏବଂ ଗଙ୍ଗା ଉପତ୍ୟକାର ସଭ୍ୟତା

## "ଆର୍ଯ୍ୟମାନଙ୍କ ଆଗମନ ପ୍ରଶ୍ନ"

ପ୍ରତ୍ନତତ୍ତ୍ୱବିଦ୍‌ମାନେ ଏ ଶତାବ୍ଦୀର ବହୁ ଦଶକ ଧରି ଭାରତକୁ "ଆର୍ଯ୍ୟମାନଙ୍କ ଆଗମନ" ପ୍ରଶ୍ନଟି ନେଇ ବିତର୍କ ଚଳେଇ ଆସିଛନ୍ତି । ସେମାନେ ନିର୍ଦ୍ଧାରଣ କରିବାକୁ ଚେଷ୍ଟା କରିଛନ୍ତି,

କେଉଁଠୁ, କିପରି ଏବଂ କେବେ ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକ ଭାରତକୁ ଆସିଥିଲେ । ଆର୍ଯ୍ୟମାନଙ୍କର ଆଦି ବାସଭୂମି କେଉଁଠି ଥିଲା, ତାହା ମଧ୍ୟ ଏହି ବିତର୍କର ଅନ୍ତର୍ଗତ ।

କେତେକ ବିଶେଷଜ୍ଞ ଭାରତରେ ଆର୍ଯ୍ୟମାନଙ୍କର ଅନୁପ୍ରବେଶକୁ ଦେଖିଛନ୍ତି ଅତି ଉନ୍ନତ ଆର୍ଯ୍ୟମାନଙ୍କ ଦ୍ୱାରା ପଶ୍ଚାଦ୍‌ପଦ ଆଦିମ ଅଧିବାସୀମାନଙ୍କୁ ପଦାନତ କରିବା ହିସାବରେ। ଆର୍ଯ୍ୟମାନେ କାଳେ ଭାରତକୁ ସଭ୍ୟତାର ଆଲୋକ ଆଣିଥିଲେ ଏବଂ ଏ ଦେଶରେ ଏକ ଉନ୍ନତ ବ୍ୟବସ୍ଥା ପ୍ରତିଷ୍ଠା କରିଥିଲେ । ଜାତିଗତ ତତ୍ତ୍ୱ ଉପରେ ଭିତ୍ତି କରି ଗଢ଼ି ଉଠିଥିବା ବିଭିନ୍ନ ବ୍ୟାଖ୍ୟା ଅନୁସାରେ ଗୁରୁତ୍ୱ ଦେଇ କୁହାଯାଏ ଯେ, ଜାତିଗତ ଭାବେ ବିଶୁଦ୍ଧ ଆର୍ଯ୍ୟ ଏବଂ ତତ୍‌କାଳୀନ ଉପଜାତିମାନଙ୍କ ମଧ୍ୟରେ କାଳେ ଏକ ସ୍ପଷ୍ଟ ଜାତିବୈଷମ୍ୟ ରହିଥିଲା । ଏହି ବ୍ୟାଖ୍ୟାଟି ସ୍ଥାନୀୟ ଅଧିବାସୀମାନଙ୍କ ପକ୍ଷରେ ସ୍ୱାଧୀନ ବିକାଶ ଏବଂ ଅଗ୍ରଗତି ଯେକୌଣସି ସମ୍ଭାବନାକୁ ସଂପୂର୍ଣ୍ଣ ରୂପେ ନାକଚ କରି ଦିଏ । ଏହିସବୁ ବିଜ୍ଞାନ ବିରୋଧୀ ତତ୍ତ୍ୱରାଜି ଅନୁଯାୟୀ କହିବାକୁ ହେବ ଯେ, ଆର୍ଯ୍ୟମାନଙ୍କ ଆବିର୍ଭାବ ପରେ ହିଁ କେବଳ ଭାରତରେ ଏକ ଅତି ଉନ୍ନତ ସମାଜ ବ୍ୟବସ୍ଥା ପ୍ରତିଷ୍ଠିତ ହୋଇଥିଲା ଏବଂ ରାଷ୍ଟ୍ର ଏକ ସୁନିର୍ଦ୍ଦିଷ୍ଟ ରୂପ ପରିଗ୍ରହ କରିଥିଲା ।

ପରବର୍ତ୍ତୀ ସମୟରେ ସିନ୍ଧୁ ଉପତ୍ୟକାରେ ଏକ ଉନ୍ନତ ସଭ୍ୟତା ଆବିଷ୍କୃତ ହେଲା ପରେ ବହୁ ପ୍ରତ୍ନତତ୍ତ୍ୱବିତ୍ ସେମାନଙ୍କ ପୂର୍ବବର୍ତ୍ତୀ ମତ ପରିବର୍ତ୍ତନ କରିବାକୁ ବାଧ୍ୟ ହୋଇଥିଲେ । ତା ସତ୍ତ୍ୱେ ଉପରୋକ୍ତ ଏହି ପୁରୁଣାକାଳିଆ "ତତ୍ତ୍ୱଗୁଡ଼ିକ" ମଝିରେ ମଝିରେ ଏବେ ବି ଶୁଣିବାକୁ ମିଳିଥାଏ । ଯେଉଁସବୁ ଜାତିଙ୍କୁ ଏକମାତ୍ର ଆର୍ଯ୍ୟ ବୋଲି ଅଭିହିତ କରାଯାଇ ପାରେ, ସେମାନେ ହେଲେ ପ୍ରାଚୀନ ଇରାନୀୟ ଏବଂ ପ୍ରାଚୀନ ଭାରତୀୟ-ଆର୍ଯ୍ୟ ଜନଗୋଷ୍ଠୀ । ଏମାନେ ଏକଦା ନିଜକୁ ଆର୍ଯ୍ୟ ବୋଲି ଆଖ୍ୟା ଦେଇଥିଲେ ଏବଂ ଯେଉଁସବୁ ଅଞ୍ଚଳରେ ବାସ କରୁଥିଲେ, ସେସବୁକୁ "ଆର୍ଯ୍ୟାବର୍ତ୍ତ" ବୋଲି କହୁଥିଲେ । ପ୍ରକୃତରେ ଆର୍ଯ୍ୟ ଶବ୍ଦଟିର ଉତ୍ପତ୍ତି ଘଟିଥିଲା "ଆରୀ" ଶବ୍ଦଟିରୁ । ବୈଦିକ ଯୁଗରେ "ଆରୀ" ବୋଇଲେ "ବିଦେଶୀ", କିମ୍ବା "ଅଜ୍ଞାତବ୍ୟକ୍ତିକୁ" ବୁଝାଉଥିଲା ଏବଂ ଆର୍ଯ୍ୟ ଅର୍ଥ "ନବାଗତମାନଙ୍କ ସହିତ ସଂଯୁକ୍ତ" ବା "ନବାଗତମାନଙ୍କ ପକ୍ଷପାତୀ" । ପରବର୍ତ୍ତୀ କାଳରେ ଆର୍ଯ୍ୟ ବୋଇଲେ "ମହତ୍ ବଂଶୋଦ୍‌ଭବ ବ୍ୟକ୍ତିକୁ" ବୁଝାଇଲା ।

ତୁଳନାମୂଳକ ଭାଷାତତ୍ତ୍ୱ ଏବଂ ଅନ୍ୟାନ୍ୟ ସଂଶ୍ଳିଷ୍ଟ ବୈଜ୍ଞାନିକ ଗବେଷଣା ଫଳରେ ଜଣାଯାଇଛି ଯେ, ଏକଦା ଏଭଳି ଏକ ସମୟ ଥିଲା ଯେତେବେଳେ ପ୍ରାଚୀନ ଇରାନୀୟ ଏବଂ ପ୍ରାଚୀନ ଭାରତୀୟମାନେ ଏକତ୍ର ବସବାସ କରୁଥିଲେ । ସେମାନେ ଥିଲେ ତଥାକଥିତ ଭାରତୀୟ-ଇରାନୀୟ ସଂପ୍ରଦାୟର ଅନ୍ତର୍ଗତ । ଏହି ଦୁଇ ଜାତିର ଭାଷା ମଧ୍ୟରେ ଘନିଷ୍ଠ ସାଦୃଶ୍ୟ ଏବଂ ସେମାନଙ୍କ ସାହିତ୍ୟିକ ଐତିହ୍ୟରୁ (ପ୍ରାଚୀନ ଇରାନୀୟମାନଙ୍କର "ଆବେସ୍ତା" ଏବଂ ପ୍ରାଚୀନ ଭାରତୀୟମାନଙ୍କର "ଋଗ୍‌ବେଦରୁ") ତା'ର ପ୍ରମାଣ ମିଳିଥାଏ । ତା'ଛଡ଼ା ସେମାନଙ୍କର ଧର୍ମବିଶ୍ୱାସ ଏବଂ ବହୁ ପ୍ରାଚୀନ ସାମାଜିକ ପ୍ରତିଷ୍ଠାନର ସାଦୃଶ୍ୟରୁ ଏହି ପ୍ରମାଣ ମିଳିଥାଏ । ଆର୍ଯ୍ୟମାନଙ୍କର ଆଦି ବାସଭୂମି, ଅର୍ଥାତ୍, ଇରାନୀୟ ଏବଂ ଭାରତୀୟମାନଙ୍କର ପୂର୍ବପୁରୁଷଙ୍କର ବାସଭୂମି, କେତେକ ପଣ୍ଡିତଙ୍କ ମତରେ ଥିଲା ମଧ୍ୟ ଏସିଆରେ, ଆଉ କେତେକଙ୍କ ମତରେ, ଦକ୍ଷିଣ ରୁଷିଆର ଷ୍ଟେପ୍‌ଭୂମିରେ । ତା'ପରେ କେଉଁ ପଥ ଦେଇ ଇରାନୀୟମାନଙ୍କର ପୂର୍ବପୁରୁଷମାନେ ଇରାନ୍‌କୁ ଏବଂ ଭାରତୀୟମାନଙ୍କର ପୂର୍ବପୁରୁଷ ଭାରତରେ ପହଞ୍ଚିଥିଲେ, ସେ ସଂପର୍କରେ କୌଣସି ଐକ୍ୟ ମତ ନାହିଁ । ଖୁବ୍ ସମ୍ଭବତଃ, ଏହି

ଦୀର୍ଘ କାଳୀନ ସ୍ଥାନାନ୍ତରକରଣ ଚାଲିଥିଲା ଦୁଇ, କିମ୍ବା ତତୋଧିକ ଯାତ୍ରାପଥ ଦେଇ ଏବଂ ଲହରି ଭଳି ଗୁହାକୁ ଗୁହା ହୋଇ ।

ଦୁଃଖର ବିଷୟ, ଯେଉଁ ପ୍ରଶ୍ନଟିର ଏପର୍ଯ୍ୟନ୍ତ କୌଣସି ସଦୁତ୍ତର ମିଳି ନାହିଁ, ତାହା ହେଉଛି ଭାରତୀୟ-ଆର୍ଯ୍ୟମାନେ କେଉଁ ଅଞ୍ଚଳରେ ପ୍ରଥମେ ପ୍ରବେଶ କରିଥିଲେ । ପ୍ରାଚୀନ ଭାରତୀୟ-ଆର୍ଯ୍ୟମାନଙ୍କର ଲିଖିତ ଯେଉଁସବୁ ପୋଥି ଏପର୍ଯ୍ୟନ୍ତ ମିଳିଛି, ସେଥିରୁ ସ୍ପଷ୍ଟ ଜଣାଯାଏ ଯେ, ସେମାନେ ପୂର୍ବ ପଞ୍ଜାବ ଯମୁନା ଆଉ ଗଙ୍ଗା ନଦୀର ଉତ୍ତରାଞ୍ଚଳରେ ବସତି ସ୍ଥାପନ କରିଥିଲେ । ଏଥିରୁ ଜଣା ପଡ଼େ, ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକ ହରପ୍ପା ସଭ୍ୟତାର ପ୍ରଧାନ ନଗର କେନ୍ଦ୍ରଗୁଡ଼ିକ ଯେଉଁସବୁ ଅଞ୍ଚଳରେ ଅବସ୍ଥିତ ଥିଲା, ସେସବୁଥିରେ ବସତି ସ୍ଥାପନ କରି ନଥିଲେ । ବସ୍ତୁତଃ ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ଫଳରେ ଯେଉଁ କାଳପଞ୍ଜିର ଖୋଜ ମିଳିଛି, ସେଥିରୁ ଜଣାଯାଏ ଯେ, ସିନ୍ଧୁ ସଭ୍ୟତାର ନଗର କେନ୍ଦ୍ରଗୁଡ଼ିକର ଅବକ୍ଷୟ ଏବଂ ଭାରତୀୟ-ଆର୍ଯ୍ୟମାନଙ୍କର ଭାରତ ଆଗମନ ମଧ୍ୟରେ ବେଶ୍ ସମୟର ବ୍ୟବଧାନ ରହି ଯାଇଥିଲା । ସିନ୍ଧୁ ପ୍ରଦେଶରେ ହରପ୍ପା ସଭ୍ୟତାର ପତନ ଘଟିଥିଲା ଭାରତୀୟ-ଆର୍ଯ୍ୟମାନଙ୍କର ଭାରତରେ ଅନୁପ୍ରବେଶର କେଇ ଶତାବ୍ଦୀ ପୂର୍ବରୁ ।

## "ଋଗ୍‌ବେଦ" ଏବଂ ପ୍ରତ୍ନତାତ୍ତ୍ୱିକ ପ୍ରମାଣ

ଭାରତୀୟ-ଆର୍ଯ୍ୟମାନଙ୍କର ପ୍ରାଚୀନତମ ସାହିତ୍ୟର ମୂଳ ଉତ୍ସ ହେଉଛି "ଋଗ୍‌ବେଦ" । ଏହି ଆଦି ବେଦଟି ଖ୍ରୀଷ୍ଟ ପୂର୍ବ ୧୧ଶ, କିମ୍ବା ୧୦ମ ଶତାବ୍ଦୀରେ ରଚିତ ହୋଇଥିଲା ବୋଲି ଅଧିକାଂଶ ଆଧୁନିକ ବିଶେଷଜ୍ଞ ମତ ଦେଇଥାନ୍ତି । ଏହି ସମୟରେ "ଋଗ୍‌ବେଦର" ପ୍ରାଚୀନ ସୂକ୍ତଗୁଡ଼ିକ ପ୍ରଥମେ ସଂଗୃହୀତ ହୋଇ ଲିପିବଦ୍ଧ ହୋଇଥିଲା ।

ବୈଦିକ ସାହିତ୍ୟର ପରବର୍ତ୍ତୀ ଗ୍ରନ୍ଥଗୁଡ଼ିକ, ଅର୍ଥାତ୍, ପରବର୍ତ୍ତୀ ସଂହିତା, ଆରଣ୍ୟକ ଏବଂ ବ୍ରାହ୍ମଣସମୂହ ଲିଖିତ ହୋଇଥିଲା ଖ୍ରୀଷ୍ଟ ପୂର୍ବ ଅଷ୍ଟମରୁ ଷଷ୍ଠ ଶତାବ୍ଦୀ ମଧ୍ୟରେ ।

ସାଂପ୍ରତିକ ବର୍ଷମାନଙ୍କର କୌତୂହଳୋଦ୍ଦୀପକ ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ଫଳରେ ବୈଦିକ ଯୁଗର ଭାରତୀୟ-ଆର୍ଯ୍ୟ ଗୋଷ୍ଠୀଗୁଡ଼ିକ ସମ୍ବନ୍ଧରେ ସୁନିର୍ଦ୍ଦିଷ୍ଟ ନାନା ପ୍ରମାଣ ଆମର ହସ୍ତଗତ ହୋଇଛି । ଭାରତୀୟ ପ୍ରତ୍ନତତ୍ତ୍ୱବିଦ୍‌ମାନେ (ଯଥା, ବି.ବି.ଲାଲ, ବି.କେ.ଥାପର, ଆର୍.ଏସ୍.ଗୌଡ଼ ଏବଂ ଜେ.ପି.ଯୋଶୀ) ଏକ "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତିର ଅସ୍ତିତ୍ୱ ଆବିଷ୍କାର କରିଛନ୍ତି ଏବଂ ଗବେଷଣା ଫଳରେ ଦେଖାଯାଇଛି ଯେ, ଏହି ସଂସ୍କୃତି ଏକଦା ସମଗ୍ର ପଞ୍ଜାବ, ଯମୁନା ଓ ଗଙ୍ଗା ନଦୀର ଉତ୍ତରାଂଶରେ ତଥା ଏହି ନଦୀ ଦୁଇଟିର ଉପତ୍ୟକାଗୁଡ଼ିକରେ (ଆଧୁନିକ ଏଲାହାବାଦ ସହରର ଚତୁର୍ପାର୍ଶ୍ୱସ୍ଥ ଅଞ୍ଚଳ ସମେତ) ଏବଂ ଉତ୍ତର-ପୂର୍ବ ରାଜସ୍ଥାନରେ ବିସ୍ତାର ଲାଭ କରିଥିଲା । ଅର୍ଥାତ୍, ଆଦି ବୈଦିକ ଯୁଗରେ ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକ ଯେଉଁସବୁ ଅଞ୍ଚଳରେ ବସତି ସ୍ଥାପନ କରିଥିଲେ, ସେଇ ସମଗ୍ର ଭୂଖଣ୍ଡରେ ଉପରୋକ୍ତ ସଂସ୍କୃତି ପ୍ରସାରିତ ହୋଇଥିଲା । "ଋଗ୍‌ବେଦର" ବିଭିନ୍ନ ସୂକ୍ତ କେଉଁ ଅଞ୍ଚଳରେ ରଚିତ ହୋଇଥିଲା, ତାହା ସ୍ୱୟଂ "ଋଗ୍‌ବେଦର" ଭୌଗୋଳିକ ତଥ୍ୟସମୂହର ବିଶ୍ଳେଷଣ ଦ୍ୱାରା ନିର୍ଦ୍ଧାରଣ କରିବା ସମ୍ଭବ ହୋଇଛି । ସେ ଅଞ୍ଚଳଟି

ହେଉଛି ଉତ୍ତର-ପୂର୍ବ ପଞ୍ଜାବ । ଆଉ କେତେକ ବିଶେଷଜ୍ଞ ପଞ୍ଜାବର ଅମ୍ବାଲା ଜିଲ୍ଲାକୁ "ଋଗ୍‌ବେଦ" ରଚନାର ଆଉ ଏକ ସୁନିର୍ଦ୍ଦିଷ୍ଟ ଅଞ୍ଚଳ ବୋଲି ବର୍ଣ୍ଣନା କରିଛନ୍ତି ।

ଅତ୍ରାଞ୍ଜିଖେରାରୁ ମିଳିଥିବା ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ଭିତ୍ତିରେ ବିଗ୍ରର କଲେ "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତି ଖ୍ରୀଷ୍ଟ ପୂର୍ବ ୧୨ଶ, କିମ୍ବା ୧୧ ଶତାବ୍ଦୀ ଠାରୁ ଅଧିକ ପୁରାତନ ହେବ ନାହିଁ । ଏହି ସମୟ କାଳଟି "ଋଗ୍‌ବେଦର" ରଚନା କାଳ ସହିତ ଖାପ ଖାଇଯାଏ । ଏହି ସାକ୍ଷ୍ୟକୁ ଭିତ୍ତି କରି ବିଶେଷଜ୍ଞମାନେ ଅନୁମାନ କରିଛନ୍ତି ଯେ, "ଋଗ୍‌ବେଦର" ସୂକ୍ତଗୁଡ଼ିକର ରଚନା କାଳର ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକ "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତି ସହିତ ସଂପୃକ୍ତ ଥିଲେ ।

ସାଂପ୍ରତିକ ବର୍ଷମାନଙ୍କର ଅନ୍ୟାନ୍ୟ ଖନନ କ୍ଷେତ୍ରରେ (ଯଥା, ହସ୍ତିନାପୁର ଓ ନୋହରେ) ତେଜସ୍କ୍ରିୟ କାର୍ବନ-୧୪ ପଦ୍ଧତି ପ୍ରୟୋଗ ଫଳରେ ଜଣା ପଡ଼ିଛି ଯେ, "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତି ଆଉରି ଅନେକ ପୁରାତନ, ଖ୍ରୀଷ୍ଟ ପୂର୍ବ ୯ମ, କିମ୍ବା ୮ମ ଶତାବ୍ଦୀର ନୁହେଁ (ଡି.ପି. ଅଗ୍ରଓ୍ୱାଲଙ୍କ ରଚନା ଦ୍ରଷ୍ଟବ୍ୟ) । ତା ଅର୍ଥ, ଗଙ୍ଗା ଏବଂ ଯମୁନା ନଦୀର ଉତ୍ତରାଞ୍ଚଳରେ ଉପରୋକ୍ତ ସଂସ୍କୃତିର ଆବିର୍ଭାବ କାଳକୁ ତଜ୍ଜନିତ ଅନ୍ୟାନ୍ୟ ସଂଶ୍ଳିଷ୍ଟ ପରିଣାମ ସହିତ ଉପସ୍ଥାପିତ କରିବାକୁ ହେବ । କେତେକ ବିଶେଷଜ୍ଞ "ଚିତ୍ରକରା ଧୂସର ମାଟିପାତ୍ର" ଯୁଗର ବୈଷୟିକ ସଂସ୍କୃତିର ବିଭିନ୍ନ ଉପାଦାନ ସହିତ ପରବର୍ତ୍ତୀ ବେଦସମୂହରୁ ସଂଗୃହୀତ ବିଭିନ୍ନ ସାକ୍ଷ୍ୟର ସାଦୃଶ୍ୟକୁ ଉପସ୍ଥାପିତ କରିବାକୁ ଚେଷ୍ଟା କରିଛନ୍ତି । ଅର୍ଥାତ୍, ଏହି ନିର୍ଦ୍ଦିଷ୍ଟ ସଂସ୍କୃତିଟିକୁ ପରବର୍ତ୍ତୀ ଯୁଗର ବୈଦିକ ଆର୍ଯ୍ୟ ଉପଜାତିଗୁଡ଼ିକ – ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ପ୍ରଥମାର୍ଦ୍ଧରେ ଭାରତୀୟ-ଆର୍ଯ୍ୟମାନଙ୍କ ସହିତ ସଂଯୁକ୍ତ କରି ଦେଖାଇବାକୁ ଗ୍ରହିଁଛନ୍ତି (ଯଥା, ଆର୍.ଏସ୍.ଶର୍ମା ଏବଂ ଏ.ଘୋଷ୍‌ଙ୍କ ରଚନାବଳୀ ଦ୍ରଷ୍ଟବ୍ୟ) ।

ବର୍ତ୍ତମାନ ଏତିକି କୁହାଯାଇ ପାରେ ଯେ, "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତି ବିଭକ୍ତ ଥିଲା କେତେକ ସ୍ତରରେ ଏବଂ ସେସବୁ ସ୍ତର ଯୁକ୍ତ ଥିଲା ପ୍ରଥମେ ପୂର୍ବ ପଞ୍ଜାବ ଏବଂ ଗଙ୍ଗା ଓ ଯମୁନା ନଦୀର ଉତ୍ତରାଂଶରେ ବସତିସ୍ଥାପନକାରୀ ଏବଂ ପରେ ଦକ୍ଷିଣକୁ ଅଗ୍ରସରମାନ ବିଭିନ୍ନ ବୈଦିକ ଆର୍ଯ୍ୟ ଉପଜାତିଗୁଡ଼ିକ ସହିତ ।

ସୋୟାଟ ଅଞ୍ଚଳରେ ଇଟାଲୀୟ ଏବଂ ପାକିସ୍ତାନୀ ପ୍ରତ୍ନତତ୍ତ୍ୱବିଦ୍‌ମାନେ ସଂପ୍ରତି ଯେଉଁ ଖନନ କାର୍ଯ୍ୟ ଚଳାଇଥିଲେ, ତା'ର ଫଳାଫଳ ଏ ପ୍ରସଙ୍ଗରେ ବିଶେଷ ଆଗ୍ରହଜନକ । ସୋୟାଟରେ ଖ୍ରୀଷ୍ଟ ପୂର୍ବ ଆନୁମାନିକ ୯ମ, ବା ୮ମ ଶତାବ୍ଦୀର କେତେକ ପୁରାତନ କବରଖାନା ମିଳିଛି । ଏହି କବରଖାନାଗୁଡ଼ିକରୁ ମିଳିଥିବା ଧୂସର ଏବଂ ଲାଲ ରଙ୍ଗର ମାଟିପାତ୍ର ସହିତ "ଚିତ୍ରକରା ଧୂସର ମାଟିପାତ୍ରର" କେତେକ ସାଦୃଶ୍ୟ ଅଛି ବୋଲି କେତେକ ବିଶେଷଜ୍ଞ ମନେ କରନ୍ତି । ଲୌହ ନିର୍ମିତ ଅଳ୍ପ କେତେକ ଜିନିଷ ମଧ୍ୟ ଏଠାରେ ଆବିଷ୍କୃତ ହୋଇଛି । ଏ ସୋୟାଟର ଏହି କବରସ୍ଥଳୀଗୁଡ଼ିକୁ ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ସହସ୍ରାବ୍ଦର ଶେଷ ଆଡ଼କୁ ଭାରତରେ ପ୍ରବେଶକାରୀ ଏକ ଆର୍ଯ୍ୟ ଉପଜାତି ଗୋଷ୍ଠୀର ବୋଲି ଧରି ନିଆଯାଇ ପାରେ ।

ସାଂପ୍ରତିକ ବର୍ଷମାନଙ୍କରେ ପଞ୍ଜାବ ଓ ହରିଆନାରେ ଏଭଳି କେତେକ ଜନବସତି ଆବିଷ୍କୃତ ହୋଇଛି, ଯେଉଁଠି "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତି ହରପ୍ପା ସଂସ୍କୃତିର ଶେଷ ଯୁଗୀୟ ସ୍ତରଗୁଡ଼ିକ ଉପରେ ସ୍ଥାପିତ ହୋଇଥିବାର ଦେଖାଯାଏ । ଅତଏବ, ଏହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ଭାରତୀୟ-

ଆର୍ଯ୍ୟ ଉପଜାତିଗୁଡ଼ିକର ଆବିର୍ଭାବ ପର୍ଯ୍ୟନ୍ତ ହରପ୍ପାଯୁଗୀୟ ସଂସ୍କୃତି ତିଷ୍ଠି ରହିଥିଲା ବୋଲି ମନେ କରିବା ପଛରେ କାରଣ ରହିଛି ।

ନୂଆ ନୂଆ ଖନନ କାର୍ଯ୍ୟ ଫଳରେ "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତିର ସ୍ରଷ୍ଟାମାନଙ୍କ ବୈଷୟିକ ସଂସ୍କୃତିର ସ୍ୱରୂପ ସମ୍ବନ୍ଧରେ ଏବେ ଆଉରି ସୁନିଶ୍ଚିତ ଭାବେ କହିବା ସମ୍ଭବ ହେଉଛି । ପ୍ରଥମ ପର୍ଯ୍ୟାୟରେ (ପଞ୍ଜାବ ଏବଂ ଉତ୍ତର ହରିଆନାରେ) ବୈଦିକ ଆର୍ଯ୍ୟ ଉପଜାତିଗୁଡ଼ିକ ତମ୍ବା ନିର୍ମିତ ପଦାର୍ଥ ବ୍ୟବହାର କରୁଥିଲେ ଏବଂ ପରେ ଦେଶର ଦକ୍ଷିଣ ଏବଂ ପୂର୍ବାଞ୍ଚଳକୁ ଗତି କରିଲା ବେଳେ ହିଁ କେବଳ ସେମାନଙ୍କ ମଧ୍ୟରେ ଲୁହାର ବ୍ୟବହାର ଆରମ୍ଭ ହୋଇଥିଲା (ଖ୍ରୀଷ୍ଟ ପୂର୍ବ ନବମ, କିମ୍ବା ଅଷ୍ଟମ ଶତାବ୍ଦୀ ବେଳକୁ) ।

## ଭାରତୀୟ-ଆର୍ଯ୍ୟମାନଙ୍କର ସଂପ୍ରସାରଣ ଏବଂ ସ୍ଥାନୀୟ ସଂସ୍କୃତିସମୂହ

ବୈଦିକ ଗ୍ରନ୍ଥରାଜି ଏବଂ ଅନ୍ୟାନ୍ୟ ପ୍ରତ୍ନତାତ୍ତ୍ୱିକ ସୂତ୍ରରୁ ପ୍ରାପ୍ତ ଉପାଦାନସମୂହ ଦ୍ୱାରା ଆର୍ଯ୍ୟ ଉପଜାତିଗୁଡ଼ିକର ପୂର୍ବାଞ୍ଚଳ ଆଡ଼କୁ ଅଭିଯାନ ଏବଂ ଗଙ୍ଗା ଉପତ୍ୟକାର ବିଭିନ୍ନ ଅଞ୍ଚଳରେ ସେମାନଙ୍କ ଅନୁପ୍ରବେଶର ଏକ ସାଧାରଣ ଚିତ୍ର ଆମେ ପାଇଥାଏଁ । ଏହି ଅନୁପ୍ରବେଶ, ଅବଶ୍ୟ, ଥିଲା ବହୁ ଶତାବ୍ଦୀ ଧରି ଏକ ଦୀର୍ଘସ୍ଥାୟୀ ପ୍ରକ୍ରିୟା । ଏହି ଯୁଗରେ ଏହିସବୁ ଅଞ୍ଚଳର ସ୍ଥାନୀୟ ଉପଜାତିଗୁଡ଼ିକ ସହିତ ଏବଂ ବିଭିନ୍ନ ଆର୍ଯ୍ୟ ଉପଜାତିଗୁଡ଼ିକ ମଧ୍ୟରେ ବହୁ ସଶସ୍ତ୍ର ସଂଗ୍ରାମ ଏବଂ ସଂଘର୍ଷ ଲାଗି ରହିଥିଲା ।

ପ୍ରାଚୀନ ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକ ଠିକ୍ କେଉଁ ଅଞ୍ଚଳରେ ବାସ କରୁଥିଲେ, ଏହା "ଋଗ୍‌ବେଦର" ସୂକ୍ତଗୁଡ଼ିକର ବିଷୟବସ୍ତୁରୁ ଆମେ ନିର୍ଦ୍ଧାରଣ କରିବାକୁ ସକ୍ଷମ ହୋଇଥାଏ । ସେମାନଙ୍କର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏବଂ ପବିତ୍ର ନଦୀ ଥିଲା ସରସ୍ୱତୀ । ଏହା ଛଡ଼ା ସିନ୍ଧୁ, ଗୋମଲ ଏବଂ ପଞ୍ଜାବର ଆଉ କେତେକ ନଦୀର ନାମ ମଧ୍ୟ ଏହିସବୁ ସୂକ୍ତରେ ଉଲ୍ଲିଖିତ ହୋଇଛି । ତେବେ ଗଙ୍ଗା ନଦୀର ନାମଟି "ଋଗ୍‌ବେଦରେ" ମାତ୍ର ଥରକ ପାଇଁ ଦେଖିବାକୁ ମିଳେ, ଏହାର ଦଶମ ମଣ୍ଡଳରେ । ଋଗ୍‌ବେଦୀୟ ଉପଜାତିମାନଙ୍କ ଭୌଗୋଳିକ ଜ୍ଞାନ ସମ୍ବନ୍ଧରେ କେତେକ କୌତୂହଳୋଦ୍ଦୀପକ ତଥ୍ୟ ଏହି ଗ୍ରନ୍ଥରୁ ମିଳିଥାଏ । ଏହିସବୁ ତଥ୍ୟରୁ ଜଣାଯାଏ ଯେ, ତତ୍କାଳୀନ ଆର୍ଯ୍ୟମାନେ ହିମାଳୟ ପର୍ବତ ସହିତ ସୁପରିଚିତ ଥିଲେ, କିନ୍ତୁ ବିନ୍ଧ୍ୟ ପର୍ବତ ସହିତ ସେମାନଙ୍କର ପରିଚୟ ଥିଲା ବୋଲି ମନେ ହୁଏ ନାହିଁ । କାରଣ, ଏହି ପର୍ବତ ବିଷୟରେ ସୂକ୍ତଗୁଡ଼ିକରେ କେଉଁଠି ଉଲ୍ଲେଖ ନାହିଁ । ବୈଦିକ ସାହିତ୍ୟର ପରବର୍ତ୍ତୀ ସଂକଳନଗୁଡ଼ିକରେ ପୂର୍ବ ଭାରତର ବିଭିନ୍ନ ଅଞ୍ଚଳ ସଂପର୍କରେ ବହୁବାର ଉଲ୍ଲେଖ ରହିଛି ।

ଭାରତୀୟ-ଆର୍ଯ୍ୟ ଉପଜାତିମାନଙ୍କ ପକ୍ଷରେ ଅରଣ୍ୟାକୀର୍ଣ୍ଣ ଅଞ୍ଚଳ ମଧ୍ୟ ଦେଇ ପୂର୍ବ ଏବଂ ଦକ୍ଷିଣ ଦିଗକୁ ଆଗେଇବା ମୋଟେ ସହଜ ନଥିଲା । ବିଶାଳ ଅରଣ୍ୟମାନ କାଟି ସଫା କରି ଏବଂ ପଥ ମଧ୍ୟରେ ବଣଜଙ୍ଗଲକୁ ନିଆଁରେ ପୋଡ଼ି ସେମାନଙ୍କୁ ଆଗେଇବାକୁ ପଡ଼ୁଥିଲା । ଏ ସଂପର୍କରେ ଏକ କୌତୂହଳୋଦ୍ଦୀପକ ଉପାଖ୍ୟାନ ଆମେ ଦେଖିବାକୁ ପାଏଁ "ଶତପଥ ବ୍ରାହ୍ମଣରେ" । ଏହି

ଉପାଖ୍ୟାନଟିରେ ବର୍ଣ୍ଣନା କରାଯାଇଛି, ଅଗ୍ନି ଦେବତା ସରସ୍ୱତୀ ନଦୀ (ପୂର୍ବ ପଞ୍ଜାବରେ) ଏବଂ ସଦାନୀରା ନଦୀର (ପଶ୍ଚିମ ବିହାରର ଗଣ୍ଡକ ନଦୀ କଥା ଏଠାରେ କୁହାଯାଇଛି) ମଧ୍ୟବର୍ତ୍ତୀ ଭୂଖଣ୍ଡକୁ ଦହନ କରି ଦେଇଛନ୍ତି ଏବଂ ରାଜା ମାଧବ-ବିଦେହ ଏହି ତ୍ରାଣକର୍ତ୍ତା ଅଗ୍ନିଙ୍କୁ ନେଇ ଆଗେଇ ଯାଇଛନ୍ତି ପୂର୍ବ ଦେଶକୁ । ଏହି ଉପାଖ୍ୟାନ ଅନୁଯାୟୀ ଉପରୋକ୍ତ ରାଜା ଏବଂ ତାଙ୍କ ପ୍ରଜାକୁଳ, ଏପରିକି ସଦାନୀରା ନଦୀର ପୂର୍ବାଞ୍ଚଳୀୟ ବାସପୋଯୋଗ୍ୟ ଜମିଜମାକୁ ଦଖଲ କରିନେବାକୁ ସମର୍ଥ ହୋଇଛନ୍ତି । ଏହି ବେଦୋକ୍ତ ଉପାଖ୍ୟାନଟିରୁ ଆମେ ଭାରତୀୟ-ଆର୍ଯ୍ୟମାନଙ୍କର ଅଗ୍ରଗତିର ସମ୍ଭାବ୍ୟ ପଥର ନିଦର୍ଶନ ପାଇଥାଏଁ ଏବଂ ବ୍ରାହ୍ମଣଗୁଡ଼ିକ ରଚନାକାଳରେ ଉପଜାତିମାନେ ଭାରତର ସର୍ବାପେକ୍ଷା ପୂର୍ବ ଦିଗସ୍ଥ ଯେଉଁ ଅଞ୍ଚଳରେ ବସତି ସ୍ଥାପନ କରିଥିଲେ, ତାହା ବିଦେହ ଅଞ୍ଚଳ (ବା ବର୍ତ୍ତମାନ ବିହାରର ଉତ୍ତରାଞ୍ଚଳ) ବୋଲି ଜାଣିବାକୁ ପାଇଛେ ।

ଏହା ସ୍ୱାଭାବିକ କଥା ଯେ, ଭାରତର ବିଭିନ୍ନ ଅଞ୍ଚଳରେ ଭାରତୀୟ-ଆର୍ଯ୍ୟମାନଙ୍କ ବସତି ସ୍ଥାପନ ସବୁବେଳେ ଏକା ରକମରେ ସାଧିତ ହୋଇ ନଥିଲା । ଏହି ଉପଲକ୍ଷେ ସ୍ଥାନୀୟ ଉପଜାତିଗୁଡ଼ିକ ସହିତ ସେମାନଙ୍କର ସଂପର୍କ ସ୍ଥାପନର କ୍ରିୟା ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାରରେ ଘଟିଥିଲା । ଭାଷାତାତ୍ତ୍ୱିକ ଏବଂ ପ୍ରତ୍ନତାତ୍ତ୍ୱିକ ସାକ୍ଷ୍ୟ ପ୍ରମାଣଗୁଡ଼ିକରୁ ମନେ ହୁଏ ଯେ, ପଞ୍ଜାବରେ ଆର୍ଯ୍ୟମାନଙ୍କୁ ମୁଖ୍ୟତଃ ଦ୍ରାବିଡ଼ ଉପଜାତିମାନଙ୍କ ସହିତ ବୁଝାମଣା କରିବାକୁ ପଡ଼ିଥିଲା । ଏକଦା ଉନ୍ନତ ଏହି ସଂସ୍କୃତିର କେତେକ ପ୍ରଥା ଏବଂ ପରମ୍ପରା ଏବେ ବି ପଞ୍ଜାବର କେତେକ ଅଞ୍ଚଳରେ ବଞ୍ଚି ରହିଛି । ଏଥିରୁ ମନେ ହୁଏ, ଆର୍ଯ୍ୟମାନଙ୍କ ସହିତ ସ୍ଥାନୀୟ ଲୋକମାନଙ୍କର ଘନିଷ୍ଠ ସଂପର୍କ ଗଢ଼ି ଉଠିବା ଏକଦା ସମ୍ଭବ ହୋଇଥିଲା । ପୂର୍ବ ପଞ୍ଜାବର କେତେକ ଅଂଶରେ ଆର୍ଯ୍ୟମାନେ ସ୍ଥାନୀୟ ଉପଜାତିମାନଙ୍କ ପକ୍ଷରୁ ସେଭଳି କୌଣସି ଗୁରୁତର ପ୍ରତିରୋଧର ସମ୍ମୁଖୀନ ହୋଇ ନଥିଲେ । ଫଳରେ ସେମାନେ ନୂଆ ନୂଆ ଅଞ୍ଚଳରେ ବସତି ସ୍ଥାପନ କରି ଦ୍ରୁତ ଏଠାରୁ ଦକ୍ଷିଣ ଏବଂ ପୂର୍ବାଞ୍ଚଳକୁ ଆଗେଇ ଯାଇଥିଲେ । ଏହା ଦ୍ୱାରା ବୈଦିକ ଉପଜାତିଗୁଡ଼ିକର ଭାଷା ଦ୍ରାବିଡ଼ ଭାଷା ଦ୍ୱାରା ପ୍ରଭାବିତ ହୋଇ ଉଠିଥିଲା । "ଋଗ୍‌ବେଦ" ଏବଂ ଅନ୍ୟାନ୍ୟ ସଂହିତାର ଭାଷାତାତ୍ତ୍ୱିକ ବିଶ୍ଳେଷଣ ଫଳରେ ଜଣାଯାଏ ଯେ, ଦ୍ରାବିଡ଼ ଭାଷାସମୂହ ଭାରତୀୟ-ଆର୍ଯ୍ୟ ଭାଷାଗୁଡ଼ିକୁ ଏକଦା ଲକ୍ଷଣୀୟ ଭାବେ ପ୍ରଭାବିତ କରିଥିଲା, ଯଦିଓ ସେମାନଙ୍କ ମଧ୍ୟରେ ପରସ୍ପର ସମ୍ମିଶ୍ରଣର କାର୍ଯ୍ୟଟି ଚାଲିଥିଲା ସ୍ୱଳ୍ପ କାଳ ପାଇଁ ।

ଭାରତୀୟ-ଆର୍ଯ୍ୟ ଉପଜାତିସମୂହ ଏବଂ ଦେଶର ତତ୍‌କାଳୀନ ପୂର୍ବାଞ୍ଚଳର ଅଧିବାସୀ ମୁଣ୍ଡା ଉପଜାତିଗୁଡ଼ିକ ମଧ୍ୟରେ ପାରସ୍ପରିକ କ୍ରିୟାପ୍ରକ୍ରିୟା ଘଟିଥିଲା ସଂପୂର୍ଣ୍ଣ ଭିନ୍ନ ଭାବେ । ଗଙ୍ଗା ଉପତ୍ୟକାରେ ଏହି ପାରସ୍ପରିକ ଅଙ୍ଗୀକରଣ କାର୍ଯ୍ୟଟି ପଞ୍ଜାବ ଭଳି ଏତେ ଦ୍ରୁତ ଭାବେ ଘଟି ନଥିଲା । ବୈଦିକ ଉପଜାତିଗୁଡ଼ିକ ଏହି ସମୟରେ ବିକାଶର ଏକ ଅପେକ୍ଷାକୃତ ଉନ୍ନତ ପର୍ଯ୍ୟାୟକୁ ଉନ୍ନୀତ ହୋଇଥିଲେ ଏବଂ ସେମାନେ ନିଜେ ପୂର୍ବ ଅପେକ୍ଷା ଆଉରି ବେଶି ଭାରତୀୟ ହୋଇ ଉଠିଥିଲେ (ଇତି ମଧ୍ୟରେ ସେମାନେ ସ୍ଥାନୀୟ ଭାରତୀୟ ଉପଜାତିମାନଙ୍କର ଐତିହ୍ୟ ଏବଂ ସଂସ୍କୃତି ସହିତ ଘନିଷ୍ଠ ଭାବେ ପରିଚିତ ହୋଇଥିଲେ ଏବଂ ସେଥିରୁ ଅନେକ ଆତ୍ମସ୍ଥ କରି ନେଇଥିଲେ) । ବୈଦିକ ଆର୍ଯ୍ୟ ଉପଜାତିମାନେ ସେତେବେଳେ ବହୁ ମୁଣ୍ଡା ଉପଜାତିକୁ ଗଭୀର ଜଙ୍ଗଲ ମଧ୍ୟକୁ ତଡ଼ି ଦେଇଥିଲେ ଏବଂ ଅନେକ ଦୀର୍ଘ କାଳ ଧରି ସେମାନଙ୍କ ସଂସ୍ପର୍ଶରେ ଆସିବା ସତ୍ତ୍ୱେ ବି ଭାରତୀୟ-ଆର୍ଯ୍ୟମାନେ

ସେମାନଙ୍କ ସହିତ ଘନିଷ୍ଠ ସଂପର୍କ ସ୍ଥାପନ କରି ନଥିଲେ । ତେଣୁ କରି ବୈଦିକ ସଂସ୍କୃତ ଉପରେ ମୁଣ୍ଡା ଭାଷାଗୁଡ଼ିକର (ମୁଣ୍ଡା ଉପଜାତିଗୁଡ଼ିକର ନିମ୍ନସ୍ତରର) ପ୍ରଭାବ ବିଶେଷ ଲକ୍ଷଣୀୟ ନୁହେଁ ।

ଏହି ଯୁଗର ପ୍ରତ୍ନତାତ୍ତ୍ୱିକ ସାକ୍ଷ୍ୟ ପ୍ରମାଣ ମଧ୍ୟ ଏହି ଅନୁରୂପ ଚିତ୍ର ପ୍ରଦାନ କରିଥାଏ । ବିଶେଷଜ୍ଞମାନେ ଯେଉଁ "ଚିତ୍ରକରା ଧୂସର ମାଟିପାତ୍ରକୁ" ବୈଦିକ ଆର୍ଯ୍ୟ ଉପଜାତିଗୁଡ଼ିକ ସହିତ ଯୁକ୍ତ କରିଥାନ୍ତି, ସେସବୁ ମଧ୍ୟ କେତେକ ଜନବସତିରେ ଏବଂ ପଶ୍ଚିମ ଭାରତର ଉପଜାତିମାନଙ୍କର (ଏମାନେ ଆପାତତଃ ବିଭିନ୍ନ ଦ୍ରାବିଡ଼ ଭାଷାରେ କଥା କହୁଥିଲେ) ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତିର ବୈଶିଷ୍ଟ୍ୟସୂଚକ କଳା ଏବଂ ଲାଲ ମାଟିପାତ୍ର ସ୍ତରର ଉପର ସ୍ତରରେ ମିଳିଛି । ଅଥଚ ଇତି ପୂର୍ବରୁ କୁହାଯାଇଛି, ପଞ୍ଜାବ ଏବଂ ହରିଆନାରେ ସଂପ୍ରତି ଖନନ କାର୍ଯ୍ୟ ପରିଚାଳନା କରି "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତି ଏବଂ ହରପ୍ପା ସଂସ୍କୃତିର ଶେଷ ଯୁଗ (ଯେଉଁ ସଂସ୍କୃତିର ସ୍ରଷ୍ଟା ଥିଲେ ଦ୍ରାବିଡ଼ ଭାଷାଭାଷୀ ଉପଜାତିର ଅନ୍ତର୍ଗତ) ମଧ୍ୟରେ ପାରସ୍ପରିକ ପ୍ରଭାବର ପ୍ରମାଣ ମିଳିଛି । ଅନ୍ୟାନ୍ୟ କେତେକ ଜନବସତିରେ "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତି "ତାମ୍ର ଭଣ୍ଡାର" ସଂସ୍କୃତିକୁ ଉତ୍ତରାଧିକାର ସୂତ୍ରରେ ପାଇଛି ବୋଲି ଜଣାଯାଏ । ଅଥଚ ଏହି ଶେଷୋକ୍ତ ସଂସ୍କୃତି ଥିଲା, ଖୁବ୍ ସମ୍ଭବତଃ, ପୂର୍ବ ଭାରତର ପ୍ରାଚୀନ ମୁଣ୍ଡା ଉପଜାତିଗୁଡ଼ିକର ସଂସ୍କୃତି । ଏହା ଛଡ଼ା ପ୍ରତ୍ନତତ୍ତ୍ୱବିଦ୍‌ମାନେ ଏଭଳି ଆଉରି ଅନେକ ଜନବସତିର ସନ୍ଧାନ ପାଇଛନ୍ତି, ଯେଉଁଠି "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତି ସହିତ ପୂର୍ବତନ ସଂସ୍କୃତିଗୁଡ଼ିକର କୌଣସି ପ୍ରକାରର ଯୋଗସୂତ୍ର ମିଳେ ନାହିଁ ।

ଯେଉଁସବୁ ଅଞ୍ଚଳରେ ଏକଦା ଉନ୍ନତ ସଂସ୍କୃତି ଥିଲା, ସେସବୁ ଅଞ୍ଚଳର ସେଇସବୁ ଐତିହ୍ୟର ଅବଶେଷ ସହିତ ଆର୍ଯ୍ୟମାନେ ସଂସ୍ପର୍ଶରେ ଆସିଲା ପରେ ସେଠାରେ ଆର୍ଯ୍ୟମାନଙ୍କର ନିଜସ୍ୱ ସାଂସ୍କୃତିକ ବିକାଶ ଅପେକ୍ଷାକୃତ ଦ୍ରୁତତାର ସହିତ ଘଟିଥିଲା । ଯଥା, ସ୍ଥାନୀୟ ଉପଜାତିମାନଙ୍କ ସହିତ ସେମାନଙ୍କର ସମ୍ମିଶ୍ରଣ ଏବଂ ପୂର୍ବାଞ୍ଚଳ ଅଭିମୁଖକୁ ସେମାନଙ୍କ ଯାତ୍ରା ଦ୍ରୁତ ଗତିରେ ଘଟିଥିଲା । କିନ୍ତୁ ଅନ୍ୟ ପକ୍ଷରେ, ଯେଉଁସବୁ ଅଞ୍ଚଳରେ ଆର୍ଯ୍ୟମାନେ କାର୍ଯ୍ୟତଃ ପ୍ରଥମ ବାସିନ୍ଦା ହୋଇଥିଲେ, ସେଠାରେ ବସତି ସ୍ଥାପନ କରିବାକୁ ସେମାନଙ୍କୁ ଅପେକ୍ଷାକୃତ ଅଧିକ ସମୟ ଲାଗିଥିଲା ଏବଂ ସେଇପରି ଏହା ଫଳରେ ଏହି ନୂତନ ଆଗନ୍ତୁକମାନଙ୍କ ସଂସ୍କୃତିର ବିକାଶ ମୋଟାମୋଟି ଭାବେ ଧୀରେ ଧୀରେ ଘଟିଥିଲା ।

ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକ ଉତ୍ତର ଭାରତର ପଶ୍ଚିମରୁ ପୂର୍ବ ପ୍ରାନ୍ତକୁ ଅଗ୍ରସର ହେବା ସଙ୍ଗେ ସଙ୍ଗେ (ପରବର୍ତ୍ତୀ ସମୟରେ ସେମାନେ ଏହିଭାବେ ଦକ୍ଷିଣ ଭାରତରେ ଅନୁପ୍ରବେଶ କରିଥିଲେ) ବୈଦିକ ଆର୍ଯ୍ୟମାନଙ୍କର ସାମାଜିକ ଓ ରାଜନୈତିକ ସଂଗଠନ ମଧ୍ୟ କ୍ରମଶଃ ଉନ୍ନତ ହୋଇଥିଲା । ବୈଦିକ ପୋଥିଗୁଡ଼ିକରେ ସେସବୁର ପ୍ରତିଫଳନ ଦେଖାଯାଇଥିଲା : ଏକ୍ଷେତ୍ରରେ ବିଶେଷ କୌତୂହଳୋଦ୍ଦୀପକ ହେଲା ପ୍ରାଥମିକ ବୈଦିକ ସଂହିତାଗୁଡ଼ିକ ସହିତ ବୈଦିକ ଯୁଗର ପରବର୍ତ୍ତୀ ପର୍ଯ୍ୟାୟରେ ରଚିତ ପୋଥିଗୁଡ଼ିକର ତୁଳନାମୂଳକ ଆଲୋଚନା । ଏହା ଛଡ଼ା ବୈଦିକ ଆର୍ଯ୍ୟ ସମାଜର ଗଢ଼ଣରେ ଉପରୋକ୍ତ ପରିବର୍ତ୍ତନସମୂହ ଭାରତୀୟ-ଆର୍ଯ୍ୟ ଏବଂ ସ୍ଥାନୀୟ ଉପଜାତିମାନଙ୍କ ମଧ୍ୟରେ ପାରସ୍ପରିକ କ୍ରିୟାର ପ୍ରକୃତି ଉପରେ ପ୍ରତ୍ୟକ୍ଷ ଭାବେ ପ୍ରଭାବ ବିସ୍ତାର କରିଥିଲା ।

ଏହା ଫଳରେ କ୍ରମଶଃ ଏକ ନୂତନ ସଂସ୍କୃତି ଦେଖା ଦେଲା, ଯିଏକି ଆର୍ଯ୍ୟ ଏବଂ ସ୍ଥାନୀୟ

ଉପଜାତିଗୁଡ଼ିକର ମିଳିତ ସାଂସ୍କୃତିକ ସାଫଲ୍ୟରାଜିକୁ ନିଜର ଅଙ୍ଗୀଭୂତ କରିନେଇ । ଅବିଳମ୍ବେ ତାହା ଉତ୍ତର ଆଉ ପୂର୍ବ ଭାରତର ବିପୁଳ ସଂଖ୍ୟକ ଜନସମଷ୍ଟିର ଏକ ସାର୍ବଜନୀନ ସଂସ୍କୃତିରେ ପରିଣତ ହୋଇଗଲା । ଏହି ସଂସ୍କୃତିକୁ ବିଦେଶରୁ ଆନୀତ ଭାରତୀୟ-ଆର୍ଯ୍ୟ ସଂସ୍କୃତି ବୋଲି କହି ହେବ ନାହିଁ । ଏପରିକି "ଋଗ୍‌ବେଦ" ଯୁଗର ବୈଦିକ ଆର୍ଯ୍ୟ ଉପଜାତିସମୂହର ସଂସ୍କୃତି ବୋଲି ଏହାକୁ କେବଳ ସର୍ତ୍ତମୂଳକ ଭାବେ ନାମିତ କରାଯାଇ ପାରେ । କାରଣ ଇତି ମଧ୍ୟରେ ଏହି ସଂସ୍କୃତି ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ସୁନିର୍ଦ୍ଦିଷ୍ଟ ଭାରତୀୟ ସଂସ୍କୃତି ରୂପେ ଗଢ଼ି ଉଠିଥିଲା ।

ପ୍ରତ୍ନତାତ୍ତ୍ୱିକ ସାକ୍ଷ୍ୟ ପ୍ରମାଣରୁ ସ୍ପଷ୍ଟ ଜଣାଯାଏ ଯେ, "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତି "ଉତ୍ତରାଞ୍ଚଳୀୟ କଳା ରଙ୍ଗ ପାଲିସ୍ ଦିଆ ମାଟିପାତ୍ର" ସଂସ୍କୃତିକୁ ରାସ୍ତା ଛାଡ଼ି ଦେଇଥିଲା ପ୍ରଧାନତଃ ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ଦ୍ୱିତୀୟାର୍ଦ୍ଧରେ (ଖ୍ରୀଷ୍ଟ ପୂର୍ବ ୬ଷ୍ଠରୁ ୨ୟ ଶତାବ୍ଦୀ ମଧ୍ୟରେ) । ଏହି ଶେଷୋକ୍ତ ସଂସ୍କୃତିଟି ବହୁ ଦିଗରୁ ପୂର୍ବବର୍ତ୍ତୀ ଯୁଗର ସାଂସ୍କୃତିକ ଐତିହ୍ୟ ଆଦି ନିକଟରେ ଋଣୀ ହେଲେ ମଧ୍ୟ, ତଥାପି ଏହି ସମୟ କାଳ ମଧ୍ୟରେ ଏହା ଆଉ ବୈଦିକ ଭାରତୀୟ-ଆର୍ଯ୍ୟ ସଂସ୍କୃତି ହୋଇ କି ନଥିଲା । ଏହା ଉତ୍ତର ଭାରତର ଭାରତୀୟ ଉପଜାତିସମୂହର ସଂସ୍କୃତିରେ ପରିଣତ ହୋଇଥିଲା । ତତ୍‌କାଳୀନ ଯେଉଁସବୁ ଜନବସତିରେ ଏହି ସଂସ୍କୃତିର ଚିହ୍ନ ଦେଖିବାକୁ ମିଳିଛି, ସେସବୁ ପଞ୍ଜାବରୁ ଗଙ୍ଗାର ଦକ୍ଷିଣ ତୀରବର୍ତ୍ତୀ ଅଞ୍ଚଳରେ ଖେଳେଇ ହୋଇ ରହିଥିବାର ଦେଖାଯାଏ । ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ମଝାମଝି ବେଳକୁ ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକ ଗଙ୍ଗା ଉପତ୍ୟକାର ପ୍ରଧାନ ଅଞ୍ଚଳଗୁଡ଼ିକରେ ଅନୁପ୍ରବେଶ କରିଥିଲେ, କହିବାକୁ ଗଲେ, ସମଗ୍ର ଉତ୍ତର ଭାରତରେ ସେମାନେ ଖେଳି ଯାଇଥିଲେ । ଉପରୋକ୍ତ ଏହି ସମୟ କାଳଟିକୁ ପୁଣି ଯଥାର୍ଥ ବୈଦିକ ଯୁଗର ଶେଷ ଏବଂ ପରବର୍ତ୍ତୀ ମଗଧ-ମୌର୍ଯ୍ୟ ଯୁଗର ସୂତ୍ରପାତର ସୀମାରେଖା ବୋଲି କୁହାଯାଇ ପାରେ ।

## ବୈଦିକ ଉପଜାତିସମୂହର ମୁଖ୍ୟ ଜୀବିକା

ବୈଦିକ ଯୁଗର ଲୋକଙ୍କର ମୁଖ୍ୟ ଜୀବିକା ଥିଲା ଦୁଇଟି – କୃଷି ଏବଂ ପଶୁପାଳନ । କୃଷିର ଅଗ୍ରଗତି ଏବଂ ଜନସମଷ୍ଟିର ଅଧିକାଂଶଙ୍କ ପକ୍ଷରେ ଜମିଗ୍ରଷ୍ଟ ଉପରେ ନିର୍ଭରଶୀଳ ସୁସ୍ଥିର ଜୀବନଯାତ୍ରାକୁ ଉତ୍ତରଣ ସମ୍ଭବ ହୋଇଥିଲା ଲୁହା ନିର୍ମିତ ହତିଆରର ଆବିର୍ଭାବ ଫଳରେ । ଉତ୍ପାଦନର ବିଭିନ୍ନ କାର୍ଯ୍ୟରେ ସେତେବେଳେ ଲୁହା ବ୍ୟବହୃତ ହେଉଥିଲା । ପ୍ରତ୍ନତାତ୍ତ୍ୱିକ ସାକ୍ଷ୍ୟ ପ୍ରମାଣର ଭିତ୍ତିରେ ବିଗ୍ଭର କଲେ ଜଣାଯାଏ, ଖ୍ରୀଷ୍ଟ ପୂର୍ବ ୧୧ଶ ଶତାବ୍ଦୀରେ ବି ଉତ୍ତର ଭାରତରେ ସ୍ୱଳ୍ପ ପରିମାଣରେ ଲୁହା ବ୍ୟବହୃତ ହେଉଥିଲା । କିନ୍ତୁ ଏହି ଧାତୁର ବହୁଳ ପ୍ରଚଳନ ଘଟିଥିଲା ଆଉରି ଅନେକ ବର୍ଷ ପରେ (ବିଶେଷଜ୍ଞମାନଙ୍କ ମତରେ, ଗଙ୍ଗା ଉପତ୍ୟକାର ମଧ୍ୟାଞ୍ଚଳରେ ଲୁହାର ବ୍ୟାପକ ବ୍ୟବହାର ଘଟିଥିଲା ଖ୍ରୀଷ୍ଟ ପୂର୍ବ ୭ମ ଶତାବ୍ଦୀରେ) । ସମ୍ଭବତଃ, "ଋଗ୍‌ବେଦର" ରଚୟିତାମାନେ ଲୁହାର ବ୍ୟବହାର ସଂପର୍କରେ ଅବହିତ ଥିଲେ । ତେବେ ଏହି ସମୟରେ ଲୁହାକୁ ଯେ ସେମାନେ ଠିକ୍ କେଉଁ ନାମରେ ନାମିତ କରିଥିଲେ, ସେ ବିଷୟରେ ପଣ୍ଡିତମାନଙ୍କ ମଧ୍ୟରେ ଏବେ ବି ମତ ଭେଦ ରହିଛି (ସମ୍ଭବତଃ, ଲୁହାକୁ ସେତେବେଳେ "ଅୟସ୍" ବୋଲି କୁହାଯାଉଥିଲା), ପରବର୍ତ୍ତୀ ବେଦମାନଙ୍କରେ, ଅବଶ୍ୟ, "ଶ୍ୟାମ" ଏବଂ "ଶ୍ୟାମସ୍" (ବା କୃଷ୍ଣ ଅୟସ୍) ଉଭୟ ଶବ୍ଦ ବ୍ୟବହୃତ ହୋଇଛି ।

ଲୁହା ହତିଆର ନିର୍ମାଣ କଲା ପରେ ବୈଦିକ ଉପଜାତିଗୁଡ଼ିକ ପକ୍ଷରେ ଗଙ୍ଗା ଉପତ୍ୟକାର ଅରଣ୍ୟ ଅଞ୍ଚଳରେ ବସତି ସ୍ଥାପନ କରିବା, ଜମି ଚାଷ କରିବା ଏବଂ ଯେଉଁଠି ଜଳସେଚନ ପ୍ରୟୋଜନ ପଡ଼ୁଥିଲା, ସେଠାରେ ଜମିରେ ଜଳସେଚନର ବ୍ୟବସ୍ଥା କରିବା ସହଜ ହୋଇଥିଲା । ଲୁହାର ବ୍ୟବହାର ମଧ୍ୟ ଆଉରି ଉନ୍ନତ ଧରଣର କାରିଗରି ବିଦ୍ୟାକୁ ଜନ୍ମ ଦେଲା । ଇତି ପୂର୍ବରୁ କାଠର ଲଙ୍ଗଳ ଆଉ କୋଦାଳରେ ଜମି ଚାଷ କରାଯାଉଥିଲା ଏବଂ ପଥର ଫଳକ ଲଗା ଦାଆରେ ଫସଲ କଟା ହେଉଥିଲା । କିନ୍ତୁ ଏହା ପରେ ଆଦିମ କାଠ ଲଙ୍ଗଳ ପରିବର୍ତ୍ତେ ଲୁହାଫାଳ ଲଗା ଲଙ୍ଗଳ ପ୍ରଚଳିତ ହେଲା । ହତିଆରର ଏହି ଉନ୍ନତି ଫଳରେ ପଥୁରିଆ ମାଟିରେ ଚାଷବାସ କରିବାର ନୂଆ ସମ୍ଭାବନା ସୃଷ୍ଟି ହେଲା । ବୈଦିକ ସାହିତ୍ୟରେ ଜମିରେ ହଳ କରିବା, ବିହନ ବୁଣିବା, ଫସଲ କାଟିବା, ଝାଡ଼ିବା ସମେତ ବିଭିନ୍ନ ଧରଣର କୃଷି ସଂକ୍ରାନ୍ତ କାର୍ଯ୍ୟର ଉଲ୍ଲେଖ ରହିଛି । ଏପରିକି "ଋଗ୍‌ବେଦରେ" "ଅର୍ଗଳ ବନ୍ଧ" ଜଳ ଏବଂ ଜଳଚକ୍ରର ଉଲ୍ଲେଖ ଦେଖିବାକୁ ମିଳେ, ଯାହାକି ଜମିରେ ଜଳସେଚନ କାର୍ଯ୍ୟରେ ବ୍ୟବହୃତ ହୋଇଥାଏ । ବୈଦିକ ସଂହିତାମାନଙ୍କରେ ବିଶେଷ ଧରଣର ଜଳସେଚନର ଉପଯୋଗୀ କେନାଲର ଉଲ୍ଲେଖ ରହିଛି ।

ଏହି ଯୁଗର ଲୋକେ ଯଅ, ଧାନ, ଗହମ ଏବଂ ଶିମ, ଆଦି ବହୁ ସଂଖ୍ୟକ ଖାଦ୍ୟ ଶସ୍ୟ ସହିତ ପରିଚିତ ଥିଲେ । (ଖ୍ରୀଷ୍ଟ ପୂର୍ବ ୧୧ଶରୁ ୯ମ ଶତାବ୍ଦୀର ମଧ୍ୟବର୍ତ୍ତୀ "ଚିତ୍ରକରା ଧୂସର ମାଟିପାତ୍ର" ସଂସ୍କୃତିର ଅନ୍ତର୍ଗତ ଜନବସତିଗୁଡ଼ିକରେ ଖନନ କାର୍ଯ୍ୟ ଦ୍ୱାରା ଧାନ ଏବଂ ଗହମ ଦାନା ମିଳିଛି) । ସମଗ୍ର ଗଙ୍ଗା ଉପତ୍ୟକାରେ ଭାରତୀୟ-ଆର୍ଯ୍ୟ ଉପଜାତିଗୁଡ଼ିକର ବସତି ସ୍ଥାପନ ଫଳରେ ବ୍ୟାପକ ଆକାରରେ ଧାନ ଚାଷ ହେଲା । ଅନେକ ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କ ମତରେ, ଆର୍ଯ୍ୟମାନେ ଭାରତକୁ ଆସିବା ପୂର୍ବରୁ ଧାନ ଚାଷ ଜାଣି ନଥିଲେ । ଭାରତର ସ୍ଥାନୀୟ ଉପଜାତିମାନଙ୍କ ନିକଟରୁ ହିଁ କେବଳ ସେମାନେ ଧାନ ଚାଷର କୌଶଳ ଆୟତ୍ତ କରିଥିଲେ ।

କୃଷି କାର୍ଯ୍ୟ ବ୍ୟତୀତ ବୈଦିକ ଆର୍ଯ୍ୟ ଉପଜାତିମାନଙ୍କ ଜୀବନରେ ପଶୁପାଳନ ଥିଲା ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଜୀବିକା । ପାଳନ ମଧ୍ୟରେ ମଣିଷର ସମସ୍ତ ଐଶ୍ୱର୍ଯ୍ୟର ପ୍ରଧାନ ଉତ୍ସ ନିହିତ ବୋଲି ବୈଦିକ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ଅଛି । ବୈଦିକ ସୂକ୍ତଗୁଡ଼ିକର ରଚୟିତାମାନେ ଦେବତାମାନଙ୍କ ଆଗରେ ବାରମ୍ବାର ଏହି ପ୍ରାର୍ଥନା କରିଛନ୍ତି ଯେ, ମଣିଷକୁ ଗୋଧନ ଅର୍ପଣ କରିବାକୁ । ଅଧିକ ସଂଖ୍ୟକ ଗୋଧନ ସଂଗ୍ରହର ଉପାୟ ରୂପେ ସେମାନେ ଯୁଦ୍ଧ ବିଗ୍ରହକୁ ଦେଖୁଥିଲେ । ବୈଦିକ ଉପଜାତିମାନେ ପରସ୍ପର ମଧ୍ୟରେ ଯୁଦ୍ଧ କରିବାର ପ୍ରଧାନ କାରଣ ଥିଲା ପରସ୍ପରର ଗୃହପାଳିତ ପଶୁକୁ ଅପହରଣ କରିବା। ବେଦସମୂହରେ "ଅଘ୍ନ୍ୟା" (ଅର୍ଥାତ୍, ଅବଧ୍ୟ) ବୋଇଲେ ଗୋରୁକୁ ହିଁ ମୁଖ୍ୟତଃ ବୁଝାଉଥିଲା। ସମ୍ଭବତଃ, ବୈଦିକ ଆର୍ଯ୍ୟ ସମାଜର ଏହି ପର୍ଯ୍ୟାୟରେ ଗୋରୁକୁ ପବିତ୍ର ପଶୁ ବୋଲି ମନେ କରିବାର ପ୍ରତିଫଳନ ଏହି କଥାଟିରେ ଘଟିଛି । ଏହି ସମୟରେ ଗୃହପାଳିତ ଜୀବଜନ୍ତୁ ଏବଂ କ୍ଷେତର ଫସଲକୁ ବିପର୍ଯ୍ୟୟ ମୁଖରୁ ରକ୍ଷା କରିବା ପାଇଁ ବିଶେଷ ଧରଣର ଯାଗଯଜ୍ଞ କରାଯାଉଥିଲା । ହସ୍ତିନାପୁରରେ "ଚିତ୍ରକରା ଧୂସର ମାଟିପାତ୍ରର" ଭୂସ୍ତରରେ ଖନନ କାର୍ଯ୍ୟ ପରିଚାଳନା କରି ଗୃହପାଳିତ ଷଣ୍ଢ, ଛେଳି, ମେଣ୍ଢା, ଘୁଷୁରି ଏବଂ ଘୋଡ଼ାର ଅସ୍ଥି ମିଳିଛି ।

ଏହି ଯୁଗରେ ଯାନବାହନ ରୂପେ ବଳଦଟଣା ଗାଡ଼ି ଏବଂ ଘୋଡ଼ାଟଣା ରଥର ପ୍ରଚଳନ ଥିଲା ।

ବୈଦିକ ଆର୍ଯ୍ୟ ଉପଜାତିଗୁଡ଼ିକ ଛୋଟ ଛୋଟ ପ୍ରାଚୀର ବେଷ୍ଟିତ ଜନବସତିରେ ବାସ କରୁଥିଲେ ।

ଗଙ୍ଗା ଉପତ୍ୟକାରେ ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଫଳରେ, ଏହି ବସତିଗୁଡ଼ିକ ସହିତ ହରପ୍ପା ସଭ୍ୟତା ଅନ୍ତର୍ଗତ ବଡ଼ ବଡ଼ ସହରଗୁଡ଼ିକର ସାଦୃଶ୍ୟ ଥିଲା ବୋଲି ଜଣା ପଡ଼ିଛି । "ଋଗ୍‌ବେଦର" ସୂକ୍ତଗୁଡ଼ିକରେ ଯେଉଁସବୁ ସହରର (ବା "ପୁରର") ଉଲ୍ଲେଖ ଅଛି, ସେସବୁ ବଡ଼ ବଡ଼ ଗ୍ରାମ ସହିତ ବେଶି ତୁଳନୀୟ । ଏହି "ପୁରସବୁ" ଗଠିତ ହେଉଥିଲା କାଠ, କିମ୍ବା ଛଣ ସହିତ କାଦୁଅ ଦେଇ ନିର୍ମିତ ଛୋଟ ଛୋଟ ବାସଗୃହ ଦ୍ୱାରା କଦବା କେମିତି ପଥର ନିର୍ମିତ ଘରସବୁ ଦ୍ୱାରା ମାଟି ପ୍ରାଚୀର ଦ୍ୱାରା ଏହି ପୁରସବୁ ବେଷ୍ଟିତ ହୋଇଥିଲା । ଏହି ରକମର ପ୍ରାଚୀରଗୁଡ଼ିକ ଏକେବାରେ ସ୍ଥାୟୀ ଆଉ ଦୃଢ଼ ନଥିଲା ଏବଂ ପୁରଗୁଡ଼ିକ ଶତ୍ରୁ କବଳିତ ହୋଇଛି ଏବଂ ଧ୍ୱଂସ ପାଇଯାଇଛି ବୋଲି ବେଦରେ ସୂକ୍ତଗୁଡ଼ିକରେ ବାରମ୍ବାର ଉଲ୍ଲେଖ ଅଛି । କୌଶାମ୍ବିରେ ଭାରତୀୟ ପ୍ରତ୍ନତତ୍ତ୍ୱବିଦ୍‌ମାନେ ଯେଉଁ ଖନନ କାର୍ଯ୍ୟ ଚଳାଇଥିଲେ, ସେଥିରୁ ଜଣାଯାଇଛି, ହରପ୍ପା ଯୁଗର ଗୃହ ନିର୍ମାଣଗତ କେତେକ କାରୁକୌଶଳ ପୂର୍ବ ଭାରତର ବୈଦିକ ଆର୍ଯ୍ୟ ଉପଜାତିମାନଙ୍କୁ ସମ୍ଭବତଃ ଜଣାଥିଲା, କିନ୍ତୁ ସେସବୁ କାରୁକୌଶଳ ଶେଷୋକ୍ତ ଉପଜାତିମାନଙ୍କ ଗୃହ ନିର୍ମାଣ ଉପରେ ନିଷ୍ପତ୍ତିମୂଳକ ପ୍ରଭାବ ପକାଇ ପାରି ନଥିଲା । (ସାଂପ୍ରତିକ ବର୍ତ୍ତମାନଙ୍କରେ ଏ.ଘୋଷ୍‌ଙ୍କ ଭଳି କେତେକ ଭାରତୀୟ ପ୍ରତ୍ନତତ୍ତ୍ୱବିଦ୍ ବୈଦିକ ଆର୍ଯ୍ୟ ଉପଜାତିମାନଙ୍କ ମଧ୍ୟରେ ହରପ୍ପା ଯୁଗର ଗୃହ ନିର୍ମାଣର କାରୁକୌଶଳ ଜଣାଥିବା ବିଷୟଟିକୁ ପୂରା ନାକଚ କରିଦେଇଛନ୍ତି । ଏହାର କାରଣ ସ୍ୱରୂପ ସେମାନେ କହିଛନ୍ତି ଯେ, କୌଶାମ୍ବି ଦୁର୍ଗ ପ୍ରାଚୀରଟି ଅନେକ ଶତାବ୍ଦୀ ପରେ ନିର୍ମିତ ହୋଇଥିଲା) ।

ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଫଳରେ ଆଉରି ଜଣାଯାଇଛି ଯେ, ଗଙ୍ଗା ଉପତ୍ୟକାର ନଗର କେନ୍ଦ୍ରଗୁଡ଼ିକ ଗଢ଼ି ଉଠିବା ସଙ୍ଗେ ସଙ୍ଗେ ସେଠାରେ ବହୁବିଧ କାରୁଶିଳ୍ପର ଅଗ୍ରଗତି ଘଟିଥିଲା । ବୈଦିକ ଗ୍ରନ୍ଥମାନଙ୍କର କମାର, କୁମ୍ଭାର, ବଢ଼େଇ, ସୁନାରୀ, ଅସ୍ତ୍ରନିର୍ମାତା ପ୍ରଭୃତି କାରିଗରମାନଙ୍କର ଉଲ୍ଲେଖ ଦେଖିବାକୁ ମିଳେ । ଏମାନଙ୍କ ମଧ୍ୟରେ ସବୁଠାରୁ ସମ୍ମାନଜନକ ପେଶା ଥିଲା ବଢ଼େଇ ଆଉ କମାରମାନଙ୍କର, କାରଣ, ସେମାନେ କୃଷି ଯନ୍ତ୍ରପାତି ଏବଂ ଅସ୍ତ୍ରଶସ୍ତ୍ର ତିଆରି କରୁଥିଲେ ଏବଂ ଗୃହ ନିର୍ମାଣ କରୁଥିଲେ । ଏହି ସମୟରେ ବ୍ୟବସାୟ ବାଣିଜ୍ୟ କେବଳ ବିଭିନ୍ନ ଉପଜାତି ଏବଂ ସେମାନଙ୍କ ନଗର—ଜନପଦ ମଧ୍ୟରେ ଯେ ଗଢ଼ି ଉଠିଥିଲା, ତା ନୁହେଁ, ବିଦେଶ ସହିତ ମଧ୍ୟ ବ୍ୟବସାୟ ବାଣିଜ୍ୟ ଚାଲୁଥିଲା । ସମ୍ଭବତଃ, ସମୁଦ୍ର ପଥରେ ତାହା ପରିଚାଳିତ ହେଉଥିଲା । ବୈଦିକ ସୂକ୍ତଗୁଡ଼ିକରେ ଏକ ଶହ ଆହୁଲା ରଜ୍ଜୁବଦ୍ଧ ସମୁଦ୍ରଗାମୀ ପୋତର ଉଲ୍ଲେଖ ଅଛି ଏବଂ ତତ୍‌ସହିତ ଉଲ୍ଲେଖ ଅଛି, ସମୁଦ୍ର ହେଉଛି ରତ୍ନାକର । ନଦୀ ପଥରେ ଯାତାୟତ କରିବା ପାଇଁ ସେତେବେଳେ ବଡ଼ ବଡ଼ ନୌକା ମଧ୍ୟ ବ୍ୟବହୃତ ହେଉଥିଲା । କ୍ରମଶଃ ଏହିସବୁ ନଗର ବସତିରେ ପେଶାଦାର ବଣିକ ଗୋଷ୍ଠୀସବୁ ଦେଖା ଦେଇଥିଲେ ।

## ସଂପତ୍ତିର ମାଲିକାନା ଏବଂ ସାମାଜିକ ପଦମର୍ଯ୍ୟାଦାର ପାର୍ଥକ୍ୟରୁ ଜାତ ଅସମତା

ବୈଦିକ ଆର୍ଯ୍ୟ ସମାଜରେ ଇତି ମଧ୍ୟରେ ସଂପତ୍ତିର ମାଲିକାନା ଉପରେ ଭିତ୍ତି କରି ଅସମତା ଦେଖା ଦେଇଥିଲା । ବହୁ ଗୃହପାଳିତ ପଶୁର ମାଲିକ ଧନୀ ଉଚ୍ଚ ସଂପ୍ରଦାୟଙ୍କ ପାଖେ ପାଖେ

ଅତ୍ୟନ୍ତ ଦରିଦ୍ର ଜନସମଷ୍ଟିର ଘରଗୁଡ଼ିକ ଦେଖା ଦେଇଥିଲେ । ବୈଦିକ ଗ୍ରନ୍ଥମାନଙ୍କରେ ବହୁ ସମୟରେ ଧନୀ ଏବଂ ଦରିଦ୍ର ଲୋକଙ୍କର ଉଲ୍ଲେଖ ଦେଖିବାକୁ ମିଳେ — ଧନୀମାନେ ବଳିଦାନ ପାଇଁ ଚମତ୍କାର ପ୍ରାଣୀସବୁ ଉତ୍ସର୍ଗ ଏବଂ ମୁକ୍ତ ହସ୍ତରେ ପୂଜାର ନାନାବିଧ ଉପହାର ଦାନ କଲା ବେଳେ ଅନ୍ୟ ପକ୍ଷରେ, ସାଧାରଣ ଗ୍ରାମବାସୀମାନେ ଦେଉଛନ୍ତି ସାମାନ୍ୟ ଉପହାରାଦି । "ଋଗ୍‌ବେଦରେ" ଗବାଦି ପଶୁଙ୍କ ଦେହରେ ଛାପ ଦେବାର ଉଲ୍ଲେଖ ରହିଛି । ଏଥିରୁ ସ୍ପଷ୍ଟତଃ ବୁଝାଯାଏ ଯେ, କେଉଁ ଗୃହପାଳିତ ପଶୁର ମାଲିକ କିଏ — ଏହା ଜାଣିବା ପାଇଁ ଏପରି କରାଯାଉଥିଲା ।

ବୈଦିକ ରଚନାସମୂହରେ (ବିଶେଷତଃ ଅପେକ୍ଷାକୃତ ପରବର୍ତ୍ତୀ ବୈଦିକ ଯୁଗର ରଚନାଗୁଡ଼ିକରେ) ଭୂମି ଦାନ ଏବଂ ଭୂମି କ୍ରୟ ସମ୍ବନ୍ଧରେ ବିସ୍ତୃତ ବିବରଣୀ ମିଳିଥାଏ, ଯଦିଓ ସେତେବେଳେ ସଂପତ୍ତିର ଅଧିକାର ବହୁ ପରିମାଣରେ "ଗଣର ଇଚ୍ଛାଧୀନ" ଥିଲା । ଉପଜାତିଗଣର ବ୍ୟକ୍ତିଗତ ସଦସ୍ୟମାନଙ୍କ ମଧ୍ୟରେ ଚାଷଜମି ବଣ୍ଟିତ ହେଉଥିଲା ଏବଂ ଏହା ଫଳରେ ସଂପତ୍ତିର ଅଧିକାର ଏବଂ ସାମାଜିକ ପଦମର୍ଯ୍ୟାଦାରେ ପାର୍ଥକ୍ୟକୁ ଭିତ୍ତି କରି ସାମାଜିକ ଅସମତା ଆଉରି ବୃଦ୍ଧି ପାଇବାର ପଥ ସୁଗମ ହୋଇ ଯାଇଥିଲା । ଏହି କାରଣରୁ ସଂପତ୍ତିରେ ଉତ୍ତରାଧିକାର ପ୍ରଶ୍ନାଦି ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଲା ଏବଂ ଜମି ଉପରେ ଅଧିକାର ଦାବୀ କରି ବ୍ୟକ୍ତିବିଶେଷ ତଥା ଏପରିକି ସମଗ୍ର ଗଣ ମଧ୍ୟରେ ବିରୋଧ ଘନେଇ ଉଠିବାକୁ ଲାଗିଲା । ଏହି ଭାବେ ଉପଜାତିଗଣର କେତେକ ସଦସ୍ୟ କ୍ରମଶଃ ଧନୀ ହୋଇ ଉଠିଲେ ଏବଂ ଏକଦା ଯାହା ଥିଲା ଐକ୍ୟବଦ୍ଧ ସମାଜ, ସେଥିରେ ବିଶେଷ ସୁବିଧାପ୍ରାପ୍ତ ଏକ ସଂପ୍ରଦାୟ ଦେଖା ଦେବାକୁ ଲାଗିଲା । ଏହିସବୁ ଲୋକେ ବହୁ ଦାସର ବା କ୍ରୀତଦାସର ମାଲିକ ହୋଇ ଉଠିଲେ ଏବଂ ଏଥି ସାଥେ ସାଥେ ଦରିଦ୍ରତା ମଧ୍ୟରେ ପତିତ ସମାଜର ଅନ୍ୟାନ୍ୟ ଲୋକେ ବ୍ୟକ୍ତି ସ୍ୱାଧୀନତା ହରାଇ ନିଜର ଉପଜାତିଗଣ ଏବଂ ଗ୍ରାମଗୋଷ୍ଠୀ ମଧ୍ୟରେ ଅନ୍ୟର ଅଧୀନ ହୋଇ ପଡ଼ିଲେ ।

ବୈଦିକ ଆର୍ଯ୍ୟ ସମାଜରେ ଏହି ଦାସ ପ୍ରଥାର ଆବିର୍ଭାବ ସ୍ପଷ୍ଟତଃ ଅର୍ଥନୈତିକ ଓ ସାମାଜିକ ଅସାମ୍ୟର ଆବିର୍ଭାବର ସୂଚନା ଦେଇଥାଏ । ପ୍ରଥମେ ଯୁଦ୍ଧରେ ପରାଜିତ ଶତ୍ରୁ ପକ୍ଷର ଯୁଦ୍ଧବନ୍ଦୀମାନଙ୍କୁ ଦାସରେ ପରିଣତ କରାଯାଉଥିଲା (ସେତେବେଳେ ଦାସ ବୋଇଲେ "ଦସ୍ୟୁ" ବା "ଦାସଃ", ଅର୍ଥାତ୍, ଶତ୍ରୁକୁ ହିଁ କେବଳ ବୁଝାଉଥିଲା), କିନ୍ତୁ ପରେ ଏକା ଉପଜାତିଗଣର କେତେକ ସଦସ୍ୟ ଅନ୍ୟର ଅଧୀନ ବା ପ୍ରାୟ କ୍ରୀତଦାସ ହୋଇ ପଡ଼ିଲେ । କେତେକ ପଣ୍ଡିତ ଭ୍ରାନ୍ତି ବଶତଃ "ଦାସ" ବୋଇଲେ ଆର୍ଯ୍ୟମାନଙ୍କ ଠାରୁ ନୃକୁଳ ଦୃଷ୍ଟିରୁ ପୃଥକ୍ କେବଳ ଅନ୍ୟାନ୍ୟ ଉପଜାତିର ଲୋକଙ୍କୁ ମନେ କରିଥାନ୍ତି । ଅର୍ଥାତ୍, ସେମାନେ କହିବାକୁ ଚାହାନ୍ତି ଯେ, ଆର୍ଯ୍ୟମାନଙ୍କ ସମାଜରେ ଦାସ ପ୍ରଥାର ଉଦ୍‌ଭବ ସାମାଜିକ ଅସମତା ଦୃଷ୍ଟିରୁ ଘଟିନି, ଘଟିଛି ନୃକୁଳଗତ ପାର୍ଥକ୍ୟର କାରଣରୁ । ଅବଶ୍ୟ, ଦାସମାନଙ୍କ ମଧ୍ୟରେ ଭାରତର ସ୍ଥାନୀୟ ଉପଜାତିର ଲୋକମାନେ ଥିବାଟା ଯେ ଯଥେଷ୍ଟ ସମ୍ଭବ, ସେଥିରେ ସନ୍ଦେହ ନାହିଁ । "ଅଥର୍ବବେଦରେ" ଶସ୍ୟ ଚୂରିବା ପାଇଁ ନାରୀଦାସୀ ନିୟୋଗ କଲା ଭଳି କୌତୂହଳୋଦ୍ଦୀପକ ତଥ୍ୟ ମଧ୍ୟ ମିଳିଥାଏ । ବୈଦିକ ଗ୍ରନ୍ଥଗୁଡ଼ିକରେ, ଏପରିକି "ଋଗ୍‌ବେଦରେ" ବହୁ ସଂଖ୍ୟକ ଦାସ ନିଯୁକ୍ତିର ଉଲ୍ଲେଖ ଥିବାର ମଧ୍ୟ ଦେଖିବାକୁ ମିଳେ (ବେଳେ ବେଳେ କୁହାଯାଇଛି ଯେ, ଜଣ ଜଣକର ଶହ ଶହ, ଏପରିକି ହଜାର ହଜାର ଦାସ ଥିଲେ ବୋଲି) । ତେବେ ଏହି ସଂଖ୍ୟାଗୁଡ଼ିକ କେତେ ଦୂର ବାସ୍ତବ ସମ୍ମତ,

ତାହା କହିବା କଠିନ । ଏସବୁ କ୍ଷେତ୍ରରେ ଦାସମାନଙ୍କ ସଂଖ୍ୟାକୁ ଅତିରଞ୍ଜିତ କରି କୁହାଯାଇଛି ବୋଲି ଧରି ନେବାଟା ଅଧିକ ଯୁକ୍ତିସଂଗତ ହେବ, ଯଦିଓ ବୈଦିକ ଯୁଗରେ ଦାସ ପ୍ରଥାର ଯେ ଉଦ୍‌ଭବ ଘଟିଥିଲା, ଏଥିରେ ସନ୍ଦେହ ନାହିଁ ।

ଉପଜାତି ଗୋଷ୍ଠୀ ସମାଜର ସ୍ତରକୁ ସେପର୍ଯ୍ୟନ୍ତ ଅତିକ୍ରମ କରି ନଥିବା ବୈଦିକ ଆର୍ଯ୍ୟ ସମାଜ ତା'ର ତତ୍‌କାଳୀନ ବିକାଶର ମାନକୁ ବିଗ୍ଭର କଲେ, ସେତେବେଳେ ସେ ସମାଜରେ (ବିଶେଷ କରି "ଋଗ୍‌ବେଦ" ଯୁଗରେ) ଯେଉଁ ଦାସ ପ୍ରଥାର ଅସ୍ତିତ୍ୱ ଥିଲା, ତାକୁ ମୋଟାମୋଟି ଭାବେ ଅପରିପକ୍ୱ, ପିତୃତାନ୍ତ୍ରିକ ବ୍ୟବସ୍ଥା ବୋଲି କହିବା ଉଚିତ ହେବ ।

## ରାଜନୈତିକ ସଂଗଠନ

ବୈଦିକ ଆର୍ଯ୍ୟ ଉପଜାତି ବା ଗଣଗୁଡ଼ିକର ରାଜନୈତିକ ସଂଗଠନର ବର୍ଣ୍ଣନା କରିବାଟା ଏକ ଜଟିଳ ବିଷୟ । ଏହାର କାରଣ କେବଳ ଏହା ନୁହେଁ ଯେ, ଏ ବିଷୟରେ ଉଲ୍ଲେଖ କଲା ଭଳି ପ୍ରମାଣ ପଣ୍ଡିତମାନଙ୍କୁ ବେଶି ଜଣା ନାହିଁ । "ଋଗ୍‌ବେଦ" ଯୁଗର ଉପଜାତିଗୁଡ଼ିକ ଏବଂ ପରବର୍ତ୍ତୀ କାଳର ବୈଦିକ ଆର୍ଯ୍ୟ ଉପଜାତିସମୂହର ରାଜନୈତିକ ସଂଗଠନର ବିଭିନ୍ନ ପ୍ରକାର ଏବଂ ସାମଗ୍ରିକ ଭାବେ ସେମାନଙ୍କ ଦ୍ୱାରା ଅର୍ଜିତ ଐତିହାସିକ ବିକାଶର ବିଭିନ୍ନ ସ୍ତର ମଧ୍ୟରେ ପାର୍ଥକ୍ୟ ଏତେ ବିରାଟ ଯେ, ଏ କ୍ଷେତ୍ରରେ ଜଟିଳତାର ତାହା ହେଉଛି ପ୍ରଧାନ କାରଣ ।

ଏ କ୍ଷେତ୍ରରେ ତେଣୁ ଗୁରୁତ୍ୱପୂର୍ଣ୍ଣ ବିଷୟଟି ହେଉଛି, ଏହି ପ୍ରଶ୍ନଟିକୁ ବୈଦିକ ଆର୍ଯ୍ୟ ଉପଜାତିଗୁଡ଼ିକର ସାମଗ୍ରିକ ବିକାଶର ପଟ୍ଟଭୂମିରେ ବିଗ୍ଭର କରିବାକୁ ହେବ । ଅର୍ଥାତ୍, ଏହାକୁ ସେଇ ବିକାଶର ପଟ୍ଟଭୂମିରେ ବିଗ୍ଭର କରିବାକୁ ହେବ, ଯିଏକି ବହୁ ଶତାବ୍ଦୀ ଧରି ସଂପନ୍ନ ହୋଇଥିଲା ଏବଂ ଯିଏକି ଚିହ୍ନିତ ହୋଇଛି ବୈଦିକ ଆର୍ଯ୍ୟ ସମାଜର ଅର୍ଥନୈତିକ ଜୀବନ ଏବଂ ସାମାଜିକ-ରାଜନୈତିକ ଗଢ଼ଣରେ ବଡ଼ ବଡ଼ ପରିବର୍ତ୍ତନ ଦ୍ୱାରା ।

ଏଠାରେ ସ୍ମରଣ ରଖିବା ଦରକାର ଯେ, ବୈଦିକ ଯୁଗର ପ୍ରାରମ୍ଭରେ ଉପଜାତି ଗୋତ୍ର ଓ ଉପଜାତି ସଂଗଠନର ଗୋଟିଏ ସ୍ତରରେ ଥିଲେ । କିନ୍ତୁ ପରବର୍ତ୍ତୀ ବୈଦିକ ଯୁଗରେ ଏବଂ ବିଶେଷ କରି ମହାକାବ୍ୟ-ପୁରାଣ ଯୁଗରେ ଉପଜାତିମାନଙ୍କ ମଧ୍ୟରେ ଶ୍ରେଣୀବିଭକ୍ତ ସମାଜ ଦେଖା ଦେଇଥିଲା ଏବଂ ରାଷ୍ଟ୍ରର ଉତ୍ପତ୍ତି ଘଟୁଥିଲା ।

ବୈଦିକ ଉପଜାତିମାନେ ଗଣରେ ବିଭକ୍ତ ହୋଇ ବାସ କରୁଥିଲେ । ପ୍ରାରମ୍ଭରେ ଏହି ଗଣ ବୋଇଲେ ଗୋତ୍ର ବା ଉପଜାତୀୟ ଗୋଷ୍ଠୀକୁ ବୁଝାଉଥିଲା । ପରେ ଏହି ଗୋଷ୍ଠୀ ମଧ୍ୟରେ ଦେଖା ଦେଇଥିଲା ଶ୍ରେଣୀ ବିଭାଗ । "ଋଗ୍‌ବେଦର" କେତେକ ସୂକ୍ତରେ ଆମେ ଏଭଳି ଏକ ଅତୀତ ଯୁଗର ଉପାଖ୍ୟାନସବୁ ପାଇଥାଏଁ, ଯେତେବେଳେ ଆର୍ଯ୍ୟମାନେ ଐକ୍ୟବଦ୍ଧ, ସୁସମନ୍ୱିତ ଗୋଷ୍ଠୀରେ ବିଭକ୍ତ ହୋଇ ବାସ କରୁଥିଲେ, ଏକାସାଙ୍ଗରେ ମିଳିମିଶି କାର୍ଯ୍ୟ କରୁଥିଲେ ଏବଂ ଦେବତାମାନଙ୍କୁ ମିଳିତ ଭାବେ ବଳିଦାନ ପାଇଁ ପ୍ରାଣୀ ଉତ୍ସର୍ଗ କରୁଥିଲେ ଏବଂ ପରିଶ୍ରମ ଲବ୍ଧ ଫଳକୁ ଗୋଷ୍ଠୀର ସମସ୍ତଙ୍କ ମଧ୍ୟରେ ଭାଗ ଭାଗ କରି ବାଣ୍ଟି ନେଉଥିଲେ । ଆର୍ଯ୍ୟମାନଙ୍କର ଏହି ଗଣଗୁଡ଼ିକୁ ଶାସନ କରୁଥିଲେ ଗଣପତିମାନେ ।

ବୈଦିକ ଗ୍ରନ୍ଥଗୁଡ଼ିକରେ ପ୍ରତ୍ୟକ୍ଷ ଭାବେ ଉଲ୍ଲେଖ ଅଛି ଯେ, ସ୍ତ୍ରୀଲୋକମାନଙ୍କର ଗଣର ସଭାରେ ଯୋଗ ଦେବାର ଅଧିକାର ନଥିଲା । ସମସ୍ତ ପ୍ରକାରର ରାଜନୈତିକ ଅଧିକାରରୁ ସେମାନେ ବଞ୍ଚିତ ଥିଲେ ବୋଲି ମନେ ହୁଏ । ସମାଜର ଆଭ୍ୟନ୍ତରୀଣ ବିଷୟ ଏବଂ ଶାସନ ସଂକ୍ରାନ୍ତ ସମସ୍ତ ପ୍ରଶ୍ନର ମୀମାଂସା ସମାଜର ପୂର୍ଣ୍ଣ ଅଧିକାରସଂପନ୍ନ ସଦସ୍ୟମାନେ ବିଦଥ, ସଭା ଏବଂ ସମିତି ଭଳି ସମାବେଶରେ ମିଳିତ ହୋଇ କରୁଥିଲେ ।

ଉପରୋକ୍ତ ଏହିସବୁ ଶବ୍ଦର ସଠିକ ଅର୍ଥ ସଂପର୍କରେ ପଣ୍ଡିତମାନେ ଖୁବ୍ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । କାରଣ ଏହିସବୁ ଉପଜାତୀୟ ସମାବେଶଗୁଡ଼ିକର ଚରିତ୍ର ସଂପର୍କରେ ଉଲ୍ଲେଖ କରିଥିବା ମୂଳ ଉତ୍ସଗୁଡ଼ିକ ଅନେକ ସମୟରେ ପରସ୍ପର ବିରୋଧୀ ଅର୍ଥ ପ୍ରଦାନ କରିଥାନ୍ତି । ସମ୍ଭବତଃ ଏସବୁ ମଧ୍ୟରେ ସବୁଠାରୁ ପ୍ରାଚୀନ ସଂଗଠନ ଥିଲା ବିଦଥ । ଏହା ଦ୍ୱାରା ସେତେବେଳେ ଉପଜାତୀୟ ମୁଖ୍ୟମାନଙ୍କ ସମାବେଶକୁ ହିଁ ବୁଝାଉଥିଲା । ସମିତି ଠାରୁ ଏହା ପୃଥକ୍ ହେଉଛି ଏହି ଦୃଷ୍ଟିରୁ ଯେ, ଏଥିରେ ରାଜନୈତିକ ବିଷୟ ଅଧିକ ଆଲୋଚିତ ହେଉଥିଲା । ସମିତି କହିଲେ, ସଭା ଠାରୁ ଆଉ ବ୍ୟାପକ ଆକାରର ସମାବେଶକୁ ବୁଝାଉଥିଲା ବୋଲି ମନେ ହୁଏ । ତେବେ ସମିତିର କାର୍ଯ୍ୟ କ'ଣ ଥିଲା, ସେ କଥା କହିବା କଷ୍ଟକର ।

ଏହିସବୁ ଆର୍ଯ୍ୟ ଉପଜାତିର ଲୋକେ ଗ୍ରାମରେ ବାସ କରୁଥିଲେ ଏବଂ ଗ୍ରାମଗୁଡ଼ିକ ଗଠିତ ହୋଇଥିଲା ବଡ଼ ବଡ଼ ପିତୃଶାସିତ ପରିବାର ବା କୁଳକୁ ନେଇ । ଗୋତ୍ର ବନ୍ଧନ ସେପର୍ଯ୍ୟନ୍ତ ଅତ୍ୟନ୍ତ ଶକ୍ତିଶାଳୀ ଥିଲା ଏବଂ ଜୀବନର ସମସ୍ତ କ୍ଷେତ୍ରରେ ଗୋତ୍ରର ପ୍ରଭାବ ଅନୁଭୂତ ହେଉଥିଲା । ଗ୍ରାମଗୁଡ଼ିକରେ ଚାଲୁଥିଲା ନିଜସ୍ୱ ପ୍ରଶାସନ ବ୍ୟବସ୍ଥା । ସଂପତ୍ତି ଏବଂ ପଦମର୍ଯ୍ୟାଦା ଉପରେ ପ୍ରତିଷ୍ଠିତ– ଅସମତା ତା'ର ମୂଳକୁ ଦୃଢ଼ କରିବା ସଙ୍ଗେ ସଙ୍ଗେ ଉପଜାତି ଗୋଷ୍ଠୀଗୁଡ଼ିକ ମଧ୍ୟରେ ସ୍ତରବିନ୍ୟାସ ବୃଦ୍ଧି ପାଇବାକୁ ଲାଗିଲା ଏବଂ ଉପଜାତୀୟ ପ୍ରଶାସନ ବ୍ୟବସ୍ଥାର କେନ୍ଦ୍ରଗୁଡ଼ିକ ରାଷ୍ଟ୍ରୀୟ କ୍ଷମତାର କେନ୍ଦ୍ର ରୂପେ ବିକଶିତ ହେବାକୁ ଲାଗିଲେ । ଗଣପତି ପଦର ମଧ୍ୟ ପରିବର୍ତ୍ତନ ଘଟିବାକୁ ଲାଗିଲା, ଉପଜାତୀୟ ନେତା ବଦଳରେ ସେ କ୍ରମଶଃ ସଂଘବଦ୍ଧ ରାଷ୍ଟ୍ରର ଶାସକରେ ପରିଣତ ହେଲେ ।

ରାଜ ଶକ୍ତିର ପ୍ରଥମ ଆବିର୍ଭାବ ନେଇ ପ୍ରାଚୀନ ଭାରତୀୟ ଉପାଖ୍ୟାନଗୁଡ଼ିକର ବର୍ଣ୍ଣନା ସଂପର୍କରେ ଏଠାରେ ଆଲୋଚନା ଅପ୍ରାସଙ୍ଗିକ ହେବ ନାହିଁ । ସେହିସବୁ ମଧ୍ୟରୁ ଗୋଟିଏ ଉପାଖ୍ୟାନ ଅନୁଯାୟୀ ପ୍ରଥମେ ଦେଶରେ ରାଜା ନଥିଲେ, ସମସ୍ତ ଲୋକେ ଥିଲେ ସମାନ ଏବଂ ସେମାନେ ସର୍ବଜନଗ୍ରାହ୍ୟ ନୈତିକ ନିୟମକାନୁନ୍‌କୁ ଦୃଢ଼ ଭାବେ ମାନିକି ଚଳୁଥିଲେ । କିନ୍ତୁ କାଳକ୍ରମେ ବହୁ ଲୋକ ଅତ୍ୟଧିକ ଆମୋଦ ପ୍ରମୋଦରେ ଲିପ୍ତ ହୋଇ ଆଇନ୍ ଶୃଙ୍ଖଳାକୁ ଭାଙ୍ଗିବାକୁ ଲାଗିଲେ ଏବଂ ସବଳମାନେ ଦୁର୍ବଳମାନଙ୍କୁ ଗ୍ରାସ କରିବାକୁ ଲାଗିଲେ । ଦେଶର ଏହି ଅରାଜକ ଅବସ୍ଥା ଦେଖି ଅବଶେଷରେ ଦେବାଦି ଦେବ ବ୍ରହ୍ମା ରାଜ ଶକ୍ତିର ସୃଷ୍ଟି କଲେ ଏବଂ ଦଣ୍ଡବିଧି ବିଜ୍ଞାନ ପ୍ରଣୟନ କଲେ ।

ଆଉ ଗୋଟିଏ ବୈଦିକ ଉପାଖ୍ୟାନରେ କୁହାଯାଇଛି, ସମାଜର ଜଣେ ରକ୍ଷକ ନିଯୁକ୍ତ କରିବା ପାଇଁ ଲୋକେ କିପରି ଜଣେ ରାଜାକୁ ନିର୍ବାଚନ କଲେ । ରାଜା ଏବଂ ରାଷ୍ଟ୍ର ଶକ୍ତିର ଆବିର୍ଭାବର କାରଣ ବର୍ଣ୍ଣନା କରିବାକୁ ଯାଇ ଯେକୌଣସି ଯୁକ୍ତି ଦିଆଯାଇଥାଉ ନା କାହିଁକି, ପ୍ରାଚୀନ ଭାରତୀୟମାନେ ଯେ ରାଷ୍ଟ୍ର ଶକ୍ତିର ଆବିର୍ଭାବର ପ୍ରୟୋଜନକୁ ସ୍ୱୀକାର କରି ନେଇଥିଲେ, ଏହା ହିଁ ଏ କ୍ଷେତ୍ରରେ ଅତ୍ୟନ୍ତ ଆଗ୍ରହୋଦ୍ଦୀପକ କଥା ।

ଆଦି ବୈଦିକ ଗ୍ରନ୍ଥ ଅନୁଯାୟୀ ପ୍ରଥମେ ଜନମଣ୍ଡଳୀ ଦ୍ୱାରା ରାଜା ନିର୍ବାଚିତ ହେଉଥିଲେ ଏବଂ ଏହି ଉଦେଶ୍ୟରେ ସ୍ୱତଃ ଏକ ବିଶେଷ ସମାବେଶରେ ଜନସାଧାରଣ ସମବେତ ହେଉଥିଲେ । "ଋଗ୍‌ବେଦ" ଏବଂ "ଅଥର୍ବବେଦରେ" ରାଜା ନିର୍ବାଚନ ସମ୍ବନ୍ଧରେ କେତେକ ସୂକ୍ତ ରହିଛି । "ଅଥର୍ବବେଦର" ଏହିଭଳି ଏକ ସୂକ୍ତର ଗୋଟିଏ ପଂକ୍ତି ହେଉଛି : "ବିଶ ଆପଣଙ୍କୁ ଶାସନ କରିବା ପାଇଁ ନିର୍ବାଚିତ କଲେ" । ଏଠାରେ ଏବଂ "ଋଗ୍‌ବେଦରେ" ଅନୁରୂପ ଶ୍ଲୋକରେ "ବିଶ" ଶବ୍ଦଟି ଜନସାଧାରଣଙ୍କୁ ବୁଝାଏ । ଏହି ନିର୍ବାଚିତ ରାଜାର ଅନ୍ୟତମ ମୁଖ୍ୟ ଦାୟିତ୍ୱ ଥିଲା ନିଜ ପ୍ରଜାବର୍ଗଙ୍କୁ ରକ୍ଷା କରିବା । ରାଜାଙ୍କୁ ଜନସାଧାରଣଙ୍କ ରକ୍ଷକ ବୋଲି ବିଗ୍ରର କରିବା ଥିଲା ରୀତି ।

ରାଷ୍ଟ୍ର ଗଠନର ଏହି ପ୍ରକ୍ରିୟାଟି ଥିଲା ଏକ ସୁଦୀର୍ଘ ବ୍ୟାପାର ଏବଂ ସେଇ ଅନ୍ତର୍ବର୍ତ୍ତୀ କାଳରେ ପୂର୍ବବର୍ତ୍ତୀ ରାଜନୈତିକ ସଂଗଠନଗୁଡ଼ିକର ପ୍ରଭାବ ଦୀର୍ଘ କାଳ ଧରି ରହିଯାଇଥିଲା । ଏହି ସମୟରେ ଉପଜାତୀୟ ସମାବେଶଗୁଡ଼ିକ – ବିଶେଷ କରି ସଭା ଏବଂ ସମିତି – ସମାଜ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରି ଗ୍ଭଲିଥିଲା ଏବଂ ରାଜା ନିଯୋଗର ବିଷୟଟିକୁ ମଧ୍ୟ ପ୍ରଭାବିତ କରୁଥିଲା । ଏହି ଉପଜାତୀୟ ସମାବେଶଗୁଡ଼ିକୁ କ୍ରମଶଃ ସ୍ଥାନାନ୍ତରିତ କରି ଦେଲା ସମ୍ଭ୍ରାନ୍ତ ସଂପ୍ରଦାୟର କିମ୍ବା ରାଜାର ପରିଷଦବର୍ଗର ସମାବେଶଗୁଡ଼ିକ । (ପରବର୍ତ୍ତୀ କାଳରେ ସଭା ଶବ୍ଦଟି ଦ୍ୱାରା ସମାବେଶ, ବିତର୍କ, ଏପରିକି ଖେଳ କସରତ୍ ଅନୁଷ୍ଠାନ ହେଉଥିବା କକ୍ଷକୁ ବୁଝାଉଥିଲା । ଏକଦା ଏକ ବିଶେଷ ଧରଣର ଆଇନଗତ ପ୍ରତିଷ୍ଠାନକୁ ବି ଏହି ଶବ୍ଦ ଦ୍ୱାରା ବୁଝାଯାଉଥିଲା ।) ରାଜାର କ୍ଷମତା ବଢ଼ିବା ସଙ୍ଗେ ସଙ୍ଗେ ସଭା ଏବଂ ସମିତିର ଭୂମିକାର ଗୁରୁତ୍ୱ ହ୍ରାସ ପାଇବାକୁ ଲଗିଲା । କ୍ରମଶଃ ରାଷ୍ଟ୍ର କ୍ଷମତା ପରିଗ୍ଭଳନାର ପ୍ରତିଷ୍ଠାନସମୂହ ଏବଂ ସ୍ଥାୟୀ ରାଷ୍ଟ୍ରୀୟ ପଦବୀଗୁଡ଼ିକର ଆବିର୍ଭାବ ଘଟିଲା । ଜନସାଧାରଣ କର ଦେବାକୁ ଆରମ୍ଭ କଲେ । ଇତିପୂର୍ବରୁ ଦେବତାଙ୍କ ନିକଟରେ ଏବଂ ଉପଜାତି ପ୍ରଧାନଙ୍କ ପାଖରେ ସ୍ୱେଚ୍ଛାରେ ଯେଉଁ ପୂଜା ଉପହାର ଦିଆଯାଉଥିଲା, ତାକୁ କୁହାଯାଉଥିଲା ବଳି । ଏବେ ସେ ବଳି ବାଧ୍ୟତାମୂଳକ ରାଜ କରରେ ପରିଣତ ହେଲା । ବିଶେଷ ଭାବେ ନିଯୁକ୍ତ ରାଜକର୍ମଗ୍ଭରୀମାନଙ୍କ ଜରିଆରେ ରାଜାକୁ ଏହି କର ଦେବାର ନିୟମକାନୁନ୍ ଦୃଢ଼ତାର ସହିତ ପ୍ରବର୍ତ୍ତିତ ହେଲା ।

ଇତିପୂର୍ବରୁ ଥିବା ଉପଜାତୀୟ ଯୋଦ୍ଧାଦଳ କ୍ରମଶଃ ବିଶେଷ ଧରଣର ଏକ ପରିଗ୍ଭଳକର (ସେନାନୀ ବା ସେନାପତି) ନେତୃତ୍ୱ ଅଧୀନରେ ସ୍ଥାୟୀ ଏକ ବାହିନୀ ରୂପେ ବିକାଶ ଲଭ କଲା । ରାଜା ଏବଂ ପେଶାଦାର ଯୋଦ୍ଧାମାନେ (କ୍ଷତ୍ରିୟ) ରଥରେ ଚଢ଼ି ଲଢ଼େଇ କରୁଥିଲେ ଏବଂ ଗ୍ରାମୀଣ କୃଷକ କାରିଗର ଆଦି ସ୍ୱେଚ୍ଛାସୈନିକମାନେ ପଦାତିକ ହିସାବରେ ଲଢ଼ୁଥିଲେ ।

ବୈଦିକ ସାହିତ୍ୟରେ ରାଜ ଅଭିଷେକ ଉପଲକ୍ଷେ ଆୟୋଜିତ ବିଶେଷ ଅନୁଷ୍ଠାନର (ରାଜସୂୟ ଯଜ୍ଞ) ବିଶଦ ବର୍ଣ୍ଣନା ଦେଖିବାକୁ ମିଳେ । ଏହି ଅନୁଷ୍ଠାନରେ ରାଜାର ବ୍ୟକ୍ତିତ୍ୱରେ ଦେବତ୍ୱ ଆରୋପିତ ହେଉଥିଲା । ରାଜାର ପ୍ରଧାନ ପୁରୋହିତଙ୍କ ଭୂମିକା ଏହି ସମୟରୁ କ୍ରମଶଃ ଅଧିକ ଗୁରୁତ୍ୱ ଲଭ କରିଥିଲା ଏବଂ ପୁରୋହିତ ରାଜାର ଜ୍ୟୋତିଷ ଏବଂ ଉପଦେଷ୍ଟାର ଭୂମିକା ଗ୍ରହଣ କରିଥିଲେ । ରାଜାଭିଷେକ ଅନୁଷ୍ଠାନରେ ସାହାଯ୍ୟକାରୀ ବ୍ୟକ୍ତିମାନଙ୍କ ନାମର କେତେକ ତାଲିକା ମିଳିଥାଏ; ଏହା ବିଶେଷ ଆଗ୍ରହୋଦ୍ଦୀପକ । ଏହିସବୁ ବ୍ୟକ୍ତିଙ୍କୁ "ରାଜ ନିର୍ବାଚକ" ବୋଲି ଆଖ୍ୟା ଦିଆଯାଇଛି । ରାଜାର ଏହି ନିର୍ବାଚକମାନଙ୍କ ତାଲିକାରେ ଗ୍ରାମଣୀ ବା ଗ୍ରାମ ମୁଖିଆର ନାମ ମଧ୍ୟ ରହିଛି । ଏଥିରୁ ଜଣା ପଡ଼ୁଛି, ସେପର୍ଯ୍ୟନ୍ତ କେନ୍ଦ୍ରୀୟ ଶାସନ କାର୍ଯ୍ୟରେ ଗ୍ରାମର ସ୍ଥାନୀୟ ପ୍ରଶାସନିକ

ସଂଗଠନର କିଛି ହାତ ଥିଲା । କିନ୍ତୁ କ୍ରମଶଃ ନିର୍ବାଚିତ ରାଜାଙ୍କ ସ୍ଥାନ ଗ୍ରହଣ କଲେ ବଂଶାନୁକ୍ରମିକ ରାଜା ଏବଂ ସେତେବେଳେ ରାଜଶକ୍ତି ନିୟମିତ ଭାବେ ପିତାଠାରୁ ପୁତ୍ରକୁ ହସ୍ତାନ୍ତରିତ ହେବାକୁ ଲାଗିଲା । ଅତଏବ, ଏଥିରୁ ଜଣାଯାଉଛି, ଆଦି ବୈଦିକ ଯୁଗର ଗଣରୁ କ୍ରମଶଃ ସମାଜ ବିବର୍ତ୍ତନ ଫଳରେ ରାଷ୍ଟ୍ରର ଉତ୍ପତ୍ତି ଘଟିଛି ଏବଂ ପରେ ବହୁବିଧ ସାମାଜିକ ଅବସ୍ଥାନ ମଧ୍ୟ ଦେଇ ଏହିସବୁ ରାଷ୍ଟ୍ର ବଂଶାନୁକ୍ରମିକ ରାଜ୍ୟର, କିମ୍ବା ପ୍ରଜାତନ୍ତ୍ରର ରୂପ ଗ୍ରହଣ କରିଛି । ଏହିସବୁ ରାଜ୍ୟ ଅନ୍ତର୍ଭୁକ୍ତ ଭୂଖଣ୍ଡର ଆୟତନ ସେପର୍ଯ୍ୟନ୍ତ ବଡ଼ ନଥିଲା । ଅଚଳ ହୋଇ ପଡ଼ିଥିବା ଅନୁଷ୍ଠାନ ଏବଂ ଆଦିମ ସମାଜର ସଂଗଠନଗୁଡ଼ିକର କେତେକ ଦିଗ ଦୀର୍ଘ ଦିନ ପର୍ଯ୍ୟନ୍ତ ଏହିସବୁ ବୈଦିକ ଆର୍ଯ୍ୟ ରାଜ୍ୟରେ ତିଷ୍ଠି ରହିଥିଲା, ବିଶେଷ କରି ସେସବୁର ଉପାନ୍ତ ଅଞ୍ଚଳଗୁଡ଼ିକରେ ।

## ବର୍ଣ୍ଣର ଉତ୍ପତ୍ତି – ଜାତି ପ୍ରଥା

ଜାତି ଏବଂ ଜାତି ପ୍ରଥାର ଅସ୍ତିତ୍ୱକୁ ସାଧାରଣତଃ କେବଳ ଭାରତର ସମାଜ ବ୍ୟବସ୍ଥା ସହିତ ଯୁକ୍ତ କରାଯାଇଥାଏ ସତ, କିନ୍ତୁ ଐତିହାସିକ ଏବଂ ନୃକୂଳବିଦ୍ୟାଗତ ସାକ୍ଷ୍ୟ ପ୍ରମାଣାଦି ସଙ୍ଗେ ଏହି ଧାରଣାଟି ମୋଟେ ସଠିକ ଭାବେ ଖାପ ଖାଏ ନାହିଁ । ବର୍ଣ୍ଣ ବିଭାଗର କେତେକ ଦିଗ ଏବଂ ଜାତି ପ୍ରଥାର ବିଭିନ୍ନ ଉପାଦାନ ଆଉରି ଅନେକ ଜାତିର ସମାଜ ବ୍ୟବସ୍ଥାରେ ଦେଖିବାକୁ ମିଳିଥାଏ । ତେବେ, ଏକଥାଟି ଠିକ୍ ଯେ, ଜାତି ପ୍ରଥାର ବିକାଶର ସବୁଠାରୁ ଲକ୍ଷଣୀୟ ଦୃଷ୍ଟାନ୍ତ ଭାରତରେ ଦେଖିବାକୁ ମିଳେ ଏବଂ ଭାରତୀୟ ସମାଜର ସୁନିର୍ଦ୍ଦିଷ୍ଟ ପରିବେଶରେ ଏହି ପ୍ରଥାଟି ଏକ ଅତ୍ୟନ୍ତ ଅନମନୀୟ ରୂପ ଗ୍ରହଣ କରି ନେଇଛି ।

ପର୍ତ୍ତୁଗୀଜ୍ ଭାଷାରେ "କାଷ୍ଟା" ଶବ୍ଦର ଅର୍ଥ ହେଉଛି "ଜାତି", କିମ୍ବା "ବଂଶ" ବା "କୁଳ" । ଗତ ଷୋଡ଼ଶ ଶତାବ୍ଦୀରେ ପର୍ତ୍ତୁଗୀଜ୍‌ମାନେ ଭାରତରେ ଅନୁପ୍ରବେଶ କରି ଭାରତୀୟ ସମାଜ ବ୍ୟବସ୍ଥା ସହିତ ପରିଚିତ ହୋଇଥିଲେ । ସେମାନଙ୍କ ଠାରୁ ଏହି "କାଷ୍ଟା" ଶବ୍ଦର ନାନା ରୂପଭେଦ ବିଭିନ୍ନ ୟୁରୋପୀୟ ଭାଷାରେ ଗୃହୀତ ହୋଇଥିଲା । ଏହି ଶବ୍ଦଟି ଦ୍ୱାରା ଭାରତୀୟ ସମାଜରେ କଠୋର ଭାବେ ସୁନିର୍ଦ୍ଦିଷ୍ଟ କରାଯାଇଥିବା ଜନଗୋଷ୍ଠୀଗୁଡ଼ିକୁ ବୁଝିବାକୁ ହୋଇଥାଏ । ଭାରତରେ ଏହିସବୁ ଗୋଷ୍ଠୀ ସଂସ୍କୃତ ଶବ୍ଦ "ଜାତି" ନାମରେ ନାମିତ ।

ଭାରତବର୍ଷରେ ଏହି ଜାତି ପ୍ରଥାର, ଅର୍ଥାତ୍, ଏକେଇ ଜନଗୋଷ୍ଠୀ ମଧ୍ୟରେ ବିବାହ ସଂପର୍କକୁ କଡ଼ାକଡ଼ି ଭାବେ ସୀମିତ ରଖିଥିବା ଏବଂ ସୀମାବଦ୍ଧ କେତେକ ଏବଂ ବଂଶାନୁକ୍ରମିକ ବୃତ୍ତି ବା ପେଶାର ସହିତ ଯୁକ୍ତ ଥିବା ଏହି ବ୍ୟବସ୍ଥାଟିର ଉତ୍ପତ୍ତି ନେଇ ବିଦ୍ୱାନ୍‌ମାନଙ୍କ ରଚନାରେ ତୁମୁଳ ବିତର୍କ ସୃଷ୍ଟି ହୋଇଥାଏ । ଏହି ସମସ୍ୟାଟିକୁ ବିଗ୍ଭର କଲା ବେଳେ ବହୁ ବିଧ ସାମାଜିକ, ଅର୍ଥନୈତିକ ଏବଂ ମତାଦର୍ଶଗତ ବିଷୟ ଏବଂ ପ୍ରାଚୀନ ଭାରତ ଇତିହାସର ବିକାଶର ସୁନିର୍ଦ୍ଦିଷ୍ଟ ଧାରାଟିକୁ ବିବେଚନା କରିବା ଏକାନ୍ତ ପ୍ରୟୋଜନୀୟ ।

କାର୍ଲ ମାର୍କସ୍ ତାଙ୍କର ବହୁ ଆଲୋଚନାରେ ଦର୍ଶାଇଛନ୍ତି ଯେ, ଜାତି ପ୍ରଥାଟି ହେଉଛି ଉପଜାତୀୟ ସମାଜ ସଂଗଠନର ଏକ ଲୁପ୍ତାବଶେଷ ରୂପ । ଜାତି ପ୍ରଥା ମଧ୍ୟରେ ଗୋଷ୍ଠୀ ବା ଉପଜାତୀୟ ସଂପର୍କ "ଚରମ ଏବଂ କଠୋରତମ ରୂପ" ଗ୍ରହଣ କରିଥାଏ ।

ପ୍ରାଚୀନ ଭାରତୀୟ ସମାଜରେ ଜାତି ସହିତ ଆଉ ଗୋଟିଏ ପ୍ରାଚୀନ ସଂଗଠନ, ଅର୍ଥାତ୍, ସାମାଜିକ ଗୋଷ୍ଠୀ ବା ବର୍ଣ୍ଣର ଅସ୍ତିତ୍ୱ ଥିଲା । ଏହି ବର୍ଣ୍ଣର ଉଦ୍ଭବ ଘଟିଥିଲା ପ୍ରାକ୍‌ଶ୍ରେଣୀ ବିଭକ୍ତ ସମାଜରେ, ଯାହାକି ପରେ ଶ୍ରେଣୀ ସମାଜରେ ଦୃଢ଼ମୂଳକ ହୋଇ ପ୍ରତିଷ୍ଠା ଲାଭ କଲା । ଏହି ବିଭିନ୍ନ ସାମାଜିକ ଗୋଷ୍ଠୀ ବା ବର୍ଣ୍ଣସମୂହ (ଯଥା, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର) ଅଧିକରୁ ଅଧିକ ଦୃଢ଼ ହୋଇ ଉଠିଲେ ଏବଂ "ଜାତିମାନଙ୍କ" ସଦୃଶ ପ୍ରତୀତ ହେଲେ । ଏହି କାରଣରୁ ଭାରତୀୟ ସମାଜରେ ବର୍ଣ୍ଣକୁ ଅନେକ ସମୟରେ "ଜାତି" ବୋଲି ବର୍ଣ୍ଣନା କରାଯାଇଛି ।

ବର୍ଣ୍ଣର ଉଦ୍ଭବ ସଂକ୍ରାନ୍ତ ପ୍ରଶ୍ନଟି ଅତୀବ ଜଟିଳ । ତେବେ ସାମାଜିକ ଗୋଷ୍ଠୀ ବା ବର୍ଣ୍ଣର ଆବିର୍ଭାବ ସହିତ ଆଦିମ ସମାଜର ପତନ ଏବଂ ସଂପତ୍ତି ମାଲିକାନା ତଥା ସାମାଜିକ ପଦମର୍ଯ୍ୟାଦାର ପାର୍ଥକ୍ୟର ଭିତ୍ତି ଉପରେ ଗଢ଼ି ଉଠିଥିବା ଅସାମ୍ୟର ବିକାଶକୁ ଯୁକ୍ତ କରି ଦେଖିବା ଯୁକ୍ତିସଂଗତ ବୋଲି ମନେ ହୁଏ ।

ପ୍ରାଚୀନ ଭାରତରେ ସାମାଜିକ ଗୋଷ୍ଠୀସମୂହ ଗଠନର ଏହି ସୁନିର୍ଦ୍ଦିଷ୍ଟ ରୂପଟିର ଆବିର୍ଭାବ ପ୍ରକ୍ରିୟାରେ ସେହିସବୁ ସ୍ଥାନୀୟ ଉପଜାତିଗୁଡ଼ିକର ନିଜସ୍ୱ ବୈଶିଷ୍ଟ୍ୟ ବହନକାରୀ ସେମାନଙ୍କ ସାମାଜିକ ସଂଗଠନର ସୁନିର୍ଦ୍ଦିଷ୍ଟ ପ୍ରକୃତି ଖୁବ୍ ସମ୍ଭବତଃ ଏକ ଭୂମିକା ପାଳନ କରିଥିଲା, ଯେଉଁମାନଙ୍କୁ ଭାରତୀୟ-ଆର୍ଯ୍ୟ ଉପଜାତିମାନଙ୍କୁ ସାମ୍ନା କରିବାକୁ ପଡ଼ିଥିଲା ଉତ୍ତର ଭାରତରେ ଅନୁପ୍ରବେଶ କଲା ବେଳେ ।

ଅଭିଜାତ ଯୋଦ୍ଧା ସଂପ୍ରଦାୟକୁ ନେଇ ଗଠିତ ହୋଇଥିଲା କ୍ଷତ୍ରିୟ ବର୍ଣ୍ଣ, ପୁରୋହିତ ବା ଯାଜକ ସଂପ୍ରଦାୟକୁ ନେଇ ବ୍ରାହ୍ମଣ ବର୍ଣ୍ଣ, ସ୍ୱୟଂ ସଂପୂର୍ଣ୍ଣ ଗ୍ରାମ ଗୋଷ୍ଠୀର କୃଷକ, କାରିଗର, ଆଦି ସ୍ୱାଧୀନ ନାଗରିକମାନଙ୍କୁ ନେଇ ବୈଶ୍ୟ ବର୍ଣ୍ଣ ଏବଂ ପରିଶେଷରେ ସାମାଜିକ ସ୍ତରବିନ୍ୟାସର ସର୍ବନିମ୍ନ ସ୍ତରର ଅନ୍ତର୍ଭୁକ୍ତ ହେଲା ଶୂଦ୍ର ବର୍ଣ୍ଣ । ପ୍ରାକ୍‌ବୈଦିକ ଯୁଗରେ ଏହି ବର୍ଣ୍ଣ ବିଭାଗର ଉଦ୍ଭବ ଘଟିଥିଲା । ଏବେ ପ୍ରମାଣ ମିଳିଛି ଯେ, ପ୍ରାଚୀନ ଇରାନ୍‌ରେ କେତେକ ସାମାଜିକ ଗୋଷ୍ଠୀ ଥିଲେ (ଇରାନୀୟ ଭାଷାରେ ଏହି ଗୋଷ୍ଠୀକୁ ପିଶତ୍ରା କୁହାଯାଉଥିଲା, ବୈଦିକ ବର୍ଣ୍ଣ ଭଳି ଏହାର ଅର୍ଥ ରଙ୍ଗ), ଯେଉଁଗୁଡ଼ିକ ସହିତ ଉପରୋକ୍ତ ତିନୋଟି ଭାରତୀୟ ସାମାଜିକ ସ୍ତରର ସାଦୃଶ୍ୟ ଅଛି । ତେଣୁ ଆପାତତଃ ଦୃଷ୍ଟିରେ ମନେ ହୁଏ ଯେ, ସମାଜକୁ ଏହି ତିନୋଟି ସ୍ତରରେ ବିଭକ୍ତ କରିବାର ଏହି ପଦ୍ଧତି ପୂର୍ବବର୍ତ୍ତୀ ଭାରତୀୟ-ଇରାନୀୟ ଯୁଗରୁ ପ୍ରଚଳିତ ଥିଲା । ଆଉ କେତେକ ତଥ୍ୟକୁ ଭିତ୍ତି କରି ଧାରଣା ପୋଷଣ କରାଯାଇ ପାରେ ଯେ, ସମାଜ ବିନ୍ୟାସର ଏହି ପଦ୍ଧତିଟି, ସମ୍ଭବତଃ, ଇତିପୂର୍ବରୁ ପ୍ରଚଳିତ ଥିଲା ।

"ଋଗ୍‌ବେଦରେ" ପ୍ରଥମୋକ୍ତ ତିନୋଟି ବର୍ଣ୍ଣର (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ) ବହୁବିଧ ଉଲ୍ଲେଖ ଦେଖିବାକୁ ମିଳେ । ତେବେ "ଋଗ୍‌ବେଦର" କେବଳ ମାତ୍ର ୧୦ମ ମଣ୍ଡଳରେ ସେହି ଉପାଖ୍ୟାନଟି ବର୍ଣ୍ଣିତ ହୋଇଛି, ଯଦାନୁଯାୟୀ ଚତୁର୍ବର୍ଣ୍ଣର ଉଦ୍ଭବ ପୁରୁଷ ଠାରୁ ହୋଇଛି ବୋଲି କୁହାଯାଇଛି । ଏହି "ପୁରୁଷସୂକ୍ତରେ" ଲେଖା ହୋଇଛି ଯେ, ବ୍ରାହ୍ମଣମାନେ ଜନ୍ମ ହୋଇଥିଲେ ପୁରୁଷର ମୁଖ ଗହ୍ୱରରୁ, କ୍ଷତ୍ରିୟମାନେ ବାହୁ ଦ୍ୱୟରୁ, ବୈଶ୍ୟମାନେ ଉରୁ ଦ୍ୱୟରୁ ଏବଂ ଶୂଦ୍ରମାନେ ପାଦ ଦ୍ୱୟରୁ ।

ପରବର୍ତ୍ତୀ ବୈଦିକ ସାହିତ୍ୟରେ ମଧ୍ୟ ଏହି ବିଷୟଟି ବାରମ୍ବାର ବର୍ଣ୍ଣିତ ହୋଇଛି, କିନ୍ତୁ ସେସବୁଥିରେ କୁହାଯାଇଛି ଯେ, ଦେବାଦି ଦେବ ବ୍ରହ୍ମାଙ୍କ ଠାରୁ ବର୍ଣ୍ଣସମୂହର ଆବିର୍ଭାବ ଘଟିଛି ।

ଏହି ଚତୁର୍ବର୍ଣ୍ଣର ଉଦ୍‌ଭବ ଏବଂ ସେସବୁର ପଦମର୍ଯ୍ୟାଦାକୁ ଧର୍ମାନୁପୂତ କରିଥିଲେ ଯାଜକ-ବ୍ରାହ୍ମଣମାନେ । ବ୍ରାହ୍ମଣ ଗୋଷ୍ଠୀର ପ୍ରାଧାନ୍ୟ ପ୍ରତିପାଦନ ଏବଂ ସେମାନଙ୍କ ସାମାଜିକ ପଦାଧିକାର ଉପରେ ଦେବ ଭାବ ଆରୋପଣ ନିମିତ୍ତ ଏହି ଯାଜକ ସଂପ୍ରଦାୟ ସର୍ବଶକ୍ତି ନିୟୋଗ କରିଥିଲେ । ତେଣୁ କରି ପ୍ରାୟ ସମସ୍ତ ବୈଦିକ ସାହିତ୍ୟରେ ଅନ୍ୟ ତିନି ବର୍ଣ୍ଣର ନାମୋଲ୍ଲେଖ ପୂର୍ବରୁ ପ୍ରଥମେ ବ୍ରାହ୍ମଣ ନାମ ଉଚ୍ଚାରଣ କରିବାର କାରଣକୁ ବୁଝିବାଟା ମୋଟେ କଷ୍ଟକର ନୁହଁ । କେବଳ ସେତିକି ନୁହେଁ, ପୂଜା ପାଠ, ଯାଗଯଜ୍ଞରେ ପୌରୋହିତ୍ୟ ଏବଂ ଧର୍ମଶାସ୍ତ୍ର ପାଠ ବିଷୟରେ ସେମାନଙ୍କର ବିଶେଷ ଅଧିକାରକୁ ପ୍ରବଳ ଉତ୍ସାହର ସହକାରେ ସମର୍ଥନ ଏବଂ ସଂରକ୍ଷଣ କରି ଚାଲିଥିଲେ ଏହି ବ୍ରାହ୍ମଣ ସଂପ୍ରଦାୟ । ତେବେ ବାସ୍ତବ କ୍ଷେତ୍ରରେ ସେତେବେଳେ ପ୍ରକୃତ କ୍ଷମତା ଥିଲା ଯୋଦ୍ଧା ସଂପ୍ରଦାୟ ବା କ୍ଷତ୍ରିୟମାନଙ୍କ ହାତରେ ।

ପ୍ରଥାନୁଯାୟୀ କ୍ଷତ୍ରିୟ ସଂପ୍ରଦାୟର ପ୍ରତିନିଧିମାନେ ରାଜା ପଦରେ ଅଧିଷ୍ଠିତ ହେଉଥିଲେ । ରାଜଶାସନ ବ୍ୟବସ୍ଥାର ସର୍ବୋଚ୍ଚ ପଦରେ ସେମାନେ ଅଧିଷ୍ଠିତ ହେଉଥିଲେ, ରାଷ୍ଟ୍ର କ୍ଷମତା ପ୍ରୟୋଗର ପ୍ରଧାନ ହତିଆର ସେନାବାହିନୀକୁ ସେମାନେ ନିୟନ୍ତ୍ରଣ କରୁଥିଲେ ଏବଂ ମୁଖ୍ୟ ସାମରିକ ପଦରେ ଆସୀନ ହେଉଥିଲେ । ପରବର୍ତ୍ତୀ ବୈଦିକ ସାହିତ୍ୟରେ କ୍ଷତ୍ରିୟ ଏବଂ ବ୍ରାହ୍ମଣମାନଙ୍କ ମଧ୍ୟରେ ପାରସ୍ପରିକ ଦ୍ୱନ୍ଦ୍ୱର ଉଲ୍ଲେଖ ଆମେ ଦେଖିବାକୁ ପାଇଥାଏ ଏବଂ ପୌରାଣିକ ମହାକାବ୍ୟଗୁଡ଼ିକରେ ଏହି କ୍ଷମତା ଲଢ଼େଇର ବିଶଦ ବର୍ଣ୍ଣନା ରହିଛି ।

ପଦମର୍ଯ୍ୟାଦାର ପାର୍ଥକ୍ୟ ସତ୍ତ୍ୱେ ବ୍ରାହ୍ମଣ ଏବଂ କ୍ଷତ୍ରିୟମାନେ ଥିଲେ ସମାଜର ସର୍ବାପେକ୍ଷା ସୁବିଧାଭୋଗୀ ଏବଂ ଧନୀ ସଂପ୍ରଦାୟ । ଶ୍ରମଜୀବୀ ଜନସାଧାରଣ ଏବଂ ଦାସମାନଙ୍କ ଉପରେ ପ୍ରଭୁତ୍ୱ କରି ସେମାନେ ନିଜର ପଦାଧିକାରକୁ ଉପଭୋଗ କରୁଥିଲେ ।

ଲୋକସଂଖ୍ୟା ଦୃଷ୍ଟିରୁ, ଅବଶ୍ୟ, ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲେ ବୈଶ୍ୟମାନେ । ଏହି ସଂପ୍ରଦାୟର ଅନ୍ତର୍ଭୁକ୍ତ ଥିଲେ ଗ୍ରାମ ଗୋଷ୍ଠୀଗୁଡ଼ିକର ସ୍ୱାଧୀନ ନାଗରିକ କୃଷକ, କାରିଗର ଏବଂ ବଣିକମାନେ । ରାଜ କରର ଅଧିକାଂଶ ଭାଗ ବୈଶ୍ୟମାନେ ଦେଉଥିଲେ । ବୈଦିକ ଯୁଗରେ ବୈଶ୍ୟମାନେ ସେପର୍ଯ୍ୟନ୍ତ କେତେକ ପରିମାଣରେ ରାଜନୈତିକ ଅଧିକାରର ଅଂଶୀଦାର ଥିଲେ ଏବଂ ରାଷ୍ଟ୍ରର କେତେକ ବିଷୟରେ ନିଷ୍ପତ୍ତି ନେବାରେ ସେମାନେ ମଧ୍ୟ ଅଂଶଗ୍ରହଣ କରୁଥିଲେ ।

ଏହି ତିନୋଟି ଉଚ୍ଚତର ବର୍ଣ୍ଣକୁ ସେତେବେଳେ "ଦ୍ୱିଜ" ବୋଲି ଗଣ୍ୟ କରାଯାଉଥିଲା ଏବଂ ଏହି ତିନୋଟି ବର୍ଣ୍ଣର ଉପନୟନ ହେବାର, ଅର୍ଥାତ୍, ବୈଦିକ ଆଶ୍ରମରେ ଦୀକ୍ଷିତ ହେବାର ଅଧିକାର ଥିଲା । ଶୂଦ୍ରମାନେ କିନ୍ତୁ ଦ୍ୱିଜ ନଥିଲେ, କାର୍ଯ୍ୟତଃ ସେମାନେ ବୈଦିକ କ୍ରିୟାକଳାପରୁ, ଯାଗଯଜ୍ଞରେ ଅଂଶଗ୍ରହଣ, କିମ୍ବା ପବିତ୍ର ଧର୍ମଗ୍ରନ୍ଥ ପାଠର ଅଧିକାରରୁ ବଞ୍ଚିତ ଥିଲେ । ଶୂଦ୍ରମାନେ ସ୍ୱଭାବତଃ ଦରିଦ୍ର ଥିଲେ, ଯେଉଁମାନେ ଧନୀ, ସେମାନଙ୍କ ଉପରେ ନିର୍ଭରଶୀଳ ହେଉଥିଲେ । ଏହି ସଂପ୍ରଦାୟ ମଧ୍ୟରୁ ସବୁଠାରୁ ନୀଚ ସ୍ତରର କାରିଗର ଏବଂ ଗୃହଭୃତ୍ୟ ମିଳୁଥିଲେ । ଶୂଦ୍ରମାନେ ଯଦିଓ ଠିକ୍ ଦାସ ନଥିଲେ, ତେବେ ଯେକୌଣସି ମୁହୂର୍ତ୍ତରେ ଦାସମାନଙ୍କ ଭଳି ଅନ୍ୟର ଅଧୀନ ହୋଇ ପଡ଼ିବାର ସମ୍ଭାବନା ଥିଲା ସେମାନଙ୍କ ପକ୍ଷରେ । ଉଚ୍ଚତର ସଂପ୍ରଦାୟଗୁଡ଼ିକର ପ୍ରତିନିଧିମାନେ ଏହି ବର୍ଣ୍ଣ ବିଭାଗକୁ ଦୁର୍ଭେଦ୍ୟ ବଂଶାନୁକ୍ରମିକ ଏକ ପ୍ରଥା ରୂପେ ସଂହତ କରିବାକୁ ସଚେଷ୍ଟ ଥିଲେ ଏବଂ ଶୂଦ୍ରମାନଙ୍କ ସହିତ ନମିଶିବାକୁ ଏବଂ ଶୂଦ୍ରମାନେ ଯେପରି "ଦ୍ୱିଜ" ବର୍ଣ୍ଣଗୁଡ଼ିକରେ ଅନୁପ୍ରବେଶ ନକରି ପାରନ୍ତି, ସେପରି ବ୍ୟବସ୍ଥା କରିବାକୁ ଉଦ୍ୟମ କରୁଥିଲେ ।

"ଋଗ୍‌ବେଦର" ପ୍ରଥମ ମଣ୍ଡଳଗୁଡ଼ିକରେ ଶୂଦ୍ରମାନଙ୍କ ସଂପର୍କରେ କୌଣସି ଉଲ୍ଲେଖ ନଥିବାରୁ କେତେକ ପଣ୍ଡିତ ମନେ କରନ୍ତି ଯେ, ଶୂଦ୍ରମାନେ ଥିଲେ ଆର୍ଯ୍ୟମାନଙ୍କ ଦ୍ୱାରା ପରାଜିତ ସ୍ଥାନୀୟ ଅଧିବାସୀ । ଏହି ପଣ୍ଡିତମାନେ କହନ୍ତି, ଏହି ପ୍ରକାରର ବର୍ଣ୍ଣଭେଦ ସାହାଯ୍ୟରେ ଆର୍ଯ୍ୟମାନଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ, ସେମାନଙ୍କ ଜାତିଗତ ବିଶୁଦ୍ଧତା ସଂରକ୍ଷଣ ଏବଂ କୃଷ୍ଣକାୟ ସ୍ଥାନୀୟ ଅଧିବାସୀମାନଙ୍କୁ ଶୂଦ୍ର ସ୍ତରକୁ ଅଧଃପତିତ କରି ସେମାନଙ୍କୁ ଦମନ କରିବାର ଉପାୟ ଆର୍ଯ୍ୟମାନେ ସୃଷ୍ଟି କରିଥିଲେ । ଏହି ତତ୍ତ୍ୱର ଅନୁଗାମୀମାନେ ବିଶେଷ ଜୋର ଦେଇଥାନ୍ତି "ବର୍ଣ୍ଣ" କଥାଟି ଉପରେ ଏବଂ ସେମାନେ କହନ୍ତି, ବର୍ଣ୍ଣର ଗୋଟିଏ ଅର୍ଥ ହେଉଛି ରଙ୍ଗ । କିନ୍ତୁ ଏ ପ୍ରସଙ୍ଗରେ ମନେ ରଖିବା ଦରକାର ଯେ, "ବର୍ଣ୍ଣ" ଶବ୍ଦଟି ବର୍ଣ୍ଣ ବିଭାଗ ସମୟରେ ମଣିଷ ଦେହର ରଙ୍ଗକୁ ବୁଝାଇବା ଅର୍ଥରେ ବ୍ୟବହୃତ ହୋଇ ନଥିଲା । କାରଣ ପ୍ରାଚୀନ ଇରାନ୍ ଭଳି ପ୍ରାଚୀନ ଭାରତରେ ମଧ୍ୟ ରଙ୍ଗକୁ ପ୍ରତୀକ ହିସାବରେ ମାନିବାର ପରମ୍ପରା ଥିଲା, ପ୍ରତ୍ୟେକ ବର୍ଣ୍ଣ ସହିତ ଯୁକ୍ତ ଥିଲା ଏକ ନିର୍ଦ୍ଦିଷ୍ଟ ପ୍ରତୀକ ରଙ୍ଗ ।

ବୈଦିକ ଯୁଗର ଶେଷ ଭାଗରେ "ବର୍ଣ୍ଣସମୂହ" ମଧ୍ୟରେ ପୁଣି ବୃତ୍ତିଭିତ୍ତିକ ବିଭିନ୍ନ ଛୋଟ ଛୋଟ ଅନମନୀୟ ଉପବିଭାଗ ଦେଖା ଦେଲା ଏବଂ ପରେ ସେସବୁ ଜାତି ରୂପ ଗ୍ରହଣ କଲା ।

# ଉତ୍ତର ଭାରତର ପ୍ରାଚୀନ ରାଜବଂଶ ଏବଂ ରାଷ୍ଟ୍ରସମୂହ

ବୈଦିକ ସାହିତ୍ୟ ଏବଂ ପୌରାଣିକ ମହାକାବ୍ୟଗୁଡ଼ିକରେ ଗଙ୍ଗା ଉପତ୍ୟକାରେ ବହୁବିଧ ପ୍ରାଚୀନ ରାଜବଂଶ ଏବଂ ରାଷ୍ଟ୍ରର ଉଲ୍ଲେଖ ରହିଛି । କିନ୍ତୁ ଏହି ସମସ୍ତ ତଥ୍ୟର ଐତିହାସିକ ନିର୍ଭରଯୋଗ୍ୟତା ବହୁ ପରିମାଣରେ ସନ୍ଦେହାତୀତ ନୁହେଁ ଏବଂ ଅଧିକାଂଶ କ୍ଷେତ୍ରରେ ସେସବୁର ପ୍ରତ୍ନତାତ୍ତ୍ୱିକ ସାକ୍ଷ୍ୟ ପ୍ରମାଣ ମିଳେ ନାହିଁ । ମହାକାବ୍ୟଗୁଡ଼ିକରେ ଯେଉଁସବୁ ରାଜବଂଶର ନାମ ତାଲିକା ମିଳିଥାଏ, ସେସବୁ କିନ୍ତୁ ଗୋଟିଏ ଗୋଟିଏ ଗ୍ରନ୍ଥରେ ଗୋଟିଏ ପ୍ରକାରର ଏବଂ ସେସବୁଥିରେ ଯେଉଁ ଘଟଣାର ବିବରଣୀ ଦିଆଯାଇଛି, ତାହା ମଧ୍ୟ ଭିନ୍ନ ଭିନ୍ନ । ଫଳତଃ, ଏହିସବୁ ବିଷୟ ଭାଷାତତ୍ତ୍ୱବିଦ୍‌ମାନଙ୍କ ପକ୍ଷରେ ସେଇ ଯୁଗର ଇତିହାସର ପୁନଃରଚନାର କାର୍ଯ୍ୟକୁ ବହୁ ପରିମାଣରେ ଜଟିଳ କରି ଦେଉଛି । ବୈଦିକ ଏବଂ ପୌରାଣିକ ଯୁଗଗୁଡ଼ିକରେ ତତ୍‌କାଳୀନ ପ୍ରଚଳିତ ଧର୍ମୀୟ ଧାରଣା ପ୍ରାଚୀନ ରାଜାମାନଙ୍କର ଏବଂ ରାଜବଂଶଗୁଡ଼ିକର ଉତ୍ପତ୍ତିର ବିଷୟଟିକୁ ବିଭିନ୍ନ ଦେବଦେବୀର ଇଚ୍ଛାପ୍ରଣୋଦିତ ବୋଲି ବ୍ୟାଖ୍ୟା କରିଛି । ଏ କ୍ଷେତ୍ରରେ ସର୍ବାପେକ୍ଷା ବହୁଳ ପ୍ରଚଳିତ ଐତିହ୍ୟ ଅନୁଯାୟୀ ଜଣାଯାଏ ଯେ, ଗଙ୍ଗା ଉପତ୍ୟକାର ପ୍ରଧାନ ଦୁଇଟି ରାଜବଂଶର ନାମ ଥିଲା ସୂର୍ଯ୍ୟ ଏବଂ ଚନ୍ଦ୍ର ବଂଶ ଏବଂ ଏହି ଦୁଇଟି ରାଜବଂଶର ପ୍ରତିଷ୍ଠାତା ସୂର୍ଯ୍ୟ ଏବଂ ଚନ୍ଦ୍ର ଦେବତାଙ୍କ ଠାରୁ ଜନ୍ମ ହୋଇଥିଲେ । "ରାମାୟଣର" ପ୍ରଧାନ ଚରିତ୍ର ରାମଚନ୍ଦ୍ରଙ୍କୁ ସୂର୍ଯ୍ୟବଂଶୋଦ୍ଭବ ବୋଲି ଏବଂ ମହାଭାରତର କୁରୁବଂଶକୁ ଚନ୍ଦ୍ର ବଂଶୋଦ୍ଭବ ବୋଲି ବର୍ଣ୍ଣନା କରାଯାଇଛି । "ଋଗ୍‌ବେଦରେ" ଯେଉଁ ରାଜା ଭରତଙ୍କ କଥା ଉଲ୍ଲେଖ ଅଛି, ଐତିହ୍ୟ ଅନୁଯାୟୀ ସିଏ ହିଁ ହେଉଛନ୍ତି ଚନ୍ଦ୍ର ବଂଶର ପ୍ରତିଷ୍ଠାତା ।

"ଋଗ୍‌ବେଦରେ" ତତ୍‌କାଳୀନ ରାଜନୈତିକ ଇତିହାସର କେତେକ ତଥ୍ୟ ଦେଖିବାକୁ ମିଳେ । କିନ୍ତୁ ସେଇସବୁ ତଥ୍ୟର ନିର୍ଭରଯୋଗ୍ୟତା କିଛି ପରିମାଣରେ ସନ୍ଦେହଜନକ । ଯଥା, ଦୃଷ୍ଟାନ୍ତ ସ୍ୱରୂପ, "ଋଗ୍‌ବେଦର" ସୂକ୍ତିରେ ଉଲ୍ଲେଖ ଅଛି, ଦଶଜଣ ରାଜାଙ୍କ ମଧ୍ୟରେ ଯୁଦ୍ଧର ବିବରଣୀ, କିମ୍ବା ରାଜା ସୁଦାସଙ୍କ ନେତୃତ୍ୱରେ ତ୍ରିତ୍‌ସୁ ଉପଜାତି (ଭରତ ବଂଶର ଗୋଟିଏ ଶାଖା) ଏବଂ ସମ୍ଭବତଃ ସ୍ଥାନୀୟ ଅନାର୍ଯ୍ୟ ଏକ ଉପଜାତି (କାରଣ, ଏହି ଶେଷୋକ୍ତ ଉପଜାତିର ଲୋକଙ୍କ ସଂପର୍କରେ କୁହାଯାଇଛି ଯେ, ସେମାନେ ଦେବତାଙ୍କ ନିକଟରେ "ପୂଜା ବଳିଦାନ, ଆଦି ଦିଅନ୍ତି ନାହିଁ") ମଧ୍ୟରେ ଯୁଦ୍ଧର କାହାଣୀ । ଏହି ଯୁଗରେ ବୈଦିକ ଆର୍ଯ୍ୟ ଏବଂ ସ୍ଥାନୀୟ ଉପଜାତିମାନଙ୍କ ମଧ୍ୟରେ ଯେ ଯୁଦ୍ଧବିଗ୍ରହ ଅନବରତ ଲାଗି ରହିଥିଲା, ତା'ର ପ୍ରମାଣ ଏହି ଶେଷୋକ୍ତ କାହାଣୀଟି ପରିଷ୍କାର ଭାବେ ଦେଇଥାଏ । "ଋଗ୍‌ବେଦ" ଯୁଗରେ ଭରତବଂଶୀୟ ରାଜବଂଶ ଖୁବ୍ ସମ୍ଭବତଃ ସରସ୍ୱତୀ (ସିନ୍ଧୁ ନଦର ଏକ ପ୍ରାଚୀନ ଶାଖା) ଏବଂ ଯମୁନା ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳରେ ରାଜତ୍ୱ କରୁଥିଲେ ।

ବୈଦିକ ଆର୍ଯ୍ୟ ଉପଜାତିଗୁଡ଼ିକ ମଧ୍ୟରେ ପୁରୁବଂଶୀୟ ଉପଜାତିର ବିଶେଷ ପ୍ରାଧାନ୍ୟ ଥିଲା । "ଋଗ୍‌ବେଦରେ" ଏହି ବଂଶର ଏକ ରାଜାଙ୍କ କଥା ଉଲ୍ଲେଖ କରାଯାଇଛି ଯେ, ସେ ମ୍ଳେଚ୍ଛ ବା ସ୍ଥାନୀୟ ଅନାର୍ଯ୍ୟ ଉପଜାତିମାନଙ୍କୁ ଯୁଦ୍ଧରେ ପରାସ୍ତ କରି ବିଜୟ ହାସଲ କରିଥିଲେ । ପରବର୍ତ୍ତୀ ସମୟରେ ଏହି ପୁରୁମାନେ କୁରୁ (ବା କୌରବ) ଉପଜାତି ଗୋଷ୍ଠୀ ସହିତ ଯୁକ୍ତ ହୋଇଥିଲେ । "ଋଗ୍‌ବେଦରେ" ଅନ୍ୟାନ୍ୟ ବହୁ ଉପଜାତିର କଥା ମଧ୍ୟ ଉଲ୍ଲେଖ ଅଛି, ଯେଉଁମାନେ ପରବର୍ତ୍ତୀ କାଳରେ ପ୍ରାଚୀନ ଭାରତରେ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ପାଳନ କରିଥିଲେ । ଏହିସବୁ ଉପଜାତିଗୁଡ଼ିକର ଅନ୍ତର୍ଗତ ହେଉଛନ୍ତି ଚେଦି, ଗାନ୍ଧାର ଏବଂ କିରାତ ନାମକ (ମଗଧ ଉପଜାତିର ପ୍ରାଚୀନ ନାମ) ଉପଜାତିସମୂହ ।

ଏମାନଙ୍କ ମଧ୍ୟରେ ରାଜା ଭରତଙ୍କ ନାମଟି ବିଶେଷ ଗୌରବରେ ମଣ୍ଡିତ । ଏହି ସ୍ୱନାମଧନ୍ୟ ରାଜାଙ୍କ ସମ୍ମାନାର୍ଥେ, ଏପରିକି ସେଇ ସୁଦୂର ପ୍ରାଚୀନ କାଳରେ ବି ସମଗ୍ର ଉତ୍ତର ଭାରତକୁ "ଭାରତବର୍ଷ" ବା "ଭରତଙ୍କ ଉତ୍ତର ପୁରୁଷର ଦେଶ" ନାମରେ (ବର୍ତ୍ତମାନ ଭାରତୀୟ ପ୍ରଜାତନ୍ତ୍ର ମଧ୍ୟ ସରକାରୀ ଭାବେ ଭାରତ ନାମରେ ପରିଚିତ) ଅଭିହିତ ହୋଇଥିଲା । "ମହାଭାରତର" କେତେକ ବୀର ମଧ୍ୟ ଥିଲେ ଭରତବଂଶୀୟ । ଏହି ମହାକାବ୍ୟରେ ଭରତଙ୍କ ଉତ୍ତର ପୁରୁଷ ଏହି ମହାଯୁଦ୍ଧରେ ଯୋଗ ଦେଇଥିଲେ ବୋଲି ବର୍ଣ୍ଣିତ ହୋଇଛି ।

କୁରୁ ପ୍ରାନ୍ତର ବା କୁରୁକ୍ଷେତ୍ରରେ କୌରବ ଏବଂ ପାଣ୍ଡବମାନଙ୍କ ମଧ୍ୟରେ ସଂଗ୍ରାମ ଏହି ଯୁଗର ପୌରାଣିକ ମହାକାବ୍ୟଗୁଡ଼ିକର ଏକ ପ୍ରଧାନ ଆଲୋଚ୍ୟ ବିଷୟ । ଏହି ଯୁଦ୍ଧ ଉପାଖ୍ୟାନ ସହିତ ସଂଯୁକ୍ତ ଐତିହାସିକ ଟିକିନିଖି ବିବରଣୀ କେତେ ପ୍ରମାଣଯୋଗ୍ୟ, ତାହା ଭାରତତତ୍ତ୍ୱବିଦ୍‌ମାନଙ୍କ ମଧ୍ୟରେ ପ୍ରବଳ ବିତର୍କର ବିଷୟ ହୋଇ ରହିଛି । ଏହି ଯୁଦ୍ଧ ବିବରଣୀକୁ ବହୁ ପଣ୍ଡିତ ସତ୍ୟ ଘଟଣା ବୋଲି ମନେ କରିଥାନ୍ତି ଏବଂ କହନ୍ତି ଯେ, ଏହି ଘଟଣା ଘଟିଥିଲା ଖ୍ରୀଷ୍ଟ ପୂର୍ବ ଚତୁର୍ଥ, କିମ୍ବା ତୃତୀୟ ସହସ୍ରାବ୍ଦର କୌଣସି ଏକ ସମୟରେ । ସାଂପ୍ରତିକ ଭାରତତତ୍ତ୍ୱବିଦ୍‌ମାନେ, ଅବଶ୍ୟ, ଏହି ଯୁଦ୍ଧର ସମୟକୁ ଖ୍ରୀଷ୍ଟ ପୂର୍ବ ୧୧ଶରୁ ୯ମ ଶତାବ୍ଦୀ ମଧ୍ୟରେ ନିର୍ଦ୍ଦିଷ୍ଟ କରିବାକୁ ଅଧିକ ଆଗ୍ରହୀ । ଭାରତୀୟ ପ୍ରତ୍ନତତ୍ତ୍ୱବିଦ୍‌ମାନେ (ବି.ବି.ଲାଲଙ୍କ ନେତୃତ୍ୱରେ) ହସ୍ତିନାପୁରରେ ଏହି ବିତର୍କ ସହିତ

ସଂପୃକ୍ତ କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସଂଗ୍ରହ କରିଛନ୍ତି । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, "ମହାଭାରତ" କାବ୍ୟରେ ହସ୍ତିନାପୁରକୁ ହିଁ କୌରବମାନଙ୍କ ରାଜଧାନୀ ବୋଲି ବର୍ଣ୍ଣନା କରାଯାଇଛି ।

ଖନନ କାର୍ଯ୍ୟରୁ ମିଳିଥିବା ଫଳାଫଳ ଦ୍ୱାରା ବିଗ୍ଭର କଲେ, କହିବାକୁ ହେବ ଯେ, ହସ୍ତିନାପୁରର ଅଧିବାସୀମାନେ ଖ୍ରୀଷ୍ଟ ପୂର୍ବ ୧୧ଶ ଶତାବ୍ଦୀରୁ ୯ମ ଶତାବ୍ଦୀ ମଧ୍ୟରେ ବନ୍ୟା ପ୍ଲାବନ ହେତୁ ଏହି ସ୍ଥାନ ପରିତ୍ୟାଗ କରି ଗ୍ଭଲି ଯାଇଥିଲେ । ଏହିସବୁ ତଥ୍ୟ "ମହାଭାରତର" ବର୍ଣ୍ଣିତ ତଥ୍ୟାଦି ସହିତ ଖାପ ଖାଇଯାଏ ।

କୁରୁକ୍ଷେତ୍ରର ରକ୍ତକ୍ଷୟୀ ଯୁଦ୍ଧ ସତରେ କେବେ ଘଟିଥିଲା କି ନାହିଁ, ବା ଏହା ଏକ କାଳ୍ପନିକ କିମ୍ବଦନ୍ତୀ, ସେ କଥା ବାଦ୍ ଦେଲେ ମଧ୍ୟ କେତେକ ପଣ୍ଡିତ ମନେ କରନ୍ତି ଯେ, ଘଟଣାଟି, ସମ୍ଭବତଃ, ସୁଦୂର ଭାରତୀୟ-ଇରାନୀୟ ଯୁଗ ସହିତ ସଂପୃକ୍ତ । ଏହି ଯୁଗରେ ଉତ୍ତର ଭାରତର ଉପଜାତିଗୁଡ଼ିକ ମଧ୍ୟରେ ଦୀର୍ଘସ୍ଥାୟୀ ଏକ ପ୍ରତିଦ୍ୱନ୍ଦ୍ୱିତା ଫଳରେ କେତେକ ଉପଜାତି ଅନ୍ୟାନ୍ୟ ଉପଜାତି ଉପରେ ନିଃସନ୍ଦେହରେ ଆଧିପତ୍ୟ ବିସ୍ତାର କରିବାକୁ ସକ୍ଷମ ହୋଇଥିଲେ । ଏ ପ୍ରସଙ୍ଗରେ ଏହା ଲକ୍ଷଣୀୟ ଯେ, ପ୍ରାଚୀନ ଭାରତୀୟ ଶାସ୍ତ୍ରୀୟ ସାହିତ୍ୟରେ ସର୍ବତ୍ର କୁରୁକ୍ଷେତ୍ର ଯୁଦ୍ଧକୁ ନୂତନ ଏକ ଯୁଗର ସୂତ୍ରପାତ ହିସାବରେ ବର୍ଣ୍ଣନା କରାଯାଇଛି । ମହାକାବ୍ୟ ଅନୁଯାୟୀ ସେ ଯୁଗରେ ସବୁଠାରୁ ପରାକ୍ରାନ୍ତ ଏବଂ ପ୍ରଭାବଶାଳୀ ଥିବା ପାଞ୍ଚାଳ ଏବଂ କୁରୁ ଉପଜାତି ଦୁଇଟି ସେମାନଙ୍କ ରାଜନୈତିକ ପ୍ରଭାବ ହରାଇ ବସିଥିଲେ ଏବଂ ରାଜନୈତିକ ମଞ୍ଚରେ ପୂର୍ବ ଭାରତର କେତେକ ଛୋଟ ଛୋଟ ରାଷ୍ଟ୍ର – ବିଶେଷ କରି କୋଶଳ (ଅଯୋଧ୍ୟା ଏବଂ ଶ୍ରାବନ୍ତିର ରାଜଧାନୀ ସମେତ), କାଶି (ରାଜଧାନୀ ବାରାଣସୀ) ଓ ବିଦେହ (ମିଥିଳାର ରାଜଧାନୀ) ରାଷ୍ଟ୍ର ଆବିର୍ଭୂତ ହୋଇଥିଲେ । ଏହା ଛଡ଼ା ଆଧୁନିକ ବିହାରର ଦକ୍ଷିଣ ଅଞ୍ଚଳରେ ମୁଣ୍ଡ ଟେକି ଉଠିଥିଲେ ମଗଧ (ଗିରିବ୍ରଜ ଏବଂ ପରେ ରାଜଗୃହରେ ରାଜଧାନୀ ସମେତ) ଏବଂ ପଶ୍ଚିମ ଭାରତରେ ଅବନ୍ତୀ (ଉଜ୍ଜୟିନୀ ରାଜଧାନୀ) ନାମକ ରାଷ୍ଟ୍ର ଦୁଇଟି ।

ପରବର୍ତ୍ତୀ ବୈଦିକ ସାହିତ୍ୟରେ ସମଗ୍ର ଦେଶରେ ତିନୋଟି ବିଭାଗର ଉଲ୍ଲେଖ ରହିଛି । ଯଥା, ଆର୍ଯ୍ୟାବର୍ତ୍ତ (ବା ଆର୍ଯ୍ୟମାନଙ୍କର ବାସଭୂମି), ଅର୍ଥାତ୍, ଉତ୍ତର ଭାରତ ରାଜ୍ୟ, ମଧ୍ୟଦେଶ, ଅର୍ଥାତ୍, ମଧ୍ୟାଞ୍ଚଳୀୟ ରାଜ୍ୟ ଏବଂ ଦକ୍ଷିଣାପଥ, ଅର୍ଥାତ୍, ଦକ୍ଷିଣ ଭାରତ ରାଜ୍ୟ । ଆଉ କେତେକ ଜାଗାରେ ସମଗ୍ର ଦେଶଟି ପାଞ୍ଚଟି ଭାଗରେ, ଅର୍ଥାତ୍, ମଧ୍ୟ, ପୂର୍ବ, ପଶ୍ଚିମ, ଦକ୍ଷିଣ ଏବଂ ଉତ୍ତର ଦେଶରେ ବିଭକ୍ତ ଥିଲା ବୋଲି ମଧ୍ୟ ଦେଖିବାକୁ ମିଳେ ।

ଏଥିରୁ ମନେ ହୁଏ, ପରବର୍ତ୍ତୀ ବୈଦିକ ଯୁଗର ସଂହିତା ଓ ଉପନିଷଦଗୁଡ଼ିକର ରଚୟିତାଗଣ ସମଗ୍ର ଉତ୍ତର ଭାରତ, ମଧ୍ୟ ଭାରତ (ଅର୍ଥାତ୍, ନର୍ମଦା ନଦୀର ଉତ୍ତର ଦିଗସ୍ଥ) ବହୁ ଅଂଶ ଏବଂ ପୂର୍ବ ଭାରତ ସହିତ ଭଲ ଭାବେ ପରିଚିତ ଥିଲେ । ଏହି ସମୟ ମଧ୍ୟରେ ପରବର୍ତ୍ତୀ ମଗଧ-ମୌର୍ଯ୍ୟ ଯୁଗର ଉପରିର ପୃଷ୍ଠଭୂମି ରୂପେ ଭାରତର ରାଜନୈତିକ ମାନଚିତ୍ରଟି ଦୃଢ଼ ଭାବେ ପ୍ରତିଷ୍ଠିତ ହୋଇ ଯାଇଥିଲା ।

# ବୈଦିକ ଯୁଗର ଧର୍ମ ଓ ସଂସ୍କୃତି

## ବୈଦିକ ଧର୍ମ, ପୁରାଣ ଓ ସଂସାର

ବୈଦିକ ଗ୍ରନ୍ଥଗୁଡ଼ିକ ଆମମାନଙ୍କ ପକ୍ଷରେ ବୈଦିକ ଯୁଗର ଭାରତୀୟ ଲୋକଙ୍କର ଧର୍ମୀୟ ମତାମତ ଏବଂ ସେମାନଙ୍କ ପୁରାକଥା ସହିତ ପରିଚିତ ହେବାକୁ ଏବଂ ଅନୁଧ୍ୟାନ କରିବାକୁ ସହାୟକ ହୋଇଥାଏ ।

ବୈଦିକ ଆର୍ଯ୍ୟ ଉପଜାତିଗୁଡ଼ିକର ଧର୍ମବିଶ୍ୱାସ ରୂପ ପରିଗ୍ରହ ଏବଂ ସ୍ଥାୟିତ୍ୱ ଲାଭ କରିବାକୁ ଅତ୍ୟନ୍ତ ଦୀର୍ଘ କାଳ ଲାଗିଥିଲା । ଏହି ପ୍ରକ୍ରିୟାର ବିଶିଷ୍ଟ ସ୍ତରଗୁଡ଼ିକ ଭିନ୍ନ ଭିନ୍ନ ବୈଦିକ ସାହିତ୍ୟରେ ପ୍ରତିଫଳିତ । ଅବଶ୍ୟ, ବୈଦିକ ଧର୍ମକୁ କେତେକ ସର୍ତ୍ତ ସହିତ ଏକ ସୁନିର୍ଦ୍ଦିଷ୍ଟ ଧର୍ମ ବ୍ୟବସ୍ଥା ହିସାବରେ, ସଂଶ୍ଳିଷ୍ଟ ସୁସମଞ୍ଜସ ପ୍ରଥା, ଆଗ୍ରହ ଓ ପୂଜା ପର୍ବ ସହ ଧର୍ମୀୟ (ଏବଂ ଅଂଶତଃ ଧର୍ମୀୟ ଏବଂ ଦାର୍ଶନିକ) ବିଶ୍ୱାସସମୂହର ସାମଗ୍ରିକ ଏକ ସମାହାର ରୂପେ ଗଣ୍ୟ କରାଯାଇ ପାରେ । ତେବେ ଏହି ସମଗ୍ର ଧର୍ମ ବ୍ୟବସ୍ଥା ମଧ୍ୟରେ ନିର୍ଦ୍ଦିଷ୍ଟ କେତେକ ଧର୍ମବିଶ୍ୱାସକୁ ପୃଥକ୍ କରି ପ୍ରଦର୍ଶନ କରାଯାଇ ପାରେ । ସେସବୁ ଧର୍ମବିଶ୍ୱାସ ହେଲା ଆଦିମ ସମାଜ ସଂପର୍କର ପ୍ରତିଫଳନ ହିସାବରେ ବର୍ତ୍ତି ରହିଥିବା ଅତି ପୁରୁଣାକାଳିଆ କେତେକ ଧ୍ୟାନଧାରଣା, କିମ୍ବା ଭାରତୀୟ-ୟୁରୋପୀୟ ବା ଭାରତୀୟ-ଇରାନୀୟ ଯୁଗର ପ୍ରାଚୀନ ସଂସ୍କୃତିର କେତେକ ନିଦର୍ଶନ, ବା, ପରିଶେଷରେ, ପ୍ରଥମ ଭାରତୀୟ ରାଷ୍ଟ୍ରଗୁଡ଼ିକ ଯେଉଁ ଯୁଗରେ କ୍ରମଶଃ ଗଢ଼ି ଉଠୁଥିଲେ, ବୈଦିକ ଆର୍ଯ୍ୟ ସମାଜର ବିକାଶର ସେଇ ବିଶେଷ ସ୍ତରର ପରିଣାମ ସ୍ୱରୂପ ଜାତ ହୋଇଥିବା ଧର୍ମୀୟ ଧାରଣାସମୂହ ।

ବେଦବାଦ ହେଲା ଭାରତରେ ଜାତ ଧର୍ମବିଶ୍ୱାସସମୂହ ମଧ୍ୟରେ ସବୁଠାରୁ ପ୍ରାଚୀନ ଏକ ସମନ୍ୱିତ ବ୍ୟବସ୍ଥା । ଏହି ବ୍ୟବସ୍ଥାଟି ଉପମହାଦେଶର ପରବର୍ତ୍ତୀ କାଳର ଧର୍ମୀୟ ମତପ୍ରବଣତା ଏବଂ ଦାର୍ଶନିକ ଚିନ୍ତା ଉପରେ ବିପୁଳ ପ୍ରଭାବ ବିସ୍ତାର କରିଥିଲା । ତେବେ ବୌଦ୍ଧ ଧର୍ମ ଭଳି ଏହି ଧର୍ମମତ ଭାରତର ବାହାରେ ଅନୁପ୍ରବେଶ କରି ପାରିନି ।

ବୈଦିକ ଧର୍ମର ଏକ ଅପରିହାର୍ଯ୍ୟ ଅଙ୍ଗ ହେଉଛି ବହୁଈଶ୍ୱରବାଦ, ଅର୍ଥାତ୍, ନରତ୍ୱ ଆରୋପିତ ବହୁସଂଖ୍ୟକ ଦେବଦେବୀ ଏବଂ ଅବତାରର ଉପାସନା ।

ବୈଦିକ ଯୁଗର ଭାରତୀୟମାନେ ନାନା ପ୍ରାକୃତିକ ପ୍ରପଞ୍ଚ ଏବଂ ଦେବଦେବୀଙ୍କ ଉପରେ ମାନବିକ ଗୁଣାବଳୀ ଆରୋପିତ କରୁଥିଲେ, ସେମାନଙ୍କୁ ମାନବିକ ଦୋଷତ୍ରୁଟି ଏବଂ ଗୁଣ ଦ୍ୱାରା ବିଭୂଷିତ କରୁଥିଲେ । "ଋଗ୍‌ବେଦରେ" ଆଉ କେତେକ ଦେବତାଙ୍କ ବର୍ଣ୍ଣନା ରହିଛି, ଯେଉଁମାନଙ୍କ ଉପରେ ଆରୋପଣ କରାଯାଇଛି ପାର୍ଥିବ ପ୍ରାଣୀମାନଙ୍କର ଆକାର ପ୍ରକାର । ଏମାନେ ମାନବେତର ପ୍ରାଣୀ ରୂପରେ ଦେଖା ଦେଇଛନ୍ତି ଏବଂ ବିଭିନ୍ନ ପ୍ରପଞ୍ଚ ସହିତ ମୌଳିକ ସଂପର୍କ ଦ୍ୱାରା ଯୁକ୍ତ ହୋଇଛନ୍ତି (ଅର୍ଥାତ୍, ଦେବତା ଇନ୍ଦ୍ର ବେଳେ ବେଳେ ଷଣ୍ଢ ରୂପରେ ଏବଂ ଅଗ୍ନି ଦେବତା ଅଶ୍ୱ ରୂପରେ ଉପସ୍ଥିତ ହୋଇଛନ୍ତି) । ଦେବତାମାନଙ୍କୁ ସମ୍ବୋଧନ କରି ବୈଦିକ ଆର୍ଯ୍ୟମାନେ ପ୍ରାର୍ଥନା-

ସ୍ତୋତ୍ର ନିବେଦନ କରିଛନ୍ତି ଏବଂ ସେମାନଙ୍କ ଉଦ୍ଦେଶ୍ୟରେ ପୂଜା ଉପଗ୍ଭର ଏବଂ ବଳି ଅର୍ପଣ କରିଛନ୍ତି । ଏହିସବୁ ସ୍ତୋତ୍ରରେ ବୈଦିକ ଯୁଗର ଲୋକେ ଦେବତାମାନଙ୍କୁ ନିବେଦନ କରିଛନ୍ତି ଆଉରି ବହୁ ସଂଖ୍ୟକ ପଶୁ, ଯୁଦ୍ଧରେ ବିଜୟ, ଭଲ ଫସଲ, କିମ୍ବା ବିପର୍ଯ୍ୟୟ ଓ ବିପତ୍ତିରୁ ପରିତ୍ରାଣ ପାଇଁ । "ଋଗ୍‌ବେଦରେ" ଥିବା ଆରାଧ୍ୟ ଦେବତାମାନଙ୍କୁ ଶ୍ରେଣୀବିନ୍ୟାସ କରିବାର ପ୍ରୟାସ ମଧ୍ୟ ଲକ୍ଷ୍ୟ କରାଯାଏ । ବୈଦିକ ଭାରତୀୟମାନଙ୍କର ବିଶ୍ୱବ୍ରହ୍ମାଣ୍ଡକୁ ସ୍ୱର୍ଗ, ମର୍ତ୍ତ୍ୟ ଓ ଅନ୍ତରୀକ୍ଷ (ସ୍ୱର୍ଗ ଆଉ ମର୍ତ୍ତ୍ୟର ମଧ୍ୟସ୍ଥ ଶୂନ୍ୟ ଅଂଶ) ଏହି ତିନୋଟି ଅଂଶରେ ବିଭକ୍ତ କରି ଦେଖାଇବାର ଯେଉଁ ସାଧାରଣ ତତ୍ତ୍ୱଟି ଥିଲା, ଉପାସ୍ୟ ଦେବତାମାନଙ୍କୁ ମଧ୍ୟ ସେଇ ଅନୁଯାୟୀ ମୋଟାମୋଟି ତିନୋଟି ଗୋଷ୍ଠୀରେ ଭାଗ କରି ଦିଆଯାଇଥିଲା । ବ୍ରହ୍ମାଣ୍ଡର ଏହି ତିନୋଟି ଅଂଶ ମଧ୍ୟରୁ ପ୍ରତ୍ୟେକଟିର ନିଜସ୍ୱ ଅଧିବାସୀ ଦେବଦେବୀ ଥିଲେ । ସ୍ୱର୍ଗର ଦେବତାମାନଙ୍କ ମଧ୍ୟରେ ଥିଲେ ସୂର୍ଯ୍ୟ ଦେବତା, ଊଷା ଦେବୀ ଊଷସ ଏବଂ "ନୈତିକ ନିୟମରାଶିର ନିର୍ଦ୍ଧାରକ" ଦେବତା ବରୁଣ । ମର୍ତ୍ତ୍ୟର ଦେବତାମାନଙ୍କ ମଧ୍ୟରେ ସର୍ବୋଚ୍ଚ ସମ୍ମାନର ଆସନରେ ପ୍ରତିଷ୍ଠିତ ଥିଲେ ଅଗ୍ନି, ପବିତ୍ର ମାଦକରସର ଦେବତା ସୋମ । ଏହା ଛଡ଼ା ଅନ୍ତରୀକ୍ଷ ଦେବତାମାନଙ୍କ ମଧ୍ୟରେ ଥିଲେ ଝଡ଼ର ଦେବତା ରୁଦ୍ର, ପବନ ଦେବତା ବାୟୁ ଏବଂ ମହାଶକ୍ତିମାନ ଇନ୍ଦ୍ର । ଏକଥା ମନେ ରଖିବାର ଯଥେଷ୍ଟ କାରଣ ରହିଛି ଯେ, ବୈଦିକ ଆର୍ଯ୍ୟ ଉପଜାତିମାନଙ୍କର ଏହି ସମସ୍ତ ଧ୍ୟାନଧାରଣା ସହିତ ପୂର୍ବବର୍ତ୍ତୀ ଯୁଗର ପୌରାଣିକ ତତ୍ତ୍ୱ କଥାର ବିଶ୍ୱବ୍ରହ୍ମାଣ୍ଡର ତ୍ରିବିଧ ଭାଗବଣ୍ଟା ଘନିଷ୍ଠ ଭାବେ ସଂପୃକ୍ତ । ଆଉ କେତେକ ଭାରତୀୟ-ୟୁରୋପୀୟ ଜାତିର ଇତିହାସରେ ଏହିପରି ଧାରଣା ଦେଖିବାକୁ ମିଳେ ।

ଭାରତୀୟ-ୟୁରୋପୀୟ ଏବଂ ଭାରତୀୟ-ଇରାନୀୟ ପୌରାଣିକ ଦେବଦେବୀ ସଂପର୍କୀୟ ଅବଧାରଣା ସହିତ ଏହିସବୁ ଅତି ପ୍ରାଚୀନ ଦେବଦେବୀଙ୍କର ସାଦୃଶ୍ୟ ରହିଛି (ଯଥା, ଦୃଷ୍ଟାନ୍ତ ସ୍ୱରୂପ, କେତେକ ବୈଦିକ ଦେବଦେବୀ ସ୍ପଷ୍ଟତଃ କେତେକ ଗ୍ରୀକ୍ ଦେବଦେବୀଙ୍କ ଭଳି) * ଏବଂ ଏହିସବୁ ଦେବଦେବୀଙ୍କ ସହିତ ବୈଦିକ ଦେବଦେବୀଙ୍କ ମଧ୍ୟରେ "ଭାରତୀୟ" ଦେବଦେବୀ ମଧ୍ୟ ଅଛନ୍ତି । ବୈଦିକ ଆର୍ଯ୍ୟମାନେ ଭାରତ ସାରା ଖେଳେଇ ହୋଇଯିବା ବେଳେ ଏହି ଶେଷୋକ୍ତ ଦେବଦେବୀମାନଙ୍କର ଉପାସନା ଆରମ୍ଭ ହୋଇଥିଲା ।

ସବୁଠାରୁ ଜନପ୍ରିୟ ଦେବତାମାନଙ୍କ ମଧ୍ୟରେ ଅନ୍ୟତମ ହେଉଛନ୍ତି ଇନ୍ଦ୍ର, ଯାହାଙ୍କ ନାମ ସହିତ ଅନେକ ପ୍ରାକୃତିକ ପ୍ରପଞ୍ଚ ବା ଘଟଣାର ଯୋଗାଯୋଗ ରହିଛି । "ଋଗ୍‌ବେଦରେ" ଦୁଇଶହ ପଗ୍ଭଶଟି ସୂକ୍ତ (ଅର୍ଥାତ୍, ଉକ୍ତ ଗ୍ରନ୍ଥରେ ସଂକଳିତ ସୂକ୍ତମାନଙ୍କର ପ୍ରାୟ ଏକ ଚତୁର୍ଥାଂଶ) ଇନ୍ଦ୍ର ଦେବତାଙ୍କ ପ୍ରତି ନିବେଦିତ ।

ଇନ୍ଦ୍ରଙ୍କୁ ବର୍ଣ୍ଣନା କରାଯାଇଛି ବିରାଟକାୟ, ଅସୀମ ଶକ୍ତିଶାଳୀ ଏକ ପୁରୁଷ ରୂପେ । ସେ ହେଉଛନ୍ତି ବଜ୍ର ଧାରଣକାରୀ, ସହସ୍ର ସହସ୍ର ଶତ୍ରୁକୁ ଯିଏ ଅବହେଳାକ୍ରମେ ବିଦ୍ୟୁତ୍‌ଗର୍ଭ ବଜ୍ର ଫିଙ୍ଗି ନିଧନ କରି ପାରନ୍ତି । ଏହି ପରାକ୍ରାନ୍ତ ଯୋଦ୍ଧା ଦେବତା ପୃଥିବୀର ଜଳଶୋଷଣକାରୀ

---

* ଆକାଶ ଦେବତା ଦ୍ୟୁଃଙ୍କ ସହିତ ଗ୍ରୀକ୍ ଦେବତା ଜିଉସ୍ ଏବଂ ରୋମାନ୍ ଦେବତା ଜୁପିଟର, ସୂର୍ଯ୍ୟ ଦେବତାଙ୍କ ସହିତ ଗ୍ରୀକ୍ ଦେବତା ହେଲିଓସ୍, ବରୁଣଙ୍କ ସହିତ ଇଉରେନସ, ଊଷା ଦେବୀ ଊଷସଙ୍କ ସହିତ ଗ୍ରୀକ୍ ଦେବୀ ଇୟାସେଙ୍କୁ ତୁଳନା କରାଯାଇ ପାରେ । — ଲେଖକ

ନାଗରାଜ ପୁତ୍ରକୁ ବଧ କରିଥିଲେ । ଅନେକ ବୈଦିକ ଉପାଖ୍ୟାନରେ ଇନ୍ଦ୍ରଙ୍କୁ ବିଭିନ୍ନ କ୍ରିୟାକଳାପରେ ଲିପ୍ତ ଥିବାର ଦେଖିବାକୁ ମିଳେ ଏବଂ ସେସବୁଥିରେ ତାଙ୍କ ଉପରେ ମାନବୋଚିତ ବୈଶିଷ୍ଟ୍ୟ ଆରୋପ କରାଯାଇଛି ।

ପ୍ରାଚୀନ ଭାରତୀୟମାନେ ମନେ କରିଥିଲେ ଯେ, ଦେବତା ବରୁଣ ସମଗ୍ର ଆକାଶ ଉପରେ ଆଧିପତ୍ୟ କରନ୍ତି ଏବଂ ରଥରେ ବସି ଆକାଶ ପରିକ୍ରମା କରନ୍ତି । ସେ ହେଉଛନ୍ତି ଜଗତର ଶୃଙ୍ଖଳା (ଋତ) ରକ୍ଷକ ଏବଂ ତେଣୁ ସେ ନିୟନ୍ତ୍ରଣ କରନ୍ତି ଗ୍ରହନକ୍ଷତ୍ରର ଚଳାଚଳ ଏବଂ ମଣିଷର କ୍ରିୟାକଳାପକୁ । ସେ ପୃଥିବୀ, ମହାଶୂନ୍ୟ ଏବଂ ବାୟୁମଣ୍ଡଳର ରକ୍ଷକ ଏବଂ ଋତୁର ଫଳାଫଳର ନିୟନ୍ତା । ପାପୀକୁ କଠୋର ଭାବେ ଶାସ୍ତି ବିଧାନ କରନ୍ତି ବରୁଣ, କିନ୍ତୁ ନିରପରାଧ ଏବଂ ଅନୁତପ୍ତ ପ୍ରତି ସେ କରୁଣାମୟ । ଏପରିକି ଦେବତାମାନଙ୍କ ନୈତିକ ଆଦର୍ଶର ବିଧି ନିର୍ଦ୍ଧାରଣ କରିଥାନ୍ତି । ତାଙ୍କର ଏହି ରୂପ କଳ୍ପନା କରିବା ମଧ୍ୟରେ କେତେକ ନୈତିକ ଦିଗ ରହିଛି, ଯାହାକି ପ୍ରାଚୀନ ଭାରତର ପରବର୍ତ୍ତୀ ଧର୍ମୀୟ ଏବଂ ଦାର୍ଶନିକ ମତାଦର୍ଶଗୁଡ଼ିକରେ ବିଶେଷ ଭାବେ ବର୍ଣ୍ଣିତ ହୋଇଛି ।

ଦେବତାମାନଙ୍କ ମଧ୍ୟରେ ଏକ କୌତୂହଳୋଦ୍ଦୀପକ, ଅସାଧାରଣ ଚରିତ୍ର ହେଉଛନ୍ତି ଝଡ଼ର ଦେବତା ରୁଦ୍ର । ସେ ଅନ୍ୟାନ୍ୟ ଦେବତାମାନଙ୍କ ଭଳି ନୁହନ୍ତି, ସେ ହେଉଛନ୍ତି କେବଳ ନାସ୍ତିବାଚକ ଗୁଣର ଅଧିକାରୀ । "ଋଗ୍‌ବେଦରେ" ତାଙ୍କର ଗୁରୁତ୍ୱକୁ ଗୌଣ ସ୍ଥାନ ଦିଆଯାଇଛି । ଯେଉଁସବୁ ପୂଜା ଏବଂ ବଳି ଅନ୍ୟ ଦେବତାମାନେ ଗ୍ରହଣ କରନ୍ତି ନାହିଁ, ଏକମାତ୍ର ରୁଦ୍ର ଦେବତା ସେସବୁକୁ ଗ୍ରହଣ କରିବାକୁ ସକ୍ଷମ । କେତେକ ପଣ୍ଡିତ ମନେ କରନ୍ତି ଯେ, ରୁଦ୍ର ଦେବତାଙ୍କୁ ଆର୍ଯ୍ୟମାନେ ସ୍ଥାନୀୟ ଅନାର୍ଯ୍ୟ ଉପଜାତିମାନଙ୍କ ଠାରୁ ଗ୍ରହଣ କରିଥିଲେ । ବୈଦିକ ଦେବଦେବୀଙ୍କ ମଧ୍ୟରେ ରୁଦ୍ରଙ୍କର ବିଶେଷ ଅବସ୍ଥାନକୁ ସେମାନେ ଏହି ଭାବେ ବ୍ୟାଖ୍ୟା କରିଥାନ୍ତି ।

ବୈଦିକ ଉପଜାତିମାନେ ବିଷ୍ଣୁ ଦେବତାଙ୍କ ସହିତ ମଧ୍ୟ ପରିଚିତ ଥିଲେ । "ଋଗ୍‌ବେଦରେ" ମାତ୍ର ଛଅଟି ସୂକ୍ତ ତାଙ୍କ ଉଦ୍ଦେଶ୍ୟରେ ନିବେଦିତ ହୋଇଛି । ସେସବୁଥିରେ ସ୍ତୁତି କରାଯାଇଛି, କିପରି ତିନୋଟି ମାତ୍ର ପଦକ୍ଷେପରେ ବିଷ୍ଣୁ ବିଶ୍ୱବ୍ରହ୍ମାଣ୍ଡ ପରିକ୍ରମା କରିଥାନ୍ତି । ହିନ୍ଦୁ ଧର୍ମରେ ଏହି ଉପାଖ୍ୟାନଟି ପରେ ବିଶେଷ ଗୁରୁତ୍ୱ ଲାଭ କରିଥିଲା ଏବଂ ଫଳରେ ବିଷ୍ଣୁ ହିନ୍ଦୁମାନଙ୍କର ଅନ୍ୟତମ ପ୍ରଧାନ ଦେବତାରେ ପରିଣତ ହେଲେ ।

ବୈଦିକ ଦେବଦେବୀ ମହଲରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ ଅଗ୍ନି ଏବଂ ସୋମ ଦେବତା । ଧର୍ମୀୟ ଅନୁଷ୍ଠାନରେ ଅଗ୍ନି ଦେବତା ଏକ ମୌଳିକ ଗୁରୁତ୍ୱର ଅଧିକାରୀ, କାରଣ କେବଳ ତାଙ୍କରି ଦାକ୍ଷିଣ୍ୟରେ ମଣିଷ ଦେବତାମାନଙ୍କ ସମୀପରେ ଉପହାର ଆଦି ନିବେଦନ କରିବାକୁ ସମର୍ଥ । ଯଜ୍ଞାଗ୍ନିକୁ ଦେବତାମାନଙ୍କର ଅମରତ୍ୱର ଉତ୍ସ ବୋଲି ବୈଦିକ ଯୁଗରେ ମନେ କରାଯାଉଥିଲା । ବୈଦିକ ସୂକ୍ତଗୁଡ଼ିକରେ ମଧ୍ୟ କୁହାଯାଇଛି, ଅଗ୍ନିଙ୍କ ଆନୁକୂଲ୍ୟରେ ଦେବତାମାନେ ଅମରତ୍ୱ ଅର୍ଜନ କରିଛନ୍ତି । ଏହି କାରଣରୁ ଦେବ କୁଳ ଏବଂ ମାନବ କୁଳ ମଧ୍ୟରେ ଅଗ୍ନି ଏକ ଯୋଗସୂତ୍ର ରୂପେ କାର୍ଯ୍ୟ କରିଥାନ୍ତି । ତେଣୁ ଯୁକ୍ତିସଂଗତ ଭାବେ ଅଗ୍ନିକୁ ସେତେବେଳେ ଗଣ୍ୟ କରାଯାଉଥିଲା ସଂବାଦ ବାହକ ବା ଦୂତ ହିସାବରେ । ଅଗ୍ନି ହେଉଛି ପରିବାରର ମଙ୍ଗଳକାରକ – ଏହି ଅତି ପ୍ରାଚୀନ ଧାରଣାରୁ ଅଗ୍ନି ପୂଜାର ଏହି ପଦ୍ଧତିର ଉତ୍ପତ୍ତି ଘଟିଥିଲା, ଏହା ସୁସ୍ପଷ୍ଟ । "ଋଗ୍‌ବେଦ"ରେ ବି ଅଗ୍ନିକୁ ଗୃହର ରକ୍ଷାକର୍ତ୍ତା ବୋଲି ଉଲ୍ଲେଖ କରାଯାଇଛି ।

ପବିତ୍ର ମାଦକ ପାନୀୟର ଦେବତା ସୋମଙ୍କ ଉଦ୍ଦେଶ୍ୟରେ "ଋଗ୍‌ବେଦରେ" ଶହେ କୋଡ଼ିଏଟି ଋକ୍‌ମନ୍ତ୍ର ଉତ୍ସର୍ଗିତ ହୋଇଛି । ଅଗ୍ନି ଭଳି ସୋମଙ୍କୁ ମଧ୍ୟ ଦେବତାମାନଙ୍କର ଅମରତ୍ୱ ଅର୍ଜନର ଅନ୍ୟତମ କାରକ ବୋଲି ନିର୍ଦ୍ଦେଶ କରାଯାଇଛି । ଦେବତାମାନେ ଏହି ଅମରତ୍ୱ ବିଧାୟକ ପାନୀୟ ଲାଭ ପାଇଁ ବ୍ୟାକୁଳ ହେଉଥିଲେ । ମଣିଷ ମଧ୍ୟ ଏହି ପାନୀୟ ପାଇଁ ବ୍ୟାକୁଳ, କାରଣ ସେମାନେ ମନେ କରୁଥିଲେ ଯେ, ଏହାକୁ ପାନ କରି ପାରିଲେ, ସେମାନେ ନିଜକୁ ଦେବତାମାନଙ୍କ ଅନ୍ତର୍ଭୁକ୍ତ ହେବେ ।

ମଣିଷର ହିତକାମୀ ଦେବତାମାନଙ୍କ ଛଡ଼ା ବୈଦିକ ଯୁଗର ଭାରତୀୟମାନେ ଅନିଷ୍ଟକାରୀ ଅପଦେବତା ତଥା ଦୈତ୍ୟ–ରାକ୍ଷସ ଏବଂ ଅସୁରମାନେ ଅଛନ୍ତି ବୋଲି ବିଶ୍ୱାସ କରୁଥିଲେ । ସେମାନେ ମନେ କରୁଥିଲେ, ଏସବୁ ହେଉଛନ୍ତି ଦେବତାମାନଙ୍କର ଶତ୍ରୁ ।

ପରବର୍ତ୍ତୀ ବୈଦିକ ଯୁଗରେ ଦଳେ "ବିମୂର୍ତ୍ତ" ଦେବଦେବୀଙ୍କର ମଧ୍ୟ ଆବିର୍ଭାବ ଘଟିଥିଲା । ଏହିସବୁ ଦେବଦେବୀଙ୍କର କ୍ରିୟାକଳାପର କ୍ଷେତ୍ର ଥିଲା ଅସ୍ପଷ୍ଟ ଏବଂ ଏମାନେ କୌଣସି ଦିଗରୁ ବିଶ୍ୱବ୍ରହ୍ମାଣ୍ଡର ତ୍ରିବିଧ ବିଭାଗ ସହିତ ସଂପୃକ୍ତ ନଥିଲେ । ଏମାନଙ୍କ ମଧ୍ୟରେ ଅନ୍ୟତମ ହେଲେ ବାକ୍ୟ ଦେବୀ ବାଚ୍ । ଅନ୍ୟ ଜଣେ ବିଶ୍ୱାସର ଦେବ ଶ୍ରଦ୍ଧା, ଆଦି । ଏହି ନୂତନ ଦେବମଣ୍ଡଳୀର ଆବିର୍ଭାବ ସମ୍ଭବ ହୋଇଥିଲା ସର୍ବେଶ୍ୱରବାଦୀ ଧର୍ମ ଧାରଣାର କ୍ରମବିକାଶ ହେତୁ । ସର୍ବେଶ୍ୱରବାଦର ଏତାଦୃଶ ବିକାଶ ଏପରିକି "ଋଗ୍‌ବେଦରେ" ମଧ୍ୟ ଲକ୍ଷ୍ୟ କରାଯାଏ । ତେବେ ପରବର୍ତ୍ତୀ ବୈଦିକ ସାହିତ୍ୟରେ ଏବଂ ପୌରାଣିକ ମହାକାବ୍ୟଗୁଡ଼ିକରେ ଏହି ଧାରଣା ଗୁରୁତ୍ୱ ଲାଭ କରିଥିଲା । "ଋଗ୍‌ବେଦର" ସାମଗ୍ରିକ ପୌରାଣିକ ଉପାଖ୍ୟାନସମୂହର ରୂପରେଖ ମଧ୍ୟରେ ତ୍ରିଧା ବିଭକ୍ତ ବିଶ୍ୱବ୍ରହ୍ମାଣ୍ଡର ଧାରଣାଟି ଏକମାତ୍ର ବିଶ୍ୱବୋଧର ମଡେଲ ବା ଆଦର୍ଶ ନୁହଁ, ଯଦିବା ବୈଦିକ ଉପାଖ୍ୟାନସମୂହର ପରିସର ମଧ୍ୟରେ ଏହି ମଡେଲ ଦେବତାମାନଙ୍କର ଶ୍ରେଣୀବିନ୍ୟାସକୁ କିଛି ପରିମାଣରେ ସହାୟକ ହୋଇଛି ।

ବୈଦିକ ଧର୍ମବିଶ୍ୱାସର ଏକ ବୈଶିଷ୍ଟ୍ୟ ହେଉଛି ଦେବତାମାନଙ୍କର ସୁସ୍ପଷ୍ଟ ବ୍ୟକ୍ତି ସ୍ୱରୂପ ନିରୂପଣ ଚେଷ୍ଟାର, କିମ୍ବା ସେମାନଙ୍କ କ୍ରିୟାକଳାପ ମଧ୍ୟରେ ସୁନିର୍ଦ୍ଦିଷ୍ଟ ଭାଗବାଣ୍ଟର ଅଭାବ ।

ବୈଦିକ ସୂକ୍ତସମୂହରେ ପ୍ରାକୃତିକ ଶକ୍ତିସମୂହ ଉପରେ ଦେବତ୍ୱ ଆରୋପ ଅଧିକାଂଶ କ୍ଷେତ୍ରରେ ସେମାନଙ୍କ ଉପରେ ମାନବିକ ଗୁଣାବଳୀ ଆରୋପର ରୂପ ଧାରଣ କରିଥିଲା । ଏହା ଫଳରେ ବିଭିନ୍ନ ଦେବତାଙ୍କ ବର୍ଣ୍ଣନାରେ ଦେଖା ଦେଇଥିଲା କେତେକ ସାଦୃଶ୍ୟ । ତା'ଛଡ଼ା ଏକାଧରଣର ପ୍ରାକୃତିକ ଘଟଣା ବା ପ୍ରପଞ୍ଚ ବିଭିନ୍ନ ଦେବତାଙ୍କ କ୍ରିୟାକଳାପ ସହିତ ସଂଯୁକ୍ତ ହୋଇ ଯାଇଥିଲା । ଫଳରେ ଦେବତାମାନଙ୍କ ମଧ୍ୟରେ କୌଣସି ଦୃଢ଼ ବିନ୍ୟସ୍ତ ପଦପରମ୍ପରା ଗଢ଼ି ଉଠି ପାରିନି, ବରଂ, ଯାହା ଗଢ଼ି ଉଠିଥିଲା, ତାହା ହେଉଛି ଗୋଟିଏ ଗୋଟିଏ ଦେବତା ଗୋଷ୍ଠୀ ମଧ୍ୟରେ ଏକ ଧରଣର ସର୍ବବ୍ୟାପୀ କେତେକ ଗୁଣାଗୁଣର ନିର୍ଯ୍ୟାସ । ଗୋଟିଏ ଗୋଟିଏ ମୁହୂର୍ତ୍ତରେ, ଅବଶ୍ୟ, ଗୋଟିଏ ଗୋଟିଏ ଦେବତାଙ୍କ ସ୍ତୁତିଗାନ କରିବାକୁ ଯାଇ ତାଙ୍କୁ ଏକ ଅସାଧାରଣ, ଏକମାତ୍ର ଦେବତା ବୋଲି ବର୍ଣ୍ଣନା କରାଯାଇଛି । ତାଙ୍କ ଉପରେ ଏଭଳିସବୁ କ୍ରିୟାକଳାପ କ୍ଷମତା ଆରୋପିତ ହୋଇଛି, ଯାହାକି ଅନ୍ୟ ପରିସ୍ଥିତିରେ ଅନ୍ୟ ଦେବତା ଉପରେ ମଧ୍ୟ ସମାନ ଭାବେ ଆରୋପ କରାଯାଇଛି । ଏହି ଭାବେ "ଏକ ଏବଂ ଅଦ୍ୱିତୀୟ ପରମେଶ୍ୱରଙ୍କ" ପୂଜା ପରିବର୍ତ୍ତେ ଗୋଟିଏ ଗୋଟିଏ ସମୟରେ ଗୋଟିଏ ଗୋଟିଏ ଦେବତା ପ୍ରତି ଶ୍ରଦ୍ଧା ନିବେଦନ "ଏକ ଜାତୀୟ ଦେବତାରେ ବିଶ୍ୱାସ" ନାମରେ

ଅଭିହିତ ହୋଇ ଆସିଛି  (ଏହି ଆଖ୍ୟାଟି ପ୍ରଥମେ ବ୍ୟବହାର କରିଥିଲେ ପ୍ରଖ୍ୟାତ ଭାରତତତ୍ତ୍ୱବିତ୍ ମ୍ୟାକ୍ସ ମିଉଲର) । ଏକଜାତୀୟ ଦେବତା ଉପରେ ଏହି ବିଶ୍ୱାସ ମଧ୍ୟରେ ପ୍ରତିଫଳିତ ହୋଇଛି ଏକ ଅତ୍ୟନ୍ତ ବିଶିଷ୍ଟ ଧରଣର ଏକେଶ୍ୱରବାଦ ପ୍ରତି ଏକ ଧରଣର ପ୍ରବଣତା , ଯେଉଁ ବିଶିଷ୍ଟ ଏକେଶ୍ୱରବାଦ ଅତ୍ୟନ୍ତ ବିଶଦ ଭାବେ ବର୍ଣ୍ଣିତ ହୋଇଛି ପରବର୍ତ୍ତୀ ଉପନିଷଦସମୂହରେ ପ୍ରଚାରିତ ତତ୍ତ୍ୱକଥା ଜରିଆରେ ।

ପରବର୍ତ୍ତୀ ବୈଦିକ ଯୁଗରେ "ଜୀବ ଜଗତର ପ୍ରଭୁ" ଦେବ ପ୍ରଜାପତି ଦେବତାମାନଙ୍କ ମଧ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ , ତେବେ ସେ ମଧ୍ୟ ଏକ ଏବଂ ଅଦ୍ୱିତୀୟ ପରମେଶ୍ୱରଙ୍କ ମର୍ଯ୍ୟାଦା ପାଇ ନାହାନ୍ତି । ପରେ ଏହି ପ୍ରଜାପତି ପୂଜାର ସ୍ଥାନ ଗ୍ରହଣ କରିଛି ଦେବାଦି ଦେବ ବ୍ରହ୍ମାଙ୍କ ଆରାଧନା ।

ଦେବତାମାନଙ୍କ ଗୁଣ ବର୍ଣ୍ଣନା କ୍ଷେତ୍ରରେ ଉପରୋକ୍ତ ଏହି ସାଦୃଶ୍ୟ ମଧ୍ୟରେ  ବିଭିନ୍ନ ବୈଦିକ ଆର୍ଯ୍ୟ ଉପଜାତିର ଭିନ୍ନ ଭିନ୍ନ ପୌରାଣିକ ଅବଧାରଣାସମୂହ ମିଳିଯାଇ କ୍ରମଶଃ ଏକ ହୋଇ ଉଠିବାର ଲକ୍ଷଣ , ସମ୍ଭବତଃ , ପ୍ରତିଫଳିତ ହୋଇଛି ।

ବେଦବାଦ କ୍ରମଶଃ ବିକଶିତ ହୋଇ ଉଠିବା ସଙ୍ଗେ ସଙ୍ଗେ ବେଦୋକ୍ତ ଦେବଦେବୀ ଏବଂ ବୈଦିକ ଉପାଖ୍ୟାନସମୂହ ଏବଂ ଆଗ୍ନେୟ ଅନୁଷ୍ଠାନର ସାଧାରଣ ଢାଞ୍ଚା ମଧ୍ୟରେ ସେମାନଙ୍କ ସ୍ଥାନର ତାତ୍ପର୍ଯ୍ୟରେ ମଧ୍ୟ ପରିବର୍ତ୍ତନ ଘଟିବାକୁ ଲାଗିଲା । ପ୍ରାଚୀନ ଦେବତାମାନେ କ୍ରମଶଃ ବିସ୍ମୃତ ହେବାକୁ ଲାଗିଲେ , ବରୁଣଙ୍କ ଭଳି କେତେକ "ଜ୍ୟେଷ୍ଠ" ଦେବତା ସେମାନଙ୍କ ଗୁରୁତ୍ୱ ଏବଂ ପ୍ରାଧାନ୍ୟ ହରେଇ ବସିଲେ ଏବଂ ସେମାନଙ୍କ ସ୍ଥାନ ଅଧିକାର କରି ନେଲେ ବିଷ୍ଣୁଙ୍କ ଭଳି କେତେକ ଦେବଦେବୀ , ପୂର୍ବେ ଯେଉଁମାନଙ୍କର ଦେବକୁଳରେ ସେଭଳି କିଛି ବିଶେଷ ଭୂମିକା ନଥିଲା ।

ଭାରତୀୟ-ଆର୍ଯ୍ୟ ଉପଜାତିମାନେ ଭାରତର ନୂଆ ନୂଆ ଅଞ୍ଚଳରେ ଯେତେ ଖେଳେଇ ହୋଇ ପଡ଼ିଲେ , ସେତେ ସ୍ଥାନୀୟ ଅନାର୍ଯ୍ୟ ଉପଜାତିମାନଙ୍କର ଅବଧାରଣା ଏବଂ ଆଗ୍ନେୟ ଅନୁଷ୍ଠାନକୁ ବେଦବାଦ କିଛି ପରିମାଣରେ ଆତ୍ମସ୍ଥ କରି ନେଲା । ଉଦାହରଣ ସ୍ୱରୂପ , ଏହାର ପ୍ରମାଣ ମିଳେ "ଅଥର୍ବବେଦର" ଐନ୍ଦ୍ରଜାଲିକ ଅନୁଷ୍ଠାନ ଏବଂ ଜାଦୁମନ୍ତ୍ର ଉଚ୍ଚାରଣ , ଆଦିରେ ।

ପରବର୍ତ୍ତୀ ବୈଦିକ ସାହିତ୍ୟରେ ଏକ ସୁସ୍ପଷ୍ଟ ଧାରା ଲକ୍ଷ୍ୟ କରାଯାଏ , ସେ ଧାରାଟି ହେଉଛି : ବ୍ରହ୍ମା , ବିଷ୍ଣୁ ଏବଂ ଶିବ (ମହେଶ୍ୱର) ଏହି "ଏକୀଭୂତ ତ୍ରିମୂର୍ତ୍ତି" କ୍ରମଶଃ ପ୍ରଧାନ ତିନି ଦେବତା ହିସାବରେ ଆବିର୍ଭୂତ ହେଲେ ।

ବୈଦିକ ଯୁଗର ଭାରତୀୟମାନେ ବିଭିନ୍ନ ସ୍ପିରିଟ ବା ଅଶରୀରୀ ଶକ୍ତିକୁ ପୂଜା କରୁଥିଲେ ଏବଂ ଗଛବୃଚ୍ଛ , ପାହାଡ଼ ପର୍ବତ, ନଦନଦୀକୁ ଦେବତା ବୋଲି ମନେ କରୁଥିଲେ । ଦେବାରାଧନାର ଏକ ଅପରିହାର୍ଯ୍ୟ ଅଙ୍ଗ ଥିଲା ଯଜ୍ଞାନୁଷ୍ଠାନ । ଦେବତାମାନଙ୍କ ଉଦ୍ଦେଶ୍ୟରେ ଉଚ୍ଚାରିତ ମନ୍ତ୍ରପାଠ ଏବଂ ପ୍ରାର୍ଥନା ମଧ୍ୟ ଧର୍ମାନୁଷ୍ଠାନ ପକ୍ଷରେ ଅପରିହାର୍ଯ୍ୟ ଥିଲା , ଯଦିଓ ଏହିସବୁ ସ୍ତବଗାନ ମଧ୍ୟରୁ ଅନେକ ପ୍ରଥାସିଦ୍ଧ ଆଗ୍ନେୟ ଅନୁଷ୍ଠାନର ଅନ୍ତର୍ଭୁକ୍ତ ନଥିଲା । ତେବେ ବିଶେଷ କରି ଅଗ୍ନି ଏବଂ ସୋମଙ୍କ ପୂଜାରେ କର୍ମକାଣ୍ଡ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ।

ଯଜ୍ଞର ନିୟମକାନୁନ୍ କ୍ରମଶଃ ଏତେ ଜଟିଳ ହୋଇ ଉଠିଲା ଯେ , ଯାପଳରେ ବିଭିନ୍ନ ଧରଣର କେତେକ ପୁରୋହିତ ଗୋଷ୍ଠୀ ଗଢ଼ି ଉଠିଲେ । ଏହି ଗୋଷ୍ଠୀସବୁ ବିଭିନ୍ନ ଧରଣର ଧର୍ମୀୟ ଏବଂ ଆଗ୍ନେରଗତ ଆନୁଷ୍ଠାନିକ କ୍ରିୟା ପରିଚାଳନା କରୁଥିଲେ ।

ବିଭିନ୍ନ ଧରଣର ବିଶେଷ ପୂଜାପର୍ବ ଉପଲକ୍ଷେ ବିଧିବଦ୍ଧ ଅନୁଷ୍ଠାନ ଛଡ଼ା ବୈଦିକ ଯୁଗର ଭାରତୀୟଙ୍କୁ ସେମାନଙ୍କ ପ୍ରାତ୍ୟାହିକ ଜୀବନରେ ମଧ୍ୟ ଅନେକଗୁଡ଼ିଏ ସଂସ୍କାର ମାନି ଚଳିବାକୁ ପଡ଼ୁଥିଲା । ଏହା ଥିଲା ସେମାନଙ୍କର ଧର୍ମ (ଦୈନନ୍ଦିନ ଆଗ୍ରର ଆଚରଣ ଏବଂ ନିୟମର ବିଧିବିଧାନ) ପାଳନର ଅଙ୍ଗ ।

ସନ୍ତାନର ଜନ୍ମ, ବିବାହ ଏବଂ ଆତ୍ମୀୟ ସ୍ୱଜନର ମୃତ୍ୟୁ ଶୋକ ପାଳନ ନିମିତ୍ତ ବିଶେଷ ସଂସ୍କାର ପାଳନ କରିବାକୁ ପଡ଼ୁଥିଲା । ପିତୃ-ପିତାମହଙ୍କ ସ୍ମୃତିତର୍ପଣ ଉପଲକ୍ଷେ ପୂଜାନୁଷ୍ଠାନ ଥିଲା ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ।

ପରବର୍ତ୍ତୀ ବୈଦିକ ସାହିତ୍ୟରେ ବା ବ୍ରାହ୍ମଣଗୁଡ଼ିକରେ ଯଜ୍ଞାନୁଷ୍ଠାନ ଉପରେ ବିଶେଷ ଗୁରୁତ୍ୱ ଅର୍ପଣ କରାଯାଇଛି । ବୈଦିକ ଦେବତା ପ୍ରଜାପତିଙ୍କୁ ଏ କ୍ଷେତ୍ରରେ ନିର୍ବାଚନ କରାଯାଇଛି ଯଜ୍ଞର ଅଧିଷ୍ଠାତା ଦେବତା ରୂପେ । ଏହି ସମୟରେ ଯଜ୍ଞାନୁଷ୍ଠାନ ଉଦ୍‌ଯାପନ ମଣିଷର ମୁଖ୍ୟ ଗୁଣ ତଥା ଧାର୍ମିକତା ମାନଦଣ୍ଡରେ ପରିଣତ ହୋଇଗଲା । ଏହାକୁ ଜୀବନର ମୂଳଭିତ୍ତି ରୂପେ ବର୍ଣ୍ଣନା କରାଗଲା, ଯାହାକି ଦେବତା ଏବଂ ମଣିଷ ଉଭୟଙ୍କ ଅସ୍ତିତ୍ୱର କାରଣ ଥିଲା । ଯଜ୍ଞାନୁଷ୍ଠାନ ଏବଂ ଉପଯୁକ୍ତ ମନ୍ତ୍ରୋଚ୍ଚାରଣ ଦ୍ୱାରା କେବଳ ଦେବତା ନୁହନ୍ତି, ମଣିଷ ମଧ୍ୟ ଅମରତ୍ୱ ଲାଭ କରି ପାରେ – ଏହା ଦ୍ୱାରା ଦେବତାମାନେ ସନ୍ତୁଷ୍ଟ ହୋଇ ମଣିଷର ବଂଶଧାରାକୁ ବଜାଏ ରଖନ୍ତି, ସନ୍ତାନସନ୍ତତି ଏବଂ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରଦାନ କରନ୍ତି ।

ବ୍ରାହ୍ମଣ ପୁରୋହିତମାନେ ଏହି ଧାରଣାକୁ ଆଉରି ବଦ୍ଧମୂଳ କରିବାକୁ ସାହାଯ୍ୟ କରିଥିଲେ । ସେମାନେ ଏପରି ଧାରଣା ସଞ୍ଚାର କରିଥିଲେ ଯେ, ଲୋକେ ମନେ କରୁଥିଲେ, ଆଗ୍ରର ଅନୁଷ୍ଠାନ ଉଦ୍‌ଯାପନ ସମୟରେ, ବିଶେଷ ଏକ ମୁହୂର୍ତ୍ତରେ ଏହି ପୁରୋହିତମାନେ ଦେବତାମାନଙ୍କ ସହିତ ସଂପୂର୍ଣ୍ଣ ଏକାତ୍ମ ହୋଇଯାଆନ୍ତି ଏବଂ ସେହିମାନେ ହିଁ କେବଳ ଦେବତାମାନଙ୍କ ମଧ୍ୟରେ ପୂଜାରେ ଉତ୍ସର୍ଗିତ ଯଜ୍ଞାହୁତିକୁ ଦେବତାମାନଙ୍କ ମଧ୍ୟରେ ସଠିକ ଭାବେ ବିତରଣ କରିବାକୁ ସମର୍ଥ ।

"ଋଗ୍‌ବେଦରେ" ବର୍ଣ୍ଣିତ ବିବରଣ ଅନୁଯାୟୀ ଯଜ୍ଞାନୁଷ୍ଠାନ ନିମ୍ନମତେ ପାଳିତ ହେଉଥିଲା : ପ୍ରଥମେ ବିଶେଷ ଭାବେ ନିର୍ମିତ ଏକ ବେଦୀ ଉପରେ ମନ୍ତ୍ରପୂତ କୁଶ ପକାଇ ଦେବତାମାନଙ୍କ ପାଇଁ ଆସ୍ଥାନ ପ୍ରସ୍ତୁତ କରାଯାଉଥିଲା । ତା'ପରେ ଯଜ୍ଞାଗ୍ନି ଉଦ୍ଦୀପିତ କରି କିଛି ସୋମରସ ବା ଘୋରସ ସେଥିରେ ଆହୁତି ଦିଆଯାଉଥିଲା । ଏହା ପରେ ଶସ୍ୟ ଦାନ ନିକ୍ଷେପ କରାଯାଉଥିଲା କିମ୍ବା ଯଜ୍ଞପଶୁ ବଳି ଦିଆଯାଉଥିଲା ।

ପ୍ରଥମେ ବୈଦିକ ଆର୍ଯ୍ୟ ଉପଜାତିମାନଙ୍କର ଦେବପୂଜା ପାଇଁ କୌଣସି ମନ୍ଦିର ନଥିଲା । ପରେ, ସମ୍ଭବତଃ, ସ୍ଥାନୀୟ ଉପଜାତିମାନଙ୍କର ଧର୍ମୀୟ ଅନୁଷ୍ଠାନାଦିର ପ୍ରଭାବ ଫଳରେ ଦେବପୂଜା ପାଇଁ ବିଶେଷ ଧରଣର ଗୃହ ବା ମନ୍ଦିର ନିର୍ମିତ ହେବାକୁ ଲାଗିଲା ।

ବୈଦିକ ଯୁଗରେ ଦେବପୂଜା ପାଇଁ ଦେବତାମାନଙ୍କର ପ୍ରତିକୃତି ବା କଳ୍ପନାଭିତ୍ତିକ ଚିତ୍ର ବ୍ୟବହୃତ ହେଉଥିଲା, ସେ ସଂପର୍କରେ ପଣ୍ଡିତମାନେ ଏପର୍ଯ୍ୟନ୍ତ ଏକମତ ହୋଇ ପାରି ନାହାନ୍ତି । ତେବେ ବୈଦିକ ଗ୍ରନ୍ଥମାନଙ୍କର କେତେକ ଶ୍ଳୋକରୁ ଏପରି ଇଙ୍ଗିତ ମିଳିଥାଏ ଯେ, ଏହି ସମୟରେ ଦେବତାମାନଙ୍କର ମାନବିକ ରୂପ କଳ୍ପନା କରିବା ସମ୍ଭବତଃ ପ୍ରଚଳିତ ଥିଲା ।

ଭାରତୀୟ ମହାକାବ୍ୟଗୁଡ଼ିକରେ ଯେଉଁ ପୌରାଣିକ ଉପାଖ୍ୟାନସମୂହ ମିଳିଥାଏ, ତାହା ସାଧାରଣ ଭାବେ ବେଦର ପୌରାଣିକ ଭିତ୍ତି ଠାରୁ ପୃଥକ୍, ଯଦିବା ମହାକାବ୍ୟଗୁଡ଼ିକର କେତେକ ଉପାଖ୍ୟାନ ଏବଂ ଧ୍ୟାନଧାରଣା ମଧ୍ୟରେ ପୂର୍ବବର୍ତ୍ତୀ ଯୁଗର ପ୍ରତିଧ୍ୱନି ଶୁଣିବାକୁ ମିଳେ । ବେଦମାନଙ୍କ ଭଳି ମହାକାବ୍ୟୀୟ ପୁରାଣରେ କେତେକ ଦେବଦେବୀଙ୍କର ଭାବରୂପ କଳ୍ପନାରେ ବହୁଈଶ୍ୱରବାଦ ଏବଂ ଦେବତାମାନଙ୍କ ଉପରେ ନରତ୍ୱ ଆରୋପଣର ବହୁବିଧ ଲକ୍ଷଣ ପରିଷ୍କାର ଦେଖିବାକୁ ମିଳେ; ଏକ ବିଶେଷ ଧରଣର ସର୍ବେଶ୍ୱରବାଦର ମଧ୍ୟ କେତେକ ଲକ୍ଷଣ ସେଥିରେ ରହିଛି । ଅନ୍ୟ ଦିଗରେ, ମହାକାବ୍ୟଗୁଡ଼ିକରେ ସାମଗ୍ରିକ ଭାବେ ଯେଉଁ ପୌରାଣିକ ଉପାଖ୍ୟାନସମୂହ ମିଳେ, ତା'ର କେତେକ ଅଂଶରେ ନୂତନ ପ୍ରବଣତା ତଥା ବିଷୟବସ୍ତୁର ସନ୍ଧାନ ମିଳିଥାଏ ।

ମହାକାବ୍ୟଗୁଡ଼ିକର ପୌରାଣିକ ଉପାଖ୍ୟାନ ସମଷ୍ଟିରୁ ଦୁଇଟି ଐତିହ୍ୟର ଧାରା ଦୃଷ୍ଟିରେ ପଡ଼େ: ଗୋଟିଏ ହେଲା ପ୍ରାଚୀନ ଐତିହ୍ୟ, ଯାହାକି ବୈଦିକ, କିମ୍ବା ପ୍ରାକ୍‌ବୈଦିକ (ଭାରତୀୟ-ଇରାନୀୟ) ଯୁଗର ତତ୍କାଳୀନ ଧାରଣାସମୂହକୁ ପ୍ରତିଫଳିତ କରିଥାଏ; ଦ୍ୱିତୀୟଟି ହେଲା ପରବର୍ତ୍ତୀ ମହାକାବ୍ୟୀୟ ଐତିହ୍ୟ, ଯାହା ମାଧ୍ୟମରେ ବ୍ରହ୍ମା, ବିଷ୍ଣୁ ଏବଂ ଶିବ ଏହି ତିନି ଦେବତାଙ୍କ ପ୍ରାଧାନ୍ୟ ସହିତ ସଂଯୁକ୍ତ ନୂତନ ପ୍ରବଣତାରାଜି ପ୍ରତିଫଳିତ । ଏହି ଦ୍ୱିତୀୟ ଐତିହ୍ୟଟି ପରବର୍ତ୍ତୀ କାଳରେ ବିକଶିତ ହିନ୍ଦୁ ଧର୍ମ ସହିତ ମହାକାବ୍ୟୀୟ ପୁରାଣର ଯୋଗସୂତ୍ର ସ୍ଥାପନ କରିଛି ।

ବେଦସମୂହ ଭଳି ମହାକାବ୍ୟଗୁଡ଼ିକରେ ବିଷ୍ଣୁ ଇନ୍ଦ୍ର ଦେବତାଙ୍କ ସହିତ ସଂଯୁକ୍ତ । ସେ ବିଶ୍ୱବ୍ରହ୍ମାଣ୍ଡ ପରିକ୍ରମା କରନ୍ତି "ତିନୋଟି ପଦକ୍ଷେପରେ" । ତେବେ ମହାକାବ୍ୟଗୁଡ଼ିକରେ ଏହି ଦୁଇ ଦେବତାଙ୍କ "ମୈତ୍ରୀ" କ୍ଷେତ୍ରରେ ବିଷ୍ଣୁଙ୍କ ଭୂମିକା ପ୍ରଧାନ । ମହାକାବ୍ୟଗୁଡ଼ିକରେ ଚିତ୍ରିତ ବିଷ୍ଣୁ ବହୁ ଅସାଧାରଣ କ୍ଷମତାର ଅଧିକାରୀ: ବିଶ୍ୱବ୍ରହ୍ମାଣ୍ଡରେ ଯାହା କିଛି ଅଛି, ସେସବୁକୁ ସେ ଏକାଧାରରେ ସୃଷ୍ଟି, ପାଳନ ଏବଂ ଧ୍ୱଂସ କରନ୍ତି । ଅର୍ଥାତ୍, ପରବର୍ତ୍ତୀ ହିନ୍ଦୁ ଧର୍ମର ଐତିହ୍ୟରେ ଯେଉଁସବୁ କାର୍ଯ୍ୟ ବ୍ରହ୍ମା, ବିଷ୍ଣୁ ଏବଂ ଶିବ, ଏହି ତିନି ଦେବତା ବା ତ୍ରିମୂର୍ତ୍ତି ମଧ୍ୟରେ ବଣ୍ଟିତ ହୋଇଛି, ଏହି ସ୍ତରରେ ସେଇସବୁ କାର୍ଯ୍ୟକୁ ବିଷ୍ଣୁ ହିଁ ସ୍ୱୟଂ ସଂପନ୍ନ କରିଛନ୍ତି ।

ପ୍ରସଙ୍ଗତ ଏହା ଉଲ୍ଲେଖଯୋଗ୍ୟ ଯେ, ମହାକାବ୍ୟଗୁଡ଼ିକରେ ବ୍ରହ୍ମା ମଧ୍ୟ ବିଷ୍ଣୁଙ୍କ ଭଳି ଏକା କାର୍ଯ୍ୟ ସଂପନ୍ନ କରିଛନ୍ତି । ମୁଖ୍ୟ ଦେବତାମାନଙ୍କ ଗୁଣାଗୁଣ ମଧ୍ୟରେ ଏହି ସାଦୃଶ୍ୟ ମହାକାବ୍ୟଗୁଡ଼ିକରେ ସେପର୍ଯ୍ୟନ୍ତ ଦେବତାମାନଙ୍କର କ୍ରିୟାକଳାପ ମଧ୍ୟରେ ସୁସ୍ପଷ୍ଟ କୌଣସି ପାର୍ଥକ୍ୟର ସୀମାରେଖା ନିର୍ଦ୍ଦିଷ୍ଟ ହୋଇନି ଏବଂ ଦେବତାମାନଙ୍କର "ଏକୀଭୂତ ତ୍ରିମୂର୍ତ୍ତିର" ଧାରଣା ମଧ୍ୟ ସେପର୍ଯ୍ୟନ୍ତ ଗଢ଼ି ଉଠିନି ବୋଲି ସୂଚନା ଦେଇଥାଏ ।

ମହାକାବ୍ୟଗୁଡ଼ିକରେ ଆମେ ପ୍ରଥମ କରି ଋଣ ଦେବତା ସନ୍ଦଙ୍କୁ ଦେଖିବାକୁ ପାଇଥାଏ । ଏ କ୍ଷେତ୍ରରେ ଆଉ ଗୋଟିଏ କୌତୂହଳୋଦ୍ଦୀପକ ବିଷୟ ହେଉଛି ଇନ୍ଦ୍ର ଏବଂ ବରୁଣଙ୍କ ଭାବରୂପ କଳ୍ପନା କରିବାରେ ପରିବର୍ତ୍ତନ । ବେଦ ଗ୍ରନ୍ଥଗୁଡ଼ିକରେ ଇନ୍ଦ୍ର ଦେବସମାଜରେ ପ୍ରଧାନ ସ୍ଥାନ ଅଧିକାର କରିଥିଲେ । କିନ୍ତୁ ମହାକାବ୍ୟଗୁଡ଼ିକରେ ଯୋଦ୍ଧୃ ପ୍ରଧାନ ଦେବତା ସନ୍ଦ ଇନ୍ଦ୍ରଙ୍କ ଭଳି ଶକ୍ତିର ଅଧିକାରୀ ।

ବରୁଣ ଦେବତା ମଧ୍ୟ ଏଠାରେ ଆଉ ବିଶ୍ୱର ଶୃଙ୍ଖଳା (ଋତ) ନିୟନ୍ତ୍ରଣ କରୁ ନାହାନ୍ତି, ସିଏ ମଧ୍ୟ ଏକ ଗୌଣ ଗୁରୁତ୍ୱସଂପନ୍ନ ଦେବତା ।

ମହାକାବ୍ୟଗୁଡ଼ିକରେ ପୌରାଣିକ ଉପାଖ୍ୟାନସମୂହର ଯେଉଁ ଜଟିଳତା ପରିଲକ୍ଷିତ ହୁଏ, ଖୁବ୍ ସମ୍ଭବତଃ ତା'ର କାରଣ ହେଉଛି, ମହାକାବ୍ୟଗୁଡ଼ିକର ବିଷୟବସ୍ତୁଗୁଡ଼ିକ ବିଭିନ୍ନ ଯୁଗପର୍ଯ୍ୟାୟ ସହିତ ସଂଯୁକ୍ତ । ଅତ୍ୟାଧିକ ପ୍ରାଚୀନତର ରଚନା ସହିତ ମିଶିକି ରହିଛି ବହୁ ପରବର୍ତ୍ତୀ ଯୁଗର ବିଭିନ୍ନ ବିଷୟ । ରାମଙ୍କ ଚରିତ୍ର ବର୍ଣ୍ଣନା କ୍ଷେତ୍ରରେ ଏହା ବିଶେଷ ଭାବେ ଲକ୍ଷଣୀୟ । "ରାମାୟଣର" ପ୍ରଥମ ଅଂଶଗୁଡ଼ିକରେ ରାମଙ୍କୁ ଉପସ୍ଥାପିତ କରାଯାଇଛି ସମସ୍ତ ପ୍ରକାରର ଦୈବୀ କ୍ଷମତା ବର୍ଜିତ ସାଧାରଣ ଏକ ମଣିଷ ହିସାବରେ । କିନ୍ତୁ କାବ୍ୟଟିର ପରବର୍ତ୍ତୀ ଅଂଶରେ ସେ ଆବିର୍ଭୂତ ହୋଇଛନ୍ତି ବିଷ୍ଣୁଙ୍କର ନରରୂପଧାରୀ ଅବତାର ରୂପରେ ।

ଏହିଭଳି ଆଉ ଏକ କୌତୂହଳୋଦ୍ଦୀପକ ଚରିତ୍ର ହେଉଛନ୍ତି କୃଷ୍ଣ । "ମହାଭାରତରେ" ସେ ଯାଦବ ଉପଜାତିର ନେତା ଏବଂ ପାଣ୍ଡବମାନଙ୍କର ବନ୍ଧୁ ରୂପେ କେବଳ ଚିତ୍ରିତ ହୋଇ ନାହାନ୍ତି, ଚିତ୍ରିତ ହୋଇଛନ୍ତି ବିଷ୍ଣୁଙ୍କର ଅନ୍ୟତମ ଏକ ଅବତାର, ଏକ "ପରମ ପୁରୁଷ" ଏବଂ ପରିଶେଷରେ "ସମଗ୍ର ଜଗତର କାର୍ଯ୍ୟ କାରଣ – ଭିତ୍ତି ସ୍ୱରୂପ ଏକ ଦେବତା" ରୂପରେ । ଅବଶ୍ୟ, ମହାକାବ୍ୟୀୟ ଚରିତ୍ରଗୁଡ଼ିକ ଚିତ୍ରଣ କ୍ଷେତ୍ରରେ ଏହି ପରିବର୍ତ୍ତନ ତତ୍କାଳୀନ ମଣିଷର ଦର୍ଶନ ଏବଂ ଧର୍ମବିଶ୍ୱାସ କ୍ଷେତ୍ରରେ ନବ ସଂଯୋଜିତ ବିଭିନ୍ନ ବୈଶିଷ୍ଟ୍ୟର ପ୍ରତିଫଳନ ମାତ୍ର । ପ୍ରସଙ୍ଗତ ସ୍ମରଣଯୋଗ୍ୟ ଯେ, ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ଦ୍ୱିତୀୟାର୍ଦ୍ଧରେ ଭାରତବର୍ଷରେ ବୈଷ୍ଣବ ଧର୍ମମତର ଆବିର୍ଭାବ ଏବଂ ଦ୍ରୁତ ବିସ୍ତାର ଘଟିଥିଲା ।

## ବୈଦିକ ସାହିତ୍ୟ

ବୈଦିକ ଗ୍ରନ୍ଥଗୁଡ଼ିକ ହେଲା ଭାରତର ସବୁଠାରୁ ପ୍ରାଚୀନ ଲିଖିତ ସାହିତ୍ୟ । ସେସବୁର ବିଷୟବସ୍ତୁ ଯେପରି ବିଚିତ୍ର, ସେଇପରି ଏକାଧିକ ଐତିହାସିକ କାଳ ପର୍ବରେ ଲିଖିତ ପାଠ ମଧ୍ୟ ସେସବୁର ଅନ୍ତର୍ଗତ । ପ୍ରାଚୀନ ଐତିହ୍ୟ ସହିତ ସଂଗତି ରଖି ବେଦଗ୍ରନ୍ଥଗୁଡ଼ିକୁ କେତୋଟି ଅଂଶରେ ବିଭକ୍ତ କରି ଦେଖାଇବାକୁ ହେଉଛି । ଏସବୁ ମଧ୍ୟରେ ପ୍ରଥମ ଅଂଶଟିର ଅନ୍ତର୍ଭୁକ୍ତ ହେଉଛି ସ୍ତୋତ୍ର ବା ସୂକ୍ତ, ଅଥବା ସଂହିତାସମୂହ । "ଋଗ୍‌ବେଦ" (ସୂକ୍ତଗୁଚ୍ଛ), "ସାମବେଦ" (ସ୍ତବଗୁଚ୍ଛ), "ଯଜୁର୍ବେଦ" (ପ୍ରାର୍ଥନା ଏବଂ ଯଜ୍ଞର ସୂତ୍ରବଦ୍ଧ ସମଷ୍ଟି) ଏବଂ "ଅଥର୍ବବେଦ" (ଐନ୍ଦ୍ରଜାଲିକ ମନ୍ତ୍ରୋଚ୍ଚାରଣ ଓ ଜାଦୁବିଦ୍ୟା ଅନୁଷ୍ଠାନର ନିୟମାବଳୀର ସମାହାର) ମିଳିତ ଭାବେ ଏହି ସଂହିତା ନାମରେ ପରିଚିତ । ଏହା ପରେ ଦ୍ୱିତୀୟ ଅଂଶଟି ହେଲା ବ୍ରାହ୍ମଣସମୂହ । ସଂହିତାସମୂହର ଆଗ୍ରର ଅନୁଷ୍ଠାନ ସଂପର୍କିତ ସ୍ତୋତ୍ର ଓ ମନ୍ତ୍ରାଦିର ବ୍ୟାଖ୍ୟାକୁ ନେଇ ଏସବୁ ଗଠିତ । ତୃତୀୟ ଅଂଶଟି ହେଲା ଆରଣ୍ୟକସମୂହ । ଏସବୁ ରଚିତ ହୋଇଥିଲା ବନବାସୀ ତପସ୍ୱୀମାନଙ୍କ ପାଇଁ । ଚତୁର୍ଥ ଅଂଶ ହେଲା ଉପନିଷଦସମୂହ । ଏସବୁ ହେଲା ଏକତ୍ର ଗ୍ରଥିତ ଧର୍ମ ଓ ଦର୍ଶନ ଶାସ୍ତ୍ରର ଆଲୋଚନା ଗ୍ରନ୍ଥ ।

ଏସବୁ ମଧ୍ୟରେ ସବୁଠାରୁ ପ୍ରାଚୀନ ଗ୍ରନ୍ଥ ହେଲା "ଋଗ୍‌ବେଦ" । ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ

ସହସ୍ରାବ୍ଦର ଶେଷାଂଶରେ ଏବଂ ପ୍ରଥମ ସହସ୍ରାବ୍ଦର ପ୍ରାରମ୍ଭରେ ଏହା ସଂକଳିତ ହୋଇଥିଲା । ସୃଷ୍ଟି ତତ୍ତ୍ୱ ଓ ବିବାହ ସମ୍ବନ୍ଧୀୟ ସ୍ତୋତ୍ରାଦି ସମେତ ବହୁ ବିଚିତ୍ର ବିଷୟବସ୍ତୁକୁ ନେଇ ରଚିତ ଏକ ହଜାର ଅଠାଅଶିଟି ସୂକ୍ତ ଏହି ଗ୍ରନ୍ଥର ଅନ୍ତର୍ଭୁକ୍ତ । ଏହାର ପରବର୍ତ୍ତୀ କାଳରେ "ଅଥର୍ବବେଦ" ରଚିତ ହୋଇଥିଲା । ପୂର୍ବ ଭାରତର ବୈଦିକ ଆର୍ଯ୍ୟ ଉପଜାତିସମୂହ ପ୍ରଥମେ ଏହାର ସୂକ୍ତଗୁଡ଼ିକୁ ଯେ ରଚନା କରିଥିଲେ, ଏହା ସ୍ପଷ୍ଟ । ତେବେ କେତେକ ଅତି ପ୍ରାଚୀନ ସୂକ୍ତ ମଧ୍ୟ ଏହାର ଅନ୍ତର୍ଭୁକ୍ତ । "ଅଥର୍ବବେଦର" ବହୁ ସୂକ୍ତରେ ଅନାର୍ଯ୍ୟ ସ୍ଥାନୀୟ ଉପଜାତିମାନଙ୍କର ଧର୍ମବିଶ୍ୱାସର ପ୍ରତିଫଳନ ଦେଖିବାକୁ ମିଳେ ।

ସଂହିତାଗୁଡ଼ିକରେ ସଂକଳିତ ପାଠ ମଧ୍ୟରୁ ଅଧିକାଂଶ ଅତ୍ୟନ୍ତ ଅସମ ମାନ ବିଶିଷ୍ଟ । ତେବେ ଏହି ପ୍ରାଚୀନ ଲିଖିତ ରଚନାର ସଂକଳନଗୁଡ଼ିକୁ ମୁଖେ ମୁଖେ ପ୍ରଚଳିତ ଲୋକ ସାହିତ୍ୟର ଦୀର୍ଘକାଳୀନ ଏକ ଐତିହ୍ୟର ପ୍ରତିଫଳନ ସାହିତ୍ୟକୃତି ହିସାବରେ ଗଣ୍ୟ କରାଯାଇ ପାରେ । ସଂହିତାଗୁଡ଼ିକର ରଚୟିତାମାନଙ୍କୁ ଋଷି ବୋଲି କୁହାଯାଏ । ସେମାନଙ୍କ ଶ୍ଳୋକଗୁଡ଼ିକୁ ମୁଖସ୍ଥ କରି ପ୍ରାଚୀନ କାଳର ଚାରଣମାନେ ଗାଉଥିଲେ । "ଋଗ୍‌ବେଦର" ସବୁଠାରୁ ପ୍ରାଚୀନ ସୂକ୍ତଗୁଡ଼ିକ ମଧ୍ୟ ଛନ୍ଦର ସୁନିର୍ଦ୍ଦିଷ୍ଟ ନିୟମାନୁଯାୟୀ ରଚିତ ହୋଇଛି ଏବଂ ପରେ ଅନ୍ୟାନ୍ୟ କାବ୍ୟ ରଚନାରେ ମଧ୍ୟ ଏହିସବୁ ଛନ୍ଦ ବ୍ୟବହୃତ ହୋଇଛି । ଏସବୁ ମଧ୍ୟରୁ ଏକ ଛନ୍ଦୋବଦ୍ଧ ଅନୁଷ୍ଟୁଭ ପରବର୍ତ୍ତୀ ଯୁଗରେ ଶ୍ଳୋକରେ ବା ବିଶେଷ ଏକ ଧରଣର ଛନ୍ଦୋବଦ୍ଧ ପଦ ରଚନାର ଭିତ୍ତିରେ ପରିଣତ ହୋଇଥିଲା । ପ୍ରାଚୀନ ଭାରତୀୟ କାବ୍ୟ ସାହିତ୍ୟରେ ଏହି ବିଶେଷ ପଦ ରଚନାର ପଦ୍ଧତି କବିତାର ପ୍ରଧାନ ବାହନ ହୋଇଥିଲା ।

ବେଦସମୂହର ବହୁ ସୂକ୍ତରେ ପ୍ରକୃତିର ଏବଂ ମାନବିକ ଆବେଗ ଅନୁଭୂତିର ଏଭଳି କାବ୍ୟମୟ ବର୍ଣ୍ଣନା ରହିଛି ଏବଂ ଏପରିସବୁ ସମୃଦ୍ଧ ଉପମା ଏବଂ ରୂପକଳ୍ପ ଦ୍ୱାରା ପୂର୍ଣ୍ଣ ହୋଇଛି ଯେ, ସେସବୁକୁ ଆଦର୍ଶ କବିତା ବୋଲି ଗଣ୍ୟ କରାଯାଇ ପାରେ । ଊଷା ଦେବୀ ଉଷସଙ୍କ ଉଦ୍ଦେଶ୍ୟରେ ରଚିତ ସ୍ତବଗୁଡ଼ିକ ବିଶେଷ ଭାବେ ଅନୁପ୍ରାଣିତାରେ ପରିପୂର୍ଣ୍ଣ । ସାମଗ୍ରିକ ଭାବେ ଦେଖିଲେ, ଏହି ସ୍ତୋତ୍ରଗୁଡ଼ିକ ମୂଳତଃ ଧର୍ମଶାସ୍ତ୍ରର ଅଙ୍ଗ ସ୍ୱରୂପ, କିନ୍ତୁ ପ୍ରାତ୍ୟହିକ ଜୀବନରେ ଏବଂ ଲୋକ ଐତିହ୍ୟରେ ସେସବୁର ମୂଳ ନିହିତ ହେତୁ ସେସବୁ ପ୍ରାୟ ସାଧାରଣ ଭାବେ ଧର୍ମନିରପେକ୍ଷ କାବ୍ୟ ବୋଲି ମନେ ହୁଏ । ବହୁ ବୈଦିକ ରଚନାର ଏହି ସାଧାରଣ ଭାବେ ବେଦବାଦର ସୁନିର୍ଦ୍ଦିଷ୍ଟ ପ୍ରକୃତି ଓ ବହୁ ବୈଦିକ ଧ୍ୟାନଧାରଣାରେ ମାନବତ୍‌-ଆରୋପଣ ଗୁଣର ପ୍ରତିଫଳନ । ବେଦସମୂହରେ ଦେବତାମାନଙ୍କୁ ମଣିଷର ଘନିଷ୍ଠ ସାଦୃଶ୍ୟ ହିସାବରେ ଗଣ୍ୟ କରାଯାଇଛି ଏବଂ ସେମାନଙ୍କ ଉଦ୍ଦେଶ୍ୟରେ ନିବେଦିତ ସ୍ତୋତ୍ରଗୁଡ଼ିକରେ ଋଷିକବିମାନେ ନିଜର ଜାଗତିକ ଅଭିଜ୍ଞତା ଏବଂ ଆବେଗ ଅନୁଭୂତିର ବର୍ଣ୍ଣନା ପ୍ରଦାନ କରିଛନ୍ତି, ନିଜର ଆନନ୍ଦ ବେଦନା କଥା ହିଁ ବ୍ୟକ୍ତ କରିଛନ୍ତି ।

ବୈଦିକ ସାହିତ୍ୟରେ, ଏପରିକି "ଋଗ୍‌ବେଦରେ" ମଧ୍ୟ, ନାଟକୀୟ ଉପସ୍ଥାପନାର ବିଭିନ୍ନ ଲକ୍ଷଣ ପରିଲକ୍ଷିତ ହୁଏ । ପରବର୍ତ୍ତୀ ସାହିତ୍ୟରେ ଏହି ଲକ୍ଷଣଗୁଡ଼ିକ ପୂରାମାତ୍ରାରେ ନାଟକ ଆକାରରେ ବିକାଶ ଲାଭ କରିଛି । ଏହାର ଏକ ଆଗ୍ରହୋଦ୍ଦୀପକ ଉଦାହରଣ ରୂପେ "ଋଗ୍‌ବେଦର" ତଥାକଥିତ ସ୍ତୋତ୍ରରେ କଥୋପକଥନ ଅଂଶଗୁଡ଼ିକ । ମନେ ହୁଏ, ଏସବୁ କେବଳ ଧର୍ମୀୟ ମନ୍ତ୍ର ନଥିଲା, ନାଟକୀୟ ଉପସ୍ଥାପନା ପାଇଁ ମଧ୍ୟ ରଚିତ ହୋଇଥିଲା । "ଋଗ୍‌ବେଦର" କେତେକ ଉପାଖ୍ୟାନ ପରବର୍ତ୍ତୀ କାଳରେ ଭାରତୀୟ କବି ନାଟ୍ୟକାରମାନଙ୍କ ନାଟକ ରଚନା ପାଇଁ ବିଷୟବସ୍ତୁ

ଯୋଗାଇଛି । ଯଥା, ମହାକବି କାଳିଦାସ ତାଙ୍କ "ବିକ୍ରମୋର୍ବଶୀ" ("ବୀରତ୍ୱ ବଳରେ ବିଜିତା ଉର୍ବଶୀ") ନାଟକର ଭିତ୍ତି ହିସାବରେ ସ୍ୱର୍ଗର ଅପସରା ଉର୍ବଶୀଙ୍କ ପ୍ରତି ରାଜା ପୁରୁରବାଙ୍କ ପ୍ରେମ ଉପାଖ୍ୟାନଟିକୁ ଗ୍ରହଣ କରିଥିଲେ ।

ବୈଦିକ ସାହିତ୍ୟର ଅନେକ ସୂକ୍ତରେ ଶୁଭ ଓ ଅଶୁଭ ମଧ୍ୟରେ, ଦେବତା ଏବଂ ଦାନବ ମଧ୍ୟରେ, ବିଭିନ୍ନ ଉପଜାତି ମଧ୍ୟରେ ଦ୍ୱନ୍ଦ୍ୱ ଏବଂ ଯୁଦ୍ଧ କାହାଣୀ ବର୍ଣ୍ଣିତ ହୋଇଛି । ଏ କ୍ଷେତ୍ରରେ ଦଶ ନରପତିଙ୍କ ମଧ୍ୟରେ ସଂଗ୍ରାମ କାହାଣୀଟି ବିଶେଷ ଭାବେ ଚିତ୍ତାକର୍ଷକ । ଏଥିରେ ବର୍ଣ୍ଣିତ ହୋଇଛି, କିପରି ଇନ୍ଦ୍ରଙ୍କ ସହାୟତା ଦ୍ୱାରା ପରାକ୍ରାନ୍ତ ରାଜା ସୁଦାସ ଉତାଳ ଢେଉକୁ ଅତିକ୍ରମ କରି ପରୁଷନୀ ନଦୀକୁ ପାର ହୋଇ ପରାଜୟ ହାତରୁ ରକ୍ଷା ପାଇଥିଲେ । "ଋଗ୍‌ବେଦକୁ" ପଣ୍ଡିତମାନେ ସଠିକ ଭାବେ ମହାକାବ୍ୟଗୁଡ଼ିକର ପ୍ରଧାନ ବୈଶିଷ୍ଟ୍ୟସୂଚକ ବୀର ଗାଥା ଏବଂ ସେସବୁର ମୂଳ ଉସ ବୋଲି ଗଣ୍ୟ କରନ୍ତି । ସାହିତ୍ୟ-ଇତିହାସ ବିସାରଦମାନଙ୍କ ଦୃଷ୍ଟିକୋଣରୁ ବିଚାର କଲେ, ବ୍ରାହ୍ମଣଗୁଡ଼ିକୁ ସଂହିତାସମୂହ ଠାରୁ କମ୍ ଆଗ୍ରହୋଦ୍ଦୀପକ ବୋଲି ମନେ ହୁଏ, ଯଦିଓ ବ୍ରାହ୍ମଣଗୁଡ଼ିକରେ ଧର୍ମୀୟ ଯଜ୍ଞାଦି ଆଚାର ଅନୁଷ୍ଠାନର ଗଦ୍ୟମୟ ବ୍ୟାଖ୍ୟା ସହିତ ଆମେ ଦେଖିବାକୁ ପାଏଁ ମହାପ୍ରଳୟର କାହାଣୀ ସଂପର୍କରେ ଏକ ଭାରତୀୟ ଭାଷ୍ୟ ।

ବେଦାଙ୍ଗଗୁଡ଼ିକ ବୈଦିକ ସାହିତ୍ୟର ଅନ୍ତର୍ଗତ । ଏସବୁ ଜରିଆରେ ବୈଜ୍ଞାନିକ ଜ୍ଞାନର ବିକାଶର ତତ୍‌କାଳୀନ ନୂତନ ଏକ ସ୍ତରର ପରିଚୟ ମିଳିଥାଏ । ବେଦାଙ୍ଗଗୁଡ଼ିକ ଛଅଟି ଶାଖାରେ ବିଭକ୍ତ: ଶିକ୍ଷା (ଶବ୍ଦତତ୍ତ୍ୱ), ବ୍ୟାକରଣ, ନିରୁକ୍ତ (ଶବ୍ଦର ପ୍ରକୃତି ପ୍ରତ୍ୟୟ ଓ ମୂଳ ବ୍ୟୁତ୍ପତ୍ତି ସଂକ୍ରାନ୍ତ ତତ୍ତ୍ୱ), କଳ୍ପ (ଧର୍ମୀୟ ଭଜନ ପୂଜନ ପଦ୍ଧତି ସଂକ୍ରାନ୍ତ ଶାସ୍ତ୍ର), ଛାନ୍ଦସ (ଛନ୍ଦବିଦ୍ୟା) ଏବଂ ଜ୍ୟୋତିଷ (ଜ୍ୟୋତିର୍ବିଦ୍ୟା) । ପରବର୍ତ୍ତୀ ଯୁଗରେ ଲିଖିତ ଶାସ୍ତ୍ରସମୂହର ପରିଚୟସୂଚକ ସୂଚିର ପରିବର୍ତ୍ତେ ଉପରୋକ୍ତ ଏହି ସମସ୍ତ ଶାସ୍ତ୍ର ହିଁ ସାଧାରଣ ଭାବେ ଶ୍ରୁତି ନାମରେ ପରିଚିତ ।

## ମହାକାବ୍ୟ ସାହିତ୍ୟ

ପ୍ରାଚୀନ ଭାରତର ମହାକାବ୍ୟଗୁଡ଼ିକ ମଧ୍ୟରେ "ମହାଭାରତ" ଏବଂ "ରାମାୟଣ" ହେଉଛି ସର୍ବାପେକ୍ଷା ଉଲ୍ଲେଖନୀୟ ରଚନା । ଗ୍ରନ୍ଥ ଆକାରରେ ଏହି ଦୁଇଟି କାବ୍ୟ ଲିପିବଦ୍ଧ ହୋଇଥିଲା ବହୁ ପରବର୍ତ୍ତୀ କାଳରେ, ଖ୍ରୀଷ୍ଟ ପୂର୍ବ ଚତୁର୍ଥ ଶତାବ୍ଦୀରୁ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ମଧ୍ୟରେ । ତେବେ କାବ୍ୟ ଦୁଇଟିର ମୂଳ କାହାଣୀ ଏବଂ ଉଭୟ ମଧ୍ୟରେ ଅନ୍ତର୍ଭୁକ୍ତ ବହୁ ଉପାଖ୍ୟାନ ନିଃସନ୍ଦେହରେ ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ପ୍ରଥମାର୍ଦ୍ଧ ସମୟର ।

"ମହାଭାରତର" ମୂଳ ବିଷୟବସ୍ତୁ ହେଲା, ପାଣ୍ଡବ ଏବଂ କୌରବମାନଙ୍କ ମଧ୍ୟରେ ଏକ ସଂଘର୍ଷର କାହାଣୀ । ଏହାର ପରିଣତି ଘଟିଥିଲା ଅଠର ଦିନବ୍ୟାପୀ କୁରୁକ୍ଷେତ୍ର ମହାଯୁଦ୍ଧରେ ।

ଅନ୍ୟ ପକ୍ଷରେ, "ରାମାୟଣରେ" ବର୍ଣ୍ଣିତ ହୋଇଛି, ଦୁଷ୍ଟ ରାକ୍ଷସ ରାବଣ କର୍ତ୍ତୃକ ଅପହୃତା ପ୍ରିୟତମା ସୀତାଙ୍କ ଉଦ୍ଧାର ପାଇଁ ରାଜା ରାମଙ୍କ ଲଙ୍କା ଅଭିଯାନ । କେତେକ ପଣ୍ଡିତ "ମହାଭାରତର" କାହାଣୀକୁ ସତ୍ୟ ଘଟଣାର ପ୍ରତିଚିତ୍ରଣ ବୋଲି ଗ୍ରହଣ କରିଥାନ୍ତି । ସେମାନେ ମନେ କରନ୍ତି,

ଘଟଣାଗୁଡ଼ିକ, ସମ୍ଭବତଃ, ଘଟିଥିଲା ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ସହସ୍ରାବ୍ଦର ଶେଷ ଓ ପ୍ରଥମ ସହସ୍ରାବ୍ଦର ପ୍ରାରମ୍ଭରେ । ଅନ୍ୟ ପକ୍ଷରେ, "ରାମାୟଣର" କାହାଣୀକୁ ଆର୍ଯ୍ୟ ଉପଜାତିଗୁଡ଼ିକ ଓ ଦକ୍ଷିଣ ଭାରତର ଉପଜାତିମାନଙ୍କ ମଧ୍ୟରେ ସଂଗ୍ରାମର ସ୍ମାରକ ହିସାବରେ ବ୍ୟାଖ୍ୟା କରାଯାଇଥାଏ । ତେବେ କାବ୍ୟ ଦୁଇଟିରେ ବର୍ଣ୍ଣିତ ଘଟଣାବଳୀ ଐତିହାସିକ ବିଗ୍ରର ଦ୍ୱାରା ସୁନିର୍ଦ୍ଦିଷ୍ଟ ସତ୍ୟ ହେଉ ବା ନହେଉ, ଏ ଦୁଇଟି ତର୍କାତୀତ ଭାବେ ବହୁ ଶତାବ୍ଦୀ ଧରି ଜନମାନସରେ ଓ ଐତିହ୍ୟ ମଧ୍ୟରେ ଯୋଥିତ ହୋଇ ରହିଛି ।

କେତେକ ପଣ୍ଡିତ "ରାମାୟଣକୁ" ଉତ୍ତର ଭାରତରୁ ଭାରତୀୟ-ଆର୍ଯ୍ୟମାନଙ୍କର ଦକ୍ଷିଣରେ ସୁଦୂର ଲଙ୍କା ଦ୍ୱୀପ (ବର୍ତ୍ତମାନ ଶ୍ରୀଲଙ୍କା) ପର୍ଯ୍ୟନ୍ତ ଅନୁପ୍ରବେଶର ଏକ ସାହିତ୍ୟିକ ପ୍ରମାଣପତ୍ର ରୂପେ ବିଗ୍ରର କରନ୍ତି ।

ମହାକାବ୍ୟ ଦୁଇଟି ବିରାଟ କଳେବର ବିଶିଷ୍ଟ ଦୁଇଟି ସଂକଳନ । "ମହାଭାରତରେ" ଅଛି ପ୍ରାୟ ଏକ ଲକ୍ଷ ଦ୍ୱିପଂକ୍ତି ବିଶିଷ୍ଟ ପଦ ବା ଶ୍ଲୋକ ଏବଂ "ରାମାୟଣରେ" ଚବିଶ ହଜାର ଶ୍ଲୋକ ।

ଏହି ଦୁଇଟି କାବ୍ୟରେ ମୂଳ କାହାଣୀ ଛଡ଼ା ଅସଂଖ୍ୟ ପାର୍ଶ୍ୱ, କିମ୍ବା ବିକ୍ଷିପ୍ତ ଉପାଖ୍ୟାନ ଦେଖିବାକୁ ମିଳେ । "ମହାଭାରତରେ" ଏହି ପାର୍ଶ୍ୱ ଉପାଖ୍ୟାନଗୁଡ଼ିକ ଗ୍ରନ୍ଥର ପ୍ରାୟ ତିନି ଚତୁର୍ଥାଂଶ ବ୍ୟାପୀ ରହିଛି । ଏହାର କେତେକ ଉପାଖ୍ୟାନ, ହୁଏତ, ମୂଳ କାହାଣୀ ସହିତ ସଂପୂର୍ଣ୍ଣ ସଂପର୍କଶୂନ୍ୟ ନୀତିକଥା, କିମ୍ବା "ନଳ ଦମୟନ୍ତୀ" ଉପାଖ୍ୟାନ ଭଳି ଗୋଟିଏ ଗୋଟିଏ ପୂର୍ଣ୍ଣ କାହାଣୀ, କିମ୍ବା ଧର୍ମାଲୋଚନା । ତେବେ ଏସବୁ ସତ୍ତ୍ୱେ "ମହାଭାରତ" ଓ "ରାମାୟଣକୁ" ଚମତ୍କାର ସୁସଂହତ ରଚନା ବୋଲି ଗଣ୍ୟ ନକରିବାର ଉପାୟ ନାହିଁ । କାବ୍ୟ ଦୁଇଟି ବିଭିନ୍ନ କାହାଣୀ ଓ ରଚନା ରୀତିର ଏକ ତାଳିପକା ଶିଳ୍ପକର୍ମ ନୁହଁ । ଏ ଦୁଇଟି ହେଉଛି ଐକ୍ୟବଦ୍ଧ ରଚନା ଏବଂ ପ୍ରତ୍ୟେକଟି ହେଉଛି ରଚନା ହିସାବରେ ଏକ ଏବଂ ଅଖଣ୍ଡ । ଐତିହ୍ୟଗତ ଭାବେ ବ୍ୟାସଦେବଙ୍କୁ "ମହାଭାରତର" ଏବଂ କବି ବାଲ୍ମିକିଙ୍କୁ "ରାମାୟଣର" ରଚୟିତା ବୋଲି କୁହାଯାଇଥାଏ । କିନ୍ତୁ ଏହି ଦୁଇ କବି ବା ଋଷିଙ୍କ ସଂପର୍କରେ ନିର୍ଦ୍ଦିଷ୍ଟ ଭାବେ କିଛି ଜଣା ନାହିଁ । ମନେ ହୁଏ, ବ୍ୟାସଦେବ ଏବଂ ବାଲ୍ମିକି ଉଭୟ ଥିଲେ ଲୋକକବି ଏବଂ ସେମାନେ ଏତେ ବେଶି ପ୍ରସିଦ୍ଧ ଥିଲେ ଯେ, ସେମାନଙ୍କ ନାମ ବଂଶ ପରମ୍ପରା କ୍ରମେ ପ୍ରଚଳିତ ହୋଇ ଆସିଛି । ଏହି କାବ୍ୟ ଦୁଇଟି ବହୁ ଶତାବ୍ଦୀ ଧରି ଲୋକଙ୍କ ମୁହେଁ ମୁହେଁ ଚଳି ଆସିଥିବାରୁ ଏ ଦୁଇଟିର ରଚନା ରୀତି ଓ ଭାଷା ଉପରେ ତା'ର ପ୍ରଭାବ ପଡ଼ିଛି ।

ଭାବୀ ବଂଶଧରଙ୍କ ନିକଟରେ ଏହି ମହାକାବ୍ୟ ଦୁଇଟି ପ୍ରାଚୀନ ଭାରତ ସଂପର୍କରେ ଦୁଇଟି ଯଥାର୍ଥ ବିଶ୍ୱକୋଷ ହୋଇ ରହି ଆସିଛି । ଏହା ପ୍ରାଚୀନ ଭାରତୀୟମାନଙ୍କ ସାମାଜିକ ଏବଂ ସାଂସ୍କୃତିକ ଜୀବନ, ରାଜନୈତିକ ସଂଗଠନ ଓ ଦୈନନ୍ଦିନ ଜୀବନଯାତ୍ରାର ବହୁ ବିଚିତ୍ର ଦିଗର କୌତୂହଳୋଦ୍ଦୀପକ ନାନା ଉପାଦାନର ଭଣ୍ଡାର ଭଳି । ଏହା ଅତୀବ ସତ୍ୟ ଯେ, ଭାରତରେ ଏପର୍ଯ୍ୟନ୍ତ ଏହି କାବ୍ୟ ଦୁଇଟି ଜନପ୍ରିୟତା କ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ । ପ୍ରାଚୀନ କାଳରେ ଏବଂ ମଧ୍ୟ ଯୁଗରେ ଗ୍ରନ୍ଥ ଦୁଇଟିର ଖ୍ୟାତି ଭାରତର ସୀମାନ୍ତ ବାହାରେ ବହୁ ଦୂର ପର୍ଯ୍ୟନ୍ତ ବ୍ୟାପି ଥିଲା । ତାହା ବିସ୍ତୃତ ହୋଇଥିଲା ପୂର୍ବ ଏବଂ ଦକ୍ଷିଣ ଏସିଆରେ, ଦୂର ଏବଂ ମଧ୍ୟ ପ୍ରାଚ୍ୟରେ । ବହୁ ୟୁରୋପୀୟ ଭାଷାରେ "ମହାଭାରତ" ଏବଂ "ରାମାୟଣର" ଅନୁବାଦ ବ୍ୟାପକ ଭାବେ ପ୍ରଶଂସା

ଲାଭ କରିଛି । ବିଥୋଭେନ୍, ହାଇନେ, ରୋଦ୍ୟାଁ, ବେଲିନ୍‌ସ୍କି, ଗାନ୍ଧୀ, ରବୀନ୍ଦ୍ରନାଥ ଠାକୁର, ଜବାହାରଲାଲ ନେହରୁଙ୍କ ସମେତ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ସଂସ୍କୃତିର ବହୁ ବିଶିଷ୍ଟ ପ୍ରବକ୍ତା ମହାକାବ୍ୟ ଦୁଇଟି ଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି । ଏହି ଦୁଇ ମହାକାବ୍ୟର ଉପାଖ୍ୟାନାଦି ଭାରତର ସବୁଠାରୁ ପ୍ରିୟ ସାହିତ୍ୟିକ ରଚନାସମୂହର ଅନ୍ତର୍ଭୁକ୍ତ ହୋଇ ରହିଛି ।

## ବିଜ୍ଞାନର ପ୍ରଥମ ଅଙ୍କୁର

ବୈଦିକ ସାହିତ୍ୟରୁ ଯେଉଁସବୁ ତଥ୍ୟ ମିଳିଥାଏ, ତାହା ପାଠକକୁ ଯେ କେବଳ ପ୍ରାଚୀନ ଯୁଗରେ ସାହିତ୍ୟର ବିକାଶ ସମ୍ବନ୍ଧରେ ଏକ ଧାରଣା ଦିଏ, ତା ନୁହଁ । ସେଇ ନିର୍ଦ୍ଦିଷ୍ଟ ଯୁଗରେ ଅର୍ଜିତ ବୈଜ୍ଞାନିକ ଜ୍ଞାନର ସ୍ତର ସଂପର୍କରେ ଏକ ଆଭାସ ସେଇସବୁ ତଥ୍ୟରାଜିରୁ ମିଳିଥାଏ, ଯଦିଓ ସେ ସଂପର୍କିତ ତଥ୍ୟ—ପ୍ରମାଣ ଖଣ୍ଡିତ ଏବଂ ଅସଂପୂର୍ଣ୍ଣ ।

ବୈଦିକ ଯୁଗୀୟ ମଣିଷର ଧର୍ମୀୟ ପୂଜା ପାଠ ସହିତ ଜ୍ୟୋତିର୍ବିଦ୍ୟା ସଂକ୍ରାନ୍ତ କେତେକ ଜ୍ଞାନ ଜଡ଼ିତ ଥିଲା । ବୈଦିକ ଯୁଗର ଭାରତୀୟମାନେ ଯେ କେବଳ ସୂର୍ଯ୍ୟ ଏବଂ ଚନ୍ଦ୍ର ସହିତ ପରିଚିତ ଥିଲେ ତା ନୁହଁ, ଅନ୍ୟାନ୍ୟ ଗ୍ରହର ଅସ୍ତିତ୍ୱ କଥା ସେମାନେ ଜାଣିଥିଲେ । ବସ୍ତୁତଃ, ଗୋଟାଏ ଗୋଟାଏ ପୂରା ନକ୍ଷତ୍ରପୁଞ୍ଜ ସହିତ ସେମାନଙ୍କ ପରିଚିତ ଥିଲା । ସେମାନଙ୍କ ବର୍ଷପଞ୍ଜି ଏବଂ କାଳ ଗଣନା ବିସ୍ତାରିତ ଏବଂ ଯଥାଯଥ ଭାବେ ଲିପିବଦ୍ଧ ମଧ୍ୟ ଥିଲା । ବର୍ଷକୁ ସେମାନେ ବାର ମାସରେ ବିଭକ୍ତ କରିଥିଲେ ଏବଂ ପ୍ରତ୍ୟେକ ମାସ ପାଇଁ ତିରିଶଟି ଦିନ ଧାର୍ଯ୍ୟ କରିଥିଲେ ।

ସେଇ ସୁଦୂର ପ୍ରାଚୀନ କାଳରେ ଗଣିତ କ୍ଷେତ୍ରରେ ଅର୍ଜିତ ଜ୍ଞାନ ସଂପର୍କରେ ଆମେ ବୈଦିକ ସାହିତ୍ୟରୁ ଜାଣିବାକୁ ପାଉଥାଏଁ । ଏ କ୍ଷେତ୍ରରେ ବିଶେଷ କୌତୂହଳୋଦ୍ଦୀପକ ହେଉଛି ଶୁଳ୍ବସୂତ୍ର ବା ସୂତାରେ ମାପିବାର ନିୟମସମୂହ । (ଶୁଳ୍ବ ଅର୍ଥ ପ୍ରଥମେ "ସୂତ୍ରକୁ" ବୁଝାଉଥିଲା) ଏହି ପଦ୍ଧତିରେ ବିଭିନ୍ନ ମାପଚୂପ କରିବାର ରୀତି ପ୍ରଚଳିତ ଥିଲା । ଏ ସଂକ୍ରାନ୍ତ ବୈଦିକ ପାଠରେ ବେଦିର ମାପ, ବିଭିନ୍ନ ରକମର ଜ୍ୟାମିତିକ ଆକୃତି, ଅବୟବ ନିର୍ମାଣ ଓ ହିସାବ କିତାବର ବିଶେଷ ନିୟମ ଓ ପଦ୍ଧତି ଲିପିବଦ୍ଧ ହୋଇଛି ।

ବୈଦିକ ସମାଜର ଏହି ପର୍ଯ୍ୟାୟରେ ଚିକିତ୍ସାବିଜ୍ଞାନ ଅପେକ୍ଷାକୃତ ଉଚ୍ଚ ସ୍ତରରେ ପହଞ୍ଚିଥିଲା । ସେ ସଂପର୍କରେ ଭାରତୀୟମାନେ ବିରାଟ ଜ୍ଞାନର ଅଧିକାରୀ ଥିଲେ । ମଣିଷର ବହୁ ରୋଗ ବ୍ୟାଧି (ଚେରମୂଳ, ବିଶେଷ ଧରଣର ମଲମ ଓ ଜଳଚିକିତ୍ସା, ଆଦି ସାହାଯ୍ୟରେ) ଏବଂ ସେସବୁର ନାନା ଧରଣର ଚିକିତ୍ସା ପଦ୍ଧତି ସେମାନଙ୍କୁ ଜଣାଥିଲା । ପ୍ରଥମ ବୈଦିକ ରଚନାସମୂହ ଅନୁଯାୟୀ ସେତେବେଳେ ସମାଜରେ ପେଶାଦାର ଚିକିତ୍ସକ (ଭିଷକ୍) ଥିଲେ । ବିଶେଷ କରି "ଅଥର୍ବବେଦରେ" ଔଷଧପତ୍ର ସଂପର୍କରେ ବିଶଦ ବିବରଣୀ ଦେଖିବାକୁ ମିଳେ । ରୋଗ ଦୂରୀକରଣର ବିଭିନ୍ନ ମନ୍ତ୍ରତନ୍ତ୍ର ମଧ୍ୟ ସେଥିରେ ଲିପିବଦ୍ଧ ହୋଇଛି । ପୌରାଣିକ ସଂସାରାଚ୍ଛନ୍ନ ଧ୍ୟାନଧାରଣା ସହିତ ମୋଟାମୋଟି ଭାବେ ଯୁକ୍ତିସମ୍ମତ ମନ୍ତବ୍ୟ ଏବଂ ସିଦ୍ଧାନ୍ତାଦି ସେଥିରେ ରହିଛି ।

ବୈଦିକ ଯୁଗର ଭାରତୀୟମାନେ ମଣିଷର ରୋଗବୈରାଗକୁ ଦେବଦେବୀଙ୍କର କ୍ରୋଧ ଏବଂ

ଆରୋଗ୍ୟ ଲାଭକୁ ସେମାନେ ପ୍ରସନ୍ନ ହେବାର ଲକ୍ଷଣ ବୋଲି ବିଗ୍ଭର କରୁଥିଲେ । ବେଦରେ ସ୍ୱର୍ଗର ଚିକିତ୍ସକ ଅଶ୍ୱିନିକୁମାର ଏବଂ "ଭିଷକ୍-ରାଜଦ୍ୱୟ" ବୋଲି ପରିଗଣିତ ବରୁଣ ତଥା ସୋମ ଦେବତାଙ୍କ ପ୍ରତି ନିବେଦିତ କେତେକ ବିଶେଷ ସ୍ତୋତ୍ର ରହିଛି । ଏହି ସମୟରେ ରୋଗର ଚିକିତ୍ସା କ୍ଷେତ୍ରରେ ଯାଦୁବିଦ୍ୟାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ତେବେ ଚେରମୂଳର ଗୁଣାବଳୀ ଏବଂ ଔଷଧ ହିସାବରେ ସେସବୁର ପ୍ରୟୋଗ ପଦ୍ଧତି ସେତେବେଳେ ଜଣାଥିଲା । ସେସବୁ ସଂହିତାଗୁଡ଼ିକରୁ ଜଣାଯାଏ ଯେ, ତତ୍‌କାଳୀନ ଚିକିତ୍ସକମାନେ ଚକ୍ଷୁ, ହୃଦୟ, ପାକସ୍ଥଳୀ, ଫୁସ୍‌ଫୁସ୍ ଏବଂ ଚର୍ମର ବିଭିନ୍ନ ରୋଗ ସହିତ ପରିଚିତ ଥିଲେ । ବୈଦିକ ସାହିତ୍ୟରେ ମାନବ ଦେହର ପ୍ରାୟ ତିନି ଶହ ପର୍ଯ୍ୟନ୍ତ ବିଭିନ୍ନ ଅଙ୍ଗ ଏବଂ ଅଂଶର ନାମ ଦେଖିବାକୁ ମିଳେ ।

ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଓ ଲିଖିତ ରଚନାରୁ ଏହି ଯୁଗର ବୈଷୟିକ ସଂସ୍କୃତି ଏବଂ ବୈଦିକ ଯୁଗର ପ୍ରାଚୀନ ଭାରତୀୟମାନଙ୍କ ପ୍ରାତ୍ୟହିକ ଜୀବନଯାତ୍ରା ସମ୍ବନ୍ଧରେ କେତେକ ଧାରଣା କରାଯାଇ ପାରେ ।

## ଉପନିଷଦସମୂହ ଓ ସେସବୁର ଶିକ୍ଷା

ଭାରତୀୟ ପରମ୍ପରା ଅନୁଯାୟୀ ଉପନିଷଦଗୁଡ଼ିକୁ ବୈଦିକ ସାହିତ୍ୟର ଅନ୍ତିମ ଅଂଶ ହିସାବରେ ଗଣ୍ୟ କରାଯାଇଥାଏ । ଏସବୁଥିରେ ବୈଦିକ ଉପାଖ୍ୟାନ ଏବଂ ଆଗ୍ରର ଅନୁଷ୍ଠାନର ବିଭିନ୍ନ ଧର୍ମୀୟ ଓ ଦାର୍ଶନିକ ବ୍ୟାଖ୍ୟା ସନ୍ନିବିଷ୍ଟ ହୋଇଛି । ଉପନିଷଦଗୁଡ଼ିକ ବେଦାନ୍ତ ବା ବେଦର ଅନ୍ତିମ ଅଂଶ ନାମରେ ପରିଚିତ । ପରେ ଏହି ନାମଟି ଷଡ଼ଦର୍ଶନ ମଧ୍ୟରୁ ଅନ୍ୟତମ ଦାର୍ଶନିକ ଭାବଧାରାର ନାମ ହିସାବରେ ବିଶେଷ ଭାବେ ଗୃହୀତ ହୋଇଥିଲା । ଏହି ଦାର୍ଶନିକ ମତର ପ୍ରବକ୍ତାମାନେ ଅନ୍ୟମାନଙ୍କ ଅପେକ୍ଷା ଆଉରି କଠୋର ଭାବେ ପ୍ରାଚୀନ ଧର୍ମ ଓ ଦର୍ଶନର ଅନୁସରଣକାରୀ ବୋଲି ଦାବୀ କରିଥିଲେ । ସମୟ ବିତି ଗ୍ଭଲିବା ସଙ୍ଗେ ସଙ୍ଗେ ବୈଦିକ ଧର୍ମର ଅନୁଶାସନାଦି କ୍ରମଶଃ ଅଧିକରୁ ଅଧିକ ମୂର୍ତ୍ତ ଏବଂ ସୁନିର୍ଦ୍ଦିଷ୍ଟ ଭାବେ ବିଶଦ ହୋଇ ଉଠିଥିଲା । ଏହାର ସମାନ୍ତରାଳରେ ସମଗ୍ର ଧର୍ମ ବ୍ୟବସ୍ଥା ମଧ୍ୟରୁ କେତେକ ସ୍ୱନିର୍ଭର ଚିନ୍ତା ଭାବନାକୁ ପୃଥକ୍ ଭାବେ ନିରୂପଣ କରିବା କାର୍ଯ୍ୟ ମଧ୍ୟ ଗ୍ଭଲିଥିଲା । ଏହିସବୁ ଚିନ୍ତାଧାରାକୁ ଯେଉଁସବୁ ଗ୍ରନ୍ଥରେ ବିଶଦ ଭାବେ ଉପସ୍ଥାପିତ କରାଯାଇଛି, ସେସବୁ ପରବର୍ତ୍ତୀ କାଳର ବୈଜ୍ଞାନିକ ତତ୍ତ୍ୱ ଆଦିର ପଥ ପ୍ରଦର୍ଶକ ହୋଇ ଉଠିଥିଲେ ।

ଉପନିଷଦଗୁଡ଼ିକ ମୂଳତଃ ଭାରତୀୟ ସଂସ୍କୃତିର ବୈଦିକ ଯୁଗର ବିକାଶର ସର୍ବୋଚ୍ଚ ପର୍ଯ୍ୟାୟ ଏବଂ ତତ୍ ସଙ୍ଗେ ସଙ୍ଗେ ତା'ର ସ୍ୱାଭାବିକ ସୀମାକୁ ମଧ୍ୟ ପ୍ରକଟ କରିଥାଏ । ଉପନିଷଦସମୂହ ରଚିତ ହେବା ପୂର୍ବରୁ ଯେଉଁସବୁ ଧ୍ୟାନଧାରଣାର ଉଦ୍‌ଭବ ଆଉ ବିକାଶ ସମଗ୍ର ଏକ ଯୁଗ ଧରି ଘଟିଥିଲା, ଉପନିଷଦଗୁଡ଼ିକରେ ସାମଗ୍ରିକ ଭାବେ ସେସବୁର ମୌଳିକ ପୁନର୍ବିଗ୍ଭର କରାଯାଇଛି । ମୂଳତଃ ପାରମ୍ପରିକ ଏକ ଦୃଷ୍ଟିକୋଣରୁ ବିଗ୍ଭର ଆରମ୍ଭ କରି ଏହିସବୁ ଗ୍ରନ୍ଥର ରଚୟିତାମାନେ ବୈଦିକ ବିଷୟବସ୍ତୁର ପରିଧିକୁ ବହୁ ଦୂର ଯାଏ ଅତିକ୍ରମ କରି ସମସ୍ୟାବଳୀର ସମାଧାନରେ ଉପନୀତ ହେବାକୁ ସମର୍ଥ ହୋଇଛନ୍ତି । ଏହି ପ୍ରେରଣାପୂର୍ଣ୍ଣ ସିଦ୍ଧିର ଫଳାଫଳକୁ ଲକ୍ଷ୍ୟ କରାଯାଇ ପାରେ, ଭାରତର ପରବର୍ତ୍ତୀ ସାଂସ୍କୃତିକ ବିବର୍ତ୍ତନର ଯୁଗ ପରମ୍ପରାରେ ଦ୍ୱିବିଧ ଭୂମିକା ପାଳନ ମଧ୍ୟରେ ।

ପରବର୍ତ୍ତୀ ପୁରୁଷ ପରମ୍ପରା ନିକଟରେ ଏହିସବୁ ଗ୍ରନ୍ଥ ଏକ ଦିଗରେ ଯେପରି ଅତ୍ୟନ୍ତ ପ୍ରାଚୀନ ଏବଂ ଫଳତଃ ଏକାନ୍ତ ଶ୍ରଦ୍ଧାପୂର୍ଣ୍ଣ ପବିତ୍ର ସଂସ୍କୃତିର ଆକାର ହୋଇ ରହିଛି, ସେଇପରି ଅନ୍ୟ ଦିଗରେ ତାହା ବେଦ ଠାରୁ ଇତି ମଧ୍ୟରେ ବହୁ ଦୂର ଅପସୃତ ନୂତନ ଏକ ଧାରାର ଅନ୍ତର୍ଗତ ଧର୍ମୀୟ ଏବଂ ଦାର୍ଶନିକ ଧ୍ୟାନଧାରଣାର ଅପରିହାର୍ଯ୍ୟ ଅଙ୍ଗରେ ପରିଣତ ହୋଇଥିଲା । ଏହି ଭାବେ ଭାରତ ଇତିହାସରେ ଏହି ଗ୍ରନ୍ଥସବୁ ଇତିହାସର ଦୁଇଟି ଯୁଗ ମଧ୍ୟରେ ଜୀବନ୍ତ ଯୋଗସୂତ୍ରର ପରିଚ୍ଛାୟକ ଏବଂ ଭାରତର ସମଗ୍ର ସାଂସ୍କୃତିକ ଐତିହ୍ୟର ଧାରାବାହିକତାର ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରତୀକ ରୂପେ ଦଣ୍ଡାୟମାନ । "ଉପନିଷଦ" ଶବ୍ଦର ମୂଳ ବ୍ୟୁତ୍ପତ୍ତିର ମୀମାଂସା ଏପର୍ଯ୍ୟନ୍ତ ସଂପୂର୍ଣ୍ଣ ଭାବେ କରାଯାଇ ପାରି ନାହିଁ । ଖୁବ୍ ସମ୍ଭବତଃ ଶବ୍ଦଟି ଶାସ୍ତ୍ରୀୟ ପାଠର ପଦ୍ଧତିଟିର ଇଙ୍ଗିତ ପ୍ରଦାନ କରୁଛି । ଅର୍ଥାତ୍, ଗୁରୁ ତାଙ୍କ ପଦପ୍ରାନ୍ତରେ ଉପବିଷ୍ଟ ଶିଷ୍ୟବର୍ଗଙ୍କ ଆଗରେ ଶାସ୍ତ୍ର ବ୍ୟାଖ୍ୟା କରୁଛନ୍ତି (ଉପ+ନି+ସଦ୍–"ନିକଟରେ ଉପବେଶନ")–ଏହି କଥାଟିର ଇଙ୍ଗିତ । ପରେ, ଅବଶ୍ୟ, "ଉପନିଷଦ" ଶବ୍ଦଟିର ଅର୍ଥ କରାଯାଇଥିଲା, "ଯେଉଁଥିରୁ ଗୂଢ଼ ଜ୍ଞାନ ଲାଭ କରାଯାଏ" । ଉପନିଷଦସମୂହର ସାଧାରଣ ଭାବେ ସ୍ୱୀକୃତ ମୋଟ ସଂଖ୍ୟା ହେଉଛି ୧୦୮ଟି । ତେବେ ଏସବୁ ମଧ୍ୟରୁ ମାତ୍ର ୧୩ଟିକୁ ସବୁଠାରୁ ପ୍ରାଚୀନ ଗ୍ରନ୍ଥ ବୋଲି ମନେ କରାଯାଏ । ଏହି ୧୩ ଖଣ୍ଡ ଉପନିଷଦକୁ କୁହାଯାଏ ମୂଳ ଉପନିଷଦ ବୋଲି ଏବଂ ଏଗୁଡ଼ିକ ଖ୍ରୀ: ପୂ: ସପ୍ତମ ଶତାବ୍ଦୀରୁ ଚତୁର୍ଥ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିଲା ବୋଲି ମନେ କରାଯାଏ । ଏସବୁ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ ଦୁଇଟି "ବୃହଦାରଣ୍ୟକ" ଓ "ଛାନ୍ଦୋଗ୍ୟ" ହେଉଛି ସର୍ବାପେକ୍ଷା ପୁରାତନ ଏବଂ ପ୍ରକୃତରେ ଯାହାକୁ କହନ୍ତି ଉପନିଷଦ । ଏସବୁ ଗ୍ରନ୍ଥର ଭାଷ୍ୟକାର ସାଧାରଣତଃ କୌଣସି ନା କୌଣସି ଗୁରୁ ବା ଋଷି (ଏବଂ ଏହିସବୁ ଗୁରୁ ସମ୍ଭବତଃ ବାସ୍ତବରେ ବିଭିନ୍ନ ଐତିହାସିକ ବ୍ୟକ୍ତି) । ଗ୍ରନ୍ଥଗୁଡ଼ିକରେ ଲିପିବଦ୍ଧ ଉପଦେଶ ଓ ଆଲୋଚନାସମୂହର ମୁଖ୍ୟ ବକ୍ତବ୍ୟ ହେଉଛି ବେଦସମୂହର ସଠିକ ପାଠୋଦ୍ଧାର । ବେଦସମୂହର ତତ୍କାଳୀନ ଅର୍ଥ ଇତିମଧ୍ୟରେ ଅନ୍ୟମାନଙ୍କ ନିକଟରେ ସୁବିଦିତ ବୋଲି ଧରି ନେଇ ଏବଂ ବେଦଗ୍ରନ୍ଥଗୁଡ଼ିକୁ ରୂପକ ବର୍ଣ୍ଣନା, କିମ୍ବା ପ୍ରକୃତ "ଗୂଢ଼" ଅର୍ଥରେ ପରୋକ୍ଷ ଉଲ୍ଲେଖ ମାତ୍ର ବୋଲି ଗଣ୍ୟ କରି ଉପନିଷଦର ସମସ୍ତ ଗ୍ରନ୍ଥରେ ବୈଦିକ ପାଠର ବ୍ୟାଖ୍ୟା ଏବଂ ଭାଷ୍ୟ ପ୍ରଦାନ କରାଯାଇଛି ।

ମୂଳତଃ, ଉପନିଷଦସମୂହ ହେଉଛି ଏକ ଦାର୍ଶନିକ ମତର ଢାଞ୍ଚା ମଧ୍ୟରେ ବିଶ୍ୱବ୍ରହ୍ମାଣ୍ଡର ରହସ୍ୟକୁ ବ୍ୟାଖ୍ୟା କରିବାର ପ୍ରଥମ ପ୍ରୟାସ । ଉପନିଷଦଗୁଡ଼ିକ ମଧ୍ୟରେ ସ୍ପଷ୍ଟ ଭାବେ ନିର୍ଦ୍ଦିଷ୍ଟ ଏକ ଧାରଣାର ପ୍ରବାହକୁ ଲକ୍ଷ୍ୟ କରାଯାଏ । ପ୍ରତ୍ୟେକ କ୍ଷେତ୍ରରେ ଉପନିଷଦର ରଚୟିତା ଭିନ୍ନ ଭାବେ ଧାରଣାଟିକୁ ପ୍ରକାଶ କଲେ ମଧ୍ୟ ଧାରଣାଟି ମୂଳତଃ ଅପରିବର୍ତ୍ତିତ ରହିଛି । ଅତ୍ୟନ୍ତ ସଂକ୍ଷିପ୍ତ ଭାଷାରେ ଧାରଣାଟିକୁ ସୂତ୍ରାୟିତ କରି ପ୍ରକାଶ କରାଯାଇ ପାରେ ମାତ୍ର ଛଅଟି ଶବ୍ଦରେ: "ଆତ୍ମା ହିଁ ବ୍ରହ୍ମ, ବ୍ରହ୍ମ ହିଁ ଆତ୍ମା" । ଅନେକ ଉପନିଷଦ କେବଳ ଏହି ଉକ୍ତିଟିର ବ୍ୟାଖ୍ୟାରେ ପରିପୂର୍ଣ୍ଣ । ବ୍ୟାଖ୍ୟା ଏବଂ ଆଲୋଚନାର ଧାରଣାଟି ସାଧାରଣତଃ ନିମ୍ନମତେ ହୋଇଛି: ଜଗତ ମୂଳତଃ ଅବ୍ୟାହତ ପରିବର୍ତ୍ତନର ଧାରା ମଧ୍ୟରେ ଅବସ୍ଥିତ ଏବଂ ଏହି ପରିବର୍ତ୍ତନ କେବଳ ମାତ୍ର ବାହାରର ସ୍ଥୂଳ ବସ୍ତୁସମୂହର ରୂପାନ୍ତରଣ ମଧ୍ୟରେ ପ୍ରକାଶ ପାଉ ନାହିଁ, ସମପରିମାଣରେ ପ୍ରକାଶ ପାଉଛି "ଆତ୍ମିକ ଜଗତ" ଉପରେ ତା'ର ପ୍ରଭାବ ବିସ୍ତାର ମଧ୍ୟ ଦେଇ ।

ସୁପ୍ରାଚୀନ ସର୍ବପ୍ରାଣବାଦର ଧ୍ୟାନଧାରଣାରୁ ଆରମ୍ଭ କରି ଉପନିଷଦସମୂହ ତଥାକଥିତ କର୍ମବାଦର ସୂତ୍ର ଉଦ୍‌ଭାବନ କରିଛି । ପରେ ଏହି କର୍ମବାଦ କେବଳ ମାତ୍ର ସନାତନୀ ଧର୍ମମତଗୁଡ଼ିକୁ ନୁହଁ, ଜୈନ ଓ ବୌଦ୍ଧମତଗୁଡ଼ିକୁ ମଧ୍ୟ ପ୍ରଭାବିତ କରିଛି, ସେସବୁ ମଧ୍ୟକୁ ସଞ୍ଚରିତ ହୋଇଛି । କର୍ମବାଦ ଅନୁସାରେ ପ୍ରତ୍ୟେକ ବସ୍ତୁ ନୈତିକ ନିୟମର ନିୟନ୍ତ୍ରଣାଧୀନ; ସବୁ କିଛି ନୈତିକ ନିୟମ ଦ୍ୱାରା ସ୍ଥିରୀକୃତ; ପ୍ରତ୍ୟେକ ବସ୍ତୁର ଅଛି ଆତ୍ମା; ମଣିଷ ଇହଜନ୍ମରେ ଯେଉଁ କର୍ମ କରିଥାଏ, ସେଇ ଅନୁଯାୟୀ ତା ଆତ୍ମାର ପୁନର୍ଜନ୍ମ ନିର୍ଦ୍ଧାରିତ ହୋଇଥାଏ; ଯେଉଁ ଲୋକ ନୀତି ବିରୁଦ୍ଧରେ କାମ କରି ନିଜକୁ ହେୟ ଏବଂ ଶ୍ରଦ୍ଧାହୀନ କରିଦିଏ, ସେ ପୁଣି ଜନ୍ମ ନିଏ କୌଣସି ମାନବେତର ପ୍ରାଣୀ, ଗଛବୃଛ ରୂପ ନେଇ, ତେବେ ସତ୍ ଏବଂ ନ୍ୟାୟ ଆଚରଣ ମଧ୍ୟ ଦେଇ ସେ ପୁଣି ନିଜକୁ ମଣିଷ ସ୍ତରକୁ ଉନ୍ନୀତ କରି ପାରେ ।

ପ୍ରତ୍ୟକ୍ଷ ଇନ୍ଦ୍ରିୟଗ୍ରାହ୍ୟ ଜଗତ ଛଡ଼ା ମଧ୍ୟ ଏହି ମତବାଦ (କିଛି ପରିମାଣରେ ଚେଢ଼ାମେଢ଼ା ଢଙ୍ଗରେ) ବେଦବାଦରୁ ଜାତ ଦେବତା ଏବଂ ଦାନବମାନଙ୍କର ସମଗ୍ର ଜଗତକୁ ଆତ୍ମସାତ୍ କରି ନେଇଛି । ଏଥିରେ କୁହାଯାଇଛି ଯେ, ଆତ୍ମା ନିଜକୁ ଦେବତାର ପର୍ଯ୍ୟାୟକୁ ମଧ୍ୟ ଉନ୍ନୀତ କରି ପାରେ, ସ୍ୱର୍ଗର ସୁଖଭୋଗର ଅଧିକାରୀ ହୋଇ ପାରେ, ନରକରେ ନିଜକୁ ଅଧପତିତ କରି ପାରେ । ତେବେ ଆତ୍ମା ଏହିସବୁ ଅବସ୍ଥାରାଜି ମଧ୍ୟରୁ କୌଣସିଟିରେ ଚିରସ୍ଥାୟୀ ନୁହଁ (ଏଠାରେ ଉପନିଷଦଗୁଡ଼ିକ ବୈଦିକ ପରମ୍ପରାଠାରୁ ଲକ୍ଷଣୀୟ ଭାବେ ଦୂରେଇ ଆସିଥିବାର ପ୍ରମାଣ ମିଳେ) । ଏପରିକି ଯେଉଁସବୁ ଦେବତାଙ୍କ ଉଦ୍ଦେଶ୍ୟରେ ଯଜ୍ଞର ଉପଚାର ନିବେଦନ କରାଯାଏ, ସେମାନେ ମଧ୍ୟ ବିଶେଷ ବିଶେଷ ଆତ୍ମାର ବିଶେଷ ଅବସ୍ଥା ଓ ଅବସ୍ଥାନର ନାମ ମାତ୍ର ବ୍ୟତୀତ ଆଉ କିଛି ନୁହନ୍ତି । ଏ କ୍ଷେତ୍ରରେ କର୍ମ ହେଉଛି ସେହି କାରକ ଶକ୍ତି, ଯିଏ ମଣିଷର ଇନ୍ଦ୍ରିୟଗୋଚର ପ୍ରପଞ୍ଚରାଜିର ସମଗ୍ର ବୈଚିତ୍ର୍ୟକୁ ସୁନିର୍ଦ୍ଦିଷ୍ଟ ଏକ ଐକ୍ୟବିଧାୟକ ନୀତି ସୂତ୍ରରେ ବାନ୍ଧି ଦେଇଛି ।

ଉପନିଷଦଗୁଡ଼ିକରେ କର୍ମବାଦ ସଂଗତି ଖୋଜି ପାଇଛି ଚିରନ୍ତନ ପ୍ରବହମାନ ଜୀବନ ବା ସଂସାର ତତ୍ତ୍ୱ ସହିତ । ଏହି ଦୁଇଟି ତତ୍ତ୍ୱ ଏକତ୍ର ଭାବେ ପରେ ଭାରତର ବହୁ ଧର୍ମ ଓ ଦାର୍ଶନିକ ମତର ଅଙ୍ଗୀଭୂତ ହୋଇ ଯାଇଛି ଏବଂ ଏହି ତତ୍ତ୍ୱ ଦୁଇଟିକୁ ସେଠାରେ ଅନେକ ବେଶି ବିଶଦ ଭାବେ ବ୍ୟାଖ୍ୟା କରାଯାଇଛି । ତେବେ ଉପନିଷଦଗୁଡ଼ିକ କେବଳ ପ୍ରପଞ୍ଚରାଜିର ଅନନ୍ତ ଅସ୍ଥିରତା ଓ ପରସ୍ପର ସଂଯୋଗର ବର୍ଣ୍ଣନା ମଧ୍ୟରେ ସୀମିତ ନୁହନ୍ତି, ବରଂ, ଗ୍ରନ୍ଥଗୁଡ଼ିକ ଏହିସବୁ ତତ୍ତ୍ୱ କଥାର ଛକକୁ ସେସବୁର ମତାଦର୍ଶର କେନ୍ଦ୍ରୀୟ ଅଂଶ ଆଡ଼କୁ ଆଗେଇ ଯିବା ପଥରେ ପ୍ରସ୍ତାବନା ହିସାବରେ ବ୍ୟବହାର କରିଛନ୍ତି । ଉପନିଷଦର ଏହି କେନ୍ଦ୍ରୀୟ ତତ୍ତ୍ୱ ହେଉଛି ଆତ୍ମା ବା ପ୍ରତ୍ୟେକ ବ୍ୟକ୍ତି ବା ବସ୍ତୁର ଆଭ୍ୟନ୍ତରୀଣ ସତ୍ତା ସହିତ ବ୍ରହ୍ମ ବା ବିଶ୍ୱବ୍ରହ୍ମାଣ୍ଡର ନୈର୍ବ୍ୟକ୍ତିକ, ସର୍ବବ୍ୟାପୀ ଦୈବୀ ସାରସତ୍ତାର ଅଭିନ୍ନତା ସାଧନ । ତେବେ ଏହି ମତବାଦ ବିଶ୍ୱସୃଷ୍ଟିର ବହୁ ବୈଚିତ୍ର୍ୟମୟ ସମସ୍ତ ରୂପ ମଧ୍ୟରେ ଏକ ପ୍ରକାରର ଆଦି କାରଣ ସମ୍ଭୂତ ଐକ୍ୟବିଧାନର ନିଛକ ଏକ ପ୍ରୟାସ ମାତ୍ର ନୁହଁ, ଏ ହେଉଛି ଆଗ୍ରହ ଆଚରଣର ସୂକ୍ଷ୍ମାତିସୂକ୍ଷ୍ମ ଭାବେ ବିଶଦୀକୃତ ଏକ ନିୟମାବଳୀର ଭିତ୍ତି ପ୍ରସ୍ତର ଭଳି, ଯା'ର ପ୍ରକୃତି ଓ ଉଦ୍ଦେଶ୍ୟ ମଧ୍ୟରେ ନିଃସନ୍ଦେହରେ ଧର୍ମୀୟ ତାତ୍ପର୍ଯ୍ୟ ନିହିତ ।

ଏକଥା ସ୍ପଷ୍ଟ ଯେ, କେତେକ କ୍ଷେତ୍ରରେ ଉପନିଷଦଗୁଡ଼ିକ ଲକ୍ଷଣୀୟ ଭାବେ ବୈଦିକ ଧ୍ୟାନଧାରଣା ଠାରୁ ଭିନ୍ନ ମତ ପୋଷଣ କରିଛନ୍ତି । କାରଣ, ଉପନିଷଦର ରଚୟିତାମାନେ ବେଦର

ଧ୍ୟାନଧାରଣାକୁ ଧର୍ମୀୟ ବିଚାର ଦୃଷ୍ଟିରୁ ଯଥେଷ୍ଟ ଗଭୀର ବୋଲି ମନେ କରି ପାରି ନଥିଲେ । ବୈଦିକ ପରମ୍ପରାଗତ ବହୁ ଧାରଣାକୁ ଉପନିଷଦଗୁଡ଼ିକରେ ନୂତନ ଦୃଷ୍ଟିକୋଣରୁ ବିଚାର କରାଯାଇଛି, ନୂତନ ଯୁକ୍ତିର ଭିତ୍ତିରେ ବ୍ୟାଖ୍ୟା କରାଯାଇଛି । ବୈଦିକ ଭାରତୀୟମାନେ ଯଜ୍ଞର ପୂଜା ଉପଚାର ନିବେଦନର ବିନିମୟରେ ସୌଭାଗ୍ୟ ଲାଭ ପାଇଁ ବହୁ ପାର୍ଥିବ ଦୋଷଗୁଣଯୁକ୍ତ ସେମାନଙ୍କ ପାରମ୍ପରିକ ଦେବତାମାନଙ୍କୁ ଶ୍ରଦ୍ଧା ଭକ୍ତି ଜଣେଇଛନ୍ତି । କିନ୍ତୁ ଉପନିଷଦସମୂହ ସଂପୂର୍ଣ୍ଣ ଭିନ୍ନ ମତାଦର୍ଶ ଉପସ୍ଥାପିତ କରିଛନ୍ତି । ସେମାନେ କହିଛନ୍ତି, କୌଣସି ବିଶିଷ୍ଟ ବା ନିର୍ଦ୍ଦିଷ୍ଟ ଦେବତା ନାହିଁ, ଠିକ୍ ଯେପରି, ସ୍ଥାନ କିମ୍ବା କାଳର ସୀମା ମଧ୍ୟରେ କୌଣସି ବ୍ୟକ୍ତି-ମଣିଷ ନାହିଁ । ମଣିଷ ମଧ୍ୟ ଅନ୍ୟ ସମସ୍ତ ଜୀବମାନଙ୍କ ଭଳି, ବିଶ୍ୱସୃଷ୍ଟିର ନିରବଚ୍ଛିନ୍ନ ଓ ଶେଷହୀନ ଚକ୍ରର ଅଂଶବିଶେଷ । ପ୍ରତ୍ୟେକଟି ଅଣୁପରମାଣୁରେ ତା'ର ଅବିନାଶ ଅଖଣ୍ଡତା ବିଦ୍ୟମାନ । ଜୀବନର ପ୍ରବାହ ଚିରନ୍ତନ ଏବଂ ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ସଜୀବ ବସ୍ତୁ ହେଉଛନ୍ତି ତା'ର ଅଂଶଭୂତ । ଏହିସବୁ ଅଣୁପରମାଣୁ ମଧ୍ୟରେ ମଣିଷ ହିଁ କେବଳ ଏହି ଜୀବ ପ୍ରବାହର ସାରସତ୍ତାକୁ ଉପଲବ୍ଧି କରିବାକୁ ସମର୍ଥ । ପରିଶେଷରେ ସିଏ ହିଁ କେବଳ ଜୀବନର ସମସ୍ତ ବନ୍ଧନରୁ ଆତ୍ମିକ ମୁକ୍ତି, ମୋକ୍ଷ, ଅର୍ଜନ କରିବାକୁ ସକ୍ଷମ । ତେବେ ଏସବୁ ସତ୍ତ୍ୱେ ମଣିଷକୁ ପୁଣି ଫେରି ଆସିବାକୁ ପଡ଼େ ପାର୍ଥିବ ଅସ୍ତିତ୍ୱ ମଧ୍ୟକୁ ଏବଂ ପୁଣି ଅନ୍ତଃହୀନ ଜନ୍ମଚକ୍ର ମଧ୍ୟରେ ସେ ନିଜ ସ୍ଥାନ ବାଛି ନିଏ ।

ଉପନିଷଦସମୂହର ଆଦର୍ଶ ମଣିଷ ହେଉଛନ୍ତି ସେଇ ସନ୍ନ୍ୟାସୀ, ଯିଏ କୌଣସି ସାଂସାରିକ ବ୍ୟାପାରରେ ହସ୍ତକ୍ଷେପ କରନ୍ତି ନାହିଁ, ସମସ୍ତ ଉତ୍‌ଥାନ ପତନ ଓ ଆବେଗ ଅନୁଭୂତି, ଏପରିକି ଧର୍ମ ବିଷୟରେ ମଧ୍ୟ ଉଦାସୀନ ରହନ୍ତି । ନିଜକୁ ଚତୁର୍ପାର୍ଶ୍ୱସ୍ଥ ସବୁ କିଛିର ଅଂଶ ବୋଲି ବିବେଚନା କଲା ପରେ ଏବଂ ବିଶ୍ୱଜଗତ ସହିତ ନିଜକୁ ଏକାତ୍ମା କରି ନେଇ ପରେ ତାଙ୍କ ପକ୍ଷରେ ଆଉ ଅଧିକ କ'ଣ କାମନା କରିବାର ଥାଇ ପାରେ ? ସେ ପଞ୍ଚମହାଭୂତ ଓ ଦେବତାମାନଙ୍କ ଠାରୁ ଊର୍ଦ୍ଧ୍ୱକୁ ଉଠି ଯାଆନ୍ତି ଏବଂ ସିଏ ହିଁ କେବଳ ଏଭଳି ଏକ ଅସ୍ତିତ୍ୱ ଲାଭ କରି ପାରନ୍ତି ଯାହା କି ବିଶ୍ୱବ୍ରହ୍ମାଣ୍ଡ ଭଳି, କିମ୍ବା ଉପନିଷଦସମୂହ ଯାହାଙ୍କୁ ବିଶ୍ୱବ୍ରହ୍ମାଣ୍ଡର ଚିରନ୍ତନ ପ୍ରତୀକ ବୋଲି ଅଭିହିତ କରିଛି, ସେଇ ବ୍ରହ୍ମ ଭଳି ଶାଶ୍ୱତ ଏବଂ ଅବିନାଶୀ ହୁଅନ୍ତି ।

ଏହିସବୁ ଏବଂ ଆଉରି ବହୁ ମତାଦର୍ଶ ଏବଂ ଧ୍ୟାନଧାରଣା ମିଶି ଗଢ଼ି ଉଠିଛି କଠୋର ଭାବେ ନିୟନ୍ତ୍ରିତ ପରିକଳ୍ପନାମୂଳକ ଦାର୍ଶନିକ ପଦ୍ଧତି, ଯାହାକି ଜୀବନ ଠାରୁ ବିଚ୍ଛିନ୍ନ । ଅଥଚ ଏଥି ସଙ୍ଗେ ସଙ୍ଗେ ଉପନିଷଦସମୂହରେ ଯେ କେବଳ ଭାବବାଦୀ ଦୃଷ୍ଟିଭଙ୍ଗି ଓ ମତାଦର୍ଶ ଦେଖିବାକୁ ମିଳେ, ତା ନୁହଁ, ବସ୍ତୁବାଦୀ ଧାରଣା ମଧ୍ୟ ଦେଖିବାକୁ ମିଳେ । ଏହା ଛଡ଼ା, ଉପନିଷଦଗୁଡ଼ିକରେ ଉପରୋକ୍ତ ଦୁଇ ଧାରାର କେବଳ ଜଟିଳ ସହାବସ୍ଥାନ ନୁହଁ, ଅଧିକନ୍ତୁ, ଏହି ଦୁଇ ଧାରା ମଧ୍ୟରେ ବିରୋଧିତା ମଧ୍ୟ ଦେଖିବାକୁ ମିଳେ । ବ୍ରାହ୍ମଣ ଏବଂ ଆରଣ୍ୟକସମୂହରେ ବା ପୂର୍ବବର୍ତ୍ତୀ ରଚନାସମୂହରେ ଏହି ବିରୋଧ ଉପରିଭାଗର ତଳେ ଢାଙ୍କି ହୋଇ ରହିଥିଲା । ଉପନିଷଦସମୂହରେ ଶାଣ୍ଡିଲ୍ୟ, ଯାଜ୍ଞବଲ୍କ୍ୟ ଓ ଉଦ୍ଦାଳକ – ଏହି ତିନିଜଣ ମହର୍ଷିଙ୍କୁ ବିଶେଷ ସମ୍ମାନ ପ୍ରଦର୍ଶନ କରାଯାଇଛି । ଏମାନଙ୍କ ମଧ୍ୟରୁ ପ୍ରଥମ ଦୁଇଜଣଙ୍କୁ ମୂଳ ଭାବବାଦୀ ଦର୍ଶନର ପ୍ରବକ୍ତା ହିସାବରେ, ଅର୍ଥାତ୍, ଆତ୍ମା ଏବଂ ବ୍ରହ୍ମର ସାଯୁଜ୍ୟ ତତ୍ତ୍ୱର ସମର୍ଥକ ବୋଲି ପ୍ରଦର୍ଶନ କରାଯାଇଛି (ଏମାନଙ୍କ ଦ୍ୱାରା ପ୍ରଚାରିତ ମତାଦର୍ଶକୁ ରକ୍ଷଣଶୀଳ ପରମ୍ପରା ଯେ ବାରମ୍ବାର ଉଲ୍ଲେଖ କରିଛି, ତାହା

ଅକାରଣରେ ନୁହଁ) । ଅନ୍ୟ ଦିଗରେ, ମହର୍ଷି ଉଦ୍ଦାଳକ ଏଭଳି ବାସ୍ତବବାଦୀ ଧ୍ୟାନଧାରଣାସବୁ ବ୍ୟକ୍ତ କରିଛନ୍ତି, ଯାହାକି ଏକ ଧରଣର ସ୍ୱତଃସ୍ଫୂର୍ତ୍ତ ବସ୍ତୁବାଦର ଖୁବ୍ ନିକଟବର୍ତ୍ତୀ । ସେ ସଂପୂର୍ଣ୍ଣ ନିଜସ୍ୱ ଢଙ୍ଗରେ ନିର୍ଭୀକତାର ସହିତ ବେଦସମୂହର ବିଶ୍ୱଉତ୍ପତ୍ତି ସଂକ୍ରାନ୍ତ ସୂକ୍ତଗୁଡ଼ିକର ବ୍ୟାଖ୍ୟା ପ୍ରଦାନ କରିଛନ୍ତି ଏବଂ ପ୍ରସଙ୍ଗତଃ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟିରେ ଦେବତାମାନଙ୍କର ବିଶେଷ ଭୂମିକାକୁ ଅସ୍ୱୀକାର କରିଛନ୍ତି । ଉଦ୍ଦାଳକ ପ୍ରକୃତିକୁ ସୃଜନୀ ଶକ୍ତିର ପ୍ରଧାନ ଉତ୍ସ ବୋଲି ଗଣ୍ୟ କରିଛନ୍ତି । ତାଙ୍କ ମତରେ, ବିଶ୍ୱବ୍ରହ୍ମାଣ୍ଡରେ ଯାହା କିଛି ବିଦ୍ୟମାନ (ଏବଂ ଏହା ଅର୍ଥ, ଚେତନା ସମେତ ଭୌତିକ ଏବଂ ମାନସିକ ପ୍ରକ୍ରିୟାସମୂହ, ଉଭୟ), ସେସବୁ ଭୌତିକ ଉପାଦାନରୁ ଜାତ । ଏପରିକି ଆତ୍ମାର ଧାରଣାଟିକୁ ସେ ଭିନ୍ନ ଦୃଷ୍ଟିକୋଣରୁ ବିଗ୍ଭର କରିଛନ୍ତି । ତାଙ୍କ ମତରେ, ଆତ୍ମା ହେଉଛି ଅନ୍ୟ ଭୌତିକ ମାନବିକ ଭିତ୍ତି ।

ଏହା ଅତ୍ୟନ୍ତ ସ୍ୱାଭାବିକ ଯେ, ପ୍ରାଚୀନ ଭାରତୀୟମାନଙ୍କ ମଧ୍ୟରେ ପ୍ରକୃତିବିଜ୍ଞାନ ସଂକ୍ରାନ୍ତ ଜ୍ଞାନର ବିକାଶ ଏବଂ ସାମାଜିକ ଜୀବନରେ ବଡ଼ ଧରଣର ପରିବର୍ତ୍ତନର ପରିଣାମ ସ୍ୱରୂପ ଏହିସବୁ ଧ୍ୟାନଧାରଣା ସୃଷ୍ଟି ହୋଇଥିଲା ।

ସାମଗ୍ରିକ ଭାବେ ବିଗ୍ଭର କଲେ, ଉପନିଷଦସମୂହର ଅବଧାରଣାଗୁଡ଼ିକ ଭାରତର ପରବର୍ତ୍ତୀ ସାମଗ୍ରିକ ସାଂସ୍କୃତିକ ବିକାଶକୁ ଗଭୀର ଭାବେ ପ୍ରଭାବିତ କରିଥିଲା ବୋଲି କହିବାକୁ ହେବ ।

ଉପନିଷଦସମୂହର କର୍ମବାଦ ପରବର୍ତ୍ତୀ ଭାରତୀୟ ଧର୍ମସମୂହର ଅନ୍ୟତମ ମୂଳ ସିଦ୍ଧାନ୍ତରେ ପରିଣତ ହୋଇଥିଲା । ତା'ଛଡ଼ା ଏହି ବିଶେଷ ମତବାଦଟିର ସୁନିର୍ଦ୍ଦିଷ୍ଟ ସାମାଜିକ ତାତ୍ପର୍ଯ୍ୟ ମଧ୍ୟ କମ୍ ନୁହେଁ । କାରଣ ମଣିଷର ସମସ୍ତ ଦୁଃଖକଷ୍ଟ ଓ ଦୁର୍ଦ୍ଦଶାର ପଛରେ ଥିବା କାରଣ କ'ଣ, ଏହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଟିର ଉତ୍ତର ଏହା ପ୍ରଦାନ କରିଥିଲା । ଏହି ମତବାଦ ଅନୁଯାୟୀ ଦେବତାମାନେ ମଣିଷର କାର୍ଯ୍ୟକର୍ମକୁ ବିଗ୍ଭର କରନ୍ତି ନାହିଁ, ମଣିଷ ନିଜେ ତାହା କରିଥାଏ ଏବଂ ମଣିଷର ଦୁଃଖକଷ୍ଟ ଚିରନ୍ତନ ନୁହଁ । ଉପନିଷଦସମୂହରେ ପ୍ରତିପାଦିତ କେତେକ ସିଦ୍ଧାନ୍ତ, ପରେ ବୌଦ୍ଧ ଏବଂ ଜୈନ ଧର୍ମସମୂହର ନୀତି ହିସାବରେ ବ୍ୟବହୃତ ହୋଇଛି (ଏ ସଂପର୍କରେ ଆଲୋଚନା ପରେ ଦ୍ରଷ୍ଟବ୍ୟ) । ପରବର୍ତ୍ତୀ କାଳରେ ବସ୍ତୁବାଦୀ ଦାର୍ଶନିକ ଧାରା – ଲୋକାୟତ – ଉପନିଷଦସମୂହର ସାମଗ୍ରିକ ଶିକ୍ଷା ମଧ୍ୟରେ ଥିବା "ବସ୍ତୁବାଦୀ ଭାବଧାରା" ଦ୍ୱାରା ପୁଷ୍ଟ ହୋଇଥିଲା । ଉପନିଷଦସମୂହରୁ ପ୍ରାପ୍ତ ବହୁ ଧ୍ୟାନଧାରଣା ଭାରତର ମଧ୍ୟ ଯୁଗର ଦାର୍ଶନିକ ପଣ୍ଡିତ ତଥା ଲେଖକମାନଙ୍କୁ ଏବଂ ଆଧୁନିକ ଓ ସମକାଳୀନ ଇତିହାସର ସଂସ୍କୃତିସଂପନ୍ନ ବ୍ୟକ୍ତିମାନଙ୍କୁ ପ୍ରଭାବିତ କରିଥିଲା । ଏହି ପ୍ରଭାବ ପାତ କେବଳ ଭାରତ ମଧ୍ୟରେ ନୁହେଁ, ତା'ର ସୀମାକୁ ଅତିକ୍ରମ କରି ଦୂରଦୂରାନ୍ତ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା ।

# ମଗଧ ଓ ମୌର୍ଯ୍ୟ ଯୁଗରେ ଭାରତ

ଐତିହାସିକମାନେ ପ୍ରାଚୀନ ଭାରତର ଇତିହାସର ପରବର୍ତ୍ତୀ ଯୁଗର ପ୍ରାରମ୍ଭ କାଳ ରୂପେ ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ମଧ୍ୟବର୍ତ୍ତୀ ସମୟକୁ ଗଣ୍ୟ କରିଥାନ୍ତି । ଏହି ସମୟଟି ହେଉଛି ମଗଧ ଏବଂ ମୌର୍ଯ୍ୟ ଯୁଗର ପ୍ରାରମ୍ଭ ଏବଂ ଏହି ଯୁଗଟି ପରବର୍ତ୍ତୀ ପ୍ରାୟ ଚାରି ଶତାବ୍ଦୀ ଧରି ଚାଲିଥିଲା (ବିଶାଳ ମୌର୍ଯ୍ୟ ସାମ୍ରାଜ୍ୟ ଏବଂ ପରବର୍ତ୍ତୀ ଶୁଙ୍ଗ ତଥା କଣ୍ୱ ରାଜବଂଶର ପତନ କାଳ ପର୍ଯ୍ୟନ୍ତ) । କିନ୍ତୁ ଏହି ଯୁଗଟି ମୌର୍ଯ୍ୟ ରାଜବଂଶର ନିଜସ୍ୱ ଅସ୍ତିତ୍ୱ କାଳକୁ ଅତିକ୍ରମ କରି ଆଉରି ବହୁ ଦୀର୍ଘ ସମୟ ପର୍ଯ୍ୟନ୍ତ ବ୍ୟାପି ଥିଲା ଏବଂ ଭାରତର ଐତିହାସିକ ତଥା ସାଂସ୍କୃତିକ ବିକାଶର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ମଧ୍ୟରୁ ଏହା ହେଉଛି ଅନ୍ୟତମ । ମୌର୍ଯ୍ୟ ଯୁଗରେ ଭାରତ ଇତିହାସରେ ପ୍ରଥମ ଏକ ଐକ୍ୟବଦ୍ଧ ରାଷ୍ଟ୍ର ପ୍ରତିଷ୍ଠିତ ହୋଇଥିଲା, ଅର୍ଥନୈତିକ ଓ ସାଂସ୍କୃତିକ ଅଗ୍ରଗତି ଏବଂ ଲିଖିତ ଲିପିର ବିସ୍ତାର ଘଟିଥିଲା । ମୌର୍ଯ୍ୟ ଯୁଗ ମଧ୍ୟ ବୌଦ୍ଧ ଧର୍ମର ଦୃଢ଼ୀକରଣ ଏବଂ ପ୍ରସାର, ବୈଷ୍ଣବ ଏବଂ ଶୈବ ଧର୍ମର ଉଦୟ ଦ୍ୱାରା ବିଶେଷ ଭାବେ ଚିହ୍ନିତ ହୋଇଛି । ଏଇଥି ଯୋଗୁଁ ଏହି ଯୁଗଟିକୁ ବର୍ତ୍ତମାନ ଭାରତରେ ଦେଶର ସାଂସ୍କୃତିକ ଅଗ୍ରଗତି ଓ ପ୍ରାଚୀନ ଭାରତର ରାଷ୍ଟ୍ର ବିକାଶ କ୍ଷେତ୍ରରେ ସନ୍ଧିକ୍ଷଣ ବୋଲି ବିଚାର କରାଯାଇଥାଏ ।

ଏହି ଯୁଗଟି ଏହାର ପୂର୍ବବର୍ତ୍ତୀ ଯୁଗ ଭଳି ନୁହେଁ, କାରଣ ଏହି ସମୟର କାଳ ନିର୍ଦ୍ଧାରକ ବିବରଣୀ ଆଦି ମିଳିଥାଏ । ଯଥା, ବହୁ ଶିଳାଲେଖ (ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ଅନୁଶାସନସମୂହ) ଏବଂ ଲିଖିତ ଗ୍ରନ୍ଥାଦି (ରାଜା ଚନ୍ଦ୍ରଗୁପ୍ତଙ୍କ ରାଜସଭାରେ ନିଯୁକ୍ତ ସେଲ୍ୟୁକସ୍‌ର ରାଜଦୂତ ମେଗାସ୍ଥେନିସ୍‌ଙ୍କ ବିବରଣ) ମିଳିଛି । ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ କୌଟିଲ୍ୟଙ୍କ ଦ୍ୱାରା ରଚିତ ବୋଲି ପରିଚିତ କୂଟନୀତି ବିଷୟକ ଗ୍ରନ୍ଥ – "ଅର୍ଥଶାସ୍ତ୍ର" – ବହୁ ଶତାବ୍ଦୀ ଧରି ମୌର୍ଯ୍ୟ ଯୁଗର ପ୍ରାରମ୍ଭିକ କାଳରେ ଲେଖା ହୋଇଥିଲା ବୋଲି ଧରି ନିଆଯାଇଛି । ନୂଆ ଗବେଷଣା ଫଳରେ, ଅବଶ୍ୟ, ଜଣାଯାଇଛି ଯେ, ବର୍ତ୍ତମାନ ଏହି "ଅର୍ଥଶାସ୍ତ୍ରକୁ" ଆମେ ଯେଉଁ ରୂପରେ ଦେଖୁଁ, ତାହା ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ କାଳରେ ରଚିତ ହୋଇଥିଲା । ତେବେ ଗ୍ରନ୍ଥଟିର ବହୁ ବିବରଣୀ ନିଃସନ୍ଦେହରେ ଆଉରି ପରବର୍ତ୍ତୀ ଯୁଗର, ବିଶେଷ କରି ମୌର୍ଯ୍ୟ ଯୁଗର ରାଷ୍ଟ୍ର ବ୍ୟବସ୍ଥାର ପରିଚୟ ପ୍ରଦାନ କରିଥାଏ । ଏ କ୍ଷେତ୍ରରେ ଶିଳାଲିପି ତଥା ଗ୍ରନ୍ଥରେ ଲିପିବଦ୍ଧ ତଥ୍ୟାଦି ମଧ୍ୟରେ ତୁଳନାମୂଳକ ଆଲୋଚନା ବିଶେଷ ଆଗ୍ରହୋଦ୍ଦୀପକ ।

ପାଲି ଭାଷାରେ ଲିଖିତ ବୌଦ୍ଧ ଧର୍ମଶାସ୍ତ୍ରଗୁଡ଼ିକ ଏହି ଯୁଗକୁ ନେଇ ଗବେଷଣାଗତ

ଇତିହାସବିତ୍‌ମାନଙ୍କ ଉପକାରରେ ଆସିଛି । ଏହିସବୁ ଗ୍ରନ୍ଥରେ ବୌଦ୍ଧ ଧର୍ମମତ ଓ ନୀତିଶାସ୍ତ୍ରର ବ୍ୟାଖ୍ୟା ସାଙ୍ଗକୁ ରହିଛି ପ୍ରାଚୀନ ଭାରତର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନର ପରିଚୟ ପ୍ରଦାନକାରୀ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ । ଅଶୋକଙ୍କର କେତେକ ଶିଳାଲିପିରେ ପାଲି ଧର୍ମଶାସ୍ତ୍ରର ଅନେକ ସୂତ୍ରର ଉଲ୍ଲେଖ ରହିଛି । ସେସବୁଥିରୁ ଜଣାଯାଏ ଯେ, ସେ ଯୁଗରେ ଏହିସବୁ ଶାସ୍ତ୍ରର ଅସ୍ତିତ୍ୱ ଥିଲା । ଏହା ଛଡ଼ା ପ୍ରତ୍ନତତ୍ତ୍ୱବିତ୍‌ମାନେ ଏଯୁଗର ଅନେକ ଆଗ୍ରହୋଦ୍ଦୀପକ ଉପାଦାନ ଆବିଷ୍କାର କରିଛନ୍ତି ।

# ରାଜନୈତିକ ବିକାଶର ନୂତନ ପର୍ଯ୍ୟାୟସମୂହ

## ମଗଧର ଅଭ୍ୟୁଦୟ

ଉତ୍ତର ଭାରତର ଖ୍ରୀଷ୍ଟ ପୂର୍ବ ଷଷ୍ଠ, ପଞ୍ଚମ ଏବଂ ଚତୁର୍ଥ ଶତାବ୍ଦୀର ରାଜନୈତିକ ଇତିହାସ ନାନା ଚମକପ୍ରଦ ଘଟଣାବଳୀରେ ପରିପୂର୍ଣ୍ଣ । ଏହି ଯୁଗରେ ଭାରତବର୍ଷରେ ପ୍ରଥମ ବଡ଼ ବଡ଼ ରାଜ୍ୟସବୁ ଗଠିତ ହୋଇଥିଲେ, ଶକ୍ତି ସଂଗ୍ରହ କରିଥିଲେ ଏବଂ ତା'ପରେ ପ୍ରାଧାନ୍ୟ ଲାଭ କରିବା ପାଇଁ ପରସ୍ପର ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚଳେଇଥିଲେ ।

ଲିଖିତ ବିବରଣୀସମୂହରୁ ଏକଥା ସ୍ପଷ୍ଟ ଜଣାଯାଏ ଯେ, ଏହି ସମୟରେ ରାଜ୍ୟ ରାଜ୍ୟ ମଧ୍ୟରେ ବହୁ ଯୁଦ୍ଧବିଗ୍ରହ ଓ ସାମରିକ ସଂଘର୍ଷ ଘଟିଥିଲା । ରାଜବଂଶଗୁଡ଼ିକ ମଧ୍ୟରେ ପାରିବାରିକ ଦ୍ୱନ୍ଦ୍ୱ ଏବଂ ରାଜତନ୍ତ୍ରୀୟ ରାଜ୍ୟ ଓ ପ୍ରଜାତନ୍ତ୍ରୀୟ ରାଜ୍ୟମାନଙ୍କ ଭିତରେ ଯୁଦ୍ଧ ଆଉ ସଂଘର୍ଷ ତ ଲାଗି ରହିଥିଲା ।

ପ୍ରାରମ୍ଭିକ ବୌଦ୍ଧ ସାହିତ୍ୟର ସାକ୍ଷ୍ୟ ପ୍ରମାଣକୁ ଭିତ୍ତି କରି ଏକଥା କହି ହେବ ଯେ, ଖ୍ରୀଷ୍ଟ ପୂର୍ବ ଷଷ୍ଠ ଶତାବ୍ଦୀର ମଧ୍ୟ ଭାଗ ବେଳକୁ ଉତ୍ତର ଭାରତରେ ଷୋଳଟି ମହାଜନପଦ (ବା "ବୃହତ୍ ରାଜ୍ୟ") ଅବସ୍ଥିତ ଥିଲା । ଏସବୁ ମଧ୍ୟରେ, ଅବଶ୍ୟ, ଉତ୍ତର ଭାରତର ତତ୍‌କାଳୀନ ସମସ୍ତ, ରାଜ୍ୟ ଅନ୍ତର୍ଭୁକ୍ତ ନୁହେଁ । ବସ୍ତୁତଃ, ଏହି ଅଞ୍ଚଳରେ ଥିବା ସମସ୍ତ ରାଜ୍ୟର ସଂଖ୍ୟା ଥିଲା ଷୋଳରୁ ଅନେକ ବେଶି । ଷୋଳ ସଂଖ୍ୟାଟି ଦ୍ୱାରା କେବଳ ସେସବୁ ମଧ୍ୟରେ ବୃହତ୍ତମ ଓ ଶକ୍ତିଶାଳୀ ରାଜ୍ୟଗୁଡ଼ିକୁ କେବଳ ଗଣନା କରାଯାଇଛି ।

ଏ ପ୍ରସଙ୍ଗରେ ଲକ୍ଷଣୀୟ କଥା ହେଉଛି, ଭାରତୀୟ ପରମ୍ପରା ଅନୁଯାୟୀ ଏହି ଷୋଳଟି ମହାଜନପଦ ମଧ୍ୟରୁ ଚୌଦଟି ମହାଜନପଦ ମଧ୍ୟଦେଶରେ ଅବସ୍ଥିତ ଥିଲା ବୋଲି କୁହାଯାଏ । ଅର୍ଥାତ୍, ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଖ୍ରୀଷ୍ଟ ପୂର୍ବ ଷଷ୍ଠ ଏବଂ ପଞ୍ଚମ ଶତାବ୍ଦୀରେ ଭାରତର ରାଜନୈତିକ ମାନଚିତ୍ରରେ ଗାଙ୍ଗେୟ ଉପତ୍ୟକାରେ ଅବସ୍ଥିତ ରାଜ୍ୟଗୁଡ଼ିକର ଭୂମିକା ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଥିଲା । ଏଥିରୁ ଆଉ ଏକ କଥା ସୂଚିତ ହୁଏ ଯେ, ଭାରତର ଏହି ଅଞ୍ଚଳରେ ରାଷ୍ଟ୍ରସରକାର ବିକାଶ ଅପେକ୍ଷାକୃତ ଦ୍ରୁତ ଗତିରେ ଘଟିଥିଲା ।

ଏହି ସମୟରେ ଉତ୍ତର ଭାରତର ରାଜନୈତିକ ରଙ୍ଗମଞ୍ଚରେ ସର୍ବପ୍ରଧାନ ରାଷ୍ଟ୍ର ଶକ୍ତି ଥିଲା ମଗଧ, ଯାହାକୁ କେନ୍ଦ୍ର କରି ଉତ୍ତର ଭାରତର ରାଜ୍ୟମାନେ ଏକୀଭୂତ ହୋଇଥିଲେ । ମଗଧ

ରାଜ୍ୟର ନାମ ପ୍ରଥମ ଉଲ୍ଲେଖ ହୋଇଛି "ଅଥର୍ବବେଦରେ", ପରେ ଏହି ନାମଟି ପ୍ରାଚୀନ ଭାରତର ଅନ୍ୟାନ୍ୟ ବହୁ ବିଚିତ୍ର ପୋଥିପତ୍ରରେ ଦେଖିବାକୁ ମିଳେ ।

ପ୍ରାଚୀନ ରାଜ୍ୟ ମଗଧ (ବର୍ତ୍ତମାନ ଦକ୍ଷିଣ ବିହାରରେ ଅବସ୍ଥିତ ଥିଲା) ଏପରି ଏକ ଅତି ସୁବିଧାଜନକ ଭୌଗୋଳିକ ସ୍ଥାନରେ ଅବସ୍ଥିତ ଥିଲା ଯେ, ଯାପଫଳରେ ତା'ର ସାମରିକ ତଥା ବାଣିଜ୍ୟିକ ବିକାଶର ସମ୍ଭାବନା ଅନେକ ବେଶି ଥିଲା । ଲିଖିତ ପୋଥିପତ୍ରରେ ମଗଧ ଭୂମିର ଉର୍ବରତା କଥା ଦେଖିବାକୁ ମିଳେ । ଏହା ସମ୍ଭବ ହୋଇଥିଲା ଶ୍ରମସାଧ୍ୟ କୃଷିକାର୍ଯ୍ୟ ଫଳରେ । ଭାରତର ଅନ୍ୟାନ୍ୟ ବହୁ ଅଞ୍ଚଳ ସହିତ ମଗଧ ରାଜ୍ୟ ବିପୁଳ ବାଣିଜ୍ୟ ଚଳାଉଥିଲା ଏବଂ ଏହା ବିଭିନ୍ନ ଧାତୁ ସମେତ ବିଚିତ୍ର ଖଣିଜ ସଂପଦରେ ସମୃଦ୍ଧ ଥିଲା । ଏହାର ପ୍ରାଚୀନ ରାଜଧାନୀ ଅବସ୍ଥିତ ଥିଲା ରାଜଗୃହରେ (ପାଲି ଭାଷାରେ ରାଜଗୃହ ନାମଟି ପରିଣତ ହୋଇଛି ରାଜଗେହରେ । ବର୍ତ୍ତମାନ ଏହି ସ୍ଥାନଟି ରାଜଗିର ନାମରେ ପରିଚିତ) ।

ମଗଧ ରାଜବଂଶର ଇତିହାସ ସଂପର୍କରେ ବିଶେଷ ଜଣାଯାଏ ନାହିଁ । ହର୍ଯ୍ୟଙ୍କ ରାଜବଂଶର ପ୍ରତିଷ୍ଠାତା ବିମ୍ବିସାରଙ୍କ (ଖ୍ରୀଷ୍ଟ ପୂର୍ବ ୫୪୫/୫୪୪-୪୯୩) ସଂପର୍କରେ କେତେକ ଐତିହାସିକ ଉଲ୍ଲେଖ ଦେଖିବାକୁ ମିଳେ । ବୌଦ୍ଧ ଗ୍ରନ୍ଥଗୁଡ଼ିକରୁ ଜଣାଯାଏ ଯେ, ସେ ପ୍ରତିବେଶୀ ଅଙ୍ଗ ରାଜ୍ୟ ଅଧିକାର କରିଥିଲେ । ଏହା ଫଳରେ ମଗଧ ରାଜ୍ୟ ଆଉରି ଶକ୍ତିଶାଳୀ ହୋଇ ଉଠିଥିଲା ଏବଂ ତା'ର ସଂପ୍ରସାରଣବାଦୀ ନୀତିର ଭିତ୍ତି ପଡ଼ିଥିଲା । ମଗଧ ସହିତ ପଶ୍ଚିମ ଓ ଉତ୍ତର ଭାରତର ଅନ୍ୟାନ୍ୟ ରାଜ୍ୟର ଯୋଗସୂତ୍ରର ବିଭିନ୍ନ ଉଲ୍ଲେଖ ଐତିହାସିକ ନଜିରଗୁଡ଼ିକରୁ ଦେଖିବାକୁ ମିଳିଥାଏ ।

ବିମ୍ବିସାର ତାଙ୍କ ରାଷ୍ଟ୍ରର ଆଭ୍ୟନ୍ତରୀଣ ଦୃଢ଼ୀକରଣ ପ୍ରତି ଯଥେଷ୍ଟ ଧ୍ୟାନ ଦେଇଥିଲେ । ରାଷ୍ଟ୍ରୀୟ କର୍ମଚାରୀମାନଙ୍କର କାର୍ଯ୍ୟକର୍ମକୁ ଦୃଢ଼ତାର ସହିତ ନିୟନ୍ତ୍ରଣ କରୁଥିଲେ । ବିମ୍ବିସାରଙ୍କ ପୁତ୍ର ଅଜାତଶତ୍ରୁଙ୍କ (ଖ୍ରୀ : ପୂ : ୪୯୩-୪୬୧) ଅମଳରେ ଗଙ୍ଗା ଉପତ୍ୟକାର ସର୍ବାପେକ୍ଷା ଶକ୍ତିଶାଳୀ ରାଜ୍ୟଗୁଡ଼ିକ ମଧ୍ୟରୁ ଅନ୍ୟତମ କୋଶଳର ରାଜା ପ୍ରସେନଜିତ୍‌ଙ୍କ (ପାଲି ନାମ ପସେନଦି) ବିରୁଦ୍ଧରେ ମଗଧର ଭୟଙ୍କର ଯୁଦ୍ଧ ଲାଗିଥିଲା । ଏ ଯୁଦ୍ଧ ଦୀର୍ଘ କାଳ ଚାଲିଲା ପରେ ଶେଷକୁ ମଗଧ ବିଜୟୀ ହୋଇଥିଲା ।

ମଗଧର ଲିଚ୍ଛବି ପ୍ରଜାତନ୍ତ୍ର ସଂଘ ସହିତ ଏକ ଦୁର୍ଦ୍ଧର୍ଷ ଯୁଦ୍ଧ ମଧ୍ୟ ଚାଲିଥିଲା । ଲିଚ୍ଛବି ମଗଧର ଉତ୍ତରରେ ଅବସ୍ଥିତ ଏକ ପ୍ରତିବେଶୀ ରାଜ୍ୟ ଥିଲା । ଗଙ୍ଗା ନଦୀର ଏକ ବିଶେଷ ବନ୍ଦର ଦଖଲ ପାଇଁ ମଗଧ ଖୁବ୍ ଆଗ୍ରହୀ ଥିଲା । କିନ୍ତୁ ତା ପୂର୍ବରୁ ଲିଚ୍ଛବି ରାଜ୍ୟ ଏହି ବନ୍ଦରଟିକୁ ଦଖଲ କରି ନେବାରୁ ଏହି ଯୁଦ୍ଧ ଆରମ୍ଭ ହୋଇ ଗଲା । ଲିଚ୍ଛବିମାନଙ୍କ ଆକ୍ରମଣର ପ୍ରତ୍ୟାଶା କରି ଅଜାତଶତ୍ରୁ ପାଟଳିଗ୍ରାମ ନାମକ ବିଶେଷ ଏକ ଦୁର୍ଗନଗର ନିର୍ମାଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏହା ଛଡ଼ା କୂଟନୀତି ପ୍ରୟୋଗ କରି ସେ ତାଙ୍କର ଜଣେ ରାଜକର୍ମଚାରୀଙ୍କୁ ବୈଶାଳୀରୁ ଲିଚ୍ଛବି ରାଜଧାନୀକୁ ପଠାଇ ଦେଲେ । ସେ ବ୍ୟକ୍ତି ଶତ୍ରୁ ଶିବିରରେ ଅନୈକ୍ୟ ସୃଷ୍ଟି କରିବାକୁ ସଫଳ ହୋଇଥିଲେ । ଏକାଧିକ ଐତିହାସିକ ଦୃଷ୍ଟାନ୍ତ ଅନୁଯାୟୀ ମଗଧ ଏବଂ ଲିଚ୍ଛବି ମଧ୍ୟରେ ଯୁଦ୍ଧ ଷୋଳ ବର୍ଷ ଧରି ଚାଲିଥିଲା ଏବଂ ଶେଷକୁ ମଗଧ ବିଜୟୀ ହେଲା ।

ଜୈନ ଶାସ୍ତ୍ରଗୁଡ଼ିକର ମତାନୁଯାୟୀ ରାଜା ଅଜାତଶତ୍ରୁଙ୍କର ଏହିସବୁ ସାଫଲ୍ୟ ମୂଳରେ ଥିଲା ଅବରୋଧ ଭାଙ୍ଗିବା ପାଇଁ ସେ ଯେଉଁ ଅସ୍ତ୍ରନିକ୍ଷେପକ ବ୍ୟବହାର କରିଥିଲେ । ଏହିସବୁ ନିକ୍ଷେପକ ସାହାଯ୍ୟରେ ତାଙ୍କର ସୈନ୍ୟମାନେ ଶତ୍ରୁ ଉପରକୁ ତୀର ବା ପଥର ନିକ୍ଷେପ କରୁଥିଲେ ।

ଏହି ସମୟରେ ମଗଧର ଆଉ ଏକ ପ୍ରଧାନ ପ୍ରତିପକ୍ଷ ଥିଲା ପଶ୍ଚିମ ଭାରତର ଶକ୍ତିଶାଳୀ ରାଜ୍ୟ ଅବନ୍ତୀ ।

ମଗଧର ପ୍ରଧାନ ପ୍ରତିପକ୍ଷସମୂହ — କୋଶଳ, ଅବନ୍ତୀ ଓ ଲିଛବି ରାଜ୍ୟମାନଙ୍କୁ ନେଇ ଗଠିତ ମେଣ୍ଟ — ମଗଧ ବିରୁଦ୍ଧରେ ସେତେବେଳେ କେବଳ ରାଜନୈତିକ ପ୍ରାଧାନ୍ୟ ପାଇଁ ସଂଗ୍ରାମ ଚଳେଇ ନଥିଲେ । ଅର୍ଥନୈତିକ ପ୍ରାଧାନ୍ୟ ପାଇଁ ସେମାନେ ମଧ୍ୟ ସଂଗ୍ରାମ କରୁଥିଲେ । ଏହି କାରଣରୁ ପ୍ରୟୋଜନୀୟ ବାଣିଜ୍ୟ ପଥ ହିସାବରେ ଗଙ୍ଗା ଏବଂ ତା'ର ଶାଖା ନଦୀଗୁଡ଼ିକ ଉପରେ ନିୟନ୍ତ୍ରଣ ଜାରି କରିବାକୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ବିଗ୍ଧର କରାଯାଉଥିଲା ।

ମଗଧର ଶକ୍ତିକୁ ଆଉରି ସୁଦୃଢ଼ କରିବା ପାଇଁ ଅଜାତଶତ୍ରୁଙ୍କ ପୁତ୍ର ଉଦୟନ (୪୬୧-୪୪୫ ଖ୍ରୀ : ପୂ :) ରାଜ୍ୟର ରାଜଧାନୀ ରାଜଗୃହରୁ ପାଟଳୀପୁତ୍ରକୁ ସ୍ଥାନାନ୍ତରିତ କରିଥିଲେ । ପ୍ରାଚୀନ ଭାରତରେ ଏହି ପାଟଳୀପୁତ୍ର କ୍ରମଶଃ ଏକ ପ୍ରଧାନ କେନ୍ଦ୍ରସ୍ଥଳୀରେ ପରିଣତ ହୋଇଥିଲା । ପରବର୍ତ୍ତୀ କାଳରେ ଅବନ୍ତୀ ରାଜ୍ୟର ଶକ୍ତି ହ୍ରାସ ପାଇଥିଲା । ସେତେବେଳେ ମଗଧ ରାଜସିଂହାସନରେ ଆସୀନ ଥିଲେ ଶିଶୁନାଗ ବଂଶର ରାଜା ଶିଶୁନାଗ । ପରେ ଏହି ରାଜବଂଶ ମଧ୍ୟ ନନ୍ଦ ବଂଶକୁ ପଥ ଛାଡ଼ି ଦେବାକୁ ବାଧ୍ୟ ହୋଇଥିଲା । ନନ୍ଦ ବଂଶ ଅଧୀନରେ ମଗଧ ସାମ୍ରାଜ୍ୟ ବିଶାଳ ଆକାର ଧାରଣ କରିଥିଲା । ଏହିସବୁ ରାଜବଂଶର କାଳାନୁକ୍ରମିକ ଇତିହାସ ସଂପୂର୍ଣ୍ଣ ରୂପେ ଜଣା ପଡ଼େ ନାହିଁ । ଇତିହାସବିଦ୍‌ମାନେ ଏହି ସମୟର ଯେଉଁସବୁ ସନ ତାରିଖ ଆଦି ମାନି ନେଇଛନ୍ତି, ତାହା ଆନୁମାନିକ ସମୟ ଚିହ୍ନ ମାତ୍ର । ଏହି ଯୁଗର ଗବେଷକମାନେ ପ୍ରଧାନତଃ ଯେଉଁସବୁ ତଥ୍ୟ ଉପରେ ନିର୍ଭର କରନ୍ତି, ସେସବୁ ପରବର୍ତ୍ତୀ ସମୟର ସିଂହଳୀ ଘଟଣାପଞ୍ଜିରୁ ମିଳିଛି (ଚତୁର୍ଥ ଏବଂ ପଞ୍ଚମ ଶତାବ୍ଦୀରେ ଲିଖିତ "ଦୀପବଂଶ" ଏବଂ ଷଷ୍ଠ ଶତାବ୍ଦୀରେ ଲିଖିତ "ମହାବଂଶରୁ") ଏବଂ ମଧ୍ୟ ଯୁଗର ପ୍ରାରମ୍ଭରେ ସଂକଳିତ ପୁରାଣଗୁଡ଼ିକରୁ । ସେସବୁ ମଧ୍ୟରୁ ନିମ୍ନଲିଖିତ ତାରିଖରାଜି ସର୍ବାପେକ୍ଷା ଅଧିକ ଗ୍ରହଣଯୋଗ୍ୟ ବୋଲି ମନେ ହୁଏ : ଯଥା, ବିମ୍ବିସାରଙ୍କ ଦ୍ୱାରା ପ୍ରତିଷ୍ଠିତ ହର୍ଯଙ୍କ ରାଜବଂଶ (ଖ୍ରୀ : ପୂ : ୫୪୫ ବା ୫୪୪-୪୧୩), ଶିଶୁନାଗ ରାଜବଂଶ (ଖ୍ରୀ :ପୂ : ୪୧୩-୩୪୫) ଏବଂ ନନ୍ଦ ରାଜବଂଶ (ଖ୍ରୀ : ପୂ : ୩୪୫-୩୧୭) ।

## ଆକିମେନିଡ୍ ସାମ୍ରାଜ୍ୟ ଓ ମ୍ୟାସିଡନ୍‌ର ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ

ଏହି ଯୁଗରେ ଉତ୍ତର-ପଶ୍ଚିମ ଭାରତରେ ପରିସ୍ଥିତି ସଂପୂର୍ଣ୍ଣ ଭିନ୍ନ ଥିଲା । ଗାଙ୍ଗେୟ ଉପତ୍ୟକା ଭଳି ସେଠାରେ ଚତୁର୍ପାର୍ଶ୍ୱସ୍ଥ ଉପଜାତି ଏବଂ ଜନଗୋଷ୍ଠୀଗୁଡ଼ିକୁ ଐକ୍ୟବଦ୍ଧ କଲା ଭଳି ସେପରି କୌଣସି ପରାକ୍ରମଶାଳୀ ରାଜ୍ୟ ନଥିଲା । ସେତେବେଳେ ଏହି ଅଞ୍ଚଳରେ ବହୁ ବିଚିତ୍ର ଭାଷାଭାଷୀ ତଥା ସଂସ୍କୃତିର ବିଭିନ୍ନ ନୃକୁଳ ଗୋଷ୍ଠୀର ଜାତି ଉପଜାତି ବାସ କରୁଥିଲେ । ସେଠାକାର ରାଜ୍ୟଗୁଡ଼ିକ ମଧ୍ୟରେ ସବୁଠାରୁ ଶକ୍ତିଶାଳୀ ଥିଲେ କମ୍ବୋଜ ଏବଂ ଗାନ୍ଧାର । ଏ ଦୁଇଟିକୁ ଷୋଡ଼ଶ "ବୃହତ୍ ରାଜ୍ୟ" ମଧ୍ୟରେ ଗଣ୍ୟ କରାଯାଉଥିଲା ।

ଖ୍ରୀଷ୍ଟ ପୂର୍ବ ଷଷ୍ଠ ଶତାବ୍ଦୀ ଶେଷରେ ଉତ୍ତର-ପଶ୍ଚିମ ଭାରତର କେତେକ ଅଞ୍ଚଳ ଆକିମେନିଡ୍ ସାମ୍ରାଜ୍ୟର ଅଂଶ ଥିଲା ।

ପ୍ରଖ୍ୟାତ ଆକିମେନିଡ୍ ସମ୍ରାଟ ଦାରିୟସ୍‌ଙ୍କ (ଖ୍ରୀ : ପୂ : ୫୨୨ – ୪୮୬) ଶିଳାଲେଖରେ ଗାନ୍ଧାର ଏବଂ ସିନ୍ଧୁ ନଦ ଅଞ୍ଚଳ ତାଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ପ୍ରଦେଶ ବୋଲି ଉଲ୍ଲେଖ କରାଯାଇଛି । ଏହି ଶେଷୋକ୍ତ ସିନ୍ଧୁ ନଦୀ ଅଞ୍ଚଳ ବୋଇଲେ ସ୍ପଷ୍ଟତଃ ସିନ୍ଧୁ ନଦ ବିଧୌତ ମଧ୍ୟ ଏବଂ ଦକ୍ଷିଣ ଅଞ୍ଚଳକୁ ବୁଝାଏ । କିନ୍ତୁ ଏସବୁର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ମଧ୍ୟ ଏହାର ଅନ୍ତର୍ଗତ ଥିବା ସମ୍ଭବ । ଦାରିୟସ୍‌ଙ୍କ ନିର୍ଦ୍ଦେଶରେ "ସିନ୍ଧୁ ନଦର ସମୁଦ୍ର ସଂଗମ ସ୍ଥଳ" ନିର୍ଣ୍ଣୟ କରିବା ସ୍କିଲ୍ୟାକ୍ସଙ୍କର ଅଭିଯାନର ଏକ କୌତୂହଳୋଦ୍ଦୀପକ ବର୍ଣ୍ଣନା ଇତିହାସକାର ହିରୋଦତସ୍‌ଙ୍କ ବିବରଣରୁ ମିଳିଥାଏ । ଏହି ଅଭିଯାନଟି ରଣନୈତିକ ତଥା ବୈଜ୍ଞାନିକ ବିଗ୍ଭରରୁ ଗୁରୁତ୍ୱପୂର୍ଣ୍ଣ ଥିଲା । ଏହା ଫଳରେ ପାରସ୍ୟବାସୀମାନେ ଭାରତୀୟ ଅଞ୍ଚଳର ଜାତି ଗୋଷ୍ଠୀଗୁଡ଼ିକ ତଥା ସେମାନଙ୍କ ଆଗ୍ରର ବ୍ୟବହାର ଏବଂ ସଂସ୍କୃତି ସହିତ ଆଉରି ଘନିଷ୍ଠ ଭାବେ ପରିଚିତ ହୋଇଥିଲେ ।

ଉତ୍ତର-ପଶ୍ଚିମ ଭାରତର ଗୋଟିଏ ମାତ୍ର ଅଂଶ ଆକିମେନିଡ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲେ ମଧ୍ୟ ଏହିସବୁ ଭୂଖଣ୍ଡ ଏବଂ ଦେଶର ଆଉ କେତେକ ଅଞ୍ଚଳ ସେତେବେଳେ ଆକିମେନିଡ୍ ଶାସନାଧୀନ ପାରସ୍ୟର ସାଂସ୍କୃତିକ ତଥା ରାଜନୈତିକ ପ୍ରଭାବ ଦ୍ୱାରା ସ୍ୱଳ୍ପାଧିକ ପ୍ରଭାବିତ ହୋଇଥିଲା ।

ଉତ୍ତର-ପଶ୍ଚିମାଞ୍ଚଳର ଏହିସବୁ ଭୂଖଣ୍ଡ ଜରିଆରେ ଭାରତ ସେତେବେଳେ ନିକଟ ପ୍ରାଚ୍ୟ ଏବଂ ମଧ୍ୟ ଏସିଆର ରାଷ୍ଟ୍ରଗୁଡ଼ିକର ସଂସ୍ପର୍ଶରେ ଆସିଥିଲା । କାରଣ ଏହିସବୁ ଅଞ୍ଚଳର କେତେକ ଅଂଶ ଥିଲା ତତ୍‌କାଳୀନ ଆକିମେନିଡ୍ ସାମ୍ରାଜ୍ୟର ଅନ୍ତର୍ଗତ । ଆକିମେନିଡ୍ ସାମ୍ରାଜ୍ୟର ଅଭିଲେଖର ରାଜଭାଷା ଥିଲା ଆରାମେଇକ୍ । ଏହି ଭାଷା ପରବର୍ତ୍ତୀ କାଳରେ ଏହି ଅଂଶରେ ବେଶ୍ କିଛି କାଳ ପର୍ଯ୍ୟନ୍ତ ବ୍ୟବହୃତ ହୋଇଥିଲା ।

ଭାରତର ଯେଉଁସବୁ ଅଞ୍ଚଳ ଆକିମେନିଡ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା, ସେସବୁ ସମ୍ବନ୍ଧରେ ଅନେକ କଥା ତତ୍‌କାଳୀନ ପାଶ୍ଚାତ୍ୟ ଦେଶରେ ଜଣାଥିଲା । କିନ୍ତୁ ସେ ସମୟର ଗ୍ରୀକ୍ ଲେଖକମାନେ ତତ୍‌କାଳୀନ ପୂର୍ବ ଭାରତ ସଂପର୍କରେ ଏବଂ ଗଙ୍ଗା ଉପତ୍ୟକାରେ ସେତେବେଳେ କି ରାଜନୈତିକ ଘଟଣା ପ୍ରବାହ ଘଟି ଗ୍ଭଲିଥିଲା, ସେ ସଂପର୍କରେ କାର୍ଯ୍ୟତଃ କିଛି ଜାଣି ନଥିଲେ । ହିରୋଦତସ୍‌ଙ୍କ ମତରେ, ଭାରତର ଏହି ଅଂଶ କେବଳ ମରୁଭୂମିରେ ପୂର୍ଣ୍ଣ ଥିଲା । ପାଶ୍ଚାତ୍ୟ ସହିତ ଯୋଗାଯୋଗ (ଏବଂ ଏହା ଭାରତର ପୂର୍ବାଞ୍ଚଳ ସହିତ ମଧ୍ୟ ପ୍ରଯୋଜ୍ୟ) ବହୁ ପରିମାଣରେ ବଢ଼ିଯାଇଥିଲା ମ୍ୟାସିଡନ୍‌ର ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ ପରେ ।

ଆଲେକ୍‌ଜାଣ୍ଡାର ଭାରତରେ ପ୍ରବେଶ କଲା ବେଳକୁ ତାଙ୍କ ଖ୍ୟାତି ପୂର୍ବବର୍ତ୍ତୀ ବଡ଼ ବଡ଼ ସାମରିକ ବିଜୟ ଫଳରେ ତୁଙ୍ଗ ଦେଶରେ ପହଞ୍ଚିଥିଲା ତାଙ୍କର ବିରାଟ ଏବଂ ସୁସଜ୍ଜିତ ସେନାବାହିନୀର ଆଉରି ସଫଳତାର ସୁନିଶ୍ଚିତି ମନେ ହେଉଥାଏ । ତା'ଛଡ଼ା ଉତ୍ତର-ପଶ୍ଚିମ ଭାରତ ସେତେବେଳେ ପରସ୍ପର ଶତ୍ରୁ ଭାବାପନ୍ନ ଉପଜାତିମାନଙ୍କୁ ନେଇ ଗଠିତ ମେଣ୍ଡମାନଙ୍କରେ ବିଭକ୍ତ ଥାଏ । ଛୋଟ ଛୋଟ ରାଜ୍ୟର ରାଜାମାନଙ୍କ ମଧ୍ୟରେ ବି ଐକ୍ୟ ନଥିଲା । ଏହି ଅଞ୍ଚଳର କେତେକ କ୍ଷୁଦ୍ର ରାଜା (ଯଥା, ତକ୍ଷଶିଳାର ରାଜା) ଆଲେକ୍‌ଜାଣ୍ଡାରଙ୍କ ସହିତ ସନ୍ଧିସୂତ୍ରରେ ଆବଦ୍ଧ ହୋଇ ପଡ଼ିଲେ ।

ଏହାର ବିନିମୟରେ ଆଲେକ୍‌ଜାଣ୍ଡାର ସେମାନଙ୍କୁ କିଛି ପରିମାଣରେ ସ୍ୱାୟତ୍ତଶାସନ ଅଧିକାର ଦେବାକୁ ରାଜି ହୋଇଥିଲେ ଏବଂ ସେମାନଙ୍କୁ ନିଜ ନିଜ ରାଜ୍ୟର ରାଜତ୍ୱ ରଖିବାର ଅଧିକାର ପ୍ରଦାନ କରିଥିଲେ । ତେବେ ଭାରତ ଅଭିଯାନର ଆରମ୍ଭରୁ ଆଲେକ୍‌ଜାଣ୍ଡାରଙ୍କୁ ବହୁ ଉପଜାତିଙ୍କର ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏହି ଅଭିଯାନର ବିବରଣୀଦାତାମାନେ ଆଲେକ୍‌ଜାଣ୍ଡାରଙ୍କ ବୀରତ୍ୱପୂର୍ଣ୍ଣ କୀର୍ତ୍ତି ତଥା ସାଫଲ୍ୟର ଜୟ ଗାନରେ ମୁଖର ହେଲେ ମଧ୍ୟ ଭାରତୀୟମାନଙ୍କ ଦ୍ୱାରା ପ୍ରଦର୍ଶିତ ବିସ୍ମୟକର ଅବିଚଳତା, ସେମାନଙ୍କ ବୀରତ୍ୱ ଓ ମୃତ୍ୟୁପଣ ସଂଗ୍ରାମ ପାଇଁ ଅଦମ୍ୟ ଅଭିଳାଷ କଥା ଉଲ୍ଲେଖ ନକରି ରହି ପାରି ନାହାନ୍ତି । ବହୁ ଭାରତୀୟ ଉପଜାତି ଗୋଷ୍ଠୀ ଗ୍ରୀକ୍ ଓ ମ୍ୟାସିଡନୀୟମାନଙ୍କ ନିକଟରେ ବଶ୍ୟତା ସ୍ୱୀକାର କରିବାକୁ ଦ୍ୱିଧାସନ୍ଦେହ ଅସ୍ୱୀକାର କରି ଅସମ ଯୁଦ୍ଧରେ ଆତ୍ମାହୁତି ଦେବାକୁ ଆଗେଇ ଯାଇଥିଲେ—ବସ୍ତୁତଃ, କେତେକ ଯୁଦ୍ଧରେ ସେମାନେ ଜୟ ଲାଭ ମଧ୍ୟ କରିଥିଲେ ।

ଉତ୍ତର-ପଶ୍ଚିମ ଭାରତରେ ସେତେବେଳେ ସବୁଠାରୁ ପରାକ୍ରମଶାଳୀ ରାଜା ଥିଲେ ପୁରୁ । ଆଲେକ୍‌ଜାଣ୍ଡାରଙ୍କ ସହିତ ଯେଉଁସବୁ ରାଜା ରଣାଙ୍ଗନରେ ସମ୍ମୁଖୀନ ହୋଇଥିଲେ, ପୁରୁ ଥିଲେ ସେମାନଙ୍କ ମଧ୍ୟରୁ ଅନ୍ୟତମ । ପୁରୁ ଏବଂ ଆଲେକ୍‌ଜାଣ୍ଡାରଙ୍କ ମଧ୍ୟରେ ଏହି ଯୁଦ୍ଧ ହିଦାସ୍‌ପେସ୍ (ଝେଲମ୍ ବା ବିତସ୍ତା) ନଦୀ କୂଳରେ କେଇ ଦିନ ପର୍ଯ୍ୟନ୍ତ ଚାଲିଥିଲା । ଅର୍‌ରିଆନ୍‌ଙ୍କ ଦ୍ୱାରା ଲିଖିତ "ଆଲେକ୍‌ଜାଣ୍ଡାରଙ୍କ ଆନାବାସିସ୍ (ଅଭିଯାନ) ଇତିହାସରେ" ଉଲ୍ଲିଖିତ ସଂଖ୍ୟାଗୁଡ଼ିକରୁ ଏହି ଯୁଦ୍ଧର ବ୍ୟାପ୍ତି ଏବଂ ପ୍ରଚଣ୍ଡତା ସଂପର୍କରେ ଅନୁମାନ କରାଯାଇ ପାରେ । ଅର୍‌ରିଆନ୍ ଲେଖିଛନ୍ତି, ଅନ୍ତିମ ଦିନର ନିଷ୍ପତ୍ତିମୂଳକ ଯୁଦ୍ଧରେ ତିରିଶ ହଜାର ପଦାତିକ, ଚାରି ହଜାର ଅଶ୍ୱାରୋହୀ ସୈନ୍ୟ ଯୋଗ ଦେଇଥିଲେ ଏବଂ ତିନି ଶହ ରଥ ଏବଂ ଦୁଇ ଶହ ହାତୀ ବ୍ୟବହୃତ ହୋଇଥିଲେ । କେବଳ ମାତ୍ର ଚାତୁର୍ଯ୍ୟପୂର୍ଣ୍ଣ ରଣକୌଶଳ ସାହାଯ୍ୟରେ ଆଲେକ୍‌ଜାଣ୍ଡାର ପୁରୁଙ୍କ ସୈନ୍ୟ ସମାବେଶକୁ ଭେଦ କରିବାକୁ ସକ୍ଷମ ହୋଇଥିଲେ । ସ୍ୱଳ୍ପ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ତାଙ୍କ ଅଶ୍ୱାରୋହୀ ବାହିନୀ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ, ଅଥଚ ଧୀରଗତିସଂପନ୍ନ ଭାରତୀୟ ସୈନ୍ୟମାନଙ୍କୁ ଭୟଭୀତ କରି ଛତ୍ରଭଙ୍ଗ କରି ଦେବାକୁ ସକ୍ଷମ ହୋଇଥିଲେ । ଏହି ଯୁଦ୍ଧରେ ଆଲେକ୍‌ଜାଣ୍ଡାର ଜୟୀ ହୋଇଥିଲେ ସତ, କିନ୍ତୁ ଗୁରୁତର ଭାବେ ଆହତ ହୋଇ ମଧ୍ୟ ରାଜା ପୁରୁ ଶେଷ ପର୍ଯ୍ୟନ୍ତ ଯୁଦ୍ଧ ଚଳେଇ ଯାଇଥିଲେ । ଭାରତୀୟ ରାଜାଙ୍କର ଏହି ଦୁର୍ଜ୍ଜୟ ସାହସ ଆଲେକ୍‌ଜାଣ୍ଡାରଙ୍କ ହୃଦୟକୁ ଜୟ କରି ନେଇଥିଲା । ସେ କେବଳ ପୁରୁଙ୍କ ଜୀବନ ରକ୍ଷା କରି ନଥିଲେ, ତାଙ୍କୁ ତାଙ୍କ ରାଜ୍ୟ ମଧ୍ୟ ଫେରେଇ ଦେଇଥିଲେ ।

ଏହା ପରେ ଆଲେକ୍‌ଜାଣ୍ଡାରଙ୍କ ସେନାବାହିନୀ ପୂର୍ବ ଆଡ଼େ ହିଡ୍ରଓଟ୍ (ରାବୀ ବା ଇରାବତୀ) ନଦୀ ତୀର ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ହିପାସିସ୍ (ଆଧୁନିକ ବିୟାସ ବା ବିପାଶା) ନଦୀ ପାର ହେବା ପାଇଁ ଆଲେକ୍‌ଜାଣ୍ଡାର ତାଙ୍କ ସୈନ୍ୟ ସମାବେଶ ଆରମ୍ଭ କରିଥିଲେ । ତେବେ ତା ପୂର୍ବରୁ ହିପାସିସ୍‌ର ସେପାରିର ଦେଶଟି ସଂପର୍କରେ ସେଠାକାର ରାଜା ଏବଂ ତାଙ୍କ ସେନାବାହିନୀର ଶକ୍ତି ସଂପର୍କରେ ଯଥାସମ୍ଭବ ସବୁକିଛି ଖବର ସଂଗ୍ରହ କରିଥିଲେ । ସ୍ଥାନୀୟ ଛୋଟ ଛୋଟ ରାଜାମାନେ ଆଲେକ୍‌ଜାଣ୍ଡାରଙ୍କୁ ଏଇ ଦେଶଟିର ଐଶ୍ୱର୍ଯ୍ୟ କଥା ଜଣାଇଥିଲେ ଏବଂ ଆଗ୍ରାମ୍ମେସ୍ ନାମକ ଜନୈକ ଭାରତୀୟ ରାଜାଙ୍କ ପରିଚାଳନାଧୀନ ଶକ୍ତିଶାଳୀ ସେନାବାହିନୀର ବିବରଣ ଦେଇଥିଲେ । କିନ୍ତୁ ଏହି

ସମୟରେ ଆଲେକ୍‌ଜାଣ୍ଡାରଙ୍କ ନିଜସ୍ୱ ସେନାବାହିନୀ ମଧ୍ୟରେ ଅସନ୍ତୋଷ ଦେଖା ଦେଇଥିଲା, ସୈନ୍ୟମାନଙ୍କ ମଧ୍ୟରୁ ଅନେକ ଦାବୀ କରୁଥିଲେ ଏହି କ୍ଲାନ୍ତିକର ଯୁଦ୍ଧାଭିଯାନର ଅବସାନ ଘଟାଇବାକୁ । ଶେଷକୁ ଅନିଚ୍ଛା ସତ୍ତ୍ୱେ ଆଲେକ୍‌ଜାଣ୍ଡାରଙ୍କୁ ରାଜି ହେବାକୁ ପଡ଼ିଥିଲା । ସେ ଦିଗ୍ ବିଜୟର ସ୍ୱପ୍ନ ପରିତ୍ୟାଗ କରି ପଶ୍ଚାଦ୍‌ପସରଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଗ୍ରୀକ୍— ମ୍ୟାସିଡନୀୟ ବାହିନୀର ଏହି ପଶ୍ଚାଦ୍‌ପସରଣ ବେଳେ ପୁଣି ନୂଆ କରି ଆଉ ଥରେ ମ୍ୟାସିଡନୀୟ ବିରୋଧୀ ଅଭ୍ୟୁତ୍‌ଥାନ ଏବଂ ସଂଘର୍ଷର ଢେଉ ଉଠିଲା । ଏଥର ଆଲେକ୍‌ଜାଣ୍ଡାରଙ୍କୁ ସୁସଂଗଠିତ ଓ ଶକ୍ତିଶାଳୀ ସେନାବାହିନୀର ଅଧିକାରୀ ମଲ୍ଲମାନଙ୍କର ପ୍ରବଳ ପ୍ରତିରୋଧର ସମ୍ମୁଖୀନ ବିଶେଷ ଭାବେ ହେବାକୁ ପଡ଼ିଥିଲା ।

ଭାରତ ପରିତ୍ୟାଗ କରି ଗଲା ବେଳେ ଆଲେକ୍‌ଜାଣ୍ଡାର ତାଙ୍କର ବିଜିତ ସାମ୍ରାଜ୍ୟକୁ ବିଭିନ୍ନ ପ୍ରଦେଶରେ ବିଭକ୍ତ କରି ତାଙ୍କର ଅଭିଜ୍ଞ ସେନାପତି ଏବଂ କେତେକ ସ୍ଥାନୀୟ ଭାରତୀୟ ରାଜାଙ୍କ ପରିଗ୍ରହଣାଧୀନରେ ରଖି ଯାଇଥିଲେ । ତେବେ ଆଲେକ୍‌ଜାଣ୍ଡାର ଉତ୍ତର-ପଶ୍ଚିମ ଭାରତର ମାତ୍ର କେତେକ ଅଂଶ ଦଖଲ କରିବାକୁ ସମର୍ଥ ହୋଇଥିଲେ ଏବଂ ତାଙ୍କ ସେନାବାହିନୀ ବିରୁଦ୍ଧରେ ପ୍ରତିରୋଧ ସଂପର୍କରେ ଭାରତୀୟ ସୂତ୍ରରୁ କୌଣସି ସମ୍ବାଦ ମିଳେ ନାହିଁ (କେବଳ ଗ୍ରୀକ୍ ଶାସ୍ତ୍ରୀୟ ଲେଖକମାନଙ୍କ ଠାରୁ ଆମେ ଏ ସମ୍ବାଦ ପାଇଥାଏଁ) । ତା ସତ୍ତ୍ୱେ ଭାରତ ଇତିହାସର ଏହି ଯୁଗର ଘଟଣାରାଜି ଉପରେ ଏହି ଯୁଦ୍ଧାଭିଯାନର ପ୍ରଭାବକୁ ତୁଚ୍ଛ ବୋଲି ଉପେକ୍ଷା କରାଯାଇ ପାରେ ନାହିଁ ।

ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନରୁ ଦେଖାଯାଉଛି ଯେ, ତାଙ୍କ ହାତରେ ଭାରତୀୟମାନଙ୍କ ପରାଜୟର ଅନ୍ୟତମ ପ୍ରଧାନ କାରଣ ଥିଲା ଆଭ୍ୟନ୍ତରୀଣ ଐକ୍ୟର ଅଭାବ, ଭାରତୀୟମାନଙ୍କ ମଧ୍ୟରେ ବିରୋଧ । ବିଦେଶୀ ଆକ୍ରମଣକାରୀ ବିରୁଦ୍ଧରେ ଏହି ଯୁଦ୍ଧ ସେମାନଙ୍କୁ ବାଧ୍ୟ କରିଥିଲା ଐକ୍ୟବଦ୍ଧ ହେବାକୁ ।

ଏହି ଯୁଦ୍ଧାଭିଯାନ ଫଳରେ ଭାରତ ସହିତ ବହିର୍ବିଶ୍ୱର ସାଂସ୍କୃତିକ ଏବଂ ବାଣିଜ୍ୟିକ ସଂପର୍କ ଯଥେଷ୍ଟ ପ୍ରସାରିତ ଏବଂ ଦୃଢ଼ ହୋଇଥିଲା । ଭାରତ ଏହା ପରେ ଗ୍ରୀକ୍ ଜଗତ ଉପରେ କ୍ରମ ବର୍ଦ୍ଧମାନ ପ୍ରଭାବ ପାତ କରିବାକୁ ଲଗିଲା ।

## ନନ୍ଦବଂଶୀୟ ରାଷ୍ଟ୍ର

ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ ବେଳେ ମଗଧର ପାଟଳୀପୁତ୍ରରେ ନନ୍ଦ ରାଜବଂଶ ରାଜତ୍ୱ କରୁଥିଲେ । ସ୍ଥାନୀୟ କ୍ଷୁଦ୍ର ରାଜାମାନେ ଆଲେକ୍‌ଜାଣ୍ଡାରଙ୍କୁ ଏହି ନନ୍ଦ ରାଜବଂଶର ସେନାବାହିନୀର ଶକ୍ତି ଏବଂ ରାଜା ଆଗ୍ରାମ୍ନେସ୍‌ଙ୍କ ଲୋକପ୍ରିୟହୀନତା କଥା କହିଥିଲେ । ଏହି ତଥ୍ୟଟି ୟୁରୋପୀୟ ଶାସ୍ତ୍ରୀୟ ଲେଖକମାନଙ୍କ ରଚନାରୁ ମିଳିଥିଲେ ମଧ୍ୟ ନନ୍ଦ ସାମ୍ରାଜ୍ୟ ସଂପର୍କରେ ଅଧିକାଂଶ ତଥ୍ୟ ଆମେ ମୁଖ୍ୟତଃ ପାଇଥାଏ ଭାରତୀୟ ସୂତ୍ରରୁ ।

ଭାରତୀୟ ପରମ୍ପରା ଅନୁସାରେ ନନ୍ଦ ରାଜାମାନେ ଶୂଦ୍ରବଂଶୀୟ ବୋଲି ପରିଚିତ । ସମସ୍ତ କ୍ଷତ୍ରିୟଙ୍କୁ ନିଧନ କରି ଏହି ରାଜବଂଶଟି ସିଂହାସନ ଦଖଲ କରିଥିଲେ ବୋଲି କଥିତ । ଶୁଣିବାକୁ ମିଳେ, ପ୍ରଥମ ନନ୍ଦ ରାଜା ଥିଲେ ଶୂଦ୍ରା ମା ଗର୍ଭରୁ ଓ ଅଜ୍ଞାତ ପିତାର ଔରସରୁ ଜାତ । ଏଥିରୁ ଜଣାଯାଏ, ବ୍ରାହ୍ମଣମାନଙ୍କ ଦ୍ୱାରା ଲିଖିତ ପୋଥିପତ୍ରରେ ଏବଂ ରାଜବଂଶର ଇତି କଥାରେ (ପୁରାଣସମୂହରେ) ନନ୍ଦ ରାଜାମାନେ କାହିଁକି "ନୀଚ କୁଳଜାତ ଓ ନୀଚ ଗୁଣସଂପନ୍ନ ଲୋକ" ବୋଲି ବର୍ଣ୍ଣିତ ହୋଇଛନ୍ତି । ୟୁରୋପୀୟ ଶାସ୍ତ୍ରୀୟ ଲେଖକମାନଙ୍କ ରଚନାରେ ମଧ୍ୟ ନନ୍ଦ ରାଜାମାନଙ୍କର ଏହି ବର୍ଣ୍ଣନା ଦେଖିବାକୁ ମିଳେ । ଏଥିରୁ ଅନୁମାନ କରାଯାଏ, ସେମାନେ ଭାରତୀୟ ପରମ୍ପରା ସହିତ ପରିଚିତ ଥିଲେ । କେତେକ ତଥ୍ୟରୁ ଏକଥା ମଧ୍ୟ ଅନୁମାନ କରାଯାଏ ଯେ, ଗ୍ରୀକ୍ ଲେଖକଗଣ ପ୍ରଥମ ମୌର୍ଯ୍ୟ ରାଜା ଚନ୍ଦ୍ରଗୁପ୍ତ ଏବଂ ତାଙ୍କ ମନ୍ତ୍ରୀ ଚାଣକ୍ୟଙ୍କ ସଂପର୍କିତ ଭାରତୀୟ ଉପାଖ୍ୟାନଗୁଡ଼ିକ ସହିତ ପରିଚିତ ଥିଲେ । ଏହିସବୁ ଉପାଖ୍ୟାନରେ ମୌର୍ଯ୍ୟ ରାଜବଂଶର ପୂର୍ବବର୍ତ୍ତୀ ନନ୍ଦ ବଂଶର ରାଜାମାନଙ୍କ ସଂପର୍କରେ ଉଲ୍ଲେଖ ରହିଛି ।

ନନ୍ଦ ରାଜାମାନଙ୍କର ପ୍ରକାଣ୍ଡ ସେନାବାହିନୀ ସଂପର୍କରେ ସ୍ଥାନୀୟ ଭାରତୀୟ ଏବଂ ଗ୍ରୀକ୍ ଶାସ୍ତ୍ରୀୟ ଲେଖକମାନଙ୍କ ବର୍ଣ୍ଣନାରେ ପ୍ରଚୁର ମେଳ ରହିଥିବାର ଦେଖାଯାଏ, ଡିଓଡୋରାସ୍ ଓ କାର୍ଟିୟାସ୍ ରୁଫାସ୍ ଉଭୟ ଆଗ୍ରାମେସ୍ଙ୍କ ଅଧୀନସ୍ଥ ନନ୍ଦ ସେନାର ବିଭିନ୍ନ ବିଭାଗ ସଂପର୍କରେ ନିମ୍ନୋକ୍ତ ସଂଖ୍ୟାଗୁଡ଼ିକର ଉଲ୍ଲେଖ କରିଛନ୍ତି । ଯଥା, ପଦାତିକ ସୈନ୍ୟ ୨ ଲକ୍ଷ, ଅଶ୍ୱାରୋହୀ ସୈନ୍ୟ ୨୦ ହଜାର, ରଥ ୨ ହଜାର ଏବଂ ୩ରୁ ୪ ହଜାର ପର୍ଯ୍ୟନ୍ତ ହାତୀ । କେତେକ ଭାରତୀୟ ଏବଂ ସିଂହଳୀ ପୋଥିରେ ପ୍ରଥମ ନନ୍ଦ ରାଜାଙ୍କ ନାମ ଉଗ୍ରସେନ ବୋଲି ଉଲ୍ଲେଖ କରାଯାଇଛି, ଅର୍ଥାତ୍, ସେ ଏପରି ଏକ ବ୍ୟକ୍ତି ଥିଲେ, ଯାହାଙ୍କର "ପ୍ରକାଣ୍ଡ ଏବଂ ପରାକ୍ରାନ୍ତ ସେନାବାହିନୀ" ଥିଲେ ।

ଇତିହାସ ସୂତ୍ରରୁ ନନ୍ଦ ରାଜାଙ୍କର ଆଉ ଏକ ବୈଶିଷ୍ଟ୍ୟର କଥା ମଧ୍ୟ ଜାଣିବାକୁ ମିଳେ, ତାହା ହେଉଛି ଧନସଞ୍ଚୟର ଲାଳସା । ସିଂହଳୀ ପୋଥିମାନଙ୍କର ଉଲ୍ଲେଖ ଅଛି ଯେ, ନନ୍ଦ ରାଜାମାନେ ଚମଡ଼ା, କାଠ ଓ ମୂଲ୍ୟବାନ ଖଣିଜ ପଥର ସମେତ ସମସ୍ତ ଧରଣର ବ୍ୟକ୍ତିଗତ ଧନସଂପତ୍ତି ଉପରେ ଶୁଳ୍କ ବସାଇଥିଲେ ।

ସେମାନେ ସେମାନଙ୍କ ବିଶାଳ ସେନାବାହିନୀ ଏବଂ ଶୁଳ୍କ ଆଦାୟର ନିୟମିତ ପଦ୍ଧତିକୁ କାର୍ଯ୍ୟରେ ଲଗାଇ ବୈଦେଶିକ ନୀତି କ୍ଷେତ୍ରରେ ଅତୀବ ସକ୍ରିୟ ନୀତି ଅନୁସରଣ କରୁଥିଲେ । କେତେକ ଆଞ୍ଚଳିକ ରାଜବଂଶର ଶକ୍ତି ଓ ସ୍ୱାଧୀନତାକୁ ସେମାନେ ଧ୍ୱଂସ କରି ଦେଇଥିଲେ ଏବଂ ଦାକ୍ଷିଣାତ୍ୟର ଆଉରି ଦକ୍ଷିଣକୁ ଅନୁପ୍ରବେଶ କରିବାକୁ ସମର୍ଥ ହୋଇଥିଲେ । ଶିଳାଲେଖସୂତ୍ରମାନଙ୍କରୁ ସ୍ପଷ୍ଟ ଭାବେ ଜଣାଯାଏ ଯେ, କଳିଙ୍ଗ ରାଜ୍ୟ (ବର୍ତ୍ତମାନ ଓଡ଼ିଶା), କିମ୍ବା ତା'ର ଅଂଶ ବିଶେଷ ନନ୍ଦ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ।

ନନ୍ଦ ରାଜାମାନଙ୍କର ଏହି ସମସ୍ତ ପ୍ରଚେଷ୍ଟା ଫଳରେ ଯେଉଁ ସାମ୍ରାଜ୍ୟ ଗଢ଼ି ଉଠିଥିଲା, ତାହା ପରବର୍ତ୍ତୀ କାଳରେ ମୌର୍ଯ୍ୟ ରାଜବଂଶ ଅଧୀନରେ ଐକ୍ୟବଦ୍ଧ ଭାରତୀୟ ରାଷ୍ଟ୍ର ପ୍ରତିଷ୍ଠା ଦିଗରେ ଭିତ୍ତି ସ୍ୱରୂପ ହୋଇଥିଲା ।

## ମୌର୍ଯ୍ୟ ସାମ୍ରାଜ୍ୟର ଅଭ୍ୟୁଦୟ

### ଚନ୍ଦ୍ରଗୁପ୍ତ ଓ ବିନ୍ଦୁସାର

ଚନ୍ଦ୍ରଗୁପ୍ତ ଥିଲେ ମୌର୍ଯ୍ୟ ରାଜବଂଶର ପ୍ରଥମ ରାଜା । କିନ୍ତୁ ଏହି କ୍ଷମତା ଆଉ ଅଧିକାର ଲାଭ କରିବାକୁ ଯାଇ ତାଙ୍କୁ ନନ୍ଦ ରାଜବଂଶ ଏବଂ ଭାରତରେ ଆଲେକ୍‌ଜାଣ୍ଡାର ରଖିଯାଇଥିବା ଗ୍ରୀକ୍ ସେନାବାହିନୀ ବିରୁଦ୍ଧରେ ତୁମୁଳ ସଂଗ୍ରାମ କରିବାକୁ ପଡ଼ିଥିଲା । କ୍ଷମତା ଲାଭ ପାଇଁ ଚନ୍ଦ୍ରଗୁପ୍ତଙ୍କୁ ଯେଉଁସବୁ ଯୁଦ୍ଧ କରିବାକୁ ପଡ଼ିଥିଲା, ସେସବୁର ବିଭିନ୍ନ ପର୍ଯ୍ୟାୟର କୌତୂହଳୋଦ୍ଦୀପକ ବର୍ଣ୍ଣନା ଭାରତୀୟ ଓ ଗ୍ରୀକ୍ ଶାସ୍ତ୍ରୀୟ ରଚନାମାନଙ୍କରେ ଦେଖିବାକୁ ମିଳେ । ତେବେ ତାଙ୍କ ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟର କାଳାନୁକ୍ରମ ଓ ତା'ର ସତ୍ୟତା ଏବେ ମଧ୍ୟ ଐତିହାସିକମାନଙ୍କ ମଧ୍ୟରେ ତୁମୁଳ ବିତର୍କର ବିଷୟ ହୋଇ ରହିଛି ।

ମୌର୍ଯ୍ୟ ରାଜବଂଶର ଉତ୍ପତ୍ତି ସଂପର୍କରେ ମଧ୍ୟ ବିଭିନ୍ନ ମତ ପ୍ରଚଳିତ ଅଛି । କେତେକ ମତାନୁଯାୟୀ ନନ୍ଦ ରାଜବଂଶରୁ ମୌର୍ଯ୍ୟମାନଙ୍କର ଉତ୍ପତ୍ତି ହୋଇଥିଲା । କୁହାଯାଏ ଯେ, ସ୍ୱୟଂ ଚନ୍ଦ୍ରଗୁପ୍ତ କାଳେ ଜନୈକ ନନ୍ଦ ରାଜାଙ୍କର ସନ୍ତାନ ଥିଲେ । କିନ୍ତୁ ଅଧିକାଂଶ ପ୍ରାଚୀନ ସୂତ୍ରାନୁଯାୟୀ (ଯଥା, ବୌଦ୍ଧ ଏବଂ ଜୈନ ପୋଥିପତ୍ର) ମୌର୍ଯ୍ୟମାନଙ୍କୁ ମଗଧର ଏକ କ୍ଷତ୍ରିୟ ବଂଶ ହିସାବରେ ପ୍ରଦର୍ଶନ କରାଯାଇଛି ।

ବୌଦ୍ଧ ଏବଂ ଜୈନ ପୋଥିପତ୍ରରେ ଚନ୍ଦ୍ରଗୁପ୍ତଙ୍କ ଯୌବନ ତଥା ତକ୍ଷଶିଳାରେ ଅଧ୍ୟୟନ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । ସେସବୁଥିରୁ ମନେ କରାଯାଏ ଯେ, ସେ ସେଠାରେ ତାଙ୍କ ଗୁରୁ ଏବଂ ଭବିଷ୍ୟତ ଉପଦେଷ୍ଟା କୌଟିଲ୍ୟଙ୍କ (ଚାଣକ୍ୟ) ସଂସ୍ପର୍ଶରେ ଆସିଥିଲେ । ତେବେ ଏହିସବୁ ତଥ୍ୟ କେତେ ଦୂର ନିର୍ଭରଯୋଗ୍ୟ, ତାହା କହିବା କଷ୍ଟକର । ପ୍ରଚଳିତ ପ୍ରାଚୀନ ମତାନୁଯାୟୀ ଚାଣକ୍ୟଙ୍କ ସହିତ ତକ୍ଷଶିଳାରେ ଚନ୍ଦ୍ରଗୁପ୍ତ ମଗଧ ସିଂହାସନ ଦଖଲ କରିବାର ପରିକଳ୍ପନା ରଚନା କରିଥିଲେ । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ଯୁବକ ଚନ୍ଦ୍ରଗୁପ୍ତ ଏବଂ ନନ୍ଦ ରାଜବଂଶ ମଧ୍ୟରେ ସଂଘର୍ଷର ବିବରଣଟି ରୋମାନ୍ ଲେଖକ ଜାଷ୍ଟିନ୍ୟସ୍ (ଖ୍ରୀ : ପୂ : ଦ୍ୱିତୀୟ ଶତାବ୍ଦୀ) ମଧ୍ୟ ପ୍ରଦାନ କରିଛନ୍ତି । ସେ ଏହି ବିବରଣଟି ସଂଗ୍ରହ କରିଥିଲେ ସମ୍ରାଟ ଅଗଷ୍ଟସ୍‌ଙ୍କ ଅମଳର ଜନୈକ ଲେଖକ ପମ୍ପେଇୟାସ୍ ଟ୍ରୋଗାସ୍‌ଙ୍କ ରଚନାରୁ । ଟ୍ରୋଗାସ୍, ସମ୍ଭବତଃ, ଏସବୁ ତଥ୍ୟ ସଂଗ୍ରହ କରିଥିଲେ ଚନ୍ଦ୍ରଗୁପ୍ତଙ୍କ ସଂପର୍କରେ ପ୍ରଚଳିତ ଭାରତୀୟ ଉପାଖ୍ୟାନଗୁଡ଼ିକରୁ ।

ସିଂହଳୀ ଇତିବୃତ୍ତ ସୂତ୍ରରୁ ଜଣାଯାଏ ଯେ, ଚାଣକ୍ୟ ଚନ୍ଦ୍ରଗୁପ୍ତଙ୍କ ସହିତ ମିଶି ସୈନ୍ୟ ସଂଗ୍ରହ କରିବାରେ ଲାଗି ପଡ଼ିଥିଲେ । ଦେଶର କେତେକ ଅଞ୍ଚଳରୁ ସୈନ୍ୟମାନଙ୍କୁ ଭଡ଼ାରେ ଅଣାଯାଇଥିଲା ଏବଂ ଶୀଘ୍ର ଚନ୍ଦ୍ରଗୁପ୍ତଙ୍କ ନେତୃତ୍ୱରେ ଏକ ବିଶାଳ ସୈନ୍ୟବାହିନୀ ଗଠିତ ହୋଇଥିଲା ।

ଗ୍ରୀକ୍ ଲେଖକ ପ୍ଲୁଟାର୍କ (ଖ୍ରୀ : ୪୬-୧୨୦) ଯୁବକ ଚନ୍ଦ୍ରଗୁପ୍ତ ଏବଂ ଆଲେକ୍‌ଜାଣ୍ଡାରଙ୍କ ମଧ୍ୟରେ ଏକ ସାକ୍ଷାତ୍‌କାରର ବର୍ଣ୍ଣନା ଦେଇଛନ୍ତି ।

ଏହି ସାକ୍ଷାତ୍‌କାରଟି ଯଦି ସତ୍ୟ ଘଟଣା ହୋଇଥାଏ, ତେବେ ଚନ୍ଦ୍ରଗୁପ୍ତଙ୍କ ସହିତ ତତ୍‌କାଳୀନ ନନ୍ଦବଂଶୀୟ ରାଜାଙ୍କର ପ୍ରଥମ ସଂଘର୍ଷ ଏହା ପରେ ଘଟିଥିବା ସମ୍ଭବ । ପ୍ଲୁଟାର୍କଙ୍କ ମତରେ, ନନ୍ଦ ରାଜ ଆଗ୍ରାମ୍ମେସ୍‌ଙ୍କ ସଂପର୍କରେ ଚନ୍ଦ୍ରଗୁପ୍ତଙ୍କ ଧାରଣା ମୋଟେ ଅନୁକୂଳ ନଥିଲା । ସେ

ଆଲେକ୍‌ଜାଣ୍ଡାରଙ୍କୁ ଏହି ପ୍ରତିଶ୍ରୁତି ଦେଇ ପ୍ରରୋଚିତ କରିଥିଲେ ଯେ, ସେ ଯଦି ସର୍ବଜନ ଘୃଣିତ ଏହି ଭାରତୀୟ ରାଜା ବିରୁଦ୍ଧରେ ତାଙ୍କ ସୈନ୍ୟଦଳକୁ ପୂର୍ବ ଦିଗକୁ ପରିଚାଳିତ କରନ୍ତି, ତେବେ ଚନ୍ଦ୍ରଗୁପ୍ତ ତାଙ୍କୁ ସମର୍ଥନ କରିବେ । କିନ୍ତୁ ଆମେ ଜାଣେ ଯେ, ଆଲେକ୍‌ଜାଣ୍ଡାର ଚନ୍ଦ୍ରଗୁପ୍ତଙ୍କ ପରାମର୍ଶ ଅନୁଯାୟୀ ଭାରତର ଅଭ୍ୟନ୍ତରକୁ ଆଉ ଅଗ୍ରସର ନହୋଇ ଯେଉଁ ଦିଗରୁ ଆସିଥିଲେ, ସେଇ ପଶ୍ଚିମ ଦିଗକୁ ପୁଣି ଫେରିଯିବାକୁ ବାଧ୍ୟ ହୋଇଥିଲେ ।

ବୌଦ୍ଧ ଏବଂ ଜୈନ ସୂତ୍ରରୁ ଜଣାଯାଏ ଯେ, ନନ୍ଦ ବଂଶକୁ ଉତ୍‌ଖାତ କରିବାର ଚନ୍ଦ୍ରଗୁପ୍ତଙ୍କ ପ୍ରଥମ ପ୍ରୟାସ ବ୍ୟର୍ଥ ହୋଇଥିଲା । କାରଣ, ସେଥର ସେ ତାଙ୍କ ସୈନ୍ୟବାହିନୀର ପଶ୍ଚାଦ୍‌ଭାଗକୁ ନିରାପଦ କରି ପାରି ନଥିଲେ । ସେତେବେଳେ ଚନ୍ଦ୍ରଗୁପ୍ତଙ୍କ ପକ୍ଷରେ ଏକା ସମୟରେ ଗ୍ରୀକ୍ ଏବଂ ମ୍ୟାସିଡନୀୟମାନଙ୍କର ପ୍ରବଳ ସେନାବାହିନୀ ବିରୁଦ୍ଧରେ ସଂଗ୍ରାମ ଚଳେଇବା ସ୍ୱଭାବତଃ ସମ୍ଭବ ନଥିଲା । ଆଲେକ୍‌ଜାଣ୍ଡାରଙ୍କ ସେନାବାହିନୀର ପ୍ରଧାନ ଅଂଶଟି ଭାରତ ପରିତ୍ୟାଗ କଲା ପରେ ଯାଇ ପରିସ୍ଥିତି ଚନ୍ଦ୍ରଗୁପ୍ତଙ୍କ ଅନୁକୂଳରେ ଆସିଥିଲା ।

ଆଲେକ୍‌ଜାଣ୍ଡାର ତାଙ୍କ ଦ୍ୱାରା ବିଜିତ ଭୂଖଣ୍ଡକୁ କେତେକ କ୍ଷେତ୍ରୋପ ବା ପ୍ରଦେଶରେ ଭାଗ କରି ଦେଇ କେତେକ ଅଂଶକୁ ଭାରତୀୟ ରାଜାମାନଙ୍କ ଅଧୀନରେ ଛାଡ଼ି ଯାଇଥିଲେ । କିନ୍ତୁ ଏହାର ସ୍ୱଳ୍ପ କାଳ ପରେ ଏହିସବୁ ପ୍ରଦେଶ ମଧ୍ୟରେ ମ୍ୟାସିଡନୀୟ ଶାସନ ବିରୁଦ୍ଧରେ ବିଦ୍ରୋହ ଦେଖା ଦେଇଥିଲା । କ୍ଷେତ୍ରୋପଗୁଡ଼ିକ ମଧ୍ୟରେ ପରସ୍ପର ବିରୁଦ୍ଧରେ କ୍ଷମତାର ଲଢ଼େଇ ଲାଗିଗଲା । ଏହି କ୍ଷମତାର ଲଢ଼େଇ ବିଶେଷ ଭାବେ ତୀବ୍ର ହୋଇ ଉଠିଥିଲା ଖ୍ରୀ: ପୂ: ୩୨୩ରେ, ସ୍ୱୟଂ ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁ ପରେ । ଏହି ସମୟରେ ଚନ୍ଦ୍ରଗୁପ୍ତ ପଞ୍ଜାବରେ ଥିଲେ । ସ୍ପଷ୍ଟତଃ ସେ ଶେଷ ମ୍ୟାସିଡନୀୟ ସୈନ୍ୟଦଳଗୁଡ଼ିକ ବିରୁଦ୍ଧରେ ସଂଗ୍ରାମ କରିବାକୁ ପ୍ରସ୍ତୁତ ହେଉଥିଲେ । ଏହି ସୈନ୍ୟଦଳଗୁଡ଼ିକ ଏବେ ପୂର୍ବର ସେହି ଶକ୍ତିର ଛାୟାରେ ପର୍ଯ୍ୟବସିତ ହୋଇ ଯାଇଥିଲେ । ଖ୍ରୀ: ପୂ: ୩୧୭ରେ ଶେଷ ଗ୍ରୀକ୍ କ୍ଷେତ୍ରୋପ ଇଉଦେମୋର ଯେତେବେଳେ ଭାରତ ଛାଡି ଚାଲି ଯିବାକୁ ବାଧ୍ୟ ହେଲେ, ସେତେବେଳେ ଚନ୍ଦ୍ରଗୁପ୍ତ କାର୍ଯ୍ୟତଃ ପଞ୍ଜାବର ଅଧୀଶ୍ୱରରେ ପରିଣତ ହେଲେ । ଏହି ସମୟରେ ଚନ୍ଦ୍ରଗୁପ୍ତଙ୍କର ଅନ୍ୟତମ ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ, ଆଲେକ୍‌ଜାଣ୍ଡାରଙ୍କ ଦ୍ୱାରା ପ୍ରଦତ୍ତ ବିଶାଳ ଭୂଖଣ୍ଡର ଅଧିପତି, ପ୍ରବଳପ୍ରତାପୀ ଭାରତୀୟ ରାଜା ପୁରୁ ନିହତ ହୋଇଥିଲେ । ଏହା ଫଳରେ ମଗଧ ସିଂହାସନ ଦଖଲ ଦିଗରେ ଚନ୍ଦ୍ରଗୁପ୍ତ ତାଙ୍କର ସମସ୍ତ ମନୋଯୋଗ ନିଯୁକ୍ତ କଲେ ଏବଂ ଉତ୍ତର-ପଶ୍ଚିମ ଭାରତର କେତେକ ମେଣ୍ଟବଦ୍ଧ ପ୍ରଜାତନ୍ତ୍ରର ସମର୍ଥନ ଲାଭ କରିବାରେ ସୁନିଶ୍ଚିତ ହେବା ପରେ ସେ ନନ୍ଦ ରାଜାଙ୍କ ବିରୁଦ୍ଧରେ ସୈନ୍ୟ ଚାଳନ କରିଥିଲେ ।

ତେଣୁ ଗ୍ରୀକ୍-ମ୍ୟାସିଡନୀୟ ସେନାଦଳ ବିରୁଦ୍ଧରେ ପରିଚାଳିତ ଯୁଦ୍ଧକୁ ଚନ୍ଦ୍ରଗୁପ୍ତଙ୍କ ଅନ୍ତିମ କ୍ଷମତା ଦଖଲ ସଂଗ୍ରାମର, ପାଟଳୀପୁତ୍ର ସିଂହାସନ ଅଧିକାର ଯୁଦ୍ଧର ଏକ ପର୍ଯ୍ୟାୟ ରୂପେ ଗ୍ରହଣ କରାଯାଇ ପାରେ । ବିଦେଶୀ ସେନାବାହିନୀ କବଳରୁ ଭାରତୀୟ ଭୂଖଣ୍ଡସମୂହକୁ ମୁକ୍ତି କରିବା, ଅବଶ୍ୟ, ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ, ତେବେ, ପ୍ରାଚୀନ ଗ୍ରୀସ୍ ଏବଂ ରୋମ୍‌ର ଲେଖକମାନେ କହିଛନ୍ତି ଯେ, ବିଦେଶୀ ସେନାବାହିନୀର ବିତାଡ଼ନ ପରେ ଭାରତକୁ ଦାସ ଶିବିରରେ ପରିଣତ କରି ଚନ୍ଦ୍ରଗୁପ୍ତ ତାଙ୍କ ମୁକ୍ତିଦାତାର ଭୂମିକାକୁ ଲୋପ କରି ଦେଲେ । କ୍ଷମତା ଦଖଲ ପରେ ଯେଉଁ

ଜନସାଧାରଣଙ୍କୁ ସେ ଏକଦା ବିଦେଶୀ ଶାସନ କବଳରୁ ମୁକ୍ତ କରିଥିଲେ, ସେଇମାନଙ୍କୁ ପୁଣି ସେ ଉତ୍ପୀଡ଼ନର ଶିକାରରେ ପରିଣତ କଲେ (ପମ୍ପେଇୟାସ୍ ଟ୍ରୋଗାସ୍‌ରୁ ଜାଷ୍ଟିନ୍ୟସ୍‌ଙ୍କ ଉଦ୍ଧୃତି) ।

ନନ୍ଦ ରାଜାଙ୍କ ବିରୁଦ୍ଧରେ ଚନ୍ଦ୍ରଗୁପ୍ତଙ୍କୁ କଠିନ ସଂଗ୍ରାମ କରିବାକୁ ପଡ଼ିଥିଲା । ନନ୍ଦ ରାଜାଙ୍କର ଥିଲା ବିରାଟ ଏକ ସେନାବାହିନୀ । ବୌଦ୍ଧ ଶାସ୍ତ୍ର "ମିଲିନ୍ଦ-ପହ୍ନଙ୍କ" ବିବରଣ ଅନୁସାରେ ଏହି ନିଷ୍ପତ୍ତିମୂଳକ ଯୁଦ୍ଧରେ ନିହତ ହୋଇଥିଲେ ଦଶ ଲକ୍ଷ ସୈନ୍ୟ, ଦଶ ହଜାର ହାତୀ, ଏକ ଲକ୍ଷ ଘୋଡ଼ା ଓ ପାଞ୍ଚ ହଜାର ରଥାରୋହୀ ଯୋଦ୍ଧା (ଏହି ସଂଖ୍ୟାଗୁଡ଼ିକ ଅବଶ୍ୟ ଖୁବ୍ ଅତିରଞ୍ଜିତ, ତେବେ ସେ ଯୁଦ୍ଧ ଯେ ପ୍ରବଳ ଏବଂ ରକ୍ତରଞ୍ଜିତ ଥିଲା, ସେଥିରେ ସନ୍ଦେହ ନାହିଁ) ।

ଖ୍ରୀଷ୍ଟ ପୂର୍ବ ୩୧୭ ପରେ ଚନ୍ଦ୍ରଗୁପ୍ତଙ୍କ ରାଜ୍ୟାଭିଷେକ ଅନୁଷ୍ଠିତ ହୋଇଥିଲା । ଏହି ତିଥିଟି ଭାରତୀୟ ଏବଂ ଶାସ୍ତ୍ରୀୟ ୟୁରୋପୀୟ ସୂତ୍ରରୁ ମିଳିଥିବା ତଥ୍ୟାଦି ସହିତ ମିଳିଯାଏ, ଯଦିଓ ବହୁ ଇତିହାସକାର ମୌର୍ଯ୍ୟ ରାଜବଂଶର ପ୍ରତିଷ୍ଠା ସମୟକୁ ଆଉରି ପରବର୍ତ୍ତୀ କାଳ ବୋଲି ନିର୍ଦ୍ଧାରଣ କରିଛନ୍ତି ।

ଶାସ୍ତ୍ରୀୟ ୟୁରୋପୀୟ ସୂତ୍ରରୁ ଆମେ ଜାଣିବାକୁ ପାଏଁ, ଚନ୍ଦ୍ରଗୁପ୍ତଙ୍କ ସହିତ ଆଲେକ୍‌ଜାଣ୍ଡାରଙ୍କ ସେନାନାୟକ ଏବଂ ପରେ ସିରିଆର ରାଜା ସେଲ୍ୟୁକସ୍ ନିକାଟରଙ୍କ ଯୁଦ୍ଧ ଏବଂ ପରେ ସନ୍ଧି ବିଗ୍ରହ କଥା । ତେବେ ଏହି ଯୁଦ୍ଧର କାରଣ ସେସବୁ ସୂତ୍ରରୁ ଜଣାଯାଏ ନାହିଁ । ଏ ସଂପର୍କରେ ଆମେ ଖୁବ୍ ବେଶି ହେଲେ, ଅନୁମାନ କରି ପାରେ ଯେ, ଚନ୍ଦ୍ରଗୁପ୍ତ ତାଙ୍କ ନବ ଅର୍ଜିତ ରାଜଶକ୍ତିକୁ ସୁଦୃଢ଼ କରିବା ପରେ ଆଲେକ୍‌ଜାଣ୍ଡାରଙ୍କ ଉତ୍ତରାଧିକାରୀମାନଙ୍କ (ଡିଆଦୋସି) ମଧ୍ୟରେ କ୍ଷମତା ପାଇଁ ଚାଲିଥିବା ସଂଘର୍ଷକୁ ନିଜର ସ୍ୱାର୍ଥ ସାଧନରେ ଲଗାଇଲେ ଏବଂ ସେଲ୍ୟୁକସ୍‌ଙ୍କୁ ଆକ୍ରମଣ କଲେ । ଆଲେକ୍‌ଜାଣ୍ଡାର ଯେଉଁସବୁ ଅଞ୍ଚଳ ଦଖଲ କରିଥିଲେ ଏବଂ ତାଙ୍କ ମୃତ୍ୟୁ ପରେ ସେଲ୍ୟୁକସ୍‌ଙ୍କ ଭାଗରେ ଯାହା ପଡ଼ିଥିଲା, ସେସବୁକୁ ଜୟ କରିବା ପାଇଁ ଚନ୍ଦ୍ରଗୁପ୍ତ ବ୍ୟସ୍ତ ହୋଇ ପଡ଼ିଥିଲେ । ଏହି ଉଦ୍ଦେଶ୍ୟରେ ପରିଚାଳିତ କେତୋଟି ଯୁଦ୍ଧ ପରେ ଯେଉଁ ସନ୍ଧି ସଂପାଦିତ ହୋଇଥିଲା, ତଦନୁସାରେ ଚନ୍ଦ୍ରଗୁପ୍ତ ସେଲ୍ୟୁକସ୍‌ଙ୍କୁ ପାଞ୍ଚ ଶହ ହାତୀ ଉପହାର ଦେଇଥିଲେ । ମୌର୍ଯ୍ୟ ରାଜା ଲାଭ କରିଥିଲେ ପାରୋପାମିସାସ୍, ଆରାକୋସିୟା ଓ ଗେଡ୍ରୋସିଆ ନାମକ ତିନୋଟି ଅଞ୍ଚଳ ।

ସେଲ୍ୟୁକସ୍ ତାଙ୍କ ଦୂତ ମେଗାସ୍ଥେନିସ୍‌ଙ୍କୁ ଚନ୍ଦ୍ରଗୁପ୍ତଙ୍କ ଦରବାରକୁ ପ୍ରେରଣ କରିଥିଲେ । ମେଗାସ୍ଥେନିସ୍ ତାଙ୍କ ପ୍ରବାସର ବିବରଣ "ଇଣ୍ଡିକା" ନାମକ ଗ୍ରନ୍ଥଟିରେ ପ୍ରଦାନ କରିଥିଲେ (ଏହି ଗ୍ରନ୍ଥର କେତେକ ଅଂଶ ମାତ୍ର ମିଳିଛି) ।

ଚନ୍ଦ୍ରଗୁପ୍ତ ଚବିଶ ବର୍ଷ (ସମ୍ଭବତଃ, ଖ୍ରୀ : ପୂ : ୩୧୭ରୁ ୨୯୩ ପର୍ଯ୍ୟନ୍ତ) ରାଜତ୍ୱ କଲା ପରେ ମୃତ୍ୟୁବରଣ କରିଥିଲେ । ତାଙ୍କ ପରେ ତାଙ୍କ ପୁତ୍ର ବିନ୍ଦୁସାର ସିଂହାସନ ଆରୋହଣ କରିଥିଲେ । ଗ୍ରୀକ୍‌ମାନଙ୍କ ନିକଟରେ ସେ ଅମିଟ୍ରୋଚେଟିସ୍ (ସଂସ୍କୃତରେ "ଅମିତ୍ରଘାତକ") ନାମରେ ପରିଚିତ । ମନେ ହୁଏ, ଏହି ଉପାଧିଟି ଦେଶର ତତ୍‌କାଳୀନ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତିର ପରିଚୟ ପ୍ରଦାନ କରେ । ସେତେବେଳେ ଅନେକ ଅଞ୍ଚଳରେ ବିଦ୍ରୋହ ଦେଖା ଦେଇଥିଲା ଏବଂ କେତେକ ତଥ୍ୟ ଅନୁଯାୟୀ ବିନ୍ଦୁସାରଙ୍କ ରାଜତ୍ୱକାଳରେ ଦାକ୍ଷିଣାତ୍ୟର କେତେକ ଭୂଖଣ୍ଡ ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ତେବେ ଏହି ସମୟର କୌଣସି ନିର୍ଭରଯୋଗ୍ୟ ଶିଳାଲିପି ଏପର୍ଯ୍ୟନ୍ତ ମିଳି ନାହିଁ ।

ପିତାଙ୍କ ଭଳି ବିନ୍ଦୁସାର ମଧ୍ୟ ଗ୍ରୀକ୍ ପ୍ରଭାବିତ ମିଶର ଏବଂ ସେଲ୍ୟୁକସ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ସାମ୍ରାଜ୍ୟ ସହିତ ଘନିଷ୍ଠ ସଂପର୍କ ବଜାଏ ରଖିଥିଲେ । ଷ୍ଟ୍ରାବୋଙ୍କ ଲେଖା ଅନୁଯାୟୀ, ଡେଇମାଖୋସ୍ ନାମକ ସେଲ୍ୟୁକସ୍‌ଙ୍କ ସାମ୍ରାଜ୍ୟର ଜଣେ ଦୂତଙ୍କୁ ପାଟଳୀପୁତ୍ରକୁ ପ୍ରେରଣ କରାଯାଇଥିଲା । ସେଲ୍ୟୁକସ୍ ବଂଶୀୟ ରାଜା ଆଣ୍ଟିୟୋକାସ୍ ଓ ଭାରତୀୟ ରାଜା ବିନ୍ଦୁସାରଙ୍କ ମଧ୍ୟରେ ବାର୍ତ୍ତା ବିନିମୟ ପ୍ରସଙ୍ଗରେ ଏକ କୌତୂହଳୋଦ୍ଦୀପକ ଘଟଣା କଥା ଆଥେନାଇୟୋସ୍ ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି ଯେ, ଭାରତୀୟ ରାଜା ଆଣ୍ଟିୟୋକାସ୍‌ଙ୍କୁ ଅନୁରୋଧ କରିଥିଲେ ତାଙ୍କୁ ମିଷ୍ଟ ମଦ୍ୟ, ଶୁଷ୍କ ଡିମ୍ବିରି ଏବଂ ଜଣେ ସଫିଷ୍ଟ (ତର୍କବାଦୀ) ଦାର୍ଶନିକ ପ୍ରେରଣ କରିବା ପାଇଁ । ଏହାର ଉତ୍ତରରେ ବିନ୍ଦୁସାରଙ୍କୁ ଜଣେଇ ଦିଆଯାଇଥିଲା ଯେ, ତାଙ୍କୁ ମଦ୍ୟ ଏବଂ ଡିମ୍ବିରି ନିଶ୍ଚିତ ଭାବେ ପଠାଇ ଦିଆଯିବ, କିନ୍ତୁ ସଫିଷ୍ଟ ଦାର୍ଶନିକ ବିକ୍ରି କରିବାର କୌଣସି ଅଧିକାର ଆଣ୍ଟିୟୋକାସ୍‌ଙ୍କର ନାହିଁ । ତେଣୁ ଦାର୍ଶନିକ ପଠାଇବା ସମ୍ଭବ ହେବ ନାହିଁ ।

ପୁରାଣସମୂହକୁ ଯଦି ବିଶ୍ୱାସ କରାଯାଏ, ତେବେ ବିନ୍ଦୁସାର ପଚିଶ ବର୍ଷ କାଳ (ଖ୍ରୀ : ପୂ: ୨୯୩-୨୬୮) ରାଜତ୍ୱ କରିଥିଲେ । ତାଙ୍କ ମୃତ୍ୟୁ ପରେ କ୍ଷମତା ଦଖଲ ପାଇଁ ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ତୁମୁଳ ପ୍ରତିଦ୍ୱନ୍ଦ୍ୱିତା ଚାଲିଥିଲା । ଅବଶେଷରେ, ପାଟଳୀପୁତ୍ରର ସିଂହାସନରେ ବସିଥିଲେ ଅଶୋକ ।

# ଅଶୋକଙ୍କ ରାଜତ୍ୱକାଳରେ ମୌର୍ଯ୍ୟ ସାମ୍ରାଜ୍ୟ

## ପିୟଦଶି – ଅଶୋକ

ଅଶୋକଙ୍କ ରାଜତ୍ୱକାଳରେ ମୌର୍ଯ୍ୟ ସାମ୍ରାଜ୍ୟ ଶକ୍ତି ଏବଂ ପ୍ରତିପତ୍ତିର ଶିଖର ଦେଶରେ ପହଞ୍ଚିଥିଲା । ସାମ୍ରାଜ୍ୟର ପରିଧି ଏହି ସମୟରେ ଆଉରି ବିସ୍ତୃତ ହୋଇଥିଲା ଏବଂ ପ୍ରାଚୀନ କାଳର ପ୍ରାଚ୍ୟ ଦେଶରେ ବୃହତ୍ତମ ସାମ୍ରାଜ୍ୟଗୁଡ଼ିକ ମଧ୍ୟରେ ଅନ୍ୟତମ ଥିଲା । ଏହାର ଖ୍ୟାତି ମଧ୍ୟ ଭାରତର ସୀମା ଅତିକ୍ରମ କରି ବହୁଦୂର ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ଅଶୋକ ଏବଂ ତାଙ୍କ କାର୍ଯ୍ୟାବଳୀକୁ ନେଇ ବହୁ ଲୋକକଥା ସୃଷ୍ଟି ହୋଇଥିଲା । ସେସବୁ ମଧ୍ୟରେ ବିଶେଷ ଗୁରୁତ୍ୱ ଲାଭ କରିଥିଲା ବୌଦ୍ଧ ଧର୍ମ ପ୍ରଚାର କ୍ଷେତ୍ରରେ ତାଙ୍କ କୀର୍ତ୍ତି କାହାଣୀ । ବୌଦ୍ଧ ଧର୍ମ ସହିତ ଜଡ଼ିତ ଏହି ଉପାଖ୍ୟାନଗୁଡ଼ିକ ଏସିଆର ବିଭିନ୍ନ ଦେଶରେ ଖେଳି ଯାଇଥିଲା ।

ଅଶୋକଙ୍କ ନିର୍ଦ୍ଦେଶକ୍ରମେ ପ୍ରଚାରିତ ବହୁ ଅନୁଶାସନରୁ ଏହି ଯୁଗର ଇତିହାସ ସଂପର୍କରେ ଗୁରୁତ୍ୱପୂର୍ଣ୍ଣ ବହୁ ସଂବାଦ, ତାଙ୍କ ସାମ୍ରାଜ୍ୟ ପରିଚାଳନାର ପଦ୍ଧତି ଏବଂ ମୌର୍ଯ୍ୟ ରାଜବଂଶର ରାଷ୍ଟ୍ରନୀତି ସଂପର୍କରେ ପରିଚୟ ମିଳିଥାଏ । ଅନୁଶାସନଗୁଡ଼ିକରେ ମୌର୍ଯ୍ୟ ସମ୍ରାଟଙ୍କର ନାମ ଦେବନାଂ ପିୟ ପିୟଦଶି, ଅର୍ଥାତ୍, "ଦେବଗଣଙ୍କର ପ୍ରିୟ ରାଜା ପ୍ରିୟଦର୍ଶୀ" ବୋଲି ଉଲ୍ଲିଖିତ ହୋଇଛି । କେବଳ ମାତ୍ର ଦୁଇଟି ଅନୁଶାସନରେ ସମ୍ରାଟଙ୍କର ନାମ ଅଶୋକ ବୋଲି ଉଲ୍ଲିଖିତ ହୋଇଥିବାର ଦେଖାଯାଏ । ପରବର୍ତ୍ତୀ କାଳର କେତେକ ସୂତ୍ରରୁ ଜଣାଯାଏ ଯେ, ସିଂହାସନ ଲାଭ କରିବା ପୂର୍ବରୁ

ବିନ୍ଦୁସାରଙ୍କର ଏହି ପୁତ୍ରଙ୍କ ନାମ ଥିଲା ପିୟଦଶି ବା ପ୍ରିୟଦର୍ଶୀ । ରାଜସିଂହାସନ ଲାଭ କଲା ପରେ ସେ ଅଶୋକ (ଆକ୍ଷରିକ ଅର୍ଥରେ "ଦୁଃଖ ବେଦନା ମୁକ୍ତ") ନାମରେ ପରିଚିତ ହୋଇଥିଲେ ।

କାନ୍ଦାହାରରୁ ମିଳିଥିବା ଅଶୋକଙ୍କ ଅନୁଶାସନର ଗ୍ରୀକ୍ ଭାଷାନ୍ତରଣରେ ସମ୍ରାଟଙ୍କୁ ପିୟଦଶି ବୋଲି ଉଲ୍ଲେଖ କରାଯାଇଛି ।

ଅଶୋକ ଯୁବରାଜ ଥିଲା ବେଳେ ତାଙ୍କ ପିତା ରାଜା ବିନ୍ଦୁସାର ତାଙ୍କୁ କିପରି ପଶ୍ଚିମ ଭାରତ (ଅବନ୍ତୀ ପ୍ରଦେଶ) ଶାସନ କରିବା ପାଇଁ ରାଜଧାନୀ ଉଜ୍ଜୟିନୀକୁ (ବର୍ତ୍ତମାନର ଉଜ୍ଜୟିନ) ପଠାଇଥିଲେ, ସେ ସଂପର୍କରେ ସିଂହଳୀ ଇତିବୃତ୍ତଗୁଡ଼ିକରେ ବର୍ଣ୍ଣିତ ହୋଇଛି । ଉତ୍ତର ଭାରତୀୟ ସୂତ୍ରଗୁଡ଼ିକରୁ ଜଣାଯାଏ ଯେ, ଉତ୍ତର-ପଶ୍ଚିମ ଭାରତର ତକ୍ଷଶିଳା ନଗରରେ ଏହି ରାଜପୁତ୍ର ଏକଦା ଥିଲେ । ବିନ୍ଦୁସାର ତାଙ୍କୁ ପଠାଇଥିଲେ ରାଜକର୍ମଚାରୀମାନଙ୍କ ବିରୁଦ୍ଧରେ ସ୍ଥାନୀୟ ଅଧିବାସୀମାନଙ୍କର ଏକ ବିଦ୍ରୋହ ଦମନ କରିବାକୁ । ଏହି ସୂତ୍ରଗୁଡ଼ିକରୁ ଆଉରି ଜଣାଯାଏ ଯେ, କ୍ଷମତା ଦଖଲ ପାଇଁ ପିୟଦଶି ତାଙ୍କ ଭାଇମାନଙ୍କ ବିରୁଦ୍ଧରେ ତୁମୂଳ ସଂଗ୍ରାମ ଚଳାଇଥିଲେ । ସିଂହଳୀ ଇତିବୃତ୍ତଗୁଡ଼ିକରେ କୁହାଯାଇଛି, ଅଶୋକ ମଗଧ ସିଂହାସନ ଦଖଲ କଲା ପରେ ମଧ୍ୟ ଏହି ଭ୍ରାତୃ ଦ୍ୱନ୍ଦ୍ୱର ଅବସାନ ଘଟି ନଥିଲା । ସେଥିରୁ ଏହା ସ୍ପଷ୍ଟ ଜଣାଯାଏ ଯେ, ଅଶୋକ କ୍ଷମତାରେ ଅଧିଷ୍ଠିତ ହେବାର ଦୀର୍ଘ ଚାରି ବର୍ଷ ପରେ କାହିଁକି ଆନୁଷ୍ଠାନିକ ଭାବେ ତାଙ୍କ ରାଜ୍ୟାଭିଷେକ ସଂପାଦିତ ହୋଇଥିଲା ।

## କଳିଙ୍ଗ ଯୁଦ୍ଧ

ସମ୍ରାଟ ଅଶୋକଙ୍କ ଅନୁଶାସନଗୁଡ଼ିକରେ ଗୋଟିଏ ମାତ୍ର ବଡ଼ ରାଜନୈତିକ ଘଟଣାର ଉଲ୍ଲେଖ ଅଛି, ସେ ହେଉଛି ବଙ୍ଗୋପସାଗରର ପଶ୍ଚିମ ଉପକୂଳବର୍ତ୍ତୀ ଶକ୍ତିଶାଳୀ କଳିଙ୍ଗ (ବର୍ତ୍ତମାନ ଓଡ଼ିଶା) ରାଜ୍ୟ ବିରୁଦ୍ଧରେ ଯୁଦ୍ଧ । ସଂପୃକ୍ତ ଅନୁଶାସନଟିରେ ସମ୍ରାଟ ଅଶୋକ ଘୋଷଣା କରିଛନ୍ତି ଯେ, ଏହି ଯୁଦ୍ଧରେ ଦେଢ଼ ଲକ୍ଷ ଲୋକ ବନ୍ଦୀ ହୋଇଥିଲେ ଏବଂ ଏକ ଲକ୍ଷରୁ ଅଧିକ ଲୋକ ନିହତ ହୋଇଥିଲେ । ସାମରିକ ତଥା ବାଣିଜ୍ୟିକ ଉଭୟ ଦିଗରୁ ଗୁରୁତ୍ୱପୂର୍ଣ୍ଣ ଏହି ବିଜୟ ଓ କଳିଙ୍ଗ ରାଜ୍ୟ ଦଖଲ ମଗଧ ସାମ୍ରାଜ୍ୟକୁ ଦୃଢ଼ତର କରିବାରେ ସହାୟକ ହୋଇଥିଲା ।

ଅଶୋକଙ୍କୁ କଳିଙ୍ଗରେ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଇତିପୂର୍ବରୁ ଏହି ଅଞ୍ଚଳଟି ଥିଲା ନନ୍ଦ ସାମ୍ରାଜ୍ୟର ଅଂଶ । ତେବେ ପରେ କଳିଙ୍ଗ ସ୍ୱାଧୀନତା ଅର୍ଜନ କରିବାକୁ ସମର୍ଥ ହୋଇଥିଲା । କଳିଙ୍ଗ ବିଜୟ ଉପଲକ୍ଷେ ଖୋଦିତ ଏକ ବିଶେଷ ଅନୁଶାସନରେ ସମ୍ରାଟ ଅଶୋକ ନିଜେ ସ୍ୱୀକାର କରିଛନ୍ତି ଯେ, ସାଧାରଣ ଲୋକ ଓ ଅଭିଜାତ ସଂପ୍ରଦାୟ, ଯେଉଁମାନେ ମୌର୍ଯ୍ୟ ଶାସନକୁ ମାନି ନେବାକୁ ଅନିଚ୍ଛୁକ, ସେମାନଙ୍କ ବିରୁଦ୍ଧରେ କଠୋର ଶାସ୍ତିଦାନ ବ୍ୟବସ୍ଥା ଅବଲମ୍ବନ କରାଯାଇଛି । ସାମଗ୍ରିକ ପ୍ରତିରୋଧ ଏତେ ପ୍ରବଳ ଥିଲା ଯେ, ଅଶୋକ ବାଧ୍ୟ ହୋଇଥିଲେ ସଦ୍ୟବିଜିତ ଏହି ଭୂଖଣ୍ଡରେ ଉତ୍ତେଜନା ହ୍ରାସ ପାଇଁ ବିଶେଷ ବ୍ୟବସ୍ଥା ପ୍ରବର୍ତ୍ତନ କରିବାକୁ । ଫଳରେ କଳିଙ୍ଗକୁ ବହୁ ପରିମାଣରେ ସ୍ୱାଧୀନତା ପ୍ରଦାନ କରାଯାଇଥିଲା । ସ୍ୱୟଂ ସମ୍ରାଟ ଅଶୋକ କଳିଙ୍ଗରେ ନିଯୁକ୍ତ ତାଙ୍କ କର୍ମଚାରୀମାନଙ୍କ କାର୍ଯ୍ୟକର୍ମ ଉପରେ ବ୍ୟକ୍ତିଗତ ନିୟନ୍ତ୍ରଣ ରଖିଥିଲେ, ଯଦ୍ୱାରା

କଳିଙ୍ଗର ନାଗରିକମାନଙ୍କୁ ବିନା କାରଣରେ ବନ୍ଦୀ କରା ନଯାଏ ଏବଂ ବିନା କାରଣରେ ନିର୍ଯାତନ ଦିଆ ନଯାଏ ।

ଅନେକ ଐତିହାସିକଙ୍କ ମତରେ, କଳିଙ୍ଗ ଯୁଦ୍ଧ ଅଶୋକଙ୍କୁ ଐକ୍ୟବଦ୍ଧ ଏକ ସାମ୍ରାଜ୍ୟ ପ୍ରତିଷ୍ଠା ଉଦ୍ଦେଶ୍ୟରେ ପରିଗ୍ରହିତ ତାଙ୍କର ପାରମ୍ପରିକ ସକ୍ରିୟ ବୈଦେଶିକ ନୀତି ତ୍ୟାଗ କରିବାକୁ ବାଧ୍ୟ କରିଥିଲା । ସେମାନେ କହନ୍ତି, ଅଶୋକ ସେତେବେଳକୁ ସ୍ୱପ୍ନଦର୍ଶୀ ପାଲଟି ଯାଇଥିଲେ । ନିଜର ପ୍ରତିପତ୍ତି ଏବଂ କ୍ଷମତା ବିସ୍ତାର କରିବା ତଥା ତାକୁ ଦୃଢ଼ କରିବାର ସମସ୍ତ ପ୍ରୟାସକୁ ପରିତ୍ୟାଗ କରିଥିଲେ । କିନ୍ତୁ ଏହି ଧାରଣାଟି ବିଭିନ୍ନ ସୂତ୍ରରୁ ମିଳୁଥିବା ତଥ୍ୟ ସହିତ ଖାପ ଖାଏ ନାହିଁ । ଅଶୋକ ପ୍ରକୃତରେ ତାଙ୍କ ସକ୍ରିୟ ବୈଦେଶିକ ନୀତି ପରିତ୍ୟାଗ କରି ନଥିଲେ । ଏହି ନୀତିକୁ ପ୍ରୟୋଗ କରିବାର ପଦ୍ଧତିରେ ସେ କେବଳ କେତେକ ପରିବର୍ତ୍ତନ ଘଟାଇଥିଲେ । ନିଜର କ୍ଷମତା ବିସ୍ତାର କଥାକୁ ମନରେ ରଖି ଏବଂ ଯେଉଁଠି ପ୍ରୟୋଜନ ସେଠାରେ ଶକ୍ତି ପ୍ରୟୋଗ କରି ବୈଦେଶିକ ନୀତି କ୍ଷେତ୍ରରେ ଏହି ମୌର୍ଯ୍ୟ ସମ୍ରାଟ ମୁଖ୍ୟତଃ ତତ୍ତ୍ୱଗତ ଏବଂ କୂଟନୈତିକ ହତିଆର ପ୍ରୟୋଗ କରିଥିଲେ । ବିଶେଷ ଭାବେ ନିଯୁକ୍ତ ରାଜକର୍ମଚାରୀ ଏବଂ କୂଟନୈତିକ ଦୂତମାନଙ୍କ ଉପରେ ନିର୍ଭର କରି ସେପର୍ଯ୍ୟନ୍ତ ତାଙ୍କ ଦ୍ୱାରା ଅବିଜିତ ଭୂଖଣ୍ଡରେ ନିଜର ପ୍ରତିପତ୍ତିକୁ ସଂହତ କରିବା ଦିଗରେ ସର୍ବଶକ୍ତି ନିୟୋଗ କରିଥିଲେ । ସେଇସବୁ ଦେଶର ଅଧିବାସୀମାନଙ୍କୁ ସମ୍ରାଟଙ୍କର ସ୍ନେହ, ପିତୃସୁଲଭ ମମତା ଏବଂ ସର୍ବପ୍ରକାରର ସମର୍ଥନ ଜ୍ଞାପନ କରିଥିଲେ ।

ଅଶୋକ ତାଙ୍କର ଏକ ଅନୁଶାସନରେ ତାଙ୍କ ରାଜକର୍ମଚାରୀମାନଙ୍କୁ ଏହି ମର୍ମରେ ନିର୍ଦ୍ଦେଶ ଦେଇଥିଲେ : "ଅନଧିକୃତ ଦେଶସମୂହର ଅଧିବାସୀମାନଙ୍କ ମନରେ ଏହି ଦୃଢ଼ ବିଶ୍ୱାସ ଜନ୍ମାଇବାକୁ ହେବ ଯେ, ରାଜା ହେଉଛନ୍ତି ଆମ ଦୃଷ୍ଟିରେ ପିତୃତୁଲ୍ୟ । ନିଜ ପ୍ରତି ତାଙ୍କର ଯେଭଳି ମନୋଭାବ, ପ୍ରଜାମାନଙ୍କ ପ୍ରତି ମଧ୍ୟ ସେଇଭଳି ତାଙ୍କର ମନୋଭାବ, ନିଜର ସନ୍ତାନ ଭଳି ସେମାନେ ତାଙ୍କର ପ୍ରିୟ ।"

ଅଶୋକ କେତୋଟି ଦେଶ ସହିତ ଘନିଷ୍ଠ କୂଟନୈତିକ ସଂପର୍କ ରକ୍ଷା କରିଥିଲେ । ତାଙ୍କ ଅନୁଶାସନଗୁଡ଼ିକରେ ଏହି ସଂପର୍କର ଉଲ୍ଲେଖ ଅଛି । ସେଲ୍ୟୁକସ୍‌ବଂଶୀୟ ରାଜା ଦ୍ୱିତୀୟ ଆଣ୍ଟିୟୋକାସ୍ ଥିଓସ୍ (ସେଲ୍ୟୁକସ୍‌ଙ୍କ ନାତି), ମିଶରର ରାଜା ଦ୍ୱିତୀୟ ଟଲେମି ଫିଲଡେଲଫାସ୍, ମ୍ୟାସିଡନିଆର ରାଜା ଆଣ୍ଟିଗୋନାସ୍ ଗୋନେଟାସ୍, କାଇରିନିର (ଆଫ୍ରିକା) ରାଜା ମାଗସ୍ ଓ ଏପିରସ୍‌ର ରାଜା ଆଲେକ୍‌ଜାଣ୍ଡାରଙ୍କ ସହିତ ସେ ସଂପର୍କ ରକ୍ଷା କରିଥିଲେ । ମୌର୍ଯ୍ୟ ରାଜଦୂତମାନଙ୍କୁ ବହୁ ବିଭିନ୍ନ ଦେଶକୁ ପ୍ରେରଣ କରାଯାଇଥିଲା ଏବଂ ସେଠାରେ ସେମାନେ ସେମାନଙ୍କ ପରାକ୍ରାନ୍ତ ଏବଂ ଧର୍ମାତ୍ମା ରାଜା ଅଶୋକଙ୍କ କଥା କହୁଥିଲେ ।

ମଗଧ ସହିତ ସେତେବେଳେ ସିଂହଳର ଘନିଷ୍ଠ ସଂପର୍କ ଥିଲା । ବୌଦ୍ଧ ଧର୍ମ ପ୍ରଚାର ପାଇଁ ଅଶୋକ ସେଠାକୁ ତାଙ୍କ ପୁତ୍ର ମହିନ୍ଦଙ୍କ (ମହେନ୍ଦ୍ର) ନେତୃତ୍ୱରେ ଏକ ବିଶେଷ ପ୍ରଚାରକମଣ୍ଡଳୀ ପ୍ରେରଣ କରିଥିଲେ ।

ସିଂହଳର ତତ୍‌କାଳୀନ ରାଜା ତିସ୍‌ସ (ତିଷ୍ୟ) ଏହାର ବିନିମୟରେ କୃତଜ୍ଞତା ସ୍ୱରୂପ ଅଶୋକଙ୍କ ସମ୍ମାନାର୍ଥେ ନିଜେ ଦେବାନାଂପିୟ ("ଦେବଗଣଙ୍କ ପ୍ରିୟ") ଉପାଧି ଧାରଣ କରିଥିଲେ ଏବଂ ପାଟଳୀପୁତ୍ରକୁ ଏକ ରାଜଦୂତ ପ୍ରେରଣ କରିଥିଲେ ।

ଅଶୋକଙ୍କ ରାଜତ୍ୱକାଳର ସନ ତାରିଖ ଆଦି ନିରୂପଣ ନେଇ ଏବେ ବି ଇତିହାସବିଦ୍‌ମାନଙ୍କ ମଧ୍ୟରେ ତୁମୁଳ ତର୍କବିତର୍କ ଚାଲିଛି । ତେବେ, ତାଙ୍କ ଅନୁଶାସନଗୁଡ଼ିକରେ ଏହି ପ୍ରଶ୍ନଟି ସହିତ ସଂପର୍କିତ ଗୁରୁତ୍ୱପୂର୍ଣ୍ଣ ତଥ୍ୟାଦି ଏହାର ମୀମାଂସା ଦିଗରେ ସହାୟକ ହୋଇ ପାରେ । ଅଶୋକଙ୍କ ରାଜ୍ୟାଭିଷେକର ବାର ବର୍ଷ ପରେ ପର୍ବତ ଦେହରେ ଖୋଦିତ ତାଙ୍କର ତଥାକଥିତ ମୁଖ୍ୟ ଅନୁଶାସନଗୁଡ଼ିକରେ ସମକାଳୀନ ପାଞ୍ଚଜଣ (ଉପରେ ଉଲ୍ଲିଖିତ) ଗ୍ରୀକ୍ ଏବଂ ଗ୍ରୀକ୍ ଦ୍ୱାରା ପ୍ରଭାବିତ ରାଜାଙ୍କ ନାମ ଉଲ୍ଲେଖ ଅଛି । ତା ଅର୍ଥ, ଅନୁଶାସନଗୁଡ଼ିକ ଯେଉଁ ବର୍ଷ ଖୋଦିତ ହୋଇଥିଲା, ସେ ବର୍ଷ ଉପରୋକ୍ତ ପାଞ୍ଚଜଣ ରାଜା ଜୀବିତ ଥିଲେ । ଅର୍ଥାତ୍, ସେ ବର୍ଷଟି, ସମ୍ଭବତଃ, ଖ୍ରୀଷ୍ଟ ପୂର୍ବ ୨୫୬ କିମ୍ବା ୨୫୫ ଥିଲା ବୋଲି ଅନୁମାନ କରାଯାଏ । ଏଥିରୁ ଏହି ଇଙ୍ଗିତ ମିଳେ ଯେ, ଅଶୋକଙ୍କ ରାଜତ୍ୱ ଆରମ୍ଭ ହୋଇଥିଲା ଆନୁମାନିକ ଖ୍ରୀଷ୍ଟ ପୂର୍ବ ୨୬୮ରେ ।

ଅଶୋକଙ୍କ ନାମ ସହିତ ଜଡ଼ିତ ଉପାଖ୍ୟାନଗୁଡ଼ିକରେ ଜ୍ୟୋତିର୍ବିଦ୍ୟାଗତ ଯେଉଁସବୁ ତଥ୍ୟାଦି ମିଳେ, ସେସବୁକୁ ନେଇ କୌତୂହଳୋଦ୍ଦୀପକ ଗବେଷଣା ହୋଇଛି । ବୌଦ୍ଧ ଉପାଖ୍ୟାନଗୁଡ଼ିକରେ ଆମେ ଏକ ସୂର୍ଯ୍ୟ ପରାଗର ଉଲ୍ଲେଖ ଦେଖିବାକୁ ପାଇଥାଏ । ଏହାକୁ ବୌଦ୍ଧ ତୀର୍ଥ ପ୍ରଦର୍ଶନ ଉପଲକ୍ଷେ ଅଶୋକଙ୍କ ଦେଶ ଭ୍ରମଣର ସମକାଳୀନ ଘଟଣା ବୋଲି ଅନୁମାନ କରାଯାଏ । ପଣ୍ଡିତମାନେ ନିର୍ଣ୍ଣୟ କରିଛନ୍ତି ଯେ, ଅଶୋକଙ୍କ ରାଜତ୍ୱକାଳରେ ଖ୍ରୀଷ୍ଟ ପୂର୍ବ ୨୪୯ରେ ସତରେ ଏକ ସୂର୍ଯ୍ୟ ପରାଗ ହୋଇଥିଲା । ପୁଣି ଅଶୋକଙ୍କ ରାଜତ୍ୱକାଳର ବିଂଶ ବର୍ଷରେ ପ୍ରଚାରିତ ଏକ ଅନୁଶାସନରେ ସେ ବୁଦ୍ଧଙ୍କ ଜନ୍ମସ୍ଥାନ ପରିଦର୍ଶନରେ ଯାଇଥିବା କଥା ଉଲ୍ଲେଖ ରହିଛି । ଏସବୁକୁ ଏକତ୍ର ବିଚାର କଲେ, ଆମେ ଏକଥା ଅନୁମାନ କରି ପାରେ ଯେ, ଅଶୋକଙ୍କ ରାଜତ୍ୱକାଳ ଖ୍ରୀଷ୍ଟ ପୂର୍ବ ୨୬୮ରେ ଆରମ୍ଭ ହୋଇଥିଲା । ଆଉ କେତେକ ସୂତ୍ରରୁ ମିଳୁଥିବା ତଥ୍ୟରୁ ମଧ୍ୟ ଏହି ସାଲଟିର ସମର୍ଥନ ମିଳିଥାଏ । ଯଥା ପୁରାଣମାନଙ୍କରେ ରାଜବଂଶାବଳୀ ଯେ ପ୍ରଦତ୍ତ ହୋଇଛି, ତଦନୁଯାୟୀ ଯଦି ଧରି ନିଆଯାଏ ଯେ, ବିନ୍ଦୁସାର ପଚିଶ ବର୍ଷ କାଳ ରାଜତ୍ୱ କରିଥିଲେ, ତେବେ ଅଶୋକ ଖ୍ରୀଷ୍ଟ ପୂର୍ବ ୨୬୮ରେ ସିଂହାସନ ଆରୋହଣ କରିଥିଲେ ବୋଲି ଧରି ନେବାକୁ ହେବ । ଅନ୍ୟ ଦିଗରେ, ବୌଦ୍ଧ ଶାସ୍ତ୍ରଗୁଡ଼ିକରେ ଉଲ୍ଲିଖିତ ଅଛି ଯେ, ଅଶୋକ ସିଂହାସନ ଆରୋହଣ କରିଥିଲେ ବୁଦ୍ଧଙ୍କ ମହାପ୍ରୟାଣର ୨୧୮ ବର୍ଷ ପରେ । ଅନେକ ପଣ୍ଡିତ ଏ ବିଷୟରେ ଏକମତ ଯେ, ବୁଦ୍ଧଙ୍କ ମୃତ୍ୟୁର ଏହି ବର୍ଷଟି ଖ୍ରୀଷ୍ଟ ପୂର୍ବ ୪୮୬ ହେବା ଖୁବ୍ ସମ୍ଭବ । ତାହେଲେ ଏହି ପରମ୍ପରାକୁ ଯଦି ମାନି ନିଆଯାଏ, ତେବେ ଅଶୋକଙ୍କ ରାଜତ୍ୱର ପ୍ରାରମ୍ଭ ହିସାବରେ ଏହି ବର୍ଷଟିକୁ, ଅର୍ଥାତ୍, ଖ୍ରୀଷ୍ଟ ପୂର୍ବ ୨୬୮କୁ ଆମେ ଅଶୋକଙ୍କ ରାଜତ୍ୱକାଳର ପ୍ରାରମ୍ଭ ବୋଲି ଧରି ନେଉଛେ ।

ପ୍ରସଙ୍ଗତଃ ଏକଥା ଉଲ୍ଲେଖଯୋଗ୍ୟ ଯେ, ଆଉ କେତେକ ପଣ୍ଡିତ ଭିନ୍ନ ସନ ସପକ୍ଷରେ ମତ ପ୍ରକାଶ କରିଛନ୍ତି । ରାଜସିଂହାସନ ଦଖଲ ପରେ ଅଶୋକ ଆନୁଷ୍ଠାନିକ ଭାବେ ରାଜା ରୂପେ ଅଭିଷିକ୍ତ ହୋଇଥିଲେ ଚାରି ବର୍ଷ ପରେ—ସିଂହଳୀ ଇତିବୃତ୍ତର ଏହି ଉଲ୍ଲେଖଟି କଥା ଏମାନେ କହିଥାନ୍ତି ।

ଏହି ତଥ୍ୟର ଭିତ୍ତିରେ ସେମାନେ ଅଶୋକଙ୍କ ସିଂହାସନ ଆରୋହଣର ସନ ନିର୍ଦ୍ଧାରଣ କରିଥାନ୍ତି ଖ୍ରୀଷ୍ଟ ପୂର୍ବ ୨୬୫ ମସିହାକୁ । ସେ ଯାହା ହେଉ, ମୌର୍ଯ୍ୟ ସାମ୍ରାଜ୍ୟର ସନ ନିରୂପଣ ପ୍ରଶ୍ନଟି ଏବେ ମଧ୍ୟ ଅତ୍ୟନ୍ତ ଜଟିଳ ହୋଇ ରହିଯାଇଛି ।

## ମୌର୍ଯ୍ୟ ସାମ୍ରାଜ୍ୟର ବିସ୍ତାର

ମୌର୍ଯ୍ୟ ସାମ୍ରାଜ୍ୟ ବିଶାଳ ଏକ ଭୂଖଣ୍ଡ ବ୍ୟାପି ବିସ୍ତୃତ ଥିଲା । ଏହି ଏକକ ରାଷ୍ଟ୍ର ମଧ୍ୟରେ ବହୁ ନୃକୁଳର ଲୋକ, ନାନା ଜାତି ଉପଜାତି ଅନ୍ତର୍ଭୁକ୍ତ ଥିଲେ । ସେମାନେ ଥିଲେ ବିଭିନ୍ନ ଭାଷାଭାଷୀ ଆଉ ସଂସ୍କୃତିର । ସେମାନଙ୍କର ରୀତିନୀତି, ପରମ୍ପରା ଏବଂ ଧର୍ମବିଶ୍ୱାସ ଥିଲା ଭିନ୍ନ ଭିନ୍ନ ।

ଅଶୋକଙ୍କ ଶିଳାଲେଖସମୂହ ଓ "ଅର୍ଥଶାସ୍ତ୍ରର" ସାକ୍ଷ୍ୟ ଅନୁଯାୟୀ ଏକଥା କୁହାଯାଇ ପାରେ ଯେ, ଏହି ସମୟ ମଧ୍ୟରେ ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ ବିସ୍ତୃତ ବିଶାଳ ଏକ ଭୂଖଣ୍ଡ ବ୍ୟାପୀ କର୍ତ୍ତୃତ୍ୱର ଅଧିକାରୀ ଏକ ଏକଛତ୍ର ଅଧୀଶ୍ୱରଙ୍କ ଅଧୀନରେ ପ୍ରକାଣ୍ଡ ଏକ ରାଷ୍ଟ୍ରର ଧାରଣା ଜନମାନସରେ ବଦ୍ଧମୂଳ ହୋଇ ଯାଇଥିଲା । ରାଜନୈତିକ ତତ୍ତ୍ୱବିଦ୍‌ମାନେ ମଧ୍ୟ ଏହି ସମୟରେ ସାମ୍ରାଜ୍ୟର ବିସ୍ତାର ଏବଂ ତା'ର ନିକଟ ଏବଂ ଦୂରବର୍ତ୍ତୀ ରାଷ୍ଟ୍ରମାନଙ୍କ ସହିତ ତା'ର ସଂପର୍କ ବିଷୟରେ ନିଜର ସିଦ୍ଧାନ୍ତକୁ ପୂର୍ଣ୍ଣ ରୂପେ ପ୍ରତିପାଦିତ କରିଛନ୍ତି ।

ମୌର୍ଯ୍ୟ ଯୁଗରେ ନୂତନ ଧ୍ୟାନଧାରଣାର ଉଦ୍‌ଭବ ସଂପର୍କରେ ମଗଧର ରାଜା ବିମ୍ବିସାର ଏବଂ ସମ୍ରାଟ ଅଶୋକଙ୍କ ଉପାଧି ତଥା ଗୁଣ ବର୍ଣ୍ଣନାରୁ ଜଣାପଡ଼େ । ପ୍ରଥମୋକ୍ତ ରାଜାଙ୍କୁ "ପ୍ରଦେଶାଧିପତି" ବୋଲି ଉଲ୍ଲେଖ କରାଗଲା ବେଳେ ଅଶୋକଙ୍କୁ "ଜମ୍ବୁଦ୍ୱୀପ" (ସମଗ୍ର ଭାରତର) "ସର୍ବଶକ୍ତିମାନ ଅଧୀଶ୍ୱର" ବୋଲି ବର୍ଣ୍ଣନା କରାଯାଇଛି ।

ସମ୍ରାଟ ଅଶୋକଙ୍କର ଅନୁଶାସନଗୁଡ଼ିକ ମୌର୍ଯ୍ୟ ସାମ୍ରାଜ୍ୟର ବିପୁଳ ବିସ୍ତାରର ପ୍ରଧାନ ସାକ୍ଷୀ ସ୍ୱରୂପ । ଚନ୍ଦ୍ରଗୁପ୍ତଙ୍କ ଶାସନ କାଳ ସଂପର୍କରେ ୟୁରୋପୀୟ ଶାସ୍ତ୍ରୀୟ ଲେଖକମାନଙ୍କର ରଚନାସମୂହରୁ କେତେକ ତଥ୍ୟ ମିଳିଥାଏ । ଚୀନ୍ ପରିବ୍ରାଜକମାନଙ୍କ ଦ୍ୱାରା ଲିଖିତ ବିବରଣରୁ ଯେଉଁସବୁ ତଥ୍ୟାଦି ମିଳେ, ସେସବୁର ମଧ୍ୟ କେତେକ ମୂଲ୍ୟ ରହିଛି, ବିଶେଷ କରି ସେସବୁ ଯଦି ଶିଳାଲେଖ ଏବଂ ପ୍ରତ୍ନତାତ୍ତ୍ୱିକ ପ୍ରମାଣ ଦ୍ୱାରା ସମର୍ଥିତ ହେଉଥାଏ ।

ଅଶୋକଙ୍କ ସାମ୍ରାଜ୍ୟର ପଶ୍ଚିମ ସୀମାନ୍ତ ନିର୍ଦ୍ଧାରଣ କରିବା ଅନେକ ପରିମାଣରେ ସହଜ ହୋଇଛି ପ୍ରାଚୀନ ଆରାକୋସିୟାର ପ୍ରାଣକେନ୍ଦ୍ର କାନ୍ଦାହାରରେ ଅଶୋକଙ୍କ ଅନୁଶାସନଗୁଡ଼ିକ (ଗ୍ରୀକ୍ ଏବଂ ଗ୍ରୀକ୍-ଆରାମେଇକ୍ ଅକ୍ଷରରେ ଲିଖିତ) ଆବିଷ୍କାର ହେବା ଫଳରେ । ଏସବୁଥିରୁ ସ୍ପଷ୍ଟ ବୁଝାଯାଏ ଯେ, ସେତେବେଳେ ଆରାକୋସିୟା (ଆଧୁନିକ ଆଫ୍‌ଗାନିସ୍ତାନର ଏକ ଅଂଶ) ଏହି ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ।

ଅଶୋକଙ୍କ ଅନୁଶାସନଗୁଡ଼ିକରେ ଦେଶର ପଶ୍ଚିମାଞ୍ଚଳରେ ବାସ କରୁଥିବା ଯବନ ଏବଂ କାମ୍ବୋଜ ଜାତି ଦୁଇଟି କଥା କେଇ ଥର ଉଲ୍ଲେଖ କରାଯାଇଛି ।

ଯବନ ଶବ୍ଦଟି ବ୍ୟବହୃତ ହୋଇଛି ଗ୍ରୀକ୍‌ମାନଙ୍କ କ୍ଷେତ୍ରରେ । ଆରାକୋସିୟାରେ ସେତେବେଳେ

ସେମାନଙ୍କର କେତୋଟି ଜନବସତି ଥିଲା । ଏହି ଗ୍ରୀକ୍ ଜନସାଧାରଣଙ୍କ ପକ୍ଷରେ ବୁଝିବାର ସୁବିଧା ପାଇଁ ଅଶୋକଙ୍କ ଅନୁଶାସନଗୁଡ଼ିକୁ ଗ୍ରୀକ୍ ଭାଷାରେ ଅନୁବାଦ କରି ପ୍ରଚାର କରାଯାଇଥିଲା । କେତେକ ପଣ୍ଡିତଙ୍କ ମତରେ, ଅଶୋକଙ୍କ ଅମଳର ଏହି ଯବନମାନେ ଥିଲେ ମ୍ୟାସିଡନ୍‌ର ଆଲେକ୍‌ଜାଣ୍ଡାରଙ୍କ ବେଳର ଯେଉଁସବୁ ଗ୍ରୀକ୍ ଉପଜାତି ଆରାକୋସିୟାରେ ରହି ଯାଇଥିଲେ, ସେଇମାନଙ୍କର ବଂଶଧର ।

କାମ୍ବୋଜମାନେ (ଇରାନୀୟ ଭାଷାଭାଷୀ ଏକ ଉପଜାତି) ମଧ୍ୟ ଆରାକୋସିୟାରେ ବାସ କରୁଥିଲେ । ପ୍ରାଚୀନ ଭାରତୀୟ ଉପାଖ୍ୟାନଗୁଡ଼ିକରେ ଏମାନଙ୍କୁ ଉତ୍କୃଷ୍ଟ ଘୋଡ଼ା ସବାର ଏବଂ ଘୋଡ଼ା ପାଳକ ହିସାବରେ ବର୍ଣ୍ଣନା କରାଯାଇଛି । କାମ୍ବୋଜମାନଙ୍କ ଭାଷା କ'ଣ ଥିଲା, ସେ ବିଷୟରେ ସଠିକ ଜଣା ପଡ଼େ ନାହିଁ । ତେବେ କାନ୍ଦାହାରରେ ଥିବା ଅଶୋକଙ୍କ ଅନୁଶାସନର ଭାଷ୍ୟରେ ଯେହେତୁ ଅନେକ ଇରାନୀୟ ଶବ୍ଦ ଦେଖିବାକୁ ମିଳେ, ତେଣୁ ଏକଥା ବିଶ୍ୱାସ କରାଯାଇ ପାରେ ଯେ, ଏହି ଭାଷ୍ୟଟି ବିଶେଷ କରି କାମ୍ବୋଜମାନଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଥିଲା ।

ଅଶୋକଙ୍କର ଆଉ ଏକ ଶିଳାଲେଖ ଲାମ୍ପାକରୁ ମଧ୍ୟ ମିଳିଛି (ଆଧୁନିକ ଜଲଲବାଦ ନିକଟବର୍ତ୍ତୀ) । ଏଥିରୁ ଏହି ଧାରଣାଟି ସମର୍ଥିତ ହୁଏ ଯେ, ପାରୋପମିସାସ୍ ରାଜ୍ୟଟି ବସ୍ତୁତଃ ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା (ଏହାର ଏକମାତ୍ର ଉଲ୍ଲେଖ ଇତିପୂର୍ବରୁ ମିଳିଥିଲା ଗ୍ରୀକ୍ ସୂତ୍ରରୁ । ଚନ୍ଦ୍ରଗୁପ୍ତ ଓ ସେଲ୍ୟୁକସ୍‌ଙ୍କ ମଧ୍ୟରେ ଏକ ସନ୍ଧିର ଫଳାଫଳ ସଂପର୍କରେ ସେଥିରେ କୁହାଯାଇଥିଲା) ।

କାଶ୍ମୀରର ଇତିବୃତ୍ତ "ରାଜତରଙ୍ଗିଣିରୁ" ପ୍ରାପ୍ତ ତଥ୍ୟାଦି ଅନୁଯାୟୀ ଏବଂ ଚୀନ୍ ପରିବ୍ରାଜକମାନଙ୍କ ବିବରଣୀରୁ ଏକଥା ବିଶ୍ୱାସ କରାଯାଏ ଯେ, କାଶ୍ମୀରର ଏକ ଅଂଶ ମଧ୍ୟ ଅଶୋକଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ପ୍ରଚଳିତ ପରମ୍ପରା ଅନୁସାରେ କାଶ୍ମୀରର ପ୍ରଧାନ ସହର ଶ୍ରୀନଗର ଅଶୋକଙ୍କ ରାଜତ୍ୱକାଳରେ ନିର୍ମିତ ହୋଇଥିଲା । ନେପାଳର କେତେକ ଅଂଶ ମଧ୍ୟ, ସମ୍ଭବତଃ, ଏହି ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ବୋଲି ଜଣାଯାଏ । ଆବିଷ୍କୃତ ଶିଳାଲେଖ ଓ ଲିଖିତ ସୂତ୍ରରୁ ଇଙ୍ଗିତ ମିଳେ ଯେ, ବଙ୍ଗ ଦେଶ ମଧ୍ୟ ମଗଧ ସାମ୍ରାଜ୍ୟର ଅନ୍ତର୍ଗତ ଥିଲା ।

ଦକ୍ଷିଣ ଭାରତରୁ ଅଶୋକଙ୍କ ପ୍ରଚାରିତ ଅନୁଶାସନଗୁଡ଼ିକ ମିଳିବା ଫଳରେ ମଗଧ ସାମ୍ରାଜ୍ୟର ଦକ୍ଷିଣ ସୀମାନ୍ତ ନିର୍ଣ୍ଣୟ କରିବା ସହଜ ହୋଇଛି । ଏହି ସୀମାନ୍ତ ଆଧୁନିକ ଚିତଲଦ୍ରୁଗ ଜିଲ୍ଲାର ଆନୁମାନିକ ଦକ୍ଷିଣ ସୀମାବର୍ତ୍ତୀ ଥିଲା । ଦକ୍ଷିଣରେ ମଗଧ ସାମ୍ରାଜ୍ୟର ସୀମାନ୍ତରେ ଅବସ୍ଥିତ ଥିଲା ଚୋଳ, କେରଳପୁତ୍ର ଏବଂ ସତ୍ୟପୁତ୍ର ରାଜ୍ୟଗୁଡ଼ିକ । ଅଶୋକଙ୍କ ଅନୁଶାସନସମୂହରେ ଏସବୁକୁ ତାଙ୍କ ସାମ୍ରାଜ୍ୟ ବାହାରେ ବୋଲି ଉଲ୍ଲେଖ କରାଯାଇଛି । ତେବେ ମୌର୍ଯ୍ୟମାନେ ଏହିସବୁ ଅଞ୍ଚଳ ସହିତ ଘନିଷ୍ଠ ସଂପର୍କ ରଖିଥିଲେ । ଏସବୁ ସ୍ଥାନରେ ବୌଦ୍ଧ ସ୍ତୂପମାନ ନିର୍ମିତ ହୋଇଛି, ବୌଦ୍ଧ ପ୍ରଚାରକମାନଙ୍କୁ ସେଠାକୁ ପ୍ରେରଣ କରାଯାଇଛି । ଏହା ଛଡ଼ା ଆଉରି ବହୁ ଦେଶ ସହିତ ମଗଧ କୂଟନୈତିକ ସଂପର୍କ ପ୍ରତିଷ୍ଠା କରିଥିଲା । ଏହିସବୁ ବନ୍ଧୁ ଦେଶମାନଙ୍କର ଅନ୍ତର୍ଗତ ଥିଲା ଭାରତର ପଶ୍ଚିମ ସୀମାର ପ୍ରାନ୍ତବର୍ତ୍ତୀ ଗ୍ରୀକ୍ ଓ ଗ୍ରୀକ୍ ପ୍ରଭାବିତ ରାଜ୍ୟସମୂହ, ଶ୍ରୀଲଙ୍କା ଏବଂ ମଧ୍ୟ ଏସିଆର କେତେକ ଅଞ୍ଚଳ ।

ମଗଧ-ମୌର୍ଯ୍ୟ ରାଷ୍ଟ୍ରର ଅସ୍ତିତ୍ୱ କାଳରେ ଏବଂ ବିଶେଷ କରି ମୌର୍ଯ୍ୟ ଶାସକମାନଙ୍କ ଅଧୀନରେ ରାଜଶକ୍ତିର କ୍ଷମତା କ୍ରମଶଃ ଅଧିକ ସୁଦୃଢ଼ ହୋଇ ଉଠିଥିଲା ଏବଂ ଉପଜାତୀୟ ପ୍ରତିଷ୍ଠାନସମୂହର ଗୁରୁତ୍ୱ ହ୍ରାସ ପାଇବାକୁ ଲାଗିଥିଲା ।

ମୌର୍ଯ୍ୟ ସାମ୍ରାଜ୍ୟ ଅମଳରେ ରାଜଶକ୍ତି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇ ଉଠିଲା । ଅଶୋକଙ୍କ ଅନୁଶାସନ ଏବଂ "ଅର୍ଥଶାସ୍ତ୍ରରୁ" ଏହାର ସାକ୍ଷ୍ୟ ମିଳିଥାଏ । ଏହି ସମୟରେ ରାଜାକୁ 'ରାଜ୍ୟର ମୂଳ ଭିତ୍ତି ବୋଲି ଗଣ୍ୟ କରାଯାଉଥିଲା । "ଅର୍ଥଶାସ୍ତ୍ରରେ" କୁହାଯାଇଛି, "ରାଷ୍ଟ୍ର ହିଁ ହେଉଛି ରାଜା" । ଏହି ବାକ୍ୟଟିରେ ରାଷ୍ଟ୍ର ସମ୍ବନ୍ଧରେ ସେତେବେଳେ ପ୍ରଚଳିତ ସମଗ୍ର ତତ୍ତ୍ୱର ସାରମର୍ମଟି ନିହିତ ରହିଛି ।

ବଂଶାନୁକ୍ରମିକ ଭାବେ ଉତ୍ତରାଧିକାର ନୀତିକୁ କଠୋର ଭାବେ ପାଳନ କରାଯାଇଥିଲା । ରାଜାର ମୃତ୍ୟୁ ପୂର୍ବରୁ ତା'ର ଏକ ପୁତ୍ରକୁ ସିଂହାସନର ଉତ୍ତରାଧିକାରୀ ରୂପେ ମନୋନୀତ କରାଯାଉଥିଲା (ଏହି ପୁତ୍ର ଜଣକ ଅଧିକାଂଶ ସମୟରେ ରାଜାଙ୍କ ପ୍ରଥମ ପୁତ୍ର) । ତେବେ କାର୍ଯ୍ୟତଃ କ୍ଷମତା ଲାଭ ପାଇଁ ରାଜାଙ୍କ ପୁତ୍ରମାନଙ୍କ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇ ଯାଉଥିଲା ।

ନୂତନ ରାଜା ସିଂହାସନ ଆରୋହଣ କଲା ବେଳେ ଏକ ବିଶେଷ ଅନୁଷ୍ଠାନର (ଅଭିଷେକ) ଆୟୋଜନ କରାଯାଉଥିଲା । ସମାରୋହ ଏବଂ ଭୂରିଭୋଜନ ଥିଲା ସେଇ ଅନୁଷ୍ଠାନର ଅଙ୍ଗ ।

ମୌର୍ଯ୍ୟ ରାଜାମାନଙ୍କ ଅମଳରେ "ରାଜଚକ୍ରବର୍ତ୍ତୀର" (ଆକ୍ଷରିକ ଅର୍ଥରେ—"ଯିଏ କ୍ଷମତାର ଚକ୍ରକୁ ଆବର୍ତ୍ତିତ କରନ୍ତି") ଧାରଣାଟି ସୃଷ୍ଟି ହୋଇ ସାରିଥିଲା । ରାଜଚକ୍ରବର୍ତ୍ତୀ ହେଉଛନ୍ତି ଏକଛତ୍ର ଶାସକ, ଯାହାଙ୍କ କ୍ଷମତା ପଶ୍ଚିମରୁ ପୂର୍ବ ସମୁଦ୍ର ପର୍ଯ୍ୟନ୍ତ, ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ ଏକ ବିଶାଳ ଭୂଖଣ୍ଡକୁ ଆଚ୍ଛାଦିତ କରିଥିଲା । ଏହି ଧାରଣାଟିକୁ ବିଶଦ ଭାବେ ବ୍ୟାଖ୍ୟା କରାଯାଇଛି "ଅର୍ଥଶାସ୍ତ୍ରରେ" । ସଂକ୍ଷେପରେ କହିବାକୁ ଗଲେ, ଏହି ଧାରଣାଟି ପ୍ରକାଣ୍ଡ ଏକ ସାମ୍ରାଜ୍ୟ ଗଠନ ସହିତ ସଂପର୍କିତ ଭାରତୀୟ ରାଷ୍ଟ୍ରର ବିକାଶ ସ୍ତରର ପରିଚାୟକ ।

ଅଶୋକଙ୍କ ଶିଳାଲେଖଗୁଡ଼ିକ ଅନୁଯାୟୀ ମୌର୍ଯ୍ୟ ରାଜା ରାଷ୍ଟ୍ରଯନ୍ତ୍ରର ମୁଖ୍ୟାଧିକାରୀ ଏବଂ ଆଇନ୍ ପ୍ରଣୟନକର୍ତ୍ତା ଥିଲେ । ଅଶୋକଙ୍କ ଅନୁଶାସନଗୁଡ଼ିକ ରାଜାଙ୍କ ନିର୍ଦ୍ଦେଶ ଏବଂ ରାଜାଙ୍କ ନାମରେ ପ୍ରଚାରିତ ହୋଇଥିଲା । ପ୍ରଧାନ ପ୍ରଧାନ ରାଜକର୍ମଚାରୀମାନଙ୍କୁ ରାଜା ନିଜେ ନିଯୁକ୍ତ କରୁଥିଲେ, ରାଜସ୍ୱ ସଂଗ୍ରହ ସମ୍ବନ୍ଧୀୟ ବିଭାଗର ପ୍ରଧାନ ଏବଂ ଦେଶର ମୁଖ୍ୟ ନ୍ୟାୟାଧୀଶ ଥିଲେ । "ଅର୍ଥଶାସ୍ତ୍ରରେ" ଆମେ ରାଜାର ବିବିଧ କ୍ରିୟାକଳାପର ଏବଂ ଅବସର ବିନୋଦନର ବିଶଦ ବର୍ଣ୍ଣନା ଦେଖିବାକୁ ପାଉଁ । ରାଜାର ଦେହରକ୍ଷୀ ନିଯୁକ୍ତ କରିବା ବିଷୟରେ ସେତେବେଳେ ବିଶେଷ ନଜର ଦିଆଯାଉଥିଲା । କାରଣ ରାଜା ବିରୁଦ୍ଧରେ ବିଭିନ୍ନ ଧରଣର ଷଡ଼ଯନ୍ତ୍ର ଥିଲା ରାଜଦରବାରର ନୈମିତ୍ତିକ ଘଟଣା । ଚନ୍ଦ୍ରଗୁପ୍ତଙ୍କ ରାଜସଭାରେ ନିଯୁକ୍ତ ଗ୍ରୀକ୍ ରାଷ୍ଟ୍ରଦୂତ ମେଗାସ୍ଥେନିସ୍ ଏହି ବିଷୟଟିକୁ ବିଶେଷ ମନୋଯୋଗ ସହକାରେ ପର୍ଯ୍ୟବେକ୍ଷଣ କରିଥିଲେ । ସେ ତାଙ୍କ ବିବରଣୀରେ ଲେଖିଥିଲେ : "ଦୁରଭିସନ୍ଧି ଭୟରେ ରାଜା ଦିନ ବେଳେ ଶୋଉ ନଥିଲେ, ଏପରିକି ରାତ୍ରିରେ ମଝିରେ ମଝିରେ ବିଶ୍ରାମ ସ୍ଥାନ ପରିବର୍ତ୍ତନ କରିବାକୁ ବାଧ୍ୟ ହେଉଥିଲେ । ରାଜା ମୃଗୟା ବିନୋଦନରେ ଗଲା

ବେଳେ ନାରୀମାନଙ୍କ ଗହଣରେ ରହୁଥିଲେ ଏବଂ ଏହିସବୁ ନାରୀ ସଙ୍ଗିନୀମାନଙ୍କୁ ଘେରି ରହୁଥିଲେ ବର୍ଚ୍ଛାଧାରୀ ଦେହରକ୍ଷୀବୃନ୍ଦ । ରାଜାଙ୍କ ମୃଗୟା ଯାତ୍ରାପଥ ଦୁଇ ଧାରରେ ଟଣା ହୋଇଥିବା ଦୌଡ଼ି ଦ୍ୱାରା ଘେରା ହୋଇ ରହୁଥିଲା । କେବଳ ମାତ୍ର ପୂର୍ବୋକ୍ତ ନାରୀମାନଙ୍କର ଏହି ଦୌଡ଼ି ଘେର ମଧ୍ୟରେ ଯାତାୟତ କରିବାର ଅଧିକାର ଥିଲା । ଅନ୍ୟ କୌଣସି ବ୍ୟକ୍ତି ଏହି ଘେର ମଧ୍ୟରେ ପ୍ରବେଶ କରିବା ଅର୍ଥ ମୃତ୍ୟୁ ମୁହଁକୁ ଆଗେଇଯିବା ସ୍ୱରୂପ ।"

ମୌର୍ଯ୍ୟ ରାଜସଭାରେ ରାଜାଙ୍କ ରାଜ ପୁରୋହିତଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ପ୍ରଭାବଶାଳୀ ବ୍ରାହ୍ମଣମାନଙ୍କ ମଧ୍ୟରୁ ଏହି ପୁରୋହିତ ନିଯୁକ୍ତ ହେଉଥିଲେ । ରାଜା ବ୍ୟକ୍ତିଗତ ଭାବେ ତାଙ୍କ ବିଶ୍ୱାସଭାଜନ ବ୍ୟକ୍ତିମାନଙ୍କ ମଧ୍ୟରୁ ନିଜର ସହାୟକ ନିର୍ବାଚନ କରୁଥିଲେ । ତେବେ ଏହି ସାହାଯ୍ୟକାରୀମାନଙ୍କ ଉପରେ ମଧ୍ୟ ଗୋପନରେ ନଜର ରଖାଯାଉଥିଲା । ଅନୁଚରବର୍ଗଙ୍କୁ ରାଜା ବିଶେଷ ବିଶେଷ ପରୀକ୍ଷା କରୁଥିଲେ । ଏହିସବୁ ପରୀକ୍ଷାରେ ଯେଉଁମାନେ ସମ୍ମାନର ସହିତ ଉତ୍ତୀର୍ଣ୍ଣ ନହେଉଥିଲେ, ସେମାନଙ୍କ ପକ୍ଷରେ ଖଣି ମଧ୍ୟରେ କଠିନ ଶ୍ରମସାପେକ୍ଷ କାମ ପାଇବାର ସମ୍ଭାବନା ଥିଲା । ଏହି ଭାବେ ନାନା ଦିଗରୁ ଦେଶବ୍ୟାପୀ ଗୁଇନ୍ଦାଗିରିର ଜାଲବିସ୍ତାର ଉପରେ ବିପୁଳ ଗୁରୁତ୍ୱ ଆରୋପ କରାଯାଉଥିଲା । କେବଳ ରାଜକର୍ମଚାରୀମାନଙ୍କ ଗତିବିଧି ଉପରେ ଯେ ତୀକ୍ଷ୍ଣ ନଜର ରଖାଯାଉଥିଲା ତା ନୁହେଁ, ସହର ଓ ଗ୍ରାମର ସାଧାରଣ ଅଧିବାସୀମାନେ ମଧ୍ୟ ଏହାର କବଳରୁ ମୁକ୍ତ ହେଉ ନଥିଲେ । ରାଜପୁତ୍ରମାନଙ୍କ ଉପରେ ବିଶେଷ ଦୃଷ୍ଟି ରଖାଯାଉଥିଲା, କାରଣ "ଅର୍ଥଶାସ୍ତ୍ରର" ଭାଷାରେ ସେମାନେ "ନିଜ ପିତାକୁ ଚିଙ୍ଗୁଡ଼ିମାଛ ଭଳି ଖାଇଯାଆନ୍ତି" ।

ରାତ୍ରିରେ ରାଜା ତାଙ୍କ ଗୋପନ ସଂବାଦଦାତାମାନଙ୍କ ସହିତ ସାକ୍ଷାତ୍ କରୁଥିଲେ । "ଅର୍ଥଶାସ୍ତ୍ରରୁ" ଆମେ ଜାଣିଛେ ଯେ, ଦିନ ବେଳେ ରାଷ୍ଟ୍ର ପରିଚାଳନା କାର୍ଯ୍ୟ କିମ୍ବା ବିଭିନ୍ନ ଆମୋଦ ପ୍ରମୋଦରେ ସେ ବ୍ୟସ୍ତ ରହୁଥିଲେ । ରାଜାଙ୍କୁ ସେନାବାହିନୀର ପ୍ରଧାନ ସେନାଧ୍ୟକ୍ଷ ରୂପେ ଗଣ୍ୟ କରାଯାଉଥିଲା । ମେଗାସ୍ଥେନିସ୍‌ଙ୍କ ବିବରଣ ଅନୁଯାୟୀ ରାଜାଙ୍କର ସୈନ୍ୟ ସଂଖ୍ୟା ବିସ୍ମୟଜନକ ଥିଲା । ଚନ୍ଦ୍ରଗୁପ୍ତଙ୍କ ଛାଉଣୀରେ ମୋଟ ୪ ଲକ୍ଷ ସୈନ୍ୟ ଥିଲେ ।

## ପରିଷଦ ଓ ସଭା

ରାଜ୍ୟ ପରିଚାଳନାର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ପରିଷଦ ନାମରେ ପରିଚିତ ରାଜାଙ୍କ ମନ୍ତ୍ରୀମଣ୍ଡଳ ଉପରେ ନ୍ୟସ୍ତ ଥିଲା । ମୌର୍ଯ୍ୟ ରାଜାମାନଙ୍କ ଅମଳରେ ଏହି ସଂସ୍ଥାଟିର ଯେ ପ୍ରଥମ ଉଦ୍‌ଭବ ଘଟିଥିଲା, ତା ନୁହଁ (ଆଉରି ଆଗରୁ ଏହା ଥିଲା), ତେବେ ସଠିକ ଭାବେ କହିବାକୁ ଗଲେ, ମୌର୍ଯ୍ୟ ଅମଳରେ ଏହି ପରିଷଦ ରାଜନୈତିକ ମନ୍ତ୍ରଣାସଭାର ଚରିତ୍ର ବହନ କଲା । ସମ୍ରାଟ ଅଶୋକଙ୍କର ଅନୁଶାସନଗୁଡ଼ିକରେ ଏହି ପରିଷଦର ଉଲ୍ଲେଖ ରହିଛି ଏବଂ ଏହାର ବିସ୍ତାରିତ ବର୍ଣ୍ଣନା "ଅର୍ଥଶାସ୍ତ୍ର"ରେ ଅଛି । ସେଥିରେ ଏହାକୁ ମନ୍ତ୍ରୀ ପରିଷଦ ବୋଲି କୁହାଯାଇଛି । ଏହି ପରିଷଦର କାର୍ଯ୍ୟ ଥିଲା ସମଗ୍ର ଶାସନ ବ୍ୟବସ୍ଥା ଉପରେ ନିୟନ୍ତ୍ରଣ ପ୍ରତିଷ୍ଠା କରିବା ଏବଂ ରାଜାର ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବା । ପରିଷଦ ବ୍ୟତୀତ ରାଜାର ଆଉ ଏକ ଛୋଟ ଗୋପନ ପରିଷଦ ମଧ୍ୟ

ଥିଲା । ଏଥିରେ ରାଜାର ବିଶ୍ୱାସଭାଜନ ଅଳ୍ପ କେତେକ ଲୋକ ରହୁଥିଲେ । ଅତ୍ୟନ୍ତ ଜରୁରୀ ବିଷୟର ମୀମାଂସା କରିବାକୁ ହେଲେ ଏହି ଉଭୟ ପରିଷଦ ମିଳିତ ହେଉଥିଲେ ବୋଲି ଜଣାଯାଏ ।

"ଅର୍ଥଶାସ୍ତ୍ରରେ" କୁହାଯାଇଛି ଯେ, ପରିଷଦର ସଦସ୍ୟ ସଂଖ୍ୟାରେ ପରିବର୍ତ୍ତନ ଘଟୁଥିଲା ରାଷ୍ଟ୍ରର ତତ୍‌କାଳୀନ ପ୍ରୟୋଜନ ଅନୁଯାୟୀ । ଅଶୋକଙ୍କ ରାଜତ୍ୱକାଳରେ ପରିଷଦର ଦାୟିତ୍ୱ ଥିଲା ଧର୍ମାନୁଯାୟୀ କର୍ତ୍ତବ୍ୟ ସଂପାଦନ କରିବାର ବିଷୟଟି ଉପରେ ନଜର ରଖିବା । ଦେଶର ବିଭିନ୍ନ ଅଞ୍ଚଳରେ ଗସ୍ତକରି ଯେଉଁସବୁ ରାଜକର୍ମଚାରୀ ବିଭିନ୍ନ କାର୍ଯ୍ୟ ସଂପର୍କରେ ସଂବାଦାଦି ଦେଉଥିଲେ ସେମାନଙ୍କ ଦାୟିତ୍ୱକୁ ପରିଷଦ ବିଧିବଦ୍ଧ କରି ଦେଉଥିଲା । ଅଶୋକଙ୍କର ଏକ ଅନୁଶାସନରେ ଉଲ୍ଲେଖ ଅଛି ଯେ, ପରିଷଦ ରାଜାଙ୍କର ଅନୁପସ୍ଥିତିରେ ମଧ୍ୟ ବେଳେ ବେଳେ ମିଳିତ ହୋଇ ପାରନ୍ତି । ତେବେ ଅଶୋକଙ୍କର ନିର୍ଦ୍ଦେଶ ଥିଲା, ଜରୁରୀ ଅବସ୍ଥାରେ ଏଭଳି ବୈଠକ ବସାଇବା କଥା ତାଙ୍କୁ ଅବିଳମ୍ବେ ନିଶ୍ଚିତ ଭାବେ ଜଣାଇବାକୁ ହେବ । ପରିଷଦର ନିଜସ୍ୱ ଆଲୋଚନା ସଭାରେ ବହୁ ସମୟରେ ତୁମୁଳ ତର୍କବିତର୍କ ଦେଖା ଦେଉଥିଲା । ବେଳେ ବେଳେ ସ୍ୱୟଂ ରାଜାଙ୍କୁ ହସ୍ତକ୍ଷେପ କରିବାକୁ ପଡ଼ୁଥିଲା । ବେଳେ ବେଳେ ରାଜା ଏବଂ ପରିଷଦ ମଧ୍ୟରେ ମତ ପାର୍ଥକ୍ୟ ଦେଖା ଦେଉଥିଲା । ଅଶୋକଙ୍କ ରାଜତ୍ୱର ଶେଷ ପର୍ଯ୍ୟାୟରେ ରାଜାଙ୍କର ବିରୋଧୀ ଶକ୍ତିମାନେ ମୁଣ୍ଡ ଟେକି ଉଠିଥିଲେ ଏବଂ ଉପରୋକ୍ତ ପାର୍ଥକ୍ୟ ସେତେବେଳେ ବିଶେଷ ଭାବେ ତୀବ୍ର ଆକାର ଧାରଣ କରିଥିଲା ।

ରାଜନୈତିକ ସଂଗଠନ ହିସାବରେ ପରିଷଦର ସଦସ୍ୟ ହେଉଥିଲେ କେବଳ ଯୋଦ୍ଧା ଆଉ ଯାଜକ ସଂପ୍ରଦାୟରୁ ନିର୍ବାଚିତ ଅଭିଜାତ ବ୍ୟକ୍ତିଗଣ । ସେମାନେ ଯଥାସମ୍ଭବ ନିଜର ବିଶେଷ ସୁବିଧା ଏବଂ ଅଧିକାରକୁ ରକ୍ଷା କରୁଥିଲେ ଏବଂ ରାଜାଙ୍କ ଏକଛତ୍ର କ୍ଷମତାକୁ ସୀମିତ କରି ରଖୁଥିଲେ । ଏଥି ପୂର୍ବରୁ, ଯଥା ବୈଦିକ ଯୁଗରେ, ସମାଜର ଆଉ ବ୍ୟାପକ ସଂପ୍ରଦାୟର ଲୋକେ ପରିଷଦର ସଦସ୍ୟ ହୋଇ ପାରୁଥିଲେ । କ୍ଷମତାର କେନ୍ଦ୍ର ହିସାବରେ ଏହା ସେତେବେଳେ ଆଉରି ବେଶି ଗଣତାନ୍ତ୍ରିକ ସଂସ୍ଥା ଥିଲା । ରାଜା ଏବଂ ତା'ର ନୀତିସମୂହ ଉପରେ ଏହା ଆଉରି ସ୍ପଷ୍ଟ ପ୍ରଭାବ ବିସ୍ତାର କରୁଥିଲା । ତେବେ କାଳକ୍ରମେ ସଂସ୍ଥାର ସଦସ୍ୟ ସଂଖ୍ୟା ହ୍ରାସ ପାଇବାକୁ ଲାଗିଲା ଏବଂ ସଦସ୍ୟ ସଂଖ୍ୟା ସୀମାବଦ୍ଧ ହୋଇଗଲା ଅଭିଜାତ ସଂପ୍ରଦାୟର ପ୍ରତିନିଧିମାନଙ୍କ ମଧ୍ୟରେ । ତତ୍ ସଙ୍ଗେ ସଙ୍ଗେ ପରିଷଦର ଭୂମିକା କ୍ରମଶଃ କମି କମି ଶେଷକୁ ଏହା ରାଜାଙ୍କ ଅଧୀନରେ କେବଳ ଏକ ପରାମର୍ଶଦାତା ପରିଷଦରେ ପରିଣତ ହୋଇଗଲା ଏବଂ ରାଜା ହିଁ ଚୂଡ଼ାନ୍ତ କର୍ତ୍ତୃତ୍ୱର ଅଧିକାରୀ ହେଲେ । ତା ସତ୍ତ୍ୱେ ମୌର୍ଯ୍ୟ ରାଜତ୍ୱକାଳରେ, ଯେତେବେଳେ କି ରାଜାର କ୍ଷମତା ପ୍ରବଳ ହୋଇ ଉଠିଥିଲା, ଏହି ପରିଷଦର କ୍ଷମତା କମ୍ ନଥିଲା । ଏପରିକି ମୌର୍ଯ୍ୟ ରାଜାମାନେ ମଧ୍ୟ ଏହାର କର୍ତ୍ତୃତ୍ୱକୁ ଉପେକ୍ଷା କରି ପାରୁ ନଥିଲେ ।

ସଭା ନାମକ ଆଉ ଏକ ସଂସ୍ଥାର ବିବର୍ତ୍ତନ ମଧ୍ୟ ଘଟିଥିଲା ଏହି ଭାବେ । ପ୍ରାରମ୍ଭରେ ଏହା ଥିଲା ଅଭିଜାତ ଓ ଜନସାଧାରଣଙ୍କ ପ୍ରତିନିଧିମାନଙ୍କର ବ୍ୟାପକ ସଭା । ଏହା ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ରାଜନୈତିକ କର୍ତ୍ତବ୍ୟାଦି ସଂପାଦନ କରୁଥିଲା । ମୌର୍ଯ୍ୟ ଯୁଗରେ ପହଞ୍ଚିଲା ବେଳକୁ ଏହି ସଭାର ସଦସ୍ୟପଦ ସମାଜର ସଂକୀର୍ଣ୍ଣ ଏକ ଅଂଶ ମଧ୍ୟରେ ସୀମିତ ହୋଇ ଯାଇଥିଲା ଏବଂ ସ୍ୱୟଂ ସଭା ବିଭିନ୍ନ ବିବର୍ତ୍ତନ ମଧ୍ୟ ଦେଇ ରାଜ କେନ୍ଦ୍ରିକ ଏକ ପରିଷଦ ବା ରାଜସଭାରେ ପରିଣତ

ହେଲା । ତେବେ ପୂର୍ବୋକ୍ତ ପରିଷଦ ଠାରୁ ତୁଳନାମୂଳକ ଭାବେ ରାଜସଭା ସେତେବେଳେ ମଧ୍ୟ ଆଉରି ବ୍ୟାପକ ପ୍ରତିନିଧିମୂଳକ ଏକ ସଂସ୍ଥା ହିସାବରେ ରହି ଯାଇଥିଲା । ସହର ଏବଂ ଗ୍ରାମର ଜନସାଧାରଣଙ୍କର କେତେକ ପ୍ରତିନିଧି ସେତେବେଳେ ମଧ୍ୟ ସଭାର ଆଲୋଚନାରେ ଯୋଗ ଦେବାର ଅଧିକାର ପାଉଥିଲେ । ଅନେକ କ୍ଷେତ୍ରରେ ରାଜା ସ୍ୱୟଂ ସମର୍ଥନ ଲଭ ପାଇଁ ରାଜସଭାର ମୁଖାପେକ୍ଷୀ ହେବାର ଦେଖାଯାଇଛି । ଉଦାହରଣ ସ୍ୱରୂପ, ତତ୍‌କାଳୀନ ଏକାଧିକ ସୂତ୍ରରୁ ଜଣାଯାଏ ଯେ, ଅଶୋକ ସ୍ୱୟଂ ରାଜସଭାର ସଦସ୍ୟମାନଙ୍କୁ ସମ୍ବୋଧନ କରି ଭାଷଣ ଦେଉଥିଲେ । ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳର ଏକ ସଭାର ଉଲ୍ଲେଖ ପତଞ୍ଜଳିଙ୍କ ବ୍ୟାକରଣରେ ଦେଖିବାକୁ ମିଳେ (ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀ) ।

ଲିଖିତ ସୂତ୍ରାବଳୀରେ ମୌର୍ଯ୍ୟ ଯୁଗରେ ରାଷ୍ଟ୍ର ବ୍ୟବସ୍ଥା ମଧ୍ୟରେ ପରିଷଦ ଓ ରାଜସଭାର ପ୍ରଭାବ ଘେନି ଯେଉଁସବୁ ଅନୁଚ୍ଛେଦରେ ଆଲୋଚନା କରାଯାଇଛି, ତାହା ଅତୀବ ଆଗ୍ରହପ୍ରଦ । ସେସବୁଥିରୁ ଜଣାଯାଏ ଯେ, ରାଜାର କ୍ଷମତା ବିଶେଷ ପ୍ରବଳ ହୋଇ ଉଠିଥିଲା ବେଳେ ରାଜକ୍ଷମତାକୁ ସୀମିତକାରୀ ପ୍ରାଚୀନ ରାଜନୈତିକ ସଂଗଠନର ରୀତି ଓ ଐତିହ୍ୟ ବଞ୍ଚି ରହିଥିଲା ।

## ରାଜସ୍ୱ ପ୍ରଥା

ରାଜାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ମଧ୍ୟରେ ବିଭିନ୍ନ ରାଜକର ଆଦାୟ କରିବା ଥିଲା ଅନ୍ୟତମ । ଏହି କାରଣରୁ ତତ୍‌କାଳୀନ ଲିଖିତ ଉପାଦାନଗୁଡ଼ିକରେ ରାଜସ୍ୱ ସଂଗ୍ରହର ବ୍ୟବସ୍ଥା ଏବଂ ତା'ର ଅନ୍ତର୍ନିହିତ ନୀତିସମୂହ ସଂପର୍କରେ ବିଶଦ ଆଲୋଚନା ଦେଖିବାକୁ ମିଳେ ।

ବିଭିନ୍ନ ରାଜନୈତିକ ଆଲୋଚନା ଗ୍ରନ୍ଥରେ ବାରମ୍ବାର ଜୋର ଦେଇ କୁହାଯାଇଛି ଯେ, ରାଜକୋଷ ହେଉଛି ରାଜଶକ୍ତିର ଭିତ୍ତି ସ୍ୱରୂପ ଏବଂ ରାଜାର କର୍ତ୍ତବ୍ୟ ହେଉଛି ରାଜସ୍ୱ ଆଦାୟ ସଂକ୍ରାନ୍ତ ବିଷୟ ଉପରେ କଠୋର ନିୟନ୍ତ୍ରଣ ବଜାୟ ରଖିବା ।

ଦେଶବାସୀଙ୍କ ଆୟର ଯେଉଁ ଅଂଶଟି କର ହିସାବରେ ଆଦାୟ କରାଯାଉଥିଲା, ତା'ର ପରିମାଣ ଥିଲା ଅନେକ ବେଶି । ତେବେ ଉପରୋକ୍ତ ଗ୍ରନ୍ଥଗୁଡ଼ିକରେ ସର୍ବଦା କୁହାଯାଇଛି ଯେ, ରାଜା ରାଜସ୍ୱ ଆଦାୟ କରନ୍ତି ତାଙ୍କ ପ୍ରଜାବର୍ଗଙ୍କ ରକ୍ଷା ପାଇଁ । ଦେଶବାସୀଙ୍କ ପ୍ରତି ତାଙ୍କର ସଦା ସତର୍କ ଦୃଷ୍ଟିର କୃତଜ୍ଞତାପୂର୍ଣ୍ଣ ସ୍ୱୀକୃତି ସ୍ୱରୂପ ରାଜା ପ୍ରତି ନିବେଦିତ ଏହି କର ସାମାନ୍ୟ ଏକ ଉପହାର ଛଡ଼ା ଆଉ କିଛି ନୁହଁ । ମୌର୍ଯ୍ୟ ଯୁଗ ବେଳକୁ ପୂର୍ବତନ ରାଜସ୍ୱ ଆଦାୟ ବ୍ୟବସ୍ଥାରେ ବିପୁଳ ପରିବର୍ତ୍ତନ ଘଟି ଯାଇଥିଲା । ଅତୀତରେ ସ୍ୱେଚ୍ଛାକୃତ ଭାବେ ରାଜାଙ୍କୁ ଯେଉଁସବୁ ଉପହାର ଆଦି ପ୍ରଦାନ କରାଯାଉଥିଲା, ତାହା ସେତେବେଳେ ବାଧ୍ୟତାମୂଳକ ଦେୟ ବସ୍ତୁରେ, କଠୋର ଭାବେ ନିର୍ଦ୍ଧାରିତ ରାଜସ୍ୱରେ ପରିଣତ ହୋଇ ଯାଇଥିଲା । ରାଜସ୍ୱର ପ୍ରଧାନ ଧରଣଟି ଥିଲା ଭାଗ (ଅର୍ଥାତ୍, ରାଜାଙ୍କୁ ପ୍ରଦତ୍ତ ଅଂଶ), ତେଣୁ ସାଧାରଣତଃ ଏହି ଭାଗଟି ଥିଲା କୃଷି ଉତ୍ପାଦନସମୂହର ଏକ ଷଷ୍ଠାଂଶ । ରାଜା ଇଚ୍ଛିଲେ, ଏହି ଭାବେ ଦେୟ ରାଜସ୍ୱର ପରିମାଣ ହ୍ରାସ କରି ଦେଉଥିଲେ, କିମ୍ବା କେତେକ କ୍ଷେତ୍ରରେ ସଂପୂର୍ଣ୍ଣ ରୂପେ ମୁକ୍ତ କରି ପାରୁଥିଲେ । ତେବେ ଏଭଳି ଘଟଣା ଖୁବ୍

କମ୍ ଘଟୁଥିଲା ଏବଂ ତାହା ଘଟୁଥିଲା ବିଶେଷ କ୍ଷେତ୍ରରେ । ରାଜାଙ୍କୁ ଷଡ଼ ଭାଗିନୀ ବୋଲି କୁହାଯାଉଥିଲା । ଯେଉଁସବୁ ଅଞ୍ଚଳରେ ଜମି ଅଧିକ ଉର୍ବର ଥିଲା ଏବଂ ପ୍ରଚୁର ବୃଷ୍ଟିପାତ ହେଉଥିଲା, ସେଠାରେ ଏହାଠାରୁ ଅନେକ ବେଶି ପରିମାଣରେ ରାଜସ୍ୱ (ଫସଲର ଏକ ଚତୁର୍ଥାଂଶ, କିମ୍ବା ଏକତୃତୀୟାଂଶ) ଆଦାୟ କରାଯାଉଥିଲା । ଏହା ଛଡ଼ା ରାଷ୍ଟ୍ରର ଆର୍ଥିକ ସଂକଟ ଦେଲେ, ରାଜାର ପ୍ରାପ୍ୟ ରାଜସ୍ୱର ଏହି ଅଂଶଟି ବୃଦ୍ଧି ପାଉଥିଲା ।

ଏ ପ୍ରସଙ୍ଗରେ ପତଞ୍ଜଳିଙ୍କ ସେଇ ଅସାଧାରଣ ଉକ୍ତିଟି ଉଲ୍ଲେଖଯୋଗ୍ୟ । ସେ କହିଛନ୍ତି, ମୌର୍ଯ୍ୟ ରାଜାମାନେ "ସ୍ୱର୍ଣ୍ଣ ସଂଗ୍ରହ ଉଦ୍ଦେଶ୍ୟରେ ମୂର୍ତ୍ତି ପ୍ରତିଷ୍ଠା କରୁଥିଲେ" । ମନେ ହୁଏ, ମୂର୍ତ୍ତି ବୋଇଲେ, ଏଠାରେ ଦେବତାର ପ୍ରତିମୂର୍ତ୍ତିକୁ ବୁଝାଉଛି । ବିଶେଷ ବିଶେଷ ମନ୍ଦିରରେ ଏହିସବୁ ଦେବମୂର୍ତ୍ତି ପ୍ରତିଷ୍ଠା ପରେ ଏସବୁ ଉଦ୍ଦେଶ୍ୟରେ ଯେଉଁ ମୂଲ୍ୟବାନ ଉପହାର ନିବେଦିତ ହେଉଥିଲା, ସେସବୁ ଯଥା ସମୟରେ ଯାଇ ରାଜକୋଷରେ ଜମା ହେଉଥିଲା । ଏପରିକି, ଏକଥା ମଧ୍ୟ ସମ୍ଭବ ଯେ, ମୌର୍ଯ୍ୟ ରାଜାମାନେ ଏହିସବୁ ଦେବମୂର୍ତ୍ତିକୁ ଅନ୍ୟ ମନ୍ଦିରରୁ ସଂଗ୍ରହ କରି ଆଣୁଥିଲେ । "ଅର୍ଥଶାସ୍ତ୍ରର" ଭାଷ୍ୟ ଅନୁଯାୟୀ, ଅର୍ଥନୈତିକ ସଂକଟ ସମୟରେ ରାଜାର ନିଜ ରାଜକୋଷକୁ ଭରିବା ପାଇଁ ବିଭିନ୍ନ ମନ୍ଦିରରୁ ମୂଲ୍ୟବାନ ଅଳଙ୍କାର ଆଦି ନେବାର ଅଧିକାର ଥିଲା ।

ରାଜସ୍ୱର ଅଧିକାଂଶ ଆସୁଥିଲା ରାଜାର କୃଷିଜୀବୀ ପ୍ରଜାବୃନ୍ଦଙ୍କ ଠାରୁ—ଛୋଟ ଛୋଟ ଜମିମାଲିକ ଗ୍ରାମ୍ୟ ସମାଜର ମୁକ୍ତ ସଦସ୍ୟଙ୍କ ଠାରୁ । ଏହା ଛଡ଼ା ବିଭିନ୍ନ ଧରଣର କାରିଗର, ବଣିକ ଏବଂ ଗୃହପାଳିତ ପଶୁପାଳକମାନଙ୍କୁ ମଧ୍ୟ କର ଦେବାକୁ ପଡ଼ୁଥିଲା ।

ଲିଖିତ ତଥ୍ୟାଦିରୁ ଜଣାଯାଏ ଯେ, ଜନସାଧାରଣଙ୍କ ମଧ୍ୟରୁ କେତେକ ସ୍ତରର ଲୋକ ରାଜସ୍ୱ ଦେବାରୁ ଅବ୍ୟାହତି ପାଉଥିଲେ । ୟୁରୋପୀୟ ଶାସ୍ତ୍ରୀୟ ଲେଖକ ଏବଂ ପ୍ରାଚୀନ ଭାରତୀୟ "ସଂହିତା" ବା ଶାସ୍ତ୍ରସମୂହରୁ ଜଣାଯାଏ ଯେ, ପବିତ୍ର ଧର୍ମ ଗ୍ରନ୍ଥଗୁଡ଼ିକରେ ବିଶେଷଜ୍ଞ ଓ ଉଚ୍ଚତର ବର୍ଣ୍ଣର ପ୍ରତିନିଧି ହିସାବରେ ବ୍ରାହ୍ମଣମାନେ ରାଜସ୍ୱ ଦେବାରୁ ଅବ୍ୟାହତି ଲାଭ କରିଥିଲେ । କେତେକ ରଚନାରେ ଏକଥା ଉଲ୍ଲେଖ ଅଛି ଯେ, ବେଦଜ୍ଞ ପଣ୍ଡିତ, ଆଶ୍ରମବାସୀ ସନ୍ନ୍ୟାସୀ ଓ ରାଜାର ପୁରୋହିତବର୍ଗଙ୍କ ନିକଟରୁ ରାଜସ୍ୱ ଆଦାୟ କରିଥିବା କର୍ମଚାରୀମାନେ ଅର୍ଥଦଣ୍ଡରେ ଦଣ୍ଡିତ ହୋଇଛନ୍ତି । ବ୍ରାହ୍ମଣ୍ୟ ସୂତ୍ରଗୁଡ଼ିକରେ ଏହି ବିଷୟଟିକୁ ବ୍ୟାଖ୍ୟା କରାଯାଇଛି ଯେ, ବ୍ରାହ୍ମଣମାନେ ଧର୍ମୀୟ ଯଜନ ଯାଜନ କର୍ମ କରିଆରେ ରାଜକୋଷକୁ ସେମାନଙ୍କ ନିଜସ୍ୱ ବିଶେଷ ଅବଦାନ ରଖିଥାନ୍ତି ଏବଂ ଦେଶର ଉନ୍ନତି ବିଧାନରେ ଅବଦାନ ରଖନ୍ତି ।

ରାଜସ୍ୱ ଦାନରୁ କେଉଁମାନେ ଅବ୍ୟାହତି ଲାଭ କରିବାକୁ ଯୋଗ୍ୟ ତା'ର ତାଲିକା ଦେବାକୁ ଯାଇ କେତେକ ପୋଥିରେ "ରାଜାର ଅନୁଚରବୃନ୍ଦ", ଅର୍ଥାତ୍, ଯେଉଁମାନେ ରାଜା ଅଧୀନରେ ଚାକିରି କରନ୍ତି, ସେମାନଙ୍କୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଛି । ଏହାର ଅର୍ଥ, ରାଜସ୍ୱର ବୋଝଟା ମୂଳତଃ କୃଷକ, କାରିଗରମାନଙ୍କ ଉପରେ ଚପାଥିଲା । ଏହା ଫଳରେ ପାରସ୍ପରିକ ଅସଙ୍ଗତି ଓ ବିରୋଧକୁ ବିଭିନ୍ନ ଶ୍ରେଣୀ, ଛୋଟ ବଡ଼ ଭୂମିମାଲିକ ଏବଂ ବିଭିନ୍ନ ସାମାଜିକ ଗୋଷ୍ଠୀ ମଧ୍ୟରେ ପ୍ରବଳ ହୋଇ ପଡ଼ିଥିଲା ।

"ଅର୍ଥଶାସ୍ତ୍ରରେ" ଆମେ ବିଶଦ ଭାବେ ଦେଖିବାକୁ ପାଏଁ, ରାଜସ୍ୱ ବିଭାଗର କର୍ମଚାରୀମାନଙ୍କର ଏବଂ ପ୍ରଧାନ କର ଆଦାୟକାରୀ କର୍ମଚାରୀମାନଙ୍କ ଅଧୀନରେ ପରିଚାଳିତ ବିଶେଷ କର ସଂଗ୍ରହକାରୀ ବିଭାଗର କାର୍ଯ୍ୟକର୍ମକୁ ।

## ପ୍ରାଦେଶିକ ଶାସନ ବ୍ୟବସ୍ଥା

ସାମ୍ରାଜ୍ୟ ଅଧୀନରେ ଥିବା ପ୍ରଦେଶଗୁଡ଼ିକର ଶାସନ ବ୍ୟବସ୍ଥାକୁ ଏପରିଭାବେ ସଂଗଠିତ କରାଯାଉଥିଲା ଯେ, ପ୍ରାଚୀନତର ରୀତି ତଥା ସଂସ୍ଥାଗୁଡ଼ିକର ମର୍ଯ୍ୟାଦାରେ ଯେପରି ଆଞ୍ଚ ନଆସେ । ତେବେ ମୌର୍ଯ୍ୟ ରାଜାମାନେ ସେମାନଙ୍କ ସାମ୍ରାଜ୍ୟ ଗଢ଼ି ଉଠିବା ପୂର୍ବରୁ ଏ କ୍ଷେତ୍ରରେ ପ୍ରଚଳିତ ବ୍ୟବସ୍ଥାରେ ବେଶ୍ ପରିବର୍ତ୍ତନ ଘଟେଇଥିଲେ । ନୂତନ ପରିସ୍ଥିତି ସହିତ ଏହାକୁ ଖାପ ଖୁଆଇ ନେଇଥିଲେ । ଏଥି ସଙ୍ଗେ ସଙ୍ଗେ ସେମାନେ ରାଷ୍ଟ୍ର ପରିଚାଳନାର ନୂଆ ନୂଆ ରୀତି ଓ ବ୍ୟବସ୍ଥା ସୃଷ୍ଟି କରିଥିଲେ । ସେମାନଙ୍କ ସାମ୍ରାଜ୍ୟର ପ୍ରାଣକେନ୍ଦ୍ର ଥିଲା ବିଜିତ ଅଞ୍ଚଳଗୁଡ଼ିକ (ଆକ୍ଷରିକ ଅର୍ଥରେ "ଅଧିକୃତ" ଅଞ୍ଚଳ), ରାଜାର ମୂଳ ଶାସନାଧୀନ ଏଲାକା ଏବଂ କେନ୍ଦ୍ରୀୟ ଶାସନର ବିଶେଷ କଡ଼ା ନିୟନ୍ତ୍ରଣରେ ଥିବା ଅନ୍ୟ କେତେକ ଅଞ୍ଚଳ । ଏହା ଛଡ଼ା ମୌର୍ଯ୍ୟ ସାମ୍ରାଜ୍ୟ ଆଉ କେତେକ ଅଞ୍ଚଳରେ ବିଭକ୍ତ ହୋଇଥିଲା, ତନ୍ମଧ୍ୟରୁ ନିମ୍ନୋକ୍ତ ଚାରୋଟି ବିଭାଗ ଥିଲା ବିଶେଷ ମର୍ଯ୍ୟାଦାର ଅଧିକାରୀ : ଉତ୍ତର-ପଶ୍ଚିମ ବିଭାଗ, ଏହାର ରାଜଧାନୀ ଥିଲା ତକ୍ଷଶିଳା ; ରାଜଧାନୀ ଉଜ୍ଜୟିନୀ ସମେତ ପଶ୍ଚିମ ବିଭାଗ ; ରାଜଧାନୀ ତୋଷାଳି ସମେତ ପୂର୍ବ ବିଭାଗ ବା କଳିଙ୍ଗ ଏବଂ ରାଜଧାନୀ ସୁବର୍ଣ୍ଣଗିରି ସହ ଦକ୍ଷିଣ ବିଭାଗ । ଏହି ଚାରଟି ବିଭାଗର ଶାସନ କର୍ତ୍ତା ଭାବେ ନିଯୁକ୍ତ ହେଉଥିଲେ ରାଜପୁତ୍ରମାନେ । ସାମ୍ରାଜ୍ୟ ମଧ୍ୟରେ ଏହି ଚାରୋଟି ଭୂଖଣ୍ଡର ବିଶେଷ ଅବସ୍ଥାନ ଏବଂ ଦେଶର ରାଜନୈତିକ, ଅର୍ଥନୈତିକ ତଥା ସାଂସ୍କୃତିକ ଜୀବନରେ ଏସବୁର ଗୁରୁତ୍ୱପୂର୍ଣ୍ଣ ଭୂମିକା ହେତୁ ଏହି ବିଭାଗଗୁଡ଼ିକ ଥିଲା ଏତେ ଉଚ୍ଚ ମର୍ଯ୍ୟାଦାର ଅଧିକାରୀ । ଏସବୁ ମଧ୍ୟରେ ବିଶେଷ ଏକ ଦକ୍ଷିଣ ବିଭାଗ ଗଠନର କାରଣ ଦେଖିବାକୁ ମିଳିଥାଏ "ଦକ୍ଷିଣ ଦେଶର ସମସ୍ୟାର" ଗୁରୁତ୍ୱ ରାଜା ବିନ୍ଦୁସାରଙ୍କ ଅମଳରୁ ପ୍ରବଳ ଆକାର ଧାରଣ କରିବା ମଧ୍ୟରେ । ଏହି କାରଣରୁ ତକ୍ଷଶିଳା, ଉଜ୍ଜୟିନୀ ଓ ତୋଷାଳିରେ ନିଯୁକ୍ତ ଶାସକମାନେ "କୁମାର" (ଯେକୌଣସି ରାଜପୁତ୍ର) ଆଖ୍ୟା ଲାଭ କରିଥିଲା ବେଳେ, ସୁବର୍ଣ୍ଣଗିରି ଶାସନ କରୁଥିବା ରାଜପୁତ୍ରଙ୍କୁ ଅଶୋକଙ୍କ ଅନୁଶାସନରେ "ଆର୍ଯ୍ୟପୁତ୍ର" (ସଂସ୍କୃତ ଆର୍ଯ୍ୟ ପୁତ୍ରରୁ, ଅର୍ଥାତ୍, ସିଂହାସନର ଉତ୍ତରାଧିକାରୀ) ବୋଲି ଅଭିହିତ କରାଯାଇଛି । ଏହି ବିଶେଷ ଉପାଧିଟିରୁ ଏହି ଶେଷୋକ୍ତ ରାଜପୁତ୍ରଙ୍କର ବିଶେଷ ଏବଂ ଉଚ୍ଚତର ମର୍ଯ୍ୟାଦାର ପରିଚୟ ମିଳୁଛି । ଏକଥା ମନେ କରିବା ଯଥେଷ୍ଟ ଯୁକ୍ତିସଂଗତ ଯେ, ଅଶୋକଙ୍କ ରାଜତ୍ୱକାଳରେ ସିଂହାସନର ଉତ୍ତରାଧିକାରୀଙ୍କୁ ସୁବର୍ଣ୍ଣଗିରିର ଶାସକ ରୂପେ ନିଯୁକ୍ତ କରା ହେଉଥିଲା ।

ଏହି ପ୍ରଧାନ ବିଭାଗଗୁଡ଼ିକ ସେତେବେଳେ ଯଥେଷ୍ଟ ପରିମାଣରେ ସ୍ୱାୟତ୍ତଶାସନର ଅଧିକାର ଭୋଗ କରୁଥିଲେ । ସେସବୁର ଶାସନକର୍ତ୍ତା ରାଜପୁତ୍ରମାନେ (ଏକମାତ୍ର କଳିଙ୍ଗରେ ଅଧିଷ୍ଠିତ ରାଜପୁତ୍ରଙ୍କ ବ୍ୟତୀତ) ସ୍ଥାନୀୟ ଏବଂ ଆଞ୍ଚଳିକ ରାଜକର୍ମଚାରୀମାନଙ୍କ କାର୍ଯ୍ୟକର୍ମ ପର୍ଯ୍ୟବେକ୍ଷଣ କରିବା ପାଇଁ ବିଶେଷ ପରିଦର୍ଶକ ପ୍ରେରଣ କରୁଥିଲେ । କଳିଙ୍ଗର ଶାସକ ରାଜପୁତ୍ରଙ୍କର, ଅବଶ୍ୟ, ଏହି ଅଧିକାର ନଥିଲା, ସମ୍ରାଟ ସ୍ୱୟଂ ଏହି ଭୂଖଣ୍ଡ ପରିଦର୍ଶନ ଉପଲକ୍ଷେ ପର୍ଯ୍ୟଟନରେ ଯାଉଥିଲେ । କଳିଙ୍ଗର ସ୍ଥାନୀୟ ରାଜକର୍ମଚାରୀମାନଙ୍କ ସହିତ ପ୍ରତ୍ୟକ୍ଷ ଭାବେ ଯୋଗାଯୋଗ ରଖୁଥିଲେ ଅଶୋକ । କାରଣ କଳିଙ୍ଗ ମାତ୍ର ଅଳ୍ପ ଦିନ ପୂର୍ବରୁ ସାମ୍ରାଜ୍ୟାଧୀନ ହୋଇଥିଲା । ଏହି ଭୂଖଣ୍ଡଟି ଏକ ସ୍ୱତନ୍ତ୍ର ଭୂଖଣ୍ଡର ମର୍ଯ୍ୟାଦା ଲାଭ କରିଥିଲେ ମଧ୍ୟ ଏହାକୁ ଏକ ଅଧିକୃତ (ବିଜିତ)

ଅଞ୍ଚଳ ବୋଲି ଗଣ୍ୟ କରାଯାଉଥିଲା ଏବଂ କେନ୍ଦ୍ରୀୟ ପ୍ରଶାସନର ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ରଖାଯାଉଥିଲା ।

ସମଗ୍ର ଦେଶକୁ ମୁଖ୍ୟତଃ ଚାରୋଟି ବିଭାଗରେ ବିଭକ୍ତ କରିବା ଛଡ଼ା, ପ୍ରତ୍ୟେକ ବିଭାଗକୁ ପୁଣି ଭାଗ ଭାଗ କରାଯାଇଥିଲା କେତେକ ଜନପଦ (ଖଣ୍ଡ), ପ୍ରଦେଶ (ଅଞ୍ଚଳ) ଏବଂ ଆହାଲରେ (ଜିଲ୍ଲା) । ବିଭାଗୀୟ ଶାସନ ବ୍ୟବସ୍ଥାର ନିମ୍ନତମ ଭିତ୍ତି ଥିଲା ଗ୍ରାମ । ରଜ୍ଜୁକ ନାମରେ ପ୍ରଧାନ ରାଜକର୍ମଚାରୀମାନେ ଜନପଦସମୂହକୁ ଶାସନ କରୁଥିଲେ । ରଜ୍ଜୁକ ଶବ୍ଦର ଆକ୍ଷରିକ ଅର୍ଥ ହେଉଛି "ରଜ୍ଜୁ ବା ଦୌଡ଼ି ଧରିଥିବା ଲୋକ" । ଖୁବ୍ ସମ୍ଭବତଃ, ଏହି ଶବ୍ଦଟିର ଉତ୍ସ ହେଉଛି ଏହିସବୁ କର୍ମଚାରୀଙ୍କର ପୂର୍ବତନ ପେଶା, ଅର୍ଥାତ୍, ଦୌଡ଼ିରେ ଜମି ଜରିପ କରିବା । ମନେ ହୁଏ, ପରେ ଏମାନଙ୍କ ଭୂମିକାକୁ ଆଉରି ଗୁରୁତ୍ୱପୂର୍ଣ୍ଣ କରାଯାଇଥିଲା ଏବଂ ରାଜକର୍ମର ପରିଧି ବୃଦ୍ଧି କରି ଆଉରି ବୈଚିତ୍ର୍ୟପୂର୍ଣ୍ଣ କରାଯାଇଥିଲା । ଏମାନଙ୍କ ଅଧୀନସ୍ଥ ଜନପଦଗୁଡ଼ିକରେ ଏମାନଙ୍କ ଉପରେ ନ୍ୟସ୍ତ ଥିଲା ସୁନିର୍ଦ୍ଦିଷ୍ଟ ବିଚାର ବିଭାଗୀୟ କାର୍ଯ୍ୟ ଏବଂ ଏହି ଭାବେ ପ୍ରାକ୍ତନ ଗ୍ରାମୀଣ କର୍ମଚାରୀମାନଙ୍କୁ ଉନ୍ନୀତ କରାଯାଇଥିଲା ଜନପଦୀୟ ଶାସନର ମୁଖ୍ୟ ରୂପେ । ଅଶୋକଙ୍କ ରାଜତ୍ୱକାଳରେ ରଜ୍ଜୁକମାନଙ୍କ ସହିତ ଚନ୍ଦ୍ରଗୁପ୍ତଙ୍କ ଅମଳର ଗ୍ରାମୀଣ ରାଜକର୍ମଚାରୀମାନଙ୍କର (ବୋ ଗ୍ରୀକ୍ ଭାଷାରେ ଅଗୋରାନମୋଇ) ଖୁବ୍ ମେଳ ଥିଲା ବୋଲି ମନେ ହୁଏ । ସେଲ୍ୟୁକସ୍‌ଙ୍କ ରାଜଦୂତ ମେଗାସ୍ଥେନିସ୍ ଏହି ଶେଷୋକ୍ତ କର୍ମଚାରୀମାନଙ୍କ ସମ୍ବନ୍ଧରେ ବିଶଦ ବର୍ଣ୍ଣନା ଲିପିବଦ୍ଧ କରି ଯାଇଛନ୍ତି । ତେବେ ଏ ସଂପର୍କରେ ସ୍ମରଣ କରିବାର କଥା ଯେ, ଅଶୋକଙ୍କ ରାଜତ୍ୱକାଳ ପର୍ଯ୍ୟନ୍ତ ଏହିସବୁ ଗ୍ରାମୀଣ ରାଜକର୍ମଚାରୀଙ୍କ କର୍ତ୍ତବ୍ୟ ଏବଂ ଦାୟିତ୍ୱରେ କେତେକ ପରିବର୍ତ୍ତନ ଘଟିଥିଲା । କାରଣ, ଆହାଲର ଭାରପ୍ରାପ୍ତ ମହାମାତ୍ରକମାନେ ରଜ୍ଜୁକମାନଙ୍କ ନିକଟରେ କୈଫିୟତ୍ ଦେବାକୁ ବାଧ୍ୟ ଥିଲେ ।

ଜିଲ୍ଲାର ପ୍ରଧାନ ସହରଗୁଡ଼ିକରେ ମନ୍ତ୍ରଣାଗୃହସବୁ ଥିଲା । ସେସବୁଥିରେ ରାଜକର୍ମଚାରୀମାନେ ନିୟମିତ ଭାବେ ସମବେତ ହେଉଥିଲେ ସଭା ଅନୁଷ୍ଠାନରେ । ଏହିସବୁ ସଭାରେ ଯେଉଁ ନିର୍ଦ୍ଦେଶାବଳୀ ଗୃହୀତ ହେଉଥିଲା, ତା'ର ଅନୁଲିପି ପ୍ରସ୍ତୁତ କରୁଥିଲେ ଲେଖକ ବା ଲିପିକାରମାନେ । ତା'ପରେ ସେଇ ଅନୁଲିପିଗୁଡ଼ିକୁ ପଠାଇ ଦିଆଯାଉଥିଲା ଜିଲ୍ଲାର ବିଭିନ୍ନ ସ୍ଥାନକୁ । ଏହି ଯୁଗର ଲିପିକାରମାନେ ବ୍ରାହ୍ମୀ, ଖରୋଷ୍ଠୀ ଏବଂ ଗ୍ରୀକ୍ ପ୍ରଭୃତି ଲିପି ସହିତ ପରିଚିତ ଥିଲେ ।

ଅଶୋକଙ୍କ ଅନୁଶାସନଗୁଡ଼ିକରେ ସାମ୍ରାଜ୍ୟର ସୀମାନ୍ତ ରକ୍ଷା କାର୍ଯ୍ୟରେ ନିଯୁକ୍ତ ବିଶେଷ ରାଜକର୍ମଚାରୀ ବା ଅନ୍ତମହାମାତ୍ରମାନଙ୍କ ଉଲ୍ଲେଖ ଦେଖିବାକୁ ମିଳେ । "ଅର୍ଥଶାସ୍ତ୍ର" ଲେଖକ ମଧ୍ୟ ଏହି କର୍ମଚାରୀମାନଙ୍କ ସଂପର୍କରେ ଅବହିତ ଥିଲେ । ଏହି କର୍ମଚାରୀ ଉଚ୍ଚ ପଦାଧିକାରୀ ଥିଲେ ବୋଲି ମନେ ହୁଏ, କାରଣ ଏମାନେ ଉଚ୍ଚ ବେତନ ପାଉଥିଲେ । ଶାସନ ବ୍ୟବସ୍ଥାର କଠୋର କେନ୍ଦ୍ରୀକରଣ ଯଦିଓ ମୌର୍ଯ୍ୟ ରାଜାମାନଙ୍କର ନୀତି ଥିଲା, ତେବେ ବହୁ ପ୍ରାଚୀନ ପ୍ରଥା ଏବଂ ଐତିହ୍ୟକୁ ସେମାନେ ରକ୍ଷା କରୁଥିଲେ । ସେସବୁକୁ ମର୍ଯ୍ୟାଦା ଦେବା ଦିଗରେ ସେମାନେ ଉତ୍ସାହୀ ଥିଲେ ।

ସାମ୍ରାଜ୍ୟର ଅଭ୍ୟନ୍ତରରେ ବିଚ୍ଛିନ୍ନତା ନୀତିର ବିରୋଧିତା କରିବା ସତ୍ତ୍ୱେ ମୌର୍ଯ୍ୟ ରାଜାମାନେ କେତେକ ପ୍ରଜାତନ୍ତ୍ରୀୟ ପ୍ରତିଷ୍ଠାନ ବା ଗଣକୁ ସାମ୍ରାଜ୍ୟର ଅଭ୍ୟନ୍ତରରେ ରଖିବା ସଙ୍ଗେ ସଙ୍ଗେ ସ୍ୱାୟତ୍ତ ଶାସନର ଅଧିକାର ପ୍ରଦାନ କରିଥିଲେ । ବିଶେଷତଃ, ସେଇସବୁ ଅଞ୍ଚଳକୁ ପ୍ରଦାନ

କରିଥିଲେ, ଯେଉଁଠି କଠୋର ନିୟନ୍ତ୍ରଣ ଜାହିର କରିବା କଠିନ ଥିଲା । ମୌର୍ଯ୍ୟ ସାମ୍ରାଜ୍ୟରେ ଏହିଭଳି ସ୍ୱାୟତ୍ତଶାସିତ, ଆତ୍ମନିର୍ଭରଶୀଳ କେତେକ ନଗର ରାଷ୍ଟ୍ରର କଥା ମେଗାସ୍ଥେନିସ୍ ଉଲ୍ଲେଖ କରିଛନ୍ତି, ଯେଉଁଠି ପ୍ରାଚୀନ ରାଜନୈତିକ ସ୍ୱରୂପର ଅନେକ ଲକ୍ଷଣ ବିଦ୍ୟମାନ ଥିଲା । ତେବେ ଏହି ରାଜନୈତିକ ଗଣଗୁଡ଼ିକ ସାମ୍ରାଜ୍ୟିକ ଶାସନର ସାମଗ୍ରିକ ବ୍ୟବସ୍ଥାର ଅନ୍ତର୍ଭୂତ ଥିଲେ ।

## ନଗର ପ୍ରଶାସନ

ମୌର୍ଯ୍ୟ ଯୁଗରେ ନଗର ଶାସନ ବ୍ୟବସ୍ଥାରେ ମଧ୍ୟ ସ୍ୱାୟତ୍ତ ଶାସନର କେତେକ ବୈଶିଷ୍ଟ୍ୟ ରହି ଯାଇଥିଲା । ଅଶୋକଙ୍କ ଶିଳାଲେଖଗୁଡ଼ିକରେ ଦେଖିବାକୁ ମିଳେ ଯେ, ସହରଗୁଡ଼ିକୁ ଅଭ୍ୟନ୍ତର ଅଞ୍ଚଳର ସହର, ଅର୍ଥାତ୍, ବିଜିତ ଅଞ୍ଚଳର ସହର ଏବଂ ବହିର୍ଭାଗସ୍ଥ ସହରରେ ଭାଗ ଭାଗ କରାଯାଇଛି । ସାମ୍ରାଜ୍ୟର ରାଜଧାନୀ ଥିଲା ପାଟଳୀପୁତ୍ର । ମେଗାସ୍ଥେନିସ୍ ବିଶେଷ ଧରଣର ନଗର କର୍ମଚାରୀମାନଙ୍କ (ଗ୍ରୀକ୍ ଭାଷାରେ ଅସ୍ତିନୋମୋଇ) କଥା ଉଲ୍ଲେଖ କରିଛନ୍ତି । ସେମାନେ ପ୍ରତ୍ୟେକ ସହରରେ ଛଅଟି କରି କ୍ଷୁଦ୍ର ପରିଷଦ ଗଠନ କରୁଥିଲେ ଏବଂ ପ୍ରତ୍ୟେକ ପରିଷଦରେ ପାଞ୍ଚଜଣ କରି ସଦସ୍ୟ ରହୁଥିଲେ । ପ୍ରତିଟି ପରିଷଦ ନାଗରିକ ଜୀବନର ନିମ୍ନୋକ୍ତ କ୍ଷେତ୍ରଗୁଡ଼ିକର ତତ୍ତ୍ୱାବଧାନ କରୁଥିଲା । ଯଥା, ବିଭିନ୍ନ କାରୁଶିଳ୍ପୀ, ଆଗନ୍ତୁକ ବିଦେଶୀ, ଜନ୍ମ ଓ ମୃତ୍ୟୁର ହିସାବରକ୍ଷଣ, ବାଣିଜ୍ୟ ସଂକ୍ରାନ୍ତ କ୍ରିୟାକଳାପ, କାରୁଶିଳ୍ପମାନଙ୍କ ଦ୍ୱାରା ନିର୍ମିତ ଜିନିଷପତ୍ରଗୁଡ଼ିକୁ ବିକ୍ରି କରିବା ପୂର୍ବରୁ ସେସବୁ ଉପରେ ସିଲ୍‌ମୋହର ମାରିବା ବ୍ୟବସ୍ଥା ଏବଂ ଜିନିଷପତ୍ର ବିକ୍ରି ବାବଦକୁ କିଣାଦାମ୍‌ର ଏକଦଶମାଂଶ କର ହିସାବରେ ଆଦାୟ କରିବାର ବ୍ୟବସ୍ଥା । ମେଗାସ୍ଥେନିସ୍‌ଙ୍କର ଏହି ବିବରଣୀରୁ ଜଣାଯାଏ, ନଗର ଶାସନ ବ୍ୟବସ୍ଥାର କେଉଁ ଦିଗସବୁ ବିଶେଷ ପ୍ରୟୋଜନୀୟ ଥିଲା ଏବଂ କର୍ତ୍ତୃପକ୍ଷଙ୍କ ତରଫରୁ ବିଶେଷ ନିୟନ୍ତ୍ରଣ ଅପେକ୍ଷା କରୁଥିଲା । ସେତେବେଳେ ସହରମାନଙ୍କରେ ଏହି ଧରଣର ଯୌଥ ଶାସନ ପରିଷଦର ଅସ୍ତିତ୍ୱ ଏକ ଉଲ୍ଲେଖନୀୟ ବିଷୟ । ପ୍ରତ୍ୟେକ ସହରରେ ନଗର ପରିଷଦ ଥିଲା କାର୍ଯ୍ୟତଃ ପ୍ରଧାନ ଶାସନ କର୍ତ୍ତୃପକ୍ଷ, ଯଦିଓ ଏହା ସ୍ପଷ୍ଟ ଯେ, ଏହି ପରିଷଦର ସଦସ୍ୟମାନେ ପୂର୍ବବର୍ତ୍ତୀ ବୈଦିକ ଯୁଗ ଭଳି ପରିଷଦକୁ ନିର୍ବାଚିତ ହେଉ ନଥିଲେ । ସେମାନେ ଥିଲେ କେନ୍ଦ୍ରୀୟ କିମ୍ବା ବିଭାଗୀୟ କର୍ତ୍ତୃପକ୍ଷଙ୍କ ଦ୍ୱାରା ନିଯୁକ୍ତ ବା ମନୋନୀତ ବ୍ୟକ୍ତି ମାତ୍ର ।

କେନ୍ଦ୍ରୀୟ ଶାସନ କର୍ତ୍ତୃପକ୍ଷ, ଅବଶ୍ୟ, ସର୍ବଦା ସଚେଷ୍ଟ ରହୁଥିଲେ ନଗର ପରିଷଦଗୁଡ଼ିକର ସ୍ୱାଧୀନତା ହରଣ କରିବାକୁ, ତେବେ ଏହି ପରିଷଦଗୁଡ଼ିକ କିଛି ପରିମାଣରେ ସ୍ୱାୟତ୍ତଃ ଶାସନ ବଜାଏ ରଖିବାକୁ ସମର୍ଥ ହୋଇଥିଲେ । ଯଥା, ଉଦାହରଣ ସ୍ୱରୂପ, କେତେକ ସହରର ନିଜସ୍ୱ ସିଲ୍‌ମୋହର ଓ ନିଜସ୍ୱ ପ୍ରତୀକଚିହ୍ନ ଥିଲା । ନଗର ପରିଷଦଗୁଡ଼ିକ ସିଧାସଳଖ କାରିଗର ସମବାୟଗୁଡ଼ିକ ସହିତ କାରବାର କରୁଥିଲେ ।

ବର୍ଣ୍ଣ ଏବଂ ପେଶା ଅନୁଯାୟୀ ଜନସଂଖ୍ୟାର ପ୍ରତ୍ୟେକ ଅଂଶ ସହରର ସୁନିର୍ଦ୍ଦିଷ୍ଟ ଗୋଟିଏ ଗୋଟିଏ ପଡ଼ାରେ ବାସ କରୁଥିଲେ । ସମ୍ଭବତଃ, ଏହି ଅଭ୍ୟାସଟି ଉପଜାତୀୟ ସଂଗଠନର ପ୍ରାଚୀନ ପରମ୍ପରାର ଏକ ଅବଶେଷ ଭଳି ଥିଲା । ନଗର ପରିଷଦ କର୍ମଚାରୀମାନେ ସରକାରୀ

ଭବନଗୁଡ଼ିକୁ , ସହରର ପରିଚ୍ଛନ୍ନତା ଓ ସ୍ୱାଭାବିକ ଅବସ୍ଥାର ସଂରକ୍ଷଣ , ତୀର୍ଥସ୍ଥାନ ଓ ମନ୍ଦିରଗୁଡ଼ିକର ରକ୍ଷଣାଦି କାର୍ଯ୍ୟକୁ ନିଜ ନିୟନ୍ତ୍ରଣରେ ରଖୁଥିଲେ । ସହରର ଅଧିକାଂଶ ଘର ସେତେବେଳେ କାଠ ନିର୍ମିତ ଥିଲା , ଫଳରେ ଅଗ୍ନିକାଣ୍ଡରୁ ଘରଗୁଡ଼ିକୁ ରକ୍ଷା କରିବାର କାର୍ଯ୍ୟଟି ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସବୁ ଘରମାଲିକ ଅଗ୍ନିବିରୋଧୀ ସରଞ୍ଜାମ ମହଜୁତ୍ କରି ରଖୁଥିଲେ । "ଅର୍ଥଶାସ୍ତ୍ରରେ" କୁହାଯାଇଛି , ଗୃହବାସୀମାନେ ସବୁବେଳ ପାଇଁ ଜଳଭରା ପାତ୍ରସବୁ ହାତ ପାହାନ୍ତାରେ ରଖୁଥିଲେ । ରାସ୍ତା ପାଖରେ ମଧ୍ୟ ବହୁ ଜଳଭରା ପାତ୍ର ରଖାଯାଉଥିଲା । "ଅର୍ଥଶାସ୍ତ୍ରରେ" ଲିଖିତ ସାକ୍ଷ୍ୟ ଅନୁଯାୟୀ କହିବାକୁ ହୁଏ ଯେ , ସହରମାନଙ୍କରେ ଲୋକଙ୍କର ଜୀବନ ଥିଲା କଠୋର ଭାବେ ନିୟନ୍ତ୍ରିତ । ସଂଧ୍ୟାବେଳେ ବିଶେଷ ଏକ ସଂକେତଜ୍ଞାପନ ପରେ ରାସ୍ତାକୁ ବାହାରିବା ନିଷିଦ୍ଧ ଥିଲା । ସହର ବାସୀମାନଙ୍କ ମଧ୍ୟରୁ କେହି ଯଦି ସାହସ କରି ରାଜପ୍ରାସାଦ ଆଗରେ ଚାଲି ଯାଉଥିଲେ , ତେବେ ସେମାନଙ୍କୁ ଗିରଫ୍ କରାଯାଇ ଅର୍ଥଦଣ୍ଡ ଦିଆଯାଉଥିଲା ।

## ଅଶୋକଙ୍କ ଧର୍ମନୀତି

ଭାରତରେ ବୌଦ୍ଧ ଧର୍ମର ବ୍ୟାପକ ପ୍ରସାର ଘଟିଥିଲା ମୌର୍ଯ୍ୟ ଯୁଗରେ । ମୌର୍ଯ୍ୟ ରାଜତ୍ୱର କେତେକ ଶତାବ୍ଦୀପୂର୍ବରୁ ପରିବ୍ରାଜକ ଭିକ୍ଷୁମାନଙ୍କର ଛୋଟ ଏକ ସଂପ୍ରଦାୟ ଭଳି ଯେଉଁ ବୌଦ୍ଧ ଧର୍ମର ସୂତ୍ରପାତ ହୋଇଥିଲା ଖ୍ରୀଷ୍ଟ ପୂର୍ବ ତୃତୀୟ ଶତାବ୍ଦୀରେ ତାହା ପ୍ରାଚୀନ ଭାରତୀୟ ସମାଜର ଆତ୍ମିକ ଜୀବନରେ ଅନ୍ୟତମ ସର୍ବବୃହତ୍ ଏକ ଧର୍ମ ଆନ୍ଦୋଳନର ରୂପ ପରିଗ୍ରହ କରିଥିଲା । ଏହି ସମୟ କାଳରେ ଗଢ଼ି ଉଠିଥିଲା ସଂଗଠିତ ବୌଦ୍ଧ ଜୀବନଯାତ୍ରାର ପ୍ରତୀକ ସଂଘସବୁ ଏବଂ ମୁଖ୍ୟ ବୌଦ୍ଧ ଧର୍ମଗ୍ରନ୍ଥଗୁଡ଼ିକର ସଂକଳନ କାର୍ଯ୍ୟ ସମାପ୍ତ ହୋଇଥିଲା । ଠିକ୍ ଏହି ଯୁଗରେ ବୌଦ୍ଧ ଧର୍ମ ବ୍ୟାପକ ଭାବେ ବ୍ୟାପୀ ଯାଇଥିଲା ଏବଂ ମୌର୍ଯ୍ୟ ରାଜାମାନଙ୍କ ମଧ୍ୟରୁ ଅନେକଙ୍କର ସମର୍ଥନ ଲାଭ କରିବା କୌଣସି ଆକସ୍ମିକ ଘଟଣା ନଥିଲା । ପ୍ରବଳ ଶକ୍ତିଶାଳୀ ଏକ ରାଷ୍ଟ୍ରର ଊର୍ଦ୍ଧ୍ୱରେ ସ୍ୱୈରତନ୍ତ୍ରୀ ଏକଛତ୍ର ଏକ ରାଜା ବା ରାଜଚକ୍ରବର୍ତ୍ତୀର ଆଦର୍ଶ ସହ ବୌଦ୍ଧ ଧର୍ମ ଏହି ସମୟରେ ଐକ୍ୟବଦ୍ଧ ଏକ ସାମ୍ରାଜ୍ୟ ଗଠନର ତତ୍ତ୍ୱଗତ ଭିତ୍ତି ଯୋଗାଇଥିଲା ।

ମିଳିଥିବା ବିଭିନ୍ନ ସୂତ୍ର ଅନୁଯାୟୀ କହିବାକୁ ହୁଏ ଯେ , ଅଶୋକ ରାତାରାତି ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ନଥିଲେ । ପିତାଙ୍କ ଅମଳରେ ରାଜସଭାରେ ସେ ବିଭିନ୍ନ ରକ୍ଷଣଶୀଳ ଓ ତଥାକଥିତ ଧର୍ମବିରୋଧୀ ବିଭିନ୍ନ ମତର ଦାର୍ଶନିକ ପଣ୍ଡିତମାନଙ୍କୁ ଦେଖିବାକୁ ପାଇଥିଲେ । ପରେ , ଅବଶ୍ୟ , ଅଶୋକ ଏକ ବୌଦ୍ଧ ସଂଘ ପରିଦର୍ଶନ କରିଥିଲେ , ବୁଦ୍ଧଙ୍କ ମୂଳ ଶିକ୍ଷାସମୂହକୁ ଗଭୀର ଭାବେ ଅଧ୍ୟୟନ କରିଥିଲେ ଏବଂ ଉପାସକ ବା ମଠବହିର୍ଭୂତ ବୌଦ୍ଧ ହୋଇଥିଲେ । ନିଜର ଅନୁଶାସନଗୁଡ଼ିକରେ ତାଙ୍କ ଧର୍ମବିଶ୍ୱାସର ବିବର୍ତ୍ତନ କଥା ଅଶୋକ ଉଲ୍ଲେଖ କରିଛନ୍ତି । ରାଜତ୍ୱର ପ୍ରାରମ୍ଭରେ ସମ୍ରାଟ ବୌଦ୍ଧ ଧର୍ମମତ ଓ ସଂପ୍ରଦାୟ ପ୍ରତି ବିଶେଷ ଧ୍ୟାନ ନେଇ ନଥିଲେ । କିନ୍ତୁ , ପରେ ରାଜଧାନୀର ବୌଦ୍ଧ ଭିକ୍ଷୁମାନଙ୍କର ଜୀବନଯାତ୍ରା ସହିତ ବ୍ୟକ୍ତିଗତ ଭାବେ ପରିଚିତ ହେବା ପରେ ସେ ସକ୍ରିୟ ଭାବେ ବୌଦ୍ଧମାନଙ୍କୁ ସମର୍ଥନ କରିବାକୁ ଏବଂ ସେମାନଙ୍କୁ ସାହାଯ୍ୟ ଦେବାକୁ ଆରମ୍ଭ କରିଥିଲେ । କଳିଙ୍ଗ ଯୁଦ୍ଧ ପରେ ବୁଦ୍ଧଙ୍କ ଶିକ୍ଷାସମୂହ ଓ ବୌଦ୍ଧ ନୀତିବୋଧ ସଂପର୍କରେ

ତାଙ୍କ ଆଗ୍ରହ ବିଶେଷ ଭାବେ ଜାଗ୍ରତ ଏବଂ ସ୍ପଷ୍ଟ ହୋଇ ଉଠିଥିଲା ଏବଂ ଧର୍ମବିଜୟର (ବା, ଆଚରଣ, ଅର୍ଥାତ୍, ଧର୍ମର ମୂଳନୀତିଗୁଡ଼ିକର ପ୍ରଚାର) ନୀତି ତାଙ୍କ କାର୍ଯ୍ୟକଳାପରେ ବିଶେଷ ଗୁରୁତ୍ୱ ଲାଭ କରିଥିଲା । ତେବେ, ପ୍ରସଙ୍ଗତଃ ସ୍ମରଣ କରାଯାଇ ପାରେ ଯେ, କଳିଙ୍ଗ ଯୁଦ୍ଧ ସଂଘଟିତ ହେବା ପୂର୍ବରୁ ଅଶୋକ ବୌଦ୍ଧ ଧର୍ମର ଅନୁଗାମୀ ହୋଇଥିଲେ ।

ନିଜେ ସକ୍ରିୟ ବୌଦ୍ଧ ମତାବଲମ୍ବୀ ହେବା ସତ୍ତ୍ୱେ ଅଶୋକ ତାଙ୍କର ସମଗ୍ର ରାଜତ୍ୱକାଳରେ କେବେହେଲେ ମଠବାସୀ ଭିକ୍ଷୁ ହୋଇ ନଥିଲେ, କିମ୍ବା ରାଜ୍ୟର ଶାସନ ଦାୟିତ୍ୱ ଅନ୍ୟ କାହା ହାତରେ ଅର୍ପଣ ବି କରି ନଥିଲେ । କେତେକ ପଣ୍ଡିତଙ୍କ ମତରେ, ଅଶୋକ ରାଜସନ୍ନ୍ୟାସୀ ଥିଲେ ଏବଂ ଶେଷ ଆଡ଼କୁ ରାଜପଦ ଛାଡ଼ି ମଠରେ ଯୋଗ ଦେଇଥିଲେ । କିନ୍ତୁ ଏପର୍ଯ୍ୟନ୍ତ ପ୍ରତିଷ୍ଠିତ ସୂତ୍ରରୁ ଏଭଳି ମତ ପ୍ରତି ସମର୍ଥନ ମିଳି ନାହିଁ । ଅଶୋକଙ୍କ ରାଜତ୍ୱକାଳରେ ବୌଦ୍ଧ ଧର୍ମ ରାଷ୍ଟ୍ରର ସରକାରୀ ଧର୍ମରେ ପରିଣତ ହୋଇଥିଲା—ଏହି ସିଦ୍ଧାନ୍ତଟି ସଂପୂର୍ଣ୍ଣ ଭିତ୍ତିହୀନ ।

ଅଶୋକ ଯଦିଓ ବୌଦ୍ଧ ଧର୍ମମତ ଓ ସଂପ୍ରଦାୟର ପୃଷ୍ଠପୋଷକତା କରୁଥିଲେ, ତେବେ ବୌଦ୍ଧ ଧର୍ମକୁ ସରକାରୀ ଧର୍ମମତରେ ପରିଣତ କରି ନଥିଲେ । ତାଙ୍କ ଧର୍ମୀୟ ନୀତିର ପ୍ରଧାନ ବୈଶିଷ୍ଟ୍ୟ ଥିଲା ପରମ ସହିଷ୍ଣୁତା ଏବଂ ତାଙ୍କ ସମଗ୍ର ରାଜତ୍ୱକାଳରେ ସେ ଏହି ସହିଷ୍ଣୁତା ବଜାଏ ରଖିଥିଲେ ।

ଅନୁଶାସନଗୁଡ଼ିକରେ ସମସ୍ତ ଧର୍ମ ସଂପ୍ରଦାୟ ମଧ୍ୟରେ ଐକ୍ୟ ସପକ୍ଷରେ ଅଶୋକ ମତ ବ୍ୟକ୍ତ କରିଥିଲେ, ତେବେ ଏହି ଐକ୍ୟ ଜୋର ଜବରଦସ୍ତ ଅର୍ଜନ କରାଯିବ ନାହିଁ, ପ୍ରତ୍ୟେକ ଧର୍ମମତର ମୂଳନୀତିସମୂହର ବିକାଶ ସାଧନ ମଧ୍ୟ ଦେଇ କରାଯିବ ବୋଲି ସେ କହିଥିଲେ । ଏହିସବୁ ଅନୁଶାସନରୁ ଜଣାଯାଏ ଯେ, ସେତେବେଳେ ବୌଦ୍ଧମାନଙ୍କର ଅନ୍ୟତମ ପ୍ରଧାନ ବିରୋଧୀ ଏବଂ ଜନସାଧାରଣଙ୍କ ମଧ୍ୟରେ ବିଶେଷ ପ୍ରଭାବଶାଳୀ "ଅଜୀବିକ୍ମାନଙ୍କୁ" ଅଶୋକ କେତୋଟି ଗୁହା ଦାନ କରିଥିଲେ । ଏହା ଛଡ଼ା ଅନୁଶାସନଗୁଡ଼ିକରୁ ଆଉରି ଜଣାଯାଏ ଯେ, ସମ୍ରାଟ ତାଙ୍କ ପ୍ରତିନିଧିମାନଙ୍କୁ ଆଲାପଆଲୋଚନା ପାଇଁ ଜୈନ ଓ ବ୍ରାହ୍ମଣ ସଂପ୍ରଦାୟଗୁଡ଼ିକ ନିକଟକୁ ପଠାଉଥିଲେ । ଏକଥା ମନେ କରାଯାଇ ପାରେ ଯେ, ଅଶୋକ ଏହି ପରମ ସହିଷ୍ଣୁତାର ନୀତି କିଛି ପରିମାଣରେ ବାଧ୍ୟ ହୋଇ ଗ୍ରହଣ କରିଥିଲେ । କାରଣ ରକ୍ଷଣଶୀଳ ଏବଂ ଅପଧର୍ମୀ ଧର୍ମମତ (ବୌଦ୍ଧ ଧର୍ମ ଛଡ଼ା) ତାଙ୍କ ସମୟରେ ଏତେ ପ୍ରଭାବଶାଳୀ ଥିଲା ଯେ, ତାଙ୍କ ପକ୍ଷରେ ଏତଦ୍‌ବ୍ୟତୀତ ଅନ୍ୟ କୌଣସି ପନ୍ଥା ନଥିଲା । ତାଙ୍କର ଏହି ପରଧର୍ମ ସହିଷ୍ଣୁତା ନୀତି ଓ ତତ୍ ସଙ୍ଗେ ସଙ୍ଗେ ବିଭିନ୍ନ ଧର୍ମ ସଂପ୍ରଦାୟ ଜୀବନଯାତ୍ରା ଉପରେ ରାଷ୍ଟ୍ରର ସୁକୌଶଳ ନିୟନ୍ତ୍ରଣ ସଠିକ ଭାବେ କହିବାକୁ ଗଲେ ବ୍ରାହ୍ମଣ, ଅଜୀବିକ ଓ ଜୈନମାନଙ୍କର ଶକ୍ତିଶାଳୀ ସ୍ତର ସହିତ ସଂଘର୍ଷ ଏଡ଼େଇ ଯିବାକୁ ଏବଂ ତତ୍ ସଙ୍ଗେ ସଙ୍ଗେ ବୌଦ୍ଧ ଧର୍ମକୁ କାର୍ଯ୍ୟକର ଭାବେ ପ୍ରଚାର କରିବା ଦିଗରେ ଅଶୋକଙ୍କୁ ସହାୟକ ହୋଇଥିଲା । କିନ୍ତୁ ପରେ ତାଙ୍କ ରାଜତ୍ୱକାଳର ଶେଷ ପର୍ବରେ, ଅଶୋକ ଯେତେବେଳେ ତାଙ୍କର ଏହି ପରଧର୍ମ ସହିଷ୍ଣୁତା ନୀତି ପରିତ୍ୟାଗ କରି ଖୋଲଖୋଲି ଭାବେ ବୌଦ୍ଧ ଧର୍ମ ସପକ୍ଷରେ ନୀତି ଅନୁସରଣ କରିବାକୁ ଆରମ୍ଭ କଲେ, ଅନ୍ୟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ସେତେବେଳେ ପ୍ରବଳ ବିରୋଧିତା ଦେଖା ଦେଇଥିଲା ଏବଂ ଏହା ତାଙ୍କର ଶାସନ ବ୍ୟବସ୍ଥା ପକ୍ଷରେ ଗୁରୁତର ଫଳାଫଳର କାରଣ ସ୍ୱରୂପ ହେଲା ।

ରାଜତ୍ୱକାଳର ଏକେବାରେ ଅନ୍ତିମ ବର୍ଷମାନଙ୍କରେ ଅଶୋକ ବୌଦ୍ଧ ସଂପ୍ରଦାୟର ଅତୀବ ଘନିଷ୍ଠ ହୋଇ ପଡ଼ିଥିଲେ ଏବଂ ପୂର୍ବର ସହିଷ୍ଣୁତା ନୀତିକୁ ବିସର୍ଜନ ଦେଇ ଅଜୀବିକ୍ ତଥା ଜୈନମାନଙ୍କ ଉପରେ ଉତ୍ପୀଡ଼ନ ପର୍ଯ୍ୟନ୍ତ ଆରମ୍ଭ କରି ଦେଇଥିଲେ ।

ଏହା ଫଳରେ ବୌଦ୍ଧମାନଙ୍କ ସହିତ ତତ୍‌କାଳୀନ ଅନ୍ୟାନ୍ୟ ଧର୍ମମତର ପ୍ରତିନିଧିମାନଙ୍କ ସଂପର୍କ ଗୁରୁତର ଭାବେ ଜଟିଳ ହୋଇ ଉଠିଥିଲା । ଏପରିକି ବୌଦ୍ଧ ସଂପ୍ରଦାୟଗୁଡ଼ିକ ମଧ୍ୟରେ କେତେକ ବିରୋଧୀ ଲକ୍ଷଣ ମଧ୍ୟ ପ୍ରକାଶ ପାଇଥିଲା ଏହି ସମୟରେ । ସେତେବେଳର କେତେକ ସୂତ୍ରରୁ ଜଣାଯାଏ ଯେ, ବିଭିନ୍ନ ବୌଦ୍ଧ ଧର୍ମମତର ପ୍ରତିନିଧିମାନଙ୍କ ମଧ୍ୟରେ ମଧ୍ୟ ବିରୋଧ ଦେଖା ଦେଇଥିଲା । ଏହି କାରଣରୁ ସମ୍ରାଟ ଅଶୋକ ଚେଷ୍ଟା କରିଥିଲେ ବୌଦ୍ଧ ଧର୍ମ ସଂପ୍ରଦାୟଗୁଡ଼ିକୁ ଐକ୍ୟବଦ୍ଧ ରଖିବା ପାଇଁ । ସଂଘର ଐକ୍ୟକୁ କ୍ଷୁଣ୍ଣ କରୁଥିବା ଭିନ୍ନ ମତାବଲମ୍ବୀ ଭିକ୍ଷୁ ଏବଂ ଭିକ୍ଷୁଣୀମାନଙ୍କ ବିରୁଦ୍ଧରେ ସଂଗ୍ରାମ ପରିଚାଳନା ବିଷୟରେ ଅଶୋକ ଏକ ବିଶେଷ ଅନୁଶାସନ ପ୍ରଚାର କରିଥିଲେ । ଏହି ଅନୁଶାସନରେ ବିଦ୍ରୋହୀମାନଙ୍କୁ ସଂଘ ମଧ୍ୟରୁ ବହିଷ୍କାର କରିବା କଥା କୁହାଯାଇଛି । ତତ୍ ସଙ୍ଗେ ସଙ୍ଗେ ଅଶୋକ ସୁପାରିସ୍ କରିଥିଲେ ଯେ, ବୌଦ୍ଧ ଭିକ୍ଷୁମାନଙ୍କର ଉଚିତ ହେଲା ବୌଦ୍ଧ ଶାସ୍ତ୍ରଗୁଡ଼ିକୁ ସଯତ୍‌ନରେ ଅଧ୍ୟୟନ କରିବା । ପ୍ରସଙ୍ଗତଃ ସେ ସଂଘ ମଧ୍ୟରେ ଶୃଙ୍ଖଳା ରକ୍ଷା କରିବା ବିଷୟରେ ଲିଖିତ କେତେକ ବୌଦ୍ଧ ଧର୍ମବିଧି ସଂକ୍ରାନ୍ତ ଗ୍ରନ୍ଥର ତାଲିକା ମଧ୍ୟ ପ୍ରଦାନ କରିଥିଲେ ।

ବୌଦ୍ଧ ଗ୍ରନ୍ଥର ଭାଷ୍ୟ ଅନୁଯାୟୀ ଅଶୋକଙ୍କ ରାଜତ୍ୱକାଳରେ ପାଟଳୀପୁତ୍ରରେ ବୌଦ୍ଧମାନଙ୍କର ତୃତୀୟ ମହାସମ୍ମେଳନ ଅନୁଷ୍ଠିତ ହୋଇଥିଲା ।

ଅଶୋକଙ୍କ ଧର୍ମ ସଂକ୍ରାନ୍ତ ନୀତିର ଏକ ସୁନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ହେଲା, ସେ କେବଳ ବୌଦ୍ଧ ଭିକ୍ଷୁମାନଙ୍କ ସମର୍ଥନ ଲାଭ ପାଇ ଉଦ୍ୟୋଗ ନେଇ ନଥିଲେ, ସର୍ବାପେକ୍ଷା ଅଧିକ ଉଦ୍ୟମ କରିଥିଲେ ବୁଦ୍ଧଙ୍କର ବ୍ୟାପକ ଉପାସକସମୂହ ଏବଂ ଭକ୍ତବୃନ୍ଦଙ୍କର ସମର୍ଥନ ଲାଭ କରିବାକୁ ।

ଏହି ଦୃଷ୍ଟିରୁ ଆମେ କହି ପାରେ ଯେ, ଅଶୋକ ହିଁ ଥିଲେ ଭାରତର ସେହି ପ୍ରଥମ ରାଜା, ଯିଏ କି ସାମ୍ରାଜ୍ୟର ସଂହତି ସାଧନ ପାଇଁ ବୌଦ୍ଧ ଧର୍ମର ଗୁରୁତ୍ୱ ଉପଲବ୍ଧି କରିଥିଲେ ଏବଂ ତା'ର ପ୍ରଚାର ଦିଗରେ ପ୍ରୋତ୍ସାହନ ଯୋଗାଇଥିଲେ । ତାଙ୍କର ଅଧିକାଂଶ ଅନୁଶାସନ ଭିକ୍ଷୁମାନଙ୍କ ଉଦ୍ଦେଶ୍ୟରେ ରଚିତ ନହେଁ, ସାଧାରଣ ଲୋକମାନଙ୍କ ଉଦ୍ଦେଶ୍ୟରେ ରଚିତ । କାରଣ, ଯେତେ ଦୂର ମନେ ହୁଏ, ସାଧାରଣ ଲୋକେ ବୌଦ୍ଧ ଧର୍ମର ମୂଳନୀତିଗୁଡ଼ିକ ଓ ଏହି ଧର୍ମମତର ଦାର୍ଶନିକ ତତ୍ତ୍ୱ ସଂପର୍କରେ ଅବହିତ ନଥିଲେ । ତେଣୁ କରି ଏହିସବୁ ଶିଳାଲେଖରେ ନିର୍ବାଣ, ମହାନ୍ ଚତୁଃସତ୍ୟ, ଅଷ୍ଟାଙ୍ଗ ମାର୍ଗ, ଆଦି ବିଷୟଗୁଡ଼ିକର କୌଣସି ଉଲ୍ଲେଖ ନାହିଁ ବୋଲି ମନେ ହୁଏ । ଏହିସବୁ ଶିଳାଲେଖର ବାସ୍ତବ ତାତ୍ପର୍ଯ୍ୟ ହେଉଛି ଏସବୁର ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ । ତେଣୁ ସମ୍ରାଟ ନିଜେ ଏସବୁକୁ ଆଖ୍ୟା ଦେଇଥିଲେ "ଧର୍ମ" (ଆଚରଣ) ଶାସନ ବୋଲି । ଏହି ସବୁ ନୈତିକ ବିଧି ନିଷେଧ ଅବୌଦ୍ଧ ଧର୍ମସଂପ୍ରଦାୟଗୁଡ଼ିକ ସହ ବୌଦ୍ଧ ଉପାସକମାନଙ୍କ ନିକଟରେ ଭଲ ଭାବେ ପରିଚିତ ହୋଇ ଉଠିଥିଲା ଏବଂ ଜନସଂଖ୍ୟାର ଏକ ବିପୁଳ ଅଂଶର ଏବଂ ସାମାଜିକ ବିଭିନ୍ନ ଗୋଷ୍ଠୀର ସମର୍ଥନ ଲାଭ କରିଥିଲା ।

# ଅଶୋକଙ୍କ ଧର୍ମାନୁଶାସନ

ଧର୍ମ ବୋଇଲେ ମଣିଷର ଆଚରଣ ଓ ସଦାଗ୍ରରୀ ଜୀବନଯାପନ ନିୟମକୁ ସାଧାରଣତଃ ବୁଝାଏ । ତେବେ ବୌଦ୍ଧ ଶାସ୍ତ୍ରାଦିରେ ଏହି ଶବ୍ଦଟି ଏକ ସଂକୀର୍ଣ୍ଣ ଅର୍ଥରେ ବ୍ୟବହୃତ ହୋଇଥିଲେ ମଧ୍ୟ ତାକୁ ବିଶେଷ ଏକ ତତ୍ତ୍ୱ ବୋଲି ମାନିବାକୁ ହେବ ।

ଅଶୋକଙ୍କ ଅନୁଶାସନଗୁଡ଼ିକରେ ଉପରୋକ୍ତ ଏହି ଉଭୟ ବିଧ ଅର୍ଥରେ "ଧର୍ମ" ଶବ୍ଦଟି ବ୍ୟବହୃତ ହୋଇଛି । ଅଧିକାଂଶ ଶିଳାଲେଖରେ ଧର୍ମ ଶବ୍ଦଟି ଦ୍ୱାରା ନୈତିକ ନିୟମକାନୁନ୍‌ର ଏକ ସମାହାର କଥା କୁହାଯାଇଛି । ତେବେ ବିଶେଷ କରି ବିଶୁଦ୍ଧ ବୌଦ୍ଧୀୟ ଅନୁଶାସନଗୁଡ଼ିକରେ ଏହି ଶବ୍ଦଟି ବୁଦ୍ଧଙ୍କ ଉପଦେଶାବଳୀକୁ ବୁଝାଇଛି । ଅନୁଶାସନରେ ଉଲ୍ଲିଖିତ ଉପରୋକ୍ତ ନୈତିକ ନିୟମର ଅନ୍ତର୍ଗତ ଥିଲା ବାପମାଙ୍କର ଆଜ୍ଞାବହ ହେବା, ଗୁରୁଜନଙ୍କ ପ୍ରତି ଭକ୍ତି, ଜୀବମାନଙ୍କ ପ୍ରତି ଦୟା ପ୍ରଦର୍ଶନ, ପ୍ରାଣୀମାନଙ୍କୁ ହତ୍ୟା ନକରିବା, ଆଦି । ଅର୍ଥାତ୍, ଅନ୍ୟ ଭାବେ କହିବାକୁ ଗଲେ, ଏହି ନୀତିଗୁଡ଼ିକ ମଣିଷର ଏପରିସବୁ ଆଚରଣ ସହିତ ଜଡ଼ିତ, ଯାହା ବିଶେଷ ଭାବେ ବୌଦ୍ଧ, ବ୍ରାହ୍ମଣ, କିମ୍ବା ଅନ୍ୟ କୌଣସି ଧର୍ମମତ ସହିତ ସଂପୃକ୍ତ ନୁହେଁ । ଏସବୁ ଥିଲା ଜାତିଗତ ଉପ, କିମ୍ବା ଧର୍ମୀୟ ଆନୁଗତ୍ୟ ନିର୍ବିଶେଷରେ ଜନସମାଜର ବିଭିନ୍ନ ସ୍ତର ପକ୍ଷରେ ସହଜତର ବୋଧଗମ୍ୟ ଐତିହାସିକ ନୈତିକ ନିୟମକାନୁନ୍ । କେତେକ ପଣ୍ଡିତ ଭ୍ରାନ୍ତ ଧାରଣା ବଶତଃ ମନେ କରନ୍ତି ଯେ, ଏହି ନୀତିଗୁଡ଼ିକ ବୌଦ୍ଧ ନୀତିଶାସ୍ତ୍ରର ଅନ୍ତର୍ଗତ ବୋଲି । ଅବଶ୍ୟ, ଏହା ଠିକ୍ ଯେ, ଅଶୋକଙ୍କ ଅନୁଶାସନଗୁଡ଼ିକରେ ଥିବା ଧର୍ମର ବିଗ୍ରର ବିଶ୍ଳେଷଣ ବୌଦ୍ଧ ଧର୍ମ ଦ୍ୱାରା ଯଥେଷ୍ଟ ପରିମାଣରେ ପ୍ରଭାବିତ ହୋଇଥିଲା । ପ୍ରସଙ୍ଗତଃ ଏହା ଲକ୍ଷଣୀୟ ଯେ, ଅଶୋକଙ୍କ ଅନୁଶାସନଗୁଡ଼ିକର ଗ୍ରୀକ୍ ଭାଷାନ୍ତରଣରେ "ଧର୍ମ" ଶବ୍ଦଟିକୁ ଗ୍ରୀକ୍ "ଇଉସେବିୟା" ଶବ୍ଦ ଦ୍ୱାରା ପ୍ରକଟ କରାଯାଇଛି, ଯାହା ଧର୍ମାଚରଣକୁ ନବୁଝାଇ ସଦାଗ୍ରରକୁ ବୁଝାଇଥାଏ । ଧର୍ମର ନୀତିସମୂହ ଅବିଚଳ ଭାବେ ଅନୁସରଣ କଲେ ମଣିଷ କି ଶୁଭଫଳ ଲାଭ କରେ, ଏହି ପ୍ରଶ୍ନଟିକୁ ଅଶୋକ ତାଙ୍କ ଅନୁଶାସନଗୁଡ଼ିକରେ ଏଭଳି ସହଜ ଏବଂ ସାଧାରଣ ଭାବେ ଉପସ୍ଥାପନ କରିଛନ୍ତି । ସେ କହିଛନ୍ତି, ଯେଉଁ ଲୋକ ଅବିଚଳ ଏବଂ ନିଷ୍ଠାର ସହିତ ଧର୍ମକୁ ପାଳନ କରେ, ସେ ରାଜାର ଅନୁଗ୍ରହ ଏବଂ ସ୍ୱର୍ଗ ଲାଭ କରେ । ଏହି ଶେଷୋକ୍ତ ଫଳଟି ଜନସାଧାରଣଙ୍କ ନିକଟରେ ଖୁବ୍ ବୋଧଗମ୍ୟ ଥିଲା । ବୈଦିକ ଯୁଗରେ ମଧ୍ୟ ଏହି ପୁଣ୍ୟ ଫଳଟିର କଥା ବ୍ୟାପକ ଜନସାଧାରଣ ଜାଣିଥିଲେ । ପରେ ବୌଦ୍ଧମାନେ ଉତ୍ତରାଧିକାର ସୂତ୍ରରେ ଏହି ଧାରଣାଟିକୁ ଗ୍ରହଣ କରିଥିଲେ । ଏହା ଛଡ଼ା ଅନୁଶାସନଗୁଡ଼ିକରେ ବୌଦ୍ଧ ଧର୍ମର ଧର୍ମୀୟ କିମ୍ବା ଦାର୍ଶନିକ ସିଦ୍ଧାନ୍ତସମୂହର କୌଣସି ଉଲ୍ଲେଖ ରହୁ ନଥିଲା, କାରଣ, ଅନୁଶାସନଗୁଡ଼ିକ ବିଭିନ୍ନ ମତାବଲମ୍ବୀ ବ୍ୟାପକ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ଥିଲା । ତା'ଛଡ଼ା ଅଶୋକଙ୍କ ଧର୍ମ ସେ ଯୁଗର ଅନ୍ୟାନ୍ୟ ପ୍ରଧାନ ଧର୍ମମତର ଅନ୍ତର୍ଭୁକ୍ତ ମୂଳ ନୈତିକ ନିୟମାବଳୀର ବିରୋଧୀ ମଧ୍ୟ ନଥିଲା । ତାଙ୍କ ଦ୍ୱାରା ପ୍ରଗ୍ରରିତ ନୀତିସମୂହ ବହୁବିଧ ଧର୍ମ ସଂପ୍ରଦାୟ ମତାଦର୍ଶ ନିକଟରେ ଗ୍ରାହ୍ୟ ଧର୍ମ ଶିକ୍ଷାର ନିର୍ଯାସ ବୋଲି ସମ୍ରାଟ ପ୍ରଗ୍ରର କରୁଥିଲେ । ଅନୁଶାସନଗୁଡ଼ିକରେ ମଣିଷ ପକ୍ଷରେ ଧର୍ମ ଶିକ୍ଷା ଲାଭ ପାଇଁ ଆବେଦନ ସାଙ୍ଗକୁ ସମସ୍ତ ଧର୍ମର ଅନ୍ତର୍ଗତ ଉଦ୍ଦେଶ୍ୟାବଳୀକୁ ଗ୍ରହଣ କରିବା ଏବଂ ତାକୁ ମାନି ନେବାର ଏକ ମନୋଭାବ ରହିଥିଲା ।

ଅଶୋକଙ୍କ ଅନୁଶାସନଗୁଡ଼ିକରେ ଧର୍ମର ଯେଉଁସବୁ ନୀତି ଉଲ୍ଲେଖ ରହିଛି, ସେସବୁ ରଚିତ ହୋଇଥିଲା ସାରା ସାମ୍ରାଜ୍ୟର ସମଗ୍ର ଜନସଂଖ୍ୟାକୁ ଏକ ସର୍ବଗ୍ରାହ୍ୟ ନୈତିକ ଭିତ୍ତି ଯୋଗାଇ ଦେବା ପାଇଁ, ବିଭିନ୍ନ ବର୍ଣ୍ଣ, ସମାଜ ତଥା ସାମାଜିକ ସଂପ୍ରଦାୟସମୂହ ଧର୍ମାଚରଣର ଅଧିକତର ମର୍ଯ୍ୟାଦା ଅର୍ଜନ ପାଇଁ ।

ଧର୍ମର ନୀତିସମୂହର ପ୍ରଚାର ଉଦ୍ଦେଶ୍ୟରେ ପରିଚାଳିତ ରାଷ୍ଟ୍ରନୀତି ବା ଧର୍ମବିଜୟ (ଆକ୍ଷରିକ ଅର୍ଥରେ ନ୍ୟାୟ ନିଷ୍ଠା ମାଧ୍ୟମରେ ଜୟଲାଭ) ଥିଲା ଅଶୋକଙ୍କ ସମଗ୍ର ରାଷ୍ଟ୍ରନୀତିର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏକ ଅଙ୍ଗ । ଧର୍ମର ଏହି ନିୟମାବଳୀ ଯଥାଯଥ ଭାବେ ଯେପରି ପାଳିତ ହୁଏ, ତାହାକୁ ନିଶ୍ଚିତ କରିବା ପାଇଁ ଅଶୋକ ବିଶେଷ ରାଜକର୍ମଚାରୀ ବା ଧର୍ମ-ମହାମାତ୍ର ନିଯୋଗ କରିଥିଲେ ।

ଏହି କର୍ମଚାରୀମାନଙ୍କୁ ପ୍ରେରଣ କରାଯାଉଥିଲା ବିଭିନ୍ନ ଧର୍ମାବଲମ୍ବୀ ଲୋକଙ୍କ ଉପରେ ଦୃଷ୍ଟି ରଖିବାକୁ । ଅନୁଶାସନଗୁଡ଼ିକରେ ସମ୍ରାଟ ସିଧାସଳଖ ଏକଥା ଜଣାଇବାକୁ କୁଣ୍ଠାବୋଧ କରି ନାହାନ୍ତି ଯେ, ଧର୍ମ-ମହାମାତ୍ରମାନଙ୍କର କାର୍ଯ୍ୟ ହେଉଛି, ବୌଦ୍ଧ, ବ୍ରାହ୍ମଣ, ଜୈନ ଏବଂ ଅଜୀବିକ୍‌ମାନେ ବାସ୍ତବ କ୍ଷେତ୍ରରେ କିପରି ଧର୍ମକୁ ରୂପାୟିତ କରୁଛନ୍ତି, ତାହା ପର୍ଯ୍ୟବେକ୍ଷଣ କରିବା ।

ଏହି ରାଷ୍ଟ୍ରନୀତି ଅନୁସରଣ କରିବା ଫଳରେ ଜନସାଧାରଣଙ୍କ ମଧ୍ୟରେ ବିଭିନ୍ନ ମତାବଲମ୍ବୀ ଗୋଷ୍ଠୀ ଉପରେ ନିୟନ୍ତ୍ରଣ ବଜାୟ ରଖିବା ଏବଂ ବିଚ୍ଛିନ୍ନତା ମନୋଭାବକୁ ଦମନ କରିବା ସମ୍ଭବ ହୋଇଥିଲା ।

## ଅଶୋକଙ୍କ କ୍ଷମତାଚ୍ୟୁତି ଓ ସାମ୍ରାଜ୍ୟର ପତନ

ମୌର୍ଯ୍ୟ ସାମ୍ରାଜ୍ୟର ଶେଷ ଯୁଗର ଇତିହାସ ଅନୁଧ୍ୟାନ କରିବା ଦିଗରେ ସମ୍ରାଟ ଅଶୋକଙ୍କ ସଂପର୍କରେ ବୌଦ୍ଧ ଉପକଥାଗୁଡ଼ିକ ଅତ୍ୟନ୍ତ ସହାୟକ ଏବଂ କୌତୂହଳପ୍ରଦ । କାରଣ ଏହି ସମୟର ତଥ୍ୟ ପ୍ରଦାନ କରିବାରେ ଶିଳାଲେଖ ସୂତ୍ରଗୁଡ଼ିକ ଅତୀବ ଅପୂର୍ଣ୍ଣ ।

ଏ କ୍ଷେତ୍ରରେ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ହେଉଛି, ଅଶୋକ ତାଙ୍କ ରାଜତ୍ୱର ଶେଷ ବର୍ଷଗୁଡ଼ିକରେ କିପରି କାର୍ଯ୍ୟତଃ କ୍ଷମତାଚ୍ୟୁତ ହୋଇଥିଲେ, ତା'ର ଏକ ଅସାଧାରଣ ବିବରଣୀ । ଦୀର୍ଘ ଏକ ସମୟକାଳ ମଧ୍ୟରେ ସଂକଳିତ ବିଭିନ୍ନ ଧରଣର ଅନେକ ଗ୍ରନ୍ଥରେ ଏହି ବିବରଣୀ ଲିପିବଦ୍ଧ ହୋଇଛି ।

ଏଥିରୁ ଆମେ ଜାଣିବାକୁ ପାଏଁ ଯେ, ରାଜତ୍ୱର ଶେଷ ଆଡ଼କୁ ବୌଦ୍ଧ ସଂଘଗୁଡ଼ିକୁ ମୁକ୍ତହସ୍ତରେ ଅର୍ଥଦାନ କରିବା ଯୋଗୁଁ ଅଶୋକ ତାଙ୍କ ରାଜକୋଷକୁ ପ୍ରାୟ ଖାଲି କରି ଦେଇଥିଲେ । ସେ ଏହିସବୁ ଦାନ କରିଥିଲେ ବୁଦ୍ଧଙ୍କ ବାଣୀ ପ୍ରଚାରର ସାହାଯ୍ୟ କଳ୍ପେ । ଏହି ସମୟରେ ଅଶୋକଙ୍କ ପୌତ୍ର ସମ୍ପାଦି (ବା ସଂପ୍ରତି) ସିଂହାସନର ଉତ୍ତରାଧିକାରୀ ମନୋନୀତ ହୋଇଥିଲେ । ସମ୍ରାଟଙ୍କ ଉଚ୍ଚପଦସ୍ଥ ଅମାତ୍ୟମାନେ ସମ୍ପାଦିଙ୍କୁ ସମ୍ରାଟଙ୍କର ଏହି ଅତିରିକ୍ତ ଅର୍ଥ ଅପଚୟ ବା ଭିକ୍ଷୁମାନଙ୍କୁ ମାତ୍ରାତିରିକ୍ତ ଅର୍ଥଦାନର କଥା ଜଣାଇଲେ ଏବଂ ଦାବୀ କଲେ ଏହିସବୁ ଅର୍ଥଦାନ ପାଇଁ ସମ୍ରାଟଙ୍କ ଆଦେଶକୁ ନାକଚ କରିଦେବା ପାଇଁ । ଏହା ପରେ ସମ୍ପାଦିଙ୍କ ନିର୍ଦ୍ଦେଶକ୍ରମେ ବୌଦ୍ଧ ସଂଘଗୁଡ଼ିକୁ ଅଶୋକଙ୍କ ଅର୍ଥଦାନର ଆଦେଶ ପାଳିତ ହେବା ବନ୍ଦ ହେଲା । ସେତେବେଳେ ରାଜକ୍ଷମତା ବାସ୍ତବରେ

ସମ୍ପାଦିଙ୍କ ହାତକୁ ଗ୍ଲି ଯାଇଥିଲା । ଉପରୋକ୍ତ ଏହିସବୁ ବୌଦ୍ଧ ସୂତ୍ର ଅନୁଯାୟୀ, ଅଶୋକ କାଳେ ତାଙ୍କ ପକ୍ଷରେ ଅତୀବ ଅପ୍ରୀତିକର ଏହି ସତ୍ୟଟିକୁ ସ୍ୱୀକାର କରିଥିଲେ ଯେ, ତାଙ୍କ ଆଦେଶ କେବଳ ଆଦେଶ ହୋଇ ରହିଯାଉଛି, ପାଳିତ ହେଉ ନାହିଁ ଏବଂ ଆନୁଷ୍ଠାନିକ ଭାବେ ସେ ସେତେବେଳେ ସମ୍ରାଟ ହୋଇ ରହିଥିଲେ ମଧ୍ୟ ବାସ୍ତବରେ ସେ ରାଜ୍ୟ ଓ କ୍ଷମତା ଉଭୟକୁ ହରେଇଛନ୍ତି ।

ବୌଦ୍ଧ ସୂତ୍ରଗୁଡ଼ିକରୁ ପ୍ରାପ୍ତ ତଥ୍ୟଗୁଡ଼ିକୁ ସଂପୂର୍ଣ୍ଣ କପୋଳକଳ୍ପିତ ବୋଲି ମନେ ହୋଇ ପାରେ, କିନ୍ତୁ ସେସବୁ ମଧ୍ୟରେ ବାସ୍ତବରେ ଅଶୋକଙ୍କ ରାଜତ୍ୱର ଶେଷ ଆଡ଼କୁ ଦେଶର ତତ୍କାଳୀନ ବିକ୍ଷୁବ୍ଧ ରାଜନୈତିକ ପରିସ୍ଥିତିର ମୋଟାମୋଟି ଏକ ନିର୍ଭରଯୋଗ୍ୟ ଛବି ଫୁଟି ଉଠୁଛି । ଅଶୋକଙ୍କ ବୌଦ୍ଧପ୍ରୀତି ରାଷ୍ଟ୍ରନୀତି ସେତେବେଳେ ରକ୍ଷଣଶୀଳ ବ୍ରାହ୍ମଣ୍ୟ ଧର୍ମ ଏବଂ ଜୈନ ଧର୍ମର ସମର୍ଥକମାନଙ୍କ ମଧ୍ୟରେ ଗୁରୁତର ଅସନ୍ତୋଷ ସୃଷ୍ଟି କରିଥିଲା । କେତେକ ପୁରାତନ ସୂତ୍ର ଅନୁଯାୟୀ ସମ୍ପାଦି କାଳେ ନିଜେ ଜୈନ ଧର୍ମାବଲମ୍ବୀ ଥିଲେ ଏବଂ ରାଜସଭାରେ ପ୍ରଭାବଶାଳୀ ରାଜକର୍ମଚାରୀମାନଙ୍କ ସମର୍ଥନ ତାଙ୍କ ପଛରେ ଥିଲା । ଏହି ସମୟରେ ଦେଶରେ ଆର୍ଥିକ ଅଭାବ ଅସୁବିଧା ଦେଖା ଦେଇଥିଲା ଏବଂ ବିଭିନ୍ନ ଅଞ୍ଚଳରେ ବିଦ୍ରୋହ ଏବଂ ଅଭ୍ୟୁତ୍ଥାନ ସୃଷ୍ଟି ହୋଇ-ଥିଲା । ତକ୍ଷଶିଳାରେ ଏହି ସମୟରେ ଯେଉଁ ବିଦ୍ରୋହ ଦେଖା ଦେଇଥିଲା, ତା'ର ନେତୃତ୍ୱ ନେଇଥିଲେ ସ୍ଥାନୀୟ ଶାସନକର୍ତ୍ତା । ଏଠାକାର ଏହି ବିଦ୍ରୋହ ସେଇ ଯୁଗ ପକ୍ଷରେ ଅନ୍ୟତମ ସର୍ବବୃହତ୍ ବିଦ୍ରୋହ ଥିଲା ।

ଐତିହାସିକ ଉପାଦାନସମୂହରୁ ଜଣାଯାଏ ଯେ, ରାଣୀ ତିଷ୍ୟରକ୍ଷିତା (ସେ ଥିଲେ ବୌଦ୍ଧ ଧର୍ମର ଅନ୍ୟତମ ବିରୋଧୀ) ମଧ୍ୟ ସମ୍ରାଟଙ୍କ ବିରୁଦ୍ଧରେ ଏହି ଷଡ଼ଯନ୍ତ୍ରରେ ଯୋଗ ଦେଇଥିଲେ । ଅଶୋକଙ୍କ ରାଜତ୍ୱକାଳର ଶେଷ ଅନୁଶାସନଗୁଡ଼ିକ ମଧ୍ୟରୁ ଗୋଟିକରେ ସମ୍ରାଟଙ୍କ ନିର୍ଦ୍ଦେଶ ପୂର୍ବ ଭଳି ତାଙ୍କ ନାମରେ ପ୍ରଚାରିତ ନହୋଇ ରାଣୀଙ୍କ ନାମରେ ପ୍ରଚାରିତ ହୋଇଛି । ଏହି ଅନୁଶାସନଟି ଥିଲା ସମ୍ରାଟଙ୍କ ଆନୁକୂଲ୍ୟ ଏବଂ ଉପହାରାଦି ବିତରଣ ସଂପର୍କରେ । ଅର୍ଥାତ୍, ଏହା ସେଇ ବିଷୟଟି ସହିତ ସଂଶ୍ଳିଷ୍ଟ ଥିଲା, ଯାହାକୁ ନେଇ ବୌଦ୍ଧ ଗ୍ରନ୍ଥାଦିର ସୂତ୍ରାନୁଯାୟୀ ସମ୍ରାଟ ଏବଂ ତାଙ୍କ ପରିଷଦବର୍ଗଙ୍କ ମଧ୍ୟରେ ଆନୁଷ୍ଠାନିକ ଭାବେ ସଂଘର୍ଷ ଦେଖା ଦେଇଥିଲା । ଏକଥା ବିଶ୍ୱାସ କରିବା ପଛରେ ଅନେକ କାରଣ ଅଛି ଯେ, ଶିଳାଲେଖଗୁଡ଼ିକରେ ଖୋଦିତ ତଥ୍ୟାଦି ଓ ବୌଦ୍ଧ ଉପାଖ୍ୟାନଗୁଡ଼ିକ ମଧ୍ୟରେ ସାଦୃଶ୍ୟ ମୋଟେ ଆକସ୍ମିକ ନୁହେଁ । ଏହି ସାଦୃଶ୍ୟ ବାସ୍ତବରେ ଅଶୋକଙ୍କ ରାଜତ୍ୱକାଳର ଶେଷ କେଇ ବର୍ଷର ପ୍ରକୃତ ଅବସ୍ଥାର ପ୍ରତିଫଳନ ।

ଏହିସବୁ ସାକ୍ଷ୍ୟ ପ୍ରମାଣରୁ ଏହି ତଥ୍ୟଟି ଜଣା ପଡ଼ୁଛି ଯେ, ଅଶୋକଙ୍କ ସିଂହାସନର ଉତ୍ତରାଧିକାରୀଗଣ ସାମ୍ରାଜ୍ୟର ଐକ୍ୟ ଓ ଅଖଣ୍ଡତା ରକ୍ଷା କରି ପାରି ନଥିଲେ । ପ୍ରାପ୍ତ ସୂତ୍ରର ସାକ୍ଷ୍ୟରୁ ଏକଥା ମନେ କରାଯାଇ ପାରେ ଯେ, ମୌର୍ଯ୍ୟ ସାମ୍ରାଜ୍ୟ ପ୍ରଥମେ ଦୁଇଟି ଅଂଶରେ ବିଭକ୍ତ ହୋଇ ଯାଇଥିଲା : ପାଟଳୀପୁତ୍ରକୁ କେନ୍ଦ୍ର କରି ପୂର୍ବାଞ୍ଚଳ ଏବଂ ତକ୍ଷଶିଳାକୁ କେନ୍ଦ୍ର କରି ପଶ୍ଚିମାଞ୍ଚଳ । ଏହିସବୁ ସୂତ୍ରରେ ଅଶୋକଙ୍କ ପ୍ରତ୍ୟକ୍ଷ ଉତ୍ତରାଧୀକାରୀମାନଙ୍କ ସଂପର୍କରେ ଯେଉଁସବୁ ଉଲ୍ଲେଖ ମିଳିଥାଏ, ସେସବୁଥିରେ ବହୁ ପରସ୍ପର ବିରୋଧୀ ଉକ୍ତି ରହିଛି । ତେବେ ଏକଥା ବିଶ୍ୱାସ କରିବାର କାରଣ ହେଉଛି ଯେ, ପୂର୍ବୋକ୍ତ ସମ୍ପାଦି ବା ପୁରାଣସମୂହରେ ଯାହାଙ୍କୁ ଅଶୋକଙ୍କ ପୁତ୍ର ଓ ଉତ୍ତରାଧୀକାରୀ ବୋଲି କୁହାଯାଇଛି, ସେଇ ଦଶରଥ ଅଶୋକଙ୍କ ପରେ ସିଂହାସନରେ

ବସିଥିଲେ । ଅଶୋକଙ୍କ ଭଳି ଦଶରଥ ମଧ୍ୟ "ଦେବାନାମପ୍ରିୟ" ଉପାଧି ଧାରଣ କରିଥିଲେ ଓ ଅଜୀବିକ୍‌ମାନଙ୍କ ପୃଷ୍ଠପୋଷକ ଥିଲେ । ଅଜୀବିକ୍‌ମାନଙ୍କୁ କେତୋଟି ଗୁହା ଦାନ ସଂପର୍କିତ ତାଙ୍କ ଅନୁଶାସନରୁ ଏହା ଅନୁମିତ ହୁଏ । ଏହାର ପରବର୍ତ୍ତୀ କେତେକ ବର୍ଷ ମଗଧର ସିଂହାସନରେ କେଉଁ ଜଣ ରାଜା ସ୍ୱଳ୍ପ କାଳ ମଧ୍ୟରେ ଜଣକ ପରେ ଜଣେ ବସିଥିଲେ । ଅବଶେଷରେ, ଖ୍ରୀଷ୍ଟ ପୂର୍ବ ୧୮୦ରେ ପାଖାପାଖି କୌଣସି ଏକ ସମୟରେ ମୌର୍ଯ୍ୟ ରାଜବଂଶର ଶେଷ ଉତ୍ତରାଧୀକାରୀ ବୃହଦ୍ରଥ ତାଙ୍କ ପ୍ରଧାନ ସେନାପତି ପୁଷ୍ୟମିତ୍ରଙ୍କ ନେତୃତ୍ୱରେ ପରିକଳ୍ପିତ ଆଉ ଏକ ଷଡ଼ଯନ୍ତ୍ର ଫଳରେ ନିହତ ହୋଇଥିଲେ । ଏହା ପରେ ଯେଉଁ ରାଜବଂଶ ସିଂହାସନ ଦଖଲ କରିଥିଲେ, ତାଙ୍କ ନାମ ଶୁଙ୍ଗ ବଂଶ । କିନ୍ତୁ ମୌର୍ଯ୍ୟ ସାମ୍ରାଜ୍ୟର ପ୍ରାଚୀନ ଗୌରବକୁ ଶୁଙ୍ଗ ବଂଶ ରକ୍ଷା କରି ପାରି ନଥିଲେ । ମନେ ହୁଏ, ଶୁଙ୍ଗ ବଂଶ କ୍ଷମତାରେ ଆସୀନ ହେଲାବେଳକୁ ଉତ୍ତର-ପଶ୍ଚିମ ଅଞ୍ଚଳ ଏବଂ ଦାକ୍ଷିଣାତ୍ୟର କେତେକ ଅଂଶ ମୌର୍ଯ୍ୟ ସାମ୍ରାଜ୍ୟରୁ ବିଚ୍ଛିନ୍ନ ହୋଇ ଯାଇଥିଲା ।

ଗ୍ରୀକ୍ ଐତିହାସିକ ପଲିବିୟାସ୍‌ଙ୍କ ରଚନାରେ ମୌର୍ଯ୍ୟ ସାମ୍ରାଜ୍ୟର ଶେଷ ଆଡ଼କୁ ମୌର୍ଯ୍ୟ ରାଜାମାନଙ୍କ ସହିତ ସେଲ୍ୟୁକସ୍‌ବଂଶୀୟ ରାଜାମାନଙ୍କର ପାରସ୍ପରିକ ସଂପର୍କ ବିଷୟରେ କୌତୂହଳୋଦ୍ଦୀପକ ତଥ୍ୟାଦି ମିଳିଥାଏ । ପଲିବିୟାସ୍‌ଙ୍କ ମତରେ, ସେଲ୍ୟୁକସ୍‌ବଂଶୀୟ ବିଖ୍ୟାତ ରାଜା ମହାନ୍ ଆଣ୍ଟିୟୋକାସ୍ (୨୨୩-୧୮୭ ଖ୍ରୀ : ପୂ :) ପ୍ରାଚ୍ୟ ଦେଶରେ ଦିଗ୍‌ବିଜୟ ପରେ ହିନ୍ଦୁକୁଶ ପର୍ବତ ଅତିକ୍ରମ କରିଥିଲେ ଏବଂ ଭାରତୀୟ ରାଜା ସୋଫାଗାସେନାସ୍‌ଙ୍କ (ସମ୍ଭବତଃ ମୌର୍ଯ୍ୟ ରାଜା ସୁଭଗସେନା) ସହିତ ତାଙ୍କ ମୈତ୍ରୀ ବନ୍ଧନକୁ ପୁନଃସ୍ଥାପିତ କରିଥିଲେ । ଏହା ପରେ ଆରାକୋସିୟା ଅଭିମୁଖେ ଅଭିଯାନ ଆରମ୍ଭ କରିବା ପୂର୍ବରୁ ଭାରତରେ ଥିଲା ବେଳେ ଆଣ୍ଟିୟୋକାସ୍ ଉପହାର ରୂପେ କେତେକ ହାତୀ ପାଇଥିଲେ । ଏଥିରୁ ମନେ ହୁଏ, ସମ୍ଭବତଃ ଖ୍ରୀ : ପୂ : ୨୦୬ ବେଳକୁ ମୌର୍ଯ୍ୟ ରାଜବଂଶ ଏତେ ହୀନବଳ ହୋଇ ପଡ଼ିଥିଲେ ଯେ, ଆଣ୍ଟିୟୋକାସ୍‌ଙ୍କ ଆରାକୋସିୟା ଅଭିଯାନକୁ ପ୍ରତିହତ କରିବାକୁ କ୍ଷମତା ସେମାନଙ୍କର ନଥିଲା । ତା'ଛଡ଼ା ଏ ସମ୍ଭାବନାଟିକୁ ନାକଚ କରାଯାଇ ପାରେ ନାହିଁ ଯେ, ଆରାକୋସିୟା ଏହି ସମୟରେ, ହୁଏତ, ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ନଥିଲା । ତା ସତ୍ତ୍ୱେ ଆଣ୍ଟିୟୋକାସ୍‌ଙ୍କ ପକ୍ଷରେ ସୁଭଗସେନାଙ୍କୁ ଉପେକ୍ଷା କରିବା ମଧ୍ୟ ସମ୍ଭବ ହୋଇନି । ତେଣୁ ସେଲ୍ୟୁକସ୍ ରାଜବଂଶ ଓ ମୌର୍ଯ୍ୟ ରାଜବଂଶ ମଧ୍ୟରେ ଯେଉଁ ମୈତ୍ରୀ ସଂପର୍କ ଇତିପୂର୍ବରୁ ସ୍ଥାପିତ ହୋଇଥିଲା ଆଣ୍ଟିୟୋକାସ୍ ତାକୁ ପୁନର୍ସ୍ଥାପିତ କରିବାକୁ ବାଧ୍ୟ ହୋଇଥିଲେ ।

## ଶୁଙ୍ଗ ବଂଶ ଓ ବ୍ୟାକ୍‌ଟୀୟ-ଗ୍ରୀକ୍‌ମାନଙ୍କ ଆକ୍ରମଣ

ଶୁଙ୍ଗ ବଂଶର ରାଜତ୍ୱକାଳରେ "ପଶ୍ଚିମ ସମସ୍ୟାଟି" ଏକ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ସମସ୍ୟା ରୂପେ ଦେଖା ଦେଇଥିଲା । ପତଞ୍ଜଳିଙ୍କ ଦ୍ୱାରା ରଚିତ ଗ୍ରନ୍ଥ "ମହାଭାଷ୍ୟ" ଅନୁଯାୟୀ ଯବନମାନଙ୍କ (ବ୍ୟାକ୍‌ଟ୍ରୀୟ-ଗ୍ରୀକ୍‌ମାନଙ୍କ) ସେନାବାହିନୀ ସେତେବେଳେ ଭାରତୀୟ ସହର ସାକେତ ଓ ମାଧ୍ୟମିକା ଅବରୋଧ କରିଥିଲେ । "ଯୁଗ ପୁରାଣ" ନାମକ ଏକ ଗ୍ରନ୍ଥରେ ମଧ୍ୟ ଏହି ଘଟଣାଟିର

ଉଲ୍ଲେଖ ଅଛି । ଏହି ଶେଷୋକ୍ତ ଗ୍ରନ୍ଥରୁ ଆଉରି ଜଣାଯାଏ ଯେ, ଯବନସେନା ସାକେତା ଦେଇ ପାଟଳୀପୁତ୍ରକୁ ଧାଉଡ଼ି ଦେଇଥିଲେ । କିନ୍ତୁ, ପରେ ସେଇ ସେନାବାହିନୀ ମଧ୍ୟରେ ଆଭ୍ୟନ୍ତରୀଣ ବିବାଦ ଦେଖା ଦେବାରୁ ଶୁଙ୍ଗମାନଙ୍କ ରାଜଧାନୀରୁ ଅବରୋଧ ମୁକ୍ତ କରିବାକୁ ବାଧ୍ୟ ହୋଇଥିଲେ ।

ବ୍ୟାକ୍ଟ୍ରୀୟ-ଗ୍ରୀକ୍‌ମାନଙ୍କର ଏହି ଆକ୍ରମଣ, ମନେ ହୁଏ, ପୁଷ୍ୟମିତ୍ରଙ୍କ ରାଜତ୍ୱକାଳରେ ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀର ମଧ୍ୟ ଭାଗରେ ଘଟିଥିଲା । ସେତେବେଳେ ବ୍ୟାକ୍ଟ୍ରୀୟ-ଗ୍ରୀକ୍‌ମାନଙ୍କର ରାଜା ଥିଲେ ମେନାଣ୍ଡାର ।

ପୁଷ୍ୟମିତ୍ରଙ୍କ ବଂଶଧରଙ୍କ ଅମଳରେ, ବିଶେଷ କରି ତାଙ୍କ ପୌତ୍ର ବସୁମିତ୍ରଙ୍କ ରାଜତ୍ୱକାଳରେ, ଶୁଙ୍ଗମାନଙ୍କ ସହିତ ବ୍ୟାକ୍ଟ୍ରୀୟ-ଗ୍ରୀକ୍‌ମାନଙ୍କର ସଂଘର୍ଷ ଘଟିଥିଲା । ବସୁମିତ୍ର, ଅବଶ୍ୟ, ଏହି ଯୁଦ୍ଧରେ ବିଜୟ ଲାଭ କରିବାକୁ ସମର୍ଥ ହୋଇଥିଲେ, ଫଳରେ ଶୁଙ୍ଗମାନଙ୍କ ସହିତ ବ୍ୟାକ୍ଟ୍ରୀୟ-ଗ୍ରୀକ୍‌ମାନଙ୍କ ସଂବନ୍ଧ ଏହା ପରେ ଶାନ୍ତିପୂର୍ଣ୍ଣ ହୋଇଥିଲା । ଶିଳାଲେଖର ସାକ୍ଷ୍ୟରୁ ଜଣାଯାଏ ଯେ, ଗ୍ରୀକ୍ ରାଜା ଆଣ୍ଟିଆଲସିଡସ୍ ଶୁଙ୍ଗ ରାଜ ଭଗଭଦ୍ରଙ୍କ ରାଜସଭାକୁ ତାଙ୍କର ଏକ ଦୂତମଣ୍ଡଳୀ ପଠାଇଥିଲେ । ଏହି ଦୂତମଣ୍ଡଳୀଟି ବିଦିଶା ନଗରୀକୁ ଯାଇଥିଲେ । ଏଥିରୁ ମନେ ହୁଏ, ଶୁଙ୍ଗ ରାଜାମାନେ ନିଶ୍ଚୟ ବିଦିଶାକୁ ସେମାନଙ୍କ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ ।

ଶୁଙ୍ଗ ବଂଶ ଏକ ଶତାବ୍ଦୀରୁ ଅଧିକ କାଳ ଧରି ରାଷ୍ଟ୍ରକ୍ଷମତାରେ ଅଧିଷ୍ଠିତ ଥିଲେ । ସେମାନଙ୍କ ପରେ ସିଂହାସନ କଣ୍ୱ ବଂଶର ଅଧିକାରକୁ ଯାଇଥିଲା (ଖ୍ରୀ : ପୂ : ୬୮-୨୨) । ଏହି କଣ୍ୱ ବଂଶ ଅମଳରେ ମଗଧ ସାମ୍ରାଜ୍ୟର ବିକେନ୍ଦ୍ରୀଭବନ କ୍ରିୟା କ୍ଷିପ୍ରଗତିରେ ଚାଲିଥିଲା । ସାମ୍ରାଜ୍ୟର ବହୁ ଅଂଶ କ୍ରମଶଃ କେନ୍ଦ୍ରଠାରୁ ବିଚ୍ଛିନ୍ନ ହୋଇଗଲା ଏବଂ ନୂଆ ନୂଆ ଆଞ୍ଚଳିକ ବା ସ୍ଥାନୀୟ ରାଜବଂଶର ଉଦ୍‌ଭବ ଘଟିଥିଲା । ଶୁଙ୍ଗମାନଙ୍କ ରାଷ୍ଟ୍ରନୀତି ବୌଦ୍ଧ ଧର୍ମର ବିରୋଧୀ ଥିଲା ବୋଲି ଯେଉଁସବୁ ବିବରଣୀ ମିଳେ, ସେସବୁ କେତେ ନିର୍ଭରଯୋଗ୍ୟ, ବିଶେଷତଃ ପୁଷ୍ୟମିତ୍ରଙ୍କ ଅମଳରେ ବୌଦ୍ଧ ବିରୋଧୀ ନୀତିର ସତ୍ୟତା କେତେ ବିଶ୍ୱାସଯୋଗ୍ୟ, ତାହା କହିବା କଠିନ । ତେବେ ଏକଥା ଠିକ୍ ଯେ, ଅଶୋକଙ୍କ ଅମଳରେ ବୌଦ୍ଧ ଧର୍ମ ଯେଉଁ ପ୍ରବଳ ରାଜସମର୍ଥନ ଲାଭ କରିଥିଲା, ପରବର୍ତ୍ତୀ ଅମଳରେ ସ୍ପଷ୍ଟତଃ ତା'ର ଅଭାବ ଘଟିଥିଲା । ଶୁଙ୍ଗ ରାଜତ୍ୱକାଳରେ ବିଷ୍ଣୁପୂଜା ଓ ବୈଷ୍ଣବ ଧର୍ମ ଯେ ବିଶେଷ ଜନପ୍ରିୟତା ଅର୍ଜନ କରିଥିଲା, ତା'ର ପ୍ରମାଣ ଶୁଙ୍ଗ ରାଜବଂଶର ଶିଳାଲିପିଗୁଡ଼ିକରୁ ମିଳିଥାଏ । ବିଶେଷ କରି ବାସୁଦେବଙ୍କ ପୂଜା ସେତେବେଳେ ଗୁରୁତ୍ୱ ଅର୍ଜନ କରିଥିଲା ।

ପୁରାଣମାନଙ୍କରେ ଦେଖାଯାଏ ଯେ, ମୌର୍ଯ୍ୟ ରାଜବଂଶ ମଗଧ ସିଂହାସନରେ ୧୩୭ ବର୍ଷକାଳ ଅଧିଷ୍ଠିତ ଥିଲେ । ଏହି ଯୁଗଟିରେ ବହୁ ବଡ଼ ବଡ଼ ରାଜନୈତିକ ଘଟଣା ଘଟିଥିଲା । ଏହା ଥିଲା ସାମାଜିକ, ସାଂସ୍କୃତିକ କ୍ଷେତ୍ରରେ ତାତ୍ପର୍ଯ୍ୟପୂର୍ଣ୍ଣ ବିକାଶର ଯୁଗ, ଯାହା ପ୍ରାଚୀନ ଭାରତୀୟ ସମାଜ ଓ ରାଷ୍ଟ୍ର ବ୍ୟବସ୍ଥାର ବିବର୍ତ୍ତନ କ୍ଷେତ୍ରରେ ଗଭୀର ପ୍ରଭାବ ପକାଇଥିଲା । ଏହି ଯୁଗରେ ସଂଯୁକ୍ତ ଏକ ଭାରତୀୟ ରାଷ୍ଟ୍ର ଗଢ଼ି ଉଠିବା ଫଳରେ ବହୁ ବିଚିତ୍ର ଜାତିର ଲୋକଙ୍କ ମଧ୍ୟରେ ପାରସ୍ପରିକ ପ୍ରକ୍ରିୟା ଓ ସଂଯୋଗ ଘଟିଥିଲା । ସେମାନଙ୍କ ସଂସ୍କୃତି ଏବଂ ପରମ୍ପରା ମଧ୍ୟରେ ଅନ୍ତଃମିଶ୍ରଣ ଘଟିଲା ଏବଂ ଯାହାଫଳରେ ସେମାନଙ୍କ ମଧ୍ୟରେ ଥିବା ସଂକୀର୍ଣ୍ଣ ଉପଜାତୀୟ ପ୍ରଭେଦ ଅସ୍ପଷ୍ଟ ହୋଇ ଆସିଥିଲା । ଏଥି ସଙ୍ଗେ ସଙ୍ଗେ ଦେଶ ବିଦେଶ ସହିତ ସଂପର୍କ ମଧ୍ୟ ବ୍ୟାପକ ଭାବେ ବୃଦ୍ଧି ପାଇଥିଲା । ମୌର୍ଯ୍ୟ ଯୁଗରେ ଭାରତୀୟ ସଂସ୍କୃତିର ପ୍ରସାର ଘଟିଥିଲା ଦକ୍ଷିଣ-ପୂର୍ବ ଏସିଆର

ଦେଶମାନଙ୍କରେ ଏବଂ ଶ୍ରୀଲଙ୍କାରେ । ଏହି ଯୁଗରେ ବହୁ ରାଷ୍ଟ୍ରୀୟ ସଂସ୍ଥାର ଅଙ୍କୁରୋଦ୍‌ଗମ ଘଟିଥିଲା ଏବଂ ପରବର୍ତ୍ତୀ କାଳରେ ସେସବୁ ବିକାଶ ଲାଭ କରିଥିଲା ।

ସେମାନଙ୍କର ପରାକ୍ରାନ୍ତ ସେନାବାହିନୀ, ଶକ୍ତିଶାଳୀ ରାଷ୍ଟ୍ର ଯନ୍ତ୍ର, ବ୍ୟାପକ ଶାସନ ବ୍ୟବସ୍ଥା, ବହୁ ବିଚିତ୍ର ଜାତି ଓ ଅଞ୍ଚଳକୁ ଏକସୂତ୍ରରେ ବାନ୍ଧି ରଖିବା ଉଦ୍ଦେଶ୍ୟରେ ପରିଗୃହିତ ଧର୍ମ ବିଜୟର ରାଷ୍ଟ୍ରନୀତି ସତ୍ତ୍ୱେ ମୌର୍ଯ୍ୟ ବଂଶ ଏହି ଅସ୍ଥିର ଏକତାକୁ ବଜାୟ ରଖି ପାରି ନଥିଲେ । ପ୍ରକୃତରେ ମୌର୍ଯ୍ୟ ସାମ୍ରାଜ୍ୟ ଥିଲା ବିକାଶର ବିଭିନ୍ନ ସ୍ତରରେ ଥିବା ବହୁବିଧ ଉପଜାତି ଓ ଜାତି ଗୋଷ୍ଠୀର ଏକ ବହୁରଙ୍ଗୀ ସମଷ୍ଟି ।

# ମଗଧ ଏବଂ ମୌର୍ଯ୍ୟ ଯୁଗରେ ଦାକ୍ଷିଣାତ୍ୟ ଓ ଦକ୍ଷିଣ ଭାରତ

ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ଦ୍ୱିତୀୟାର୍ଦ୍ଧରେ ଉତ୍ତର ଭାରତର ଇତିହାସ ସଂପର୍କରେ ଇତିହାସଗତ ତଥ୍ୟ ସାମଗ୍ରୀ ଯେତେ ମିଳିଥାଏ, ତା ତୁଳନାରେ ଦକ୍ଷିଣ ଭାରତ ଓ ସେଠାକାର ରାଷ୍ଟ୍ରସମୂହର ଏବଂ ଉପମହାଦେଶର ଏହି ଅଂଶର ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ବିକାଶର ସାକ୍ଷ୍ୟ ବହନକାରୀ ଉପାଦାନ ଅନେକ କମ୍ ପରିମାଣରେ ମିଳିଥାଏ । ଦକ୍ଷିଣ ଭାରତର ସ୍ଥାନୀୟ ଭାଷାଗୁଡ଼ିକରେ ଲିଖିତ ଗ୍ରନ୍ଥଗୁଡ଼ିକ ଲେଖାଯାଇଥିଲା ଖ୍ରୀଷ୍ଟୀୟ ଶତାବ୍ଦୀର ପ୍ରାରମ୍ଭରେ । ଏହି କାରଣରୁ ଖ୍ରୀଷ୍ଟୀୟ ଅବ୍ଦଗୁଡ଼ିକର ଇତିହାସର ପ୍ରଧାନ ସାକ୍ଷ୍ୟସୂତ୍ର ହେଉଛି ଏହି ଅଞ୍ଚଳରେ ଖୋଦିତ ଶିଳାଲେଖଗୁଡ଼ିକ (ପ୍ରାକୃତ ଏବଂ ସଂସ୍କୃତ ଭାଷାରେ ଲିଖିତ) ।

ଅଶୋକଙ୍କ ଅନୁଶାସନଗୁଡ଼ିକରେ ତାଙ୍କ ସାମ୍ରାଜ୍ୟ ବହିର୍ଭୂତ ଦକ୍ଷିଣ ଦେଶସମୂହର ଯେଉଁ ତାଲିକା ମିଳେ, ତା'ର ଅନ୍ତର୍ଗତ ହେଉଛି ପାଣ୍ଡ୍ୟ, ଚୋଳ, ଚେର, ସତ୍ୟପୁତ୍ର ଓ କେରଳପୁତ୍ର ରାଜ୍ୟସମୂହ । ଏହାର ପୂର୍ବବର୍ତ୍ତୀ ଯୁଗରେ ଲିଖିତ ମେଗାସ୍ଥେନିସ୍‌ଙ୍କ ବିବରଣୀରେ ପାଣ୍ଡ୍ୟ ରାଜ୍ୟର ଉଲ୍ଲେଖ ଅଛି । ସେଥିରୁ ମନେ ହୁଏ, ଅନ୍ତତଃପକ୍ଷେ ଖ୍ରୀଷ୍ଟ ପୂର୍ବ ଚତୁର୍ଥ ଶତାବ୍ଦୀର ଶେଷ ଆଡ଼କୁ ଦକ୍ଷିଣ ଭାରତରେ ଏହି ନାମରେ, ଅବଶ୍ୟ, ଏକ ରାଜ୍ୟ ଥିଲା । ପ୍ରସଙ୍ଗତଃ, ଏହା ଏକ କୌତୂହଳୋଦ୍ଦୀପକ ଘଟଣା ଯେ, ମ୍ୟାସିଡନ୍‌ର ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣର ସଙ୍ଗୀ ଯେଉଁ ଇତିବୃତ୍ତକାରମାନେ ହୋଇଥିଲେ, ସେମାନେ ଦକ୍ଷିଣ ଭାରତ, ଏପରିକି ଶ୍ରୀଲଙ୍କାର କଥା ମଧ୍ୟ ଶୁଣିଥିଲେ । ଏମାନଙ୍କ ମଧ୍ୟରୁ ଜଣେ, ଓନିସ୍‌କ୍ରାଟସ୍ ଶ୍ରୀଲଙ୍କା ଅଭିମୁଖରେ ସମୁଦ୍ର ଯାତ୍ରାର କାହାଣୀ ଲିପିବଦ୍ଧ କରି ଯାଇଛନ୍ତି । ମଗଧ ଏବଂ ମୌର୍ଯ୍ୟ ରାଜାମାନଙ୍କ ଅମଳରେ ଉତ୍ତର ଏବଂ ଦକ୍ଷିଣ ଭାରତ ମଧ୍ୟରେ ଯୋଗାଯୋଗ ଆଉରି ଦୃଢ଼ ଓ ନିୟମିତ ଭିତ୍ତି ଉପରେ ବିକାଶ ଲାଭ କରିଥିଲା । ବ୍ୟାକରଣକାର କାତ୍ୟାୟନ (ଆନୁମାନିକ ଖ୍ରୀଷ୍ଟ ପୂର୍ବ ଚତୁର୍ଥ ଶତାବ୍ଦୀ) ଓ ପରବର୍ତ୍ତୀ କାଳର ପତଞ୍ଜଳିଙ୍କ ଗ୍ରନ୍ଥରେ ଦକ୍ଷିଣ ଭାରତର କେତେକ ଅଞ୍ଚଳର ଉଲ୍ଲେଖ ଦେଖିବାକୁ ମିଳିଥାଏ । ଇତିମଧ୍ୟରେ ଉତ୍ତର ଭାରତର ସଂସ୍କୃତି କ୍ରମଶଃ ବିସ୍ତାର ଲାଭ କରିଥିଲା ଦକ୍ଷିଣ ଆଡ଼କୁ, ଅର୍ଥନୈତିକ

ସଂପର୍କ ମଧ୍ୟ ଗଢ଼ି ଉଠିଥିଲା କ୍ରମଶଃ । ଦକ୍ଷିଣ ଭାରତର କେତେକ ଅଂଶ ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେବା ଫଳରେ ଏହି ଧାରା ଆଉରି ଦ୍ରୁତତର ହୋଇଥିଲା । "ଅର୍ଥଶାସ୍ତ୍ରରେ" ଦକ୍ଷିଣ ଭାରତର ମାଟିରେ ତିଆରି ପଣ୍ୟଦ୍ରବ୍ୟାଦିର ବହୁ ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ ଏବଂ ଦକ୍ଷିଣ ଭାରତ ମଧ୍ୟ ଦେଇ ଯାଇଥିବା ବାଣିଜ୍ୟ ପଥଗୁଡ଼ିକର ବିବରଣ ମଧ୍ୟ ମିଳିଥାଏ ।

ମୌର୍ଯ୍ୟ ରାଜାମାନଙ୍କର ଶାସନ କାଳରେ ଦକ୍ଷିଣ ଭାରତରେ ବୌଦ୍ଧ ଧର୍ମର ବିସ୍ତାର ଆରମ୍ଭ ହୋଇଥିଲା । ଏହାର ପ୍ରମାଣ ଦକ୍ଷିଣ ଭାରତର କେତେକ ଅଞ୍ଚଳରେ ଆବିଷ୍କୃତ ଖ୍ରୀଷ୍ଟ ପୂର୍ବ ତୃତୀୟ ଓ ଦ୍ୱିତୀୟ ଶତାବ୍ଦୀରେ ଖୋଦିତ ବୌଦ୍ଧ ଶିଳାଲିପିଗୁଡ଼ିକରୁ ମିଳିଥାଏ ।

ମୌର୍ଯ୍ୟ ଶାସନର ଅବସାନ ପରେ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଦାକ୍ଷିଣାତ୍ୟର କେତେକ ଅଞ୍ଚଳ ସାମ୍ରାଜ୍ୟ କବଳରୁ ମୁକ୍ତ ହେବା ପାଇଁ ସଂଗ୍ରାମ ଆରମ୍ଭ କରି ଦେଇଥିଲେ । କେବଳ ବଳ ପ୍ରୟୋଗ ଦ୍ୱାରା ଶୁଙ୍ଗ ରାଜବଂଶ ବିଦର୍ଭକୁ ଦମନ କରିବାକୁ ସମର୍ଥ ହୋଇଥିଲେ । ତେବେ ଏହି ରାଜ୍ୟର ଦକ୍ଷିଣ ଅଂଶ ଶେଷକୁ ସ୍ୱାଧୀନତା ଅର୍ଜନ କରିବାରେ ସମର୍ଥ ହୋଇଥିଲା ।

ମୌର୍ଯ୍ୟୋତ୍ତର ଯୁଗରେ ଦାକ୍ଷିଣାତ୍ୟର ସର୍ବାପେକ୍ଷା ପରିଚିତ ଓ ଶକ୍ତିଶାଳୀ ରାଜ୍ୟ ଥିଲା ସାତବାହନ ରାଜ୍ୟ । ତେବେ ଏହି ରାଜ୍ୟର ଇତିହାସର ବହୁ ପୃଷ୍ଠା ଏବେ ମଧ୍ୟ ରହସ୍ୟପୂର୍ଣ୍ଣ ହୋଇ ରହିଯାଇଛି । ପୁରାଣସମୂହରୁ ଯେଉଁସବୁ ତଥ୍ୟ ମିଳିଥାଏ, ସେସବୁଥିରୁ ସାତବାହନମାନଙ୍କୁ ଆମେ ଆନ୍ଧ୍ର ଦେଶବାସୀ ବୋଲି କହି ପାରେ । ଖୋଦିତ ଶିଳାଲିପିଗୁଡ଼ିକ ଅନୁଯାୟୀ ଏହି ସାତବାହନମାନେ ପରେ ଦକ୍ଷିଣ ଭାରତର ପଶ୍ଚିମ ସମୁଦ୍ର ତୀରବର୍ତ୍ତୀ ଭୂଖଣ୍ଡ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ ବୋଲି ମନେ ହୁଏ । ଏହି ରାଜବଂଶର ପ୍ରତିଷ୍ଠାତା ଥିଲେ ସିମୁକ (ବା ପୁରାଣର ସାକ୍ଷ୍ୟ ଅନୁଯାୟୀ ଶିଶୁକ), ତେବେ ସାତବାହନ ବଂଶର ଇତିହାସରେ ପ୍ରାରମ୍ଭରେ ସର୍ବାପେକ୍ଷା ଶକ୍ତିଶାଳୀ ରାଜା ଥିଲେ ସାତକାନି (ପୁରାଣ ଅନୁଯାୟୀ ଶତକର୍ଣ୍ଣୀ) । ରାଜା ଶତକର୍ଣ୍ଣୀଙ୍କ ଅମଳରେ ରାଜ୍ୟର ସୀମା ବହୁଗୁଣ ପ୍ରସାରିତ ହୋଇଥିଲା ଏବଂ ସେ ନିଜେ "ଦକ୍ଷିଣପତି" ନାମରେ ଖ୍ୟାତି ଅର୍ଜନ କରିଥିଲେ । ଶତକର୍ଣ୍ଣୀଙ୍କୁ ଏକଦା ପୂର୍ବ ସମୁଦ୍ରୋପକୂଳବର୍ତ୍ତୀ ଶକ୍ତିଶାଳୀ ରାଜ୍ୟ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧରେ ଅବତୀର୍ଣ୍ଣ ହେବାକୁ ପଡ଼ିଥିଲା । କାରଣ, କଳିଙ୍ଗର ରାଜା ଖାରବେଳ ତାଙ୍କ ସେନାବାହିନୀ ନେଇ ପଶ୍ଚିମ ଆଡ଼କୁ ଅଗ୍ରସର ହୋଇଥିଲେ । ଏହି ସମୟରେ କଳିଙ୍ଗ ଭାରତର ସର୍ବାପେକ୍ଷା ଶକ୍ତିଶାଳୀ ରାଷ୍ଟ୍ରଗୁଡ଼ିକ ମଧ୍ୟରେ ଅନ୍ୟତମ ହୋଇ ଉଠିଥିଲା । ହାତୀଗୁମ୍ଫାରେ (ଭୁବନେଶ୍ୱର ନିକଟବର୍ତ୍ତୀ) ମିଳିଥିବା ଖାରବେଳଙ୍କ ଶିଳାଲେଖ ଅନୁଯାୟୀ କଳିଙ୍ଗ ବାହିନୀ ପଶ୍ଚିମାଞ୍ଚଳର ଭୋଜକ ଓ ରଥିକ ନାମକ ଜାତି ଦୁଇଟି ବିରୁଦ୍ଧରେ ଯୁଦ୍ଧରେ ବିଜୟୀ ହୋଇଥିଲେ । ଏହା ପରେ ରାଜା ଖାରବେଳ ତିନିଥର ଉତ୍ତରାଞ୍ଚଳ ଅଭିମୁଖେ ସୈନ୍ୟ ଚାଳନ କରିଥିଲେ ଏବଂ ମଗଧର ପ୍ରାଚୀନ ରାଜଧାନୀ ରାଜଗୃହ ଅବରୋଧ କରି ଗଙ୍ଗା ତୀର ଆଡ଼କୁ ଅଗ୍ରସର ହୋଇଥିଲେ । ଖାରବେଳଙ୍କ ଶିଳାଲେଖରୁ ଆଉରି ଜଣାଯାଏ ଯେ, ମଗଧର ରାଜା ବହସତିମିତ କଳିଙ୍ଗ ରାଜାଙ୍କ ନିକଟରେ ବଶ୍ୟତା ସ୍ୱୀକାର କରିଥିଲେ । ଖାରବେଳ ଦକ୍ଷିଣକୁ ମଧ୍ୟ ସାମରିକ ଅଭିଯାନ ଚଳେଇଥିଲେ ଏବଂ ତାଙ୍କ ସେନାବାହିନୀ ପାଣ୍ଡ୍ୟ ରାଜ୍ୟର ସୀମାନ୍ତରେ ପହଞ୍ଚି ଯାଇଥିଲେ । ଖାରବେଳଙ୍କ ରାଜତ୍ୱ ପରେ, ଅବଶ୍ୟ, କଳିଙ୍ଗର ସୌଭାଗ୍ୟର ସୂର୍ଯ୍ୟ ଉପରକୁ ଉଠି ପାରି ନଥିଲା ଏବଂ କଳିଙ୍ଗ ସଂପର୍କରେ କ୍ରମଶଃ କମ୍ ଉଲ୍ଲେଖ ଦେଖିବାକୁ ମିଳିଥାଏ ।

# ଅର୍ଥନୈତିକ ବିକାଶ ଏବଂ ସମାଜ ବ୍ୟବସ୍ଥା

## କୃଷି

ପ୍ରାଚୀନ ଭାରତର ଅର୍ଥନୈତିକ ବିକାଶ କ୍ଷେତ୍ରରେ ମଗଧ ଓ ମୌର୍ଯ୍ୟ ଯୁଗ ଏକ ଅତୀବ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ରୂପେ ପରିଚିତ । ଏହି ସମୟରେ ପ୍ରାଚୀନ ଭାରତୀୟ ସମାଜର ଭିତ୍ତି ସ୍ୱରୂପ ସାମାଜିକ ଏବଂ ଅର୍ଥନୈତିକ ଢାଞ୍ଚାର ମୂଳ ବୈଶିଷ୍ଟ୍ୟଗୁଡ଼ିକ ସୁନିର୍ଦ୍ଦିଷ୍ଟ ରୂପ ପରିଗ୍ରହ କରିଥିଲା । ପରବର୍ତ୍ତୀ କାଳରେ ସେସବୁ ଆଉରି ବିକଶିତ ହୋଇ ଉଠିଥିଲା । ତତ୍‌ସହିତ ଏହା ମଧ୍ୟ ଲକ୍ଷଣୀୟ ଭାବେ ସ୍ପଷ୍ଟ ହୋଇ ଉଠିଥିଲା ଯେ, ଦେଶର ବିଭିନ୍ନ ଅଞ୍ଚଳର ବିକାଶର ସ୍ତର ସାଙ୍ଘାତିକ ଭାବେ ଅସମାନ ଥିଲା । ଅର୍ଥନୈତିକ ଦିଗରୁ ଉତ୍ତର ଭାରତର ସର୍ବାପେକ୍ଷା ଉନ୍ନତ ଅଞ୍ଚଳଗୁଡ଼ିକ ମଧ୍ୟରୁ ଅନ୍ୟତମ ଥିଲା ଗଙ୍ଗା ଉପତ୍ୟକା । ଏହି ଅଞ୍ଚଳଟି ପଟୁମାଟି ଦ୍ୱାରା ଉର୍ବର ଏବଂ ଖଣିଜ ଧାତୁରେ ସମୃଦ୍ଧ ଥିଲା ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା, କୃଷି ତଥା ହସ୍ତଶିଳ୍ପ କ୍ଷେତ୍ରରେ ଲୁହାର ବ୍ୟାପକ ବ୍ୟବହାର । ଲୁହା ଦେଇ କୃଷି ଯନ୍ତ୍ରପାତି, ବିଶେଷ କରି ଲଙ୍ଗଳର ଫାଳ ତିଆରି କରିବାକୁ ଲୋକେ ଆରମ୍ଭ କରି ଦେଇଥିଲେ । ଏହା ଫଳରେ କୃଷିକାର୍ଯ୍ୟ ଏବଂ ତା'ର ଫଳାଫଳର ପ୍ରକୃତିରେ ଗୁଣଗତ ପରିବର୍ତ୍ତନ ଘଟିଥିଲା । ସର୍ବାପେକ୍ଷା ପ୍ରାଚୀନ ବୌଦ୍ଧ ପୋଥିଗୁଡ଼ିକ ମଧ୍ୟରୁ ଗୋଟିଏ, "ସୁତ୍ତ-ନିପତର" ଏକ ଉପାଖ୍ୟାନରେ କୁହାଯାଇଛି ଯେ, ଜଣେ ବ୍ରାହ୍ମଣ ଲଙ୍ଗଳ ଦ୍ୱାରା ଜମି ଚାଷ କରିଥିଲେ ଏବଂ ସେଇ ଲଙ୍ଗଳର ଫାଳ (ସ୍ପଷ୍ଟତଃ ଲୁହା ନିର୍ମିତ) ଏତେ ଗରମ ହୋଇ ଉଠିଲା ଯେ, ତାକୁ ଜଳରେ ଭିଜେଇ ଥଣ୍ଡା କରିବାକୁ ପଡ଼ିଲା । କୃଷିକାର୍ଯ୍ୟ ସେତେବେଳେ ଉତ୍ପାଦନଶୀଳ ଶ୍ରମର ପ୍ରଧାନ ଧରଣ ହୋଇ ଉଠିଲା । ଯେଉଁସବୁ ଅଞ୍ଚଳର ଜମି ବେଶି ଉର୍ବର ଥିଲା, କୃଷକମାନେ ସେଠାରେ ଦୁଇ ଥର, ଏପରିକି ତିନି ଥର ଫସଲ ଫଳେଇବାକୁ ସମର୍ଥ ହୋଇଥିଲେ । ତେଣୁ କରି ପାଣିନିଙ୍କ ବ୍ୟାକରଣରେ ବସନ୍ତକାଳୀନ ଏବଂ ଶୀତକାଳୀନ ଫସଲର ଭିନ୍ନ ଭିନ୍ନ ସଂଜ୍ଞା ଦେଖିବାକୁ ମିଳେ । ପ୍ରାଚୀନ ଭାରତୀୟମାନେ ଥିଲେ ଦକ୍ଷ କୃଷକ । ବିଭିନ୍ନ ଧରଣର ଜମିର ପ୍ରକୃତି ଏବଂ ଗୁଣାଗୁଣ ସମ୍ବନ୍ଧରେ ସେମାନେ ଭଲ ଭାବେ ଜାଣିଥିଲେ । ଧାନ, ଗହମ ଏବଂ ଯଅ ଥିଲା ସେତେବେଳେ ପ୍ରଧାନ ଶସ୍ୟ । ପ୍ରତ୍ନତତ୍ତ୍ୱବିଦ୍‌ମାନେ ଉତ୍ତର ଏବଂ ମଧ୍ୟ ଭାରତର ପ୍ରାଚୀନ ନଗର ବସତିଗୁଡ଼ିକର ଖନନ କାର୍ଯ୍ୟ ଚଳାଇଲା ବେଳେ ମଗଧ ଏବଂ ମୌର୍ଯ୍ୟ ଯୁଗ ସହିତ ସଂଶ୍ଳିଷ୍ଟ ଭୂସ୍ତରସମୂହରେ ଚାଉଳର ଦାନା ମିଳିଥାଏ । ମଗଧ ଦ୍ୱାରା ଅଧିକୃତ ରାଜ୍ୟମାନଙ୍କରେ ଧାନ ଚାଷ ପାଇଁ ପ୍ରକାଣ୍ଡ ଅଞ୍ଚଳସବୁ ବରାଦ୍ କରାଯାଇଥିଲା । ବୌଦ୍ଧ ପୋଥିଗୁଡ଼ିକରେ ମଧ୍ୟ ମଗଧରେ ଧାନର ଭଲ ଫସଲ କଥା ବହୁବାର ଉଲ୍ଲେଖ ଅଛି । ପତଞ୍ଜଳି ମଧ୍ୟ ତାଙ୍କ ବ୍ୟାକରଣ ସଂକ୍ରାନ୍ତ ରଚନାରେ ଉଲ୍ଲେଖ କରିଛନ୍ତି ଯେ, ମଗଧ ରାଜ୍ୟରେ ପ୍ରଧାନ ଫସଲ ଥିଲା ଧାନ ଏବଂ ପଶ୍ଚିମ ଭାରତର ଅନୁର୍ବର ଏଲାକାଗୁଡ଼ିକରେ ଯଅ ଫଳନ ଅଧିକ ହେଉଥିଲା । ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଫଳରେ ଏବଂ ଲିଖିତ ସୂତ୍ରର ସାକ୍ଷ୍ୟ

ଅନୁଯାୟୀ ଜଣାଯାଏ ଯେ, ମହାଦେଶର ପଶ୍ଚିମ ଅଂଶରେ ଗହମ, ଶିମ, ବରଗୁଡ଼ି ଏବଂ ଯଅ ଚାଷ ବ୍ୟାପକ ଭାବେ ହେଉଥିଲା । ଏହା ଛଡ଼ା ଆଉରି ଦକ୍ଷିଣ ଅଞ୍ଚଳରେ, ଯେଉଁଠି ଜଳବାୟୁ ଶୁଷ୍କ ଏବଂ ଜମି ଆଉରି କମ୍ ଉର୍ବର, ସେଠାରେ ମକା ଚାଷ ଥିଲା ପ୍ରଧାନ ।

ମଗଧ ଏବଂ ମୌର୍ଯ୍ୟ ଯୁଗରେ ଜମିରେ ଜଳସେଚନ ବ୍ୟବସ୍ଥାରେ ମଧ୍ୟ ଦ୍ରୁତ ଉନ୍ନତି ଘଟିଥିଲା । ବହୁ ସୂତ୍ରରେ ବିଶେଷ ଭାବେ ଜଳସେଚନ ଉଦ୍ଦେଶ୍ୟରେ ଖୋଳାଯାଇଥିବା ବିଶେଷ କେନାଲ ଏବଂ ଜଳାଧାରର ଉଲ୍ଲେଖ ଅଛି । ମଗଧରେ ଜମିରେ ଜଳସେଚନ ବ୍ୟବସ୍ଥା କଥା ଏକାଧିକବାର ଉଲ୍ଲେଖ ଅଛି ପ୍ରତ୍ୟକ୍ଷ ଭାବେ । ରାଷ୍ଟ୍ର ପକ୍ଷରୁ ସେଠାରେ ସଂଗଠିତ ହୋଇଥିଲା ବଡ଼ ଆକାରର ବହୁ ଜଳସେଚନ ପ୍ରକଳ୍ପ । ତା'ପରେ ଜମିରେ ଜଳସେଚନ ବ୍ୟବସ୍ଥା ଗ୍ରାମୀଣ ସମାଜଗୁଡ଼ିକ ଯୌଥ ଭାବେ ଏବଂ କୃଷକମାନେ ବ୍ୟକ୍ତିଗତ ଭାବେ କରୁଥିଲେ । ସୌରାଷ୍ଟ୍ରରେ ମିଳିଥିବା ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଖୋଦିତ ଏକ ଲିପିରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜତ୍ୱକାଳ ଭଳି ଏତେ ପ୍ରାଚୀନ ଯୁଗରେ ମଧ୍ୟ ଏକ ଜଳାଧାର ନିର୍ମାଣର ଉଲ୍ଲେଖ ମିଳିଛି । ମେଗାସ୍ଥେନିସ୍ ମଧ୍ୟ ମୌର୍ଯ୍ୟ ସାମ୍ରାଜ୍ୟ ଅମଳରେ ଜଳସେଚନ ବ୍ୟବସ୍ଥାର ପ୍ରଚଳନ କଥା ଲେଖି ଯାଇଛନ୍ତି (ଖୁବ୍ ସମ୍ଭବତଃ, ଏହି ବ୍ୟବସ୍ଥାଗୁଡ଼ିକୁ ସେ ଦେଖିଥିଲେ ରାଜଧାନୀର ନିକଟବର୍ତ୍ତୀ ଅଞ୍ଚଳରେ) । ପୟଃପ୍ରଣାଳୀ ଏବଂ ସେଥିରୁ ଜଳ ଯୋଗାଣର ବ୍ୟବସ୍ଥା ପରିଦର୍ଶନ ପାଇଁ ରାଜକର୍ମଚାରୀମାନଙ୍କ ନିଯୋଗ କଥା ମଧ୍ୟ ସେ ଉଲ୍ଲେଖ କରିଛନ୍ତି ।

ଏହି ଯୁଗରେ କୃଷିକାର୍ଯ୍ୟ ଯଦିଓ ଉତ୍ପାଦନରେ ପ୍ରଧାନ କ୍ଷେତ୍ର ଥିଲା, ତେବେ ଗବାଦି ପଶୁପାଳନ ଓ ପ୍ରଜନନ କର୍ମ ମଧ୍ୟ କମ୍ ଗୁରୁତ୍ୱପୂର୍ଣ୍ଣ ନଥିଲା । ଗବାଦି ପଶୁପାଳନ ଉପରେ ଅତିରିକ୍ତ ଗୁରୁତ୍ୱ ସେତେବେଳେ ଆରୋପ କରାଯାଉଥିଲା, କାରଣ କୃଷିକାର୍ଯ୍ୟରେ ବ୍ୟବହାର ଛଡ଼ା ମାଲବୁହା ଗାଡ଼ି ଟାଣିବା କାର୍ଯ୍ୟରେ ସେସବୁକୁ ବ୍ୟବହାର କରାଯାଉଥିଲା । ଯୁଦ୍ଧ ସମୟରେ ମଧ୍ୟ ଗବାଦି ପଶୁ ଖୁବ୍ କାମରେ ଲାଗୁଥିଲେ । ବୌଦ୍ଧ ପୋଥିଗୁଡ଼ିକରେ ଧନୀ ପଶୁପାଳକମାନଙ୍କ ସଂପର୍କରେ ବହୁ ଉଲ୍ଲେଖ ଅଛି ; କୁହାଯାଇଛି ଜନୈକ ଧନୀ କୃଷକର କାଳେ ସତେଇଶ ହଜାର ଦୁଧିଆଳୀ ଗାଈ ଥିଲେ । ଏତେ ବଡ଼ ଏକ ଖମାରର ଗୋରୁ ଚରେଇବା ପାଇଁ, ସ୍ୱଭାବତଃ, ନିଯୁକ୍ତ ଥିଲେ ବହୁ ଗାଈଆଳ ଏବଂ ମୂଲିଆ । ମାଲିକାନା ନେଇ ଗୋଳମାଳ ନହେବା ଦୃଷ୍ଟିରୁ ନିୟମ ଅନୁଯାୟୀ ଗବାଦି ପଶୁ ଦେହରେ ଛାପ ମାରି ଦିଆଯାଉଥିଲା ।

## ନଗରର ବିକାଶ ଓ
## ହସ୍ତଶିଳ୍ପର ବିକାଶ

ମଗଧ ଓ ମୌର୍ଯ୍ୟ ଯୁଗମାନଙ୍କରେ ଜୀବନଯାତ୍ରାର ଏକ ବିଶିଷ୍ଟ ଲକ୍ଷଣ ହେଲା ସେ ସମୟର ନଗରଗୁଡ଼ିକର ଅଭିବୃଦ୍ଧି । ଏହିସବୁ ନଗର ଥିଲେ ସେତେବେଳେ ହସ୍ତଶିଳ୍ପ ଓ ବ୍ୟବସାୟ ବାଣିଜ୍ୟର ଗୋଟିଏ ଗୋଟିଏ କେନ୍ଦ୍ର । ତେବେ ଜନସଂଖ୍ୟାର ଅଧିକାଂଶ ସେତେବେଳେ ମଧ୍ୟ ଗ୍ରାମରେ ବାସ କରୁଥିଲେ ।

ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଫଳରେ ଦେଖାଯାଇଛି ଯେ, ନଗରଗୁଡ଼ିକର ସବୁଠାରୁ ଦ୍ରୁତ ବିକାଶ ଘଟିଥିଲା ଖ୍ରୀଷ୍ଟ ପୂର୍ବ ଷଷ୍ଠ ଶତାବ୍ଦୀରୁ ତୃତୀୟ ଶତାବ୍ଦୀ ମଧ୍ୟରେ । ଏହି ସମୟରେ ନଗର

ରକ୍ଷା ପାଇଁ ପ୍ରାଚୀର ଓ ପରିଖା ନିର୍ମାଣ ଏବଂ ନଗର ନିର୍ମାଣ ପରିକଳ୍ପନା କାର୍ଯ୍ୟତଃ ଦେଖା ଦେଇଥିଲା । ତେବେ ସେତେବେଳେ ଗୋଟିଏ ସହରଠାରୁ ଆଉ ଗୋଟିଏ ସହରର ପାର୍ଥକ୍ୟ ଯଥେଷ୍ଟ ରହୁଥିଲା । ଯଥା, ପାଟଳୀପୁତ୍ର ସହରଟି ନିର୍ମିତ ହୋଇଥିଲା ସାମନ୍ତରିକ କ୍ଷେତ୍ର ଆକାରରେ, କୌଶାମ୍ବି ଅସମାନ୍ତରାଳ ବାହୁବିଶିଷ୍ଟ ଚତୁର୍ଭୁଜ କ୍ଷେତ୍ର ଢଙ୍ଗରେ, ଶ୍ରାବନ୍ତୀ ତ୍ରିକୋଣ କ୍ଷେତ୍ରରେ ଢାଞ୍ଚାରେ ଏବଂ ବୈଶାଳୀ ଆୟତ କ୍ଷେତ୍ର ଆକାରରେ । ଏସବୁ ମଧ୍ୟରେ ଆକାର ଦୃଷ୍ଟିରୁ ସର୍ବବୃହତ୍ ଏବଂ ଜନସଂଖ୍ୟାରେ ବୃହତ୍ତମ ନଗର ଥିଲା ସାମ୍ରାଜ୍ୟର ରାଜଧାନୀ ପାଟଳୀପୁତ୍ର । ରାଜଧାନୀରେ କିଛି କାଳ ପାଇଁ ବାସ କରୁଥିବା ମେଗାସ୍ଥେନିସ୍‌ଙ୍କ ଦ୍ୱାରା ଉଦ୍ଧୃତ ତଥ୍ୟ ଅନୁଯାୟୀ ପାଟଳୀପୁତ୍ରର ଆୟତନ ପଚିଶ ବର୍ଗ କିଲୋମିଟରରୁ ଅଧିକ ଥିଲା ବୋଲି ଜଣାଯାଏ । ଏହି ତଥ୍ୟଟିକୁ ଯଦି ନିର୍ଭରଯୋଗ୍ୟ ବୋଲି ଧରାଯାଏ, ତେବେ ପ୍ରାଚୀନ କାଳର ସହରଗୁଡ଼ିକ ମଧ୍ୟରେ ପାଟଳୀପୁତ୍ର ନିଶ୍ଚିତ ଭାବେ ଅନ୍ୟତମ ସର୍ବବୃହତ୍ ସହର ଥିଲା । ପ୍ରାଚୀନ ଆଲେକ୍‌ଜାଣ୍ଡ୍ରିଆ ଥିଲା ଉପରୋକ୍ତ ଆୟତନର ଏକତୃତୀୟାଂଶ ମାତ୍ର ଏବଂ ବତ୍ସରାଜ୍ୟର ରାଜଧାନୀ ବିଖ୍ୟାତ ଭାରତୀୟ ସହର କୌଶାମ୍ବି ଥିଲା ପାଟଳୀପୁତ୍ର ଠାରୁ ଏଗାର ଗୁଣ ଛୋଟ । ମେଗାସ୍ଥେନିସ୍ ଆଉରି ଲେଖିଛନ୍ତି ଯେ, ମୌର୍ଯ୍ୟ ସାମ୍ରାଜ୍ୟର ରାଜଧାନୀକୁ ଘେରି ୫୭୦ଟି ଦୁର୍ଗ ମିନାର ଏବଂ ସହରରେ ପ୍ରବେଶ କରିବାକୁ ଗଲେ ଷାଠିଏଟିରୁ ଅଧିକ ତୋରଣ ଦେଇ ଅତିକ୍ରମ କରିବାକୁ ପଡ଼ୁଥିଲା ।

ନଗରର ଘର ଦ୍ୱାର ନିର୍ମାଣର ପ୍ରଧାନ ଉପାଦାନ, ଅବଶ୍ୟ, ସେତେବେଳ ପର୍ଯ୍ୟନ୍ତ ଥିଲା କାଠ । କଦବା କେମିତି ଏ କାର୍ଯ୍ୟରେ ପଥର ବ୍ୟବହୃତ ହେଉଥିଲା । ଏପରିକି ଖନନ କାର୍ଯ୍ୟ ଫଳରେ ଦେଖାଯାଇଛି ଯେ, ଅଶୋକଙ୍କ ରାଜପ୍ରାସାଦ କାଠରେ ନିର୍ମିତ ହୋଇଥିଲା । କାଠକୁ ସେତେବେଳେ ଏଭଳି ଏକ ବିଶେଷ ପ୍ରକ୍ରିୟା ଦ୍ୱାରା କଷାଯାଉଥିଲା ଯାଫଳରେ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ତାହା କ୍ଷୟ ହେଉ ନଥିଲା । ଅଶୋକଙ୍କ ରାଜତ୍ୱର ଛଅ ଶତାବ୍ଦୀ ପରେ ଚୀନ୍ ପରିବ୍ରାଜକ ଫା-ହ୍ୟାନ୍ ଯେତେବେଳେ ପାଟଳୀପୁତ୍ରକୁ ଆସିଥିଲେ, ସେତେବେଳେ ସେ ଏହି ପ୍ରାସାଦର କାରୁକାର୍ଯ୍ୟ ଦେଖି ବିସ୍ମିତ ହୋଇଥିଲେ ଏବଂ ଲେଖିଥିଲେ ଯେ, ପ୍ରାସାଦଟି ନିଶ୍ଚୟ ଦେବତାମାନଙ୍କ ଦ୍ୱାରା ନିର୍ମିତ ହୋଇଛି, ମଣିଷ ହାତରେ ଏହା ଗଢ଼ା ନୁହେଁ । ଏପରିକି ଏହି ଶତାବ୍ଦୀର ପ୍ରାରମ୍ଭରେ ଯେଉଁସବୁ ପ୍ରତ୍ନତତ୍ତ୍ୱବିତ୍ ଏହି ରାଜପ୍ରାସାଦର ଧ୍ୱଂସାବଶେଷ ଘେନି ଅନୁସନ୍ଧାନ ଆରମ୍ଭ କରିଥିଲେ, ସେମାନେ ମଧ୍ୟ ପ୍ରାସାଦଟିକୁ କାଠର ଭିତ୍ତିକୁ ଅକ୍ଷୁଣ୍ଣ ରଖିବାର କାରୁକୌଶଳ ଏବଂ ଗୃହନିର୍ମାଣ ପଦ୍ଧତି ଲକ୍ଷ୍ୟ କରି ଗଭୀର ଭାବେ ବିସ୍ମୟ ବୋଧ କରିଥିଲେ ।

ହସ୍ତଶିଳ୍ପ ମଧ୍ୟ ଏହି ସମୟରେ ଅତ୍ୟନ୍ତ ଉଚ୍ଚ ସ୍ତରକୁ ବିକାଶ ଲାଭ କରିଥିଲା । ବିଶେଷ କରି ତନ୍ତଶିଳ୍ପ, ଧାତୁଶିଳ୍ପ ଓ ସୁନାରୂପାର ତାରକସିକାମ ବିଶେଷ ଭାବେ ବିକଶିତ ହୋଇଥିଲା । ବାରାଣସୀ, ମଥୁରା ଓ ଉଜ୍ଜୟିନୀର ତନ୍ତଶିଳ୍ପୀମାନଙ୍କ ଦ୍ୱାରା ବୁଣା ସୂକ୍ଷ୍ମ ସୂତାବସ୍ତ୍ର ସର୍ବୋତ୍କୃଷ୍ଟ ବୋଲି ଗଣ୍ୟ ହେଉଥିଲା ସେତେବେଳେ । ଭାରତର ସୂତାବସ୍ତ୍ର ସେତେବେଳେ ପାଶ୍ଚାତ୍ୟକୁ ବାରିଗାଜା ଦେଇ ରପ୍ତାନି ହେଉଥିଲା । ସେତେବେଳେ ଗାନ୍ଧାର ବିଖ୍ୟାତ ଥିଲା ପଶମ ବସ୍ତ୍ର ପାଇଁ ।

"ଅର୍ଥଶାସ୍ତ୍ରରେ" କେତେକ ବିଶେଷ ରାଜାଙ୍କ କର୍ମଶାଳାର ନାମ ଉଲ୍ଲେଖ ଅଛି, ଯେଉଁଠାରେ ନାନାବିଧ ଧାତୁର ଜିନିଷପତ୍ର ତିଆରି ହେଉଥିଲା । ଏହିସବୁ କର୍ମଶାଳାକୁ ରାଜକର୍ମଚାରୀମାନେ କଠୋର ଭାବେ ନିୟନ୍ତ୍ରଣ କରୁଥିଲେ । ରାଜାଙ୍କର ନିଜସ୍ୱ ଅସ୍ତ୍ରନିର୍ମାଣଶାଳା ବ୍ୟତୀତ ଅନ୍ୟାନ୍ୟ

ବହୁ ଧାତୁକର୍ମକାରମାନଙ୍କର କର୍ମଶାଳାସବୁ ଥିଲା । ଏହି କର୍ମକାରମାନେ ନିଜ ନିଜ କାରବାର କରୁଥିଲେ ଏବଂ କ୍ରେତାମାନଙ୍କ ବରାଦ ଅନୁଯାୟୀ କାମ କରି ଦେଉଥିଲେ । ପ୍ରତ୍ୟେକ ଗ୍ରାମରେ କୁମ୍ଭାର, ବଢ଼େଇ ଏବଂ କମାରମାନଙ୍କୁ ବହୁ ସମ୍ମାନ କରାଯାଉଥିଲା ।

କାରୁଶିଳ୍ପୀମାନଙ୍କର ନିଜସ୍ୱ ସମବାୟ ସଂଘ (ଗିଲ୍‌ଡ) ଥିଲା । ସେସବୁକୁ କୁହାଯାଉଥିଲା "ଶ୍ରେଣୀ" ବୋଲି । ଏହି ଶ୍ରେଣୀଗୁଡ଼ିକ କିଛି ପରିମାଣରେ ସ୍ୱାଧୀନ ଥିଲେ, ସେମାନଙ୍କର ନିୟମାବଳୀ ଲିପିବଦ୍ଧ ରହୁଥିଲା । ଯେଉଁ କାରିଗରମାନେ ଯେଉଁ ବିଶେଷ ସଂଘର ସଦସ୍ୟ ହେଉଥିଲେ, ସେ ସଂଘର ନିର୍ଦ୍ଦିଷ୍ଟ ନିୟମକାନୁନ୍‌କୁ ମାନି ଚଳୁଥିଲେ । ଦରକାର ପଡ଼ିଲେ, ସଂଘ ମଧ୍ୟ ତା'ର ସଦସ୍ୟମାନଙ୍କ ସମର୍ଥନରେ ଆଗେଇ ଆସୁଥିଲା । ରାଷ୍ଟ୍ର ତରଫରୁ ଏହିସବୁ ସମବାୟ ସଂଘ ଉପରେ କର୍ତ୍ତୃତ୍ୱ ଜାହିର କରିବାର ଉଦ୍ୟମ ହେଉଥିଲା । ରାଷ୍ଟ୍ର ପାଖରେ ସଂଘଗୁଡ଼ିକର ନାମ ତାଲିକାଭୁକ୍ତ କରିବାକୁ କୁହାଯାଉଥିଲା । ଶାସନ କର୍ତ୍ତୃପକ୍ଷଙ୍କ ଅଜ୍ଞାତରେ ଦେଶର ଏକ ଅଞ୍ଚଳରୁ ଅନ୍ୟ ଏକ ଅଞ୍ଚଳକୁ ସଂଘର କର୍ମସ୍ଥଳୀ ପରିବର୍ତ୍ତନ କରିବା ମଧ୍ୟ ନିଷିଦ୍ଧ ଥିଲା ।

## ବ୍ୟବସାୟ ବାଣିଜ୍ୟ – ମୁଦ୍ରାର ଆବିର୍ଭାବ

ବଣିକମାନଙ୍କର ମଧ୍ୟ ଏହିଭଳି ସଂଗଠନ ଥିଲା । କାରିଗରମାନଙ୍କ ଭଳି ସେସବୁ ଥିଲା ବିଶେଷ ପେଶାଭିତ୍ତିକ । ପ୍ରତ୍ୟେକ ବିଶେଷ ଅଞ୍ଚଳର ବଣିକକୁଳ ସୁନିର୍ଦ୍ଦିଷ୍ଟ ଗୋଟିଏ ଗୋଟିଏ ଧରଣର ପଣ୍ୟଦ୍ରବ୍ୟ ବିକାକିଣା କରୁଥିଲେ । ମଗଧ ଏବଂ ମୌର୍ଯ୍ୟ ରାଜାମାନଙ୍କ ରାଜତ୍ୱକାଳରେ ଦେଶର ବିଭିନ୍ନ ଅଞ୍ଚଳ ମଧ୍ୟରେ ଆଗ ଅପେକ୍ଷା ଆଉରି ବ୍ୟାପକ ଯୋଗାଯୋଗ ବ୍ୟବସ୍ଥା ଗଢ଼ି ଉଠିଥିଲା, ନୂଆ ନୂଆ ସଡ଼କ ତିଆରି ହୋଇଥିଲା ଏବଂ ବିଭିନ୍ନ ରାଜ୍ୟର ରାଜଧାନୀଗୁଡ଼ିକ ମଧ୍ୟରେ ବିଶେଷ ଧରଣର ବାଣିଜ୍ୟ ପଥ ସ୍ଥାପିତ ହେଲା । ଏହି ବାଣିଜ୍ୟପଥଗୁଡ଼ିକ ମଧ୍ୟରେ ସବୁଠାରୁ ବେଶି ବିଖ୍ୟାତ ଥିଲା ଉତ୍ତରାଭିମୁଖୀ ଓ ଦକ୍ଷିଣାଭିମୁଖୀ ରାଜପଥ ଦୁଇଟି । ମେଗାସ୍ଥେନିସ୍ ଏହିଭଳି ଏକ ରାଜପଥର କଥା ଉଲ୍ଲେଖ କରିଛନ୍ତି । ସେ ରାଜପଥଟି ଉତ୍ତର-ପଶ୍ଚିମ ସୀମାନ୍ତରୁ ସୁଦୂର ପାଟଳୀପୁତ୍ର ପର୍ଯ୍ୟନ୍ତ ପ୍ରସାରିତ ହୋଇ ଆଉରି ପୂର୍ବକୁ ଯାଇଥିଲା ।

ସ୍ଥଳପଥରେ ବାଣିଜ୍ୟ ବ୍ୟତୀତ ନଦୀ ଓ ସମୁଦ୍ର ପଥକୁ ମଧ୍ୟ ବାଣିଜ୍ୟ କାରବାରରେ ବ୍ୟବହାର କରିବା ଆରମ୍ଭ ହୋଇଥିଲା । ବିଭିନ୍ନ ଲିଖିତ ସୂତ୍ରରୁ ଭାରତୀୟ ବଣିକମାନଙ୍କର, ଏପରିକି ଛଅ ମାସ ବ୍ୟାପୀ, ବିପଜ୍ଜନକ ସମୁଦ୍ର ଯାତ୍ରାର କାହାଣୀ ଜଣାଯାଏ । ଭାରତର ଉପକୂଳରୁ ବୋଇତସବୁ ସେତେବେଳେ ଶ୍ରୀଲଙ୍କା, ବ୍ରହ୍ମ ଦେଶ ଓ ଦକ୍ଷିଣ ଆରବକୁ ଯାତ୍ରା କରୁଥିଲେ । ବିଭିନ୍ନ ଭାରତୀୟ ପଣ୍ୟଦ୍ରବ୍ୟ ଗ୍ରୀକ୍ ଓ ଗ୍ରୀକ୍ ଶାସିତ ଦେଶମାନଙ୍କୁ ରପ୍ତାନି ହେଉଥିଲା । ଏହିସବୁ ପଣ୍ୟଦ୍ରବ୍ୟ ମଧ୍ୟରେ ଥିଲା ମସଲା, ମୂଲ୍ୟବାନ ପ୍ରସ୍ତର, ହାତୀଦାନ୍ତରେ ଖୋଦେଇକରା ସୌଖୀନ ଜିନିଷ ଏବଂ ଦୁର୍ଲଭ ନାନା ଜାତିର କାଠ ।

ପ୍ରାୟ ଏହି ଏକା ସମୟରେ ମୁଦ୍ରାର ଆବିର୍ଭାବ ଘଟିଥିଲା ଏବଂ ମୁଦ୍ରାର ପ୍ରଚଳନ ଆରମ୍ଭ ହୋଇଥିଲା । ପ୍ରଥମେ ମୁଦ୍ରା ହିସାବରେ ବ୍ୟବହୃତ ହୋଇଥିଲା ଧାତୁର ଟୁକୁରା, ତା'ପରେ କ୍ରମେ

ସେଇ ଟୁକୁରାଗୁଡ଼ିକ ଗୋଟିଏ ଗୋଟିଏ ସୁନିର୍ଦ୍ଦିଷ୍ଟ ଆକାର ଲାଭ କଲା । ସେସବୁ ଉପରେ ବିଭିନ୍ନ ଧରଣର ପ୍ରତୀକ ଚିହ୍ନ ଓ ଲିପି ଆଦି ଖୋଦାଇ କରାଯାଉଥିଲା, କିମ୍ବା ତା'ର ଛାପ ମରାଯାଉଥିଲା ।

ଖ୍ରୀଷ୍ଟ ପୂର୍ବ ପଞ୍ଚମ ଓ ଚତୁର୍ଥ ଶତାବ୍ଦୀରେ ଯନ୍ତ୍ର ସାହାଯ୍ୟରେ ଛାପଦିଆ ମୁଦ୍ରା ଦେଖିବାକୁ ମିଳେ । ଏହିସବୁ ମୁଦ୍ରା ମଧ୍ୟରୁ ଅଧିକାଂଶ ଥିଲା ତମ୍ବା କିମ୍ବା ରୂପାରେ ତିଆରି । ଯେଉଁସବୁ ଅଞ୍ଚଳ ସେତେବେଳେ ଆକିମେନିଡ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା, ସେଠାରେ ପାରସି ସିଗ୍‌ଲୋଇ ପ୍ରଚଳିତ ହେବାକୁ ଆରମ୍ଭ କରିଥିଲା । ଉତ୍ତର-ପଶ୍ଚିମ ଅଞ୍ଚଳରେ ବିନିମୟର ଏକକ ହୋଇ ଉଠିଥିଲା ଗ୍ରୀକ୍ ଟେଟ୍ରାଡ୍ରାକ୍‌ମା ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ମୌର୍ଯ୍ୟ ଯୁଗ ସହିତ ସଂଶ୍ଳିଷ୍ଟ ଭୂସ୍ତର ଖୋଳି ଯେଉଁସବୁ ଛାପମରା ମୁଦ୍ରା ପାଇଛନ୍ତି, ସେସବୁର ବୈଶିଷ୍ଟ୍ୟ ହେଉଛି ମୁଦ୍ରା ଉପରେ ବାରମ୍ବାର ଏକ ଧରଣର କେତେକ ପ୍ରତୀକ ଚିହ୍ନର ଛାପ । ସମ୍ଭବତଃ, ଏସବୁ ହେଲା ମୌର୍ଯ୍ୟ ରାଜାମାନଙ୍କର ନିଜସ୍ୱ ପ୍ରତୀକ ଚିହ୍ନ । ଲିଖିତ ଗ୍ରନ୍ଥ ଓ ଖୋଦିତ ଲିପିଗୁଡ଼ିକରେ ଏହିସବୁ ମୁଦ୍ରାର ବିଭିନ୍ନ ନାମକରଣର ଉଲ୍ଲେଖ ରହିଛି । ଯଥା, କାର୍ଷାପଣ (ରୂପା ଓ ତମ୍ବା ମୁଦ୍ରା), କାକନି (ତମ୍ବା ମୁଦ୍ରା), ସୁବର୍ଣ୍ଣ (ସ୍ୱର୍ଣ୍ଣ ମୁଦ୍ରା), ଆଦି ।

ଯେଉଁସବୁ ରାଜକର୍ମଚାରୀ ଟଙ୍କାଶାଳରେ ରହି ମୁଦ୍ରା ତିଆରି ଓ ମୁଦ୍ରା ପ୍ରଚଳନ ବ୍ୟବସ୍ଥା ତଦାରଖ କରୁଥିଲେ, "ଅର୍ଥଶାସ୍ତ୍ରରେ" ସେମାନଙ୍କ କରଣୀୟ ଦାୟିତ୍ୱସମୂହକୁ ତାଲିକାଭୁକ୍ତ କରାଯାଇଛି । ଭାରତୀୟ ସଭ୍ୟତାର ଏହି ପର୍ଯ୍ୟାୟରେ ଋଣଦାନ, ସୁଧ ଓ ବନ୍ଧକୀ କାରବାରର ଧାରଣା ସହିତ ସାଧାରଣ ଲୋକେ ପରିଚିତ ଥିଲେ ।

## ଭୂମିମାଲିକାନା

ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ଦ୍ୱିତୀୟାର୍ଦ୍ଧରେ ବ୍ୟକ୍ତିଗତ ଭୂମିମାଲିକାନା ଆଉରି ପ୍ରସାର ଲାଭ କରିଥିଲା । ଭୂମିମାଲିକାନା ଓ ଭୂମି ଚାଷ କରିବା ମଧ୍ୟରେ ଥିବା ପାର୍ଥକ୍ୟ ସଂପର୍କରେ ପ୍ରାଚୀନ ଭାରତୀୟମାନେ ଭଲ ଭାବେ ବୁଝିଥିଲେ ଏବଂ ଏହି ଦୁଇଟି ଧାରଣାକୁ ଭିନ୍ନ ଭିନ୍ନ ସଂଜ୍ଞା ମଧ୍ୟ ଦାନ କରିଥିଲେ । ମାଲିକାନାର ବିଷୟଟିକୁ ସେମାନେ ସମ୍ବନ୍ଧବାଚକ ସର୍ବନାମ "ସ୍ୱ" ସହିତ ଯୋଗ କରିଥିଲେ । ତା ସହିତ ଯୁକ୍ତ କରିଥିଲେ ଧାତୁ ବା ପ୍ରକୃତିରୁ ଉତ୍ପନ୍ନ ଅନ୍ୟାନ୍ୟ ତଦ୍ଧିତାନ୍ତ ଶବ୍ଦକୁ । ପୁଣି "ଭୁଜ୍" (ଭୋଗ କରିବା ଅର୍ଥରେ) ଧାତୁ ଏବଂ ସେଥିରୁ ଉତ୍ପନ୍ନ "ଭୋଗ", "ଭୁକ୍ତି" ଆଦି ଶବ୍ଦ ବ୍ୟବହୃତ ହେଉଥିଲା ସାମୟିକ ଅଧିକାର ବା ଦଖଲକୁ ବୁଝାଇବା ପାଇଁ । ସୂତ୍ର ଏବଂ ଶାସ୍ତ୍ରସମୂହରେ ଏଭଳି ଘଟଣାସବୁ ଲିପିବଦ୍ଧ ରହିଛି, ଯେଉଁସବୁ କ୍ଷେତ୍ରରେ ଲୋକେ ଯେକୌଣସି ଜିନିଷ କିଣିବା ପରେ ଏବଂ ତାକୁ ଆବିଷ୍କାର ବା ଉଦ୍ଧାର କଲା ପରେ ସେ ସଂପତ୍ତିର ମାଲିକ ହୋଇଛନ୍ତି । ତେବେ ଏଥି ସହିତ କୁହାଯାଇଛି ଯେ, ଏକମାତ୍ର ଆଇନଗତ ସ୍ୱୀକୃତି ପରେ ଏବଂ ଆଇନ୍ ସଙ୍ଗତ ଅଧିକାର ଅର୍ଜନ ଭିତ୍ତିରେ କୌଣସି ବ୍ୟକ୍ତିକୁ ଆଗରୁ ବ୍ୟବହୃତ ଜିନିଷର ମାଲିକ ବୋଲି ଗଣ୍ୟ କରାଯାଇ ପାରେ । ଉପରୋକ୍ତ ଏହିସବୁ ନିୟମକାନୁନ୍ ଜମିର ମାଲିକାନା

ଏବଂ ଜମି ଚାଷ କରିବା ସମ୍ବନ୍ଧରେ ପ୍ରଯୋଜ୍ୟ ଥିଲା । ମନୁଙ୍କ ରଚିତ "ମାନବ ଧର୍ମଶାସ୍ତ୍ର" ବା "ମନୁସଂହିତାରେ" (ଖ୍ରୀ : ପୂ : ଦ୍ୱିତୀୟ ଶତାବ୍ଦୀରୁ ଖ୍ରୀଷ୍ଟ ପର ଦ୍ୱିତୀୟ ଶତାବ୍ଦୀ ମଧ୍ୟରେ) ଆବାଦ ଜମିକୁ ମୁଖ୍ୟ ସଂପତ୍ତି ମଧ୍ୟରେ ଗଣ୍ୟ କରାଯାଉଥିଲା ।

ଦେଶର ଭୂସଂପତ୍ତି ସେତେବେଳେ ତିନୋଟି ସ୍ତରରେ ବିଭକ୍ତ ଥିଲା – ବ୍ୟକ୍ତିଗତ , ସାମାଜିକ ଏବଂ ରାଜାଙ୍କ ଖାସ୍ ଦଖଲ ।

ବ୍ୟକ୍ତିଗତ ଭୂସଂପତ୍ତିର ମାଲିକମାନଙ୍କ ମଧ୍ୟରେ ବିଭିନ୍ନ ସ୍ତରଭେଦ ରହିଥିଲା , ଧନୀ ଭୂସ୍ୱାମୀଙ୍କ ବ୍ୟତୀତ ଛୋଟ ଛୋଟ ଜମିର ବହୁ ଦରିଦ୍ର ମାଲିକ ଥିଲେ । ଧନୀ ମାଲିକମାନଙ୍କର କେତେକ ଭୂସଂପତ୍ତି ଏତେ ପ୍ରକାଣ୍ଡ ଥିଲା ଯେ , ସେସବୁକୁ ଚାଷ କରିବା ପାଇଁ ଶହ ଶହ ଲଙ୍ଗଳ ଆବଶ୍ୟକ ହେଉଥିଲା । ଏହି ଧରଣର ଜମିରେ ଦାସ ଏବଂ କ୍ଷେତମଜୁରିଆଙ୍କ ଦ୍ୱାରା ଚାଷ କାର୍ଯ୍ୟ ହେଉଥିଲା ।

ହଜାର କଡ଼ିଷା (୧ କଡ଼ିଷା ପ୍ରାୟ ୬୨ ଡେସିମିଲ) ଆୟତନ ବିଶିଷ୍ଟ ବଡ଼ ବଡ଼ ଜମି ସାଙ୍ଗକୁ ଅତ୍ୟନ୍ତ କ୍ଷୁଦ୍ର କ୍ଷୁଦ୍ର ଟୁକୁରା ଜମିଖଣ୍ଡମାନ ବି ରହିଥିଲା । ଛୋଟ ଜମିମାଲିକମାନେ ନିଜ ପରିବାର ସାହାଯ୍ୟରେ ଚାଷବାସ କରୁଥିଲେ । ସଂପତ୍ତିର ଅଧିକାର ଥିଲା ଅଲଙ୍ଘନୀୟ ଏବଂ ସୁରକ୍ଷିତ । ଅନ୍ୟର ମାଲିକାନାଧୀନ ଜମିକୁ ବେଆଇନ୍ ଭାବେ ଆତ୍ମସାତ୍ କଲେ , ମୋଟା ଅର୍ଥଦଣ୍ଡ ଦେବାକୁ ପଡ଼ୁଥିଲା ଏବଂ ଏ ଧରଣର ଆଇନ୍ ଭଙ୍ଗକାରୀମାନଙ୍କୁ ଲୋକଙ୍କ ଆଗରେ ଚୋର ବୋଲି ଆଖ୍ୟାୟିତ ହେଉଥିଲେ । ଶାସ୍ତ୍ରର ବିଧି ଅନୁଯାୟୀ ଜମି ଆତ୍ମସାତ୍ କରିବା ଯୋଗୁଁ ପ୍ରଦତ୍ତ ଅର୍ଥଦଣ୍ଡ ଚୋରି ଅପରାଧ ଯୋଗୁଁ ଅର୍ଥଦଣ୍ଡ ସହିତ ସମାନ ଥିଲା । କୌଣସି ଭୂସ୍ୱାମୀର ବ୍ୟକ୍ତିଗତ ବ୍ୟାପାରରେ ଅନ୍ୟ ଦ୍ୱାରା ହସ୍ତକ୍ଷେପ ନିଷିଦ୍ଧ ଥିଲା । "ମନୁସଂହିତା" ଅନୁସାରେ ଯେଉଁ ଲୋକର ନିଜସ୍ୱ ଜମି ନାହିଁ , ଅଥଚ ଶସ୍ୟବୀଜ ରହିଛି , ସେ ଯଦି ସେ ଶସ୍ୟବୀଜକୁ ଅନ୍ୟର ଜମିରେ ବୁଣେ , ତେବେ ଉତ୍ପନ୍ନ ଫସଲରେ ତା'ର କୌଣସି ଅଧିକାର ରହେ ନାହିଁ । କେବଳ ଜମିମାଲିକର ତା ଜମି ସଂପର୍କରେ ଯେକୌଣସି ସିଦ୍ଧାନ୍ତ ନେବାର ଅଧିକାର ଥିଲା । ସେ ପ୍ରୟୋଜନ ମନେ କଲେ , ନିଜ ଜମିକୁ ବିକ୍ରି କରି ପାରେ , ଦାନ କରି ପାରେ , ବନ୍ଧକ ଦେଇ ପାରେ , କିମ୍ବା ଭାଗ ଦେଇ ପାରେ । ଏସବୁର ସାକ୍ଷ୍ୟ ଭାରତୀୟ ପ୍ରାଚୀନ ପୋଥି ପତ୍ରରେ ମିଳିଥାଏ । ଯଥା , ଜଣେ ବ୍ରାହ୍ମଣଙ୍କ ଉପାଖ୍ୟାନରେ ଉଲ୍ଲେଖ ଅଛି ଯେ , ସେ ନିଜ ଜମିର ଗୋଟିଏ ଅଂଶକୁ ଦାନ କରି ଦେଉଛନ୍ତି ଏବଂ ଅନ୍ୟତ୍ର କୁହାଯାଇଛି ଯେ , ଜଣେ ବଣିକ ଯୁବରାଜଙ୍କ ଠାରୁ ଗୋଟିଏ ଫଳ ବଗିଚା କିଣି ନେଉଛନ୍ତି , ଆଦି । ଅତଏବ , ପ୍ରାଚୀନ ଭାରତରେ କୌଣସି ବ୍ୟକ୍ତିବିଶେଷ ଭୂସଂପତ୍ତିର ଅଧିକାରୀ ହୋଇ ପାରୁ ନଥିଲେ ବୋଲି ଡିଓଡୋରାସ୍‌ଙ୍କର ଉକ୍ତିଟି (ଏହା , ସମ୍ଭବତଃ , ମେଗାସ୍ଥେନିସ୍‌ଙ୍କ ବିବରଣୀରୁ ଗୃହୀତ) ସ୍ଥାନୀୟ ଐତିହାସିକ ଉପାଦାନ ସୂତ୍ର ସହିତ ଖାପ ଖାଏ ନାହିଁ । ଏବଂ ସେଥିରେ ଏହି ସମୟର ବାସ୍ତବ ପରିସ୍ଥିତି ମଧ୍ୟ ପ୍ରତିଫଳିତ ହୁଏ ନାହିଁ ।

"ନାରଦ-ସ୍ମୃତିରେ" (ଚତୁର୍ଥ ଏବଂ ପଞ୍ଚମ ଶତାବ୍ଦୀ) ଲିପିବଦ୍ଧ ଏକ ବିଧାନରେ କୁହାଯାଇଛି ଯେ , ସ୍ୱୟଂ ରାଜାଙ୍କର ମଧ୍ୟ ବ୍ୟକ୍ତିଗତ ମାଲିକାନାର ଭିତ୍ତିକୁ ଲଘନ କରିବାର ଅଧିକାର ନାହିଁ । ଅର୍ଥାତ୍ , କୌଣସି ବ୍ୟକ୍ତିବିଶେଷର ନିଜସ୍ୱ ଘରବାଡ଼ି ବା ଜମି ଉପରେ ଅଧିକାର ନାହିଁ । ତେବେ ରାଜ ଶକ୍ତି ସର୍ବଦା ସଂପତ୍ତିର ମାଲିକମାନଙ୍କ ଅଧିକାରକୁ ଖର୍ବ କରିବାକୁ ଚେଷ୍ଟା କରୁଥିଲା । ବସ୍ତୁତଃ , ରାଜା ବ୍ୟକ୍ତିଗତ ମାଲିକାନାଧୀନ ଜମି ଉପରେ କର ଧାର୍ଯ୍ୟ କରୁଥିଲେ ଏବଂ ତେଣୁ

ଜମିର ଅବସ୍ଥା ଉପରେ ତାଙ୍କୁ ସତର୍କ ଦୃଷ୍ଟି ରଖିବାକୁ ପଡ଼ୁଥିଲା । କୌଣସି ଜମିମାଲିକ ଯଦି ବିହନ ବୁଣା କିମ୍ବା ଫସଲ ଅମଳ ବେଳେ ଜମି ପ୍ରତି ନଜର ନଦେଇ ତାକୁ ପକେଇ ରଖୁଥିଲେ, ତେବେ ରାଜା ସେ ବ୍ୟକ୍ତିଠାରୁ ଜୋରିମାନା ଆଦାୟ କରି ପାରୁଥିଲେ । ଯେଉଁସବୁ ଜମିମାଲିକ ରାଜସ୍ୱ ଦେଉ ନଥିଲେ, ରାଷ୍ଟ୍ର ତରଫରୁ ସେମାନଙ୍କ ଠାରୁ ଜୋରିମାନା ନିଆଯାଉଥିଲା । ଏସବୁ, ଅବଶ୍ୟ, ଗୃହୀତ ହେଉଥିଲା ରାଜ୍ୟ ଶାସନର କର୍ତ୍ତବ୍ୟର ଆବଶ୍ୟକ ଅଂଶ ହିସାବରେ । ତେବେ, ସବୁ କିଛି ସତ୍ତ୍ୱେ, ବ୍ୟକ୍ତିଗତ ମାଲିକମାନଙ୍କ ଠାରୁ ଜମି ବାଜ୍ୟାପ୍ତ କରି ନେବାର ଅଧିକାର ରାଷ୍ଟ୍ରର ନଥିଲା । "ବୃହସ୍ପତି-ସ୍ମୃତିରେ" (ତୃତୀୟ ଓ ଚତୁର୍ଥ ଖ୍ରୀଷ୍ଟାବ୍ଦ) ଏ ସଂପର୍କରେ ଦୃଷ୍ଟି ଆକର୍ଷଣ କରାଯାଇଛି ଯେ, ରାଜା ଯଦି ବ୍ୟକ୍ତି ମାଲିକାନାଧୀନ ଜମିକୁ ଜଣେ ଭୂସ୍ୱାମୀଠାରୁ କାଢ଼ି ନେଇ ତାକୁ ଅନ୍ୟକୁ ଦାନ କରନ୍ତି, ତେବେ ସେ ଆଇନ୍ ବିରୋଧୀ କାର୍ଯ୍ୟ କରିବେ । ତେବେ, ରାଷ୍ଟ୍ରକୁ ନିଶ୍ଚିତ ହେବାକୁ ପଡ଼ିବ ଯେ, ଜମି କ୍ରୟ ବିକ୍ରୟ କାର୍ଯ୍ୟଟି ଆଇନ୍‌ସମ୍ମତ ଭାବେ ହେଉଛି ଏବଂ ତା ଯଦି ନହୋଇଥାଏ, ତେବେ ଉପଯୁକ୍ତ କ୍ଷେତ୍ରରେ ଅର୍ଥଦଣ୍ଡରେ ଦଣ୍ଡିତ କରାଯାଉଥିଲା ।

ରାଷ୍ଟ୍ର ଭଳି ଗ୍ରାମୀଣ ସମାଜ ମଧ୍ୟ ଜମିରେ ବ୍ୟକ୍ତିଗତ ମାଲିକାନାକୁ ସୀମାବଦ୍ଧ କରିବା ଦିଗରେ ଉଦ୍ୟମ କରୁଥିଲା, ବିଶେଷ କରି ଗ୍ରାମୀଣ ସମାଜର ସଦସ୍ୟ ଯେଉଁମାନେ ନୁହନ୍ତି, ସେମାନଙ୍କୁ ଜମି ବିକ୍ରି କରିବା ଦିଗରେ ନଜର ରଖୁଥିଲା । ଜମି ବିକ୍ରି ବେଳେ ବିକ୍ରେତାର ଆତ୍ମୀୟ ସ୍ୱଜନ ଓ ପ୍ରତିବେଶୀମାନଙ୍କୁ ଜମି କ୍ରୟ କରିବାରେ ଅଗ୍ରାଧିକାର ଦିଆଯାଉଥିଲା । ବିଭିନ୍ନ ଗ୍ରାମର ସୀମାନା ଓ ଜମିର ବିଶେଷ ଅବସ୍ଥାନ ଘେନି ବିରୋଧ ଦେଖା ଦେଲେ ଏହି ଗ୍ରାମୀଣ ସମାଜଗୁଡ଼ିକର ମତାମତକୁ ବିବେଚନାକୁ ନିଆଯାଉଥିଲା । ସମାଜ ତା'ର ଭୂସ୍ୱାମୀ ସଦସ୍ୟମାନଙ୍କର ଅଧିକାରକୁ ସୁରକ୍ଷା କରୁଥିଲା । ଏହା ଛଡ଼ା ସମାଜ ସ୍ୱୟଂ ଦାୟୀ ରହୁଥିଲା ଯୌଥ ମାଲିକାନାଧୀନ ଜମି ଜାଗା ପାଇଁ – ଯଥା, ଘ୍ୱରଣଭୂମି, ଘରବାଡ଼ି ଏବଂ କୋଠ ଜମି ଉପରେ ଯାଇଥିବା ରାସ୍ତା ଆଦି ପାଇଁ ।

ଦେଶର ମୋଟ ଜମିର ଏକ ଅଂଶ ଥିଲା ରାଷ୍ଟ୍ରୀୟ ଜମି ଓ ରାଜାଙ୍କ ନିଜସ୍ୱ ବା ଖାସ୍‌ଦଖଲ ଭୁକ୍ତ ଜମି । ରାଷ୍ଟ୍ରୀୟ ଜମିରେ ଜଙ୍ଗଲ, ଖଣି, ପତିତ ଜମି, ଆଦି ଅନ୍ତର୍ଭୁକ୍ତ ଥିଲା । ରାଜାଙ୍କ ଦଖଲାଧୀନ ମୋଟ ଭୂଖଣ୍ଡର (ସ୍ୱଭୂମି) ଅନ୍ତର୍ଭୁକ୍ତ ଥିଲା ତାଙ୍କ ଖାସ୍‌ଦଖଲ ଆବାଦ ଜମି (ସୀତା) । ବିଶେଷ ଭାବେ ନିଯୁକ୍ତ ପରିଦର୍ଶକମାନେ ଏହି ଖାସ୍‌ଦଖଲ ଜମିର ଚ୍ୱଷବାସ କାର୍ଯ୍ୟ ତଦାରଖ କରୁଥିଲେ । ଏହା ଛଡ଼ା ବିଭିନ୍ନ ଗ୍ରାମରେ ଛୋଟ ଛୋଟ ଜମିରେ ରାଜାଙ୍କ ମାଲିକାନା ଅଧିକାର ଥିଲା । ଏହିସବୁ ଛୋଟ ଛୋଟ ଜମିକୁ ରାଜା ନିଜର ଖୁସି ମୁତାବକ ବଣ୍ଟନ କରି ପାରୁଥିଲେ । ସେ ଇଚ୍ଛା କଲେ, ଜମିକୁ ଦାନ, ବିକ୍ରି କରି ପାରୁଥିଲେ, କିମ୍ବା ଇଜାରା ଦେଇ ପାରୁଥିଲେ । ଖାସ୍‌ଦଖଲରେ ଥିବା ଜମିକୁ ମଧ୍ୟ ସେ ବଣ୍ଟନ କରି ପାରୁଥିଲେ । ଖାସ୍‌ଦଖଲରେ ଥିବା ଜମିର ଚ୍ୱଷକାର୍ଯ୍ୟ କରୁଥିଲେ କ୍ରୀତଦାସ, ଖେତମଜୁରିଆ ଏବଂ ନାନା ସ୍ତରର ଭଡ଼ାଟିଆ କୃଷକ ପ୍ରଜାମାନେ । ଶେଷୋକ୍ତ ଲୋକଙ୍କ ମଧ୍ୟରୁ କେତେକ ସେମାନଙ୍କ ଶ୍ରମ ବିନିମୟରେ ଉତ୍ପନ୍ନ ଫସଲର ଅର୍ଦ୍ଧେକ ପାଉଥିଲେ, କିନ୍ତୁ ଅନ୍ୟମାନେ ଫସଲର ଏକ ଚତୁର୍ଥାଂଶରୁ ଅଧିକ ପାଉ ନଥିଲେ । ଏହା ଛଡ଼ା ରାଷ୍ଟ୍ରୀୟ ଜମିରେ କୃଷକ ପ୍ରଜାମାନଙ୍କୁ ରଖାଯାଉଥିଲା, ସାମୟିକ ଭାବେ ଚ୍ୱଷ କରିବା ପାଇଁ ସେମାନଙ୍କୁ ଦିଆଯାଉଥିଲା ଜମି । ରାଷ୍ଟ୍ରୀୟ ଜମିର କୃଷକ ପ୍ରଜାମାନଙ୍କ ଅବସ୍ଥା ରାଜାଙ୍କ ଖାସ୍-

ଦଖଲ ଜମିରେ କାମ କରୁଥିବା ପଜାଙ୍କ ଠାରୁ ଭଲ ଥିଲ । ପ୍ରାକୃତିକ ସଂପଦକୁ ରାଜାଙ୍କ ସଂପତ୍ତି ରୂପେ ଗଣ୍ୟ କରାଯାଉଥିଲ । ଖଣିର ମାଲିକାନା ଉପରେ ରାଷ୍ଟ୍ରର ଆଧିପତ୍ୟ ମଧ୍ୟ ଥିଲ । ଏହି ପ୍ରାଚୀନ ଯୁଗର ଲିଖିତ ସୂତ୍ରଗୁଡ଼ିକରେ (ବିଶେଷ କରି "ଅର୍ଥଶାସ୍ତ୍ରରେ") ରାଜସ୍ୱର ପ୍ରକୃତି ଅନୁଯାୟୀ ଦୁଇ ଧରଣର ଜମି ମଧ୍ୟରେ ସ୍ପଷ୍ଟ ଭାବେ ଏକ ପାର୍ଥକ୍ୟ ପ୍ରଦର୍ଶନ କରାଯାଇଛି । ରାଜାଙ୍କ ନିଜସ୍ୱ ଜମିରୁ ଯେଉଁ ରାଜସ୍ୱ ଆଦାୟ କରାଯାଉଥିଲ, ତାକୁ ମଧ୍ୟ ସୀତା ବୋଲି କୁହାଯାଉଥିଲ, ଏବଂ ଅନ୍ୟାନ୍ୟ ବ୍ୟକ୍ତିଗତ ଭୂସଂପତ୍ତିରୁ ଯେଉଁ କର ଆଦାୟ କରାଯାଉଥିଲ, ତାକୁ ଭାଗ ବୋଲି କୁହାଯାଉଥିଲ ।

ମେଗାସ୍ଥେନିସ୍ ଏହି ପାର୍ଥକ୍ୟକୁ ଠିକ୍ ଭାବେ ବୁଝି ପାରି ନଥିଲେ, ତେଣୁ ସେ ଲେଖିଥିଲେ, ଭାରତରେ ସମସ୍ତ ଭୂସଂପତ୍ତି ରାଜାଙ୍କ ଅଧିକାର ଭୁକ୍ତ ଥିଲ । ଏଥିରୁ ସ୍ପଷ୍ଟତଃ ବୁଝାଯାଏ ଯେ, ରାଜଦୂତ ମେଗାସ୍ଥେନିସ୍ ରାଜଧାନୀରେ ବାସ କରୁଥିବା ହେତୁ ରାଜାଙ୍କ ଖାସ୍‌ଦଖଲରେ ଥିବା ଜମି ସହିତ ବିଶେଷ ପରିଚିତ ଥିଲେ । ତେଣୁ ଭ୍ରମବଶତଃରୁ ଏହି ଖାସ୍‌ଦଖଲର ଶାସନ ବ୍ୟବସ୍ଥାକୁ ସମଗ୍ର ଭାରତର ଜମି ଉପରେ ପ୍ରତିଷ୍ଠିତ ସାଧାରଣ ଶାସନ ବ୍ୟବସ୍ଥା ବୋଲି ସେ ମନେ କରିଥିଲେ ।

ଇତିପୂର୍ବରୁ କୁହାଯାଇଛି, ରାଜା ଦେଶର ସମସ୍ତ ରାଷ୍ଟ୍ରଯୋଗ୍ୟ ଜମିର ମାଲିକ ନଥିଲେ । ପ୍ରାଚୀନ ଭାରତୀୟ ଗ୍ରନ୍ଥ, ଖୋଦିତ ଲିପି ଆଦିରେ ପରିଷ୍କାର ଭାବେ କୁହାଯାଇଛି ଯେ, ରାଜା ରାଜସ୍ୱ ଆଦାୟ ଦେଶର ଏକମାତ୍ର ଭୂସ୍ୱାମୀ ହିସାବରେ କରୁ ନଥିଲେ, ରାଜ୍ୟର ସର୍ବସାଧାରଣଙ୍କ ରକ୍ଷାକର୍ତ୍ତା ରାଷ୍ଟ୍ରର ସାର୍ବଭୌମ ପ୍ରଧାନ ହିସାବରେ କରୁଥିଲେ । ଯଥା, ଉଦାହରଣ ସ୍ୱରୂପ, "ମନୁସଂହିତାରେ" କୁହାଯାଇଛି ଯେ, ରାଜା ଯଦି ପ୍ରଜାବର୍ଗଙ୍କ ଜୀବନ ରକ୍ଷା ଦିଗରେ ମନୋଯୋଗୀ ନହୋଇ କେବଳ ରାଜସ୍ୱ ସଂଗ୍ରହରେ ମନୋନିବେଶ କରନ୍ତି, ତେବେ ଅନତିବିଳମ୍ବରେ ତାଙ୍କର ଗତି "ନର୍କକୁ" ହେବ । ଆଉ ଏକ ପ୍ରାଚୀନ ମହାକାବ୍ୟରେ ଏହି ଧରଣର ରାଜା ସଂପର୍କରେ କୁହାଯାଇଛି ଯେ, ସେ ହେଉଛନ୍ତି "ଶସ୍ୟର ଷଡ଼୍‌ଭାଗର ଅପହର୍ତ୍ତା" ।

ସମାଜ ସଂପର୍କରେ ଜଟିଳ ଚିତ୍ର ଏବଂ ବିଭିନ୍ନ ଧରଣର ଜମିର ମାଲିକାନା ସମ୍ବନ୍ଧରେ ଲିଖିତ ତଥ୍ୟାଦି ଦେଖି ଜାଣି ହୁଏ, ପ୍ରାଚୀନ ଭାରତରେ ଜମିର ମାଲିକାନାର ପ୍ରକୃତି ସମ୍ବନ୍ଧରେ କହିବାକୁ ଯାଇ ପଣ୍ଡିତମାନେ କାହିଁକି ନାନା ପ୍ରକାରର ପୂର୍ବାନୁମାନର ଆଶ୍ରୟ ନେଇଛନ୍ତି । କେତେକ ଇତିହାସବିତ୍ ମନେ କରନ୍ତି ଯେ, ପ୍ରାଚୀନ ଭାରତରେ ଜମିରେ କୌଣସି ବ୍ୟକ୍ତିଗତ ମାଲିକାନା ନଥିଲ, ରାଜା ହିଁ ଥିଲେ ସମଗ୍ର ରାଜ୍ୟର ଏକମାତ୍ର ଏବଂ ସର୍ବୋଚ୍ଚ ଭୂସ୍ୱାମୀ, ଅଥବା ସମଗ୍ର ଦେଶରେ ଏକମାତ୍ର ସାମାଜିକ ଓ କୋଠମାଲିକାନା ପ୍ରଚଳିତ ଥିଲ । ଅଥଚ ଐତିହାସିକ ସୂତ୍ରଗୁଡ଼ିକରୁ ଇଙ୍ଗିତ ମିଳେ ଯେ, ପ୍ରାଚୀନ ଭାରତରେ ପ୍ରକୃତରେ ବିଭିନ୍ନ ଧରଣର ମାଲିକାନା ପ୍ରଚଳିତ ଥିଲ, ପୁଣି କେତେକ କ୍ଷେତ୍ରରେ ଜମି ଥିଲ କେତେ ଜଣ ଅଂଶୀଦାର ମାଲିକଙ୍କ ଅଧୀନରେ । ଏହାକୁ କୋଠ ସଂପତ୍ତି କୁହାଯାଇ ପାରେ । ଏହା ଛଡ଼ା, ଜମିମାଲିକାନାର ପ୍ରକୃତି ସମ୍ବନ୍ଧୀୟ ଏହି ପ୍ରଶ୍ନଟିର ଦ୍ୱ୍ୟର୍ଥହୀନ ସୁସ୍ପଷ୍ଟ ଉତ୍ତର ଆଶା କରିବା, ସମ୍ଭବତଃ, ସମୀଚୀନ ହେବ ନାହିଁ । କାରଣ ଏକଥା ମନେ ରଖିବାକୁ ହେବ ଯେ, ଆମେ ମୌର୍ଯ୍ୟ ସାମ୍ରାଜ୍ୟ ଭଳି ଏକ ବିଶାଳ ଭୂଖଣ୍ଡର ଭୂମି ବ୍ୟବସ୍ଥା କଥା ଆଲୋଚନା କରୁଛେ ।

ଗଙ୍ଗା ଉପତ୍ୟକା ଏବଂ ସାମ୍ରାଜ୍ୟର ମଧ୍ୟ ଭାଗରେ – ମଗଧରେ, ଯେଉଁଠି ରାଜାଙ୍କ କ୍ଷମତା

ଥିଲା ବିଶେଷ ଭାବେ ପ୍ରବଳ, ସେଠାରେ କୋଠ ସାମାଜିକ ଭୂସଂପତ୍ତି ଅପେକ୍ଷା ରାଜାଙ୍କ ଖାସ୍‌ଦଖଲ ଭୂମି ଏବଂ ବ୍ୟକ୍ତିଗତ ମାଲିକାନାଧୀନ ଭୂସଂପତ୍ତିର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା ବେଳେ ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳରେ କୋଠ ସାମାଜିକ ମାଲିକାନାର ପରମ୍ପରା ପ୍ରବଳତର ଥିଲା ।

## ପ୍ରାଚୀନ ଭାରତର ଗ୍ରାମ୍ୟ ସମାଜ

ମଗଧ ଏବଂ ମୌର୍ଯ୍ୟ ଯୁଗର ସାମାଜିକ ଓ ଅର୍ଥନୈତିକ ସଂଗଠନର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଦିଗ ଥିଲା ଗ୍ରାମ୍ୟ ସମାଜ ବ୍ୟବସ୍ଥା । ଜନସଂଖ୍ୟାର ଏକ ବଡ଼ ଅଂଶ ଏହାର ଅନ୍ତର୍ଭୁକ୍ତ ଥିଲେ: ସେମାନେ ହେଲେ ଗ୍ରାମ୍ୟ ସମାଜର ମୁକ୍ତ ବା ଅଦାସ ସଦସ୍ୟ, ଅର୍ଥାତ୍, କୃଷିଜୀବୀଗଣ । ଦୁଃଖର ବିଷୟ, ଏହି ଗ୍ରାମ୍ୟ ସମାଜର ଚରିତ୍ର, ଏହାର ଗଢ଼ଣ ଏବଂ ଏହାର ଅନ୍ତର୍ଭୁକ୍ତ ସଂପ୍ରଦାୟଗୁଡ଼ିକର ସମାବେଶ ସଂପର୍କୀୟ ସଂଶ୍ଳିଷ୍ଟ ଲିଖିତ ତଥ୍ୟ ସଂଖ୍ୟା ଯଥେଷ୍ଟ ନୁହଁ । ତା ସତ୍ତ୍ୱେ ସେସବୁଥିରୁ ଯେଉଁ ଚିତ୍ର ମିଳେ, ସେଥିରୁ ଜଣାଯାଏ, ସେ ଯୁଗରେ ଯେଉଁ ବ୍ୟାପକ ଧରଣର ସମାଜର ଅସ୍ତିତ୍ୱ ଥିଲା, ତାହା ହେଉଛି ଏହି ଗ୍ରାମ୍ୟ ସମାଜ । ସାମାଜ୍ୟର ପଶ୍ଚାତ୍‌ପଦ ଅଞ୍ଚଳଗୁଡ଼ିକରେ ସେପର୍ଯ୍ୟନ୍ତ ଗୋତ୍ରଭିତ୍ତିକ ଆଦିମ ଗ୍ରାମ୍ୟ ସମାଜର ଅସ୍ତିତ୍ୱ ରହିଥିଲା । ଲିଖିତ ଐତିହାସିକ ଉପାଦାନଗୁଡ଼ିକରେ ଏହି ଗ୍ରାମ୍ୟ ସମାଜକୁ "ଗ୍ରାମ" ବୋଲି ଉଲ୍ଲେଖ କରାଯାଇଛି । ତେବେ ଏହି ଶବ୍ଦଟିର ତତ୍କାଳୀନ ତାତ୍ପର୍ଯ୍ୟ ଥିଲା ବହୁ ବ୍ୟାପକ । ବେଳେ ବେଳେ କେତେକ ଗ୍ରାମର ବାସିନ୍ଦା ସଂଖ୍ୟା ତିରିଶଟି ପରିବାର ବୋଲି ଉଲ୍ଲେଖ କରାଯାଇଛି । ତେବେ ଏହି ବାସିନ୍ଦାଙ୍କ ସଂଖ୍ୟା, ହୁଏତ, ଅନେକ କ୍ଷେତ୍ରରେ ହଜାର ପର୍ଯ୍ୟନ୍ତ ବି ଥିଲା । ପ୍ରତ୍ୟେକ ଗ୍ରାମ ସମାଜର ସୀମାନା ଥିଲା ସୁନିର୍ଦ୍ଦିଷ୍ଟ । ଗ୍ରାମର ଆବାଦୀ ଜମି ଛୋଟ ଛୋଟ ଚକ୍‌ରାରେ ବିଭକ୍ତ ହୋଇଥିଲା । ସେଇସବୁ ଜମିର ମାଲିକ ଥିଲେ ଗ୍ରାମ୍ୟ ସମାଜର ଅଦାସ ସଦସ୍ୟ ବା କୃଷକବୃନ୍ଦ । ଗ୍ରାମ୍ୟ ସମାଜର ସୀମା ଅନ୍ତର୍ଭୁକ୍ତ କ୍ଷୁଦ୍ର କ୍ଷୁଦ୍ର ଜମିର ମାଲିକଗଣ ରାଜାଙ୍କୁ ଖଜଣା ଦେଉଥିଲେ ଏବଂ କୋଠମାଲିକାନାଧୀନ ଜମିବାବଦକୁ ଯୌଥ ଖଜଣା ମଧ୍ୟ ଗ୍ରାମ ଉପରେ ଧାର୍ଯ୍ୟ କରାଯାଉଥିଲା ।

ସଂପତ୍ତିର ମାଲିକାନାଭିତ୍ତିକ ସାମାଜିକ ସ୍ତରବିନ୍ୟାସ ସେତେବେଳକୁ ଦୃଢ଼ ଭାବେ ପ୍ରତିଷ୍ଠିତ ହୋଇ ଯାଇଥିଲା । ଗ୍ରାମ୍ୟ ସମାଜର ଯେଉଁସବୁ ସଦସ୍ୟ ନିଜ ଜମି ଚାଷ କରୁଥିଲେ, ସେମାନଙ୍କ ଛଡ଼ା, ଜମିରେ ଚାଷ ପାଇଁ କ୍ରୀତଦାସ କିମ୍ବା ଠିକାରେ ମଜୁରିଆ ନିଯୁକ୍ତ କଲା ଭଳି ସମାଜର ଏକ ଅଭିଜାତ ଶ୍ରେଣୀ ମଧ୍ୟ ସୃଷ୍ଟି ହୋଇ ଯାଇଥିଲେ । ଏହା ଛଡ଼ା ଗ୍ରାମ୍ୟ ସମାଜର ଆଉ କେତେକ ସଦସ୍ୟ ଦାରିଦ୍ର୍ୟର କବଳରେ ପଡ଼ି ଜମି ଏବଂ ଚାଷର ସାଜସରଞ୍ଜାମ ହରେଇ ଠିକା ପ୍ରଜା ହିସାବରେ ଅନ୍ୟର ଜମି ଚାଷ କରିବାକୁ ବାଧ୍ୟ ହେଉଥିଲେ । ଗ୍ରାମ୍ୟ ସମାଜର ସର୍ବନିମ୍ନ ସ୍ତରଟି ଶୋଷିତ ଲୋକମାନଙ୍କୁ ନେଇ ଗଠିତ ହୋଇଥିଲା । ଏହିସବୁ ଲୋକେ ଉତ୍ପାଦନର କୌଣସି ଉପାୟ ଉପକରଣର ମାଲିକ ନଥିଲେ । ଗ୍ରାମ୍ୟ କାରିଗରମାନେ ମଧ୍ୟ କେତୋଟି ସ୍ତରରେ ବିଭକ୍ତ ଥିଲେ । ସେମାନଙ୍କ ମଧ୍ୟରୁ କେତେକ ନିଜସ୍ୱ କର୍ମଶାଳାରେ ସ୍ୱାଧୀନ ଭାବେ କାର୍ଯ୍ୟ କରୁଥିଲେ ଏବଂ ଅନ୍ୟମାନେ ନିର୍ଦ୍ଦିଷ୍ଟ ପାରିଶ୍ରମିକର ବିନିମୟରେ ଅନ୍ୟ କାରିଗରର ଅଧୀନରେ କାମ କରୁଥିଲେ । ଏକା ଗ୍ରାମ୍ୟ ସମାଜ ମଧ୍ୟରେ କାରିଗରି ଏବଂ ଚାଷର ସମନ୍ୱୟ ଫଳରେ ସମାଜର ଲୋକଙ୍କ

ମଧ୍ୟରେ ପଣ୍ୟ ଏବଂ ସେବା ବିନିମୟ ପ୍ରଥା ଗଢ଼ି ଉଠିଥିଲା । ପ୍ରାଚୀନ ଭାରତୀୟ ଗ୍ରାମ୍ୟ ସମାଜରେ ଏହା ଥିଲା ଏକ ବୈଶିଷ୍ଟ୍ୟ । ଆଂଶିକ ଭାବେ ଏହା ସେ ସମାଜର ଆତ୍ମ କେନ୍ଦ୍ରିକ ଓ ପିତୃଶାସିତ ଚରିତ୍ର ଗଢ଼ି ଉଠିବାର ଏକ କାରଣ ।

ଭାରତୀୟ ଗ୍ରାମ୍ୟ ସମାଜ ଏପର୍ଯ୍ୟନ୍ତ ସେହି ପ୍ରାଚୀନ ଯୁଗର ଅଭିନ୍ନ ପରମ୍ପରା ସହ ଦୃଢ଼ବଦ୍ଧ ଏକ ଯୌଥ ଜୀବନର କେତେକ ବୈଶିଷ୍ଟ୍ୟକୁ ବଜାଏ ରଖି ଚାଲିଛି । ବୌଦ୍ଧ ଗ୍ରନ୍ଥଗୁଡ଼ିକରେ ରାସ୍ତା ପରିଷ୍କାର ଏବଂ ଜଳାଶୟ ଖନନ କାର୍ଯ୍ୟରେ ଯୌଥ ଶ୍ରମର କଥା ଉଲ୍ଲେଖ ଅଛି । ଗ୍ରାମ୍ୟ ସମାଜର ମୁକ୍ତ ସଦସ୍ୟମାନେ ଧର୍ମୀୟ ଅନୁଷ୍ଠାନ ସମେତ ସମସ୍ତ ଉତ୍ସବକୁ ମିଳିତ ଭାବେ ପାଳନ କରୁଥିଲେ । "ଅର୍ଥଶାସ୍ତ୍ରରେ" କୁହାଯାଇଛି, କେହି ଯଦି କୌଣସି ସାମାଜିକ ଉତ୍ସବରେ ଯୋଗ ଦେବାକୁ ଅସ୍ୱୀକାର କରୁଥିଲେ, ତେବେ ତାଙ୍କୁ ଅର୍ଥଦଣ୍ଡ ଦେବାକୁ ପଡ଼ୁଥିଲା । ଏହି ଗ୍ରାମ୍ୟ ସମାଜ ମିଳିତ ଭାବେ ଦେଶର ଅନ୍ୟାନ୍ୟ ଗ୍ରାମ୍ୟ ସମାଜ ସହିତ, କିମ୍ବା ଦେଶର ରାଜା ସହିତ ସଂଯୋଗ ସ୍ଥାପନ କରି ପାରୁଥିଲା । ମୁକ୍ତ ଗ୍ରାମବାସୀମାନଙ୍କର ଅଧିକାରସମୂହକୁ ମଧ୍ୟ ଗ୍ରାମ୍ୟ ସମାଜ ରକ୍ଷା କରୁଥିଲା । "(ରାଷ୍ଟ୍ର ଭଳି) ଗ୍ରାମ୍ୟ ସମାଜ, ଏକ ଦିଗରେ ଯେପରି ଏହିସବ ମୁକ୍ତ ଓ ସମସ୍ତରର ବ୍ୟକ୍ତିଗତ ସଂପତ୍ତିର ମାଲିକମାନଙ୍କର ପାରସ୍ପରିକ ସଂପର୍କର ପ୍ରତିରୂପ, ବହିର୍ଜଗତ ବିରୁଦ୍ଧରେ ସେମାନଙ୍କ ମେଣ୍ଟ ଭଳି ଥିଲା, ସେଇପରି ତାହା ସେମାନଙ୍କ ନିରାପତ୍ତାର ସୂଚକ ମଧ୍ୟ ଥିଲା ।"* ନିଜର ଆଭ୍ୟନ୍ତରୀଣ ପରିଚାଳନା ବିଷୟରେ କିଛି ପରିମାଣରେ ଏହି ଗ୍ରାମ୍ୟ ସମାଜ ଥିଲା ସ୍ୱାଧୀନ । ସମାଜର ମୁକ୍ତ ସଦସ୍ୟଗଣ ଶାସନ ସଂକ୍ରାନ୍ତ ବିଭିନ୍ନ ସମସ୍ୟାର ସମାଧାନକଳ୍ପେ ପ୍ରାୟ ଏକତ୍ରିତ ହେଉଥିଲେ । ତେବେ ଗ୍ରାମଗୁଡ଼ିକର ମୁଖିଆମାନେ ସେତେବେଳେ କ୍ରମଶଃ ଅଧିକରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେବାକୁ ଆରମ୍ଭ କରିଥିଲେ । ପ୍ରାରମ୍ଭରେ ଗ୍ରାମ୍ୟ ସମାଜର ଏହି ମୁଖିଆମାନେ ନିର୍ବାଚିତ ହେଉଥିଲେ ସମାଜର ସମସ୍ତ ସଦସ୍ୟଙ୍କର ଏକ ସଭା ଦ୍ୱାରା । ତା'ପରେ ରାଷ୍ଟ୍ରୀୟ କର୍ମକର୍ତ୍ତାମାନେ ତାକୁ ଅନୁମୋଦନ କରୁଥିଲେ । ଏହି ଭାବେ ଗ୍ରାମର ମୁଖିଆ ରାଷ୍ଟ୍ରର ପ୍ରତିନିଧିରେ ପରିଣତ ହେଉଥିଲେ । ଗ୍ରାମ୍ୟ ସମାଜର କେବଳ ମୁକ୍ତ ସଦସ୍ୟମାନଙ୍କର ହିଁ ଭୋଟ ଦାନର ଅଧିକାର ଥିଲା । ଅନ୍ୟ ଦିଗରେ, କ୍ରୀତଦାସ, ଗୃହଭୃତ୍ୟ ଏବଂ ଦିନ ମଜୁରିଆମାନେ ସମସ୍ତ ପ୍ରକାରର ରାଜନୈତିକ ଅଧିକାରରୁ ବଞ୍ଚିତ ଥିଲେ । ଦୀର୍ଘ ଦିନ ଧରି ଏହି ଗ୍ରାମ୍ୟ ସମାଜଗୁଡ଼ିକ ପରସ୍ପର ଠାରୁ ବିଚ୍ଛିନ୍ନ ହୋଇ ରହିଥିଲେ । ଏସବୁ ଥିଲେ ସ୍ୱୟଂସଂପୂର୍ଣ୍ଣ ଆତ୍ମନିର୍ଭରଶୀଳ ପ୍ରତିଷ୍ଠାନ । ତେବେ କ୍ରମଶଃ ଏସବୁ ଆଗ ଅପେକ୍ଷା କମ୍ ଆତ୍ମନିର୍ଭରଶୀଳ ଏବଂ ଆତ୍ମକେନ୍ଦ୍ରିକ ହେବାକୁ ଲାଗିଲେ ।

## ଦାସପ୍ରଥା ଏବଂ ତା'ର ବିଶିଷ୍ଟ ଲକ୍ଷଣସମୂହ

ବୈଦିକ ଯୁଗରେ କ୍ରୀତଦାସ ପ୍ରଥାର ସୂତ୍ରପାତ ଏବଂ ମନ୍ଥର ବିକାଶ ତୁଳନାରେ ମଗଧ ଏବଂ ମୌର୍ଯ୍ୟ ଯୁଗରେ ପ୍ରଥାଟିର ଦ୍ରୁତ ବିକାଶ ଘଟିଥିଲା । ଏହି ସମୟର ଲିଖିତ ଉପାଦାନସମୂହରେ

---

* ମାର୍କସ୍, ଏଙ୍ଗେଲସ୍, ସଂକଳିତ ରଚନାବଳୀ, ମସ୍କୋ, ୧୯୮୦, ୪୬ତମ ଖଣ୍ଡ, ପ୍ରଥମ ଭାଗ, ପୃଷ୍ଠା ୪୬୬ ।—ସଂପାଦକ

ଯଦିଓ କ୍ରୀତଦାସ ଓ ଦାସ ଶ୍ରମ ନିଯୋଗ ସମ୍ବନ୍ଧରେ ଯଥେଷ୍ଟ ପରିମାଣରେ ମିଳେ ନାହିଁ, ତେବେ ପ୍ରାଚୀନ ଭାରତରେ ଦାସମାଲିକାନାର ଏବଂ ସମାଜ ଗଠନ ମଧ୍ୟରେ ଦାସପ୍ରଥାର ଭୂମିକା ସଂପର୍କରେ ଏକ ସାଧାରଣ ଚିତ୍ର ପାଇବା ସମ୍ଭବ । ଦୁଃଖର ବିଷୟ, ପ୍ରାଚୀନ ଭାରତରେ ଦାସପ୍ରଥାର ଏହି ବିଷୟଟି ପ୍ରତି ପଶ୍ଚିମ ୟୁରୋପୀୟ ତଥା ଭାରତୀୟ ପଣ୍ଡିତଗଣ, କେହି ଯଥେଷ୍ଟ ମନୋଯୋଗ ଦେଇ ନାହାନ୍ତି । ତେବେ ସଂପ୍ରତି ଏହି ଅବସ୍ଥାରେ କେତେକ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । କାରଣ ଏହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଟି ନେଇ ବିଶେଷ ଧରଣର କେତେକ ଗ୍ରନ୍ଥ ପ୍ରକାଶ ପାଇଛି (ଏ କ୍ଷେତ୍ରରେ ବିଶେଷ ମୂଲ୍ୟବାନ ଗବେଷଣା ଚଳାଇଛନ୍ତି ସୋଭିଏତ୍ ଭାରତତତ୍ତ୍ୱବିତ୍‌ଗଣ, ବିଶେଷ କରି ଜି.ଏଫ୍.ଇଲିନ୍) ।

ଏପରିକି ପ୍ରାଚୀନ ଭାରତର ଇତିହାସରେ ଏହି ନିର୍ଦ୍ଦିଷ୍ଟ ଯୁଗଟିରେ (ଅର୍ଥାତ୍, ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ଦ୍ୱିତୀୟାର୍ଦ୍ଧରେ) ଦାସପ୍ରଥା ପ୍ରଶ୍ନଟି ନେଇ ଆଲୋଚନା କଲା ବେଳେ ଏକଥା ମନେ ରଖିବା ଏକାନ୍ତ ପ୍ରୟୋଜନ ଯେ, ବିଶାଳ ମଗଧ ଓ ମୌର୍ଯ୍ୟ ସାମ୍ରାଜ୍ୟର ବିଭିନ୍ନ ଅଂଶରେ ସାମାଜିକ ସଂପର୍କର ବିକାଶ ସ୍ତର ଥିଲା ଭିନ୍ନ ଭିନ୍ନ । ସାମାଜିକ ରୀତି ଓ ସଂଗଠନାଦିର ଜଟିଳ ବୈଚିତ୍ର୍ୟର ଜାଲ ବିସ୍ତୃତ ଥିଲା ସାମ୍ରାଜ୍ୟ ସାରା, ଅଗ୍ରଗତିର ହାର ମଧ୍ୟ ଥିଲା ଅସମାନ, ଆଦି । ଅଧିକାଂଶ ଐତିହାସିକ ସୂତ୍ରରେ କେବଳ ଗଙ୍ଗା ଉପତ୍ୟକାର ଓ ତା'ର ସଂଲଗ୍ନ ଭୂଖଣ୍ଡଗୁଡ଼ିକରେ ଦାସପ୍ରଥା ଓ କ୍ରୀତଦାସ ନିଯୋଗ ସଂପର୍କରେ ପୁଙ୍ଖାନୁପୁଙ୍ଖ ବିବରଣ ମିଳିଥାଏ । ଏହି ସମସ୍ତ ତଥ୍ୟରୁ ଯେଉଁସବୁ ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ, ତାହା ମୁଖ୍ୟତଃ ମଗଧ ଓ ଆଉ କେତେକ ଅପେକ୍ଷାକୃତ ଉନ୍ନତ ଅଞ୍ଚଳ ପ୍ରତି ପ୍ରଯୋଜ୍ୟ ।

ପ୍ରାରମ୍ଭିକ ଯୁଗର ବୌଦ୍ଧ ପୋଥିଗୁଡ଼ିକରେ ଓ ଆଉ କେତେକ ଗ୍ରନ୍ଥରେ କ୍ରୀତଦାସମାନଙ୍କୁ ସମାଜର ଅନ୍ୟାନ୍ୟ ଲୋକଙ୍କ ଉପରେ ନିର୍ଭରଶୀଳ ମଣିଷ ବୋଲି ଆଖ୍ୟା ଦିଆଯାଇଛି । କ୍ରୀତଦାସମାନଙ୍କୁ ସେତେବେଳେ ମଣିଷ ହିସାବରେ ବିଚାର କରାଯାଉ ନଥିଲା, ବିଚାର କରାଯାଉଥିଲା ବସ୍ତୁ କିମ୍ବା ଗୃହପାଳିତ ପଶୁମାନଙ୍କର ଏକ ରୂପ ଭେଦ ହିସାବରେ । ପ୍ରାରମ୍ଭିକ ମହାକାବ୍ୟଗୁଡ଼ିକରେ କ୍ରୀତଦାସରେ ପରିଣତ ହୋଇଥିବା ମଣିଷକୁ ଗୋରୁ, ଛେଳି, ମେଣ୍ଢା କିମ୍ବା ଘୋଡ଼ା ଭଳି ଗୃହପାଳିତ ପଶୁଙ୍କୁ କହିଲା ଭଳି କୁହାଯାଉଥିଲା । ଧର୍ମ ସୂତ୍ରଗୁଡ଼ିକରେ ମୃତ ବ୍ୟକ୍ତିର ସ୍ଥାବର ଅସ୍ଥାବର ଅନ୍ୟାନ୍ୟ ସଂପତ୍ତି ସହିତ କ୍ରୀତଦାସମାନଙ୍କୁ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ଭାଗବାଣ୍ଟ କରିବାର ନିୟମକାନୁନ୍ ବିଧିବଦ୍ଧ କରାଯାଇଛି । ଗୃହପାଳିତ ଜୀବଜନ୍ତୁ ଓ ମୂଲ୍ୟବାନ ଧାତୁ ଆଦି ଭଳି କ୍ରୀତଦାସମାନଙ୍କୁ ସେତେବେଳେ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଉଥିଲା ।

ଜନସଂଖ୍ୟାର ବିଭିନ୍ନ ଅଂଶ ଥିଲେ ଦାସମାଲିକ । ରାଜସଭାରେ, ଧନୀ ନାଗରିକମାନଙ୍କ ଗୃହରେ ଏବଂ ଗ୍ରାମ୍ୟ ସମାଜରେ ସର୍ବତ୍ର ଏହି କ୍ରୀତଦାସମାନେ ନିଯୁକ୍ତ ଥିଲେ । ନିଜର ଭାଗ୍ୟ ନିର୍ଦ୍ଧାରଣ ବିଷୟରେ କ୍ରୀତଦାସମାନଙ୍କର କୌଣସି କିଛି କହିବାର ଅଧିକାର ନଥିଲା । ସେମାନଙ୍କୁ ଦାନ ଓ ବିକ୍ରି କରାଯାଉଥିଲା, ପଶା ଖେଳରେ ବାଜି ରଖାଯାଉଥିଲା ଏବଂ ଖେଳରେ ହାରି ଗଲେ ଅନାୟାସରେ ଅନ୍ୟକୁ ଅର୍ପଣ କରି ଦିଆଯାଉଥିଲା । ଲିଖିତ ବୌଦ୍ଧ ସୂତ୍ରଗୁଡ଼ିକରେ କ୍ରୀତଦାସମାନଙ୍କର ତତ୍କାଳୀନ ବଜାର ଦର ସଂପର୍କରେ ଆମେ ଦେଖିବାକୁ ପାଇଥାଏ । ଏହି ବଜାର ଦର କ୍ରୀତଦାସମାନଙ୍କର ସ୍ୱାସ୍ଥ୍ୟ ଏବଂ କାର୍ଯ୍ୟ କ୍ଷମତା ଉପରେ ନିର୍ଭର କରୁଥିଲା । କେତେକ ଗ୍ରନ୍ଥରେ

କ୍ରୀତଦାସମାନଙ୍କୁ ଚତୁଷ୍ପଦ ପ୍ରାଣୀମାନଙ୍କ ଠାରୁ ପୃଥକ୍ କରି ଦେଖାଇବା ପାଇଁ ସେମାନଙ୍କୁ ଦ୍ୱିପଦ ପ୍ରାଣୀ ରୂପେ ଉଲ୍ଲେଖ କରାଯାଇଛି । କ୍ରୀତଦାସମାନଙ୍କର ଜୀବନ ମୋଟେ ସେତେବେଳେ ସହଜ ନଥିଲା । ବୌଦ୍ଧ ପୋଥିମାନଙ୍କରେ କ୍ରୀତଦାସମାନଙ୍କୁ କିପରି ସର୍ବଦା ଶାସ୍ତିର ଭୟ ଦେଖାଇ ଲୌହ ଅଙ୍କୁଶରେ ପିଟି, ଏପରିକି କେତେକ ଦାସଙ୍କୁ ଶୃଙ୍ଖଳରେ ବାନ୍ଧି କାର୍ଯ୍ୟ କରାଯାଉଥିଲା, ତା'ର ବର୍ଣ୍ଣନା ରହିଛି । ସେମାନଙ୍କୁ ଯେଉଁ ଖାଦ୍ୟ ଦିଆଯାଉଥିଲା, ତାହା ପେଜ ଛଡ଼ା ଆଉ କିଛି ନୁହଁ ।

କ୍ରୀତଦାସ ସଂଗ୍ରହର ପଦ୍ଧତି ଅନୁସାରେ ସେମାନଙ୍କୁ ବିଭିନ୍ନ ସ୍ତରରେ ବିଭକ୍ତ କରାଯାଉଥିଲା । ଏପର୍ଯ୍ୟନ୍ତ ଯେଉଁ ପ୍ରଥମ ସ୍ତରବିନ୍ୟାସଟି ମିଳିଛି, ସେଥିରେ ତିନି ଧରଣର କ୍ରୀତଦାସ ତାଲିକାଭୁକ୍ତ ହୋଇଛନ୍ତି – ଗୃହଦାସମାନଙ୍କର ସନ୍ତାନସନ୍ତତି, ଯେଉଁମାନଙ୍କୁ କିଣାଯାଇଛି ବା ଅନ୍ୟ ଦେଶରୁ ଅଣାଯାଇଛି (ସ୍ପଷ୍ଟତଃ, ଏମାନେ ଥିଲେ ଯୁଦ୍ଧବନ୍ଦୀ) । ଏହା ପରେ ନୂଆ ନୂଆ କ୍ରୀତଦାସମାନଙ୍କୁ ଅନ୍ତର୍ଭୁକ୍ତ କରିବା ଫଳରେ ଏହି ତାଲିକାର କଳେବର ବର୍ଦ୍ଧିବାକୁ ଲାଗିଲା । କ୍ରୀତଦାସମାନଙ୍କୁ ମୁକ୍ତି ଦେବାର ବିଧିବିଧାନ କ୍ରମଶଃ ଗଢ଼ି ଉଠିଲା । କୌଣସି କ୍ରୀତଦାସକୁ ମୁକ୍ତି ଦିଆଯିବ କି ନାହିଁ, ତାହା ଯଦିଓ ଦାସମାଲିକର ଇଚ୍ଛାଧୀନ ଥିଲା, ତେବେ ବିଶେଷ ଅବସ୍ଥାରେ ଓ ବିଶେଷ ପରିମାଣର ମୂଲ୍ୟ ଦେଇ ପାରିଲେ କ୍ରୀତଦାସମାନେ (ବିଶେଷ କରି ସାମୟିକ) ସ୍ୱାଧୀନତା କିଣି ପାରୁଥିଲେ ।

"ଅର୍ଥଶାସ୍ତ୍ର" ରଚୟିତା କୌଟିଲ୍ୟ କ୍ରୀତଦାସ ପ୍ରଥା ବିଷୟଟି ପ୍ରତି ଯଥେଷ୍ଟ ଧ୍ୟାନ ଦେଇଛନ୍ତି । ଆଜୀବନ କ୍ରୀତଦାସ ଏବଂ ଅସ୍ଥାୟୀ ବା ସାମୟିକ କ୍ରୀତଦାସମାନଙ୍କ ମଧ୍ୟରେ ସୁସ୍ପଷ୍ଟ ପାର୍ଥକ୍ୟ ସେ ଦର୍ଶାଇଛନ୍ତି । ବିଭିନ୍ନ ଘଟଣାର ଉଲ୍ଲେଖ କରି ସେ ଦେଖାଇଛନ୍ତି, ସ୍ୱାଧୀନ ଆର୍ଯ୍ୟମାନଙ୍କୁ ଦାସ ଅବସ୍ଥାରୁ କିପରି ରକ୍ଷା କରାଯାଇ ପାରେ । "ଅର୍ଥଶାସ୍ତ୍ର" ଭାଷ୍ୟ ଅନୁଯାୟୀ, ଦାସମାଲିକ ନିର୍ଦ୍ଦିଷ୍ଟ ପରିମାଣର ମୁକ୍ତି ମୂଲ୍ୟ ପାଇବା ପରେ ଅସ୍ଥାୟୀ କ୍ରୀତଦାସକୁ ମୁକ୍ତି ନଦେଲେ, ତାକୁ ଅର୍ଥଦଣ୍ଡରେ ଦଣ୍ଡିତ କରିବାର ବିଧି ଥିଲା । "ଅର୍ଥଶାସ୍ତ୍ର" ରଚୟିତା ଅସ୍ଥାୟୀ କ୍ରୀତଦାସମାନଙ୍କର ସନ୍ତାନସନ୍ତତିଙ୍କୁ କ୍ରୀତଦାସ ବୋଲି ଗଣ୍ୟ କରି ନାହାନ୍ତି । ଏକଥାଟି କିନ୍ତୁ ଏହାର ପୂର୍ବବର୍ତ୍ତୀ ପୋଥିଗୁଡ଼ିକରେ ଲିପିବଦ୍ଧ ବିଧାନ ଠାରୁ ପୃଥକ୍, କାରଣ ସେସବୁ ପୋଥିରେ କୁହାହୋଇଛି ଯେ, ଯେକୌଣସି କ୍ରୀତଦାସୀର ସନ୍ତାନମାନେ ଆପଣାଛାଏଁ କ୍ରୀତଦାସର ଶ୍ରେଣୀଭୁକ୍ତ ହେବେ । ଉଚ୍ଚତର ବର୍ଣ୍ଣର ଯେଉଁସବୁ ଲୋକ ଭାଗ୍ୟ ବିପର୍ଯ୍ୟୟ ଫଳରେ କ୍ରୀତଦାସରେ ପରିଣତ ହେଉଥିଲେ, ସେମାନଙ୍କ ହିତ ପାଇଁ କୌଟିଲ୍ୟ ଦଣ୍ଡାୟମାନ ହୋଇଥିଲେ । ଅସ୍ଥାୟୀ ଦାସମାନଙ୍କୁ ନୀଚ କାମରେ ନିଯୁକ୍ତ କରିବାକୁ ଅନୁମତି ସେ ଦେଇ ନାହାନ୍ତି । "ଅର୍ଥଶାସ୍ତ୍ରରେ" କୁହାଯାଇଛି ଯେ, କ୍ରୀତଦାସର ନିଜସ୍ୱ ସଂପତ୍ତି ରଖିବାର ଅଧିକାର ଅଛି । କିନ୍ତୁ ପରବର୍ତ୍ତୀ ବ୍ରାହ୍ମଣ ଶାସ୍ତ୍ରଗୁଡ଼ିକର ବିଧାନ ଅନୁଯାୟୀ କ୍ରୀତଦାସମାନଙ୍କର କେବଳ ନିଜସ୍ୱ ସଂପତ୍ତି ରଖିବାର ଅଧିକାର ଯେ ନିଷିଦ୍ଧ ଥିଲା, ତା ନୁହେଁ, ତା ଦ୍ୱାରା ଅର୍ଜିତ ସର୍ବସ୍ୱକୁ ପ୍ରଭୁ ହାତରେ ଅର୍ପଣ କରି ଦେବାକୁ ସେ ବାଧ୍ୟ ଥିଲା ।

"ଅର୍ଥଶାସ୍ତ୍ର" ମଧ୍ୟରେ ତତ୍କାଳୀନ ରାଷ୍ଟ୍ର ପକ୍ଷରୁ କ୍ରୀତଦାସମାନଙ୍କର ପଦମର୍ଯ୍ୟାଦା ନିରୂପଣ ବିଷୟରେ କେତେକ ଶୃଙ୍ଖଳା ଏବଂ ପରିଚ୍ଛନ୍ନ ଦୃଷ୍ଟିଭଙ୍ଗି ପ୍ରବର୍ତ୍ତନର ପ୍ରୟାସ ପ୍ରତିଫଳିତ ହୋଇଛି । ସେତେବେଳେ ଏହି ବିଷୟଟି ବିଶେଷ ଗୁରୁତ୍ୱ ଅର୍ଜନ କରିଥିବାରୁ ଏ କ୍ଷେତ୍ରରେ କେତେକ ବ୍ୟବସ୍ଥା ଅବଲମ୍ବନର ଚେଷ୍ଟା ହୋଇଥିଲା ।

ସମାଜର ସମଗ୍ର ବ୍ୟବସ୍ଥା ମଧ୍ୟରେ କ୍ରୀତଦାସର ନିର୍ଦ୍ଦିଷ୍ଟ ସ୍ଥାନ ନିର୍ଣ୍ଣୟ ସହିତ ଜଡ଼ିତ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଗୁଡ଼ିକ ମଧ୍ୟରେ ଅନ୍ୟତମ ଥିଲା ତତ୍କାଳୀନ ଉତ୍ପାଦନ କ୍ଷେତ୍ରରେ, ଅର୍ଥାତ୍, ସମାଜର ଅର୍ଥନୈତିକ କ୍ରିୟାକଳାପର ମୂଳ କ୍ଷେତ୍ରଗୁଡ଼ିକରେ ଦାସ ଶ୍ରମର ବିଶେଷ ଭୂମିକା ବିଷୟଟି ।

ଐତିହାସିକ ଉପାଦାନ ସୂତ୍ରଗୁଡ଼ିକରୁ ଜଣାଯାଏ ଯେ, କୃଷିକାର୍ଯ୍ୟରେ ଦାସ ଶ୍ରମ ସେତେବେଳେ ବ୍ୟବହୃତ ହେଉଥିଲା । ରାଜକୀୟ ଖାସ୍ ମାହାଲଗୁଡ଼ିକର କ୍ରୀତଦାସମାନଙ୍କୁ କାର୍ଯ୍ୟରେ ନିୟୋଜିତ କରାଯାଉଥିଲା । "ଅର୍ଥଶାସ୍ତ୍ରରେ" ସାକ୍ଷ୍ୟ ଅନୁଯାୟୀ, ଏହିସବୁ ଖାସ୍ ମାହାଲରେ ବିହନ ବୁଣିବା କାର୍ଯ୍ୟଟି ବିଶେଷ ଭାବେ ନିର୍ଦ୍ଦିଷ୍ଟ ଥିଲା କ୍ରୀତଦାସ କିମ୍ବା ଠିକା ମଜୁରିଆ ଏବଂ ଅର୍ଥଦଣ୍ଡର ଟଙ୍କାକୁ "ବେଠି ଖଟି ଅସୁଲ କରିବା" ପାଇଁ ନିଯୁକ୍ତ ଲୋକଙ୍କ ପାଇଁ । ଏହା ଛଡ଼ା ବ୍ୟକ୍ତିଗତ ମାଲିକାନାଧୀନ ବଡ଼ ବଡ଼ ଖମାରରେ କାର୍ଯ୍ୟ କରିବା ପାଇଁ କ୍ରୀତଦାସମାନଙ୍କୁ ଲଗାଯାଉଥିଲା । ଏହିସବୁ ଖମାରରେ ହଳ କରିବା, ବିହନ ବୁଣିବା ଏବଂ ଫସଲ କାଟି ଘରକୁ ଆଣିବାର କାର୍ଯ୍ୟ କ୍ରୀତଦାସମାନେ କରୁଥିଲେ । ଜାତକ ଗ୍ରନ୍ଥଗୁଡ଼ିକରେ ସେଇସବୁ କ୍ରୀତଦାସମାନଙ୍କ ସଂପର୍କରେ ଉଲ୍ଲେଖ ଅଛି, ଯେଉଁମାନେ ଠିକା ମଜୁରିଆଙ୍କ ସହିତ ଏକତ୍ର ଗଛ କାଟି ବିହନ ବୁଣିବା ପାଇଁ ଜମି ସଫା କରୁଥିଲେ । ଛୋଟ ଛୋଟ ଜମିର ମାଲିକମାନେ ମଧ୍ୟ ବେଳେ ବେଳେ ଦାସମାଲିକ ପାଲଟି ଯାଉଥିଲେ, ତେବେ ସେମାନଙ୍କ ଅଧୀନସ୍ଥ କ୍ରୀତଦାସମାନଙ୍କ ସଂଖ୍ୟା, ଅବଶ୍ୟ, ଖୁବ୍ ବେଶି ହେଉ ନଥିଲା । ଜାତକ ଗ୍ରନ୍ଥଗୁଡ଼ିକରେ ଏଭଳିସବୁ ପରିବାରର କଥା ଘନ ଘନ ଉଲ୍ଲେଖ କରାଯାଇଛି, ଯେଉଁମାନଙ୍କର ଜଣେ ଜଣେ କରି କ୍ରୀତଦାସ ବା କ୍ରୀତଦାସୀ ଥିଲେ । କ୍ରୀତଦାସମାନେ ବୌଦ୍ଧ ସଂପ୍ରଦାୟର ସଦସ୍ୟଭୁକ୍ତ ହୋଇ ପାରୁ ନଥିଲେ । ତେବେ ସଂଘ ପକ୍ଷରୁ ଯେଉଁସବୁ ଶ୍ରମିକଙ୍କୁ ନିଯୁକ୍ତ କରାଯାଉଥିଲା, ସେମାନଙ୍କ ପଦମର୍ଯ୍ୟାଦା କାର୍ଯ୍ୟତଃ ଥିଲା କ୍ରୀତଦାସମାନଙ୍କ ସମତୁଲ୍ୟ । ଏହି ଶ୍ରମିକମାନେ ମଠ ଅଧୀନସ୍ଥ ଭୂସଂପତ୍ତିରେ କାର୍ଯ୍ୟ କରୁଥିଲେ, କିମ୍ବା ଅନ୍ୟାନ୍ୟ କାର୍ଯ୍ୟରେ ନିଯୁକ୍ତ ହେଉଥିଲେ । କାରୁଶିଳ୍ପ କ୍ଷେତ୍ରରେ ଦାସ ଶ୍ରମ ନିୟୋଗ କଥା ମଧ୍ୟ ଜଣାଯାଏ, ତେବେ ସେ ସଂପର୍କରେ ଖୁବ୍ କମ୍ ଉଲ୍ଲେଖ ଦେଖିବାକୁ ମିଳେ ।

ପ୍ରାଚୀନ ଭାରତୀୟ ସମାଜରେ ଦାସପ୍ରଥାର ଯେଉଁ ବିଶିଷ୍ଟ ଲକ୍ଷଣଗୁଡ଼ିକୁ ଦେଖିବାକୁ ମିଳେ, ତାହା ହେଉଛି ପ୍ରଧାନତଃ ପ୍ରଥାଟିର ଅପରିପକ୍ୱତା ଏବଂ ତା'ର ପିତୃତାନ୍ତ୍ରିକ ଚରିତ୍ର । ଦାସ ଶ୍ରମ ଏବଂ ମୁକ୍ତ ଭଡ଼ାଟିଆ ମଜୁରିଆର ଶ୍ରମ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନଥିଲା । ଏ ପ୍ରସଙ୍ଗରେ ସ୍ମରଣ କରିବା କଥା ଯେ, ବହୁ ଲିଖିତ ଉପାଦାନରେ ଦାସ ଶ୍ରମ ସଂପର୍କରେ ଏକଥା କୁହାଯାଇଛି ଯେ, ଏହି ଶ୍ରମ ଭଡ଼ାଟିଆ ମଜୁରିଆମାନଙ୍କ ଶ୍ରମ ଭଳି । "ଅର୍ଥଶାସ୍ତ୍ରରେ" କ୍ରୀତଦାସ ଏବଂ କର୍ମକାରର (ଭଡ଼ାଟିଆ ମଜୁରିଆ) ପଦମର୍ଯ୍ୟାଦାକୁ ଏକେଇ ସ୍ତରର ଅନ୍ତର୍ଗତ କରାଯାଇଛି ।

ଭାରତୀୟ ଦାସପ୍ରଥାର ଆଉ ଏକ ବୈଶିଷ୍ଟ୍ୟ ହେଉଛି ଗୃହକର୍ମରେ ଦାସ ଶ୍ରମର ବ୍ୟାପକ ବ୍ୟବହାର । ପ୍ରାଚୀନ ଭାରତୀୟମାନଙ୍କ ଜୀବନଯାତ୍ରାରେ ଏହି ଧରଣର ଶ୍ରମର ବ୍ୟବହାର ଅନେକ ବେଶି ସ୍ଥାନ ଗ୍ରହଣ କରିଥିଲା । ଲିଖିତ ଉପାଦାନସମୂହରେ ଏହିସବୁ ଦାସମାନଙ୍କୁ ଗୃହପରିଗ୍ରହକ ନାମରେ ଉଲ୍ଲେଖ କରାଯାଇଛି । ଯଥା, "ଘର ଦାସ", "ଗୃହ ଦାସ", "ଗେହ ଦାସ" ବା "ଦାସୀ", ଆଦି । ଘରେ ଦାସ ଶ୍ରମକୁ କାର୍ଯ୍ୟରେ ଲଗାଇବା ଫଳରେ ପ୍ରଭୁ ଏବଂ ଦାସ ମଧ୍ୟରେ ସଂପର୍କ କ୍ଷେତ୍ରରେ ଏକ ପିତାପୁତ୍ର ଜାତୀୟ ଆତ୍ମୀୟ ସଂପର୍କ ସ୍ପର୍ଶ ସେତେବେଳେ ଲାଗିଥିଲା ଏବଂ ଏଭଳି ଏକ ଧାରଣାର ଉଦ୍ଭବ ହୋଇଥିଲା, ଯେପରି ସାମଗ୍ରିକ ଭାବେ ଦାସପ୍ରଥା ଏକ

ସହନୀୟ ବ୍ୟାପାର । ସମ୍ଭବତଃ, ଏହା ଫଳରେ ମେଗାସ୍ଥେନିସ୍ ଏହି ଭୁଲ କଥାଟି କହିଥିଲେ, ସମସ୍ତ ଭାରତୀୟ ସେ ଯୁଗରେ ସ୍ୱାଧୀନ ଥିଲେ ଏବଂ କ୍ରୀତଦାସ ବୋଲି କେହି ନଥିଲେ ।

ସାମଗ୍ରିକ ଭାବେ ବିଚାର କଲେ, ଏକଥା କୁହାଯାଏ ଯେ, ପ୍ରାଚୀନ ଭାରତୀୟ ପଟ୍ଟଭୂମିରେ ଯଦିଓ ଦାସପ୍ରଥାର କେତେକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ଥିଲା (ଯଥା ପିତୃତାନ୍ତ୍ରିକ ସାମାଜିକ ସଂପର୍କ, ଦାସ ଶ୍ରମ ସହିତ ମୁକ୍ତ କୃଷକମାନଙ୍କ ଶ୍ରମର ସାମଞ୍ଜସ୍ୟତା, ଅନୁନ୍ନତ ଅର୍ଥନୈତିକ ରୂପସମୂହର ଅସ୍ତିତ୍ୱ), ତେବେ ମଗଧ ଏବଂ ମୌର୍ଯ୍ୟ ଯୁଗରେ ସମାଜର ସାମଗ୍ରିକ ଗଢ଼ଣ ମଧ୍ୟରେ ତାହା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରୁଥିଲା । ଦେଶ ମଧ୍ୟରେ ସେତେବେଳେ ସର୍ବାପେକ୍ଷା ଉନ୍ନତ ଅଞ୍ଚଳ ମଗଧରେ ପ୍ରକାଣ୍ଡ ରାଜକୀୟ ଖାସ୍ ମାହାଲ ଏବଂ ବହୁ ସଂଖ୍ୟକ ବଡ଼ ବଡ଼ ବ୍ୟକ୍ତିଗତ ମାଲିକାନାଧୀନ ଭୂସଂପତ୍ତି । ତେଣୁ ସେଠାକାର ଜଟିଳ ସମାଜ ଗଢ଼ଣରେ ଦାସମାଲିକାନାଭିତ୍ତିକ ସାମାଜିକ ଅର୍ଥନୈତିକ ସଂଗଠନ ଥିଲା ସ୍ପଷ୍ଟତଃ ପ୍ରଧାନ ।

ସେଠାକାର ଉତ୍ପାଦନର ପ୍ରଧାନ କ୍ଷେତ୍ରରେ ଯଦିଓ ଗ୍ରାମ୍ୟ ସମାଜର ମୁକ୍ତ ସଦସ୍ୟ, ଭଡ଼ାଟିଆ ଚାଷୀପ୍ରଜା ଓ ଭଡ଼ାଟିଆ ମଜୁରିଆମାନଙ୍କର ଶ୍ରମ ଏକ ପ୍ରଧାନ ଭୂମିକା ପାଳନ କରୁଥିଲା, ତେବେ ଆଦିମ ସମାଜ ତୁଳନାରେ ଦାସପ୍ରଥା ଥିଲା ସେଠାରେ ଏକ ପ୍ରଗତିଶୀଳ ଘଟଣା ଏବଂ ତାହା ସାମଗ୍ରିକ ଭାବେ ସମାଜ ଉପରେ ପ୍ରବଳ ପ୍ରଭାବ ବିସ୍ତାର କରୁଥିଲା । ଦାସପ୍ରଥା, ଅବଶ୍ୟ, ସେତେବେଳେ ଶୋଷଣର ଏକମାତ୍ର ଉପାୟ ନଥିଲା, ତା ସତ୍ତ୍ୱେ ଏହା ଥିଲା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏକ ଉପାୟ । ଆମେ ଯେଉଁ ଯୁଗ କଥା ଆଲୋଚନା କରୁଛେ, ସେ ଯୁଗରେ ଏହି ଦାସପ୍ରଥା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଥିଲା ।

## କର୍ମକାରବୃନ୍ଦ

ମଗଧ ଏବଂ ମୌର୍ଯ୍ୟ ସାମ୍ରାଜ୍ୟ ଅମଳରେ ଭଡ଼ାଟିଆ ମଜୁରିଆମାନଙ୍କର ବ୍ୟବହାର ବ୍ୟାପକ ଥିଲା । ଏହିସବୁ ମୂଲିଆ ବା କର୍ମକାରମାନଙ୍କୁ ଉତ୍ପାଦନର ବିଭିନ୍ନ କ୍ଷେତ୍ରରେ ଦେଖିବାକୁ ମିଳୁଥିଲା— କୃଷିକାର୍ଯ୍ୟରେ (ରାଜକୀୟ ଓ ବ୍ୟକ୍ତିଗତ ଭୂସଂପତ୍ତିରେ ଏବଂ ଗ୍ରାମୀଣ ସମାଜର କୋଠ ଜମିରେ), ହସ୍ତଶିଳ୍ପୀମାନଙ୍କର କର୍ମଶାଳାରେ ଏବଂ ବ୍ୟବସାୟ ବାଣିଜ୍ୟରେ । ଜମିରେ ବିହନ ବୁଣିବା, କିମ୍ବା ଫସଲ କାଟିବାର ସମୟ ହେଲେ, ଅର୍ଥାତ୍, ଅନ୍ୟ ଭାବେ କହିବାକୁ ଗଲେ, ଯେତେବେଳେ କାମ ପାଇଁ ଲୋକର ଅଭାବ ଦେଖାଯାଉଥିଲା, ସେତେବେଳେ କ୍ଷେତ ଖମାରରେ ଏହି କର୍ମକାରମାନଙ୍କର ସଂଖ୍ୟା ବଢ଼ି ଯାଉଥିଲା । ଗ୍ରାମ ଏବଂ ସହରରେ ସର୍ବତ୍ର କର୍ମକାରମାନେ କାର୍ଯ୍ୟ କରୁଥିଲେ । ଏମାନଙ୍କର ସାଧାରଣତଃ ଉତ୍ପାଦନ ଉପାୟ ଉପକରଣ ନଥିଲା ଏବଂ ନିର୍ଦ୍ଦିଷ୍ଟ ମଜୁରି, କିମ୍ବା ପେଟ ଖୋରାକି ବଦଳରେ ଭଡ଼ାଟିଆ ମୂଲିଆ ଭାବେ ଏମାନେ କାର୍ଯ୍ୟ କରୁଥିଲେ ।

କର୍ମକାରମାନେ ରାଜାର ଖାସ୍ ମାହାଲରେ ଏବଂ ଧନୀ କୃଷକର ବ୍ୟକ୍ତିଗତ ଖମାରରେ କାର୍ଯ୍ୟ କରୁଥିଲେ, ଜମିରେ ହଳ କରୁଥିଲେ ଏବଂ ଗୃହପାଳିତ ପଶୁମାନଙ୍କୁ ଦେଖା ଶୁଣା କରୁଥିଲେ । ଗ୍ରାମ୍ୟ ସମାଜଗୁଡ଼ିକର ମଧ୍ୟ ଠିକା ମୂଲିଆମାନଙ୍କର ପ୍ରୟୋଜନ ଥିଲା । ମୂଲିଆମାନେ କୃଷି କ୍ଷେତ୍ରରେ କାର୍ଯ୍ୟ କରୁଥିଲେ, ଜମିରେ ଜଳସେଚନ ବ୍ୟବସ୍ଥା କରୁଥିଲେ ଏବଂ ଗୋରୁ, ଛେଳି, ଆଦି ଗୃହପାଳିତ ପଶୁ ଚରଉଥିଲେ । ଯେଉଁସବୁ କର୍ମକାର ରାଜାର ଖାସ୍ ମାହାଲରେ କାମ

କରୁଥିଲେ, ସେମାନଙ୍କୁ ବିଶେଷ ଭାବେ ନିଯୁକ୍ତ ଏକ ତତ୍ତ୍ୱାବଧାରକ କୃଷି ଯନ୍ତ୍ରପାତି ଏବଂ ଲଙ୍ଗଳ ଟାଣିବା ପାଇଁ ବଳଦ ଆଦି ଯୋଗାଇ ଦେଉଥିଲେ ।

ଭଡ଼ାଟିଆ ମୂଲିଆମାନଙ୍କ ଅବସ୍ଥା ଖୁବ୍ ଖରାପ ଥିଲା, ତେବେ ଯେଉଁମାନେ ରାଜାର ଖାସ୍ ମାହାଲଗୁଡ଼ିକରେ କାମ କରୁଥିଲେ, ସେମାନଙ୍କ ଅବସ୍ଥା ଅପେକ୍ଷାକୃତ ଭଲ ଥିଲା । "ଅର୍ଥଶାସ୍ତ୍ରରେ" ବର୍ଣ୍ଣିତ ତଥ୍ୟ ଅନୁଯାୟୀ, ଯେଉଁସବୁ କର୍ମକାର ଜମି ଚାଷବାସ କରୁଥିଲେ, ସେମାନେ ମଜୁରି ହିସାବରେ ଫସଲର ଏକ ଦଶମାଂଶ ପାଉଥିଲେ ଏବଂ ଯେଉଁମାନେ ଗୋରୁ ଛେଳି ଚରାଉଥିଲେ, ସେମାନେ ଗାଈ ଦୁଧ ଏବଂ ସେଥିରୁ ତିଆରି ଲହୁଣୀର ଏକ ଦଶମାଂଶ ପାଉଥିଲେ । "ଅର୍ଥଶାସ୍ତ୍ରରେ" ଯଦିଓ କର୍ମକାରମାନଙ୍କର କାର୍ଯ୍ୟ ସମାଧାନ କରିବା ସଂପର୍କରେ ଚୁକ୍ତି ସଂପାଦନର ସୁନିର୍ଦ୍ଦିଷ୍ଟ ନିୟମାବଳୀ ବାନ୍ଧି ଦିଆଯାଇଥିଲା, ତେବେ କାର୍ଯ୍ୟତଃ ସବୁକିଛି ନିର୍ଭର କରୁଥିଲା ନିର୍ଦ୍ଦିଷ୍ଟ ନିଯୋଗକର୍ତ୍ତା ବା ମାଲିକମାନଙ୍କ ମର୍ଜି ଉପରେ । କର୍ମକାରମାନଙ୍କୁ ଖାଇବାକୁ ଯାହା ଦିଆଯାଉଥିଲା, ତାହା କ୍ରୀତଦାସମାନଙ୍କ ଖାଦ୍ୟଠାରୁ ବିଶେଷ ପୃଥକ୍ ନଥିଲା । ସେମାନଙ୍କ କଠିନ ଜୀବନଯାତ୍ରା ସେମାନଙ୍କୁ ବାଧ୍ୟ କରୁଥିଲା, କହିବାକୁ ଗଲେ, ଯେକୌଣସି ସର୍ତ୍ତରେ କାର୍ଯ୍ୟ କରିବାକୁ । "ଅର୍ଥଶାସ୍ତ୍ରରେ" କୁହାଯାଇଛି, ଜମିମାଲିକମାନେ ଫସଲ କାଟି ନେଇଯିବା ପରେ କିପରି ଗ୍ରାମ୍ୟ କ୍ଷେତ ମଜୁରିଆମାନେ କ୍ଷେତ୍ରରେ ଝଡ଼ି ପଡ଼ିଥିବା ଶସ୍ୟ ଦାନାଗୁଡ଼ିକୁ ସଂଗ୍ରହ କରୁଥିଲେ ।

ସମାଜର ଚତୁର୍ବର୍ଣ୍ଣର ଛକ ମଧ୍ୟରେ ଭଡ଼ାଟିଆ ମୂଲିଆମାନେ ସାଧାରଣତଃ ଶୂଦ୍ରମାନଙ୍କ ମଧ୍ୟରେ ସ୍ଥାନ ପାଉଥିଲେ । ତେବେ ଏକଥା ମଧ୍ୟ ସମ୍ଭବ ଯେ, ସେମାନଙ୍କ ମଧ୍ୟରେ କେତେକ ମୁକ୍ତ ଗ୍ରାମ୍ୟ କୃଷକ ଓ କାରିଗର ଅନ୍ତର୍ଭୁକ୍ତ ଥିଲେ ଏବଂ ଏହି କୃଷକ ଏବଂ କାରିଗରମାନେ ଦରିଦ୍ର ହୋଇଗଲେ ବି ବାସ୍ତବରେ ବୈଶ୍ୟ ବର୍ଣ୍ଣର ଅନ୍ତର୍ଗତ ଥିଲେ ।

## ସାମାଜିକ ବିଭାଗ ଓ ଜାତି ପ୍ରଥା

ମଗଧ ଏବଂ ମୌର୍ଯ୍ୟ ଯୁଗରେ ବର୍ଣ୍ଣ ଏବଂ ଜାତି ପ୍ରଥାର ଯେ କେବଳ ବିକାଶ ଘଟିଥିଲା, ତା ନୁହେଁ, ସମାଜ ଗଠନ ମଧ୍ୟରେ ତାହା ଏକ ପ୍ରଧାନ ଉପାଦାନରେ ପରିଣତ ହୋଇଥିଲା । ସମାଜର ବର୍ଣ୍ଣଭିତ୍ତିକ ବିଭାଗର ଅସ୍ତିତ୍ୱ ସହିତ ବିଦ୍ୟମାନ ଥିଲା ମୌଳିକ ଶ୍ରେଣୀଗତ ବିଭାଗ ।

ବୌଦ୍ଧ ଧର୍ମ ବିଧିର ଅନ୍ୟତମ ଅଂଶ "ମଜ୍ଝିମ୍-ନିକାୟ" ଗ୍ରନ୍ଥରେ ଭାରତକୁ ତୁଳନା କରାଯାଇଛି ତା'ର ପ୍ରତିବେଶୀ ଦେଶଗୁଡ଼ିକ ସହିତ – ଯେଉଁସବୁ ଅଞ୍ଚଳରେ ଗ୍ରୀକ୍‌ମାନେ ବାସ କରୁଥିଲେ ଏବଂ କାମ୍ବୋଜ ଦ୍ୱାରା ଅଧ୍ୟୁଷିତ ଆରାକୋସିୟା ଭୂଖଣ୍ଡ ସହିତ । ଶେଷୋକ୍ତ ଭୂଖଣ୍ଡଗୁଡ଼ିକର ସମାଜ କେବଳ ମୁକ୍ତ ଅଧିବାସୀ ଏବଂ କ୍ରୀତଦାସମାନଙ୍କ ମଧ୍ୟରେ ବିଭକ୍ତ ଥିଲା ବେଳେ ଭାରତୀୟ ସମାଜରେ ଏଥି ସହିତ ଚତୁର୍ବର୍ଣ୍ଣ ଭେଦ ରହିଥିଲା ବୋଲି ଉକ୍ତ ପୁସ୍ତକରେ କୁହାଯାଇଛି ।

ମୌଳିକ ଐତିହାସିକ ଉପାଦାନସମୂହର ବହୁ ତଥ୍ୟରୁ ଜଣାଯାଏ ଯେ, ସମାଜରେ କୌଣସି ମୁକ୍ତ ଭାରତୀୟର ସ୍ଥାନ ଅନେକ ପରିମାଣରେ ନିର୍ଦ୍ଧାରିତ ହେଉଥିଲା ସେ ଲୋକ କେଉଁ ବିଶେଷ ବର୍ଣ୍ଣର ଅନ୍ତର୍ଗତ, ତା ଦ୍ୱାରା । ତେବେ ଏହି ସମୟରେ ଜନ୍ମ କୌଳିନ୍ୟ ଅପେକ୍ଷା ବିଷୟ

ସଂପତ୍ତି ଏବଂ ଅର୍ଥର ମର୍ଯ୍ୟାଦା କ୍ରମଶଃ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରି ରହିଥିଲା । ଗ୍ରନ୍ଥମାନଙ୍କରେ କୁହାଯାଇଛି ଯେ, ସଂପତ୍ତି ମଣିଷକୁ ସମ୍ମାନ ଓ ଶ୍ରଦ୍ଧା ଦାନ କରେ ।

ବ୍ରାହ୍ମଣ ଏବଂ ବୌଦ୍ଧ ଗ୍ରନ୍ଥମାନଙ୍କରେ ବର୍ଣ୍ଣ ବିଭାଗ ବ୍ୟବସ୍ଥାର ସାମଗ୍ରିକ ଛକଟି ଭିନ୍ନ ଭିନ୍ନ ଭାବେ ଉପସ୍ଥାପିତ ହୋଇଛି : ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ସର୍ବଶ୍ରେଷ୍ଠ ବର୍ଣ୍ଣ ରୂପେ ବ୍ରାହ୍ମଣମାନଙ୍କୁ ଉଲ୍ଲେଖ କଲା ବେଳେ କ୍ଷତ୍ରିୟମାନେ ସ୍ଥାନ ଲାଭ କରିଛନ୍ତି ସେମାନଙ୍କ ପରେ । କିନ୍ତୁ ବୌଦ୍ଧ ଗ୍ରନ୍ଥମାନଙ୍କରେ କ୍ଷତ୍ରିୟମାନଙ୍କ ପରେ ବ୍ରାହ୍ମଣମାନେ ସ୍ଥାନ ପାଇଛନ୍ତି । ଏହା, ଅବଶ୍ୟ, ସମ୍ଭବ ହୋଇ ପାରେ ଯେ, ବୌଦ୍ଧ ଗ୍ରନ୍ଥମାନଙ୍କରେ ବର୍ଣ୍ଣ ବିଭାଗ ବ୍ୟବସ୍ଥା ସଂପର୍କରେ କେବଳ ବୌଦ୍ଧମାନଙ୍କ ଦୃଷ୍ଟିଭଙ୍ଗି ନୁହେଁ, ସାମାଜିକ ବିଭାଗର ସମଗ୍ର ଛକ ମଧ୍ୟରେ ସେତେବେଳେ ଯେଉଁସବୁ ପରିବର୍ତ୍ତନ ଘଟୁଥିଲା, ତା'ର ପ୍ରତିଫଳନ ସେସବୁଥିରେ ଘଟୁଥିଲା ।

ମୌର୍ଯ୍ୟ ରାଜାମାନଙ୍କ ରାଜତ୍ୱକାଳରେ ଚତୁର୍ବର୍ଣ୍ଣ ପ୍ରଥା ସମ୍ବନ୍ଧରେ ଏକ କୌତୂହଳୋଦ୍ଦୀପକ ବିବରଣ ମେଗାସ୍ଥେନିସ୍‌ଙ୍କ ରଚନାରୁ ମିଳିଥାଏ । ମେଗାସ୍ଥେନିସ୍ ନିଜେ ଏହି ସାମାଜିକ ପ୍ରଥା ଓ ବିଭିନ୍ନ ବର୍ଣ୍ଣର ଲୋକମାନଙ୍କ ପାରସ୍ପରିକ ସଂପର୍କ ବିଷୟଟିକୁ ବାସ୍ତବ କ୍ଷେତ୍ରରେ ଦେଖିବାକୁ ସୁଯୋଗ ପାଇଥିଲେ । ସେ ଭାରତର ସମଗ୍ର ଜନସଂଖ୍ୟାକୁ ସାତଟି ଅଂଶରେ ଭାଗ କରି ଦେଖାଇଛନ୍ତି : ଯଥା, ଦାର୍ଶନିକ ପଣ୍ଡିତ, କୃଷକ, ପଶୁପାଳକ ଓ ଶିକାରୀ, କାରିଗର ଓ ବଣିକ, ସୈନିକ, ପରିଦର୍ଶକ, ପରାମର୍ଶଦାତା ପରିଷଦବର୍ଗ ଏବଂ ରାଜସ୍ୱ ନିର୍ଦ୍ଧାରକ । ମେଗାସ୍ଥେନିସ୍‌ଙ୍କ ଏହି ସ୍ତର ବିଭାଗ ଅବଶ୍ୟ ପେଶାଭିତ୍ତିକ, ତେବେ ଚତୁର୍ବର୍ଣ୍ଣର ସମସ୍ତ ଲୋକେ ତାଙ୍କର ଏହି ଛକର ଅନ୍ତର୍ଗତ । ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ଯେପରି ରହିଛି, ତାଙ୍କର ଏହି ତାଲିକା ଶୀର୍ଷରେ ବ୍ରାହ୍ମଣମାନେ ସେଇପରି ରହିଛନ୍ତି । ଏଥିରୁ ମନେ ହୁଏ, ସେ ବ୍ରାହ୍ମଣ୍ୟ ପରମ୍ପରାକୁ ଅନୁସରଣ କରିଛନ୍ତି ।

ମଗଧ ଏବଂ ମୌର୍ଯ୍ୟ ରାଜାମାନଙ୍କର ରାଜତ୍ୱକାଳରେ ବ୍ରାହ୍ମଣମାନେ ଥିଲେ ସମାଜର ଶୀର୍ଷ ସ୍ଥାନରେ । ମତାଦର୍ଶଗତ ଚର୍ଚ୍ଚା ଓ ଧର୍ମୀୟ ପୂଜା ପାଠ ବିଷୟରେ ସେମାନଙ୍କ ପ୍ରଭାବ ବିଶେଷ ଭାବେ ପ୍ରବଳ ଥିଲା । ବ୍ରାହ୍ମଣମାନେ ଥିଲେ ରାଜସଭା ଏବଂ ଆଇନ୍ ଅଦାଲତ୍‌ରେ ପ୍ରଧାନ ଉପଦେଷ୍ଟା । ଏହି ବ୍ରାହ୍ମଣମାନଙ୍କ ମଧ୍ୟରେ ଅନେକ ଅତ୍ୟନ୍ତ ଧନୀ ଥିଲେ, ସେମାନେ ବିପୁଳ ଭୂସଂପତ୍ତିର ମାଲିକ ମଧ୍ୟ ଥିଲେ । ବିଶେଷ କରି ମଗଧ ଏବଂ କୋଶଳରେ ବ୍ରାହ୍ମଣମାନେ ଥିଲେ ଅପେକ୍ଷାକୃତ ସବଳ, କାରଣ ସେସବୁ ଅଞ୍ଚଳରେ ସେମାନେ ଥିଲେ ବଡ଼ ଭୂମିମାଲିକ ।

ନୂଆ ପରିସ୍ଥିତି ସାମାଜିକ ସ୍ତରବିନ୍ୟାସର ଗଢ଼ଣ ମଧ୍ୟରେ ବ୍ରାହ୍ମଣମାନଙ୍କ ପଦମର୍ଯ୍ୟାଦାକୁ ପ୍ରଭାବିତ କରିଥିଲା । ବ୍ରାହ୍ମଣମାନେ ବାଧ୍ୟ ହେଉଥିଲେ ସେମାନଙ୍କ ପରମ୍ପରାଗତ ପେଶାର ପରିବର୍ତ୍ତନ ଘଟାଇବାକୁ । ଏହି ଯୁଗରେ ଲିଖିତ ସୂତ୍ରଗୁଡ଼ିକରେ ବ୍ରାହ୍ମଣ ଭୂସ୍ୱାମୀ, ବଣିକ, କାରିଗର ଏବଂ ଭୃତ୍ୟମାନଙ୍କ କଥା ଉଲ୍ଲେଖ ଅଛି । ଏହାର ପୂର୍ବବର୍ତ୍ତୀ ବ୍ରାହ୍ମଣ ସୂତ୍ରଗୁଡ଼ିକରେ କୁହାଯାଇଛି ଯେ, କେବଳ କେତେକ ବିରଳ କ୍ଷେତ୍ରରେ ବ୍ରାହ୍ମଣମାନଙ୍କୁ ଚାଷବାସ ଏବଂ ବ୍ୟବସାୟ ବାଣିଜ୍ୟ କରିବାକୁ ଅନୁମତି ଦିଆଯାଇଛି । ଏହି ସମୟରେ ବ୍ରାହ୍ମଣ ବିଧାନରେ ଅନୁମତି ଦିଆଯାଇଛି ଅନ୍ୟ ବର୍ଣ୍ଣର ଲୋକଙ୍କୁ କ୍ଷତ୍ରିୟ ଏବଂ ବୈଶ୍ୟ ବର୍ଣ୍ଣର ବୃତ୍ତି ଗ୍ରହଣ କରିବାକୁ । ବୌଦ୍ଧ ସୂତ୍ରଗୁଡ଼ିକରେ ବ୍ରାହ୍ମଣ ଭୃତ୍ୟ, କାଠୁରିଆ, ଗୋପାଳକ ଓ ଦରିଦ୍ର ଚାଷୀ କଥା ଉଲ୍ଲେଖ ଅଛି । ଏଥିରୁ ପରିଷ୍କାର ଭାବେ ବୁଝାଯାଏ ଯେ, ଏହିସବୁ ଲୋକେ ଯେଉଁ ପେଶାକୁ ବ୍ରାହ୍ମଣ ପକ୍ଷରେ ଅନୁପଯୁକ୍ତ ବୋଲି ମନେ

କରୁଥିଲେ, କଠିନ ଅର୍ଥନୈତିକ ପରିସ୍ଥିତିରେ ସେସବୁ ପେଶାକୁ ଗ୍ରହଣ କରିବାକୁ ବାଧ୍ୟ ହେଉଥିଲେ । ଏସବୁ କ୍ଷେତ୍ରରେ ଏହି ବ୍ରାହ୍ମଣମାନେ ରାଜକରରୁ ଅବ୍ୟାହତି ଲାଭ କରିବାର ତାତ୍ପର୍ଯ୍ୟପୂର୍ଣ୍ଣ ସୁଯୋଗରୁ ବଞ୍ଚିତ ହେଉଥିଲେ ।

ସେତେବେଳେ କ୍ଷତ୍ରିୟମାନଙ୍କ ହାତରେ ରାଜନୈତିକ କ୍ଷମତା ରହିଥିଲା । ପରାକ୍ରାନ୍ତ ମୌର୍ଯ୍ୟ ସାମ୍ରାଜ୍ୟ ପ୍ରତିଷ୍ଠା ହେଲା ପରେ ସେମାନଙ୍କ ପ୍ରଭାବ ବିପୁଳ ପରିମାଣରେ ବୃଦ୍ଧି ପାଇଥିଲା । ନିୟମାନୁଯାୟୀ କ୍ଷତ୍ରିୟ ବଂଶ ଜାତ ଲୋକେ ରାଜା ହେଉଥିଲେ ଏବଂ ସେନାବାହିନୀ ସେମାନଙ୍କ ନିୟନ୍ତ୍ରଣାଧୀନରେ ରହୁଥିଲା । ବିଶେଷ କରି ପ୍ରଜାତନ୍ତ୍ରୀ ରାଜ୍ୟଗୁଡ଼ିକରେ କ୍ଷତ୍ରିୟମାନଙ୍କର ଶକ୍ତି ବିଶେଷ ଭାବେ ପ୍ରବଳ ହୋଇ ଉଠିଥିଲା । ମଗଧ ଏବଂ ମୌର୍ଯ୍ୟ ଯୁଗରେ ମଧ୍ୟ କ୍ଷତ୍ରିୟମାନେ ମୁଖ୍ୟ ସୁଯୋଗ ସୁବିଧା ଲାଭ କରୁଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ବହୁ ଭୂସଂପତ୍ତିର ମାଲିକ ହେଉଥିଲେ । ଏହାର ପୂର୍ବବର୍ତ୍ତୀ ଯୁଗରେ ବ୍ରାହ୍ମଣମାନେ ଭାବାଦର୍ଶ କ୍ଷେତ୍ରରେ ଅପରିସୀମ କ୍ଷମତାର ଅଧିକାରୀ ଥିଲା ବେଳେ ଏବେ କ୍ଷତ୍ରିୟମାନେ ମଧ୍ୟ ସ୍ୱାଧୀନ ଭୂମିକାର ଦାବିଦାର ହୋଇ ଉଠିଲେ ।

ପ୍ରାଚୀନ ଭାରତର ବିଶିଷ୍ଟ ରାଜନୈତିକ ନେତୃବର୍ଗ କ୍ଷତ୍ରିୟ ଓ ବ୍ରାହ୍ମଣମାନଙ୍କ ମଧ୍ୟରେ ମୈତ୍ରୀ ବନ୍ଧନର ସପକ୍ଷରେ ମତ ପ୍ରକାଶ କରିଥିଲେ । "ଅର୍ଥଶାସ୍ତ୍ର" ରଚୟିତା ଲେଖିଛନ୍ତି, କ୍ଷତ୍ରିୟମାନଙ୍କ ଶକ୍ତି ବ୍ରାହ୍ମଣମାନଙ୍କ ମନ୍ତ୍ରଣାନୁଯାୟୀ ଗଢ଼ିତ ହେଲେ, ତାହା ଅଜୟ ହୋଇ ଉଠିବ ଏବଂ ଚିରକାଳ ଅଜେୟ ରହିଯିବ । ତତ୍କାଳୀନ ବହୁବିଧ ଲିଖିତ ସୂତ୍ରରେ ତୁଳନାମୂଳକ ଭାବେ ଉଚ୍ଚତର ଦୁଇ ବର୍ଣ୍ଣର ଶ୍ରେଷ୍ଠତ୍ୱ ନିମ୍ନତର ଦୁଇ ବର୍ଣ୍ଣଠାରୁ ପ୍ରତିପାଦିତ ହୋଇଛି । ନିମ୍ନତର ଦୁଇ ବର୍ଣ୍ଣ, ବୈଶ୍ୟ ଏବଂ ଶୂଦ୍ରଙ୍କୁ ସମପର୍ଯ୍ୟାୟ ଭୁକ୍ତ କରି ଦେଖାଇବା ସେତେବେଳେ ଏକ ସାଧାରଣ ରୀତିରେ ପରିଣତ ହୋଇ ଯାଇଥିଲା । ପୁଣି ଏଥି ସଙ୍ଗେ ସଙ୍ଗେ ଅପେକ୍ଷାକୃତ ଐଶ୍ୱର୍ଯ୍ୟଶାଳୀ ବୈଶ୍ୟମାନଙ୍କ ସହିତ ଉଚ୍ଚତର ବର୍ଣ୍ଣର ଲୋକମାନଙ୍କର ଅନେକ ବିଷୟରେ ମେଳ ଦେଖାଯାଉଥିଲା ଏବଂ ଦରିଦ୍ରତା ମଧ୍ୟରେ ପଡ଼ିଥିବା ବୈଶ୍ୟମାନେ କାର୍ଯ୍ୟତଃ ଶୂଦ୍ରରେ ପରିଣତ ହେଉଥିଲେ । ବାଣିଜ୍ୟ ଏବଂ କାରୁଶିଳ୍ପର ବିକାଶ ଘଟିବା ସାଥେ ସାଥେ ଏହିସବୁ ପରିବର୍ତ୍ତନ ଦେଖା ଦେବାକୁ ଲାଗିଲା । ବୈଶ୍ୟମାନଙ୍କର ପ୍ରଧାନ ଉପଜୀବିକା ଥିଲା କୃଷିକାର୍ଯ୍ୟ, କାରୁଶିଳ୍ପ ଏବଂ ବ୍ୟବସାୟ ବାଣିଜ୍ୟ । ଏହି ସାମାଜିକ ଗୋଷ୍ଠୀ ମୁଖ୍ୟତଃ ରାଜସ୍ୱର ବୋଝ ବହନ କରୁଥିଲା, ତେବେ ଧନୀ ବୈଶ୍ୟମାନଙ୍କ ମଧ୍ୟରେ "ଶ୍ରେଷ୍ଠୀ" ନାମରେ ପରିଚିତ କ୍ଷମତାବାନ ବଣିକ, ସୁଧ କାରବାରୀ ମହାଜନ ଏବଂ ଭୂସ୍ୱାମୀମାନେ ଥିଲେ । ମଗଧ ଏବଂ ମୌର୍ଯ୍ୟ ଯୁଗରେ ବୈଶ୍ୟମାନଙ୍କର ରାଜନୈତିକ ଭୂମିକାର ଅଧପତନ ଆରମ୍ଭ ହୋଇଥିଲା ଏବଂ ଅସ୍ତ୍ରଶସ୍ତ୍ର ରଖିବାର ଅଧିକାର କାର୍ଯ୍ୟତଃ ସେମାନେ ହରେଇଥିଲେ ।

ଏହି ସମୟରେ ଶୂଦ୍ରମାନଙ୍କର ସାମାଜିକ ଅବସ୍ଥା କାର୍ଯ୍ୟତଃ ଅପରିବର୍ତ୍ତିତ ରହି ଯାଇଥିଲା ଏବଂ ସେମାନଙ୍କ ମଧ୍ୟରେ ମାତ୍ର ସ୍ୱଳ୍ପ କେତେକ ଲୋକ ବାଣିଜ୍ୟ ଏବଂ କାରୁଶିଳ୍ପ ମାଧ୍ୟମରେ ଧନୀ ହୋଇ ପାରୁଥିଲେ । ଏହା ଫଳରେ ସମାଜରେ ସେମାନଙ୍କ ପଦମର୍ଯ୍ୟାଦା ବୃଦ୍ଧି ପାଇଥିଲା ।

ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ଦ୍ୱିତୀୟାର୍ଦ୍ଧରେ ପ୍ରାଚୀନ ଭାରତର ରାଜ୍ୟଗୁଡ଼ିକରେ ବଂଶାନୁଯାୟୀ ସମାଜ ଗଢ଼ଣର ଏଭଳି ଏକ ଚିତ୍ର ଆମେ ଦେଖିବାକୁ ପାଉଁ । ତେବେ ଏଇ ଏକେଇ ଯୁଗରେ ପ୍ରଜାତନ୍ତ୍ରୀ ରାଜ୍ୟଗୁଡ଼ିକର ସମାଜ ସଂଗଠନ, ଅବଶ୍ୟ, କିଛି ପରିମାଣ ଭିନ୍ନ ଥିଲା (ପ୍ରାଚୀନ ଭାରତର ପ୍ରଜାତନ୍ତ୍ରସମୂହ ଅଧ୍ୟାୟଟି ଦ୍ରଷ୍ଟବ୍ୟ) ।

## ପରିବାର ଓ ବିବାହ ରୀତି

ମଗଧ ଓ ମୌର୍ଯ୍ୟ ଯୁଗରେ ପରିବାରର ମୁଖ୍ୟ ରୂପଟି ଥିଲା ବଡ଼ ପିତୃତାନ୍ତ୍ରିକ ଯୌଥ ପରିବାର । ରାଜ୍ୟର କେତେକ ଅଞ୍ଚଳରେ ଏକକବିବାହ ସଂପର୍କ ଛଡ଼ା ଆଉରି ପ୍ରାଚୀନତର ନାନା ରୀତିର ବିବାହ ସଂପର୍କ ପ୍ରଚଳନ ଥିଲା । ସ୍ୱାମୀ ହେଉଥିଲେ ପରିବାରର କର୍ତ୍ତା । କ୍ରମଶଃ ସ୍ତ୍ରୀଲୋକମାନଙ୍କ ପଦମର୍ଯ୍ୟାଦାରେ ଏଭଳି କେତେକ ପରିବର୍ତ୍ତନ ଘଟିଲା, ଯାଫଳରେ ସେମାନେ ପୂରାପୂରି ସ୍ୱାମୀ ଏବଂ ପୁତ୍ରମାନଙ୍କ ଉପରେ ନିର୍ଭରଶୀଳ ହୋଇ ପଡ଼ିଲେ । ବିବାହ ଅନୁଷ୍ଠାନ ସଂପତ୍ତି ହସ୍ତାନ୍ତରର ଏକ ପ୍ରକାର ଚୁକ୍ତିରେ ପରିଣତ ହେଲା । ପୁରୁଷ କ୍ରୟ ମୂଲ୍ୟ ଦେଇ ସ୍ତ୍ରୀକୁ କିଣିବାକୁ ଲାଗିଲା ଏବଂ ବିବାହ ପରେ ସ୍ତ୍ରୀ ପରିଣତ ହେଲା ସ୍ୱାମୀର ଅସ୍ଥାବର ସଂପତ୍ତିରେ । ଲିଖିତ ସୂତ୍ରଗୁଡ଼ିକରେ ସ୍ୱାମୀ ସ୍ତ୍ରୀକୁ ବିକ୍ରି କରିବାର ବା ଜୁଆ ଖେଳରେ ସ୍ତ୍ରୀକୁ ହରେଇବାର ବିଭିନ୍ନ କାହାଣୀ ଦେଖିବାକୁ ମିଳେ ।

ସମାଜରେ ସ୍ତ୍ରୀଲୋକମାନଙ୍କର ଅବସ୍ଥା ଥିଲା ଅତ୍ୟନ୍ତ ଶୋଚନୀୟ । ଶୈଶବ କାଳରେ ନାରୀକୁ ସଂପୂର୍ଣ୍ଣ ରୂପେ ପିତାର କର୍ତ୍ତୃତ୍ୱାଧୀନ ବୋଲି ଗଣ୍ୟ କରାଯାଉଥିଲା, ଯୌବନରେ ସେ ହେଉଥିଲା ସ୍ୱାମୀର ଅଧୀନ ଏବଂ ସ୍ୱାମୀର ମୃତ୍ୟୁ ପରେ ସେ ପୁତ୍ରମାନଙ୍କ ଅଧୀନ ହୋଇ ପଡ଼ୁଥିଲା । "ମନୁସଂହିତାରେ" ସ୍ତ୍ରୀମାନଙ୍କର ଏହା ହିଁ ବିଧିଲିପି ବୋଲି ବର୍ଣ୍ଣନା କରାଯାଇଛି । ସ୍ତ୍ରୀଲୋକମାନେ ଆଜୀବନ ସବୁକିଛି ସହ୍ୟ କରି ଯାଉଥିଲେ ଏବଂ କଠୋର ଭାବେ ନିଷ୍ଠାର ସହିତ ସେମାନଙ୍କ ଦାୟିତ୍ୱ ପାଳନ କରୁଥିଲେ । "ମନୁସଂହିତାରେ" ବିଧାନ ହିସାବରେ କୁହାଯାଇଛି, ସ୍ୱାମୀ ସଂପୂର୍ଣ୍ଣ ଗୁଣହୀନ ହେଲେ ମଧ୍ୟ ସ୍ତ୍ରୀ ତାକୁ ଦେବତା ବୋଲି ଜ୍ଞାନ କରିବ । ସ୍ତ୍ରୀମାନଙ୍କୁ ତ୍ୟାଗ କରିବାର ଅଧିକାର କେବଳ ସ୍ୱାମୀମାନଙ୍କର ଥିଲା । ସ୍ତ୍ରୀ ବିଶ୍ୱାସହୀନା ହେଲେ, ମୃତ୍ୟୁଦଣ୍ଡ ସମେତ ସମସ୍ତ ପ୍ରକାରର ଭୟଙ୍କର ଶାସ୍ତି ତାକୁ ଦିଆଯାଇ ପାରୁଥିଲା । ଅଥଚ ପୁରୁଷ ଏକାବେଳକେ ଅନେକ ସ୍ତ୍ରୀ ରଖି ପାରୁଥିଲା ଏବଂ ଏହାକୁ ପାପ କାର୍ଯ୍ୟ ବୋଲି ଗଣ୍ୟ କରାଯାଉ ନଥିଲା । ପ୍ରଚଳିତ ପ୍ରଥା ଅନୁଯାୟୀ ସ୍ତ୍ରୀକୁ ସ୍ୱାମୀର ସମବର୍ଣ୍ଣଭୁକ୍ତ ହେବାକୁ ପଡ଼ୁଥିଲା । ତେବେ ବିରଳ କେତେକ କ୍ଷେତ୍ରରେ ପୁରୁଷ ନୀଚ ବର୍ଣ୍ଣରୁ ସ୍ତ୍ରୀ ଗ୍ରହଣ କରି ପାରୁଥିଲା, କିନ୍ତୁ ଉଚ୍ଚ ବର୍ଣ୍ଣର ସ୍ତ୍ରୀଲୋକ ପକ୍ଷରେ ନୀଚ ବର୍ଣ୍ଣର ପୁରୁଷକୁ ବିବାହ କରିବା ସଂପୂର୍ଣ୍ଣ ନିଷିଦ୍ଧ ଥିଲା । ଶୁଦ୍ର ପୁରୁଷ ଓ ବ୍ରାହ୍ମଣୀ ସ୍ତ୍ରୀଲୋକ ମଧ୍ୟରେ ବିବାହକୁ ସର୍ବାପେକ୍ଷା ମାରାତ୍ମକ ଅପରାଧ ବୋଲି ଗଣ୍ୟ କରାଯାଉଥିଲା । ପୁଅଝିଅଙ୍କ ଉପରେ ବାପର କର୍ତ୍ତୃତ୍ୱ ଥିଲା ସଂପୂର୍ଣ୍ଣ ନିଷ୍ପତ୍ତିମୂଳକ ଏବଂ ଚୂଡ଼ାନ୍ତ । ବ୍ରାହ୍ମଣ୍ୟ "ବିଧାନସମୂହରେ" ସିଧାସଳଖ କୁହାଯାଇଛି ଯେ, ବାପ ଇଚ୍ଛା କଲେ, ନିଜର ସନ୍ତାନମାନଙ୍କୁ ଦାନ ପର୍ଯ୍ୟନ୍ତ କରି ପାରୁଥିଲେ ।

ଶାସ୍ତ୍ରସମୂହରେ ଆଠ ରକମର ବିବାହ କଥା କୁହାଯାଇଛି । ତେବେ ବାସ୍ତବରେ ଏଥି ମଧ୍ୟରୁ ସବୁ ରୀତିର ପ୍ରଚଳନ ଥିଲା କି ନାହିଁ କହିବା କଠିନ । ବିବାହର ଏହି ଆଠଟି ଧରଣ ହେଲା : କନ୍ୟା ସଂପ୍ରଦାନ (ବ୍ରହ୍ମ ବିବାହ), ପୁରୋହିତକୁ କନ୍ୟା ସଂପ୍ରଦାନ (ଦୈବ ବିବାହ), ଗାଭୀ କିମ୍ବା ଷଣ୍ଢର ବିନିମୟରେ କନ୍ୟା କ୍ରୟ (ଆର୍ଷ ବିବାହ), ସମଚୁକ୍ତି ଭିତ୍ତିକ ବିବାହ (ପ୍ରଜାପତ୍ୟ ବିବାହ), ସ୍ୱୀକୃତ କନ୍ୟା ସୁନା ଦେଇ କନ୍ୟା କ୍ରୟ (ଆସୁର ବିବାହ), କନ୍ୟା ଅପହରଣର ଭିତ୍ତିରେ

ବିବାହ (ରାକ୍ଷସ ବିବାହ), ଘୁମନ୍ତ କନ୍ୟାକୁ ବଳପୂର୍ବକ ଅପହରଣ (ପୈଶାଚ ବିବାହ) ଏବଂ ସ୍ତ୍ରୀ ପୁରୁଷର ପାରସ୍ପରିକ ସମ୍ମତିର ଭିତ୍ତିରେ (ଗାନ୍ଧର୍ବ) ବିବାହ ।

ପରବର୍ତ୍ତୀ ଯୁଗର ଲିଖିତ ସୂତ୍ରଗୁଡ଼ିକର ସାକ୍ଷ୍ୟ ଅନୁଯାୟୀ କହିବାକୁ ହେବ ଯେ, ବହୁ ଅତୀତ ଯୁଗରୁ ଉତ୍ତରାଧିକାର ସୂତ୍ରରେ ମିଳିଥିବା ପ୍ରାଚୀନ ପ୍ରଥାଗୁଡ଼ିକ ବିବାହ ଓ ପାରିବାରିକ ସଂପର୍କ କ୍ଷେତ୍ରରେ ବହୁ ଦୀର୍ଘ ସମୟ ଧରି ପ୍ରାଧାନ୍ୟ ବିସ୍ତାର କରିଥିଲା । ଯଥା, ବ୍ରାହ୍ମଣ୍ୟ "ବିଧାନସମୂହ" ବା ଶାସ୍ତ୍ରସମୂହ ମତରେ, ସନ୍ତାନହୀନ କୌଣସି ସ୍ୱାମୀର ମୃତ୍ୟୁ ହେଲେ, ତା'ର ଆତ୍ମୀୟ ସ୍ୱଜନମାନେ ଦାବୀ କଲେ, ତା ସ୍ତ୍ରୀ ବାଧ୍ୟ ହେଉଥିଲା ସ୍ୱାମୀର ଭାଇ, କିମ୍ବା ଅନ୍ୟ କୌଣସି ଘନିଷ୍ଠ ଆତ୍ମୀୟର ଔରସରେ ତା ଗର୍ଭରେ ସନ୍ତାନ ଧାରଣ କରିବାକୁ ।

ଏହି ଧରଣର ସାମାଜିକ ନିୟମକାନୁନ୍‌ର ଉତ୍ସ ଗୋତ୍ର କିମ୍ବା କୁଳର ସଂପତ୍ତି ରକ୍ଷାର ନୀତି ସହିତ ସଂପର୍କିତ ପ୍ରାଚୀନ ସାମାଜିକ ପ୍ରଥା ମଧ୍ୟରେ ଦେଖିବାକୁ ମିଳେ । ପ୍ରତ୍ୟକ୍ଷ ରକ୍ତସଂପର୍କୀୟ ଆତ୍ମୀୟ ସ୍ୱଜନଙ୍କ ମଧ୍ୟରେ ବିବାହ, ସଗୋତ୍ର ବିବାହ ନିଷିଦ୍ଧ ଥିଲା ।

# ପ୍ରାଚୀନ ଭାରତର ଗଣରାଜ୍ୟ

## ଗଣ ଓ ସଂଘ

ଭାରତୀୟ ଐତିହାସିକ ଉପାଦାନସମୂହରେ "ଗଣ" ଏବଂ "ସଂଘ" ନାମରେ ପରିଚିତ ପ୍ରଜାତାନ୍ତ୍ରିକ ସଂଘଗୁଡ଼ିକ ମଗଧ ଏବଂ ମୌର୍ଯ୍ୟ ଯୁଗର ପ୍ରାଚୀନ ଭାରତ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ । ଏହିସବୁ ସଂଘ ରାଜତାନ୍ତ୍ରିକ ରାଜ୍ୟଗୁଡ଼ିକ ବିରୁଦ୍ଧରେ ସେତେବେଳେ ଦୃଢ଼ ସଂଗ୍ରାମ କରି ଯାଇଥିଲେ ଏବଂ ଅନେକ କ୍ଷେତ୍ରରେ ଜୟ ଲାଭ ମଧ୍ୟ କରିଥିଲେ । ବୌଦ୍ଧ ଗ୍ରନ୍ଥମାନଙ୍କରେ ଏହି ଧରଣର କେତେକ ଗଣରାଜ୍ୟକୁ "ବୃହତ୍ ରାଜ୍ୟର" ତାଲିକାରେ ଅନ୍ତର୍ଭୁକ୍ତ କରାଯାଇଛି ।

"ଗଣ" ଶବ୍ଦଟିର ବହୁବିଧ ଅର୍ଥ ରହିଛି । ବୈଦିକ ଯୁଗରେ ଗଣ ବୋଇଲେ ଉପଜାତୀୟ ଗୋଷ୍ଠୀକୁ ବୁଝାଉଥିଲା ; ପରବର୍ତ୍ତୀ କାଳରେ ଗଣ ଓ ସଂଘ ଶବ୍ଦ ଦୁଇଟି ସମାଜ ବିକାଶର ଭିନ୍ନ ଏକ ସ୍ତରରେ ଥିବା ଅରାଜତନ୍ତ୍ରୀୟ ସଂଘକୁ ବୁଝାଉଥିଲା । ବ୍ୟାକରଣକାର ପାଣିନି (ଖ୍ରୀଷ୍ଟ ପୂର୍ବ ପଞ୍ଚମ ଓ ଚତୁର୍ଥ ଶତାବ୍ଦୀ) ଦୁଇ ପ୍ରକାରର ସଂଘ କଥା ଉଲ୍ଲେଖ କରିଛନ୍ତି : ଯଥା, "ଅସ୍ତ୍ରବଳ ଉପରେ ତିଷ୍ଠି ରହିଥିବା ସଂଘ" ବା ସାମରିକ ସଂଘ ଏବଂ ଏଉଳି ସବୁ ସଂଘ, ଯେଉଁଠି ରାଷ୍ଟ୍ର ବ୍ୟବସ୍ଥାର ବିକାଶ ଅତି ଉଚ୍ଚ ପର୍ଯ୍ୟାୟରେ ପହଞ୍ଚିଥିଲା । ବିବିଧ ବୌଦ୍ଧ ଗ୍ରନ୍ଥରେ ଏହି ଦୁଇ ରାଷ୍ଟ୍ର ମଧ୍ୟରେ ପାର୍ଥକ୍ୟ ପ୍ରଦର୍ଶନ କରାଯାଇଛି । ଯଥା, ଏକ ବ୍ୟକ୍ତି ଦ୍ୱାରା ଶାସିତ ରାଜତନ୍ତ୍ରୀ ରାଜ୍ୟ ଏବଂ ଗଣ ଦ୍ୱାରା ଶାସିତ ଭୂଖଣ୍ଡ । ପ୍ରଥମ ଧରଣର ରାଜ୍ୟରେ ସମସ୍ତ କ୍ଷମତା କେନ୍ଦ୍ରୀଭୂତ ହୋଇ ରହୁଥିଲା ଜଣେ ବ୍ୟକ୍ତି ହାତରେ ଏବଂ ଅନ୍ୟ ପକ୍ଷରେ ଗଣଗୁଡ଼ିକରେ (ଉପରୋକ୍ତ ଗ୍ରନ୍ଥଗୁଡ଼ିକ ମଧ୍ୟରୁ ଗୋଟିକର ବିବରଣୀ ଅନୁଯାୟୀ) ଦଶ ଜଣକର ସର୍ବସମ୍ମତ ସିଦ୍ଧାନ୍ତକୁ କୋଡ଼ିଏ ଜଣ ପୁନର୍ବିଗ୍ଭର କରି

ପାରୁଥିଲେ । ଅର୍ଥାତ୍, ପ୍ରତ୍ୟେକଟି ସିଦ୍ଧାନ୍ତ ନିର୍ଭର କରୁଥିଲା ଅଧିକ ସଂଖ୍ୟକ ଲୋକଙ୍କର ମତାମତ ଉପରେ । ଏକଥା ଲକ୍ଷଣୀୟ ଯେ, ପ୍ରାଚୀନ ଭାରତୀୟମାନେ ଗଣକୁ ରାଜାର ଅନୁପସ୍ଥିତିରେ ସାମୟିକ ଭାବେ କାର୍ଯ୍ୟ ପରିଚାଳନା ପାଇଁ ନିଯୁକ୍ତ ଶାସନକର୍ତ୍ତୃପକ୍ଷ ବୋଲି ମୋଟେ ଗଣ୍ୟ କରୁ ନଥିଲେ । ବରଂ, ସେମାନେ ରାଜତନ୍ତ୍ର ଏବଂ ଗଣତନ୍ତ୍ର – ଏହି ଦୁଇ ଧରଣର କର୍ତ୍ତୃତ୍ୱକୁ ତୁଳନାମୂଳକ ଭାବେ ବିଚାର କରିଛନ୍ତି ଏବଂ ଦେଖାଇଛନ୍ତି ଯେ, ନିଜ ନିଜର ରାଜ୍ୟରେ ରାଜା ଏବଂ ଗଣସଂଗଠନ ଉଭୟ ସର୍ବୋଚ୍ଚ କ୍ଷମତାର ପରିଚାଳକ ହିସାବରେ ଏକଚାଟିଆ କ୍ଷମତାର ଅଧିକାରୀ ଥିଲେ ।

ୟୁରୋପର ଯେଉଁସବୁ ଗ୍ରନ୍ଥକାର ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନରେ ଭାଗ ନେଇଥିଲେ ସେମାନେ ଏବଂ ରାଷ୍ଟ୍ରଦୂତ ମେଗାସ୍ଥେନିସ୍ ସେ ଯୁଗର ଭାରତରେ ଏଭଳି ସବୁ ସଂଘର ଅସ୍ତିତ୍ୱ ସଂପର୍କରେ ଅବହିତ ଥିଲେ, ଯାହା ରାଜା ଦ୍ୱାରା ଶାସିତ ହେଉ ନଥିଲା । ଭାରତୀୟ ପ୍ରାଚୀନ ଲେଖାମାନଙ୍କରେ ଯେଉଁସବୁ ରାଜ୍ୟକୁ ସଂଘ ବା ଗଣ ବୋଲି ଉଲ୍ଲେଖ କରାଯାଇଛି, ସେସବୁ ସ୍ୱାୟତ୍ତଶାସିତ ଏବଂ ସ୍ୱାଧୀନ ଥିଲା ବୋଲି ମଧ୍ୟ କୁହାଯାଇଛି । ଏହିସବୁ ସଂଘର ରାଜା ନଥିଲେ, ରାଜ୍ୟର ନେତା ସେଠାରେ ନିର୍ବାଚିତ ହେଉଥିଲେ ।

ୟୁରୋପୀୟ ଶାସ୍ତ୍ରୀୟ ତଥା ପ୍ରାଚୀନ ଭାରତୀୟ ଲିଖିତ ସୂତ୍ରଗୁଡ଼ିକରେ ଏହିସବୁ ଅରାଜତନ୍ତ୍ରୀୟ ସଂଘକୁ ସୁପରିଚାଳିତ ଶାସନ ବ୍ୟବସ୍ଥା ଓ ଉନ୍ନତ ମାନର ସଂସ୍କୃତିସଂପନ୍ନ, ସମୃଦ୍ଧ ଭୂଖଣ୍ଡ ବୋଲି ବର୍ଣ୍ଣନା କରାଯାଇଛି ।

## ପ୍ରଶାସନ ବ୍ୟବସ୍ଥା

ମୌର୍ଯ୍ୟ ଯୁଗର ସର୍ବାପେକ୍ଷା ଉନ୍ନତିଶୀଳ ଗଣ ଏବଂ ସଂଘ ସେଇସବୁ ରାଜ୍ୟ ଥିଲେ, ଯେଉଁଥିରେ ଅଖଣ୍ଡ କ୍ଷମତାଧାରୀ ରାଜା ନଥିଲେ, ଅର୍ଥାତ୍, ଅନ୍ୟ ଭାବେ କହିବାକୁ ଗଲେ, ସେସବୁ ଥିଲା ପ୍ରଜାତନ୍ତ୍ର । ତେବେ ଏହିସବୁ ରାଜ୍ୟରେ ପ୍ରଜାତନ୍ତ୍ରୀୟ ଶାସନ ବ୍ୟବସ୍ଥାର ଧରଣ ସର୍ବଦା ଯେ ଏକା ଭଳି ଥିଲା, ତା ନୁହେଁ । ଏହିସବୁ ପ୍ରଜାତନ୍ତ୍ରରେ ଯେଉଁ ସାଧାରଣ ଏକ ବୈଶିଷ୍ଟ୍ୟ ଦେଖିବାକୁ ମିଳୁଥିଲା, ତାହା ହେଉଛି, ସେସବୁଥିରେ ଅଖଣ୍ଡ କ୍ଷମତାର ଅଧିକାରୀ ବଂଶାନୁକ୍ରମିକ ରାଜାମାନେ ରାଜତ୍ୱ କରୁ ନଥିଲେ । ରାଜ୍ୟର ମୁଖ୍ୟ ସେଠାରେ, ସାଧାରଣତଃ, ନିର୍ବାଚିତ ହେଉଥିଲେ (ବା ନିଯୁକ୍ତ ହେଉଥିଲେ) ଗଣ ଦ୍ୱାରା । ଦରକାର ପଡ଼ିଲେ, ଗଣ ପୁଣି ରାଜ୍ୟର ମୁଖ୍ୟକୁ ଅପସାରଣ କରୁଥିଲା । ବୌଦ୍ଧ ଗ୍ରନ୍ଥ "ତିବରବାସ୍ତୁରେ" ତତ୍‌କାଳୀନ ଉତ୍ତର ଭାରତର ସର୍ବାପେକ୍ଷା ଶକ୍ତିଶାଳୀ ପ୍ରଜାତାନ୍ତ୍ରିକ ରାଜ୍ୟଗୁଡ଼ିକ ମଧ୍ୟରେ ଅନ୍ୟତମ ଲିଛବି ଗଣ ସଂପର୍କରେ ବଡ଼ କୌତୂହଳୋଦ୍ଦୀପକ ବର୍ଣ୍ଣନା ମିଳିଥାଏ । ବର୍ଣ୍ଣନାଟି ହେଉଛି ରାଜ୍ୟର ମୁଖ୍ୟଙ୍କ ମୃତ୍ୟୁ ପରେ ଗଣ ମୁଖ୍ୟଙ୍କ ନିର୍ବାଚନ ସଂପର୍କରେ । ମୁଖ୍ୟ ନିର୍ବାଚନର ପ୍ରଧାନ ସର୍ତ୍ତ ଥିଲା, ନେତୃପଦ ପ୍ରାର୍ଥୀଙ୍କୁ ବହୁ ଗୁଣସଂପନ୍ନ ହେବାକୁ ପଡ଼ିବ । ଗଣ ସେଠାରେ ଜଣେ ପ୍ରାର୍ଥୀକୁ ନେତୃପଦରେ ନିଯୁକ୍ତ କଲା, ତେବେ ଏଥି ସହିତ ଏକଥା ମଧ୍ୟ ଘୋଷଣା କରାଗଲା ଯେ, ମୁଖ୍ୟ ଯଦି ତାଙ୍କ କାର୍ଯ୍ୟକଳାପ ପାଇଁ ଗଣର ସମର୍ଥନ ଲାଭ କରିବାକୁ ବ୍ୟର୍ଥ ହୁଅନ୍ତି, ତେବେ ତାଙ୍କୁ ମୁଖ୍ୟଙ୍କ ପଦରୁ ଅପସାରଣ କରିବାର ଅଧିକାର ଗଣର ଅଛି । ଏହି ଧରଣର ସଂଘରେ ଗଣ ମୁଖ୍ୟଙ୍କର ପ୍ରଧାନତଃ କାର୍ଯ୍ୟନିର୍ବାହୀ ଶାସନ କ୍ଷମତା ରହୁଥିଲା ଏବଂ ସର୍ବୋଚ୍ଚ କ୍ଷମତାସଂପନ୍ନ ସଂସ୍ଥା ହିସାବରେ ଗଣର ଅଧିକାରରେ ଥିଲା ଆଇନ୍ ପ୍ରଣୟନର

କ୍ଷମତା (କାର୍ଯ୍ୟତଃ ଦେଖିବାକୁ ମିଳେ ଯେ, ଗଣ ବୋଇଲେ ସେତେବେଳେ ଅରାଜତନ୍ତ୍ରୀୟ ଶାସନ ପ୍ରଣାଳୀସଂପନ୍ନ ରାଷ୍ଟ୍ର ଓ ସେଇ ରାଷ୍ଟ୍ରର ସର୍ବୋଚ୍ଚ କ୍ଷମତାସଂପନ୍ନ ସଂସ୍ଥାକୁ ବୁଝାଉଥିଲା) ।

ରାଜ୍ୟ ପରିଚାଳନାର ପଧାନ ପ୍ରଧାନ ବିଷୟରେ ଗଣଗୁଡ଼ିକ ପ୍ରସ୍ତାବ ଆକାରରେ ବିଭିନ୍ନ ସିଦ୍ଧାନ୍ତ ନେଉଥିଲେ ଏବଂ ଏହିସବୁ ସିଦ୍ଧାନ୍ତ ବାଧ୍ୟତାମୂଳକ ଥିଲା ଦେଶର ସବୁଠାରୁ ପ୍ରଭାବଶାଳୀ ନାଗରିକବର୍ଗଙ୍କ ସମେତ ସମସ୍ତ ନାଗରିକଙ୍କ ପକ୍ଷରେ । ଏହି ଆଇନ୍‌କୁ ଯେକୌଣସି ଲୋକ ଭଙ୍ଗ କରୁଥିଲା, ତାକୁ କଠୋର ଅର୍ଥଦଣ୍ଡ ଦିଆଯାଉଥିଲା । ପ୍ରୟୋଜନ ମନେ କଲେ, ବେଳେ ବେଳେ ଅପରାଧୀକୁ ମୃତ୍ୟୁଦଣ୍ଡ ପର୍ଯ୍ୟନ୍ତ ବି ଦିଆଯାଉଥିଲା । ଗଣ ପକ୍ଷରୁ ଗଣର ନିଜସ୍ୱ କର୍ମଚାରୀମାନଙ୍କୁ ନିଯୁକ୍ତ କରାଯାଉଥିଲା ଏବଂ ଏହି ପ୍ରତିନିଧିମାନେ ଗଣର ପ୍ରତିନିଧି ରୂପେ ଗଣ୍ୟ ହେଉଥିଲେ ।

କେତେକ ପ୍ରଜାତନ୍ତ୍ରରେ ଏହି ଗଣ ଥିଲା ପୂର୍ଣ୍ଣ ଅଧିକାର ଉପଭୋଗକାରୀ ସମସ୍ତ ମୁକ୍ତ ନାଗରିକମାନଙ୍କୁ ନେଇ ଗଠିତ ଏକ ଧରଣର ଜନସଭା । ଏହି ଜନସଭାରେ ଯେଉଁସବୁ ସିଦ୍ଧାନ୍ତ ନିଆଯାଉଥିଲା, ତାହା ସ୍ଥିର ହେଉଥିଲା ଅଧିକାଂଶ ମତାମତ ଅନୁଯାୟୀ । ଗଣର ଚରିତ୍ର ଏବଂ ସର୍ବୋଚ୍ଚ କ୍ଷମତାସଂପନ୍ନ ସଂସ୍ଥା ହିସାବରେ ତା'ର ଭୂମିକା ଏହିସବୁ ପ୍ରଜାତାନ୍ତ୍ରିକ ରାଷ୍ଟ୍ରର ପ୍ରକୃତିକୁ ଅନେକ ପରିମାଣରେ ନିର୍ଦ୍ଧାରଣ କରି ଦେଉଥିଲା । ଏହିସବୁ କ୍ଷେତ୍ରରେ, ଯେଉଁଠି ଜନସଭାର ନେତୃସ୍ଥାନୀୟ ଭୂମିକା ଥିଲା ଏବଂ ଏହି ସଭାଟି ଗଢ଼ି ଉଠୁଥିଲା ପୂର୍ଣ୍ଣ ଅଧିକାର ଉପଭୋଗକାରୀ ନାଗରିକମାନଙ୍କୁ ନେଇ, ସେଠାରେ ଆଲୋଚ୍ୟ ପ୍ରଜାତନ୍ତ୍ରକୁ ଗଣତାନ୍ତ୍ରିକ ଆଖ୍ୟା ଦିଆଯାଇ ପାରିଥାନ୍ତା । କିନ୍ତୁ ଏସବୁ କ୍ଷେତ୍ରରେ ଯେତେ ଦିନ ଯାଉଥିଲା, ସେତେ ଅଭିଜାତ ନାଗରିକମାନଙ୍କର ପରିଷଦ ବେଶି ଗୁରୁତ୍ୱ ଲାଭ କରିଥିଲା । ଏହିଭଳି କେତେକ ରାଜନୈତିକ ସଂଘରାଷ୍ଟ୍ର ସେତେବେଳେ ଗଣତାନ୍ତ୍ରିକ ରାଷ୍ଟ୍ରରୁ ଅଭିଜାତ ପ୍ରଜାତାନ୍ତ୍ରିକ ରାଷ୍ଟ୍ରକୁ ରୂପାନ୍ତର ପଥରେ ମଧ୍ୟବର୍ତ୍ତୀ ଏକ ଧରଣର ରାଷ୍ଟ୍ର ବ୍ୟବସ୍ଥାରେ ପରିଣତ ହୋଇଥିଲା । ଆଉ କେତେକ କ୍ଷେତ୍ରରେ ଜନସଭାଗୁଡ଼ିକ ସେତେବେଳକୁ ସେମାନଙ୍କ ପ୍ରାଧାନ୍ୟ ଓ ଗୁରୁତ୍ୱ ହରେଇ ବସିଥିବାରୁ ଏବଂ ପ୍ରକୃତ ରାଷ୍ଟ୍ର କ୍ଷମତା କ୍ଷତ୍ରିୟମାନଙ୍କର ଅଭିଜାତ ପରିଷଦ ହାତରେ କେନ୍ଦ୍ରୀଭୂତ ହେବାରୁ ପ୍ରଜାତନ୍ତ୍ରଗୁଡ଼ିକ ସେତେବେଳେ ଅଭିଜାତ ପ୍ରଜାତନ୍ତ୍ରରେ ପରିଣତ ହୋଇଥିଲା ।

## କ୍ଷତ୍ରିୟମାନଙ୍କର ରାଷ୍ଟ୍ର କ୍ଷମତା ଓ ସମାଜର ଢାଞ୍ଚା

ଗଣ ଏବଂ ସଂଘଗୁଡ଼ିକରେ କ୍ଷତ୍ରିୟମାନେ ଜନସଂଖ୍ୟାର ଅବଶିଷ୍ଟ ଅଂଶ ଠାରୁ ପୃଥକ୍ ଭାବେ ସମାଜର ସର୍ବୋଚ୍ଚ ଓ ସ୍ୱତନ୍ତ୍ର ଏକ ସ୍ତରରେ ପର୍ଯ୍ୟବସିତ ହୋଇଥିଲେ । ଏଥିରୁ ବୁଝାଯାଏ, କାହିଁକି ଅରାଜତାନ୍ତ୍ରିକ ଏଭଳି ବହୁ ସଂଘରାଜ୍ୟକୁ ସେତେବେଳେ କ୍ଷତ୍ରିୟ ରାଜ୍ୟ ବୋଲି କୁହାଯାଉଥିଲା । ଅଭିଜାତ ପ୍ରଜାତନ୍ତ୍ରଗୁଡ଼ିକରେ ଅଭିଜାତ ଧନୀ ଓ ପ୍ରଭାବଶାଳୀ କ୍ଷତ୍ରିୟମାନେ ବିଶେଷ ପଦମର୍ଯ୍ୟାଦାର ଅଧିକାରୀ ଥିଲେ । ସେମାନେ ଥିଲେ "ରାଜା" ଉପାଧି ଧାରୀ । ଏହି ଉପାଧି ଅର୍ଜନ କରିବାକୁ ଆକାଂକ୍ଷୀଙ୍କୁ ଏକ ପବିତ୍ର ସରୋବରରେ ସ୍ନାନ କରିବାକୁ ପଡ଼ୁଥିଲା ଏବଂ ଅଭିଷେକ ଅନୁଷ୍ଠାନ କରିବାକୁ ହେଉଥିଲା । ଏହି ଅନୁଷ୍ଠାନ କୌଣସି ଲୋକ ବେଆଇନ୍ ଭାବେ କଲେ, ସେ କ୍ଷତ୍ରିୟ ହେଲେ ମଧ୍ୟ ତାକୁ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେବାକୁ ପଡ଼ୁଥିଲା ।

ଯେଉଁସବୁ କ୍ଷତ୍ରିୟ "ରାଜା" ଉପାଧି ଧାରୀ ଥିଲେ, ସେମାନେ ମଝିରେ ମଝିରେ ଏକ ବିଶେଷ ସଭା ଗୃହରେ ବା "ସାନ୍ତ୍ଵନା" ଗୃହରେ ମିଳିତ ହେଉଥିଲେ ଏବଂ ସେଠାରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରଶାସନିକ ପ୍ରଶ୍ନାଦି ଘେନି ଆଲୋଚନା କରୁଥିଲେ । ଏହିସବୁ ସଭାରେ ଅନ୍ୟାନ୍ୟ ବର୍ଣ୍ଣର ପ୍ରତିନିଧିମାନଙ୍କୁ ଏପରିକି ବ୍ରାହ୍ମଣମାନଙ୍କୁ ଉପସ୍ଥିତ ହେବାକୁ ଅନୁମତି ଦିଆଯାଉ ନଥିଲା । କେତେକ ପ୍ରଜାତନ୍ତ୍ରରେ, ଖୁବ୍ ସମ୍ଭବତଃ, ନାନା ସମସ୍ୟା ଘେନି ଜନସଭାରେ ଏହିସବୁ ଆଲୋଚନା ଆରମ୍ଭ ହେଉଥିଲା ଏବଂ ତା'ପରେ ସେସବୁ ବିଷୟରେ ଚୂଡ଼ାନ୍ତ ସିଦ୍ଧାନ୍ତ ନେଉଥିଲା ରାଜପରିଷଦ । ଉପରୋକ୍ତ ଏହି ଦୁଇ ସଂଗଠନ ମଧ୍ୟରେ ପରସ୍ପର ସଂପର୍କ ସଂପୂର୍ଣ୍ଣ ଭାବେ ସେଇ ବିଶେଷ ପ୍ରଜାତନ୍ତ୍ରଟିରେ କ୍ଷମତାର ପ୍ରକୃତି ଉପରେ ନିର୍ଭର କରୁଥିଲା । ବିଶିଷ୍ଟ ରାଜକର୍ମଚାରୀମାନଙ୍କ ପଦଗୁଡ଼ିକରେ – ଯଥା, ସେନାଧ୍ୟକ୍ଷ, ବିଗ୍ରହକ, ଆଦି ପଦରେ – ସ୍ପଷ୍ଟତଃ ନିଯୁକ୍ତ ହେଉଥିଲେ କ୍ଷତ୍ରିୟ ବର୍ଣ୍ଣର ଲୋକମାନେ ।

ଉପଜାତି ବା ଗୋତ୍ରୀୟ ସଂପର୍କ ଯୁଗରୁ ଉତ୍ତରାଧିକାର ସୂତ୍ରରେ ଚାଲି ଆସିଥିବା ରୀତିନୀତି ଗଣ ଓ ସଂଘଗୁଡ଼ିକର, ଏପରିକି ସେମାନଙ୍କ ମଧ୍ୟରେ ସବୁଠାରୁ ଅଗ୍ରସର ବା ଉନ୍ନତ ପ୍ରଜାତନ୍ତ୍ରଗୁଡ଼ିକର, ସମାଜ ଢାଞ୍ଚାରେ ସେପର୍ଯ୍ୟନ୍ତ ଅତ୍ୟନ୍ତ ଦୃଢ଼ ଥିଲା । ଯଥା, ଉଦାହରଣ ସ୍ୱରୂପ, ଗୋତ୍ରର (ଗୋଷ୍ଠୀ) ପ୍ରଭାବ ସେପର୍ଯ୍ୟନ୍ତ ଅନୁଭୂତ ହେଉଥିଲା, ଯଦିଓ ସେତେବେଳେ କୁଳ (କୁଟୁମ୍ବ) ଆବିର୍ଭୂତ ହୋଇଥିଲା ପ୍ରଧାନ ସାମାଜିକ ଏକକ ହିସାବରେ ।

ବର୍ଣ୍ଣ ତଥା ଜାତି ବିଭାଜନର ସ୍ୱରୂପ ଗଣ ତଥା ସଂଘର ଏକ ବିଶେଷ ବୈଶିଷ୍ଟ୍ୟ ଥିଲା । ଏହି ଦିଗରୁ କ୍ଷତ୍ରିୟମାନେ ଜନସଂଖ୍ୟାର ଅବଶିଷ୍ଟ ଅଂଶଠାରୁ ପୃଥକ୍ ଥିଲେ ଏବଂ ଏପରିକି ବ୍ରାହ୍ମଣମାନେ ସେମାନଙ୍କ ସହିତ ସମକକ୍ଷ ହୋଇ ପାରିଥିଲେ ଖୁବ୍ କମ୍ କ୍ଷେତ୍ରରେ । ରାଜତାନ୍ତ୍ରିକ ରାଜ୍ୟଗୁଡ଼ିକରେ ବ୍ରାହ୍ମଣମାନେ ଯେପରି ବଡ଼ ବଡ଼ ଭୂସଂପତ୍ତିର ମାଲିକ ଥିଲେ, ସେଇପରି ପ୍ରଜାତନ୍ତ୍ରଗୁଡ଼ିକରେ କ୍ଷତ୍ରିୟମାନେ ନିଜକୁ ପ୍ରଭାବଶାଳୀ ଭୂସ୍ୱାମୀ ରୂପେ ପ୍ରତିଷ୍ଠିତ କରିଥିଲେ । ପ୍ରଜାତନ୍ତ୍ରଗୁଡ଼ିକରେ ଅଧିକାଂଶ ରାଜନୈତିକ କ୍ଷମତା ଥିଲା କ୍ଷତ୍ରିୟମାନଙ୍କ ହାତରେ । ରାଜଶାସିତ ରାଜ୍ୟଗୁଡ଼ିକ ଭଳି ବ୍ରାହ୍ମଣମାନେ ଏ କ୍ଷେତ୍ରରେ ସେମାନଙ୍କ ଅଗ୍ରାଧିକାର କାଏମ କରିବା ବିଷୟରେ ଅସମର୍ଥ ହୋଇଥିଲେ ଏବଂ ଅଧିକାର କ୍ଷେତ୍ରରେ ସେମାନଙ୍କ ସାମାଜିକ ମର୍ଯ୍ୟାଦା ବୈଶ୍ୟ ସମାଜର ସୁବିଧାଭୋଗୀ ଗୋଷ୍ଠୀର ନିକଟବର୍ତ୍ତୀ ହୋଇ ଆସିଥିଲା । ବର୍ଣ୍ଣ ବ୍ୟବସ୍ଥାର ସୁନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ସତ୍ତ୍ୱେ ଗଣ ତଥା ସଂଘରେ – ରାଜତନ୍ତ୍ର ଭଳି – ସବୁଠାରୁ ଉତ୍ପୀଡ଼ିତ ବର୍ଣ୍ଣ ଥିଲେ ଶୂଦ୍ରମାନେ । ଏଥିରୁ ଜଣାଯାଏ, ରାଜନୈତିକ କ୍ଷମତାର ପ୍ରକୃତି ବଂଶାନୁଯାୟୀ ସାମାଜିକ ଢାଞ୍ଚାର ସ୍ୱରୂପକୁ ନିର୍ଣ୍ଣୟ କରୁ ନଥିଲା ।

ଗଣ ଏବଂ ସଂଘଗୁଡ଼ିକରେ ରାଜନୈତିକ ସଂଗଠନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଯେଉଁ ବୈଶିଷ୍ଟ୍ୟଟି ରାଜଶାସିତ ରାଜ୍ୟଗୁଡ଼ିକ ଠାରୁ ପୃଥକ୍ କରି ଚିହ୍ନିତ କରୁଥିଲା, ତାହା ହେଉଛି ପ୍ରଥମୋକ୍ତ ରାଷ୍ଟ୍ରଗୁଡ଼ିକରେ ଜନସାଧାରଣଙ୍କର ବ୍ୟାପକ ସ୍ତରଗୁଡ଼ିକ ରାଜନୈତିକ ଘଟଣାବଳୀ ସହିତ ଜଡ଼ିତ ଥିଲେ । ଏହା ଫଳରେ ସେସବୁ ସୁଦୃଢ଼ ଏବଂ ସ୍ଥାୟୀ ରୂପେ ଗଢ଼ି ଉଠିଥିଲେ । "ଅର୍ଥଶାସ୍ତ୍ର" ରଚୟିତାଙ୍କ ମତରେ, ସଂଘସମୂହ ସେସବୁର ଦୃଢ଼ ସଂଶକ୍ତି କାରଣରୁ ଅପରାଜିତ ଥିଲେ । କିନ୍ତୁ କିଛି ଅଂଶରେ ଗଣତାନ୍ତ୍ରିକ ହେଲେ ମଧ୍ୟ ପ୍ରଜାତନ୍ତ୍ରଗୁଡ଼ିକରେ ସାମାଜିକ ସଂପର୍କ ତୀବ୍ର ଶ୍ରେଣୀ, ମାଲିକାନା ଏବଂ ବଂଶାନୁକ୍ରମିକ ବିରୋଧରେ ଆକ୍ରାନ୍ତ ଥିଲା । ଲିଖିତ ସୂତ୍ରଗୁଡ଼ିକରେ ସମାଜର

ପ୍ରଭାବଶାଳୀ, ଅର୍ଥାତ୍, କ୍ଷତ୍ରିୟ ସଦସ୍ୟମାନଙ୍କ ସହିତ ଗଣ ଓ ସଂଘଗୁଡ଼ିକର ସାଧାରଣ ସଦସ୍ୟମାନଙ୍କର ସଂଘର୍ଷର ଉଲ୍ଲେଖ ଦେଖିବାକୁ ମିଳେ । "ମହାଭାରତରେ" କୁହାଯାଇଛି ଯେ, ଗଣ ଏବଂ ସଂଘସମୂହର ପ୍ରଧାନ ଶତ୍ରୁ ହେଉଛି ସେମାନଙ୍କର ଆଭ୍ୟନ୍ତରୀଣ ବିରୋଧ । ବୌଦ୍ଧ ଧର୍ମଶାସ୍ତ୍ରରେ ଶାକ୍ୟମାନଙ୍କ ପ୍ରଜାତନ୍ତ୍ରରେ କ୍ରୀତଦାସମାନଙ୍କର ପ୍ରକାଶ୍ୟ ବିଦ୍ରୋହର କଥା ଉଲ୍ଲେଖ ଅଛି ।

ଏହି ପ୍ରାଚୀନ ଭାରତୀୟ ପ୍ରଜାତନ୍ତ୍ରଗୁଡ଼ିକ ମୌର୍ଯ୍ୟ ଯୁଗ ପର୍ଯ୍ୟନ୍ତ ମଧ୍ୟ ଅବସ୍ଥିତ ଥିଲା । ଏପରିକି ଗୁପ୍ତ ଯୁଗର ପ୍ରାରମ୍ଭ ପର୍ଯ୍ୟନ୍ତ ମଧ୍ୟ ସେସବୁର ଅସ୍ତିତ୍ୱ ରହିଥିଲା । ଏହା ପରେ, ଏହି ସମୟରେ ସେସବୁ କ୍ରମେ କ୍ରମେ ସେମାନଙ୍କ ସ୍ୱାଧୀନତା ହରେଇଥିଲେ ଏବଂ ରାଜଶାସିତ ରାଜ୍ୟଗୁଡ଼ିକର ଅଧୀନ ହୋଇଥିଲେ । ପ୍ରାଚୀନ ଭାରତର ପ୍ରଜାତନ୍ତ୍ରୀୟ ଶାସନ ବ୍ୟବସ୍ଥାର ପର୍ଯ୍ୟାଲୋଚନା ଫଳରେ ଏହା ସ୍ପଷ୍ଟ ହୋଇ ଉଠେ ଯେ, ପ୍ରାଚୀନ ଭାରତର ରାଜନୈତିକ ବ୍ୟବସ୍ଥାଗୁଡ଼ିକ ସହିତ ପ୍ରାଚୀନ ୟୁରୋପୀୟ ଯୁଗର ଭୂମଧ୍ୟସାଗରୀୟ ଅଞ୍ଚଳର ଦେଶସମୂହର ଏହି ବ୍ୟବସ୍ଥାଦିକୁ ତୁଳନା କରିବା ଅସମୀଚୀନ ହେବ । କାରଣ, ଭାରତ ଭଳି, ପ୍ରାଚୀନ ଗ୍ରୀକ୍-ରୋମାନ୍ ସଭ୍ୟତାଗୁଡ଼ିକ କ୍ଷେତ୍ରରେ ମଧ୍ୟ ଶ୍ରେଣୀହୀନ ସମାଜରୁ ରାଷ୍ଟ୍ରର ଉଦ୍‌ଭବର ଧାରାରେ ସମାଜ ବିକାଶର ସମାନ ପ୍ରକ୍ରିୟା ଦେଖିବାକୁ ମିଳେ । ଏହି ବିକାଶର ପଟଭୂମିରେ ପାରିପାର୍ଶ୍ୱିକ ଅବସ୍ଥା ଅନୁଯାୟୀ କେତେକ ରାଜ୍ୟର ଶାସନ ବ୍ୟବସ୍ଥା ରାଜତାନ୍ତ୍ରିକ, କିମ୍ବା ପ୍ରଜାତାନ୍ତ୍ରିକ ଥିଲା ।

# ମୌର୍ଯ୍ୟ ଯୁଗର ସଂସ୍କୃତି

## ହସ୍ତଲିପିର ପ୍ରସାର

ମଗଧ ଏବଂ ମୌର୍ଯ୍ୟ ଶାସକମାନଙ୍କ ରାଜତ୍ୱକାଳଟି ଦ୍ରୁତ ସାଂସ୍କୃତିକ ବିକାଶର କାଳ ଥିଲା । ଭାରତର ବହୁ ଅଞ୍ଚଳ ଏବଂ ଏପରିକି ଆଧୁନିକ ଆଫ୍‌ଗାନିସ୍ତାନରୁ ମିଳିଥିବା ଅଶୋକଙ୍କ ଶିଳାଲେଖଗୁଡ଼ିକ ଅନୁଯାୟୀ ସେହି ସୁଦୂର ଖ୍ରୀଷ୍ଟ ପୂର୍ବ ତୃତୀୟ ଶତାବ୍ଦୀରେ ହସ୍ତଲିପିର ପ୍ରସାର ମୋଟାମୋଟି ଭାବେ ବ୍ୟାପକ ହୋଇଥିଲା । ହସ୍ତଲିପିର ଅସ୍ତିତ୍ୱ, ଅବଶ୍ୟ, ଏହାର କେଇ ଶତାବ୍ଦୀ ଆଗରୁ ଯେ ଥିଲା, ସେ ସଂପର୍କରେ ସନ୍ଦେହର ଅବକାଶ ନାହିଁ । ବହୁ ବୌଦ୍ଧ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ, ସେଇ ପ୍ରାଚୀନ କାଳରେ ମଧ୍ୟ ପତ୍ର ବିନିମୟ, ରାଜକୀୟ ଘୋଷଣାର ଅନୁଲିପି, ପେଶାଦାର ଲିପିଲେଖକମାନଙ୍କର ଅସ୍ତିତ୍ୱ ଏବଂ ବିଦ୍ୟାଳୟମାନଙ୍କରେ ଗଣିତ ଶିକ୍ଷା ସାଙ୍ଗକୁ ହସ୍ତଲିପି କଳା ଶିକ୍ଷା ପ୍ରଚଳନ ଥିଲା ।

ପାଣିନିଙ୍କ ବ୍ୟାକରଣରେ ("ଅଷ୍ଟାଧ୍ୟାୟୀ") ହସ୍ତଲିପି ଏବଂ ଲିପିକାରଙ୍କ ସଂଜ୍ଞା ପାଇଁ ବିଶେଷ ଶବ୍ଦର ବ୍ୟବହାର କରାଯାଇଛି ଏବଂ ଗ୍ରୀକ୍ ଲିପି ସଂପର୍କରେ ଉଲ୍ଲେଖ ଅଛି । ଅଶୋକଙ୍କ ଶିଳାଲେଖଗୁଡ଼ିକ ଖୋଦିତ ହୋଇଛି ବ୍ରାହ୍ମୀ ଲିପିରେ । ଏହା ଛଡ଼ା ଆରାମେଇକ୍, ଗ୍ରୀକ୍ ଏବଂ ବ୍ରାହ୍ମୀ ଲିପି ପ୍ରଭାବରେ ଆରାମେଇକ୍‌ରୁ ଉଦ୍‌ଭୂତ ଖରୋଷ୍ଠି ଲିପି ମଧ୍ୟ ବ୍ୟବହୃତ ହୋଇଛି

ଶିଳାଲେଖରେ । ତେବେ ଅଧିକାଂଶ ଶିଳାଲେଖ, ଅବଶ୍ୟ, ଖୋଦିତ ହୋଇଛି ବ୍ରାହ୍ମୀ ଅକ୍ଷରରେ । ନିୟାର୍କସ୍‌ ବିବରଣୀ ଅନୁଯାୟୀ, ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନ କାଳରେ ପ୍ରାଚୀନ ଭାରତୀୟମାନେ ସୂତାବସ୍ତ୍ର ଉପରେ ଲେଖୁଥିଲେ । ତେବେ ଏହା ସମ୍ଭବ ଯେ, ଲେଖା ପାଇଁ ସେତେବେଳେ ସବୁଠାରୁ ବ୍ୟାପକ ଭାବେ ବ୍ୟବହୃତ ହେଉଥିଲା ତାଳପତ୍ର । ଦେଶର ସନ୍ତସନ୍ତିଆ ଆବହାଓଆ ପାଇଁ ସେଇସବୁ ହାତଲେଖା ତାଳପତ୍ର ଶେଷ ପର୍ଯ୍ୟନ୍ତ ତିଷ୍ଠି ପାରି ନାହିଁ । ତେଣୁ ଏହି ଯୁଗର ଲିପି ଲେଖକ ଶିଳ୍ପର ଏକମାତ୍ର ସାକ୍ଷ୍ୟ ଆଜି ପର୍ଯ୍ୟନ୍ତ ଯାହା ରହିଯାଇଛି, ତାହା ହେଉଛି ପାହାଡ଼, ସ୍ତମ୍ଭ ଓ ଗୁହା ଦେହରେ ଖୋଦିତ ଅଶୋକଙ୍କ ଅନୁଶାସନର ଲିପିଗୁଡ଼ିକ । ଖ୍ରୀଷ୍ଟ ପୂର୍ବ ତୃତୀୟ ଶତାବ୍ଦୀ ବେଳକୁ ବ୍ରାହ୍ମୀ ଦୀର୍ଘ କାଳର ଇତିହାସ ସମନ୍ୱିତ ଲିପିରେ ପରିଣତ ହୋଇଥିଲା ।

ବ୍ରାହ୍ମୀ ଲିପିର ଉତ୍ସ ସଂପର୍କରେ ବିଶେଷଜ୍ଞମାନେ କୌଣସି ଐକ୍ୟ ମତରେ ପହଞ୍ଚି ପାରି ନାହାନ୍ତି । ଏହାକୁ ବହୁ ଲିପି ସହିତ, ଯଥା, ହରପ୍‌ପା ସଭ୍ୟତାର ଲିପି, ସେମିଟିକ୍‌ ଲିପି, ଦକ୍ଷିଣ ଆରବର ଲିପି, ଏପରିକି ଗ୍ରୀକ୍‌ ଲିପି ସହିତ ସଂଯୁକ୍ତ କରି ଦେଖାଇବାକୁ ଉଦ୍ୟମ ହୋଇଛି । ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀର ଶିଳାଲେଖରୁ ଜଣାଯାଏ ଯେ, ସେ ଯୁଗରେ ବ୍ରାହ୍ମୀ ଲିପିର କେତୋଟି ରୂପଭେଦ ପ୍ରଚଳନ ଥିଲା । ପ୍ରଥମ ଶତାବ୍ଦୀର ପ୍ରାରମ୍ଭରେ ବୌଦ୍ଧ ରଚନା ଓ ବୁଦ୍ଧଙ୍କ ଜୀବନ କଥା "ଲଳିତବିସ୍ତାରରେ" ଚୌଷଠିଟି ରକମର ବିଭିନ୍ନ ଲିପିର ଉଲ୍ଲେଖ ଅଛି । ସେସବୁ ମଧ୍ୟରେ ବିଭିନ୍ନ ସ୍ଥାନୀୟ ଭାରତୀୟ ଲିପି ସମେତ ବହୁ ବିଦେଶୀ ଲିପି ଅନ୍ତର୍ଭୁକ୍ତ । ଅଶୋକଙ୍କ ଅନୁଶାସନଗୁଡ଼ିକ କେବଳ ରାଜକର୍ମଚାରୀମାନଙ୍କ ଉଦ୍ଦେଶ୍ୟରେ ଖୋଳାଯାଇ ନଥିଲା । ସାଧାରଣ ପ୍ରଜାବର୍ଗଙ୍କ ପାଇଁ ମଧ୍ୟ ଏହା ଉଦ୍ଦିଷ୍ଟ ଥିଲା । ଅଶୋକଙ୍କ ଉଦ୍ଦେଶ୍ୟ ଥିଲା ତାଙ୍କ ଅନୁଶାସନଗୁଡ଼ିକୁ ବିଭିନ୍ନ ସାମାଜିକ ଗୋଷ୍ଠୀର ଲୋକେ ପଢ଼ନ୍ତୁ । ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଏବଂ ପ୍ରଥମ ଶତାବ୍ଦୀରେ ଖୋଦିତ ଶିଳାଲିପିଗୁଡ଼ିକ ମଧ୍ୟରେ ଥିଲା ଅନେକ ଉତ୍ସର୍ଗପତ୍ର । ବୌଦ୍ଧ ସଂଘଗୁଡ଼ିକ ନାମରେ ପ୍ରଦତ୍ତ ଉପହାର ସାମଗ୍ରୀର ତାଲିକା ଥିଲା ସେଗୁଡ଼ିକ । ବଣିକ, ବୌଦ୍ଧ ଭିକ୍ଷୁ, କାରିଗର, ଆଦିଙ୍କ ପକ୍ଷରୁ ଏହି ଶିଳାଲେଖଗୁଡ଼ିକ ଖୋଦିତ ହୋଇଥିଲା । ଖ୍ରୀଷ୍ଟ ପୂର୍ବ ତୃତୀୟ, ଦ୍ୱିତୀୟ ଓ ପ୍ରଥମ ଶତାବ୍ଦୀର ପ୍ରାଚୀନ ଭାରତୀୟମାନେ ଯେ ବହୁ ପରିମାଣରେ ଲିଖିତ ହସ୍ତଲିପି ସହିତ ପରିଚିତ ଥିଲେ, ଉପରୋକ୍ତ ଏହି ଲିପିଗୁଡ଼ିକ ଥିଲା ତା'ର ପ୍ରମାଣ । ତେବେ ଏଥି ସହିତ ଏକଥା ଭୁଲି ଗଲେ ଚଳିବ ନାହିଁ ଯେ, ପ୍ରାଚୀନ ଭାରତରେ ଶିକ୍ଷାଦାନ ବ୍ୟବସ୍ଥା ଗଢ଼ି ଉଠିଥିଲା ମୌଖିକ ଶିକ୍ଷାଦାନର ପରମ୍ପରାକୁ ଭିତ୍ତି କରି । ଧର୍ମ ଗ୍ରନ୍ଥଗୁଡ଼ିକୁ ମୂଳରୁ ଶେଷ ପର୍ଯ୍ୟନ୍ତ କଣ୍ଠସ୍ଥ କରାଯାଇଥିଲା ଏବଂ ସେଇ ମୌଖିକ ଶିକ୍ଷା ପୁରୁଷାନୁକ୍ରମେ ମୁଖସ୍ଥ କରିବା ମଧ୍ୟ ଦେଇ ସଞ୍ଚାରିତ ହେଉଥିଲା ।

## ବୈଜ୍ଞାନିକ ଜ୍ଞାନର ବିକାଶ

ମଗଧ ଏବଂ ମୌର୍ଯ୍ୟ ଯୁଗରେ ବୈଜ୍ଞାନିକ ଜ୍ଞାନର ଉଲ୍ଲେଖନୀୟ ବିକାଶ ଘଟିଥିଲା । ଏହି ସମୟରେ ଜ୍ୟୋତିର୍ବିଦ୍ୟା, ଗଣିତ, ଚିକିତ୍ସାଶାସ୍ତ୍ର ଏବଂ ବ୍ୟାକରଣ ସଂକ୍ରାନ୍ତ ବହୁ ବିଜ୍ଞାନ ଗ୍ରନ୍ଥ ରଚିତ ହୋଇଥିଲା । ସେସବୁ, ଅବଶ୍ୟ, ପୋଥିପତ୍ର ଆକାରରେ ଲିପିବଦ୍ଧ ହୋଇଥିଲା ପରବର୍ତ୍ତୀ ଯୁଗରେ । ବୌଦ୍ଧ ଏବଂ ଜୈନମାନଙ୍କ ଦ୍ୱାରା ଲିଖିତ ବହୁସଂଖ୍ୟକ ଗ୍ରନ୍ଥ ଏହି ଯୁଗରେ ରଚିତ

ହୋଇଥିଲା । ବିଶଦ ଭାବେ ଲିଖିତ ସଂସ୍କୃତ ବ୍ୟାକରଣର ସଂକଳକ ପ୍ରଖ୍ୟାତ ଭାରତୀୟ ବୈୟାକରଣିକ ପାଣିନିଙ୍କ ଜୀବନ ଓ ରଚନାକାଳ ଏହି ଖ୍ରୀଷ୍ଟ ପୂର୍ବ ପଞ୍ଚମ ଓ ଚତୁର୍ଥ ଶତାବ୍ଦୀରେ ବୋଲି ବହୁ ପଣ୍ଡିତ ମନେ କରନ୍ତି । ପାଣିନିଙ୍କ ବ୍ୟାକରଣର ନାମ ଥିଲା "ଅଷ୍ଟାଧ୍ୟାୟୀ" ("ଅଷ୍ଟ ଅଧ୍ୟାୟ ଯୁକ୍ତ") । ତାଙ୍କର ଭାଷା ବିଶ୍ଳେଷଣ ପଦ୍ଧତି ଥିଲା ଖୁବ ଉଚ୍ଚ କୋଟିର । କେତେକ ପୂର୍ବସୂରୀଙ୍କ ରଚନା ଉପରେ ଭିତ୍ତି କରି ପାଣିନି ତାଙ୍କର ଏହି ବ୍ୟାକରଣ ଲେଖିଥିଲେ । ସେସବୁ ପୂର୍ବସୂରୀଙ୍କ ନାମ ମଧ୍ୟ ସେ ଏହି ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ପରବର୍ତ୍ତୀ ସଂସ୍କୃତ ବ୍ୟାକରଣକାରମାନଙ୍କର ମୂଲ୍ୟ ନିରୂପକ ରୂପେ ଏହି "ଅଷ୍ଟାଧ୍ୟାୟୀ" ଗ୍ରନ୍ଥଟି ବିବେଚିତ ହୋଇଥିଲା । ସେମାନେ ମୂଳରୁ ଶେଷ ପର୍ଯ୍ୟନ୍ତ ଏହି ଗ୍ରନ୍ଥର ବ୍ୟାଖ୍ୟା ଏବଂ ଟୀକା ଭାଷ୍ୟ ରଚନା କରିଛନ୍ତି । ଖ୍ରୀଷ୍ଟ ପୂର୍ବ ଚତୁର୍ଥ ଶତାବ୍ଦୀରେ କାତ୍ୟାୟନ "ଅଷ୍ଟାଧ୍ୟାୟୀ" ଗ୍ରନ୍ଥର ଏକ ଭାଷ୍ୟ ରଚନା କରିଥିଲେ । ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀରେ ପତଞ୍ଜଳି ରଚନା କରିଥିଲେ ନୂଆ ଏକ ସଂସ୍କୃତ ବ୍ୟାକରଣ । ଏହି ବ୍ୟାକରଣକାରମାନେ କେବଳ ଯେ ସଂସ୍କୃତ ଭାଷା ଜାଣିଥିଲେ, ତା ନୁହେଁ, ବହୁ ସ୍ଥାନୀୟ ଏବଂ ଆଞ୍ଚଳିକ ଉପଭାଷା ସହିତ ସେମାନେ ପରିଚିତ ଥିଲେ ।

ମଗଧ ଏବଂ ମୌର୍ଯ୍ୟ ରାଜାମାନଙ୍କ ରାଜତ୍ୱକାଳରେ ପ୍ରାକୃତ ଭାଷା ମଧ୍ୟ ବ୍ୟାପକ ଭାବେ ବ୍ୟବହୃତ ହେଉଥିଲା । ଏହି ପ୍ରାକୃତ ଭାଷାରେ ଅଶୋକଙ୍କ ଅନୁଶାସନଗୁଡ଼ିକ ରଚିତ ହୋଇଥିଲା ଏବଂ ବହୁ ଶିଳାଲେଖ ଖୋଦିତ ହୋଇଥିଲା । ସେତେବେଳେ ଭାରତରେ ଏଇଭଳି ଅନେକଗୁଡ଼ିଏ ଉପଭାଷା ପ୍ରଚଳିତ ଥିଲା । ସେସବୁ ମଧ୍ୟରୁ ଅନ୍ୟତମ ହେଉଛି ପାଲି ଉପଭାଷା ଏବଂ ଏହି ଉପଭାଷାରେ ଲିଖିତ ଏକ ମୂଳ ବୌଦ୍ଧ ଗ୍ରନ୍ଥ ଆମର ହସ୍ତଗତ ହୋଇଛି । ପ୍ରଚଳିତ ଲୋକ ପ୍ରବାଦ ଅନୁସାରେ ଏହି ଗ୍ରନ୍ଥଟି ଶ୍ରୀଲଙ୍କାରେ ଖ୍ରୀଷ୍ଟ ପୂର୍ବ ୮୦ରେ ଲିଖିତ ହୋଇଥିଲା । ପତଞ୍ଜଳି ତାଙ୍କ ବ୍ୟାକରଣରେ ପ୍ରାକୃତ ଭାଷାରେ ଲିଖିତ ବହୁ ଗ୍ରନ୍ଥର ନାମ ଉଲ୍ଲେଖ କରିଛନ୍ତି । ଏହି ସମୟରେ ଭାରତୀୟ ସାହିତ୍ୟରେ ଯାହାକୁ କାବ୍ୟ କୁହାଯାଏ, ସେହି ଛନ୍ଦୋବଦ୍ଧ ପଦମାଳା ଏବଂ ସଂସ୍କୃତ ଭାଷାରେ ଲେଖା ରାଜନୀତି ଓ ନୀତିଶାସ୍ତ୍ର ସଂପର୍କିତ ଗ୍ରନ୍ଥାଦି ଥିଲା ।

ପାଣିନି ଏବଂ ପତଞ୍ଜଳିଙ୍କ ରଚନାବଳୀରେ ଯେଉଁସବୁ ତଥ୍ୟ ମିଳେ, ସେଥିରୁ ମଧ୍ୟ ଏହି ଧାରଣା ଜାତ ହୁଏ ଯେ, ସେତେବେଳେ ଭାରତରେ ନାଟକ ରଚିତ ହୋଇଥିଲା । ପତଞ୍ଜଳିଙ୍କ ବ୍ୟାକରଣରେ ଅଭିନେତାବର୍ଗ, ରଙ୍ଗମଞ୍ଚ, ବାଦ୍ୟ ଯନ୍ତ୍ର, ଆଦିର ଉଲ୍ଲେଖ ଅଛି ।

## ସ୍ଥାପତ୍ୟ ଏବଂ ଭାସ୍କର୍ଯ୍ୟ

ମଗଧ ଏବଂ ମୌର୍ଯ୍ୟ ଯୁଗରେ ଅଧିକାଂଶ ଘର କାଠ ନିର୍ମିତ ଥିଲା । ସେଇ କାରଣରୁ ସେସବୁର କେତେକ ଟୁକୁରାର ଭଗ୍ନାଂଶମାତ୍ର ଏପର୍ଯ୍ୟନ୍ତ ରହି ଯାଇଛି । ତେବେ ଏହି ସମୟରେ ଘର ନିର୍ମାଣରେ ପଥରର ବ୍ୟବହାର ମଧ୍ୟ କ୍ରମଶଃ ଆରମ୍ଭ ହୋଇ ଯାଇଥିଲା । ପ୍ରାଚୀନ ପାଟଳୀପୁତ୍ରର ଖନନ କ୍ଷେତ୍ରରେ ଖନନ କାର୍ଯ୍ୟ ପରିଚାଳନା ଦ୍ୱାରା ରାଜ ପ୍ରାସାଦର ଏବଂ "ଶତ ସ୍ତମ୍ଭ ଯୁକ୍ତ" ସଭା ଗୃହର ଅଂଶାବଶେଷ ଆବିଷ୍କୃତ ହୋଇଛି । ଏହି ଧରଣର ଧର୍ମ ନିରପେକ୍ଷ ଅଟ୍ଟାଳିକା ବ୍ୟତୀତ ଏହି

ଯୁଗର ଆବିଷ୍କୃତ ଧର୍ମମନ୍ଦିରଗୁଡ଼ିକ ମଧ୍ୟ ବିପୁଳ ଆଗ୍ରହୋଦ୍ଦୀପକ, ବିଶେଷ କରି ଆନୁମାନିକ ଖ୍ରୀଷ୍ଟ ପୂର୍ବ ତୃତୀୟ ଓ ଦ୍ୱିତୀୟ ଶତାବ୍ଦୀରେ ନିର୍ମିତ ସାଞ୍ଚି ଓ ଭରହୁତର ବୌଦ୍ଧ ସ୍ତୂପଗୁଡ଼ିକ ।

ମୌର୍ଯ୍ୟ ଯୁଗରେ ଭାସ୍କର୍ଯ୍ୟ ଶିଳ୍ପର କେତେକ ସ୍ଥାନୀୟ ଶୈଳୀ ବିକାଶ ଲାଭ କରିଥିଲା । ଏସବୁ ମଧ୍ୟରେ ସବୁଠାରୁ ଉଲ୍ଲେଖଯୋଗ୍ୟ ହେଉଛି ତକ୍ଷଶିଳାକୁ କେନ୍ଦ୍ର କରି ଉତ୍ତର-ପଶ୍ଚିମର ଏବଂ ତୋସାଳିକୁ କେନ୍ଦ୍ର କରି ପୂର୍ବାଞ୍ଚଳର ଶୈଳୀଗୁଡ଼ିକ । ଅଶୋକଙ୍କ ଅନୁଶାସନସବୁ ଯେଉଁସବୁ ସ୍ତମ୍ଭରେ ଖୋଦିତ ହୋଇଛି, ସେସବୁର ଦେହରେ ପ୍ରକଟିତ ଶିଳ୍ପକଳାରେ ଉଚ୍ଚ ମାନର ଦକ୍ଷତା ଦେଖିବାକୁ ମିଳେ । ମୌର୍ଯ୍ୟ ଯୁଗର ସଂସ୍କୃତିରେ, ବିଶେଷ କରି ସେ ଯୁଗର ଉତ୍ତର-ପଶ୍ଚିମ ଅଞ୍ଚଳର ସଂସ୍କୃତିରେ ଆକିମେନିଡ୍ ସଂସ୍କୃତିର କେତେକ ପ୍ରଭାବ ଲକ୍ଷ୍ୟ କରାଯାଏ । କିନ୍ତୁ ସାଧାରଣ ଭାବେ କହିବାକୁ ଗଲେ, ଏହି ଯୁଗର ପ୍ରାଚୀନ ଭାରତୀୟ ସଂସ୍କୃତି ଥିଲା ମୂଳତଃ ଭାରତୀୟ ଏବଂ ସ୍ୱକୀୟ ବୈଶିଷ୍ଟ୍ୟପୂର୍ଣ୍ଣ । ଏହି ସଂସ୍କୃତି ଗଢ଼ି ଉଠିଥିଲା ସ୍ଥାନୀୟ ଐତିହ୍ୟର ଭିତ୍ତି ଉପରେ ।

## ରାଜନୈତିକ ଧାରଣା

ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ଦ୍ୱିତୀୟ ଭାଗଟି ପ୍ରାଚୀନ ଭାରତର ରାଜନୈତିକ ସଂଗଠନ ଓ ରାଷ୍ଟ୍ରସତ୍ତାର ବିକାଶ କ୍ଷେତ୍ରରେ ଏକ ଅତୀବ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । ଏହି ପର୍ଯ୍ୟାୟଟି ଗଙ୍ଗା ଉପତ୍ୟକାରେ ପ୍ରଥମ ବଡ଼ ବଡ଼ ରାଷ୍ଟ୍ରର ଉତ୍ପତ୍ତି ଏବଂ ପରେ ଐକ୍ୟବଦ୍ଧ ସାମ୍ରାଜ୍ୟ ପ୍ରତିଷ୍ଠା ସହିତ ସଂଯୁକ୍ତ । ଏହି ସମୟରେ ଶାସନ ପରିଚାଳନାର ନୀତିସମୂହ ଓ ରାଷ୍ଟ୍ରସତ୍ତା ସଂପର୍କିତ ତତ୍ତ୍ୱସମୂହ ନିରୂପିତ ହୋଇଥିଲା ଏବଂ ବିଭିନ୍ନ ରାଜନୈତିକ ଧାରା ଏବଂ ଗ୍ରନ୍ଥ ରଚନା ଆରମ୍ଭ ହୋଇଥିଲା । ଏ କ୍ଷେତ୍ରରେ ବିଶେଷ ଉଲ୍ଲେଖଯୋଗ୍ୟ ହେଲା "ଅର୍ଥଶାସ୍ତ୍ର" ନାମକ ଗ୍ରନ୍ଥଟି । ଏହା ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ପ୍ରଧାନ ପରାମର୍ଶଦାତା କୌଟିଲ୍ୟଙ୍କ ରଚନା ବୋଲି ପରିଚିତ । ଏହି ରାଜନୈତିକ ଗ୍ରନ୍ଥଟିର ଅଧିକାଂଶ ଭାଗ, ଅବଶ୍ୟ, ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ଶତାବ୍ଦୀର ପ୍ରାରମ୍ଭିକ ବର୍ଷମାନଙ୍କରେ ସଂକଳିତ ବୋଲି ମନେ ହୁଏ । ତେବେ ଏଥିରେ ଆଲୋଚିତ ହୋଇଥିବା ରାଷ୍ଟ୍ର ନୀତି ସଂପର୍କିତ ଧାରଣା ଓ ନୀତିସମୂହ ମୌର୍ଯ୍ୟ ଯୁଗର ଭାବନାର ପ୍ରତିଫଳନ ।

ମଗଧ ଏବଂ ମୌର୍ଯ୍ୟ ଯୁଗରେ ରାଜାଶାସିତ ରାଜ୍ୟଗୁଡ଼ିକର ପାଖାପାଖି ପ୍ରଜାତନ୍ତ୍ରୀୟ ରାଜ୍ୟସବୁର ଅସ୍ତିତ୍ୱ ଥିଲା । ତେବେ ଏହି ସମୟରେ ରାଜାଶାସିତ ରାଜ୍ୟ ହିଁ ଥିଲା ସବୁଠାରୁ ବ୍ୟାପକ ପ୍ରଚଳିତ ରାଜଶକ୍ତିର ରୂପ । ପ୍ରାଚୀନ ଭାରତୀୟମାନେ ନିଜେ କହିଛନ୍ତି ଯେ, ଚିରକାଳ ଧରି ରାଷ୍ଟ୍ରର ଅସ୍ତିତ୍ୱ ନଥିଲା, (ଈଶ୍ୱରଙ୍କ ଦୟାରୁ) ରାଷ୍ଟ୍ରର ଉତ୍ପତ୍ତି ଘଟିଥିଲା ସେତିକିବେଳେ, ଯେତେବେଳେ ମଣିଷ ମଧ୍ୟରେ ଅପେକ୍ଷାକୃତ ଶକ୍ତିଶାଳୀମାନେ, ଛୋଟ ଛୋଟ ମାଛକୁ ବଡ଼ ମାଛମାନେ ଭକ୍ଷଣ କଲା ଭଳି, ଦୁର୍ବଳମାନଙ୍କୁ ଗ୍ରାସ କରିବାକୁ ଆରମ୍ଭ କରି ଦେଲେ, ଏହି ମତ୍ସ୍ୟନ୍ୟାୟ ବିରୁଦ୍ଧରେ ମନୁଷ୍ୟ ସମାଜରେ ଆଇନ୍ ଶୃଙ୍ଖଳା ପ୍ରବର୍ତ୍ତନ କରିବା ଆବଶ୍ୟକ ହୋଇ ପଡ଼ିଲା । "ଅର୍ଥଶାସ୍ତ୍ରର" ରଚୟିତା କୌଟିଲ୍ୟଙ୍କ ମତରେ, ରାଷ୍ଟ୍ରର ଏକ ଅତୀବ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ହେଲା ସାମାଜିକ ବୈଷମ୍ୟକୁ, ଅର୍ଥାତ୍, ଚତୁର୍ବର୍ଣ୍ଣଭିତ୍ତିକ ସାମାଜିକ ସ୍ତରଭେଦକୁ ବଜାଏ ରଖିବା । ରାଜାକୁ ତା'ର ପ୍ରଜାବର୍ଗଙ୍କୁ ରକ୍ଷା କରିବାକୁ ପଡ଼ୁଥିଲା, ତେଣୁ ଦୋଷୀକୁ ଶାସ୍ତିଦାନ କରିବା ଥିଲା ରାଜକାର୍ଯ୍ୟର ଏକ ଅଙ୍ଗ ।

ବସ୍ତୁତଃ, ରାଷ୍ଟ୍ରଶାସନର ବିଜ୍ଞାନ ସେତେବେଳେ ଶାସ୍ତିଦାନର ବିଜ୍ଞାନ ହିସାବରେ ପରିଚିତ ଥିଲା । ମଣିଷକୁ ପରିଗ୍ଳନା କରିବାର ସର୍ବୋତ୍ତମ ଉପାୟ ହେଲା ଶାସ୍ତିଦାନ—ପ୍ରାଚୀନ କାଳର ରାଷ୍ଟ୍ର ବିଜ୍ଞାନୀମାନଙ୍କ ମଧ୍ୟରେ ଏହି ଅର୍ଥରେ ଏକ ମତ ପ୍ରଚଳିତ ଥିଲା ବୋଲି କୌଟିଲ୍ୟ ଉଲ୍ଲେଖ କରିଛନ୍ତି ।

ତତ୍କାଳୀନ ରାଜନୀତିବିଦ୍‌ମାନେ ମନେ କରୁଥିଲେ, ସବୁଠାରୁ ବିପଜ୍ଜନକ ଧରଣର ଅଶାନ୍ତି ହେଉଛି ଆଭ୍ୟନ୍ତରୀଣ ବିକ୍ଷୋଭ । କୌଟିଲ୍ୟ ରାଜାଙ୍କୁ ସିଧାସଳଖ ସମ୍ବୋଧନ କରି ଲେଖିଛନ୍ତି, ଆଭ୍ୟନ୍ତରୀଣ ବିକ୍ଷୋଭ ବାହାରରୁ ଆବିର୍ଭୂତ ଅଶାନ୍ତି ଠାରୁ ଅନେକ ଭୟଙ୍କର । କାରଣ, ଏହା ଫଳରେ, ଏପରିକି ରାଜସଭାରେ ଏବଂ ରାଜାର ଅନୁଚରବର୍ଗଙ୍କ ମଧ୍ୟରେ ସାଧାରଣ ଭାବେ ଏକ ଅବିଶ୍ୱାସର ମନୋଭାବ ଗଢ଼ିଉଠେ । ଗୁଇନ୍ଦା ବିଭାଗ ସୃଷ୍ଟି କରିବା ଏବଂ ରାଜନୀତିରେ ଗୋପନ କୂଟକୌଶଳ ପ୍ରୟୋଗ ପ୍ରତି ବିଶେଷ ନଜର ସେତେବେଳେ ଦିଆଯାଉଥିଲା । କୌଟିଲ୍ୟ ରାଜାକୁ ପରାମର୍ଶ ଦେଇଥିଲେ ଯେ, ରାଜକର୍ମଗ୍ଭରୀମାନଙ୍କୁ ଉତ୍କୋଚ ଦେବାର ବ୍ୟବସ୍ଥା କରିବାକୁ ଏବଂ ସେମାନଙ୍କ ପଛରେ ଗୁପ୍ତଚର ନିଯୁକ୍ତ କରି ରାଜକର୍ମଗ୍ଭରୀମାନଙ୍କ ମଧ୍ୟରେ ପରସ୍ପର ପ୍ରତି ମନୋମାଳିନ୍ୟ ସୃଷ୍ଟି କରିବାକୁ । ତଦୁପରି ରାଜାର ସମର୍ଥକ ଓ ଶତ୍ରୁମାନଙ୍କ ପ୍ରତି କେବଳ ଖୋଲଖୋଲି ଭାବେ ନୁହଁ, ଗୋପନରେ ଶାସ୍ତିଦାନର ବ୍ୟବସ୍ଥା ପ୍ରଚଳନ କରିବାକୁ ।

ବାସ୍ତବ ବୈଷୟିକ ସ୍ୱାର୍ଥକୁ କୌଟିଲ୍ୟ ସବୁକିଛି ଉପରେ ସ୍ଥାନ ଦେଇଛନ୍ତି । ଏହି ସ୍ୱାର୍ଥ ରକ୍ଷା ପାଇଁ ବ୍ରହ୍ମ ଶାସ୍ତ୍ରସମ୍ମତ ବିଧିବିଧାନରୁ ସାମାନ୍ୟ ବିଚ୍ୟୁତି ହେବାକୁ ସେ ମାନି ନେଇଛନ୍ତି । ତାଙ୍କ ଦୃଷ୍ଟିଭଙ୍ଗି ଅନୁଯାୟୀ, ଯଦି କୌଣସି ସରକାରୀ ନିର୍ଦ୍ଦେଶ ବିଧିବଦ୍ଧ ଆଇନ୍‌ର ସୀମାକୁ ଲଙ୍ଘନ କରେ, ତେବେ ସେ କ୍ଷେତ୍ରରେ ଏହି ବେଆଇନୀ ସରକାରୀ ନିର୍ଦ୍ଦେଶକୁ ହିଁ ପ୍ରାଧାନ୍ୟ ଦେବା ଉଚିତ ।

ରାଜା ଆର୍ଥିକ ଦିଗରୁ ସଂକଟର ସମ୍ମୁଖୀନ ହେଲେ, କୌଟିଲ୍ୟ ତାଙ୍କୁ ପରାମର୍ଶ ଦେଇଛନ୍ତି, ମନ୍ଦିରଗୁଡ଼ିକର ସଂପତ୍ତିକୁ ବାଜେୟାପ୍ତ କରି ସେଇ ଅର୍ଥରେ ରାଜକୋଷକୁ ପୂର୍ଣ୍ଣ କରିବା ପାଇଁ । କୌଟିଲ୍ୟ ଏଭଳି କେତେକ କୌଶଳ ମଧ୍ୟ ଉଦ୍‌ଭାବନ କରିଥିଲେ, ଯାହାକୁ ବ୍ୟବହାର କରି ରାଜା ତାଙ୍କ ପ୍ରଜାବର୍ଗଙ୍କର ଧର୍ମୀୟ କୁସଂସ୍କାରକୁ ନିଜ ସ୍ୱାର୍ଥରେ କାର୍ଯ୍ୟରେ ଲଗାଇ ପାରନ୍ତି ଏବଂ ପ୍ରଜାମାନଙ୍କ ମଧ୍ୟରେ ଏହି ଧାରଣା ଜନ୍ମାଇ ପାରନ୍ତି ଯେ, ରାଜା ଅଲୌକିକ ଶକ୍ତିର ଅଧିକାରୀ ।

ଏହି ଯୁଗରେ ବିଭିନ୍ନ ରାଷ୍ଟ୍ର ମଧ୍ୟରେ ସଂପର୍କ ସ୍ଥାପନର, ଯୁଦ୍ଧ ପରିଗ୍ଳନା ଏବଂ ଶାନ୍ତି ସ୍ଥାପନ ସଂପର୍କିତ ଆଲୋଚନାର ବହୁବିଧ ପଦ୍ଧତି ଉଦ୍‌ଭାବିତ ହୋଇଥିଲା । ରାଷ୍ଟ୍ର ପରିଗ୍ଳନା କ୍ଷେତ୍ରରେ ଏକ ଅତୀବ ଗୁରୁତ୍ୱପୂର୍ଣ୍ଣ ବିଷୟ ଥିଲା ବୈଦେଶିକ ନୀତି । "ଅର୍ଥଶାସ୍ତ୍ରରେ" ବୈଦେଶିକ ନୀତି ପରିଗ୍ଳନାର ଛଅଟି ପ୍ରଧାନ ପଦ୍ଧତି ବିବୃତ ହୋଇଛି । ଯଥା, ଶାନ୍ତି, ଯୁଦ୍ଧ, ପର୍ଯ୍ୟବେକ୍ଷଣ ଓ ପ୍ରତୀକ୍ଷା, ଆକ୍ରମଣ, ପ୍ରତିରକ୍ଷାର ଉପାୟାଦି ସନ୍ଧାନ ଏବଂ ଦ୍ୱିମୁଖୀ ରାଷ୍ଟ୍ରନୀତି । ରାଜଦୂତଙ୍କ କାର୍ଯ୍ୟକଳାପ ସଂପର୍କରେ ବିଶେଷ ଦୃଷ୍ଟି ଦିଆଯାଇଛି । ଏହି ରାଜଦୂତମାନଙ୍କର କାର୍ଯ୍ୟକଳାପର ପରିସର ସେତେବେଳେ ଅତ୍ୟନ୍ତ ବ୍ୟାପକ ଥିଲା । ରାଷ୍ଟ୍ରୀୟ ଚୁକ୍ତିର ସର୍ତ୍ତାଦି ପାଳନ ଏବଂ ନିଜ ରାଷ୍ଟ୍ର ମର୍ଯ୍ୟାଦା ରକ୍ଷା କରିବା ଛଡ଼ା, କୌଟିଲ୍ୟଙ୍କ ମତରେ, ରାଜଦୂତଙ୍କର କାର୍ଯ୍ୟ ହେଲା ବନ୍ଧୁ ରାଷ୍ଟ୍ରମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି କରି ଦେବା, ଗୋପନ ଷଡ଼ଯନ୍ତ୍ର ଆଦି ଭିଆଇବା, ସୈନ୍ୟଦଳଙ୍କୁ ଗୋପନରେ ସ୍ଥାନାନ୍ତରିତ କରିବା, ଆଦି । ଅର୍ଥାତ୍, ସମ୍ଭାବ୍ୟ ସମସ୍ତ ପ୍ରକାରର ଦୁଷ୍କର୍ମ ସାଧନ କରିବା । ପ୍ରତିବେଶୀ ରାଷ୍ଟ୍ରଗୁଡ଼ିକୁ ସାଧାରଣତଃ ଶତ୍ରୁ ହିସାବରେ ଗଣ୍ୟ କରାଯାଉଥିଲା ବୋଲି ସେମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାର

ଉପାୟାଦି ଏହି ଗ୍ରନ୍ଥଟିରେ ବିଶଦ ଭାବେ ବର୍ଣ୍ଣିତ ହୋଇଛି । ପ୍ରତିବେଶୀର ପ୍ରତିବେଶୀଙ୍କୁ, ଅବଶ୍ୟ, ବନ୍ଧୁ ବୋଲି ଗଣ୍ୟ କରାଯାଉଥିଲା, ତେବେ ସେଇ ବନ୍ଧୁର ପ୍ରତିବେଶୀ ରାଷ୍ଟ୍ରକୁ ପୁଣି ଗଣ୍ୟ କରାଯାଉଥିଲା ଶତ୍ରୁ ହିସାବରେ । ଅନ୍ୟ ରାଜ୍ୟକୁ ଆକ୍ରମଣ କରିବା ପକ୍ଷରେ ସବୁଠାରୁ ସୁବିଧାଜନକ ପରିସ୍ଥିତି ସଂପର୍କରେ ଲେଖିବାକୁ ଯାଇ କୌଟିଲ୍ୟ କହିଛନ୍ତି, ସମ୍ଭାବ୍ୟ ଶତ୍ରୁ ଦେଶର ଆର୍ଥିକ ଅବସ୍ଥା ଏବଂ ସେ ରାଜ୍ୟରେ ରାଜା ସହିତ ପ୍ରଜାବର୍ଗଙ୍କର ସଂପର୍କ ବିଷୟଟିକୁ ମଧ୍ୟ ବିଗ୍ଭର କରିବାକୁ ପଡ଼େ । ଏ ବିଷୟରେ କୌଟିଲ୍ୟଙ୍କ ମତ ହେଉଛି, ଏଭଳି ଏକ ଦେଶରେ ପ୍ରଜାମାନେ ଯଦି ରାଜା ବିରୁଦ୍ଧରେ ଆନ୍ଦୋଳନ କରୁଥାନ୍ତି, ତେବେ ଆପାତଃ ଦୃଷ୍ଟିରେ ସେହି ରାଜା ଶକ୍ତିଶାଳୀ ବୋଲି ମନେ ହେଲେ ମଧ୍ୟ ପ୍ରଜାମାନେ ସେ ରାଜାର ପତନ ଘଟାଇ ପାରନ୍ତି । ଏହି କାରଣରୁ ପ୍ରଜାମାନେ ଯେଉଁ ରାଜାର ଶତ୍ରୁ, ତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ବିଶେଷ ଗୁରୁତ୍ୱପୂର୍ଣ୍ଣ ବୋଲି କୌଟିଲ୍ୟ ମନେ କରୁଥିଲେ ।

ପ୍ରାଚୀନ ଭାରତରେ ରାଜନୈତିକ ତତ୍ତ୍ୱର ଉଦ୍‌ଭାବନ କ୍ଷେତ୍ରରେ ବଡ଼ ବଡ଼ ସାଫଲ୍ୟ ମୂଳରେ ଥିଲା ପ୍ରତ୍ୟକ୍ଷ ଭାବେ ବୈଜ୍ଞାନିକ ଜ୍ଞାନର ଅଗ୍ରଗତି ଏବଂ ସମାଜ ବିକାଶ କ୍ଷେତ୍ରରେ ସାମଗ୍ରିକ ପ୍ରଗତି ।

ଏହା ବିଶେଷ ଭାବେ ଲକ୍ଷଣୀୟ ଯେ, ଜ୍ଞାନର ଗ୍ଭରୋଟି ଶାଖା ବୋଇଲେ କୌଟିଲ୍ୟ କହିଛନ୍ତି – ଦର୍ଶନଶାସ୍ତ୍ର (ଅନ୍ୱୀକ୍ଷିକୀ), "ବେଦ ପାଠ", ଅର୍ଥଶାସ୍ତ୍ର ପାଠ ଓ ରାଷ୍ଟ୍ରଶାସନ ସଂପର୍କିତ ପାଠ (ଦଣ୍ଡନୀତି) । ପ୍ରଧାନ ପ୍ରଧାନ ଜ୍ଞାନ ବିଜ୍ଞାନ ମଧ୍ୟରେ ଦର୍ଶନଶାସ୍ତ୍ରକୁ ଯେ ସେ ପ୍ରଥମ ସ୍ଥାନ ଦେଇଥିଲେ, ଏହା ଏକେବାରେ ଏକ ଆକସ୍ମିକ ବିଷୟ ନୁହେଁ । ସେ ତିନୋଟି ଦାର୍ଶନିକ ମତବାଦ ଧାରାର କଥା ଉଲ୍ଲେଖ କରିଛନ୍ତି । ସେଗୁଡ଼ିକ ହେଉଛି – ଲୋକାୟତ, ସାଂଖ୍ୟ ଓ ଯୋଗ । କୌଟିଲ୍ୟଙ୍କ ମତରେ, ଦର୍ଶନଶାସ୍ତ୍ରରେ ଦଖଲ ଥିଲେ ରାଜ୍ୟ ପରିଗ୍ଭଳନା କାର୍ଯ୍ୟରେ ସାଫଲ୍ୟ ଲାଭ କରି ହୁଏ ।

ବହୁବିଧ ଧ୍ୟାନଧାରଣା ଘେନି ଅନୁସନ୍ଧାନ ଏବଂ ସେସବୁ ବିଶ୍ଳେଷଣ କ୍ଷେତ୍ରରେ ଗଭୀରତା ପ୍ରାଚୀନ ଭାରତର ରାଷ୍ଟ୍ର ବିଜ୍ଞାନକୁ ପ୍ରାଚୀନ ଗ୍ରୀସ୍‌ର ରାଷ୍ଟ୍ର ବିଜ୍ଞାନ ସହିତ ସମକକ୍ଷ କରି ପାରିଛି ଏବଂ କୌଟିଲ୍ୟଙ୍କୁ ପ୍ରାଚୀନ ଯୁଗର ଅନ୍ୟତମ ଶ୍ରେଷ୍ଠ ଚିନ୍ତାବିଦ୍ ଆରିଷ୍ଟୋଟଲଙ୍କ ସହିତ ସମାନ ଆସନରେ ପ୍ରତିଷ୍ଠିତ କରିଛି ।

# ମୌର୍ଯ୍ୟ ଯୁଗର ଧର୍ମମତସମୂହ

ପ୍ରାଚୀନ ଭାରତରେ ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ମଧ୍ୟ ଭାଗଟି ଥିଲା ଧର୍ମମତ ଓ ଦର୍ଶନଶାସ୍ତ୍ର କ୍ଷେତ୍ରରେ ଅନୁସନ୍ଧାନ ଆଉ ସଂସ୍କାର ସାଧନର କାଳ । ଧର୍ମମତ ହିସାବରେ ବେଦବାଦର ପ୍ରଭାବ ସେତେବେଳେ କେତେକ ପରିମାଣରେ ହ୍ରାସ ପାଇଥିଲା । ବେଦସମୂହର ପୌରାଣିକ ଅବଧାରଣାର ଆଦିମ ପ୍ରକୃତି, ବେଦର ଜଟିଳ ଓ ପୁରାଣାଳାଳିଆ କର୍ମକାଣ୍ଡ, ପୁରୋହିତମାନଙ୍କର ଘୃଣ୍ୟ ବୈଷୟିକ ଦାବୀ (ଉନ୍ନତତର ଜ୍ଞାନର ଅଧିକାରୀ ବୋଲି ପୁରୋହିତମାନଙ୍କ ସଂପର୍କରେ ଇତିପୂର୍ବରୁ

ଲୋକମାନଙ୍କର ଯେଉଁ ମୋହ ଥିଲା, ସେଥିରୁ ମୁକ୍ତ ହେବା ଫଳରେ) ଆଦି ଆଉ ନୂଆ ଯୁଗର ମନୋଭାବ ସହିତ ଖାପ ଖାଉ ନଥିଲା, ଫଳରେ ପ୍ରତିବାଦ କ୍ରମଶଃ ପ୍ରବଳ ହୋଇ ଉଠିଥିଲା । ବିଶ୍ୱାସର ଏହି ସଂକଟକୁ ଅତିକ୍ରମ କରିବାର ପ୍ରଚେଷ୍ଟା ସ୍ୱରୂପ ଏଭଳି ଏକ ଧର୍ମ ଆନ୍ଦୋଳନ ଦେଖା ଦେଲା, ଯାହାକି ନିଜକୁ ପ୍ରତିଫଳିତ କରିଥିଲା ଉପନିଷଦସମୂହରେ । ସାମଗ୍ରିକ ଭାବେ ବିଗ୍ଭର କଲେ, ଏହି ଧର୍ମ ଆନ୍ଦୋଳନ, ଅବଶ୍ୟ, ବେଦବାଦକୁ ପ୍ରତ୍ୟାଖ୍ୟାନ କଲା ନାହିଁ, ତେବେ ନୂଆ ଏବଂ ତତ୍ତ୍ୱଗତ ଭାବେ ଅପେକ୍ଷାକୃତ ଏକ ଦୃଢ଼ ଭିତ୍ତି ଉପରେ ଦଣ୍ଡାୟମାନ ହୋଇ ବୈଦିକ ମତବାଦରେ ନୂତନ ଜୀବନ ସଞ୍ଚାର କରିବାକୁ ଏହା ପ୍ରୟାସ କଲା । ପ୍ରାଚୀନ ପରମ୍ପରାର ନିଷ୍ଠାପର ବାହକମାନେ ସେଇସବୁ ଧର୍ମୀୟ ପ୍ରବଣତା ଓ ମତବାଦ ବିରୁଦ୍ଧରେ ନିୟମିତ ଭାବେ ଦୃଢ଼ ସଂଗ୍ରାମ ଆରମ୍ଭ କରି ଦେଲେ, ଯେଉଁସବୁଥିରେ ସଂସାରର ନୂତନ ନୀତିସମୂହ ନିହିତ ଥିଲା । ରକ୍ଷଣଶୀଳମାନେ ଏହି ପରବର୍ତ୍ତୀମାନଙ୍କୁ "ଅ-ସନାତନୀ" ବୋଲି ଆଖ୍ୟା ଦେଇଥିଲେ (ଅର୍ଥାତ୍, ବେଦସମୂହର କର୍ତ୍ତୃତ୍ୱରେ ଅବିଶ୍ୱାସୀ) ଏବଂ ଏମାନଙ୍କ ମଧ୍ୟରେ ସେଇ ସମୟର ନବଉଦ୍‌ଭୂତ ଦୁଇଟି ଧର୍ମମତ – ଜୈନ ଓ ବୌଦ୍ଧ ଧର୍ମକୁ ଏବଂ ଭାରତୀୟ ଦର୍ଶନ କ୍ଷେତ୍ରରେ ବସ୍ତୁବାଦୀ ଭାବଧାରାକୁ ପ୍ରକାଶ କରୁଥିବା ଅନ୍ୟାନ୍ୟ ସମସ୍ତ ଦାର୍ଶନିକ ମତାଦର୍ଶକୁ ଅନ୍ତର୍ଭୁକ୍ତ କରିଥିଲେ । ଉପରୋକ୍ତ ଏହିସବୁ ଦାର୍ଶନିକ ମତାଦର୍ଶ ସେତେବେଳେ ଖୋଲାଖୋଲି ଭାବେ ବୈଦିକ ଧର୍ମମତର ଅପରିବର୍ତ୍ତନୀୟତାର ଚାହିଦାକୁ ଅସ୍ୱୀକାର କରିଥିଲା ।

ପ୍ରାରମ୍ଭିକ ଉପନିଷଦସମୂହ ଏବଂ ବ୍ରାହ୍ମଣ୍ୟବାଦର ଅଧୀନତାରୁ ମୂଳତଃ ମୁକ୍ତ ନୂତନ ଧର୍ମୀୟ ଓ ଦାର୍ଶନିକ ମତବାଦଗୁଡ଼ିକର ଉଦ୍‌ଭବର ମଧ୍ୟବର୍ତ୍ତୀ ପର୍ଯ୍ୟାୟରେ ଏଭଳି ଏକ ସମୟ ଆସିଥିଲା, ଯେଉଁ ସମୟରେ ଗଭୀର ଆଧ୍ୟାତ୍ମିକ ଅନୁସନ୍ଧାନ କାର୍ଯ୍ୟ ହୋଇଥିଲା । ଏହି ସମୟରେ ବହୁସଂଖ୍ୟକ ସନ୍ନ୍ୟାସୀ ସାଧାରଣ ଗୃହୀର ଦୈନନ୍ଦିନ ଜୀବନ ଓ ପ୍ରାଚୀନ ଧର୍ମମତର ପରମ୍ପରା ସହିତ ସମସ୍ତ ସଂପର୍କ ଛେଦ କରିଥିଲେ । ଏହିମାନେ ଉପରୋକ୍ତ ଭାବାଦର୍ଶସମୂହର ପ୍ରବକ୍ତା ହୋଇ ଦେଖା ଦେଇଥିଲେ । ଏମାନେ ପରିବ୍ରାଜକ (ଆକ୍ଷରିକ ଅର୍ଥରେ ଭ୍ରମଣକାରୀ ବା ତୀର୍ଥଯାତ୍ରୀ) ଓ ଶ୍ରମଣ ନାମରେ ପରିଚିତ ଥିଲେ । (ପରବର୍ତ୍ତୀ କାଳରେ ଶ୍ରମଣର ଅର୍ଥ ଅବୈଦିକ ପନ୍ଥାନୁଗାମୀ ସନ୍ନ୍ୟାସୀ ବୁଝାଇଲା) ପ୍ରାରମ୍ଭରେ ଏହି ଶ୍ରମଣମାନେ ସେମାନଙ୍କ ନିଜସ୍ୱ ମଠ ଏବଂ ସଂପ୍ରଦାୟ ଗଢ଼ି ତୋଳିଥିଲେ । କିନ୍ତୁ ପରେ ଅପେକ୍ଷାକୃତ ସ୍ୱନାମଧନ୍ୟ "ଭ୍ରମଣକାରୀମାନଙ୍କୁ" କେନ୍ଦ୍ର କରି ଅନୁରକ୍ତ ଅନୁଗାମୀମାନେ ଏକତ୍ରିତ ହେବାକୁ ଆରମ୍ଭ କରି ଦେଲେ ।

"ବୌଦ୍ଧିକ ଆଲୋଡ଼ନର" ଏହି ପର୍ଯ୍ୟାୟରେ ବହୁ ମତବାଦ ଏବଂ ମତାଦର୍ଶର ଉଦୟ ଘଟିଲା । ତେବେ ଏହି ସମୟର ପ୍ରଧାନ ସଂସାର ସାଧକ ମତବାଦର ପ୍ରତିଷ୍ଠାତାମାନେ ଏହିସବୁ ମତାଦର୍ଶର ଅନେକ ଜିନିଷକୁ ଗ୍ରହଣ କରି ନେଇ ସେସବୁକୁ ଆଉରି ବିସ୍ତାରିତ, ବିଶଦ କରିଥିଲେ । ପ୍ରାରମ୍ଭରେ ସମସ୍ତ ଶ୍ରମଣ ସଂପ୍ରଦାୟ ବେଦର କର୍ତ୍ତୃତ୍ୱକୁ ମାନି ନେବାକୁ ଅସ୍ୱୀକାର କରିଥିଲେ, ବେଦଭିତ୍ତିକ ମତାଦର୍ଶଗତ ଓ ସାମାଜିକ ନିୟମକୁ ମାନିବାକୁ ସେମାନେ ରାଜି ହେଲେ ନାହିଁ । ସ୍ୱାଭାବତଃ, ଏହା ଫଳରେ "ପରମ ଜ୍ଞାନର" ଏକମାତ୍ର ଅଧିକାରୀ ହିସାବରେ ବ୍ରାହ୍ମଣମାନଙ୍କର ଦାବୀ ସିଧାସଳଖ ପ୍ରତ୍ୟାଖ୍ୟାତ ହେଲା । ଅଥଚ ଇତିପୂର୍ବରୁ ଏହି ଜ୍ଞାନକୁ ସାଧାରଣ ଲୋକଙ୍କ ଅଧିକାର ବହିର୍ଭୂତ ବୋଲି ଗଣ୍ୟ ହୋଇ ଆସିଥିଲା । ବ୍ରାହ୍ମଣମାନଙ୍କର ଜ୍ଞାନାର୍ଜନର ଏହି ବିଶେଷ ଅଧିକାର ବୈଦିକ ସମାଜରେ

ବର୍ଣ୍ଣଶ୍ରେଷ୍ଠ ହିସାବରେ ସେମାନଙ୍କୁ ଗଣ୍ୟ ହେବା ପକ୍ଷରେ ଏକ ଯୁକ୍ତି ସ୍ୱରୂପ ଥିଲା । କାର୍ଯ୍ୟତଃ, ଶ୍ରମଣମାନଙ୍କ ମଧ୍ୟରୁ ଏକ ବିପୁଳ ସଂଖ୍ୟାଧିକ ଅଂଶ ଅନ୍ୟାନ୍ୟ ବର୍ଣ୍ଣର ପ୍ରତିନିଧି ହୋଇଯିବା ଫଳରେ, ସେମାନେ ଯେ ପ୍ରବଳ ଦୃଢ଼ତାର ସହିତ ପୁରୋହିତମାନଙ୍କର ସାମାଜିକ ଅଧିକାରର ଦାବୀକୁ ପ୍ରତ୍ୟାଖ୍ୟାନ କରିବେ, ଏହା ଖୁବ୍ ସ୍ୱାଭାବିକ ଥିଲା ।

ଶ୍ରମଣମାନଙ୍କ ଦ୍ୱାରା ଉପସ୍ଥାପିତ ସମସ୍ତ ମତବାଦର ଆଉ ଯେଉଁ ଅପରିହାର୍ଯ୍ୟ ବୈଶିଷ୍ଟ୍ୟଟି ଥିଲା, ତାହା ହେଉଛି ନୀତିଗତ ପ୍ରଶ୍ନାଦି ସଂପର୍କରେ ସେସବୁର ଦୃଷ୍ଟିକୋଣର ଗଭୀରତା । ବୈଦିକ ସାହିତ୍ୟରେ ନିର୍ଦ୍ଦେଶିତ ଏବଂ ପ୍ରତିପାଦିତ ବର୍ଣ୍ଣଭେଦଭିତ୍ତିକ ପାରମ୍ପରିକ ସମାଜ ବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରି ସେମାନଙ୍କୁ ପ୍ରକୃତି ଏବଂ ସମାଜରେ ମଣିଷର ସ୍ଥିତି ସଂପର୍କିତ ପ୍ରଶ୍ନଟିର ସଦୁତ୍ତର ଖୋଜିବାକୁ ପଡ଼ିଥିଲା । ଏହି ଲକ୍ଷ୍ୟ ସଂଧାନରେ ନିୟୋଜିତ ତାତ୍ତ୍ୱିକ କ୍ରିୟାକଳାପର ତୀବ୍ରତା ଏହି ସଂସାର ସାଧନକାରୀ ଭାବଧାରା ମଧ୍ୟରେ କମ୍ ବେଶି ନିହିତ ଥିଲା । ଏ ବିଷୟରେ କୌଣସି ସନ୍ଦେହ ନାହିଁ ଯେ, ଜୈନ ଏବଂ ବୌଦ୍ଧ ଧର୍ମ ଗୁରୁମାନଙ୍କ ଦ୍ୱାରା ବିସ୍ତାରିତ ଭାବେ ଆଲୋଚିତ ଓ ସମାହିତ ନୈତିକ ପ୍ରଶ୍ନାବଳୀ କେବଳ ଏହି ଦୁଇ ଧର୍ମାନ୍ଦୋଳନର ନିଜସ୍ୱ ବୈଶିଷ୍ଟ୍ୟ ନୁହେଁ । ତେଣୁ ଏହି ଯୁଗର ସମସ୍ତ ଅରକ୍ଷଣଶୀଳ ଧର୍ମ ଶିକ୍ଷାର ଯାହା କିଛି ବୈଶିଷ୍ଟ୍ୟ ଆଉ ଆଗ୍ରହ ଆଚରଣର ସେଇ ନୂତନ ମାନ ସନ୍ଧାନର ପ୍ରକାଶ ମାତ୍ର ।

ଶ୍ରମଣ ସନ୍ନ୍ୟାସୀମାନଙ୍କର ଭାବଧାରାଗୁଡ଼ିକର ସାମାଜିକ ତାତ୍ପର୍ଯ୍ୟ ଭାରତ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ବିଷୟ । ଶ୍ରମଣ ଧର୍ମ ପ୍ରଚାରକମାନେ ନିଜେ କିନ୍ତୁ କୌଣସି ବିଶେଷ ଧରଣର ସାମାଜିକ କର୍ମସୂଚୀ ଘୋଷଣା କରି ନଥିଲେ । ତେବେ ସେମାନଙ୍କର ଅନେକ ଧାରଣା ଏବଂ ବିଶେଷ କରି "ବ୍ରାହ୍ମଣ୍ୟ ଭାରତ" ବିରୁଦ୍ଧରେ ସେମାନଙ୍କର ଆପୋଷହୀନ ମନୋଭାବ ବ୍ରାହ୍ମଣ୍ୟ ଧର୍ମ ଶିକ୍ଷାର ସମର୍ଥନପୂତ ଉପଜାତିଭିତ୍ତିକ ଅନୈକ୍ୟ ବିରୁଦ୍ଧରେ ସଂଗ୍ରାମରତ ପ୍ରାରମ୍ଭିକ ଯୁଗର ଭାରତୀୟ ରାଷ୍ଟ୍ରଗୁଡ଼ିକର ଶାସକମାନଙ୍କୁ ସେମାନଙ୍କର ସମ୍ଭାବ୍ୟ ସହଯୋଗୀ କରି ପାରିଥିଲା । ଭାରତର ତତ୍କାଳୀନ ରାଜନୈତିକ ଜୀବନରେ କେନ୍ଦ୍ରୀଭବନର ଯେଉଁ ପ୍ରକ୍ରିୟା ଆରମ୍ଭ ହୋଇଥିଲା, ତାହା ଧର୍ମୀୟ ଓ ଆତ୍ମିକ ଜୀବନରେ ଐକ୍ୟ ପ୍ରୟାସୀ ପ୍ରବଣତାଗୁଡ଼ିକର ଆବିର୍ଭାବ ସହିତ ମିଳି ଯାଇଥିଲା । ଏକଥା ମନେ ରଖିବା ଦରକାର ଯେ, ଏହା କୌଣସି ଆକସ୍ମିକ ଘଟଣା ନଥିଲା । କାରଣ ସେତେବେଳେ ବହୁସଂଖ୍ୟକ ପୃଥକ୍ ଓ ସ୍ୱାଧୀନ ଧର୍ମ ଗୁରୁଙ୍କ ସ୍ଥାନରେ ଦେଖା ଦେଇଥିଲା ସାରା ଭାରତ ବ୍ୟାପି ସ୍ୱୀକୃତି ଲାଭ କ୍ଷମ ଅଳ୍ପ କେତୋଟି ଧର୍ମୀୟ ମତାଦର୍ଶ ।

ଏସବୁ ମଧ୍ୟରେ କେତେକ ଧର୍ମୀୟ ମତାଦର୍ଶ, ଅବଶ୍ୟ, ସମଗ୍ର ଦେଶ ପକ୍ଷରେ ତାତ୍ପର୍ଯ୍ୟପୂର୍ଣ୍ଣ ନଥିଲା, ତେବେ ଏହିସବୁ ମତାଦର୍ଶ ସେ ଯୁଗରେ ଏବଂ ତା'ର ପରବର୍ତ୍ତୀ ଯୁଗରେ ଯେଉଁସବୁ ଧ୍ୟାନଧାରଣା ଏବଂ ଭାବନା ପ୍ରାଧାନ୍ୟ ଲାଭ କରିଥିଲା, ସେସବୁର ବିକାଶ କ୍ଷେତ୍ରରେ ବିପୁଳ ପ୍ରଭାବ ପାତ କରିଥିଲା । ପ୍ରାଚୀନ ବୌଦ୍ଧ ଗ୍ରନ୍ଥଗୁଡ଼ିକରେ ଏଭଳି ଛଅଜଣ "ପ୍ରଚଳିତ ଧର୍ମମତ ବିରୋଧୀ" ଗୁରୁଙ୍କ ନାମ ଦେଖିବାକୁ ମିଳିଥାଏ, ଯେଉଁମାନଙ୍କ ସହିତ ବୌଦ୍ଧ ଗୁରୁମାନେ ତୁମୂଳ ବିତର୍କରେ ଲିପ୍ତ ହୋଇଥିଲେ । ଏମାନଙ୍କ ମଧ୍ୟରେ ସେ ଯୁଗର ଦୁଇଜଣ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଧର୍ମୀୟ ଓ ଦାର୍ଶନିକ ଭାବଧାରା ଜୈନ ଏବଂ ଅଜୀବିକ୍‌ବାଦର ପ୍ରତିଷ୍ଠାତା ଥିଲେ ।

# ଜୈନ ଧର୍ମ ଓ ତା'ର ତତ୍ତ୍ୱ

ଭାରତର ପ୍ରାଚୀନତମ ଅବୈଦିକ ବା ଅସନାତନୀ ଧର୍ମଗୁଡ଼ିକ ମଧ୍ୟରୁ ଅନ୍ୟତମ ହେଉଛି ଜୈନ ଧର୍ମ । ଏହି ଧର୍ମର ଉତ୍ପତ୍ତି କାଳ ଏବଂ ଏହାର ପ୍ରତିଷ୍ଠାତାଙ୍କ ନାମ ପ୍ରାଚୀନ ଭାରତର ଲୋକ ଶ୍ରୁତିରୁ ଜଣାଯାଇଛି । ଜୈନ ଧର୍ମର ପ୍ରତିଷ୍ଠାତା ଥିଲେ ବିଦେହ (ବର୍ତ୍ତମାନ ବିହାର) ନିବାସୀ ବର୍ଦ୍ଧମାନ ନାମରେ କ୍ଷତ୍ରିୟ ବର୍ଣ୍ଣଜାତ ଜଣେ ବ୍ୟକ୍ତି । ଖ୍ରୀଷ୍ଟ ପୂର୍ବ ଷଷ୍ଠ ଶତାବ୍ଦୀରେ ସେ ଜୀବିତ ଥିଲେ । ତାଙ୍କୁ ତିରିଶ ବର୍ଷ ବେଳେ ସେ ପିତୃଗୃହ ତ୍ୟାଗ କରି ବଣକୁ ଚାଲି ଯାଇଥିଲେ ଏବଂ ସେଠାରେ ସନ୍ନ୍ୟାସୀ ଜୀବନଯାପନ କରି ଧ୍ୟାନମଗ୍ନ ରହିଥିଲେ (ପ୍ରାଚୀନ ଭାରତୀୟମାନଙ୍କ ପକ୍ଷରେ କୃଚ୍ଛ୍ର ସାଧନା ଦ୍ୱାରା ଦୈହିକ ବାସନାର ଦମନ ଏବଂ ତନ୍ ମଧ୍ୟ ଦେଇ, ଏକ ଦିଗରେ, ସାଧାରଣ ମାନବିକ ସ୍ପୃହା ଓ ଦୁର୍ବଳତାର ଦୂରୀକରଣ ଓ, ଅନ୍ୟ ଦିଗରେ, ମଣିଷର ମନର ଦୃଢ଼ୀକରଣ ଘଟାଇବା ବିଷୟଟି ଥିଲା ସ୍ୱତଃସିଦ୍ଧ) । ବାର ବର୍ଷ କାଳ ଏହିପରି ସନ୍ନ୍ୟାସୀ ଜୀବନଯାପନ ଏବଂ ତପମଗ୍ନ ହେଲା ପରେ ବର୍ଦ୍ଧମାନଙ୍କ ମନରେ ନୂତନ ଏକ ଧର୍ମର ନୀତିସମୂହ ରୂପ ପରିଗ୍ରହ କରିଥିଲା । ତା'ପରେ ଭାରତର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ସେ ଏହି ନୂତନ ଧର୍ମକୁ ପ୍ରଚାର କରିବାକୁ ଲାଗିଲେ ଏବଂ ବୃହତ୍ ଏକ ଶିଷ୍ୟମଣ୍ଡଳୀ ସଂଗ୍ରହ କରିଥିଲେ । ବର୍ଦ୍ଧମାନ ଅଶି ବର୍ଷରୁ ଅଧିକ କାଳ ଜୀବିତ ଥିଲେ । ପ୍ରାରମ୍ଭରେ ତାଙ୍କ ପ୍ରଚାରିତ ଧର୍ମର ବିସ୍ତାର ଘଟିଥିଲା କେବଳ ବିହାରରେ । ସେଠାରେ ସେ ବହୁ ପ୍ରଭାବଶାଳୀ ପୃଷ୍ଠପୋଷକ ପାଇଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ତାଙ୍କର ଏହି ଧର୍ମର ପ୍ରଚାର କେନ୍ଦ୍ର ଗଢ଼ି ଉଠିଥିଲା ଭାରତର ଦୂରବର୍ତ୍ତୀ ପ୍ରଦେଶମାନଙ୍କରେ । ଏହା ପରେ ଏହି ନୂତନ ଧର୍ମର ପ୍ରତିଷ୍ଠାତା ମହାବୀର ବା ଜୀନ (ବିଜୟୀ) ନାମରେ ପରିଚିତ ହୋଇଥିଲେ । ସେତେବେଳେ ଏହି ଧରଣର ସମ୍ମାନସୂଚକ ନାନା ଉପାଧି ବିଶେଷ ସମ୍ମାନୀୟ ଧର୍ମ ଗୁରୁମାନଙ୍କୁ ଦିଆଯାଉଥିଲା (ବସ୍ତୁତଃ, "ଜୈନ ଧର୍ମ" ନାମଟି ଉପରୋକ୍ତ ଏହି ଦ୍ୱିତୀୟ ଉପାଧିରୁ ଉଦ୍‌ଭୂତ ହୋଇଥିଲା । ଅର୍ଥାତ୍, ଜୀନଙ୍କ ଦ୍ୱାରା ପ୍ରଚାରିତ ଧର୍ମ ହିଁ ଜୈନ ଧର୍ମ) । ଏହି ନୂତନ ଧର୍ମରେ ସଂସାରୀଜୀବନ ପରିତ୍ୟାଗକାରୀ ବହୁ ଅନୁଗାମୀଙ୍କ ସହିତ ଅସଂଖ୍ୟ ଗୃହୀଲୋକ ମଧ୍ୟ ଅଳ୍ପ ଦିନ ମଧ୍ୟରେ ଯୋଗ ଦେଇଥିଲେ । ଏହି ଗୃହୀ ଶିଷ୍ୟମାନେ ବିଷୟ ସଂପତ୍ତି ବା ପରିବାର ତ୍ୟାଗ କଲେ ନାହିଁ ସତ, ତେବେ ଜୈନ ଧର୍ମର ନିର୍ଦ୍ଧାରିତ ରୀତିନୀତି ମାନିକି ଚଳିଲେ । ପରବର୍ତ୍ତୀ କାଳରେ ଜୈନ ଧର୍ମ କେବଳ ଭାରତର ସାଂସ୍କୃତିକ ଜୀବନରେ ନୁହେଁ, ଦେଶର ସାମାଜିକ ଜୀବନରେ ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ପାଳନ କରିଥିଲା ।*

---

* ଜୈନମାନଙ୍କର (ବର୍ଦ୍ଧମାନ ବା ଜୀନଙ୍କ ଶିଷ୍ୟମଣ୍ଡଳୀ ନିଜକୁ ଏହି ନାମରେ ଅଭିହିତ କରିଥାନ୍ତି) ବିଶ୍ୱାସ, ସେମାନଙ୍କର ଧର୍ମମତ ବହୁ ପୁରାକାଳରୁ ପ୍ରଚଳିତ ହୋଇ ଆସିଛି । ଏ ସଂପର୍କରେ ସେମାନେ ଚବିଶଜଣ ଧର୍ମ ଗୁରୁ ବା ତଥାକଥିତ "ତୀର୍ଥଙ୍କରଙ୍କ" (ଅସ୍ତିତ୍ୱର ସ୍ରୋତସ୍ୱିନୀକୁ ପଦବ୍ରଜରେ ଅତିକ୍ରମକାରୀ) ନାମ କରିଥାନ୍ତି । ସେମାନଙ୍କ ମଧ୍ୟରେ ବର୍ଦ୍ଧମାନ ହେଲେ ସର୍ବଶେଷ ତୀର୍ଥଙ୍କର । ପ୍ରକୃତରେ ଏହି ନୂତନ ଧର୍ମବିଶ୍ୱାସଟିର ସମସ୍ତ ମୁଖ୍ୟ ନୀତି ସୂତ୍ର ସହିତ ବର୍ଦ୍ଧମାନଙ୍କ ନାମ ଜଡ଼ିତ (ଅଥବା ସେସବୁ ଆଉରି ପରବର୍ତ୍ତୀ ପର୍ଯ୍ୟାୟରେ ଉଦ୍‌ଭୂତ) ।

ଜୀନଙ୍କ ଦ୍ୱାରା ପ୍ରଗ୍ଭରିତ (ଏବଂ ତାଙ୍କ ଘନିଷ୍ଠ ଶିଷ୍ୟମାନଙ୍କ ଦ୍ୱାରା ବ୍ୟାଖ୍ୟାୟିତ) ଧର୍ମ ଶିକ୍ଷାର ନିର୍ଯ୍ୟାସର ବିଶ୍ଳେଷଣ ପ୍ରାରମ୍ଭିକ ଜୈନ ଗ୍ରନ୍ଥଗୁଡ଼ିକରେ ମିଳିଥାଏ । ଏହିସବୁ ଗ୍ରନ୍ଥରେ ମଣିଷର ବିଶ୍ୱବ୍ରହ୍ମାଣ୍ଡ ସଂପର୍କରେ ଅବଧାରଣାର ଭିତ୍ତି ରୂପେ ଜଗତ ସମ୍ବନ୍ଧରେ ପଞ୍ଚେନ୍ଦ୍ରିୟ ଦ୍ୱାରା ଲବ୍ଧ ପ୍ରତ୍ୟକ୍ଷ ଜ୍ଞାନକୁ ଦର୍ଶାଯାଇଛି (ଏହି ସମୟରେ ଆବିର୍ଭୂତ ଅନ୍ୟାନ୍ୟ ଧର୍ମ ଶିକ୍ଷାରେ ଏହି କଥା କୁହାଯାଇଛି) । ବସ୍ତୁତଃ, ଏହି ବିଶେଷ ଧରଣର ବାସ୍ତବବାଦ ପ୍ରାଚୀନ କାଳରେ ଆବିର୍ଭୂତ ଅଧିକାଂଶ ଧର୍ମ ଶିକ୍ଷାର ଅଙ୍ଗୀଭୂତ (ଏହା କେବଳ ଯେ ଭାରତ କ୍ଷେତ୍ରରେ ସତ୍ୟ, ତାହା ନୁହଁ) । ଜୈନ ଧର୍ମ ଶିକ୍ଷା ଅନୁଯାୟୀ ବସ୍ତୁ ଜଗତ ଓ ଆତ୍ମିକ ଜଗତ ପରସ୍ପର ବିରୋଧୀ ନୁହନ୍ତି । ସେଥିରେ କୁହାଯାଇଛି, ମଣିଷର ଅନୁଭବ ଏବଂ ଚିନ୍ତାର କ୍ଷମତା ଜୀବନର ଠିକ୍ ସେଇ ଭଳି ଏକ ସ୍ୱାଭାବିକ ଲକ୍ଷଣ, ଯେଉଁ ଲକ୍ଷଣ ଅବିରତ ମଣିଷର ଚତୁର୍ପାର୍ଶ୍ୱସ୍ଥ ପ୍ରାକୃତିକ ଜଗତରେ ପ୍ରକାଶ ପାଉଛି । ପ୍ରଥମ ଦୃଷ୍ଟିରେ ଏହି ନୀତି ସୂତ୍ରଟିକୁ ଆଂଶିକ ଭାବେ ବସ୍ତୁବାଦୀ ଚିନ୍ତାର ଲକ୍ଷ୍ୟରେ ଏକ ପଦକ୍ଷେପ ବୋଲି ମନେ ହୋଇ ପାରେ, ତେବେ ତାହା କେବଳ ଆଂଶିକ ଭାବେ । କାରଣ ଜୈନ ଧର୍ମ ଆଲୋଚ୍ୟ ଏହି ନୀତିସୂତ୍ର ମଧ୍ୟରେ ଯେକୌଣସି ଦିଗକୁ ଯୁକ୍ତିସମ୍ମତ ସିଦ୍ଧାନ୍ତ ଟାଣିବାର ଅବକାଶ ରଖି ସୁନିୟମିତ ଭାବେ ଦୁଇଟି ସମ୍ଭାବନାକୁ ବିକଶିତ କରିଛି । ଏହି ତତ୍ତ୍ୱ କେବଳ ଯେ ଆତ୍ମିକ ଜଗତକୁ "ବସ୍ତୁଭୂତ" କରିଛି, ତା ନୁହେଁ, ବସ୍ତୁ ଜଗତକୁ ଏହା "ଆତ୍ମିକ" କରି ଦେଇଛି । ଏହା ଦ୍ୱାରା ଆତ୍ମା ସମ୍ବନ୍ଧରେ ପ୍ରାଚୀନ ଧାରଣାକୁ ସଂପୂର୍ଣ୍ଣ ଚରମ ପର୍ଯ୍ୟାୟକୁ ନିଆଯାଇଛି । ଏଥିରେ କୁହାଯାଇଛି, ଆତ୍ମା ସର୍ବଭୂତରେ ବିଦ୍ୟମାନ – ଉଦ୍‌ଭିଦ୍ ଏବଂ ଏପରିକି ପଥରର ମଧ୍ୟ ଆତ୍ମା ଅଛି । ଆତ୍ମା ଅବିନାଶୀ ଏବଂ ତାହା ଦେବତାମାନଙ୍କ ଦ୍ୱାରା ସୃଷ୍ଟ ନୁହେଁ ।

ପ୍ରତ୍ୟକ୍ଷ ଅନୁଭବରୁ ପ୍ରାପ୍ତ ତଥ୍ୟସମୂହ ଏବଂ ସେସବୁକୁ ଭିତ୍ତି କରି ସିଦ୍ଧାନ୍ତରେ ଉପନୀତ ହେବା ଛଡ଼ା ବେଦ ଏବଂ ଉପନିଷଦରେ ବିବୃତ ଧ୍ୟାନଧାରଣାର ଭିତ୍ତିରେ ଗୃହୀତ ନାନା ସିଦ୍ଧାନ୍ତ ମଧ୍ୟ ଜୈନମାନଙ୍କ ପକ୍ଷରେ ଗ୍ରାହ୍ୟ ବୋଲି ଗଣ୍ୟ ହୋଇଥିଲା । ଯଥା, ଉଦାହରଣ ସ୍ୱରୂପ, ସେମାନେ ପୁନର୍ଜନ୍ମ ତଥା ପୁନର୍ଜନ୍ମର କର୍ମଫଳ ଅନୁଯାୟୀ ନୂତନ ଜନ୍ମ ଲାଭର ସିଦ୍ଧାନ୍ତରେ ବିଶ୍ୱାସ କରୁଥିଲେ ।

ପ୍ରକୃତି ଜଗତରେ ସମସ୍ତ ବସ୍ତୁର ପ୍ରାଣ ଅଛି – ଏହି ସିଦ୍ଧାନ୍ତଟିକୁ ଜୈନମାନେ ମାନି ନେବା ଦ୍ୱାରା ଏହା ସହିତ ସେମାନଙ୍କର ଉପରୋକ୍ତ ପୁନର୍ଜନ୍ମର ଧାରଣାଟି ଚମତ୍କାର ଭାବେ ଖାପ ଖାଇଗଲା ଏବଂ ଏହା ଫଳରେ ନାନା ପ୍ରକାରର ପ୍ରାଣୀ ଏବଂ ବସ୍ତୁ ମଧ୍ୟରେ ବିଭେଦର ସୀମା ଆଉ ରହିଲା ନାହିଁ । ଅର୍ଥାତ୍, ସେମାନଙ୍କ ମତରେ, ମନୁଷ୍ୟ ପରଜନ୍ମରେ ପଥରରେ ପରିଣତ ହୋଇ ପାରେ ଏବଂ ପଥର ମଧ୍ୟ ଜନ୍ମାନ୍ତରେ ମଣିଷରେ ପରିଣତ ହୋଇ ପାରେ । ଜୈନମାନେ କହନ୍ତି, ଆତ୍ମାର ଆଧାର କ'ଣ ହେବ, ତାହା କର୍ମ ଫଳ ଉପରେ ନିର୍ଭର କରେ ଏବଂ ଜନ୍ମାନ୍ତରରେ ଆତ୍ମା ଇତର ପ୍ରାଣୀ, ମନୁଷ୍ୟ, ଦେବତା କିମ୍ବା ଦାନବ ଦେହ ଧାରଣ କରିପାରେ ।

---

ତୀର୍ଥଙ୍କରମାନଙ୍କ ସଂପର୍କରେ ଉପରୋକ୍ତ ଏହିସବୁ କାହାଣୀ ପୌରାଣିକ କଥା, ଲୋକ ଗାଥା ଏବଂ ପରବର୍ତ୍ତୀ ଯୁଗରେ ଧର୍ମ ସଂସାର ସୃଷ୍ଟିର ସମଷ୍ଟି ମାତ୍ର ।

ଅଧିକାଂଶ ପ୍ରାଚୀନ ଭାରତୀୟ ଧର୍ମମତ ଭଳି ଜୈନ ଧର୍ମର ମଧ୍ୟ କେବଳ ପରମ ଜ୍ଞାନ ଅର୍ଜନ ଦିଗରେ ମଣିଷକୁ ସହାୟତା ପ୍ରଦାନ କରିବା ମୂଳ ଲକ୍ଷ୍ୟ ନଥିଲା । ବରଂ, ଏହା ଏଭଳି ସବୁ ବିଧି ନିୟମ ନିରୂପଣ କରି ଦେଇଥିଲା, ଯାହା ଦ୍ୱାରା ମନୁଷ୍ୟକୁ ତା'ର ବାସ୍ତବ ଜୀବନରେ ଧର୍ମୀୟ ଆଦର୍ଶକୁ ଅର୍ଜନ କରି ପାରିବ । ଉପନିଷଦସମୂହରେ ଯେମିତି, ସେଇମିତି ଜୈନ ଧର୍ମରେ ମଧ୍ୟ ଏହି ଆଦର୍ଶ ହେଉଛି "ପରମ ମୁକ୍ତି", ଅର୍ଥାତ୍, ସମସ୍ତ ବାସନା କାମନା ଓ ପାର୍ଥିବ ବନ୍ଧନରୁ ମୁକ୍ତ ହୋଇ ଏଭଳି ଏକ ଅବସ୍ଥାକୁ ଉନ୍ନୀତ ହେବା, ଯେଉଁଠି ଆତ୍ମା ବିଲୀନ ହୋଇଯିବ ନୈର୍ବ୍ୟକ୍ତିକ ପରମାତ୍ମା ମଧ୍ୟରେ । ମଣିଷ ଏହି ଅବସ୍ଥା ଲାଭ କଲା ପରେ ଅସ୍ତିତ୍ୱର ସମସ୍ତ ଭୌତିକ ନିୟମରୁ ମୁକ୍ତ ହୋଇ ଯାଏ ଏବଂ ତା'ପରେ ତା'ର ଆଉ ପୁନର୍ଜନ୍ମ ଘଟେ ନାହିଁ । ଏହି "ସର୍ବ ବନ୍ଧନମୁକ୍ତ" ଆତ୍ମା ହେଉଛି ଜଗତର ସବୁ କିଛି ଠାରୁ ଶ୍ରେଷ୍ଠ, ସବୁ କିଛିର ଊର୍ଦ୍ଧ୍ୱରେ, ଏପରିକି ଦେବତାମାନଙ୍କ ଊର୍ଦ୍ଧ୍ୱରେ, କାରଣ ଦେବତାମାନେ ତ କର୍ମ ଫଳର ଅଧୀନ । ମନୁଷ୍ୟ ଏବଂ ବିଶେଷ କରି ଅର୍ହତ୍‌ମାନେ (ଅର୍ଥାତ୍, ଯେଉଁମାନେ ପୂର୍ଣ୍ଣ ନିର୍ବାଣ ପ୍ରାପ୍ତ ହୋଇଛନ୍ତି) ଦେବତାମାନଙ୍କ ଠାରୁ ଶ୍ରେଷ୍ଠ, କାରଣ ଦେବତାମାନେ "ଅର୍ହତ୍ୱ" ଲାଭ କରିବାକୁ ଅସମର୍ଥ । ପୂର୍ଣ୍ଣ ମୁକ୍ତି ଲାଭ କରିବାକୁ ହେଲେ ଦେବତାମାନେ ମଧ୍ୟ ମନୁଷ୍ୟମାନଙ୍କ ମଧ୍ୟରେ, ମନୁଷ୍ୟ ଜଗତରେ ପୁନର୍ଜନ୍ମ ନେବାକୁ ପଡ଼େ । ଏହି "ମୋକ୍ଷ ପଥ" ଅସାମାନ୍ୟ କଠିନ ତପଶ୍ଚର୍ଯ୍ୟା, ସର୍ବ-ତ୍ୟାଗ ଏବଂ ଆତ୍ମପୀଡ଼ନ ମଧ୍ୟ ଦେଇ ପ୍ରସାରିତ ।

ଏହି ତପଶ୍ଚର୍ଯ୍ୟାର ବିଷୟଟି ଘେନି ଜୈନ ଧର୍ମର ଇତିହାସରେ ଗୁରୁତର ମତାନ୍ତର ସୃଷ୍ଟି ହୋଇଥିଲା । ଶ୍ୱେତାମ୍ବର ଜୈନ ବା ଶ୍ୱେତବସନ ପରିହିତ ଜୈନ ସଂପ୍ରଦାୟ ସେତେବେଳେ ବେଶଭୂଷା ସଂପୂର୍ଣ୍ଣ ପରିତ୍ୟାଗକାରୀ ଅପେକ୍ଷାକୃତ ରକ୍ଷଣଶୀଳ ସଂପ୍ରଦାୟ ଦ୍ୱାରା ସମାଲୋଚିତ ହୋଇଥିଲେ । ଏହି ଶେଷୋକ୍ତ ଜୈନ ସଂପ୍ରଦାୟ ଦିଗମ୍ବର ଜୈନ ବା ଦିକ ରୂପକ ବସ୍ତ୍ର ପରିହିତ ଜୈନ ସଂପ୍ରଦାୟ ହିସାବରେ ପରିଚିତ ଥିଲେ ।

ଜୈନ ଧର୍ମ ଅନୁଯାୟୀ ଗୃହୀଲୋକର ଆତ୍ମା "ମୋକ୍ଷ" ଲାଭ କରି ପାରେ ନାହିଁ, କେବଳ ସନ୍ନ୍ୟାସୀର ଆତ୍ମା ହିଁ "ମୋକ୍ଷ" ଲାଭ କରି ପାରେ । ଅର୍ଥାତ୍, ଏହା କୌଣସି ଆକସ୍ମିକ ଘଟଣା ନୁହେଁ ଯେ, ପ୍ରାଚୀନ ଭାରତରେ ଅନ୍ୟାନ୍ୟ ସମସ୍ତ ଧର୍ମର ଅନୁଗାମୀମାନଙ୍କ ଠାରୁ ଜୈନମାନେ ଅନେକ ଅଧିକ ସଂଖ୍ୟାରେ ସନ୍ନ୍ୟାସୀ ବ୍ରତ ଗ୍ରହଣ କରି ତପଶ୍ଚର୍ଯ୍ୟାରେ ମନୋନିବେଶ କରୁଥିଲେ । ଏପରିକି ମହାବୀର ବା ଜୀନ, ଅଥବା "ବିଜୟୀ" ଉପାଧିଟି ମଧ୍ୟ ବହୁ ଜନ୍ମାନ୍ତରର ପାର୍ଥିବ ବାସନା କାମନାକୁ ଜୟ କରିବା ସହିତ ସଂଯୁକ୍ତ ଏବଂ ସନ୍ନ୍ୟାସୀ ଏବଂ ତପଶ୍ଚର୍ଯ୍ୟା ବ୍ୟଞ୍ଜକ ।

ଜୈନ ନୀତି ଶାସ୍ତ୍ରର ଏକ ଅପରିହାର୍ଯ୍ୟ ଅଙ୍ଗ ଓ ମୂଳନୀତି ହେଉଛି ଅହିଂସା (ଜୀବନ୍ତ ପ୍ରାଣୀ ପ୍ରତି ଅହିଂସାଚରଣ) । ଜୈନ ମୁନିମାନେ ଯେ କେବଳ ପ୍ରାଣୀ ହତ୍ୟା କରିବାରୁ ବିରତ ଥିଲେ ତା ନୁହେଁ, କ୍ଷୁଦ୍ରାତି କ୍ଷୁଦ୍ର କୀଟପତଙ୍ଗ ଯେପରି ପାଦରେ ଦଳି ହୋଇ ନଯାଆନ୍ତି, ସେଥି ପ୍ରତି ସତର୍କ ରହୁଥିଲେ । ପରବର୍ତ୍ତୀ କାଳରେ ଜୈନ ପୋଥିଗୁଡ଼ିକରେ ଜୈନ ସାଧୁମାନଙ୍କର ଆଚରଣ ବିଧି ବିଶଦ ଭାବେ ବିବୃତ ହୋଇଛି । ସେମାନଙ୍କୁ ଏତାଦୃଶ ଅଠେଇଶଟି ଆଚରଣ ବିଧି ମାନି ଚଳିବାକୁ ପଡ଼ୁଥିଲା । ସେସବୁ ମଧ୍ୟରେ ଥିଲା – ସତ୍ୟବାଦିତା, ସଂଯମ, ବୈରାଗ୍ୟ, ଚୌର୍ଯ୍ୟ

ବୃତ୍ତିର କଠୋର ନିଷିଦ୍ଧତା, ଆଦି । ତେବେ ଜୈନ ଧର୍ମର ଗୃହୀ ଅନୁଗାମୀମାନଙ୍କ ପାଇଁ ଏହିସବୁ ବିଧିନିଷେଧର କଠୋରତାର ମାତ୍ରା ଏବଂ ଏସବୁର ସଂଖ୍ୟା କମ୍ ଥିଲା ।

ଅଳ୍ପ କାଳ ମଧ୍ୟରେ ଜୈନ ଧର୍ମ ଦେଶ ସାରା ବ୍ୟାପି ଯାଇଥିଲା, କିନ୍ତୁ ବୌଦ୍ଧ ବା ହିନ୍ଦୁ ଧର୍ମର ଉପଯୁକ୍ତ ପ୍ରତିଦ୍ୱନ୍ଦ୍ୱୀ ଏହା କୌଣସି ଦିନ ହୋଇ ପାରିଲା ନାହିଁ । ଖ୍ରୀଷ୍ଟାବ୍ଦର ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ଏହି ଧର୍ମର ପ୍ରଭାବ ନିଃସନ୍ଦେହରେ ହ୍ରାସ ପାଇଥିଲା । ତେବେ, ଭାରତର କ୍ଷୁଦ୍ର ଏକ ଦୃଢ଼ବଦ୍ଧ ସଂପ୍ରଦାୟ ମଧ୍ୟରେ ଏହାର ଅସ୍ତିତ୍ୱ ଏବେ ମଧ୍ୟ ତିଷ୍ଠି ରହିଛି । ପ୍ରାଚୀନ ଏବଂ ମଧ୍ୟ ଯୁଗରେ ଭାରତୀୟ ସଂସ୍କୃତିରେ ଜୈନ ଧର୍ମର ପ୍ରଭାବ ଯେ ବ୍ୟାପକ ଭାବେ ପଡ଼ିଥିଲା, ଏହାକୁ ଅସ୍ୱୀକାର କରି ହେବ ନାହିଁ । ଏହି ଧର୍ମର ପ୍ରେରଣାରେ ବହୁ ସାହିତ୍ୟ ରଚିତ ହୋଇଥିଲା ଏବଂ ଜୈନ ଦର୍ଶନରେ ନିହିତ ବାସ୍ତବବାଦ ବିଜ୍ଞାନର ବିଭିନ୍ନ କ୍ଷେତ୍ର ପ୍ରତି ଏହି ଧର୍ମର ଅନୁଗାମୀମାନଙ୍କୁ ଆଗ୍ରହୀ କରିଥିଲା । ଭାରତୀୟ ବୈଜ୍ଞାନିକ କାର୍ଯ୍ୟକଳାପ କ୍ଷେତ୍ରରେ ଜୈନମାନଙ୍କ ଅବଦାନ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା ।

## ପ୍ରାରମ୍ଭିକ ବୌଦ୍ଧ ଧର୍ମ ଏବଂ ବୌଦ୍ଧ ଧର୍ମନୀତିର ମୂଳକଥା

ଅନ୍ୟାନ୍ୟ ସଂସ୍କାରମୂଳକ ଧର୍ମଶିକ୍ଷା ଭଳି ବୌଦ୍ଧ ଧର୍ମ ମଧ୍ୟ ସର୍ବାପେକ୍ଷା ବ୍ୟାପକ ଭାବେ ଉତ୍ତର-ପୂର୍ବ ଭାରତରେ ଏବଂ ବିଶେଷ କରି ମଗଧରେ ପ୍ରଚାରିତ ହୋଇଥିଲା । ମଗଧକୁ ସେତେବେଳେ ବ୍ରାହ୍ମଣ୍ୟ ଧର୍ମକୁ ସ୍ୱୀକାର କରିବାକୁ ଅନିଚ୍ଛୁକ ଏକ ରାଜ୍ୟ ଏବଂ ଅବୈଦିକ ଧର୍ମ ପ୍ରଚାରର ଏକ କେନ୍ଦ୍ର ହିସାବରେ ଗଣ୍ୟ କରାଯାଉଥିଲା । ଅବୈଦିକ ମତ, ଅଥବା ତଥାକଥିତ ପ୍ରଚଳିତ ଧର୍ମଦ୍ୱେଷୀ ଧର୍ମମତଗୁଡ଼ିକ ମଧ୍ୟରେ ଅନେକ ବିଷୟରେ ସାଧାରଣ ଏକ ଐକ୍ୟ ଥିଲା । ତେବେ ସେଗୁଡ଼ିକ ମଧ୍ୟରେ ମତଭେଦ ମଧ୍ୟ ଯଥେଷ୍ଟ ଥିଲା । ପ୍ରାରମ୍ଭରେ ବୌଦ୍ଧ ଧର୍ମର ସେପରି ବିଶେଷ ପ୍ରଭାବ ନଥିଲା ଏବଂ ଏହା ଥିଲା ଅବୈଦିକ ଧର୍ମମତଗୁଡ଼ିକ ମଧ୍ୟରୁ ଅନ୍ୟତମ । ଏହା ସେତେବେଳେ ଉପମହାଦେଶର ଶକ୍ତିଶାଳୀ ରାଜ୍ୟମାନଙ୍କର, ବିଶେଷ କରି ମଗଧର ଶାସକମାନଙ୍କର ସମର୍ଥନ ଲାଭ କରିବାକୁ ବ୍ୟସ୍ତ ଥିଲା ।

ଅନମନୀୟ ଜାତିଭେଦ ପ୍ରଥାକୁ ପ୍ରତ୍ୟାଖ୍ୟାନ କରି ଜନ୍ମ ଜାତି ନିର୍ବିଶେଷରେ ସମସ୍ତ ମଣିଷର ସମାନ ଅଧିକାରକୁ ସମର୍ଥନ କରିଥିବାରୁ ଏହି ନୂତନ ଧର୍ମମତ ସମାଜର ବଣିକ ସଂପ୍ରଦାୟ ନିକଟରେ ବିଶେଷ ଭାବେ ଆକର୍ଷଣୀୟ ହୋଇ ଉଠିଥିଲା । ଏହିସବୁ ବଣିକ ଥିଲେ ବୈଶ୍ୟମାନଙ୍କ ମଧ୍ୟରେ ଅବସ୍ଥାସଂପନ୍ନ । ସମାଜର ବ୍ରାହ୍ମଣ୍ୟ ଧର୍ମ ଅଧୀନରେ ସାମାଜିକ ସୋପାନରେ ଏମାନଙ୍କ ସ୍ଥାନ ଅନେକ ତଳେ ଥିଲା । ଏହା ଛଡ଼ା ବୌଦ୍ଧ ଧର୍ମ କ୍ଷତ୍ରିୟମାନଙ୍କ ମଧ୍ୟରେ ବି ଖୁବ୍ ଲୋକପ୍ରିୟ ହୋଇ ଉଠିଥିଲା । ଏହି ସମୟରେ କ୍ଷତ୍ରିୟମାନେ ନିଜ ହାତରେ କ୍ରମଶଃ ବେଶି କ୍ଷମତା କେନ୍ଦ୍ରୀଭୂତ କରି ପକାଉଥିଲେ, ଅଥଚ ଏଥି ସଙ୍ଗେ ସଙ୍ଗେ ସେମାନେ ଅନୁଭବ କରୁଥିଲେ ଯେ, ବ୍ରାହ୍ମଣମାନେ ସେମାନଙ୍କ ଉପରେ ପ୍ରବଳ ମତାଦର୍ଶଗତ ଚାପ ବଜାଏ ରଖିଛନ୍ତି ଏବଂ ନିଜକୁ ଜାହିର କରୁଛନ୍ତି ସର୍ବଶ୍ରେଷ୍ଠ ଓ ପବିତ୍ର ବର୍ଣ୍ଣର ପ୍ରତିନିଧି, ଏପରିକି ପାର୍ଥିବ ଦେବତା ବୋଲି ।

ବୌଦ୍ଧ ସଂପ୍ରଦାୟ ବା ସଂଘର ଅନ୍ତର୍ଭୁକ୍ତ ହେବାର ଅଧିକାର ସମସ୍ତ ବର୍ଣ୍ଣର ମୁକ୍ତ ପ୍ରତିନିଧିମାନେ

ଲାଭ କରିଥିଲେ ଏବଂ ଫଳରେ, ଏହି ନୂତନ ଧର୍ମର ପ୍ରଭାବର ପରିସର ବିପୁଳ ଭାବେ ବୃଦ୍ଧି ପାଇଥିଲା । ଏପରିକି ଯେଉଁମାନେ ସଂଘରେ ଯୋଗ ଦେଲେ ନାହିଁ, ସେମାନଙ୍କ ପାଇଁ "ସ୍ୱର୍ଗ ଲାଭର ପଥ" ମଧ୍ୟ ଉନ୍ମୁକ୍ତ ରହିଲା – ଗୃହୀଭକ୍ତମାନଙ୍କ ପାଇଁ ଏହି ଆଦର୍ଶ ପ୍ରଚାର କଲେ ବୁଦ୍ଧ ଦେବ । ପ୍ରଥମ ଯୁଗରେ ବୌଦ୍ଧ ଧର୍ମରେ ନୀତିଗତ ଦିଗଟି ଥିଲା ପ୍ରଧାନ; ଗୃହୀଭକ୍ତମାନଙ୍କ ଉଦ୍ଦେଶ୍ୟରେ ପ୍ରଚାରିତ ତାଙ୍କ ବାଣୀରେ ବୁଦ୍ଧ ଦେବ ଜଟିଳ ଅଧିବିଦ୍ୟା ସଂକ୍ରାନ୍ତ ପ୍ରଶ୍ନଗୁଡ଼ିକ ଉପରେ ବିଶେଷ ଆଲୋଚନା କରିବାକୁ ମନ ଦେଇ ନଥିଲେ ।

ପ୍ରାଥମିକ ପର୍ଯ୍ୟାୟରେ ବୌଦ୍ଧ ଧର୍ମର ସାଫଲ୍ୟ ମୂଳରେ ଯେଉଁ ବଡ଼ କାରଣଟି ଥିଲା, ତାହା ହେଉଛି, ବୁଦ୍ଧ ଦେବ ତାଙ୍କ ଧର୍ମ ଶିକ୍ଷାରେ ସମସ୍ତ ପୁରୁଣା ପରମ୍ପରା ଏବଂ ରୀତିନୀତିକୁ ପ୍ରତ୍ୟାଖ୍ୟାନ କରିବାକୁ ଆହ୍ୱାନ ଦେଇ ନଥିଲେ । ପ୍ରସଙ୍ଗତଃ ସ୍ମରଣ ରଖିବାର କଥା ଯେ, ଭାରତର ସେହି ପ୍ରାଚୀନ ଓ ରକ୍ଷଣଶୀଳ ସମାଜରେ ସେତେବେଳେ ସାମାଜିକ ଓ ବୌଦ୍ଧିକ ଜୀବନ କ୍ଷେତ୍ରରେ ଏହିସବୁ ପରମ୍ପରା ଏବଂ ରୀତିନୀତିର ମୂଳ ଦୃଢ଼ ଭାବେ ନିହିତ ଥିଲା । ବୁଦ୍ଧ ଦେବ ତେଣୁ ଚେଷ୍ଟା କରିଥିଲେ ନୂଆ ଏକ ବ୍ୟାଖ୍ୟା ପ୍ରଦାନ କରିବାକୁ, ପ୍ରଚଳିତ ବିଭିନ୍ନ ଆଚାର ବିଧିର ସଂପୂର୍ଣ୍ଣ ନିଜସ୍ୱ ବ୍ୟାଖ୍ୟା ଦେବାକୁ ।

ତେବେ ମୁଖ୍ୟତଃ, ବୌଦ୍ଧ ଧର୍ମ ଥିଲା ଏକ ମୌଳିକ ଧର୍ମମତ । ଭାରତର ଅନ୍ୟାନ୍ୟ ଧର୍ମମତ ଠାରୁ ଏହା ଏତେ ପୃଥକ୍ ଥିଲା ଯେ, ପରବର୍ତ୍ତୀ କାଳରେ ଅନେକ ଥର ଚେଷ୍ଟା ହୋଇଛି ଏହାକୁ ଭାରତର ସୀମା ବାହାରେ ଅନ୍ୟ ଦେଶରେ ଉଦ୍‌ଭୂତ ଅନ୍ୟାନ୍ୟ ଧର୍ମମତ ସହିତ, ଯଥା ଖ୍ରୀଷ୍ଟ ଧର୍ମ ସହିତ, ସମାନ କରି ଦେଖାଇବାକୁ । ତେବେ ବୌଦ୍ଧ ଧର୍ମର ଅନ୍ତର୍ଭୁକ୍ତ ବହୁ ନୂତନ ଧ୍ୟାନଧାରଣାକୁ ସାଧାରଣ ପରମ୍ପରାଗତ ଧ୍ୟାନଧାରଣାର ବ୍ୟବସ୍ଥା ମଧ୍ୟରେ ଅତ୍ୟନ୍ତ ସତର୍କ ଭାବେ ମିଶେଇ ନିଆଯାଇଛି । ଏକଥା ଅବଶ୍ୟ ସତ୍ୟ ଯେ, ବୌଦ୍ଧ ଧର୍ମ କୌଣସି ଦିନ ଏହି ପରମ୍ପରାଗତ ଧ୍ୟାନଧାରଣାଗୁଡ଼ିକୁ ପୂରାପୂରି ପ୍ରତ୍ୟାଖ୍ୟାନ କରି ନାହିଁ ।

ପଣ୍ଡିତମାନେ ବୌଦ୍ଧ ଧର୍ମମତ ଓ ଉପନିଷଦସମୂହ ମଧ୍ୟରେ ଯେଉଁ ଯୋଗସୂତ୍ରଟି କଥା କହନ୍ତି, ତାହା ଏକେବାରେ ଅମୂଳକ ନୁହେଁ । ଏହାର ଅର୍ଥ ଅବଶ୍ୟ ଏହା ନୁହେଁ ଯେ, ବୁଦ୍ଧ ଦେବ ଉପନିଷଦସମୂହରେ ବିବୃତ ନୀତିଗୁଡ଼ିକୁ ଗ୍ରହଣ କରି ନେଇଥିଲେ । ବରଂ, ଏକଥା କହିଲେ ଅପେକ୍ଷାକୃତ ଠିକ୍ ହେବ ଯେ, ପ୍ରାଚୀନ ଭାରତର ବିଭିନ୍ନ ଅଞ୍ଚଳରେ ସମାଜ ବ୍ୟବସ୍ଥା ଓ ସଂସ୍କୃତିର ବିକାଶ ସଙ୍ଗେ ସଙ୍ଗେ ଯେଉଁସବୁ ନୂତନ ଧ୍ୟାନଧାରଣାର ଉଦ୍‌ଭବ ଘଟିଥିଲା, ସେସବୁର ପ୍ରତିଫଳନ ଘଟିଥିଲା ସେକାଳରେ ରଚିତ ଉପନିଷଦସମୂହରେ ।

ବୌଦ୍ଧ ଧର୍ମ ଓ ବ୍ରାହ୍ମଣ୍ୟ ଧର୍ମ ମଧ୍ୟରେ ବହୁବିଧ ସାଦୃଶ୍ୟର ବିଭିନ୍ନ କାରଣ ଦର୍ଶାଇବା ସମ୍ଭବ । ପ୍ରସଙ୍ଗତଃ, ଏହା ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଯେ, ବୌଦ୍ଧ ଧର୍ମ ଓ ଅନ୍ୟାନ୍ୟ ଧର୍ମ ସଂସ୍କାରମୂଳକ ମତବାଦର ଆବିର୍ଭାବ ସତ୍ତ୍ୱେ କେଇ ଶତାବ୍ଦୀ ଧରି ବଂଶାନୁକ୍ରମେ ଆଚରିତ ଭାରତୀୟମାନଙ୍କର ପାରମ୍ପରିକ ଧର୍ମମତରେ କୌଣସି ମୌଳିକ ପରିବର୍ତ୍ତନ ଘଟି ନଥିଲା । ଜୈନ ଧର୍ମ ଭଳି ବୌଦ୍ଧ ଧର୍ମ ମଧ୍ୟ ବ୍ରାହ୍ମଣ୍ୟ ଧର୍ମ ଦ୍ୱାରା ପ୍ରତିଷ୍ଠିତ ପାରମ୍ପରିକ ଭାରତୀୟ ପୂଜା ପଦ୍ଧତି, କର୍ମକାଣ୍ଡକୁ ଗ୍ରହଣ କରି ନେଇଥିଲା । ଏହି କାରଣରୁ ବୈଦିକ ଓ ବ୍ରାହ୍ମଣ୍ୟ ଧର୍ମର ଦେବଦେବୀମାନେ ବୌଦ୍ଧ ଧର୍ମ ଦ୍ୱାରା ନିନ୍ଦିତ ହୋଇ ନାହାନ୍ତି ।

ପରମ୍ପରାଗତ ଭାରତୀୟ ଦେବଦେବୀମାନଙ୍କୁ ବୌଦ୍ଧ ଧର୍ମ ପ୍ରତ୍ୟାଖ୍ୟାନ ନକଲେ ମଧ୍ୟ ଏହି ଧର୍ମମତ ଭିତରେ ସେମାନଙ୍କ ପାଇଁ ଏପରି ଏକ ମହତ୍ତ୍ୱହୀନ ସ୍ଥାନ ନିର୍ଦ୍ଧାରଣ ହୋଇଥିଲା ଯେ, ବୌଦ୍ଧ ଧର୍ମର ଅନ୍ତର୍ଭୁକ୍ତ ହେବା ପରେ ପରିଶେଷରେ ସେସବୁ ପ୍ରାୟ ଲୋପ ପାଇ ଯାଇଥିଲେ । ବୌଦ୍ଧ ଧର୍ମ ମଧ୍ୟରେ ବ୍ରାହ୍ମଣ ଧର୍ମର ଦେବଦେବୀମାନଙ୍କୁ ଏହି ଭାବେ ଆତ୍ମସାତ୍ କରି ଦେବା ଫଳରେ ଏହି ଧର୍ମମତଟି ନିଃସନ୍ଦେହରେ ଦେଶରେ ବିଭିନ୍ନ ଅଞ୍ଚଳରେ ଅନ୍ୟାନ୍ୟ ଧର୍ମଠାରୁ ଅନେକ ବେଶି ଜନପ୍ରିୟ ହୋଇ ଉଠିଥିଲା । ତେବେ ବ୍ରାହ୍ମଣ୍ୟ ଧର୍ମର ଧ୍ୟାନଧାରଣାଗୁଡ଼ିକୁ ଏହି ଭାବେ ଆତ୍ମସାତ୍ କରିବା ଫଳରେ ବୌଦ୍ଧ ଧର୍ମ ନିଜେ ବ୍ରାହ୍ମଣ୍ୟ ଧର୍ମ ଦ୍ୱାରା କବଳିତ ହେବାର ଆଶଙ୍କା ଯେ ନଥିଲା, ତା ନୁହେଁ । ବୌଦ୍ଧ ଧର୍ମର ପ୍ରାଥମିକ ବିକାଶର ସ୍ତରଟିକୁ ଲକ୍ଷ୍ୟ କଲେ, ଦେଖାଯାଏ ଯେ, ଏହି ସ୍ତରରେ ବୈଦିକ ଦେବଦେବୀଙ୍କ ପ୍ରତି ଶ୍ରଦ୍ଧା ନିବେଦନ ଯେ ନୂଆ ଧର୍ମର ବ୍ୟବସ୍ଥା ମଧ୍ୟରେ ତା'ର ବୈଶିଷ୍ଟ୍ୟସୂଚକ ସାରସତ୍ତା କିମ୍ବା ସ୍ୱତନ୍ତ୍ରତା ପକ୍ଷରେ କ୍ଷତିକାରକ ହୋଇ ନଥିଲା । ବୌଦ୍ଧ ଧର୍ମର (ବସ୍ତୁତଃ ଉପନିଷଦସମୂହର ମତାଦର୍ଶ ମଧ୍ୟ) ପ୍ରଧାନ ବୈଶିଷ୍ଟ୍ୟଟି ଥିଲା ଉପାସନାର ସୁନିର୍ଦ୍ଦିଷ୍ଟ ପଦ୍ଧତିଗୁଡ଼ିକ ପ୍ରତି ଉଦାସୀନତା ପ୍ରଦର୍ଶନ ।

ଉପନିଷଦସମୂହର ମତାଦର୍ଶ ଭଳି ବୌଦ୍ଧ ଧର୍ମରେ ମଧ୍ୟ ପୁନର୍ଜନ୍ମବାଦ ଓ କର୍ମବାଦ ସ୍ୱୀକୃତ । ଆତ୍ମା ଅବିନାଶୀ ଏହି ତତ୍ତ୍ୱକୁ ପ୍ରତ୍ୟାଖ୍ୟାନ କରି ବୌଦ୍ଧ ଧର୍ମ ଖୋଲଖୋଲି ଭାବେ ଘୋଷଣା କରିଛି : ଆତ୍ମିକ ଶକ୍ତି ହେଉଛି ପ୍ରକୃତରେ ଅବିନଶ୍ୱର । ଏହି ଶକ୍ତିର ଯେକୌଣସି ପ୍ରକାରର ପ୍ରକାଶ ନିରର୍ଥକ ହୋଇ ପାରେ ନାହିଁ । ବିଚ୍ଛିନ୍ନ ଭାବେ ଦେଖିଲେ, ଏଭଳି ଗୋଟିଏ ଗୋଟିଏ ପ୍ରକାଶ ହେଉଛି ରୂପାନ୍ତରଣର ନିରବଚ୍ଛିନ୍ନ ପ୍ରକ୍ରିୟାର ଗୋଟିଏ ଗୋଟିଏ ମୁହୂର୍ତ୍ତ ମାତ୍ର । ଯାହା କିଛି ଆତ୍ମିକ, ତାହା ଅବିନାଶୀ – ଏହି ଧାରଣାରୁ କର୍ମବାଦର ଉତ୍ପତ୍ତି । ଯେହେତୁ କୌଣସି କର୍ମ ବିଲୋପ ପାଏ ନାହିଁ, ତେଣୁ କୌଣସି ନା କୌଣସି ଦିନ ଏହା ଅନିବାର୍ଯ୍ୟ ପରିଣାମ ରୂପରେ ନିଜକୁ ପ୍ରକାଶ କରିଥାଏ । କର୍ମ ଯେହେତୁ ପ୍ରକୃତିଗତ ଭାବେ ଆତ୍ମିକ ଗୁଣ ସଂପନ୍ନ, ତେଣୁ ଦେହର ଜୀବଦ୍ଦଶାର ବନ୍ଧନ ମଧ୍ୟରେ ସେ ବଦ୍ଧ ନୁହେଁ । ଏହି ଭାବେ ନୂତନ ଜନ୍ମ ପୂର୍ବକର୍ମ ଦ୍ୱାରା ନିର୍ଦ୍ଧାରିତ ହେଉଛି, ଅଥବା ଅନ୍ତତଃପକ୍ଷେ ଅତୀତ କର୍ମର ଅତି ଗୁରୁତ୍ୱପୂର୍ଣ୍ଣ ପ୍ରଭାବର ଅଧୀନ ହେଉଛି ।

ବୌଦ୍ଧ ଧର୍ମମତ ସଂପର୍କରେ ମନ୍ତବ୍ୟ ପ୍ରସଙ୍ଗରେ ଆକାଡେମିସିଆନ୍ ଏଫ୍.ଇ.ଷ୍ଟେର୍‌ବାତ୍‌ସ୍କୟ ଲେଖିଛନ୍ତି : "ସତ୍ତା ... ହେଉଛି କ୍ଷଣକୁ କ୍ଷଣ ଜନ୍ମ ଆଉ ବିଲୋପର ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ଏହି ପ୍ରକ୍ରିୟା କାର୍ଯ୍ୟକାରଣ ନିୟମର ଅଧୀନ ... । ଚିରନ୍ତନ ବୋଲି ଜଗତରେ ଯେ କେବଳ କିଛି ନାହିଁ ତା ନୁହଁ, ଚିରନ୍ତନ ବୋଲି କୌଣସି ସତ୍ତା ମଧ୍ୟ କେଉଁଠି ନାହିଁ । ଅର୍ଥାତ୍, ଆତ୍ମିକ ବା ବସ୍ତୁଗତ ବୋଲି କୌଣସି କିଛି ନାହିଁ ।" *

ଜଗତର ସବୁକିଛି ନିୟତ୍ ପରିବର୍ତ୍ତନଶୀଳ ଅବସ୍ଥାରେ ଅଛି ବୋଲି ବୁଦ୍ଧ ଦେବ ମନେ କରୁଥିଲେ । ଧର୍ମ (ମଣିଷ ଦ୍ୱାରା ଅଜ୍ଞେୟ ଅଣୁକଣା), ନାନା ଧରଣର ସଂଯୋଗ ଫଳରେ

---

* ଏଫ୍.ଇ.ଷ୍ଟେର୍‌ବାତ୍‌ସ୍କୟ, "ପରବର୍ତ୍ତୀ ଯୁଗର ବୌଦ୍ଧମାନଙ୍କ ଧର୍ମତତ୍ତ୍ୱରେ ନିହିତ ଜ୍ଞାନତତ୍ତ୍ୱ ଓ ଯୁକ୍ତି", ଦ୍ୱିତୀୟ ଭାଗ, ୧୯୦୯, ପୃ: ୧୧୭-୧୧୮ (ରୁଷ୍ ଭାଷାରେ) ।

ବସ୍ତୁଗତ ଏବଂ ଆତ୍ମିକ ପଦାର୍ଥସମୂହ ଗଠନ କରେ, ତାହା ନିୟତ୍ ଗତିଶୀଳ ଏବଂ ଏକ ଅନ୍ତହୀନ ଯୋଗ ବିୟୋଗର ବିଭିନ୍ନ ଛକ ମାତ୍ର ।

ବୌଦ୍ଧ ଧର୍ମର ମୂଳ ଭିତ୍ତି, ଅବଶ୍ୟ, ହେଉଛି "ଚତୁର୍ମହାସତ୍ୟ" ସମ୍ବନ୍ଧୀୟ ଶିକ୍ଷା । କିମ୍ବଦନ୍ତୀ ଅନୁଯାୟୀ ଏହି ଚାରୋଟି ସତ୍ୟକୁ ବୁଦ୍ଧ ଦେବ ତାଙ୍କର ପ୍ରଥମ ଧର୍ମୋପଦେଶରେ ପ୍ରତିପାଦିତ କରିଥିଲେ । ଏହିସବୁ "ସତ୍ୟର" ସ୍ୱରୂପ ନିର୍ଣ୍ଣୟ କରିବାକୁ ଯାଇ ବୁଦ୍ଧ ଦେବ ମାନବ ଅସ୍ତିତ୍ୱର ସ୍ୱରୂପ ଏବଂ ମନୁଷ୍ୟର ଦୁଃଖକଷ୍ଟର କାରଣସମୂହ ନିରୂପଣ କରିଛନ୍ତି ଏବଂ "ନିର୍ବାଣର ପଥ" ପ୍ରଦର୍ଶନ କରିଛନ୍ତି । ସାମଗ୍ରିକ ଭାବେ ବିଚାର କଲେ, ଏହା ସ୍ପଷ୍ଟ ଜଣାଯାଏ ଯେ, ବୁଦ୍ଧଙ୍କର ଏହି ପ୍ରଧାନ ଧର୍ମୋପଦେଶର ନିର୍ଯ୍ୟାସ ଥିଲା "ନିର୍ବାଣର ପଥ" ସଂପର୍କରେ ଉପରୋକ୍ତ ଧାରଣାଟି । ଲୋକ ଶ୍ରୁତି ଅନୁଯାୟୀ, ବୁଦ୍ଧ ଦେବ କାଳେ କହିଥିଲେ ଯେ, ସମୁଦ୍ର ଜଳର ସ୍ୱାଦ ଯେପରି ଲୁଣିଆ, ସେହିପରି ତାଙ୍କ ଧର୍ମ ଶିକ୍ଷାରେ "ନିର୍ବାଣର ସ୍ୱାଦ" ଛଡ଼ା ଆଉ କିଛି ନାହିଁ । ମଣିଷର ଜୀବନକୁ ବୁଦ୍ଧ ଦେବ ଦୁଃଖମୟ ବୋଲି କହିଛନ୍ତି, ଏହା ପାର୍ଥିବ ଅସ୍ତିତ୍ୱ ଏବଂ ତା'ର ଆନନ୍ଦ ସମ୍ଭୋଗ ପ୍ରତି ଆକୁଳ ଇଚ୍ଛାରୁ ଜାତ ହୋଇଥାଏ । ଏହି କାରଣରୁ ସେ କାମନା ବାସନା ପରିତ୍ୟାଗ କରିବାକୁ ମଣିଷ ନିକଟରେ ଆହ୍ୱାନ ଜଣାଇଥିଲେ ଏବଂ ସେମାନଙ୍କୁ "ନିର୍ବାଣର ପଥ" ଦେଖାଇଥିଲେ । ଏହି "ନିର୍ବାଣ ପଥର" ସନ୍ଧାନ ପାଇଲେ, ମଣିଷ କର୍ମ ଫଳର ବନ୍ଧନରୁ ମୁକ୍ତ ହୁଏ ଏବଂ ପୁନର୍ଜନ୍ମ ଚକ୍ରର ଆବର୍ତ୍ତରୁ ନିଜକୁ ବିଚ୍ଛିନ୍ନ କରିନିଏ, ଯେଉଁଥିରେ ମଣିଷ ସତ୍ୟକୁ ନଜାଣିବାର ପରିଣାମ ସ୍ୱରୂପ ପଡ଼ିଯାଇଥାଏ । ବୌଦ୍ଧ ସଂଘରେ ଯୋଗ ଦେଉଥିବାର ବ୍ୟକ୍ତି "ନିର୍ବାଣ" ଲାଭ କରିବାକୁ ସମର୍ଥ ହୋଇ ପାରେ, ଯଦି ସେ ସାଂସାରିକ ଜୀବନର ବନ୍ଧନରୁ, ସମସ୍ତ ପ୍ରକାରର ଦୁଃଖ ଓ କାମନା ବାସନାରୁ ନିଜକୁ ମୁକ୍ତ କରି ପାରେ, ନିଜର ଅହଂକୁ ଅବଦମିତ କରି ପାରେ ଏବଂ ଦେହ ଓ ଆତ୍ମାର ଦ୍ୱୈତ ଭାବର ଊର୍ଦ୍ଧ୍ୱକୁ ଉଠିବାକୁ ସମର୍ଥ ହୁଏ ।

ବୌଦ୍ଧ ଧର୍ମମତ ଅନୁଯାୟୀ, ନିର୍ବାଣ ଅବସ୍ଥାରେ ନିୟତ୍ ପରିବର୍ତ୍ତନଶୀଳ ଧର୍ମଗୁଡ଼ିକର ଗତି ରୁଦ୍ଧ ହୋଇଯାଏ, ଫଳରେ ନୂଆ ନୂଆ ସଂଯୋଗର ପ୍ରବାହର ଗତି ମଧ୍ୟ ରୁଦ୍ଧ ହୋଇଯାଏ । ଏହା ଫଳରେ ସଂସାର ସହିତ ସଂପୂର୍ଣ୍ଣ ବିଚ୍ଛେଦ ଘଟେ, ଅର୍ଥାତ୍, ଏକ ଶରୀର ସତ୍ତା ଠାରୁ ଆଉ ଏକ ଶରୀର ସତ୍ତାକୁ ସ୍ଥାନାନ୍ତରଣ ବନ୍ଦ ହୋଇଯାଏ ଏବଂ ବସ୍ତୁମୟ ଜଗତ ଠାରୁ ବିଚ୍ଛେଦ ଘଟେ । ପରବର୍ତ୍ତୀ ପୁନର୍ଜନ୍ମ ଚକ୍ରର ଶୃଙ୍ଖଳ ଅବଲୋପ ସହିତ ସଂପୃକ୍ତ ନିର୍ବାଣ ପ୍ରାପ୍ତିକୁ ବୌଦ୍ଧ ଧର୍ମରେ ପ୍ରଦର୍ଶନ କରାଯାଇଛି ଭକ୍ତମାନଙ୍କ ପକ୍ଷରେ ପରମ ଆକାଂକ୍ଷିତ ଏକ ଅନ୍ତିମ ଲକ୍ଷ୍ୟ ହିସାବରେ । ମଣିଷର ଆଦର୍ଶ ହେଉଛନ୍ତି "ଅର୍ହତ୍" ବା ସେହି ମହାପୁରୁଷ, ଯିଏ ନିଜର ସତ୍ କର୍ମ ଓ ଆତ୍ମିକ ପୂର୍ଣ୍ଣତା ଲାଭର ସାଧନା ମଧ୍ୟ ଦେଇ ନିର୍ବାଣ ପ୍ରାପ୍ତ ହୋଇଛନ୍ତି ।

ଅତଏବ, ବୌଦ୍ଧ ଧର୍ମ ଶିକ୍ଷାରେ ମଣିଷର ନୈତିକ ଦିଗଟି ଉପରେ ଯେ ଏତେ ଗୁରୁତ୍ୱ ଆରୋପ କରାଯାଇଛି, ଏହା ଏକ ଆକସ୍ମିକ ଘଟଣା ନୁହଁ । ଏହି ଶିକ୍ଷାରେ ମଣିଷର ଆଚାର ଆଚରଣର ନୈତିକ ଦିଗଟି ବିଶେଷ ଏକ ସ୍ଥାନ ଅଧିକାର କରିବାକୁ ବାଧ୍ୟ । ବୁଦ୍ଧ ଦେବ ମଣିଷକୁ ଆହ୍ୱାନ ଜଣାଇଥିଲେ "ଅଷ୍ଟାଙ୍ଗ ମାର୍ଗ" ଅନୁସରଣ କରିବାକୁ—ସଠିକ ଦୃଷ୍ଟି, ସଠିକ ଆଚରଣ, ସଠିକ କର୍ମ, ସଠିକ ବାକ୍ୟ ଏବଂ ସଠିକ ଚିନ୍ତା, ଆଦି ଆଚରଣ କରିବାକୁ । ଉପରୋକ୍ତ ଏହିସବୁ ନୀତି ଥିଲା ବୌଦ୍ଧ ଧର୍ମର ନୈତିକତାର ନିର୍ଯ୍ୟାସ । ବୁଦ୍ଧ ଦେବଙ୍କ ଶିକ୍ଷାନୁଯାୟୀ, ମଣିଷ ଏହି "ସଠିକ

ପଥର” ସଠିକ ଅନୁସରଣ କଲ ବେଳେ ସଂପୂର୍ଣ୍ଣ ରୂପେ ନିଜ ଉପରେ ନିର୍ଭର କରିବ, ବାହାରୁ ନିରାପତ୍ତା, ସହାୟତା ଓ ମୋକ୍ଷ ଲାଭର ପ୍ରୟାସୀ ହେବ ନାହିଁ। “ଧମ୍ମପଦ” ଗ୍ରନ୍ଥରେ କୁହାଯାଇଛି, ମଣିଷ ନିଜେ ଅନ୍ୟାୟ ଆଚରଣ କରେ, ପାପ କାର୍ଯ୍ୟ କରେ, ନିଜେ ନିଜର ଅଧଃପତନ ଘଟାଏ। ମଣିଷ ପୁଣି ନିଜେ ସ୍ୱେଚ୍ଛାରେ ଅନ୍ୟାୟ କାର୍ଯ୍ୟରୁ ବିରତ ରହେ, ନିଜକୁ ଶୋଧନ କରିବା ମଧ୍ୟ ତା’ର ଇଚ୍ଛାଧୀନ। ଜଣେ ଲୋକ କେବେହେଲେ ଅନ୍ୟକୁ ସଂଶୋଧନ କରି ପାରେ ନାହିଁ।

ମଣିଷ ସମେତ ଜଗତର ସବୁକିଛିର ଜନ୍ମଦାତା ଏବଂ ଯାହାଙ୍କ ଉପରେ ମନୁଷ୍ୟର ଭବିତବ୍ୟ ନିର୍ଭରଶୀଳ ସେଇ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅପରିହାର୍ଯ୍ୟ ବୋଲି ବୌଦ୍ଧମାନେ ମନେ କରୁ ନଥିଲେ। ବୁଦ୍ଧ କାଳେ କହୁଥିଲେ ଯେ, ଯେଉଁସବୁ ମଣିଷ ଏହି ଭଳି ଦେବଦେବୀଙ୍କ ଉପରେ ବିଶ୍ୱାସ କରନ୍ତି, ସେମାନଙ୍କ ଜୀବନରେ କୌଣସି ଆକାଂକ୍ଷା ଏବଂ ପ୍ରୟାସ ବୋଲି କିଛି ନଥାଏ, ସେମାନେ କୌଣସି କିଛି କରିବାକୁ ବା କୌଣସି କିଛି କରିବାରୁ ବିରତ ହେବାକୁ ପ୍ରୟୋଜନ ମନେ କରନ୍ତି ନାହିଁ। ଅନ୍ୟ ପକ୍ଷରେ, ବ୍ରାହ୍ମଣ ଧର୍ମାନୁଯାୟୀ, ମଣିଷର ଜୀବନ ଓ ତା’ର ଭବିତବ୍ୟ ସଂପୂର୍ଣ୍ଣ ରୂପେ ନିର୍ଦ୍ଧାରିତ ହୋଇଥାଏ ଦେବଦେବୀଙ୍କ ଇଚ୍ଛାନୁଯାୟୀ, ଦେବତାମାନେ ମଣିଷର ଇଚ୍ଛା ଅନିଚ୍ଛା ଏବଂ ଭାଗ୍ୟକୁ ନିୟନ୍ତ୍ରଣ କରିଥାନ୍ତି।

ଜନ୍ମ କାଳରେ ପୃଥିବୀର ସମସ୍ତ ମଣିଷ ସମାନ – ବୌଦ୍ଧ ଧର୍ମ ଏହି କଥା ପ୍ରଚାର କଲେ ମଧ୍ୟ, ଏବଂ ବୌଦ୍ଧ ସଂଘର ଗଣତାନ୍ତ୍ରିକ ଚରିତ୍ର ଏହି ମତର ପରିପୋଷକ ହୋଇଥିଲେ ମଧ୍ୟ, କୌଣସି ମତେ ବୌଦ୍ଧ ଧର୍ମକୁ ଆମୂଳ ପରିବର୍ତ୍ତନକାମୀ ସାମାଜିକ ଆନ୍ଦୋଳନ ବୋଲି କୁହାଯାଇ ପାରେ ନାହିଁ। ବୌଦ୍ଧ ଧର୍ମର ଉପଦେଶାବଳୀରେ ସମସ୍ତ ଜାଗତିକ ଦୁଃଖକଷ୍ଟର ବୋଝ, ପାର୍ଥିବ ଜ୍ୱାଳା ଯନ୍ତ୍ରଣା ଓ ସାମାଜିକ ଅନ୍ୟାୟର କାରଣ ହିସାବରେ ମଣିଷର ନିଜସ୍ୱ “ଅକ୍ଷମତାକୁ” ଏବଂ ପାର୍ଥିବ କାମନା ବାସନା ଅବସାନ କରିବାରେ ମଣିଷର ଅସାମର୍ଥ୍ୟକୁ ନିର୍ଦ୍ଦେଶ କରାଯାଇଛି। ବୌଦ୍ଧ ଧର୍ମ ଶିକ୍ଷାନୁଯାୟୀ, ଜାଗତିକ ଦୁଃଖକଷ୍ଟକୁ ସଂଗ୍ରାମ ମଧ୍ୟ ଦେଇ ଅତିକ୍ରମ କରାଯାଏ ନାହିଁ, ବରଂ ଓଲଟା – ବହିର୍ଜଗତ ବ୍ୟାପାରରେ ସମସ୍ତ ପ୍ରତିକ୍ରିୟାକୁ ନିର୍ବାସିତ କରି, ଅହଂ ସଂପର୍କରେ ସମସ୍ତ ସଚେତନାକୁ ବିନଷ୍ଟ କରି ସେସବୁକୁ ଅତିକ୍ରମ କରାଯାଇ ପାରେ।

“ବୁଦ୍ଧ” ଶବ୍ଦର ଅର୍ଥ “ପ୍ରଜ୍ଞାବାନ୍” ବା “ଜ୍ଞାନୀ”, କିମ୍ବା “ଯିଏ ସତ୍ୟକୁ ଉପଲବ୍ଧି କରିଛନ୍ତି”। କିଂବଦନ୍ତୀ ଅନୁଯାୟୀ, ଗୌତମ ସିଦ୍ଧାର୍ଥ ଗୟା ସହର ନିକଟରେ ଏକ ଅଶ୍ୱତ୍ଥ ବୃକ୍ଷ ତଳେ ଧ୍ୟାନ ମଗ୍ନ ରହି “ପ୍ରଜ୍ଞା ଲାଭ” କଲ ପରେ ବୁଦ୍ଧ ନାମରେ ଖ୍ୟାତ ହୋଇଥିଲେ। ସିଦ୍ଧାର୍ଥ ଶକ୍ତିଶାଳୀ ଶାକ୍ୟ ଉପଜାତିର ମୁଖ୍ୟଙ୍କ ପୁତ୍ର। କିନ୍ତୁ ଧନସଂପଦ ଏବଂ ପାର୍ଥିବ ଜୀବନର ସୁଖ ସମ୍ଭୋଗକୁ ପରିତ୍ୟାଗ କରି ସେ ସନ୍ନ୍ୟାସୀ ହୋଇ ଯାଇଥିଲେ। ଏପର୍ଯ୍ୟନ୍ତ ସଂରକ୍ଷିତ ପ୍ରାରମ୍ଭିକ ବୌଦ୍ଧ ଗ୍ରନ୍ଥମାନଙ୍କରେ ବୌଦ୍ଧ ଧର୍ମର ଏହି ପ୍ରତିଷ୍ଠାତାଙ୍କ ଜୀବନୀ ସଂପର୍କରେ ଅନେକ ଉଲ୍ଲେଖ ଅଛି। ଏ କ୍ଷେତ୍ରରେ ବିଶେଷ କୌତୂହଳୋଦ୍ଦୀପକ ଉପାଦାନ ହେଲ ଖ୍ରୀଷ୍ଟ ପୂର୍ବ ଚତୁର୍ଥ ଏବଂ ତୃତୀୟ ଶତାବ୍ଦୀରେ ଶିଳାଲିପିଗୁଡ଼ିକ। ସେସବୁଥିରେ ବୁଦ୍ଧଙ୍କର ନାମ ଯେ କେବଳ ଉଲ୍ଲେଖ ଅଛି, ତା ନୁହେଁ, ତାଙ୍କ ଜନ୍ମସ୍ଥାନର (ଲୁମ୍ବିନୀ) ନାମ ମଧ୍ୟ ଉଲ୍ଲେଖ କରାଯାଇଛି। ଧର୍ମୀୟ ପୋଥିରେ ଉଲ୍ଲିଖିତ ତଥ୍ୟ ସହିତ ଏହି ତଥ୍ୟ ମିଳିଯାଏ।

ବୁଦ୍ଧ ଦେବଙ୍କ ଇତିହାସସିଦ୍ଧ ତଥ୍ୟ ପ୍ରମାଣ ସଂପର୍କରେ ସମକାଳୀନ ପଣ୍ଡିତମାନଙ୍କ ମଧ୍ୟରେ

ପ୍ରବଳ ବିତର୍କ ଘ୍ଭଲିଛି । ବୁଦ୍ଧ ଦେବଙ୍କ ଦ୍ୱାରା ପ୍ରଘ୍ଭରିତ ଆଦି ଧର୍ମ ଶିକ୍ଷାର ପୁନରୁଦ୍ଧାର ପାଇଁ ଉଦ୍ୟମ ମଧ୍ୟ ହେଉଛି । ଏସବୁ ସମସ୍ୟାର ସମାଧାନ ଅତି ଦୁରୂହ, ବିଶେଷ କରି ଏଇଥି ପାଇଁ ଯେ, ବର୍ତ୍ତମାନ ପଣ୍ଡିତମାନଙ୍କ ବିଘ୍ଭର ନିମିତ୍ତ ଯେଉଁସବୁ ଧର୍ମୀୟ ପୋଥିପତ୍ର ମିଳିଥାଏ, ସେସବୁ ଆନୁମାନିକ ଖ୍ରୀଷ୍ଟ ପୂର୍ବ ତୃତୀୟ ଶତାବ୍ଦୀର, ତା ପୂର୍ବରୁ ନୁହେଁ (କିମ୍ବଦନ୍ତୀ ଅନୁଯାୟୀ, ଏସବୁ ପୋଥି ଆକାରରେ ଲେଖାଯାଇଛି ଆଉରି ଅନେକ ପରେ – ଖ୍ରୀଷ୍ଟ ପୂର୍ବ ୮୦ରେ, ସିଂହଳରେ), ଅର୍ଥାତ୍, ବୌଦ୍ଧ ଧର୍ମର ପ୍ରତିଷ୍ଠାତାଙ୍କ ମହାପ୍ରୟାଣର କେଇ ଶହ ବର୍ଷ ପରେ । ବର୍ତ୍ତମାନ ବୁଦ୍ଧ ଦେବଙ୍କ ମହାପ୍ରୟାଣର ସାଧାରଣ ଭାବେ ଗୃହୀତ ମସିହାଟି ହେଉଛି ଖ୍ରୀଷ୍ଟ ପୂର୍ବ ୪୮୩ (ଏବଂ ତାଙ୍କ ଜନ୍ମ, ଖ୍ରୀଷ୍ଟ ପୂର୍ବ ୫୬୩ ମସିହାରେ) ।

## ଅଜୀବିକ୍‌ମାନଙ୍କ ଧର୍ମ ଶିକ୍ଷା

ପ୍ରାରମ୍ଭରେ ବୌଦ୍ଧମାନଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ଥିଲେ ଅଜୀବିକ୍‌ମାନେ । ଖ୍ରୀଷ୍ଟ ପୂର୍ବ ପଞ୍ଚମରୁ ତୃତୀୟ ଶତାବ୍ଦୀ ମଧ୍ୟରେ ଅଜୀବିକ୍‌ମାନଙ୍କର ବିପୁଳ ଜନପ୍ରିୟତା ଅର୍ଜନ କରିଥିଲେ । ତା'ର କାରଣ ହେଲା, ସର୍ବୋପରି, ବ୍ରାହ୍ମଣ୍ୟବାଦ ବିରୁଦ୍ଧରେ ଗୋସଲଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ଧର୍ମର ଅବିଚଳ ଏବଂ ମୌଳିକ ସମାଲୋଚନା । ବ୍ରାହ୍ମଣମାନଙ୍କ ରକ୍ଷଣାଧୀନ ସମାଜ ବ୍ୟବସ୍ଥା ବିରୁଦ୍ଧରେ ଜନସାଧାରଣଙ୍କ ଅସନ୍ତୋଷ ବହୁ ବ୍ୟାପକ ସାମାଜିକ ସ୍ତରଗୁଡ଼ିକ ମଧ୍ୟରେ ସଂସ୍କାରୋନ୍ମୁଖ ଧର୍ମାନ୍ଦୋଳନର ମର୍ଯ୍ୟାଦାକୁ ବଢ଼େଇ ଦେଇଥିଲା । ସମାଜରେ ଜାତି ଭେଦ ବ୍ୟବସ୍ଥା ଏବଂ ବ୍ରାହ୍ମଣମାନଙ୍କ କର୍ମବାଦର ବ୍ୟାଖ୍ୟା ବିରୁଦ୍ଧରେ ଗୋସଲଙ୍କ ସମାଲୋଚନା କେବଳ ଯେ ସମାଜର ନୀଚ ସ୍ତରଗୁଡ଼ିକୁ ଆକର୍ଷଣ କଲା ତା ନୁହେଁ, କାରିଗର ଏବଂ ବଣିକମାନଙ୍କର ଯେଉଁସବୁ ପିଲମାନେ ଦରିଦ୍ର ପରିବାରରେ ଜନ୍ମ ନେବା ସତ୍ତ୍ୱେ ପରେ ନିଜ ଉଦ୍ୟମ ବଳରେ ଅର୍ଥସଞ୍ଚୟ କରି ଧନବାନ ହୋଇ ଉଠିଥିଲେ, ସେମାନଙ୍କୁ ମଧ୍ୟ ଆକର୍ଷଣ କଲା । ଆରମ୍ଭରୁ ଗୋସଲ ତାଙ୍କ ଧର୍ମ ପ୍ରଘ୍ଭରକୁ କୌଣସି ସନ୍ନ୍ୟାସୀ ସଂପ୍ରଦାୟର ସଂକୀର୍ଣ୍ଣ ପରିଧି ମଧ୍ୟରେ ସୀମିତ ନରଖି, ବରଂ, ଗୃହୀଶିଷ୍ୟମାନଙ୍କ ମଧ୍ୟରେ ଅଧିକ ସଂପ୍ରସାରିତ କରିଥିଲେ । ଗୋସଲଙ୍କ ଦ୍ୱାରା ପ୍ରଘ୍ଭରିତ ଧର୍ମମତ ଥିଲା ଆପାତଃ ଦୃଷ୍ଟିରେ ସରଳ (ପରିଶେଷରେ ସମସ୍ତ ଚିନ୍ତାଭାବନା ଏବଂ ଧ୍ୟାନଧାରଣାକୁ ସର୍ବବ୍ୟାପୀ ପୂର୍ବ ନିର୍ଦ୍ଧାରିତ ନିୟତି ଏବଂ ତା'ର ଉଗ୍ର ଅଦୃଷ୍ଟବାଦରେ ପରିଣତ କରିବା) ଏବଂ ଏହା ବିପୁଳ ସଂଖ୍ୟକ ଜନସାଧାରଣଙ୍କ ମଧ୍ୟରେ ତା'ର ଜନପ୍ରିୟତାକୁ ବୃଦ୍ଧି କରି ପାରିଥିଲା । ତାଙ୍କର ଗୃହୀଶିଷ୍ୟମାନେ (ଅଜୀବିକ୍‌ମାନଙ୍କ ଧର୍ମବିଶ୍ୱାସକୁ ଗ୍ରହଣ କଲା ପରେ) ପ୍ରାତ୍ୟହିକ ଜୀବନରେ ପୂର୍ବ ଭଳି ପ୍ରଚଳିତ ପୂଜାନୁଷ୍ଠାନଟିକୁ ମାନି ଏବଂ ଜଗତ ସଂପର୍କରେ ପରମ୍ପରାସିଦ୍ଧ ପୁରୁଣା ବହୁ ଧ୍ୟାନଧାରଣା ପୋଷଣ କରି ଜୀବନଯାପନ କରିବାକୁ ଲଗିଲେ । ପ୍ରାରମ୍ଭରେ (ଖ୍ରୀଷ୍ଟ ପୂର୍ବ ପଞ୍ଚମ ଶତାବ୍ଦୀର) ବୌଦ୍ଧମାନଙ୍କ ଠାରୁ ଅଜୀବିକ୍‌ମାନଙ୍କ ଶିଷ୍ୟ ସଂଖ୍ୟା ଅଧିକ ଥିଲା ବୋଲି ମନେ ହୁଏ । ଏଥି ସହିତ ସମାଜ ସଂସ୍କାର କ୍ଷେତ୍ରରେ ଅଜୀବିକ୍‌ମାନଙ୍କ ଖୋଲଖୋଲି ଗୁରୁତ୍ୱ ଆରୋପ ବିଷୟଟି ସମ୍ଭବତଃ ସଂପୃକ୍ତ । କିମ୍ବଦନ୍ତୀରୁ ଯାହା ଜଣାଯାଏ, ସେଥିରୁ ଏହା ଖୁବ୍ ସ୍ୱାଭାବିକ ମନେ ହୁଏ ଯେ, ଅଜୀବିକ୍ ଧର୍ମର ଅନୁଗାମୀମାନଙ୍କ ମଧ୍ୟରେ କେବଳ ଯେ ଧନୀ ବଣିକ ସଂପ୍ରଦାୟ ବା କାରିଗରମାନଙ୍କ ପ୍ରତିନିଧିଗଣ ଥିଲେ, ତା ନୁହେଁ,

ସମାଜର ଅପେକ୍ଷାକୃତ ନିମ୍ନ ସ୍ତରଗୁଡ଼ିକରେ, ବିଶେଷ କରି କୁମ୍ଭକାରମାନଙ୍କ ମଧ୍ୟରେ ଏହି ଧର୍ମମତଟି ବେଶ୍ ଜନପ୍ରିୟ ଥିଲା । ଏହି ତଥ୍ୟଟି ସହିତ "ବାୟୁ-ପୁରାଣରେ" (ଏହି ଗ୍ରନ୍ଥଟି ତୃତୀୟରୁ ଚତୁର୍ଥ ଶତାବ୍ଦୀର କୌଣସି ସମୟରେ ସଂକଳିତ ହୋଇଥିଲା, ଯଦିଓ ଏଥିରେ ଉଲ୍ଲିଖିତ ଘଟଣା ଓ ସାମାଜିକ ପ୍ରଥାସମୂହ ଅପେକ୍ଷାକୃତ ପୂର୍ବବର୍ତ୍ତୀ ଯୁଗରେ) ବିବୃତ ଏକ ତଥ୍ୟର ସଂପର୍କ ଅଛି ବୋଲି ମନେ ହୁଏ । ତଥ୍ୟଟି ହେଉଛି, ଅଜୀବିକ୍ ଧର୍ମର ଅନୁଗାମୀମାନେ ଥିଲେ ଶୂଦ୍ର ଏବଂ ବିଭିନ୍ନ ନୀଚ ଜାତିର ଲୋକ, ଏପରିକି ଅସ୍ପୃଶ୍ୟମାନେ ମଧ୍ୟ ସେମାନଙ୍କ ମଧ୍ୟରେ ଥିଲେ । ନୂଆ ନୂଆ ଶିଷ୍ୟ ସଂଗ୍ରହ ପାଇଁ ବୌଦ୍ଧ ଓ ଅଜୀବିକ୍‌ମାନେ ନିଜ ନିଜ ମଧ୍ୟରେ ସକ୍ରିୟ ପ୍ରତିଯୋଗିତା ଚଳେଇଥିଲେ । କାର୍ଯ୍ୟତଃ, ବୌଦ୍ଧ ସୂତ୍ରଗୁଡ଼ିକରେ ଗୋସାଲ ଏବଂ ତାଙ୍କ ଧର୍ମମତକୁ ବିଶେଷ ଭାବେ କଠୋର ଭାଷାରେ ସମାଲୋଚନା କରିବା ମୋଟେ ବିସ୍ମୟଜନକ ନୁହେଁ । ସେମାନଙ୍କ ମଧ୍ୟରେ ତତ୍ତ୍ୱଗତ ବିତର୍କ ବେଳେ ବେଳେ ଖୋଲାଖୋଲି ସଂଘର୍ଷରେ ପର୍ଯ୍ୟବସିତ ହେଉଥିଲା । ସୁପରିଚିତ ବୌଦ୍ଧ ଗ୍ରନ୍ଥକାର ଅଶ୍ୱଘୋଷ କୋଶଳ ରାଜ୍ୟର ରାଜଧାନୀ ଶ୍ରାବନ୍ତୀ ପୁରର ଅଧିବାସୀ ମିଗର ନାମକ ଏକ ଧନୀ ମହାଜନ ସମ୍ବନ୍ଧରେ ଏକ କାହାଣୀ ଲିପିବଦ୍ଧ କରିଛନ୍ତି । କାହାଣୀଟିରେ କୁହାଯାଇଛି, ମିଗର ବହୁ ଦିନ ଧରି ଅଜୀବିକ୍‌ମାନଙ୍କ ପୃଷ୍ଠପୋଷକ ଥିଲେ ଏବଂ ଏହି ସଂପ୍ରଦାୟକୁ ପ୍ରଚୁର ପରିମାଣର ଅର୍ଥଦାନ କରି ସାହାଯ୍ୟ କରୁଥିଲେ । ପରେ ମିଗର ଯେତେବେଳେ ବୌଦ୍ଧ ଧର୍ମ ଗ୍ରହଣ କରିବାକୁ ସ୍ଥିର କଲେ, ସେତେବେଳେ ଏକଦା ତାଙ୍କ ସାହାଯ୍ୟ ପୁଷ୍ଟ ଅଜୀବିକ୍‌ମାନେ ସଂପୂର୍ଣ୍ଣ ଆକ୍ଷରିକ ଅର୍ଥରେ ତାଙ୍କ ଘର ଘେରଉ କରିଥିଲେ । ସ୍ପଷ୍ଟତଃ, ସେମାନେ ସେମାନଙ୍କର ଜଣେ ସତୀର୍ଥଙ୍କୁ ହରାଇ ବସିଛନ୍ତି ବୋଲି ଯେତେ ଶଙ୍କିତ ହୋଇ ପଡ଼ି ନଥିଲେ, ବରଂ, ନିୟମିତ ଭାବେ ମିଗର ସେମାନଙ୍କୁ ଯେଉଁ ବୈଷୟିକ ସାହାଯ୍ୟ ଦେଉଥିଲେ, ତାହା ବନ୍ଦ ହୋଇ ଯିବାର ସମ୍ଭାବନା ଦ୍ୱାରା ସେମାନେ ବିଚଳିତ ହୋଇ ପଡ଼ିଥିଲେ ।

ପାଲି ଭାଷାରେ ଲିଖିତ ବୌଦ୍ଧ ଧର୍ମଶାସ୍ତ୍ରରେ ଗୋସାଲଙ୍କୁ ଜଣେ କୈବର୍ତ୍ତ ସହିତ ତୁଳନା କରାଯାଇଛି, ଯିଏକି ନଦୀ ମୁହାଣରେ ଜାଲପାତି ପ୍ରଚୁର ମାଛ ଧରି ଚାଲିଛନ୍ତି (ଅର୍ଥାତ୍, ସେଇସବୁ ଲୋକଙ୍କୁ ଧରିଛନ୍ତି, ଯେଉଁମାନେ ବୌଦ୍ଧ ଧର୍ମାନୁଗାମୀମାନଙ୍କ ଦଳକୁ ବଢ଼ାଇ ପାରିଥାନ୍ତେ) । ଏହି ଉକ୍ତିଟିରୁ ଏହା ପରିଷ୍କାର ଭାବେ ବୁଝାଯାଏ ଯେ, ଉପରୋକ୍ତ ଏହି ଦୁଇଟି ଧର୍ମମତ ମଧ୍ୟରେ କେବଳ ଯେ ପ୍ରବଳ ପ୍ରତିଯୋଗିତା ଚାଲିଥିଲା, ତା ନୁହେଁ, ଏହି ସମୟରେ ଅଜୀବିକ୍‌ମାନଙ୍କ ଧର୍ମ ବିଶେଷ ଜନପ୍ରିୟ ଥିଲା ।

ଖ୍ରୀଷ୍ଟ ପୂର୍ବ ପଞ୍ଚମ ଶତାବ୍ଦୀରେ ଅଜୀବିକ୍‌ମାନେ ଯଦିଓ ଯଥେଷ୍ଟ, ଏପରିକି ବୌଦ୍ଧ କିମ୍ବା ଜୈନମାନଙ୍କ ଠାରୁ ଜନପ୍ରିୟ ଥିଲେ, ତେବେ ପରବର୍ତ୍ତୀ କାଳରେ ସେମାନଙ୍କ ପ୍ରତିଦ୍ୱନ୍ଦ୍ୱିତା ଯୋଗୁଁ ବୌଦ୍ଧମାନେ ଜୟ ଲାଭ କରିଥିଲେ । ଏହାର ଏକ କାରଣ, ଅଜୀବିକ୍‌ମାନଙ୍କର ଧର୍ମମତରେ ଏକଦର୍ଶିତା, ହୁଏତ, ହୋଇ ପାରେ । ଅଜୀବିକ୍‌ମାନେ ଯଦିଓ ପରମ୍ପରାଗତ ବ୍ରାହ୍ମଣ୍ୟ ଦୃଷ୍ଟିଭଙ୍ଗି ଓ ମତାମତକୁ ପ୍ରତ୍ୟାଖ୍ୟାନ କରିଥିଲେ, ତେବେ ବୌଦ୍ଧ ଧର୍ମ ଭଳି ଏହି ଯୁଗର ଲୋକଙ୍କ ସମ୍ମୁଖରେ ବ୍ରାହ୍ମଣ୍ୟ ମତାଦର୍ଶକୁ ପ୍ରତ୍ୟାହତ କଲା ଭଳି ଜୀବନଯାପନର ମୁଖ୍ୟ ସମସ୍ୟାର କୌଣସି ଅସ୍ତିବାଚକ ଉତ୍ତର ସେମାନେ ଉପସ୍ଥାପିତ କରି ପାରି ନଥିଲେ । ମନଷ୍ୟ ଜୀବନର ତାତ୍ପର୍ଯ୍ୟ, ଜଗତରେ ଓ ସମାଜରେ ମଣିଷର ସୁନିର୍ଦ୍ଦିଷ୍ଟ ସ୍ଥାନ, ବ୍ୟକ୍ତିଗତ ପ୍ରୟାସର ମୂଲ୍ୟ ଏବଂ କେଉଁ ନୀତିସମୂହ "ସଠିକ

ଆଚରଣର” ଭିତ୍ତି ହେବା ଦରକାର, ସେ ସଂପର୍କରେ ଗୋସଲାଙ୍କ ଧର୍ମ ଶିକ୍ଷାରେ ପ୍ରକୃତରେ କୌଣସି ଆଲୋଚନା ନଥିଲା । ଅଥଚ, ଏହିସବୁ ସମସ୍ୟାର ସମାଧାନ ବୌଦ୍ଧ ଏବଂ ଜୈନମାନଙ୍କ ପକ୍ଷରେ ଥିଲା ପ୍ରକୃତ ଆଗ୍ରହର ବିଷୟ । ଅଜୀବିକ୍ ଧର୍ମରେ ପ୍ରଚାରିତ “ସର୍ବବ୍ୟାପୀ ନିଖିଳ ପୂର୍ବ ନିର୍ଦ୍ଦିଷ୍ଟ” ବା ନିୟତି ହିଁ ନୀତିଗତ ଭାବେ ଉପରୋକ୍ତ ସମସ୍ୟାର ବିବେଚନାକୁ ଅସମ୍ଭବ କରି ଦେଇଥିଲା ।

## ଧର୍ମୀୟ-ଦାର୍ଶନିକ ଭାବଧାରାସମୂହ ଓ ମେଗାସ୍ଥେନିସ୍‌ଙ୍କ ବିବରଣୀ

ମଗଧ ଏବଂ ମୌର୍ଯ୍ୟ ସାମ୍ରାଜ୍ୟରେ ଧର୍ମୀୟ ଜୀବନ ସଂପର୍କରେ ସେଲ୍ୟୁକସ୍ ରାଜ୍ୟର ରାଜଦୂତ ମେଗାସ୍ଥେନିସ୍ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସାମଗ୍ରୀ ପ୍ରଦାନ କରି ଯାଇଛନ୍ତି । ମେଗାସ୍ଥେନିସ୍ ଏବଂ ତାଙ୍କର ପରବର୍ତ୍ତୀ ପ୍ରାଚୀନ ୟୁରୋପୀୟ ଇତିହାସକାରମାନେ ସେ ସମୟର ରକ୍ଷଣଶୀଳ ଓ ଅରକ୍ଷଣଶୀଳ ଚିନ୍ତାଧାରାଗୁଡ଼ିକ ମଧ୍ୟରେ ଯଥାଯୋଗ୍ୟ ପାର୍ଥକ୍ୟ ଦର୍ଶାଇଛନ୍ତି ଏବଂ ପ୍ରାଚୀନ ଭାରତୀୟ “ଦାର୍ଶନିକମାନଙ୍କୁ” ବ୍ରାହ୍ମଣ ଏବଂ ଶ୍ରମଣ, ଏଇ ଦୁଇ ଭାଗରେ ବିଭକ୍ତ କରିଛନ୍ତି ।

ଶ୍ରମଣମାନଙ୍କ ସଂପର୍କରେ ଷ୍ଟ୍ରାବୋଙ୍କ ଲିଖିତ ବିବରଣୀ ସହିତ ତତ୍କାଳୀନ ଭାରତୀୟ ପୋଥିପତ୍ରର ଘନିଷ୍ଠ ମେଳ ଲକ୍ଷ୍ୟ କରାଯାଏ । ମେଗାସ୍ଥେନିସ୍‌ଙ୍କ ଭଳି ଷ୍ଟ୍ରାବୋ ମଧ୍ୟ ରାଜାମାନଙ୍କ ସହିତ ଶ୍ରମଣମାନଙ୍କ ସଂପର୍କ ଉପରେ ବିଶେଷ ଜୋର ଦେଇଛନ୍ତି । ସେ କହିଛନ୍ତି, ଚତୁର୍ପାର୍ଶ୍ୱରେ ଯେଉଁସବୁ କଥା ଘଟୁଛି, ସେସବୁର ଅନ୍ତର୍ନିହିତ କାରଣକୁ ବ୍ୟାଖ୍ୟା କରିବା ପାଇଁ ରାଜାମାନେ ଶ୍ରମଣମାନଙ୍କର ଶରଣ ନେଉଥିଲେ (ଭାରତୀୟ ବିବରଣୀଗୁଡ଼ିକ ସହିତ ଏ ସଂପର୍କରେ ଷ୍ଟ୍ରାବୋ ପ୍ରମୁଖଙ୍କ ବିବରଣୀର ଘନିଷ୍ଠ ମେଳ ଅଛି) ।

ଷ୍ଟ୍ରାବୋ ବିଶେଷ ଏକ ଧରଣର ଶ୍ରମଣଙ୍କ ଉଲ୍ଲେଖ କରିଛନ୍ତି, ଯେଉଁମାନେ ସେତେବେଳେ ଜ୍ୟୋତିଷୀ ଏବଂ ଐନ୍ଦ୍ରଜାଲିକ ହିସାବରେ ସୁଖ୍ୟାତ ଥିଲେ । ଭିକ୍ଷାବୃତ୍ତି ଅବଲମ୍ବନ କରି ସେମାନେ ଗ୍ରାମେ ଗ୍ରାମେ ଓ ସହରରେ ପରିଭ୍ରମଣ କରୁଥିଲେ (ଏହି ବର୍ଣ୍ଣନାଟି ଅଜୀବିକ୍‌ମାନଙ୍କ ମଧ୍ୟରେ ଅତ୍ୟନ୍ତ ଜନପ୍ରିୟ ଜ୍ୟୋତିଷୀ ବୋଲି କଥିତ ଭ୍ରାମ୍ୟମାଣ ସନ୍ନ୍ୟାସୀ ଦଳଗୁଡ଼ିକ ସଂପର୍କରେ ଉଲ୍ଲେଖ ବୋଲି ମନେ ହୁଏ) ।

ଷ୍ଟ୍ରାବୋଙ୍କ ଲିଖିତ ଆଉ ଏକ ବର୍ଣ୍ଣନା ମଧ୍ୟ ଶ୍ରମଣମାନଙ୍କୁ ନେଇ ବୋଲି ମନେ ହୁଏ । ବର୍ଣ୍ଣନାଟି “ପ୍ରମନାଇଙ୍କ” ସଂପର୍କରେ (ଖୁବ୍ ସମ୍ଭବତଃ ଶ୍ରମଣମାନଙ୍କ ସଂବନ୍ଧରେ) । ଷ୍ଟ୍ରାବୋ ଲେଖିଛନ୍ତି, “ଗ୍ରନ୍ଥକାରମାନେ କହିଛନ୍ତି ଯେ, ପ୍ରମନାଇମାନେ ବ୍ରାହ୍ମଣମାନଙ୍କ ଠାରୁ ସଂପୂର୍ଣ୍ଣ ଭିନ୍ନ ଧରଣର ଥିଲେ । ବିତର୍କ ଏବଂ ମତ ଖଣ୍ଡନର ପ୍ରବଣତାସଂପନ୍ନ ଏମାନେ ଥିଲେ ଏକ ବିଶେଷ ଧରଣର ଦାର୍ଶନିକ । ପ୍ରାକୃତିକ ଘଟଣାବଳୀ ଓ ଜ୍ୟୋତିର୍ବିଜ୍ଞାନ ନେଇ ପର୍ଯ୍ୟାଲୋଚନାରତ ବ୍ରାହ୍ମଣମାନଙ୍କୁ ଏହି ଦାର୍ଶନିକମାନେ ଅହଂକାରୀ ଓ ଯୁକ୍ତିବିବର୍ଜିତ ବୋଲି ମନେ କରୁଥିଲେ ।” ଷ୍ଟ୍ରାବୋଙ୍କର ଏହି କଥାଗୁଡ଼ିକ ସେ ସମୟର ସାମାଜିକ ପରିସ୍ଥିତିର ଚମତ୍କାର ଯଥାର୍ଥ ପ୍ରତିଫଳନ । କାରଣ ଏହି ସମୟରେ ସଂସାରବାଦୀ ବା ତଥାକଥିତ ଶ୍ରମଣ ମତବାଦସମୂହ ସମାଜରେ ଆବିର୍ଭୂତ ହେଉଥିଲା

ଏବଂ ସେସବୁ ବ୍ରାହ୍ମଣମାନଙ୍କ ସଂପର୍କରେ ଏବଂ ସେମାନଙ୍କ ମତବାଦ ସଂପର୍କରେ ସନ୍ଦିହାନ ଥିଲେ । ଜଗତ ଏବଂ ମଣିଷର ଅସ୍ତିତ୍ୱ ସଂପର୍କିତ ବହୁ ପ୍ରଶ୍ନ ଉପରେ ବ୍ରାହ୍ମଣମାନଙ୍କ ସହିତ ସେମାନେ ନାନାବିଧ ବିତର୍କରେ ଲିପ୍ତ ରହୁଥିଲେ । ଶ୍ରମଣ କିମ୍ବା "ବିଧର୍ମୀମାନେ" ପ୍ରକୃତରେ ନିଜକୁ ବ୍ରାହ୍ମଣମାନଙ୍କ ଠାରୁ ପୃଥକ୍ କରି ନେଇଥିଲେ । ବ୍ରାହ୍ମଣମାନଙ୍କୁ ସେମାନେ ବ୍ୟଙ୍ଗ ବିଦ୍ରୂପ ଦ୍ୱାରା ଜର୍ଜରିତ କରୁଥିଲେ ଏବଂ ସେମାନଙ୍କ ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ସଂପର୍କିତ ତତ୍ତ୍ୱକୁ ଖଣ୍ଡନ କରିବାରେ ପ୍ରବୃତ୍ତ ହେଉଥିଲେ ।

ଶ୍ରମଣମାନେ ବ୍ରାହ୍ମଣମାନଙ୍କର ଦାମ୍ଭିକ ଆଚରଣର ସମାଲୋଚନା କରୁଥିଲେ । ସମଗ୍ର ସମାଜକୁ ଉପଦେଶ ଦେବା ଏବଂ ସମସ୍ତ ଲୋକଙ୍କୁ ସତ୍ୟ ପଥରେ ପରିଚାଳନା କରିବାରେ ବ୍ରାହ୍ମଣମାନଙ୍କର ତଥାକଥିତ ଅସାଧାରଣ ଅଧିକାରର ବିରୋଧିତା କରୁଥିଲେ । ବୌଦ୍ଧ ପୋଥିମାନଙ୍କରେ ବ୍ରାହ୍ମଣମାନଙ୍କର ଏହି ଧରଣର ଦାମ୍ଭିକତାକୁ ଭିତ୍ତିହୀନ, ବିଭ୍ରାନ୍ତିକର, ମିଥ୍ୟା, ଆଦି ଆଖ୍ୟା ଦିଆଯାଉଥିଲା ।

ପ୍ରାଚୀନ ୟୁରୋପୀୟ ଇତିହାସକାରମାନଙ୍କ ରଚନାବଳୀରେ, ଖୁବ୍ ସମ୍ଭବତଃ, ମେଗାସ୍ଥେନିସ୍‌ଙ୍କ ବିବରଣୀରୁ ଏତାଦୃଶ ଏକ ବକ୍ତବ୍ୟର ସନ୍ଧାନ ମିଳିଥାଏ । ସେଥିରେ କୁହାଯାଇଛି, ଶ୍ରମଣମାନଙ୍କ ମଧ୍ୟରେ ଏଭଳି କେତେକ ସନ୍ନ୍ୟାସୀ ଗୋଷ୍ଠୀ ଅଛନ୍ତି, ଯେଉଁମାନେ ବସ୍ତ୍ର ପରିଧାନ କରୁ ନଥିଲେ (ଏହି ତଥ୍ୟଟି ସହିତ ଖୁବ୍ ସମ୍ଭବତଃ, ଜୈନ-ଦିଗମ୍ବର ସଂପ୍ରଦାୟଭୁକ୍ତ ସନ୍ନ୍ୟାସୀମାନଙ୍କ କଥା କୁହାଯାଇଛି, ଯେଉଁମାନେ ଉଲଙ୍ଗ ଅବସ୍ଥାରେ ଘୁରି ବୁଲୁଥିଲେ) ।

ତତ୍କାଳୀନ ଭାରତର ମତାଦର୍ଶଗତ ବିକାଶର କେତେକ ବିଶେଷ ଲକ୍ଷଣକୁ ଅତି ଯଥାର୍ଥ ଭାବେ ମେଗାସ୍ଥେନିସ୍ ତୋଳି ଧରିଥିଲେ – ଯଥା, ରକ୍ଷଣଶୀଳ ଧାରା ଏବଂ ତା'ର ବିରୋଧୀ ସଂସ୍କାରବାଦୀ (ବା ଶ୍ରମଣ) ଧର୍ମ ଶିକ୍ଷା, ଏହି ଦୁଇଟି ମୂଳ ମତାଦର୍ଶଗତ ଧାରାର ଅସ୍ତିତ୍ୱ ଏବଂ ଏହି ଶେଷୋକ୍ତ ଧାରାର ଅନ୍ତର୍ଭୁକ୍ତ ବହୁବିଧ ସଂପ୍ରଦାୟଗତ ମତବାଦର ଅବସ୍ଥିତି । ଏକଥା ଅବଶ୍ୟ ସ୍ପଷ୍ଟ ଯେ, ସେଲ୍ୟୁକସ୍ ରାଜ୍ୟର ଏହି ରାଜଦୂତ ଯେତେବେଳେ ଭାରତରେ ବାସ କରୁଥିଲେ, ସେପର୍ଯ୍ୟନ୍ତ ବ୍ରାହ୍ମଣ୍ୟ ଧର୍ମ ଦେଶରେ ପ୍ରତାପଶାଳୀ ଥିଲା । ଅନ୍ୟ ଦିଗରେ, ଏହି ଧର୍ମର ବିରୋଧୀ ଶ୍ରମଣ ସଂପ୍ରଦାୟଗୁଡ଼ିକ ସେତେବେଳେ ଯଥେଷ୍ଟ ଗୁରୁତ୍ୱ ଅର୍ଜନ କଲା ଭଳି ଅବସ୍ଥାକୁ ଆସି ନଥିଲେ । ବସ୍ତୁତଃ, ସଂସ୍କାରମୁଖୀ ଧର୍ମୀୟ ମତବାଦଗୁଡ଼ିକ ମଧ୍ୟରୁ ଗୋଟିଏ ହେଲେ ବି ସେପର୍ଯ୍ୟନ୍ତ ବିକାଶର ଏଭଳି ସ୍ତରରେ ପହଞ୍ଚି ନଥିଲେ, ଯଦ୍ୱାରା ବିଦେଶୀଙ୍କ ଦୃଷ୍ଟିରେ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ବା ପ୍ରଭାବଶାଳୀ ବୋଲି ପ୍ରତୀତ ହେବେ । ଏକଥା ଅବଶ୍ୟ ମନେ ରଖିବାକୁ ହେବ ଯେ, ମେଗାସ୍ଥେନିସ୍‌ଙ୍କ ବିବରଣୀର ଯେଉଁସବୁ ଖଣ୍ଡାଂଶ ଆମକୁ ମିଳିଛି, ସେଥିରୁ କୌଣସି ପୂର୍ଣ୍ଣାଙ୍ଗ ଚିତ୍ର ପାଇବା ସମ୍ଭବ ନୁହେଁ ଏବଂ ଏହା ମଧ୍ୟ ସମ୍ଭବ ଯେ, ମୌର୍ଯ୍ୟ ଯୁଗର ପ୍ରାଥମିକ ପର୍ଯ୍ୟାୟରେ ଭାରତରେ ଧର୍ମୀୟ ଜୀବନଯାତ୍ରାର ବହୁ ଗୁରୁତ୍ୱପୂର୍ଣ୍ଣ ଦିଗ ତାଙ୍କ ଦୃଷ୍ଟିରେ ପଡ଼ି ନଥିଲା ।

# କୁଶାଣ ଓ ଗୁପ୍ତ ଯୁଗରେ ଭାରତ

## ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀ ଏବଂ ଖ୍ରୀଷ୍ଟ ପର ପ୍ରଥମ ଶତାବ୍ଦୀରେ ଉତ୍ତର-ପଶ୍ଚିମ ଭାରତ

ମୌର୍ଯ୍ୟ ସାମ୍ରାଜ୍ୟର ଶେଷ ବର୍ଷଗୁଡ଼ିକରେ ଉତ୍ତର-ପଶ୍ଚିମ ଭାରତର ବହୁ ଅଞ୍ଚଳ ସାମ୍ରାଜ୍ୟର କେନ୍ଦ୍ରୀୟ ଶାସନ ଠାରୁ କାର୍ଯ୍ୟତଃ ସ୍ୱାଧୀନ ହୋଇ ଉଠିଥିଲେ । ପରବର୍ତ୍ତୀ କାଳରେ ଉତ୍ତର-ପଶ୍ଚିମ ଅଞ୍ଚଳର କେତେକ ଭୂଖଣ୍ଡରେ କେତେଜଣ ଛୋଟ ଛୋଟ ଭାରତୀୟ-ଗ୍ରୀକ୍ ରାଜା ରାଷ୍ଟ୍ର କ୍ଷମତା ନିଜ ହାତକୁ ନେଇ ଯାଇଥିଲେ । ଏହିସବୁ ରାଜାଙ୍କର ଶାସନ କାଳ ସଂପର୍କରେ ସାମାନ୍ୟ ଆଂଶିକ ବିବରଣୀ ମିଳିଥାଏ ।

ଉପରୋକ୍ତ ଏହିସବୁ ଭାରତୀୟ-ଗ୍ରୀକ୍ ରାଜାମାନଙ୍କ ମଧ୍ୟରୁ ଜଣଙ୍କର ନାମ ସେ ଯୁଗରେ ବିଶେଷ ପରିଚିତ ଥିଲା । ସେ ହେଉଛନ୍ତି ମେନାଣ୍ଡାର । ଭାରତର ଇତିହାସରେ ସେ ମିଳିନ୍ଦ ନାମରେ ପରିଚିତ । ବୌଦ୍ଧ ପୋଥି "ମିଳିନ୍ଦ-ପହ୍ନରେ" (ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ରଚିତ) ରାଜା ମିଳିନ୍ଦ ଓ ବୌଦ୍ଧ ଦାର୍ଶନିକ ଭିକ୍ଷୁ ନାଗସେନାଙ୍କ ମଧ୍ୟରେ ଏକ ବିତର୍କର ଉଲ୍ଲେଖ ରହିଛି । ମେନାଣ୍ଡାରଙ୍କ ରାଜତ୍ୱକାଳରେ କେତେକ ମୁଦ୍ରାରେ ଚକ୍ର ବା ବୌଦ୍ଧରାଜ ଶକ୍ତିର ପ୍ରତୀକ ଚିହ୍ନ ମୁଦ୍ରିତ ହୋଇଛି । ସେଥିରୁ ମନେ ହୁଏ ଯେ, ଏହି ରାଜା, ହୁଏତ, ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ, ନତୁବା ବୌଦ୍ଧମାନଙ୍କର ପୃଷ୍ଠପୋଷକ ଥିଲେ । ମେନାଣ୍ଡାରଙ୍କ ରାଜ୍ୟର ରାଜଧାନୀ ଥିଲା ସାକଲ (ଆଧୁନିକ ଶିଆଲ୍‌କୋଟ୍) । ଗାନ୍ଧାର, ଆରାକୋସିଆ ଏବଂ ପଞ୍ଜାବର କେତେକ ଅଂଶ ଏହି ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଆଗରୁ କୁହାଯାଇଛି ଯେ, ମେନାଣ୍ଡାରଙ୍କ ରାଜତ୍ୱକାଳରେ ଗ୍ରୀକ୍ ସେନାବାହିନୀ ପୂର୍ବ ଭାରତର ବହୁଦୂର ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ ଏବଂ ମଗଧ ରାଜସିଂହାସନରେ ଆସୀନ ଶୁଙ୍ଗ ରାଜବଂଶର ରାଜଧାନୀ ପାଟଳୀପୁତ୍ରର ଦ୍ୱାର ଦେଶରେ ପହଞ୍ଚିଥିଲେ ବୋଲି ଅନୁମାନ କରାଯାଏ ।

ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀରେ ଶକ ନାମକ ଇରାନୀୟ ଉପଜାତିଗୁଡ଼ିକ (ଚୀନ୍‌ର ପ୍ରାଚୀନ ସୂତ୍ରରେ ସାଇ ଉପଜାତି ନାମରେ ପରିଚିତ) ମଧ୍ୟ ଏସିଆରୁ ଅଗ୍ରସର ହୋଇ ଶେଷକୁ ଉତ୍ତର-ପଶ୍ଚିମ ଭାରତରେ ପ୍ରବେଶ କରିଥିଲେ । ପ୍ରାରମ୍ଭରେ ଶକମାନଙ୍କର ଭାରତୀୟ-ଗ୍ରୀକ୍ ରାଜ୍ୟଗୁଡ଼ିକ ସହିତ ସଂଘର୍ଷ ଘଟିଥିଲା ଏବଂ ଶକମାନେ ଶେଷୋକ୍ତ ରାଜ୍ୟମାନଙ୍କର ଅଧୀନତା ସ୍ୱୀକାର କରିଥିଲେ । ପରେ କିନ୍ତୁ ସେମାନେ ନିଜସ୍ୱ ଭାରତୀୟ-ଶକ ରାଜ୍ୟ ପ୍ରତିଷ୍ଠା କଲେ । ଏହିସବୁ ଭାରତୀୟ-ଶକ ରାଜ୍ୟର ପ୍ରଖ୍ୟାତ ରାଜାମାନଙ୍କ ମଧ୍ୟରୁ ଅନ୍ୟତମ ମଉଏସ୍ ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀର ମଧ୍ୟ ଭାଗର କୌଣସି ଏକ ସମୟରେ ରାଜତ୍ୱ କରୁଥିଲେ ବୋଲି ମନେ ହୁଏ । ସେ ଗାନ୍ଧାରରେ ନିଜ

ରାଜ୍ୟ ପ୍ରତିଷ୍ଠା କରିଥିଲେ, ତେବେ ସୋୟାଟ ଉପତ୍ୟକା ଏବଂ, ସମ୍ଭବତଃ, କାଶ୍ମୀରର କେତେକ ଅଂଶ ଏହି ରାଜ୍ୟର ଅନ୍ତର୍ଗତ ଥିଲା । ଏହାର ଉତ୍ତରାଧିକାରୀ ଆଜେସ୍ ତାଙ୍କ ରାଜ୍ୟର ସୀମାନ୍ତ ଆଉରି ବୃଦ୍ଧି କରି ନିଜକୁ "ମହାରାଜାଧିରାଜ" ଉପାଧିରେ ଭୂଷିତ କରିଥିଲେ । ଆରାକୋସିୟାର କେତେକ ଅଂଶ ତାଙ୍କ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଏହି ଅଞ୍ଚଳରେ ଭାରତୀୟ-ପାର୍ଥିୟାନ୍ ରାଜ୍ୟସମୂହର ଅଭ୍ୟୁଦୟ ଘଟିଥିଲା । ଏହି ରାଜ୍ୟସମୂହକୁ ଭାରତୀୟ-ଗ୍ରୀକ୍ ଓ ଭାରତୀୟ-ଶକ ରାଜାମାନଙ୍କ ବିରୁଦ୍ଧରେ ପ୍ରବଳ ସଂଗ୍ରାମ କରିବାକୁ ପଡ଼ିଥିଲା ପ୍ରାଧାନ୍ୟ ଲାଭ ପାଇଁ । ଏହା ପରେ ଭାରତୀୟ-ପାର୍ଥିୟାନ ରାଜା ଗୋଣ୍ଡୋଫାରେସ୍ ଗାନ୍ଧାର, ଆରାକୋସିୟା ଏବଂ ଶକସ୍ଥାନ ବା "ଶକମାନଙ୍କ ବାସଭୂମି" ବୋଲି ଉଲ୍ଲିଖିତ ସେହି ଡ୍ରାନ୍‌ଗିୟାନ୍‌ର (ଆଧୁନିକ ସିସ୍ତାନ୍) କେତେକ ଅଂଶ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ସମର୍ଥ ହୋଇଥିଲେ ।

## କୁଶାଣ ସାମ୍ରାଜ୍ୟ ପ୍ରତିଷ୍ଠା

କୁଶାଣମାନଙ୍କ ଶାସନାଧୀନରେ ଭୟଙ୍କର ପ୍ରତିଦ୍ୱନ୍ଦ୍ୱିତା ଫଳରେ ଖଣ୍ଡ ବିଖଣ୍ଡିତ ଛୋଟ ଛୋଟ ରାଜ୍ୟଗୁଡ଼ିକ ସ୍ଥାନରେ ଏକ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । ଏହି ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଉତ୍ତର ଏବଂ ଉତ୍ତର-ପଶ୍ଚିମ ଭାରତର କେବଳ ବିଭିନ୍ନ ଅଞ୍ଚଳ ନୁହେଁ, ମଧ୍ୟ ଏସିଆର ନାନା ଅଞ୍ଚଳ ଏବଂ ବର୍ତ୍ତମାନ ପାକିସ୍ତାନ ଓ ଆଫ୍‌ଗାନିସ୍ତାନର ଭୂଖଣ୍ଡ ମଧ୍ୟ ଅନ୍ତର୍ଭୁକ୍ତ ଥିଲା ।

ପ୍ରାରମ୍ଭରେ ମଧ୍ୟ ଏସିଆ ଅନ୍ତର୍ଭୁକ୍ତ ବ୍ୟାକ୍‌ଟ୍ରିଆର କେତେକ ଅଂଶ କୁଶାଣ ସାମ୍ରାଜ୍ୟର ଅନ୍ତର୍ଗତ ଥିଲା । ଚୀନ୍‌ର ପ୍ରାଚୀନ ସୂତ୍ରାନୁଯାୟୀ ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀରେ ପ୍ରାଚ୍ୟ ଦେଶରୁ ଇଉୟେ-ଚି ନାମକ ଉପଜାତି ଗୋଷ୍ଠୀଗୁଡ଼ିକ ବ୍ୟାକ୍‌ଟ୍ରିଆ ଆକ୍ରମଣ କରି ଅଧିକାର କରି ନେଇଥିଲେ ଏବଂ ସେଠାରେ ପାଞ୍ଚଟି ରାଜ୍ୟ ପ୍ରତିଷ୍ଠା କରିଥିଲେ । ପରେ (ଚୀନ୍ ଇତିହାସରେ କୁୟେଇ-ଶୁୟାଂ ନାମରେ ଉଲ୍ଲିଖିତ) କୁଶାଣମାନେ ସେଠାରେ ଅନ୍ୟମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ସମର୍ଥ ହୋଇଥିଲେ । ପ୍ରାଚୀନ ୟୁରୋପୀୟ ଇତିହାସକାରମାନେ ମଧ୍ୟ ପ୍ରାଚ୍ୟ ଦେଶରୁ ଆଗତ ଉପଜାତିମାନଙ୍କ କଥା ଉଲ୍ଲେଖ କରିଛନ୍ତି । ଏହି ଉପଜାତିମାନେ ବ୍ୟାକ୍‌ଟ୍ରିଆ ଜୟ କରିଥିଲେ ।

ଷ୍ଟ୍ରାବୋ ଲେଖିଛନ୍ତି, ଉପରୋକ୍ତ ଏହିସବୁ ଉପଜାତି ଗ୍ରୀକ୍‌ମାନଙ୍କ ଠାରୁ ବ୍ୟାକ୍‌ଟ୍ରିଆକୁ ଜୟ କରି ନେଇଥିଲେ । କୁଶାଣ ଉପଜାତିମାନେ ବ୍ୟାକ୍‌ଟ୍ରିଆ ଆକ୍ରମଣ କଲା ବେଳକୁ ଏହା ଦୃଢ଼ ରାଷ୍ଟ୍ର ବ୍ୟବସ୍ଥା ଏବଂ ସୁବିକଶିତ ସଂସ୍କୃତି ସଂପନ୍ନ ଏକ ଉନ୍ନତ ରାଷ୍ଟ୍ର ଥିଲା । ବ୍ୟାକ୍‌ଟ୍ରିଆର ଲୋକେ ସେତେବେଳେ ବ୍ୟାକ୍‌ଟ୍ରୀୟ ଭାଷାରେ କଥା କହୁଥିଲେ (ଏହା ଇରାନୀୟ ଭାଷା ଗୋଷ୍ଠୀର ଅନ୍ତର୍ଭୁକ୍ତ) ଏବଂ ଗ୍ରୀକ୍ ଲିପିରୁ ଉଦ୍‌ଭୂତ ଏକ ଲିପି ମଧ୍ୟ ସେମାନଙ୍କର ଥିଲା । ସୁସ୍ଥିର ଜୀବନଯାତ୍ରା ପ୍ରତି ଅଭ୍ୟସ୍ତ ବ୍ୟାକ୍‌ଟ୍ରୀୟମାନଙ୍କର ଉପରୋକ୍ତ ଏହିସବୁ ଐତିହ୍ୟକୁ କୁଶାଣମାନେ ଗ୍ରହଣ କରି ନେଇଥିଲେ । ତେବେ କୁଶାଣ ସଂସ୍କୃତିର ବିକାଶରେ ସେମାନଙ୍କ ନିଜସ୍ୱ ଯାଯାବର ଉପଜାତିସୁଲଭ ଐତିହ୍ୟସମୂହ ସେପର୍ଯ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଅବଦାନ ଯୋଗାଇ ଚାଲିଥିଲା । ଏହି କୁଶାଣମାନଙ୍କର ଉତ୍ପତ୍ତି ସଂପର୍କିତ ପ୍ରଶ୍ନଟି ଏବେବି ଅମୀମାଂସିତ ରହି ଯାଇଛି ଏବଂ ଏ ସଂପର୍କରେ ତୁମୁଳ ବିତର୍କ ମଧ୍ୟ ଚାଲିଛି ।

ସାଂପ୍ରତିକ ବର୍ଷମାନଙ୍କରେ ଏ ସଂପର୍କରେ ନାନା ପ୍ରକାରର ପ୍ରାମାଣ୍ୟ ମତର ଅବତାରଣା

କରାଯାଇଛି । ଯଥା, ଇଉୟେ-ଚିମାନେ ଆଭ୍ୟନ୍ତରୀଣ ଏସିଆର ତୋହାରି ନାମକ ଉପଜାତିଗୁଡ଼ିକ ସହିତ ସଂପୃକ୍ତ ଏବଂ ସେମାନେ ବ୍ୟାକ୍ଟ୍ରିଆ ଜୟ କଲା ପରେ ସେମାନଙ୍କ ନିଜସ୍ୱ ଭାଷାକୁ ଭୁଲି ଯାଇଥିଲେ । ଅନ୍ୟ ପକ୍ଷରେ, ଆଉ ଏକ ମତ ପ୍ରକାଶ କରାଯାଇଛି ଯେ, କୁଶାଣ ଉପଜାତିର ଉପରି ଘଟିଥିଲା ବ୍ୟାକ୍ଟ୍ରିଆ ମଧ୍ୟରେ (ଏହି ମତାନୁସାରେ, କୁଶାଣମାନଙ୍କ ସହିତ ଇଉୟେ-ଚିମାନଙ୍କର ସଂପର୍କ ବିଷୟରେ ସନ୍ଦେହ ପ୍ରକାଶ କରାଯାଉଛି) । ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀର ଶେଷରେ ଜନୈକ କୁଶାଣ ରାଜା ହେରାୟୁସ୍ ତାଙ୍କ ଦ୍ୱାରା ପ୍ରଚଳିତ ତତ୍କାଳୀନ କେତେକ ମୁଦ୍ରାରେ ନିଜକୁ କୁଶାଣ ହେରାୟୁସ୍ ବୋଲି ଅଭିହିତ କରିଛନ୍ତି ।

କୁଶାଣ ରାଜ କୁଜୁଲା କାଦ୍‌ଫିସେସ୍‌ଙ୍କ ଅମଳରେ (ଚୀନ୍ ଇତିବୃତ୍ତରେ ସେ ଚିଉଇ-ଚିଉ-ବୃତ ବୋଲି ପରିଚିତ) ଆରାକୋସିୟା, କାଶ୍ମୀରର ଏକ ଅଂଶ ଏବଂ ପାର୍ଥିଆର କେତେକ ଅଞ୍ଚଳ କୁଶାଣ ରାଷ୍ଟ୍ରର ଅନ୍ତର୍ଭୁକ୍ତ ହୋଇଥିଲା । କାଦ୍‌ଫିସେସ୍‌ଙ୍କ ରାଜତ୍ୱକାଳର ବହୁ ସଂଖ୍ୟକ ମୁଦ୍ରା କାବୁଲର ଚତୁର୍ପାର୍ଶ୍ୱସ୍ଥ ଅଞ୍ଚଳରୁ ମିଳିଛି । ଏଥିରୁ ବୁଝାଯାଏ ଯେ, ଏହି ଅଞ୍ଚଳଟି ସେତେବେଳେ କୁଶାଣ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ପ୍ରାରମ୍ଭରେ କାଦ୍‌ଫିସେସ୍ ତତ୍କାଳୀନ ଭାରତୀୟ-ଗ୍ରୀକ୍ ରାଜାମାନଙ୍କ କର୍ତ୍ତୃତ୍ୱ ମାନି ନେଇଥିଲେ, ତେଣୁ ତାଙ୍କ ଅମଳର କେତେକ ମୁଦ୍ରାର ଗୋଟିଏ ପାଖରେ ଭାରତୀୟ-ଗ୍ରୀକ୍ ରାଜା ହେର୍‌ମିଉସ୍‌ଙ୍କ ପ୍ରତିଛବି ଏବଂ ଅନ୍ୟ ପାଖରେ ଖରୋଷ୍ଠି ଲିପିରେ କାଦ୍‌ଫିସେସ୍‌ଙ୍କ ନାମ ଛାପାଯାଇଛି । ପରେ, ଅବଶ୍ୟ, କାଦ୍‌ଫିସେସ୍ ପୂର୍ଣ୍ଣ ସ୍ୱାଧୀନତା ଅର୍ଜନ କରିବାକୁ ସମର୍ଥ ହୋଇଥିଲେ । ତେଣୁ ତାଙ୍କର ସେଇ ସମୟର ମୁଦ୍ରାରେ କେବଳ ମାତ୍ର "ରାଜାଧିରାଜ କାଦ୍‌ଫିସେସ୍‌ଙ୍କ" ନାମ ରହିଛି । ତାଙ୍କ ପୁତ୍ର ଦ୍ୱିତୀୟ କାଦ୍‌ଫିସେସ୍ ବା ବୀମ କାଦ୍‌ଫିସେସ୍‌ଙ୍କ ରାଜତ୍ୱକାଳରେ ସିନ୍ଧୁ ନଦର ନିମ୍ନାଞ୍ଚଳର କେତେକ ଅଂଶ କୁଶାଣ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଖୁବ୍ ସମ୍ଭବତଃ, ସେମାନେ ସେତେବେଳେ ପୂର୍ବ ଭାରତର କେତେକ ଭୂଖଣ୍ଡ ଉପରେ, ଏପରିକି ବାରାଣସୀ ପର୍ଯ୍ୟନ୍ତ ଆଧିପତ୍ୟ ବିସ୍ତାର କରିବାକୁ ସମର୍ଥ ହୋଇଥିଲେ ।

ବୀମ କାଦ୍‌ଫିସେସ୍ ଏକ ଗୁରୁତ୍ୱପୂର୍ଣ୍ଣ ମୁଦ୍ରା ସଂସ୍କାର ପ୍ରବର୍ତ୍ତନ କରିଥିଲେ । କୁଶାଣ ସାମ୍ରାଜ୍ୟର ସୀମା ମଧ୍ୟରେ ରୋମାନ୍ ସ୍ୱର୍ଣ୍ଣ ମୁଦ୍ରା ଯାଉରେଇ ସହିତ ସମମୂଲ୍ୟର ସ୍ୱର୍ଣ୍ଣ ମୁଦ୍ରା ପ୍ରଚଳନ କରିଥିଲେ । ଏହି କାର୍ଯ୍ୟଟିକୁ, ସମ୍ଭବତଃ, ରୋମାନ୍ ପ୍ରଭାବର ଫଳ ବୋଲି କୁହାଯାଇ ପାରେ । ଖାଣ୍ଟି ଭାରତୀୟ ଭୂଖଣ୍ଡସବୁ ଅଧିକାର କଲା ପରେ ସ୍ଥାନୀୟ ରୀତି ପ୍ରଥାକୁ ମାନିକି ଚଳିବା କୁଶାଣ ରାଜାମାନଙ୍କ ପକ୍ଷରେ ପ୍ରୟୋଜନୀୟ ହୋଇ ପଡ଼ିଥିଲା । ଫଳରେ ସାରା ସାମ୍ରାଜ୍ୟରେ ରାଷ୍ଟ୍ର ପରିଚାଳନା ବ୍ୟବସ୍ଥାରେ ଏହିସବୁ ରୀତି ପ୍ରଥାର ପ୍ରଭାବ ଅନୁଭୂତ ଲାଗିଲା । ଏଥିରୁ ବୁଝାଯାଏ ଯେ, ବୀମ କାଦ୍‌ଫିସେସ୍‌ଙ୍କ ରାଜତ୍ୱକାଳରେ କାହିଁକି ତାଙ୍କ ଦ୍ୱାରା ପ୍ରଚଳିତ ମୁଦ୍ରା ଉପରେ ଦେବତା ଶିବଙ୍କର ପ୍ରତିକୃତି (ବେଳେ ବେଳେ ଶିବଙ୍କ ଅନୁଚର ଓ ତାଙ୍କ ବାହନ ପବିତ୍ର ବୃଷଭ ନନ୍ଦି ସହିତ) ମୁଦ୍ରିତ ହୋଇଛି ।

## କନିଷ୍କ

କନିଷ୍କଙ୍କ ରାଜତ୍ୱକାଳରେ କୁଶାଣ ସାମ୍ରାଜ୍ୟ ତା'ର ଶୀର୍ଷଦେଶରେ ପହଞ୍ଚିଥିଲା । କନିଷ୍କ ଥିଲେ ପ୍ରାଚୀନ ଭାରତର ସର୍ବାପେକ୍ଷା ପ୍ରସିଦ୍ଧ ରାଜାମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କ ଅମଳର ମୁଦ୍ରା

ଏବଂ ଅଳ୍ପ କେତେକ ଖୋଦିତ ଶିଳାଲେଖର ସାକ୍ଷ୍ୟ ବ୍ୟତୀତ ତାଙ୍କ ରାଜତ୍ୱକାଳର ସନ ବା ସମକାଳୀନ ସଂବାଦର ସୂତ୍ର ପ୍ରାୟ ସାମାନ୍ୟ ମିଳିଛି । ତେବେ, ପରବର୍ତ୍ତୀ କାଳର ବୌଦ୍ଧ ଉପକଥା ଏବଂ କାହାଣୀମାନଙ୍କରେ ରାଜା କନିଷ୍କ ଏବଂ ତାଙ୍କ କୀର୍ତ୍ତିକଳାପର ନାନା ଉଲ୍ଲେଖ ମିଳିଥାଏ । କନିଷ୍କଙ୍କ ଅମଳରେ କୁଷାଣମାନଙ୍କ ରାଷ୍ଟ୍ର କ୍ଷମତା ସୁଦୂର ବିହାରର ଏକ ଅଂଶ ତଥା ମଧ୍ୟ ଭାରତରେ ନର୍ମଦା ନଦୀର ତୀର ପର୍ଯ୍ୟନ୍ତ ପ୍ରସାରିତ ହୋଇଥିଲା ।

କନିଷ୍କଙ୍କ ରାଜତ୍ୱକାଳରେ କୁଷାଣମାନେ ପୁଣି ସେମାନଙ୍କ ରାଜ୍ୟ ସୀମା ସୌରାଷ୍ଟ୍ର ଓ କାଥିଆବାଡ଼ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ତେବେ ପଶ୍ଚିମ ଦେଶୀୟ କ୍ଷତ୍ରପମାନେ (ପଶ୍ଚିମ ଭାରତର ପ୍ରଦେଶଗୁଡ଼ିକର ଶାସକମାନେ) କୁଷାଣମାନଙ୍କ କର୍ତ୍ତୃତ୍ୱକୁ ପୂରାପୂରି ମାନି ନେଇ ନଥିଲେ । ପୂର୍ବ ତୁର୍କିସ୍ତାନର ଏକ ଅଂଶ ଦଖଲ ଘେନି ଚୀନ୍ ସହିତ କୁଷାଣମାନଙ୍କ ଯୁଦ୍ଧ କଥା ଚୀନ୍ ଇତିବୃତ୍ତସମୂହରେ ଉଲ୍ଲେଖ ଅଛି । କେତେକ ଲିଖିତ ସୂତ୍ରରୁ ଏପରି ଇଙ୍ଗିତ ମିଳେ ଯେ, କୁଷାଣ ସେନାବାହିନୀ ଉପରୋକ୍ତ ଏହିସବୁ ଭୂଖଣ୍ଡର ଅଭ୍ୟନ୍ତରରେ ବହୁଦୂର ପର୍ଯ୍ୟନ୍ତ ଅନୁପ୍ରବେଶ କରିବାକୁ ସମର୍ଥ ହୋଇଥିଲେ । ତେବେ କୁଷାଣ ରାଜାମାନେ ଏହି ଅଧିକୃତ ଅଞ୍ଚଳକୁ ନିଜ ଶାସନାଧୀନରେ ରଖିବାକୁ ସମର୍ଥ ହୋଇଥିଲେ କି ନାହିଁ, ତାହା ଜଣାଯାଏ ନାହିଁ । ସେ ଯାହା ହେଉ ନା କାହିଁକି, ଗୋଟିଏ ବିଷୟ କିନ୍ତୁ ପରିଷ୍କାର ଯେ, ରାଜା କନିଷ୍କଙ୍କ ଅମଳରେ କୁଷାଣ ସାମ୍ରାଜ୍ୟ ପ୍ରାଚୀନ ଜଗତରେ ସର୍ବାପେକ୍ଷା ଶକ୍ତିଶାଳୀ ରାଜ୍ୟମାନଙ୍କ ମଧ୍ୟରୁ ଅନ୍ୟତମ ହୋଇ ଉଠିଥିଲା । ଏହା ଚୀନ୍, ରୋମ୍ ଏବଂ ପାର୍ଥିଆର ସାମ୍ରାଜ୍ୟର ସମକକ୍ଷ ଥିଲା । ଏହି ସମୟରେ କୁଷାଣ ସାମ୍ରାଜ୍ୟ ସହିତ ରୋମ୍ ସାମ୍ରାଜ୍ୟର ସଂପର୍କ ଘନିଷ୍ଠ ଥିଲା । କାର୍ଯ୍ୟତଃ, ଏହା ଖୁବ୍ ସମ୍ଭବ ଯେ, ୟୁରୋପୀୟ ପ୍ରାଚୀନ ଇତିବୃତ୍ତରେ ସମ୍ରାଟ୍ ଟ୍ରାଜନ୍‌ଙ୍କ (ଖ୍ରୀ : ୯୯) ରାଜତ୍ୱକାଳରେ ରୋମ୍‌ରେ ଭାରତୀୟ ରାଜଦୂତାଳୟ ଥିଲା ବୋଲି ଯେଉଁ ଉଲ୍ଲେଖ ମିଳେ, ତା ସହିତ କୁଷାଣ ସାମ୍ରାଜ୍ୟ ସଂପୃକ୍ତ ।

ଚୀନ୍ ଓ ଭାରତୀୟ ପ୍ରାଚୀନ ସୂତ୍ରସମୂହରେ କନିଷ୍କଙ୍କୁ ବୌଦ୍ଧ ଧର୍ମର ଯଥାର୍ଥ ଅନୁଗାମୀ ବୋଲି ବର୍ଣ୍ଣନା କରାଯାଇଛି ଏବଂ ତାଙ୍କ ନାମ ସହିତ କାଶ୍ମୀରରେ ବୌଦ୍ଧ ମହାସମ୍ମେଳନ (ତଥାକଥିତ ଚତୁର୍ଥ ବୌଦ୍ଧ ମହାସମ୍ମେଳନ) ଆହ୍ୱାନର ଘଟଣାଟିକୁ ଯୁକ୍ତ କରାଯାଇଛି । କନିଷ୍କ, ଖୁବ୍ ସମ୍ଭବତଃ, ବୌଦ୍ଧ ଧର୍ମର ସମର୍ଥକ ଥିଲେ, ତେବେ ତାଙ୍କର ଅସଲ ରାଜନୀତି ଥିଲା ସମସ୍ତ ଧର୍ମ ପ୍ରତି ସହନଶୀଳତା । ଏହାର ପ୍ରମାଣ ମିଳେ ତାଙ୍କ ରାଜତ୍ୱକାଳର ମୁଦ୍ରାଗୁଡ଼ିକରୁ । କାରଣ ସେଇସବୁ ମୁଦ୍ରାରେ ଭାରତୀୟ, ହେଲିନିକ୍ ଏବଂ ଜରଥୁଷ୍ଟ୍ରୀ ଧର୍ମର ଦେବଦେବୀମାନଙ୍କ ପ୍ରତିକୃତି ମୁଦ୍ରିତ ହୋଇଛି । କନିଷ୍କଙ୍କ ରାଜତ୍ୱକାଳରେ ବୌଦ୍ଧ ଧର୍ମ ରାଷ୍ଟ୍ରୀୟ ଧର୍ମର ମର୍ଯ୍ୟାଦା ମଧ୍ୟ ଲାଭ କରି ନଥିଲା ଏବଂ ତାଙ୍କ ଦ୍ୱାରା ପ୍ରଚଳିତ ବହୁବିଧ ମୁଦ୍ରା ମଧ୍ୟରେ ମାତ୍ର ଅଳ୍ପ କେଇଟିରେ ବୁଦ୍ଧ ଦେବଙ୍କ ପ୍ରତିକୃତି ଦେଖିବାକୁ ମିଳେ ।

ଏହି ସମୟରେ ରାଜ କାର୍ଯ୍ୟରେ ବ୍ୟାକ୍‌ଟ୍ରୀୟ ଭାଷା କ୍ରମଶଃ ଅଧିକରୁ ଅଧିକ ଗୁରୁତ୍ୱ ଲାଭ କରିଥିଲା ଏବଂ, ପରିଶେଷରେ, ସାରା ସାମ୍ରାଜ୍ୟରେ ଗୃହୀତ ହୋଇଥିଲା । ଏହି ସମୟରେ ବ୍ୟାକ୍‌ଟ୍ରୀୟ ଲିପି ମଧ୍ୟ ବିକାଶ ଲାଭ କରିଥିଲା (ଗ୍ରୀକ୍ ଲିପିର ଭିତ୍ତିରେ) । ଏପରିକି ମୁଦ୍ରାରେ ଖରୋଷ୍ଠି ଲିପି ପରିବର୍ତ୍ତେ ବ୍ୟାକ୍‌ଟ୍ରୀୟ ଲିପି ଗ୍ରହଣ ହୋଇଥିଲା । କିଛି ବର୍ଷ ପୂର୍ବେ ଉତ୍ତର ଆଫ୍‌ଗାନିସ୍ତାନର ସୁର୍ଖ-କୋତଲରେ ବ୍ୟାକ୍‌ଟ୍ରୀୟ ଲିପିରେ ଲିଖିତ କନିଷ୍କଙ୍କ ରାଜତ୍ୱକାଳର ଏକ ପ୍ରକାଣ୍ଡ

ଶିଳାଲେଖ ମିଳିଛି । ଏହି ଶିଳାଲେଖରେ ଏକ ମଠ ନିର୍ମାଣର, ସମ୍ଭବତଃ, କୁଶାଣ ରାଜବଂଶର ଏକ ସମାଧିସ୍ଥାନ ନିର୍ମାଣର ଉଲ୍ଲେଖ ଦେଖିବାକୁ ମିଳେ ।

କୁଶାଣ ସାମ୍ରାଜ୍ୟ ସହିତ ଜଡ଼ିତ ସମସ୍ୟାଦି ମଧ୍ୟରେ ସବୁଠାରୁ ଜଟିଳ ପ୍ରଶ୍ନଟି ହେଲା କୁଶାଣ ଶାସନର କାଳ ନିରୂପଣ, ତଥା କନିଷ୍କଙ୍କ ରାଜତ୍ୱର ସାଲ ନିର୍ଣ୍ଣୟ ସମେତ ତାଙ୍କ ସମଗ୍ର ରାଜତ୍ୱକାଳର କାଳପଞ୍ଜି ନିର୍ଣ୍ଣୟ କରିବା । ପଣ୍ଡିତମାନେ କନିଷ୍କଙ୍କ କ୍ଷେତ୍ରରେ ବିଭିନ୍ନ ସାଲସବୁ ଉଲ୍ଲେଖ କରିଛନ୍ତି । ଯଥା, ଖ୍ରୀ: ୭୮, ୧୦୩, ୧୧୦, ୧୪୪, ୨୪୮ ଏବଂ ଏପରିକି ୨୭୮ ମଧ୍ୟ । ଅର୍ଥାତ୍, କହିବାକୁ ଗଲେ, ଏହି ଆନୁମାନିକ ସାଲଗୁଡ଼ିକ ଦୁଇ ଶହ ବର୍ଷ ଧରି ଏକ କାଳ ପର୍ଯ୍ୟାୟ ମଧ୍ୟରେ ବିଛୁଡ଼ି ହୋଇ ରହିଛି । ବର୍ତ୍ତମାନ "କନିଷ୍କଙ୍କ ଯୁଗର" କାଳ ନିର୍ଣ୍ଣୟ ବିଷୟରେ ସର୍ବାପେକ୍ଷା ବିଶ୍ୱାସଯୋଗ୍ୟ ପ୍ରଚେଷ୍ଟା ହେଉଛି ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର ପ୍ରଥମ ଚତୁର୍ଥାଂଶରେ ଏହି ଯୁଗଟିକୁ ନିର୍ଦ୍ଦିଷ୍ଟ କରିବା ।

## କନିଷ୍କଙ୍କ ଉତ୍ତରାଧିକାରୀ ଏବଂ କୁଶାଣ ସାମ୍ରାଜ୍ୟର ପତନ

କନିଷ୍କଙ୍କ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ସବୁଠାରୁ ବିଖ୍ୟାତ ଥିଲେ ହୁବିଷ୍କ ଓ ବାସୁଦେବ । ସେମାନଙ୍କ ରାଜତ୍ୱକାଳରେ କୁଶାଣମାନେ ଗାଙ୍ଗେୟ ଉପତ୍ୟକାର ଭୂଖଣ୍ଡଗୁଡ଼ିକ ପ୍ରତି ବିଶେଷ ଦୃଷ୍ଟି ଦେଇଥିଲେ । କାରଣ, ଉତ୍ତର-ପଶ୍ଚିମର ପ୍ରଦେଶଗୁଡ଼ିକରେ ନିଜର ପ୍ରଭୁତ୍ୱ ବଜାଏ ରଖିବା କ୍ରମଶଃ କଠିନ ହୋଇ ପଡ଼ିଥିଲା । ଏହି ପର୍ଯ୍ୟାୟରେ କୁଶାଣମାନଙ୍କ ମଧ୍ୟରେ ଗଭୀର ଭାବେ ଭାରତୀୟ ପାଲଟିଯିବାର ଏକ ଯୁଗ ଆରମ୍ଭ ହୋଇ ଯାଇଥିଲା, ଭାରତୀୟ ଆଗ୍ରର ବ୍ୟବହାରକୁ ସେମାନେ ଆଉରି ଆୟତ୍ତ କରି ନେଇଥିଲେ ଏବଂ ସ୍ଥାନୀୟ ଜନସାଧାରଣଙ୍କ ସହିତ ଘନିଷ୍ଠ ସଂପର୍କ ଗଢ଼ି ତୋଳିଥିଲେ । ରାଜା ବାସୁଦେବ ଥିଲେ ଶୈବ ସଂପ୍ରଦାୟର ଅନୁଗାମୀ । ବାସୁଦେବଙ୍କ ରାଜତ୍ୱକାଳର ବହୁ ସଂଖ୍ୟକ ଶିଳାଲିପି ମଥୁରାର ଆଖପାଖରେ ଆବିଷ୍କୃତ ହୋଇଛି । ଏଥିରୁ ବୁଝାଯାଏ ଯେ, ଏହି ସମୟରେ କୁଶାଣ ସାମ୍ରାଜ୍ୟର ରାଜନୈତିକ ଓ ସାଂସ୍କୃତିକ ଜୀବନରେ ମଥୁରା ଏକ ବିଶେଷ ଭୂମିକା ପାଳନ କରିଥିଲା ।

ବାସୁଦେବଙ୍କ ରାଜତ୍ୱକାଳରେ କୁଶାଣ ସାମ୍ରାଜ୍ୟର ଅଧଃପତନର ସୂଚନା ଦେଖିବାକୁ ମିଳିଥିଲା । ତାଙ୍କ ଉତ୍ତରାଧିକାରୀମାନଙ୍କୁ ସାସାନିଦ୍‌ମାନଙ୍କ ପ୍ରବଳ ଶକ୍ତିଶାଳୀ ରାଜ୍ୟ ଓ ଭାରତର ବିଭିନ୍ନ ଅଞ୍ଚଳରେ ମୁଣ୍ଡ ଟେକି ଉଠୁଥିବା ବିଭିନ୍ନ ସ୍ଥାନୀୟ ରାଜାମାନଙ୍କ ସହିତ ପ୍ରବଳ ସଂଗ୍ରାମ ଚଳାଇବାକୁ ପଡ଼ିଥିଲା । ମଥୁରାର ରାଜକ୍ଷମତାରେ ଅଧିଷ୍ଠିତ ନାଗ ବଂଶ ଏବଂ କୌଶାମ୍ବିର ରାଜାମାନଙ୍କ ସ୍ୱାଧୀନତାକୁ ମାନି ନେବାକୁ କୁଶାଣମାନେ ବାଧ୍ୟ ହୋଇଥିଲେ । ମଧ୍ୟ ଭାରତର ଯେଉଁସବୁ ଅଞ୍ଚଳ ଏକଦା ସାମ୍ରାଜ୍ୟର ଅଧୀନ ଥିଲା, ସେସବୁ ଅଞ୍ଚଳକୁ ମଧ୍ୟ ଛାଡ଼ି ଦେବାକୁ ପଡ଼ିଥିଲା । ତେବେ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀର ମଧ୍ୟ ଭାଗକୁ କୁଶାଣମାନଙ୍କୁ ସବୁଠାରୁ ପ୍ରଚଣ୍ଡ ଲଢ଼ାଇ ଚଳେଇବାକୁ ପଡ଼ିଲା ପାରସ୍ୟର ସାସାନିଦ୍‌ମାନଙ୍କ ବିରୁଦ୍ଧରେ । ଏହି ଯୁଦ୍ଧ ପରେ କୁଶାଣ ସାମ୍ରାଜ୍ୟର ପଶ୍ଚିମ ଅଞ୍ଚଳଗୁଡ଼ିକ ପ୍ରଥମ ଶାପୁରଙ୍କ (ଖ୍ରୀ : ୨୪୧-୨୭୨) ଅଧୀନ ସାସାନିଦୀୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ।

ପ୍ରଥମ ଶାପୁର୍‌ଙ୍କ ଅମଳର (ଖ୍ରୀ : ୨୬୨) ଏକ ବିଖ୍ୟାତ ଶିଳାଲେଖରେ (ଏଥିରେ ମଧ୍ୟ ପାର୍ସି, ପାର୍ଥିୟାନ୍ ଓ ଗ୍ରୀକ୍ ଏହି ତିନି ଭାଷାରେ ତିନୋଟି ଭାଷ୍ୟ ଏପର୍ଯ୍ୟନ୍ତ ତିଷ୍ଠି ରହିଛି) ଏହି ବିଶେଷ ରାଜାଙ୍କୁ "ପାରସିକ ଓ ଅପାରସିକମାନଙ୍କର ରାଜାଧିରାଜ" ବୋଲି କୁହାଯାଇଛି । ଏହି ରାଜା ସୁଦୂର ପୁରୁଷପୁର (ପେଶଓ୍ୱାର) ପର୍ଯ୍ୟନ୍ତ ଏବଂ କାଶ (କାଶ୍‌ଗର), ସଗ୍‌ଦିଆନା ଓ ଶାଶ୍‌ର (ତାସ୍‌ଖନ୍ଦ) ସୀମା ପର୍ଯ୍ୟନ୍ତ ବିସ୍ତୃତ ବିଶାଳ କୁଶାଣ ଭୂଖଣ୍ଡର ଅଧିପତି ଥିଲେ ବୋଲି ସେଥିରେ ଉଲ୍ଲେଖ ଅଛି । ତେବେ, ଯେତେ ଦୂର ମନେ ହୁଏ, ଏହି ସମୟରେ କୁଶାଣ ଭୂମିର କୌଣସି ସାସାନିଦୀୟ ଅଧିପତି ନିଯୁକ୍ତ ହୋଇ ନଥିଲେ । ଏହାର ଅନେକ ପରେ, କେବଳ ଚତୁର୍ଥ ଶତାବ୍ଦୀର ଶେଷ ଚତୁର୍ଥାଂଶରେ, ଅଧୀନସ୍ଥ କୁଶାଣ ଭୂଖଣ୍ଡଗୁଡ଼ିକର ସାସାନିଦୀୟ ରାଜପ୍ରତିନିଧି ଶାସକମାନେ ବିଶେଷ ଧରଣର କୁଶାଣ ସାସାନିଦୀୟ ମୁଦ୍ରା ନିର୍ମାଣ ଏବଂ ପ୍ରଚଳନ କରିଥିଲେ ।

କୁଶାଣ ରାଜତ୍ୱର ଶେଷ ଆଡ଼କୁ କୁଶାଣମାନଙ୍କ ଅଧୀନସ୍ଥ ଭୂଖଣ୍ଡ ବୋଇଲେ କେବଳ ମାତ୍ର ଗାନ୍ଧାରର ବିଭିନ୍ନ ଅଞ୍ଚଳ ଥିଲା । ପରେ କୁଶାଣମାନଙ୍କ ଦ୍ୱାରା ଅଧିକୃତ ଭାରତୀୟ ଭୂଖଣ୍ଡର ପ୍ରାୟ ସମସ୍ତ ଅଞ୍ଚଳ ଗୁପ୍ତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଗଲା ।

## କୁଶାଣ ଯୁଗର ଦେବଦେବୀ ଓ ସାଂସ୍କୃତିକ ଅଗ୍ରଗତି

ପ୍ରାଚୀନ ଜଗତର ବହୁ ଅଞ୍ଚଳର ଐତିହାସିକ ଓ ସାଂସ୍କୃତିକ ବିକାଶ ଉପରେ କୁଶାଣ ଯୁଗ ତା'ର ବିଶିଷ୍ଟ ଛାପ ରାଖିଯାଇଛି । ବହୁ ବିଚିତ୍ର ଜାତି ଓ ମଣିଷ କୁଶାଣମାନଙ୍କର ଏକ ଐକ୍ୟବଦ୍ଧ, ଅଖଣ୍ଡ ସାମ୍ରାଜ୍ୟର ସୀମା ମଧ୍ୟରେ ଏକତ୍ରିତ ହୋଇଥିଲେ । ଏହି ବ୍ୟବସ୍ଥା ମଧ୍ୟରେ ଗଢ଼ି ଉଠିଥିଲା ସର୍ବଗ୍ରାହ୍ୟ ନାନା ରୀତିନୀତି । କେବଳ ଏହି ସାମ୍ରାଜ୍ୟର ବିଭିନ୍ନ ଅଂଶ ମଧ୍ୟରେ ଯେ ଘନିଷ୍ଠ ସଂପର୍କ ଗଢ଼ି ଉଠିଥିଲା, ତା ନୁହେଁ, ରୋମ୍, ଦକ୍ଷିଣ-ପୂର୍ବ ଏସିଆର ଦେଶସମୂହ ଏବଂ ଦୂର ପ୍ରାଚ୍ୟ ସହିତ ମଧ୍ୟ ସଂପର୍କ ଗଢ଼ି ଉଠିଥିଲା । ବହୁ ବିଚିତ୍ର ରୀତିନୀତି ଓ ସଂସ୍କୃତିର ସଂଶ୍ଳେଷଣର ଫଳ ଥିଲା କୁଶାଣ ସଂସ୍କୃତି, ତେବେ ତା ମଧ୍ୟରେ ସ୍ଥାନୀୟ ଭାବଧାରା ଏବଂ ପ୍ରବଣତା ମଧ୍ୟ ସଂରକ୍ଷିତ ହୋଇଥିଲା । ଏପରିକି ଶାସ୍ତ୍ରୀୟ ପରମ୍ପରାର ସର୍ବୋତ୍କୃଷ୍ଟ ଐତିହ୍ୟସମୂହକୁ ମଧ୍ୟ ଯୌଥ ଉତ୍ତରାଧିକାର ହିସାବରେ ଗ୍ରହଣ କରାଯାଇଥିଲା ।

ସଂପ୍ରତି ସୋଭିଏତ୍ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଦ୍ୱାରା ମଧ୍ୟ ଏସିଆରେ ଖନନ କାର୍ଯ୍ୟ ଫଳରେ ସ୍ଥାନୀୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଆଞ୍ଚଳିକ ବିକାଶ ସଂପର୍କୀୟ ବହୁ ଗୁରୁତ୍ୱପୂର୍ଣ୍ଣ ଉପାଦାନ ଆବିଷ୍କୃତ ହୋଇଛି । କୁଶାଣ ଶିଳ୍ପ କ୍ଷେତ୍ରରେ ବିଶିଷ୍ଟ ଏକ ଭୂମିକା ପାଳନ କରିଥିଲା ବ୍ୟାକ୍‌ଟ୍ରୀୟ ଶିଳ୍ପଶୈଳୀ ଏବଂ କୁଶାଣ ଶିଳ୍ପକଳା ଉପରେ ତାହା ସାମଗ୍ରିକ ଭାବେ ପ୍ରଭାବ ପାତ କରିଥିଲା ।

କୁଶାଣ ସାମ୍ରାଜ୍ୟରେ ଜନସାଧାରଣଙ୍କର ଜାତିଗତ ଓ ସାଂସ୍କୃତିକ ବୈଚିତ୍ର୍ୟ ପ୍ରତିଫଳିତ ହୋଇଛି କୁଶାଣମାନଙ୍କ ଉପାସ୍ୟ ଦେବଦେବୀଙ୍କ ଉପରେ । ଏହି ଯୁଗର ବିଭିନ୍ନ ମୁଦ୍ରାରୁ ମିଳୁଥିବା ପ୍ରମାଣରୁ ଏହି ବିଷୟଟି ଆମ ନିକଟରେ ସୁପରିଚିତ ।

ଏସବୁର ବିଶେଷ କରି ଉତ୍କୃଷ୍ଟ ଉଦାହରଣ ମିଳେ କନିଷ୍କ ଏବଂ ହୁବିଷ୍କଙ୍କ ରାଜତ୍ୱକାଳର

ମୁଦ୍ରାଗୁଡ଼ିକରେ । ଏସବୁଥିରେ ତିନି ଧରଣର ଦେବଦେବୀଙ୍କର ପ୍ରତିକୃତି ମୁଦ୍ରିତ – ଇରାନୀୟ, ହେଲେନିକ୍ ଓ ଭାରତୀୟ । ଇରାନୀୟ ଦେବଦେବୀମାନଙ୍କ ମଧ୍ୟରେ ଅଛନ୍ତି ମିତ୍ର ଦେବତା, ଉର୍ବରତାର ଦେବୀ ଆର୍ଦକ୍ଷ, ଚନ୍ଦ୍ର ଦେବତା (ମାଓ), ରଣ ଦେବତା ଭେରେଥ୍ରଗ୍ନ ଏବଂ ପରମ ଦେବତା ଆହୁରାମାଜ୍‌ଦା । ହେଲେନୀୟ ଦେବୀମାନଙ୍କ ମଧ୍ୟରେ ଅଛନ୍ତି ହିଫାୟେସ୍‌ଟସ୍, ସେଲିନେ, ହେଲିଓସ୍ ଓ ହେରାକ୍ଲିସ୍ । ଭାରତୀୟ ଦେବତାମାନଙ୍କ ମଧ୍ୟରେ ସବୁଠାରୁ ଜନପ୍ରିୟ ଥିଲେ ଶିବ, ମହାସେନା ଓ ସନ୍ଦକୁମାର ।

ବହୁ ବିଚିତ୍ର ଦେବଦେବୀମାନଙ୍କର ଏହି ସମନ୍ୱୟ ସମଗ୍ର କୁଶାଣ ସାମ୍ରାଜ୍ୟର ସର୍ବଗ୍ରାହ୍ୟ ସାଂସ୍କୃତିକ ପରମ୍ପରା ଗଠନର ପ୍ରତିଫଳନ ଏବଂ ତତ୍ ସଙ୍ଗେ ସଙ୍ଗେ ଏହା କୁଶାଣ ରାଜାମାନଙ୍କର ସହନଶୀଳତା ନୀତିର ପରିଚୟ ଦେଇଥାଏ । ଏପରିକି ଏହି ସାମ୍ରାଜ୍ୟର ପତନ ପରେ ମଧ୍ୟ ପ୍ରାକ୍ତନ ସାମ୍ରାଜ୍ୟର ବିଭିନ୍ନ ଅଂଶ ମଧ୍ୟରେ ଏହିସବୁ ସର୍ବଗ୍ରାହ୍ୟ ପରମ୍ପରା ଓ ଯୋଗସୂତ୍ର ମଧ୍ୟରୁ ଅନେକ ଟିକି ରହିଥିଲା । କୁଶାଣ ଯୁଗର ସାଂସ୍କୃତିକ ଉତ୍ତରାଧିକାର ପ୍ରାଚ୍ୟର ବହୁ ଜାତିର ପରବର୍ତ୍ତୀ ବିକାଶ କ୍ଷେତ୍ରରେ ଅତୁଟ ପ୍ରଭାବର ସ୍ପର୍ଶ ରଖିଯାଉଛି ।

## ଗୁପ୍ତ ସାମ୍ରାଜ୍ୟର ଉଦ୍‌ଭବ

କୁଶାଣ ସାମ୍ରାଜ୍ୟର ପତନ ପରେ ଭାରତବର୍ଷରେ ରାଜନୈତିକ ବିଡ଼ମ୍ବନାର ଏକ ସୁଦୀର୍ଘ ପର୍ବ ଆସିଥିଲା । ଏହି ଅବସ୍ଥା ବଜାଏ ରହିଥିଲା ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ । ଏହା ପରେ ନୂଆ ଏକ ପରାକ୍ରାନ୍ତ ସାମ୍ରାଜ୍ୟ – ଗୁପ୍ତ ସାମ୍ରାଜ୍ୟର ରଚନା କାଳ ଆରମ୍ଭ ହୋଇଥିଲା ।

ଏହି ସମୟ ପର୍ଯ୍ୟନ୍ତ ପଶ୍ଚିମ ପଞ୍ଜାବର ଛୋଟ ଛୋଟ ଅଞ୍ଚଳଗୁଡ଼ିକ କୁଶାଣ ରାଜବଂଶର ଶାସନାଧୀନରେ ଥିଲା । ଗୁଜରାଟ, ରାଜସ୍ଥାନ ଓ ମାଳବରେ କ୍ଷତ୍ରପମାନେ ରାଜତ୍ୱ କରୁଥିଲେ ଏବଂ ଗାଙ୍ଗେୟ ଉପତ୍ୟକାରେ କେତେକ ପ୍ରଜାତାନ୍ତ୍ରିକ ରାଷ୍ଟ୍ର ସମେତ ବହୁ ରାଷ୍ଟ୍ର ସଂଘର ଅସ୍ତିତ୍ୱ ଥିଲା । ମଗଧରେ ଗୋଟିକ ପରେ ଗୋଟିଏ ରାଜବଂଶର ଉତ୍‌ଥାନ ପତନ ଘଟିଲେ ମଧ୍ୟ ସେପର୍ଯ୍ୟନ୍ତ ତାହା ଉତ୍ତର ଭାରତର ଅର୍ଥନୈତିକ ଓ ସାଂସ୍କୃତିକ ଜୀବନରେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ପାଳନ କରି ଚାଲିଥିଲା ।

ମୌର୍ଯ୍ୟ ଯୁଗରେ ଯେପରି ଘଟିଥିଲା, ସେଇପରି ଆଉ ଥରେ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରାରମ୍ଭରେ ପୁଣି ମଗଧ ପରାକ୍ରାନ୍ତ ଗୁପ୍ତ ସାମ୍ରାଜ୍ୟର କେନ୍ଦ୍ରୀୟ ଭିତ୍ତି ହିସାବରେ ନୂଆ ଏକ ରାଜନୈତିକ ସଂଗଠନର କେନ୍ଦ୍ର ହୋଇ ଉଠିଲା । ଗୁପ୍ତ ରାଜବଂଶର ପ୍ରଥମ କେତେକ ରାଜାଙ୍କ ସଂପର୍କରେ ବେଶି କିଛି ଜଣାଯାଏ ନାହିଁ । ଏହି ରାଜବଂଶର ପ୍ରତିଷ୍ଠାତା ଥିଲେ ରାଜା ଓ ମହାରାଜା ଉପାଧିଧାରୀ ଶ୍ରୀଗୁପ୍ତ । ତେବେ ଗୁପ୍ତ ଯୁଗର କେତେକ ଖୋଦିତ ଶିଳାଲିପିରୁ ଯାହା ଜଣାଯାଏ, ସେଥିରୁ ମନେ ହୁଏ ଯେ, ରାଜବଂଶଟିର ଅସଲ ଇତିହାସ ଆରମ୍ଭ ହୋଇଥିଲା ଶ୍ରୀଗୁପ୍ତଙ୍କ ପୁତ୍ର ରାଜା ଘଟୋତ୍‌କଚଙ୍କ ଅମଳରୁ । ଦୁଃଖର ବିଷୟ, ଗୁପ୍ତମାନଙ୍କ ଆଦି ରାଜ୍ୟ ଓ ତା'ର ପରିଧି ସଂପର୍କରେ କିଛି ଜଣାଯାଏ ନାହିଁ । କେତେକ ଐତିହାସିକ ମନେ କରନ୍ତି, ମଗଧ ରାଜ୍ୟର ସୀମା ଥିଲା ଏହି ରାଜ୍ୟର ସୀମା । କିନ୍ତୁ ଆଉ କେତେକ ମନେ କରନ୍ତି, ବର୍ତ୍ତମାନ ପଶ୍ଚିମ ବଂଗର

ଅଂଶବିଶେଷ ଏହି ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଏହି ପ୍ରଶ୍ନର ସମାଧାନ ଦିଗରେ ଉପରୋକ୍ତ ଏହି ଅନିଶ୍ଚିତତା ହେଉଛି ଖୋଦିତ ଲିପିଗତ ଯଥାଯଥ ତଥ୍ୟର ଅଭାବର ଫଳ । ଏ ସଂପର୍କରେ ଚୀନ୍ ପରିବ୍ରାଜକ ଇ ତ୍‌ସିଙ୍ଗ୍‌ଙ୍କ ସର୍ବଶେଷ ବିବରଣୀଟି ଏପର୍ଯ୍ୟନ୍ତ ମିଳିଥିବା ପ୍ରଧାନ ଲିଖିତ ସୂତ୍ରଗୁଡ଼ିକ ମଧ୍ୟରୁ ଅନ୍ୟତମ ।

ଗୁପ୍ତ ସାମ୍ରାଜ୍ୟର ସୁଦୃଢ଼ୀକରଣ କାର୍ଯ୍ୟ ଆରମ୍ଭ ହୋଇଥିଲା ପ୍ରଥମ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳରେ । ସେ ମହାରାଜାଧିରାଜ ଉପାଧି ଧାରଣ କରିଥିଲେ । ତାଙ୍କର ପୁତ୍ର ସମୁଦ୍ରଗୁପ୍ତଙ୍କ ନିର୍ଦ୍ଦେଶରେ ରଚିତ ବିଖ୍ୟାତ ଏଲାହାବାଦ ସ୍ତମ୍ଭ ଲିପିରେ କୁହାଯାଇଛି ଯେ, ସମୁଦ୍ରଗୁପ୍ତ ଥିଲେ "ଲିଚ୍ଛବି କନ୍ୟାଙ୍କ" ପୁତ୍ର । ଅର୍ଥାତ୍, ଏଥିରୁ ଜଣାଯାଏ ଯେ, ଚନ୍ଦ୍ରଗୁପ୍ତଙ୍କ ସ୍ତ୍ରୀ ଥିଲେ କ୍ଷତ୍ରିୟ ବଂଶୀୟ ଲିଚ୍ଛବି ଜାତିର । ଇତିପୂର୍ବରୁ ସେଇ ମଗଧ ଯୁଗରୁ ଲିଚ୍ଛବିମାନେ ଥିଲେ ପ୍ରାଚୀନ ଭାରତର ରାଜନୈତିକ ଜୀବନରେ ଅନ୍ୟତମ ପ୍ରଧାନ ଶକ୍ତି । ମନେ ହୁଏ, ପ୍ରଥମ ଗୁପ୍ତ ରାଜାମାନଙ୍କ ରାଜତ୍ୱ ପର୍ଯ୍ୟନ୍ତ ଏହି ଗଣ ସଂଘ ବା ପ୍ରଜାତନ୍ତ୍ର ସଂଘଟି ନିଜର ପ୍ରତାପକୁ ଅକ୍ଷୁଣ୍ଣ ରଖି ପାରିଥିଲା । ତେଣୁ ଲିଚ୍ଛବିମାନଙ୍କ ସହିତ ମୈତ୍ରୀ ବନ୍ଧନ ଗୁପ୍ତ ରାଜଶକ୍ତିର କ୍ଷମତାକୁ ଦୃଢ଼ କରିବା ଦିଗରେ ଖୁବ୍ ସହାୟକ ହୋଇଥିଲା । ଲିଚ୍ଛବିମାନଙ୍କ ସହିତ ବୈବାହିକ ସଂବନ୍ଧ କେବଳ ଯେ ସମୁଦ୍ରଗୁପ୍ତଙ୍କ ଦ୍ୱାରା ଖୋଦିତ ଲିପିରେ ମିଳିଥାଏ, ତା ନୁହେଁ, ଚନ୍ଦ୍ରଗୁପ୍ତଙ୍କ ଅମଳର ସ୍ୱର୍ଣ୍ଣ ମୁଦ୍ରାରେ ରାଜା ଚନ୍ଦ୍ରଗୁପ୍ତଙ୍କ ସହିତ ତାଙ୍କ ଲିଚ୍ଛବିବଂଶୀୟା ରାଣୀଙ୍କର ପ୍ରତିକୃତି ମୁଦ୍ରିତ ହୋଇଥିବାର ଦେଖାଯାଏ । ଚନ୍ଦ୍ରଗୁପ୍ତଙ୍କ ସହିତ ଲିଚ୍ଛବି କନ୍ୟା କୁମାରଦେବୀଙ୍କ ପରିଣୟର ପରିଣାମ ସ୍ୱରୂପ ଭୂଖଣ୍ଡ ଲାଭର ସୁଯୋଗ ଘଟିଥିଲା : ସମ୍ଭବତଃ, ଉଭୟ ରାଷ୍ଟ୍ର ଏକତ୍ର ମିଶିଯାଇ ଗୁପ୍ତ ରାଜାଙ୍କ ଅଧୀନରେ ଏକ ଐକ୍ୟବଦ୍ଧ ସାମ୍ରାଜ୍ୟ ଗଠନ କରିଥିଲେ ।

ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳ ୩୨୦ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲା ଏବଂ ତତ୍ ସଙ୍ଗେ ସଙ୍ଗେ "ଗୁପ୍ତ ଯୁଗର" ସୂତ୍ରପାତ ଘଟିଥିଲା ବୋଲି କୁହାଯାଏ । ତେବେ କେତେକ ପଣ୍ଡିତ ଏହି ବର୍ଷଟିକୁ ସମୁଦ୍ରଗୁପ୍ତଙ୍କ ସିଂହାସନ ଆରୋହଣ ବର୍ଷ ବୋଲି ଗଣ୍ୟ କରିଥାନ୍ତି ।

## ସମୁଦ୍ରଗୁପ୍ତ ଏବଂ ଗୁପ୍ତ ସାମ୍ରାଜ୍ୟର ସୁଦୃଢ଼ୀକରଣ

ସମୁଦ୍ରଗୁପ୍ତଙ୍କ ରାଜତ୍ୱକାଳ ସଂପର୍କରେ ଆଉରି ବିସ୍ତାରିତ ସୂଚନା ମିଳିଥାଏ । ସମୁଦ୍ରଗୁପ୍ତଙ୍କ ଚମତ୍କାର ଦିଗ୍‌ବିଜୟର ପ୍ରଶସ୍ତି କଳ୍ପେ ତାଙ୍କର ସଭା କବି ହରିଷେଣଙ୍କ ରଚିତ ଏଲାହାବାଦ ସ୍ତମ୍ଭ ଲିପିରେ ଏହି ରାଜାଙ୍କ ଦ୍ୱାରା ପରାଜିତ ରାଜବର୍ଗ ଏବଂ ଦେଶସମୂହର ଏକ ନାମ ତାଲିକା ଲିପିବଦ୍ଧ ହୋଇଛି । ସେଥିରେ କୁହାଯାଇଛି, ସମୁଦ୍ରଗୁପ୍ତ ଆର୍ଯ୍ୟାବର୍ତ୍ତର (ଗାଙ୍ଗେୟ ଉପତ୍ୟକାର) ନଅଜଣ ଏବଂ ଦକ୍ଷିଣ ଭାରତର ଏକ ଅଂଶ ଦକ୍ଷିଣାପଥର ବାରଜଣ ରାଜାଙ୍କୁ ପରାଜିତ କରିଥିଲେ । ଆର୍ଯ୍ୟାବର୍ତ୍ତର ଏହି ପରାଜିତ ରାଜ୍ୟସମୂହର ଶାସନାଧୀନ ଭୂଖଣ୍ଡଗୁଡ଼ିକ ଗୁପ୍ତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଉପରୋକ୍ତ ସ୍ତମ୍ଭ ଲିପିରେ ନାଗ ରାଜବଂଶର ଦୁଇଜଣ ରାଜା ବା ଅହିଚ୍ଛତ୍ରର ଦୁଇ ନୃପତିଙ୍କର ଉଲ୍ଲେଖ ଦେଖିବାକୁ ମିଳେ । ଏହା ଛଡ଼ା ଏଥିରେ ଉଲ୍ଲିଖିତ ଅନ୍ୟାନ୍ୟ ବିଜିତ ଭୂଖଣ୍ଡର ଅବସ୍ଥାନ ଯେ କେଉଁଠି, ସେ ସଂପର୍କରେ ଏବେ ନିରୂପଣ କରିବା ଅତ୍ୟନ୍ତ କଠିନ । ପଣ୍ଡିତମାନଙ୍କ

ମହଲରେ ଏହା ଏବେ ମଧ୍ୟ ଏକ ବିତର୍କର ବିଷୟ । ସମୁଦ୍ରଗୁପ୍ତଙ୍କ ସାମରିକ ଅଭିଯାନଗୁଡ଼ିକ ସୀମାବଦ୍ଧ ଥିଲା ତାଙ୍କ ସାମ୍ରାଜ୍ୟର ସନ୍ନିହିତ, ବିଶେଷ କରି ଗାଙ୍ଗେୟ ଉପତ୍ୟକାର ଦେଶମାନଙ୍କରେ । ଆଲୋଚ୍ୟ ଲିପିରେ ଗୁପ୍ତରାଜାଙ୍କର "ଆରଣ୍ୟ ରାଜ୍ୟସମୂହ" ଅଧିକାରର ଉଲ୍ଲେଖ ମିଳିଥାଏ । ମନେ ହୁଏ, ଏହି ରାଜ୍ୟସବୁ ନର୍ମଦା ଓ ମହାନଦୀର ଉପତ୍ୟକାରେ ଅବସ୍ଥିତ ଓ ଉପଜାତି ଅଧ୍ୟୁଷିତ ଥିଲା ।

ସମୁଦ୍ରଗୁପ୍ତଙ୍କ ଦକ୍ଷିଣାପଥ ଅଭିଯାନ ମଧ୍ୟ ଏହିଭଳି ସାଫଲ୍ୟ ମଣ୍ଡିତ ହୋଇଥିଲା । ପ୍ରଥମେ ସେ ଦକ୍ଷିଣ କୋଶଳର ରାଜା ମହେନ୍ଦ୍ରଙ୍କୁ ପରାସ୍ତ କରିଥିଲେ ଏବଂ ତା'ପରେ ଗୋଦାବରୀ ନଦୀର ନିକଟବର୍ତ୍ତୀ ଦକ୍ଷିଣାଞ୍ଚଳର ରାଜାମାନଙ୍କୁ ପଦାନତ କଲା ପରେ ପଲ୍ଲବ ରାଜା ବିଷ୍ଣୁଗୋପଙ୍କୁ ପରାସ୍ତ କରିଥିଲେ । ବିଷ୍ଣୁଗୋପଙ୍କ ରାଜଧାନୀ ଥିଲା କାଞ୍ଚି ନଗର । ଉପରୋକ୍ତ ଲିପିରେ ଉଲ୍ଲେଖ ଅଛି, ଅନ୍ୟାନ୍ୟ ଅଞ୍ଚଳଗୁଡ଼ିକୁ ଏପର୍ଯ୍ୟନ୍ତ ନିର୍ଣ୍ଣୟ କରିବା ସମ୍ଭବ ନୁହେଁ ।

ଦକ୍ଷିଣ ଭାରତର ଏହି ରାଜ୍ୟଗୁଡ଼ିକ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା ବୋଲି ମନେ ହୁଏ ନାହିଁ । ତେବେ ବିଜେତା ରାଜାଙ୍କୁ ସେମାନେ ଅଧୀନତାର ନିଦର୍ଶନ ସ୍ୱରୂପ କର ଦେବାକୁ ପଡ଼ୁଥିଲା । ସେଥିରୁ ମନେ ହୁଏ, ଏମାନଙ୍କୁ ବିଜିତ କରଦ ରାଜ୍ୟ ବୋଲି ଗଣ୍ୟ କରାଯାଇଥିଲା । ଏହା ଛଡ଼ା ପଶ୍ଚିମ ଓ ଉତ୍ତର-ପଶ୍ଚିମ ଭାରତର କେତେକ ଗଣରାଜ୍ୟ ସଂଘ ମଧ୍ୟ ଗୁପ୍ତ ସାମ୍ରାଜ୍ୟର କରଦରାଜ୍ୟ ଥିଲା : ଯଥା, ଯୌଧେୟ, ମାଳବ, ମାଦ୍ରାଜ ଓ ଅର୍ଜୁନାୟନ ନାମକ ରାଜ୍ୟଗୁଡ଼ିକୁ ।

ରାଜା ସମୁଦ୍ରଗୁପ୍ତଙ୍କ ସହିତ ପଶ୍ଚିମ ଭାରତର କ୍ଷତ୍ରପର ଏବଂ ସେତେବେଳ ପର୍ଯ୍ୟନ୍ତ ପଶ୍ଚିମ ପଞ୍ଜାବ ଓ ଆଫ୍‌ଗାନିସ୍ତାନର କେତେକ ଅଂଶର ଶାସନକର୍ତ୍ତା କୁଶାଣ ବଂଶର ପରବର୍ତ୍ତୀ ରାଜାମାନଙ୍କ ସଂପର୍କ ଖୁବ୍ ଜଟିଳ ଥିଲା । ଏଲାହାବାଦ ଲିପିରେ କ୍ଷତ୍ରପ ଏବଂ କୁଶାଣମାନଙ୍କ ଉପରେ ଗୁପ୍ତ ବଂଶର ସାର୍ବଭୌମତ୍ୱ ପ୍ରତିଷ୍ଠା କଥା ଉଲ୍ଲେଖ ଅଛି । ମନେ ହୁଏ, ଉପରୋକ୍ତ ଏହିସବୁ ଭୂଖଣ୍ଡ ଉପରେ ସମୁଦ୍ରଗୁପ୍ତଙ୍କର ଏକ ପ୍ରକାରର ଆଧିପତ୍ୟ ପ୍ରତିଷ୍ଠା ହୋଇଥିଲା । ତେବେ ଠିକ୍ ଏହି ପର୍ଯ୍ୟାୟରେ କ୍ଷତ୍ରପମାନେ ଏବଂ କୁଶାଣ ରାଜାବୃନ୍ଦ ସେମାନଙ୍କ ସ୍ୱାଧୀନତାକୁ ବିସର୍ଜନ ଦେଇ ନଥିଲେ ।

ଏହି ରହସ୍ୟର ଉନ୍ମୋଚନ ଦିଗରେ ଏକ ଆଗ୍ରହୋଦ୍ଦୀପକ ଚାବିକାଠି ମିଳିଥାଏ ନିମ୍ନୋକ୍ତ ଘଟଣାଟିରୁ । ୩୩୨ ଖ୍ରୀଷ୍ଟାବ୍ଦରୁ ୩୪୮ ଏବଂ ୩୫୧ ଖ୍ରୀଷ୍ଟାବ୍ଦରୁ ୩୬୦ ଖ୍ରୀଷ୍ଟାବ୍ଦର ମଧ୍ୟବର୍ତ୍ତୀ ବର୍ଷଗୁଡ଼ିକରେ କ୍ଷତ୍ରପମାନଙ୍କ ନାମାଙ୍କିତ ମୁଦ୍ରା ଜମାରୁ ମିଳେ ନାହିଁ । ଏଥିରୁ ମନେ ହୁଏ ଯେ, ଅନ୍ତତଃପକ୍ଷେ ଏହି ସମୟରେ କ୍ଷତ୍ରପମାନେ ସାମୟିକ ଭାବେ ଗୁପ୍ତମାନଙ୍କ ଅଧୀନତା ସ୍ୱୀକାର କରି ନେଇଥିଲେ । ପ୍ରକୃତରେ ଏହି ସମୟରେ ପଶ୍ଚିମ ଭାରତର କ୍ଷତ୍ରପମାନଙ୍କ ଭୂଖଣ୍ଡରେ ଗୁପ୍ତ ରାଜାମାନଙ୍କର ମୁଦ୍ରା ପ୍ରଚଳିତ ଥିଲା । ପରେ, ଅବଶ୍ୟ, ପଶ୍ଚିମ ଦେଶୀୟ କ୍ଷତ୍ରପମାନଙ୍କର ସର୍ବାଧିନାୟକ ତୃତୀୟ ରୁଦ୍ରସେନା ତାଙ୍କ ରାଜ୍ୟର ପୂର୍ବକ୍ଷମତାର ପୁନରୁଦ୍ଧାର କରିଥିଲେ କିଛି କାଳ ପାଇଁ । ତାଙ୍କର ପରବର୍ତ୍ତୀ ସିଂହସେନ "ମହାକ୍ଷତ୍ରପ" ଉପାଧି ଧାରଣ କରିଥିଲେ ।

ସମୁଦ୍ରଗୁପ୍ତ ଶ୍ରୀଲଙ୍କା ସହିତ ମଧ୍ୟ ଘନିଷ୍ଠ ସଂପର୍କ ବଜାଏ ରଖିଥିଲେ । କିମ୍ବଦନ୍ତୀ ଅନୁଯାୟୀ ସିଂହଳର ରାଜା ମେଘବରଣ (୩୫୨-୩୭୯ ଖ୍ରୀ :) ସମୁଦ୍ରଗୁପ୍ତଙ୍କ ନିକଟକୁ ରାଜଦୂତ ପ୍ରେରଣ କରି ଭାରତରେ ସିଂହଳୀ ଭିକ୍ଷୁମାନଙ୍କ ପାଇଁ ଏକ ମଠ ନିର୍ମାଣର ଅନୁମତି ଚାହିଁଥିଲେ । ସମୁଦ୍ରଗୁପ୍ତ ସେ ଅନୁମତି ଦାନ କରିଥିଲେ ଏବଂ ଏହା ଫଳରେ ପବିତ୍ର ବୋଧିବୃକ୍ଷ ନିକଟରେ ଏକ ବୌଦ୍ଧ ମଠ ନିର୍ମିତ ହୋଇଥିଲା ବୋଲି ମନେ ହୁଏ ।

ସମୁଦ୍ରଗୁପ୍ତଙ୍କ ରାଜତ୍ୱକାଳରେ ଗୁପ୍ତ ସାମ୍ରାଜ୍ୟ ପ୍ରାଚ୍ୟର ଅନ୍ୟତମ ବଡ଼ ବଡ଼ ସାମ୍ରାଜ୍ୟରେ ପରିଣତ ହୋଇଥିଲା । ଏହି ସାମ୍ରାଜ୍ୟର ପ୍ରଭାବ ଦିଗବିଦିଗରେ ବ୍ୟାପୀ ଯାଇଥିଲା ଏବଂ ଅନ୍ୟାନ୍ୟ ବହୁ ରାଷ୍ଟ୍ର ସହିତ ତା'ର ସଂପର୍କ ଗଢ଼ି ଉଠିଥିଲା । ଅତଏବ, ଜଣାଯାଉଛି, ସଭା କବି ହରିଷେଣ ତାଙ୍କ ରାଜାଙ୍କର ଯେଉଁ ପରାକ୍ରମ ଆଉ ସାମର୍ଥ୍ୟର ପ୍ରଶସ୍ତି ଗାଇଛନ୍ତି, ତାହା ପଛରେ କାରଣ ଥିଲା । ଏଲାହାବାଦ ଲିପିର ଭାଷାରେ, ରାଜା ସମୁଦ୍ରଗୁପ୍ତ ଥିଲେ ତ୍ରିଭୁବନଜୟୀ । ପ୍ରାଚୀନ କାଳର ସଭା କବିଙ୍କର ଏହି ରାଜ ପ୍ରଶସ୍ତି ଆଧୁନିକ କାଳର ବହୁ ପଣ୍ଡିତଙ୍କୁ ମଧ୍ୟ ବିପୁଳ ଭାବେ ପ୍ରଭାବିତ କରିଛି । ଏହିସବୁ ପଣ୍ଡିତମାନେ ସମୁଦ୍ରଗୁପ୍ତଙ୍କ ଆଦର୍ଶ ରାଜା ରୂପେ ଚିତ୍ରଣ କରିଛନ୍ତି ଏବଂ ଭିନ୍‌ସେଣ୍ଟ ସ୍ମିଥ୍‌ଙ୍କ ଭଳି ପଣ୍ଡିତ ତାଙ୍କୁ "ଭାରତର ନେପୋଲିଅନ", ଅର୍ଥାତ୍, ଚମକପ୍ରଦ ଗୁଣାବଳୀର ଅଧିକାରୀ ଅସାମାନ୍ୟ ଏକ ବ୍ୟକ୍ତି ବୋଲି ଆଖ୍ୟା ଦେଇଛନ୍ତି ।

## ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ

ଶିଳାଲେଖ ତଥା ଅନ୍ୟାନ୍ୟ ପ୍ରାଚୀନ ସୂତ୍ରାଦିର ତଥ୍ୟକୁ ବିଶ୍ୱର କଲେ, ଜଣାଯାଏ, ସମୁଦ୍ରଗୁପ୍ତ ଖ୍ରୀ: ୩୮୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାଙ୍କ ପରେ ରାମଗୁପ୍ତଙ୍କର ସ୍ୱଳ୍ପକାଳ ରାଜତ୍ୱ ପରେ ତାଙ୍କ ପୁତ୍ର ଦ୍ୱିତୀୟ ଚନ୍ଦ୍ରଗୁପ୍ତ ସିଂହାସନରେ ବସିଥିଲେ । ଦ୍ୱିତୀୟ ଚନ୍ଦ୍ରଗୁପ୍ତ ରାଜତ୍ୱ କରିଥିଲେ ୪୧୩ କିମ୍ବା ୪୧୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ବିଶାଖଦତ୍ତଙ୍କ ଦ୍ୱାରା ରଚିତ ନାଟକ "ଦେବିଚନ୍ଦ୍ରଗୁପ୍ତ" (ଏହି ନାଟକର ଖଣ୍ଡିତ ଅଂଶ ମାତ୍ର ମିଳିଛି) ଅନୁଯାୟୀ, ଦ୍ୱିତୀୟ ଚନ୍ଦ୍ରଗୁପ୍ତ ତାଙ୍କ ଭାଇ ରାମଗୁପ୍ତଙ୍କ ସହିତ ପ୍ରଚଣ୍ଡ ସଂଘର୍ଷରେ ଲିପ୍ତ ହେଲା ପରେ ସିଂହାସନ ଲାଭ କରିଥିଲେ । ନାଟକଟିରେ ସ୍ପଷ୍ଟ କରି କୁହାଯାଇଛି ଯେ, ଭାଇଙ୍କ ବିରୁଦ୍ଧରେ ଚନ୍ଦ୍ରଗୁପ୍ତଙ୍କ ପ୍ରତିଦ୍ୱନ୍ଦ୍ୱିତାରେ ଏହି ସାଫଲ୍ୟ ମୂଳରେ ଥିଲା ପଶ୍ଚିମ ଦେଶୀୟ କ୍ଷତ୍ରପମାନଙ୍କ ବିରୁଦ୍ଧରେ ତାଙ୍କର ଜୟଲାଭ । ଏହି ତଥ୍ୟଟି ଶିଳାଲେଖ ଓ ମୁଦ୍ରା, ପଦକ ଆଦିରୁ ମିଳୁଥିବା ପ୍ରମାଣ ଆଦିରୁ ସମର୍ଥିତ ହୋଇଛି । ଖୋଦିତ ଲିପିଗୁଡ଼ିକରେ, ଅବଶ୍ୟ, କ୍ଷତ୍ରପମାନଙ୍କ ବିରୁଦ୍ଧରେ ଅଭିଯାନର ବିଭିନ୍ନ ସ୍ତର ବିବରଣୀରୁ ମିଳେ ନାହିଁ, ତେବେ ଗୋଟିଏ ଜାଗାରେ ଉଲ୍ଲେଖ କରାଯାଇଛି ଯେ, ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ ଓ ସେନାପତିମାନେ କାର୍ଯ୍ୟ ଉପଲକ୍ଷେ ମାଳବ ଦେଶ ଗସ୍ତ କରିଥିଲେ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ପ୍ରାରମ୍ଭରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ପ୍ରଚଳିତ ମୁଦ୍ରା ପ୍ରବେଶ ଲାଭ କରିଥିଲା ପଶ୍ଚିମ ଦେଶୀୟ କ୍ଷତ୍ରପଗୁଡ଼ିକରେ । ଏହି ମୁଦ୍ରାଗୁଡ଼ିକ ଦେଖିବାକୁ ପ୍ରାକ୍ତନ କ୍ଷତ୍ରପ ଶାସକମାନଙ୍କ ଦ୍ୱାରା ପ୍ରଚଳିତ ମୁଦ୍ରା ଭଳି ଥିଲା । ମନେ ହେଲା, ଏହା ଗୁପ୍ତ ରାଜାଙ୍କ ପଶ୍ଚିମ ଦେଶୀୟ କ୍ଷତ୍ରପମାନଙ୍କର ଭୂଖଣ୍ଡଗୁଡ଼ିକ ଅଧିକାର କରି ସେଗୁଡ଼ିକୁ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବାର ଲକ୍ଷଣ । ଏହା ଛଡ଼ା "ପଶ୍ଚିମ ଦେଶରେ ଅଭିଯାନ" କାଳରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ସମୁଦ୍ର କୂଳବର୍ତ୍ତୀ ଅଞ୍ଚଳ ସହ ପଶ୍ଚିମ ଭାରତର ଆଉ କେତେକ ଅଞ୍ଚଳ ଜୟ କରି ନେଇଥିଲେ । ଏହା ଫଳରେ ଅନେକଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ବାଣିଜ୍ୟ କେନ୍ଦ୍ର ମଧ୍ୟ ଗୁପ୍ତ ରାଜାମାନଙ୍କ ଅଧିକାରକୁ ଆସିଥିଲା ଏବଂ ସେମାନଙ୍କ ସଂଯୋଗ ପ୍ରତିଷ୍ଠିତ ହୋଇଥିଲା ପାଶ୍ଚାତ୍ୟର ବହୁ ଦେଶ ସହିତ ।

ରାଜା ଚନ୍ଦ୍ରଙ୍କ ନିର୍ଦ୍ଦେଶରେ ଦିଲ୍ଲୀର ବିଖ୍ୟାତ ଲୌହ ସ୍ତମ୍ଭରେ ଖୋଦିତ ଲିପିକୁ ଭିତ୍ତି କରି କେତେକ ଇତିହାସକାର ଅନୁମାନ କରନ୍ତି ଯେ, ଦ୍ୱିତୀୟ ଚନ୍ଦ୍ରଗୁପ୍ତ (ଏମାନେ ଚନ୍ଦ୍ର ଓ ଦ୍ୱିତୀୟ

ଚନ୍ଦ୍ରଗୁପ୍ତଙ୍କୁ ଅଭିନ୍ନ ବୋଲି ମନେ କରନ୍ତି) ତାଙ୍କ ସାମ୍ରାଜ୍ୟର ସୀମାକୁ କାଳେ ସୁଦୂର ବଲ୍‌ଖ ପର୍ଯ୍ୟନ୍ତ ପ୍ରସାରିତ କରିଥିଲେ । ତେବେ ଏହି ଅନୁମାନ ସପକ୍ଷରେ ଏପର୍ଯ୍ୟନ୍ତ ଯଥେଷ୍ଟ ପ୍ରମାଣ ମିଳି ନାହିଁ । ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳରେ ପଶ୍ଚିମ ଦାକ୍ଷିଣାତ୍ୟ ଓ ମଧ୍ୟ ଭାରତରେ ଏକ ପରାକ୍ରାନ୍ତ ରାଜା ଭକଟକମାନଙ୍କ ସହିତ ତାଙ୍କ ସଂପର୍କ ଅତୀବ ଘନିଷ୍ଠ ହୋଇ ଉଠିଥିଲା । ତେଣୁ ସାମ୍ରାଜ୍ୟର ଦକ୍ଷିଣ ଏବଂ ପଶ୍ଚିମ ସୀମାର ନିରାପତ୍ତା ସୁନିଶ୍ଚିତ କରିବା ନିମିତ୍ତ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ତାଙ୍କ କନ୍ୟାଙ୍କୁ ସହିତ ଭକଟକବଂଶୀୟ ରାଜାଙ୍କ ସହିତ ବିବାହ ଦେଇ ଭକଟକମାନଙ୍କ ସହିତ ସୁସଂପର୍କ ପ୍ରତିଷ୍ଠା କରିଥିଲେ । ନାଗବଂଶୀୟ ରାଜ୍ୟ ମଧ୍ୟ ଏହି ସମୟରେ ରାଷ୍ଟ୍ର କ୍ଷମତା ଓ ସ୍ୱାଧୀନତା ରକ୍ଷା କରିବାକୁ ସମର୍ଥ ହୋଇଥିଲା, ଯଦିଓ ତାଙ୍କ ଦ୍ୱାରା ଖୋଦିତ ଶିଳାଲେଖର ଭାଷା ଅନୁଯାୟୀ ରାଜା ସମୁଦ୍ରଗୁପ୍ତ ଇତିପୂର୍ବରୁ ଏହି ରାଜ୍ୟର ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । ଏହି ଯୋଗାଯୋଗର ସୂତ୍ର ଅନୁଯାୟୀ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଭକଟକ ଓ ନାଗମାନଙ୍କ ସମର୍ଥନ ଉପରେ ନିର୍ଭର କରୁଥିଲେ ପଶ୍ଚିମ ଦେଶୀୟ କ୍ଷତ୍ରପମାନଙ୍କ ବିରୁଦ୍ଧରେ ତାଙ୍କ ସଂଗ୍ରାମକୁ ଅପେକ୍ଷାକୃତ ସହଜସାଧ୍ୟ କରି ତୋଳିବା ଉଦ୍ଦେଶ୍ୟରେ ।

ଏହି ଯୁଗର ମୁଦ୍ରାଗୁଡ଼ିକୁ ପରୀକ୍ଷା କଲେ, ଦେଖାଯାଏ ଯେ, ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ଅମଳରେ ମୁଦ୍ରା ସଂସ୍କାର ସାଧିତ ହୋଇଥିଲା । ତାଙ୍କ ପୂର୍ବପୁରୁଷମାନେ କେବଳ ମାତ୍ର ସ୍ୱର୍ଣ୍ଣ ମୁଦ୍ରା ପ୍ରଚଳନର ବ୍ୟବସ୍ଥା କରିଥିଲେ, କିନ୍ତୁ ତାଙ୍କ ସମୟରେ ରୌପ୍ୟ ଏବଂ ତାମ୍ର ମୁଦ୍ରା ସେ ପ୍ରଚଳନ କରିଥିଲେ । ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳରେ ଟଙ୍କାଶାଳରେ ନିର୍ମିତ ରୌପ୍ୟ ମୁଦ୍ରାର ପଛପଟରେ ପବିତ୍ର ଗରୁଡ଼ ପକ୍ଷୀର ପ୍ରତିକୃତି ମୁଦ୍ରିତ ହୋଇଛି । ଏହି ପକ୍ଷୀଟି ହେଲା ବିଷ୍ଣୁ ଦେବଙ୍କର ବାହନ । ଏହି ଗରୁଡ଼ର ପ୍ରତିକୃତି ଦେଖିବାକୁ ମିଳେ ଏହି ସମୟର ତାମ୍ର ମୁଦ୍ରାଗୁଡ଼ିକର । ଏଥିରୁ ସ୍ପଷ୍ଟ ବୁଝାଯାଏ ଯେ, ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଥିଲେ ବୈଷ୍ଣବ ଧର୍ମର ଅନୁଗାମୀ । ଏହାର ପ୍ରମାଣ ସ୍ୱରୂପ ଏହି ରାଜାଙ୍କ ନାମ ସହିତ ଯୁକ୍ତ ଏକ ବିଶେଷଣ – ପରମଭାଗବତ ମିଳିଯାଏ ।

ଭାରତ ଇତିହାସରେ ରାଜା ଦ୍ୱିତୀୟ ଚନ୍ଦ୍ରଗୁପ୍ତ ସର୍ବାପେକ୍ଷା ଲୋକପ୍ରିୟ ରାଜାମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ । ଇତିହାସରେ ତାଙ୍କର ଏକ ଦ୍ୱିତୀୟ ନାମକରଣ ହୋଇଛି ବିକ୍ରମାଦିତ୍ୟ (ଅର୍ଥାତ୍, "ସୂର୍ଯ୍ୟତୁଲ୍ୟ ପରାକ୍ରମଶାଳୀ") । ଐତିହ୍ୟ ଅନୁଯାୟୀ ବହୁ ପ୍ରଖ୍ୟାତ ଲେଖକ, କବି ଓ ପଣ୍ଡିତଙ୍କ ନାମ ତାଙ୍କ ରାଜତ୍ୱକାଳ ସହିତ ଯୁକ୍ତ । ଏବେ ଭାରତୀୟ ପଣ୍ଡିତମାନଙ୍କ ରଚନାବଳୀରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳକୁ "ଗୁପ୍ତ ସାମ୍ରାଜ୍ୟର ସ୍ୱର୍ଣ୍ଣ ଯୁଗ" ବୋଲି ଉଲ୍ଲେଖ କରାଯାଇଥାଏ ।

ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର କୁମାରଗୁପ୍ତ ସିଂହାସନରେ ବସିଥିଲେ । ୪୧୫ରୁ ୪୫୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ତାଙ୍କ ରାଜତ୍ୱକାଳରେ ଅସାଧାରଣ ଗୁରୁତ୍ୱସଂପନ୍ନ କୌଣସି ଘଟଣା ଘଟିଥିଲା ବୋଲି ଜଣାଯାଏ ନାହିଁ । କୁମାରଗୁପ୍ତ ଥିଲେ ଶୈବଧର୍ମାବଲମ୍ବୀ । ତାଙ୍କ ରାଜତ୍ୱକାଳର ସ୍ୱର୍ଣ୍ଣ ମୁଦ୍ରାଗୁଡ଼ିକରେ ମୟୂରବାହନ ଦେବ କାର୍ତ୍ତିକେୟଙ୍କ (ଶିବଙ୍କ ପୁତ୍ର) ପ୍ରତିକୃତି ମୁଦ୍ରିତ ହୋଇଛି । ରୌପ୍ୟ ମୁଦ୍ରାଗୁଡ଼ିକରେ ଗରୁଡ଼ ପରିବର୍ତ୍ତେ ମୟୂର ମୁଦ୍ରିତ ହୋଇଛି ।

କୁମାରଗୁପ୍ତଙ୍କ ରାଜତ୍ୱକାଳର ଶାନ୍ତି ବିଘ୍ନ ହୋଇଥିଲା ତାଙ୍କ ମୃତ୍ୟୁର ଅଳ୍ପ ଦିନ ପରେ । ତାଙ୍କ ଉତ୍ତରାଧିକାରୀ ସ୍କନ୍ଦଗୁପ୍ତଙ୍କୁ ଏହି ସମୟରେ ଭାରତ ଆକ୍ରମଣକାରୀ ହୁନ୍ ଓ ଏଫ୍‌ଥାଲାଇଟ୍ ଉପଜାତିଙ୍କ ବିରୁଦ୍ଧରେ ତୁମୂଳ ସଂଗ୍ରାମ କରିବାକୁ ପଡ଼ିଥିଲା ।

## ହୂନ୍ ଓ ଏଫ୍‌ଥାଲାଇଟ୍ ଉପଜାତିସମୂହ
## ଏବଂ ଗୁପ୍ତ ସାମ୍ରାଜ୍ୟର ପତନ

ଉପଜାତିମାନଙ୍କର ଏହି ସଂଘଟି ଏସିଆର ଆଭ୍ୟନ୍ତରୀଣ ଏବଂ ମଧ୍ୟ ଭାଗରେ ପୂର୍ବେ ବାସ କରୁଥିଲେ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଏମାନେ ଅତ୍ୟନ୍ତ ଶକ୍ତିଶାଳୀ ହୋଇ ଉଠିଥିଲେ । ସାସାନିଦ୍ ଶାସିତ ପାରସ୍ୟ ଓ କୁଶାଣ ବଂଶର ଶେଷ ରାଜାମାନଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ରୂପେ ଏମାନେ ଦେଖା ଦେଇଥିଲେ । ପ୍ରଥମେ ଏଫ୍‌ଥାଲାଇଟ୍‌ମାନେ ଏକଦା ପରାକ୍ରାନ୍ତ କୁଶାଣ ସାମ୍ରାଜ୍ୟର ପଶ୍ଚିମ ଭୂଖଣ୍ଡଗୁଡ଼ିକରେ ଅବସ୍ଥିତ ଛୋଟ ଛୋଟ ରାଜ୍ୟକୁ ପରାଜିତ କରିଥିଲେ ଏବଂ ପରେ ସାସାନିଦ୍ ପାରସ୍ୟର ରାଜାମାନଙ୍କୁ ଅନେକ ଚମତ୍କାର ଯୁଦ୍ଧରେ ପଦାନତ କରିଥିଲେ । ଏହା ପରେ ସେମାନେ ଉତ୍ତର-ପଶ୍ଚିମ ଭାରତ ଆକ୍ରମଣ କରି ଗାନ୍ଧାର ଜୟ କରି ନେଇଥିଲେ । ଏହି ସମୟରେ (ଆନୁମାନିକ ୪୫୭-୪୬୦ ଖ୍ରୀଷ୍ଟାବ୍ଦରେ) ଗୁପ୍ତ ରାଜାଙ୍କ ସହିତ ହୂନ୍ ଏବଂ ଏଫ୍‌ଥାଲାଇଟ୍‌ମାନଙ୍କର ପ୍ରଥମ ସଂଘର୍ଷ ଘଟିଥିଲା । ଗୁପ୍ତ ଯୁଗରେ ଖୋଦିତ ଏକ ଶିଳାଲିପିରେ ଉଲ୍ଲେଖ ଅଛି, "ହୂନ୍‌ମାନଙ୍କ" ବିରୁଦ୍ଧରେ ସ୍କନ୍ଦଗୁପ୍ତ ବିଜୟ ଲାଭ କରିଥିଲେ । ଗୁପ୍ତ ରାଜାଙ୍କର ଏହିସବୁ ସାଫଲ୍ୟ ଥିଲା ସ୍ୱଳ୍ପସ୍ଥାୟୀ । କିନ୍ତୁ ଏସବୁର ତାତ୍ପର୍ଯ୍ୟ ଥିଲା ଅନେକ, ବିଶେଷ କରି ଆମେ ମନେ ରଖିବା ଉଚିତ ଯେ, ଏଫ୍‌ଥାଲାଇଟ୍ ସେନାବାହିନୀ କି ଭୟଙ୍କର ଧ୍ୱଂସର ଚିହ୍ନ ସେମାନଙ୍କ ପଛରେ ରଖି ଯାଇଥିଲେ । ଅନ୍ୟ ଦିଗରେ, ହୂନ୍‌ମାନଙ୍କର ପଶ୍ଚିମ ବାହିନୀଗୁଡ଼ିକ ରୋମାନ୍ ସେନାବାହିନୀ ବିରୁଦ୍ଧରେ ଗୋଟାକ ପରେ ଗୋଟାଏ ଯୁଦ୍ଧରେ ବିଜୟୀ ହୋଇ ଚାଲିଥିଲେ ଏବଂ ପଶ୍ଚିମ ୟୁରୋପର ବିଭିନ୍ନ ଅଞ୍ଚଳକୁ ଧ୍ୱଂସସ୍ତୂପରେ ପରିଣତ କରିଥିଲେ । ହୂନ୍‌ମାନଙ୍କ ବିରୁଦ୍ଧରେ ଏହି ଯୁଦ୍ଧ ପରିଚାଳନା କରିବା ଫଳରେ ଗୁପ୍ତ ସାମ୍ରାଜ୍ୟରେ ଆର୍ଥିକ ଅଭାବ ଦେଖା ଦେଇଥିଲା । ଗୁପ୍ତ ରାଜା ବାଧ୍ୟ ହୋଇଥିଲେ ମୁଦ୍ରା ନିର୍ମାଣରେ ସ୍ୱଳ୍ପ ସୁନା ବ୍ୟୟ କରିବାକୁ ଏବଂ ପ୍ରଚଳିତ ପ୍ରତ୍ୟେକଟି ମୁଦ୍ରାର ପ୍ରକାର ଭେଦର ସଂଖ୍ୟା ହ୍ରାସ କରିବାକୁ ।

ଏହା ପରେ ସ୍କନ୍ଦଗୁପ୍ତଙ୍କ ଉତ୍ତରାଧିକାରୀମାନଙ୍କ ରାଜତ୍ୱକାଳରେ ସାମ୍ରାଜ୍ୟ ମଧ୍ୟରେ ବିଚ୍ଛିନ୍ନତା ଏବଂ ସ୍ୱାତନ୍ତ୍ର୍ୟର ଏକ ପ୍ରବଣତା ଦେଖାଦେଲା । କେନ୍ଦ୍ର ଠାରୁ ଅପେକ୍ଷାକୃତ ଦୂରବର୍ତ୍ତୀ ପ୍ରଦେଶଗୁଡ଼ିକରେ କେନ୍ଦ୍ରୀୟ ଶାସନରୁ ସ୍ୱାଧୀନତା ଅର୍ଜନର ଆକାଂକ୍ଷା ମୁଣ୍ଡ ଟେକି ଉଠିଲା, ଯଥା, ରାଜା ବୁଦ୍ଧଗୁପ୍ତଙ୍କ ରାଜତ୍ୱକାଳରେ କାଥିଆବାଡ଼ର ଶାସନକର୍ତ୍ତା "ସେନାପତି" ପଦ ପରିବର୍ତ୍ତେ "ମହାରାଜା" ପଦ ଲାଭ କରିଥିଲେ (ସେତେବେଳେ ଏହି ପଦ ଖୁବ୍ ବଡ଼ ବୋଲି ଗଣ୍ୟ ନହେଲେ ମଧ୍ୟ) ଏବଂ ସରକାରୀ ଭାବେ ଗୁପ୍ତ ସାମ୍ରାଜ୍ୟର ଅଧୀନସ୍ଥ ସାମନ୍ତରାଜା ହେବା ସତ୍ତ୍ୱେ କାର୍ଯ୍ୟତଃ ସେ ସ୍ୱାଧୀନ ରାଜା ହୋଇ ଯାଇଥିଲେ । ଦକ୍ଷିଣ କୋଶଳ ଓ ନର୍ମଦା ତୀରବର୍ତ୍ତୀ ଅଞ୍ଚଳର ରାଜାମାନେ ଏହି ସମୟରେ ଗୁପ୍ତ ରାଜାମାନଙ୍କର ନାମକୁ ମାତ୍ର ସାମନ୍ତରାଜା ଥିଲେ । ବଙ୍ଗ ଦେଶ ମଧ୍ୟ ଏହି ସମୟରେ ସ୍ୱାଧୀନତା ଅର୍ଜନ କରିଥିଲା । ଏହି ସମସ୍ତ ଘଟଣା ଏକତ୍ର ମିଶି ଏଭଳି ଏକ ପରିସ୍ଥିତି ସୃଷ୍ଟି କରିଥିଲା, ଯଦ୍ୱାରା ଗୁପ୍ତ ସାମ୍ରାଜ୍ୟକୁ ଆଉ କୌଣସି ପ୍ରକାରେ ଐକ୍ୟବଦ୍ଧ ବୋଲି କୁହାଯାଇ ନପାରେ ।

ଏମନ୍ତ ସମୟରେ ହୂନ୍ ଓ ଏଫ୍‌ଥାଲାଇଟ୍‌ମାନଙ୍କର ନୂଆ ନୂଆ ଆକ୍ରମଣର ଆଘାତ ଆସି ପଡ଼ିଲା ସାମ୍ରାଜ୍ୟ ଉପରେ । ଏଫ୍‌ଥାଲାଇଟ୍ ରାଜା ତୋରମାନ୍‌ଙ୍କ (୪୯୦-୫୧୫ ଖ୍ରୀଷ୍ଟାବ୍ଦ) ନେତୃତ୍ୱରେ

ହୁନ୍‌ମାନେ ଭାରତର ଗଭୀର ଅଭ୍ୟନ୍ତରରେ ପ୍ରବେଶ କରି ସିନ୍ଧୁ ଦେଶ, ରାଜସ୍ଥାନ ଏବଂ ପଶ୍ଚିମ ଭାରତର ବିଭିନ୍ନ ଅଞ୍ଚଳ ଅଧିକାର କରି ନେଲେ । ତୋରମାନ୍‌ଙ୍କ ଉତ୍ତରାଧିକାରୀ ମିହିରକୁଳ ପ୍ରଥମେ ଗୁପ୍ତ ରାଜାମାନଙ୍କ ବିରୁଦ୍ଧରେ ଅନେକଗୁଡ଼ିଏ ଯୁଦ୍ଧରେ ଜୟ ଲାଭ କରିଥିଲେ । କିନ୍ତୁ ପରେ ରାଜା ନରସିଂହଗୁପ୍ତ (ବାଳାଦିତ୍ୟ) ଏକ ନିଷ୍ପତ୍ତିମୂଳକ ଯୁଦ୍ଧରେ ହୁନ୍ ବାହିନୀକୁ ବିପର୍ଯ୍ୟସ୍ତ କରିଦେଲେ ଏବଂ ମିହିରକୁଳ ପୁଣି ଥରେ ବାଧ୍ୟ ହେଲେ ଉତ୍ତର-ପଶ୍ଚିମ ଭାରତକୁ ପଶ୍ଚାଦ୍‌ପସରଣ କରିବାକୁ । କେବଳ ଗାନ୍ଧାରର କେତେକ ଅଂଶ ଏବଂ ପଞ୍ଜାବର ବିଶେଷ କେତେକ ଅଂଶ ତାଙ୍କ ଦଖଲରେ ରହିଯାଇଥିଲା (ତାଙ୍କର ଏହି ଅଧୀନସ୍ଥ ରାଜ୍ୟର ରାଜଧାନୀ ଥିଲା ଶାକଲ ବା ଆଧୁନିକ ଶିଆଲ୍‌କୋଟ୍ ସହର) । ୫୩୩ ଖ୍ରୀଷ୍ଟାବ୍ଦରେ ମାଳବର ରାଜା ଯଶୋଧର୍ମନ୍ ହୁନ୍ ଏବଂ ଏଫ୍‌ଥାଲଇଟ୍‌ମାନଙ୍କୁ ଶେଷ ଯୁଦ୍ଧରେ ପରାସ୍ତ କରିଥିଲେ ସତ, କିନ୍ତୁ ସେତେବେଳେ ଗୁପ୍ତ ସାମ୍ରାଜ୍ୟର ଆଭ୍ୟନ୍ତରୀଣ ଐକ୍ୟ ଭାଙ୍ଗି ଚୂରମାର ହୋଇଯାଇଥିଲା । ଗୁପ୍ତ ସାମ୍ରାଜ୍ୟର ଏହି ଦୁର୍ବଳ ଅବସ୍ଥାର ସୁଯୋଗ ନେଇ ଯଶୋଧର୍ମନ୍ ଏଥର ସ୍ୱାଧୀନତା ଘୋଷଣା କରି ଦେଲେ । ମାଳବ ଦେଶ ଛଡ଼ା ସାମ୍ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳ ମଧ୍ୟ ସ୍ୱାଧୀନ ହୋଇଗଲା । ଯଥା, ଦୃଷ୍ଟାନ୍ତ ସ୍ୱରୂପ, କନୌଜରେ ପ୍ରତିଷ୍ଠିତ ହେଲା ସ୍ୱାଧୀନ ମୌଖରି ରାଜବଂଶ ।

ଏହା ପରେ ଆଉ କିଛି କାଳ ପର୍ଯ୍ୟନ୍ତ ଗୁପ୍ତମାନେ ସେମାନଙ୍କ ପ୍ରାଧାନ୍ୟ ବଜାଏ ରଖି ପାରିଥିଲେ ମଗଧ ଏବଂ ଅନ୍ୟାନ୍ୟ କେତେକ ଭୂଖଣ୍ଡରେ । ତେବେ ସେତେବେଳେ ଯେଉଁମାନେ ରହିଥିଲେ, ସେମାନେ ହେଲେ ଏକଦା ଶକ୍ତିଶାଳୀ ସମ୍ରାଟମାନଙ୍କର ବଂଶଧର ମାତ୍ର । ଏହି ଶେଷୋକ୍ତ ରାଜାମାନେ "ପରବର୍ତ୍ତୀ କାଳର ଗୁପ୍ତ ରାଜା" ନାମରେ ପରିଚିତ ହୋଇ ଆସିଥିଲେ । ଏହି ଭାବେ ପ୍ରାଚୀନ ଜଗତର ଅନ୍ୟତମ ସର୍ବବୃହତ୍ ସାମ୍ରାଜ୍ୟର ପତନ ଘଟିଥିଲା ।

# ପଶ୍ଚିମୀ କ୍ଷତ୍ରପ ଏବଂ ସାତବାହନ ସାମ୍ରାଜ୍ୟ

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଦାକ୍ଷିଣାତ୍ୟ ଓ ସମଗ୍ର ଭାବେ ଦକ୍ଷିଣ ଭାରତରେ ଶ୍ରେଣୀ ବିଭାଗର ପ୍ରଧାନ ସାମାଜିକ ପ୍ରକ୍ରିୟାଗୁଡ଼ିକ ଚାଲୁଥିଲା ଏବଂ ଗଢ଼ି ଉଠୁଥିଲା ବଡ଼ ବଡ଼ ରାଷ୍ଟ୍ରସବୁ । ଏହି ସମୟରେ ଭାରତର ଉତ୍ତର ଓ ଦକ୍ଷିଣ ଅଂଶ ମଧ୍ୟରେ ଯେପରି ଯୋଗାଯୋଗ ବଢ଼ି ଚାଲିଥିଲା ଏବଂ ସେଇପରି, ଏକ ଦିଗରେ, ରୋମ୍ ଏବଂ ଅନ୍ୟ ଦିଗରେ ଦକ୍ଷିଣ-ପୂର୍ବ ଏସିଆର ଦେଶଗୁଡ଼ିକ ସହିତ ଦକ୍ଷିଣ ଭାରତର ରାଷ୍ଟ୍ରଗୁଡ଼ିକର ସଂଯୋଗ ବୃଦ୍ଧି ପାଉଥିଲା । ଦକ୍ଷିଣ ଭାରତରେ ସେତେବେଳେ ସାତବାହନ ସାମ୍ରାଜ୍ୟ ଏକ ମୁଖ୍ୟ ଭୂମିକା ପାଳନ କରୁଥିଲା । କଳିଙ୍ଗ ରାଜ୍ୟର ପତନ ପରେ ସାତବାହନ ସାମ୍ରାଜ୍ୟର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ରୂପେ କ୍ଷତ୍ରପ ଶାସକମାନେ ଉଭା ହୋଇଥିଲେ । ଯେଉଁସବୁ ଶକ ଉପଜାତି ସୁଦୂର ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀରେ ସିନ୍ଧୁ ନଦର ନିମ୍ନ ଉପତ୍ୟକାରେ ଓ କାଥିଆବାଡ଼ରେ ବସତି ସ୍ଥାପନ କରିଥିଲେ, ଏହି କ୍ଷତ୍ରପମାନେ ଥିଲେ ସେମାନଙ୍କର ବଂଶଧର । କ୍ରମଶଃ ଏହିସବୁ ଉପଜାତିମାନଙ୍କ ମଧ୍ୟରୁ କେତେକ ପ୍ରାଧାନ୍ୟ ଲାଭ

କରିଥିଲେ, ଯଥା ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ବିଶେଷ କରି ଶକ୍ତିଶାଳୀ ହୋଇ ଉଠିଥିଲେ କ୍ଷହରତ ଓ କର୍ଦମକ ନାମକ ଦୁଇଟି ଉପଜାତି ।

ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର ମଝାମଝି ବେଳକୁ ଉପରୋକ୍ତ କ୍ଷତ୍ରପ ଶାସକମାନେ ପଶ୍ଚିମ ଦାକ୍ଷିଣାତ୍ୟର କେତେକ ଅଞ୍ଚଳ ଦଖଲ କରିଥିଲେ । ପୂର୍ବେ ଏହିସବୁ ଅଞ୍ଚଳ ଥିଲା ସାତବାହନ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ । ପରେ ନହପନଙ୍କ ଶାସନ କାଳରେ କ୍ଷତ୍ରପ ଶାସିତ ଅଞ୍ଚଳ ଆଉରି ପ୍ରସାରିତ ହୋଇଥିଲା । ନାସିକ ଏବଂ କାର୍ଲେରୁ ମିଳିଥିବା ନହପନ ଶିଳାଲିପିଗୁଡ଼ିକ ଦେଖି ମନେ ହୁଏ, ଏହିସବୁ ଅଞ୍ଚଳ ତାଙ୍କ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଶିଳାଲିପି ଆଦିର ସାକ୍ଷ୍ୟରୁ ଜଣାଯାଏ ଯେ, ୧୧୯ ଓ ୧୨୫ ଖ୍ରୀଷ୍ଟାବ୍ଦ ମଧ୍ୟରେ କ୍ଷତ୍ରପମାନେ ଦକ୍ଷିଣ ଗୁଜରାଟ ଏବଂ ଭାରୁକଚ୍ଛ (ବର୍ତ୍ତମାନ ବ୍ରୋଚ) ବନ୍ଦରର ଅଧିପତି ଥିଲେ । କ୍ଷତ୍ରପ ଏବଂ ସାତବାହନମାନଙ୍କ ମଧ୍ୟରେ ଦୀର୍ଘ ଦିନର ଶତ୍ରୁତାର ଅବସାନ ଘଟିଥିଲା ସାତବାହନମାନଙ୍କ ବିଜୟ ଫଳରେ । ଖୋଦିତ ଲିପିଗୁଡ଼ିକରେ ଶକମାନଙ୍କ ବିରୁଦ୍ଧରେ ସାତବାହନ ରାଜା ଗୋତମୀପୁତ୍ର ସାତକାନିଙ୍କ ଏକାଧିକ ଯୁଦ୍ଧ ଜୟର ଉଲ୍ଲେଖ ମିଳିଥାଏ । ଏହା ଫଳରେ ରାଜା ସାତକାନି ପଶ୍ଚିମ ଭାରତର କେତେକ ଅଞ୍ଚଳରେ ପ୍ରାଧାନ୍ୟ ବିସ୍ତାର କରି ପାରିଥିଲେ ।

ଆଉ ଏକ ଖୋଦିତ ଲିପିରେ ଏହି ରାଜାଙ୍କ ପ୍ରସଙ୍ଗରେ କୁହାଯାଇଛି ଯେ, ସେ କ୍ଷହରତ ବଂଶର ବିଲୋପ ଘଟାଇ ସାତବାହନ ରାଜବଂଶର ଗୌରବକୁ ପୁନରୁଦ୍ଧାର କରିଥିଲେ । ଉପରୋକ୍ତ ଏହିସବୁ ଲିପିରେ ଗୋତମୀପୁତ୍ର ସାତକାନିଙ୍କ ରାଜତ୍ୱକାଳରେ ସାତବାହନ ରାଜ୍ୟର ସୀମା ନିର୍ଦ୍ଦେଶିତ ହୋଇଛି । କୁହାଯାଇଛି ଯେ, ସେ ନହପନ ଠାରୁ ଉତ୍ତର-ପଶ୍ଚିମ ଦାକ୍ଷିଣାତ୍ୟର କେତେକ ଅଂଶ ଓ ପଶ୍ଚିମ ଭାରତର ଭୂଖଣ୍ଡ କାଢ଼ି ନେଇଥିଲେ । ଏହା ଛଡ଼ା ଅଶ୍ମକ ଓ ବିଦର୍ଭ ଭଳି ପ୍ରତିଦ୍ୱନ୍ଦ୍ୱୀ ରାଜ୍ୟଗୁଡ଼ିକ ତାଙ୍କ ଶାସନାଧୀନ ହୋଇଥିଲା ଏବଂ ପରେ ସାତବାହନମାନଙ୍କ ପୁରୁଣା ପ୍ରତିଦ୍ୱନ୍ଦ୍ୱୀ ରାଜ୍ୟ କଳିଙ୍ଗ ଅନ୍ତର୍ଗତ କେତେକ ଭୂଖଣ୍ଡକୁ ସେ ଜୟ କରି ନେଇଥିଲେ ।

ତେବେ ସାତବାହନମାନଙ୍କର ଏହି ବିଜୟ ଗୌରବ, ଅବଶ୍ୟ, ସ୍ୱଳ୍ପସ୍ଥାୟୀ ହୋଇଥିଲା । ପରାକ୍ରାନ୍ତ ଶକ କ୍ଷତ୍ରପ ରୁଦ୍ରଦମନଙ୍କ ରାଜତ୍ୱକାଳରେ (୧୫୦ ଖ୍ରୀଷ୍ଟାବ୍ଦରେ) ସାତବାହନମାନେ ବାଧ୍ୟ ହୋଇଥିଲେ ତାଙ୍କ ଦ୍ୱାରା ଅଧିକୃତ ଅନେକ ଭୂଖଣ୍ଡ ଛାଡ଼ି ଦେବାକୁ । ରୁଦ୍ରଦମନଙ୍କ ନିର୍ଦ୍ଦେଶରେ ଖୋଦିତ ଲିପି ମଧ୍ୟରୁ ଗୋଟିକରେ ତାଙ୍କୁ ଅବନ୍ତୀ, ସୁରାଷ୍ଟ୍ର ଓ ଅପରାନ୍ତର ଅଧିପତି ବୋଲି ଉଲ୍ଲେଖ କରାଯାଇଛି । ଅର୍ଥାତ୍, ଅନ୍ୟ ଭାବେ କହିବାକୁ ଗଲେ, ପଶ୍ଚିମ ଭାରତର ବିସ୍ତୀର୍ଣ୍ଣ ଅଞ୍ଚଳ ଶକମାନଙ୍କ କରାୟତ୍ତ ହୋଇଥିଲା ଏବଂ କେବଳ ପଶ୍ଚିମ ନାସିକ ଓ ପୁନାର ନିକଟବର୍ତ୍ତୀ ଅଞ୍ଚଳଗୁଡ଼ିକ ସାତବାହନମାନଙ୍କ ଦଖଲରେ ରହିଥିଲା ।

ଗୋତମୀପୁତ୍ରଙ୍କ ବଂଶଧରମାନେ, ଅବଶ୍ୟ, କ୍ଷତ୍ରପମାନଙ୍କ ବିରୁଦ୍ଧରେ ସେମାନଙ୍କ ସଂଗ୍ରାମ ଚଳେଇ ଯାଇଥିଲେ । ରାଜା ପୁଲୁମାଭିଙ୍କ (୧୩୦-୧୫୯ ଖ୍ରୀଷ୍ଟାବ୍ଦ) ନେତୃତ୍ୱରେ ସାତବାହନମାନେ ପଶ୍ଚିମ ଅଞ୍ଚଳଗୁଡ଼ିକରେ ଚମକପ୍ରଦ କୌଣସି ସାଫଲ୍ୟ ଲାଭ ନକଲା ପରେ ସେମାନଙ୍କ ଦୃଷ୍ଟି ନିବଦ୍ଧ କରିଥିଲେ ପୂର୍ବାଞ୍ଚଳ ଆଡ଼କୁ । ତେବେ ବେଳେ ବେଳେ, ଯଥା ରାଜା ଶ୍ରୀଯଜ୍ଞ ଶତକର୍ଣ୍ଣୀଙ୍କ ରାଜତ୍ୱକାଳରେ (ନାସିକରେ ତାଙ୍କ ଅମଳର କେତେକ ଲିପି ମିଳିଛି) ସାତବାହନମାନେ ପଶ୍ଚିମ ଭାରତର କେତେକ ଅଞ୍ଚଳ ଜୟ କରିବାକୁ ସମର୍ଥ ହୋଇଥିଲେ । ତେବେ ସାମ୍ରାଜ୍ୟର ଐକ୍ୟ

ଅତୁଟ ରଖିଲା ଭଳି କ୍ଷମତା ସେମାନଙ୍କର ସେତେବେଳେ ନଥିଲା । ଏକମାତ୍ର ପୂର୍ବାଞ୍ଚଳଗୁଡ଼ିକରେ ସାତବାହନମାନେ ସେମାନଙ୍କ ପ୍ରାଧାନ୍ୟ ରକ୍ଷା କରି ପାରିଥିଲେ ।

## ଭକଟକ ରାଜ୍ୟ

ସାତବାହନ ସାମ୍ରାଜ୍ୟ ପତନ ପରେ ଅନେକ ଛୋଟ ଛୋଟ ରାଜ୍ୟ ପ୍ରାଧାନ୍ୟ ଲାଭ ପାଇଁ ପରସ୍ପର ମଧ୍ୟରେ ତୀବ୍ର ସଂଗ୍ରାମ ଆରମ୍ଭ କରି ଦେଇଥିଲେ । ପରିଶେଷରେ, ସେମାନଙ୍କ ମଧ୍ୟରେ ସବୁଠାରୁ ଶକ୍ତିଶାଳୀ ବୋଲି ପ୍ରମାଣିତ ହୋଇଥିଲା ଭକଟକବଂଶୀୟ ରାଜ୍ୟ । ପ୍ରାରମ୍ଭରେ ଏହି ରାଜବଂଶର ଆଞ୍ଚଳିକ ଶାସନ କେନ୍ଦ୍ର ବର୍ତ୍ତମାନ ବେରାର ନାମକ ଅଞ୍ଚଳରେ ଥିଲା । ଏହି ରାଜବଂଶଟି କେବେ ଆରମ୍ଭ ହୋଇଥିଲା, ତା'ର ଏକ ଆନୁମାନିକ ସାଲ ମିଳିଥାଏ । ତାହା ହେଉଛି ୨୫୫ ଖ୍ରୀଷ୍ଟାବ୍ଦ । ରାଜା ବିନ୍ଧ୍ୟଶକ୍ତି ଏହି ରାଜବଂଶର ପ୍ରତିଷ୍ଠାତା ଥିଲେ ବୋଲି କୁହାଯାଏ । ପୁରାଣସମୂହର ତଥ୍ୟ ଅନୁଯାୟୀ ରାଜା ବିନ୍ଧ୍ୟଶକ୍ତି ଶକ କ୍ଷତ୍ରପମାନଙ୍କ ବିରୁଦ୍ଧରେ ଏବଂ ସାତବାହନ ସାମ୍ରାଜ୍ୟର ପତନ ପରେ ଦାକ୍ଷିଣାତ୍ୟର ଯେଉଁସବୁ ସ୍ଥାନୀୟ ରାଜବଂଶ ସ୍ୱାଧୀନତା ଅର୍ଜନ କରିଥିଲେ, ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ପରିଚାଳନା କରିଥିଲେ । ରାଜା ବିନ୍ଧ୍ୟଶକ୍ତିଙ୍କ ଉତ୍ତରାଧିକାରୀ ପ୍ରଥମ ପ୍ରବରସେନା (୨୭୫-୩୩୫ ଖ୍ରୀଷ୍ଟାବ୍ଦ) ତାଙ୍କ ପରରାଷ୍ଟ୍ର ନୀତି ପରିଚାଳନା କ୍ଷେତ୍ରରେ ଅପେକ୍ଷାକୃତ ଅଧିକ ସଫଳ ହୋଇଥିଲେ । ସେ ଗୌରବର ସହିତ "ସମ୍ରାଟ" (ଏକଛତ୍ର ରାଜା) ଉପାଧି ଧାରଣ କରିଥିଲେ । ତାଙ୍କ ରାଜତ୍ୱକାଳରେ ଭକଟକ ରାଜବଂଶର ଅଧୀନରେ ବିସ୍ତୀର୍ଣ୍ଣ ଏକ ଭୂଖଣ୍ଡ ଅନ୍ତର୍ଭୁକ୍ତ ହୋଇଥିଲା । ନର୍ମଦା ଓ କୃଷ୍ଣା ନଦୀ ମଧ୍ୟବର୍ତ୍ତୀ ଅଞ୍ଚଳ ତାଙ୍କ ରାଜ୍ୟର ଏକ ଅଂଶ ରୂପେ ବିବେଚିତ ହେଉଥିଲା । ମଧ୍ୟ ଭାରତରେ କିଛି ପରିମାଣରେ ଆଧିପତ୍ୟ ବିସ୍ତାର ଉଦ୍ଦେଶ୍ୟରେ ପ୍ରବରସେନା ନାଗ ରାଜବଂଶ ସହିତ ବୈବାହିକ ସଂପର୍କ ସ୍ଥାପନ କରିଥିଲେ ନିଜ ପୁତ୍ର ସହିତ ଜଣେକ ନାଗ ରାଜାଙ୍କ କନ୍ୟା ଭବନାଗୀଙ୍କର ବିବାହ ଦେଇ ।

ରାଜନୈତିକ ରଙ୍ଗ ମଞ୍ଚରେ ପ୍ରବଳ ପରାକ୍ରାନ୍ତ ଗୁପ୍ତ ସାମ୍ରାଜ୍ୟର ଆବିର୍ଭାବ ଘଟିଲା ବେଳେ ଭକଟକମାନଙ୍କୁ ରାଜ୍ୟର ଉତ୍ତର ସୀମା ପ୍ରତିରକ୍ଷା ଦିଗରେ ମନୋନିବେଶ କରିବାକୁ ପଡ଼ିଲା । ଦକ୍ଷିଣ ଭାରତରେ ସମୁଦ୍ରଗୁପ୍ତଙ୍କ ବିଜୟ ଅଭିଯାନ ଅନିବାର୍ଯ୍ୟ ଭାବେ ଭକଟକ ଏବଂ ଗୁପ୍ତ ସାମ୍ରାଜ୍ୟ ମଧ୍ୟରେ ସଂପର୍କକୁ ଜଟିଳ କରିଦେଲା ।

ସୁବିଖ୍ୟାତ ଏଲାହାବାଦ ଲିପିରେ ଗୁପ୍ତ ରାଜାଙ୍କ ସାମରିକ ଜୟ ଯାତ୍ରାର ବର୍ଣ୍ଣନାରେ ତାଙ୍କ ଅଧିକୃତ ରାଜ୍ୟଗୁଡ଼ିକର ଏକ ତାଲିକା ପ୍ରଦାନ କରାଯାଇଛି । ଏହି ତାଲିକାରେ ଗୁପ୍ତ ରାଜାଙ୍କ ହାତରେ ପରାଜିତ ରାଜାମାନଙ୍କ ନାମ ମଧ୍ୟରେ ଆର୍ଯ୍ୟାବର୍ତ୍ତର ରାଜା ରୁଦ୍ରଦେବଙ୍କ ନାମ ରହିଛି । ବହୁ ଇତିହାସବିତ୍‌ଙ୍କ ମତରେ, ଏହି ରୁଦ୍ରଦେବ ହେଲେ ଭକଟକ ବଂଶର ତତ୍‌କାଳୀନ ରାଜା ଏବଂ ପ୍ରବରସେନାଙ୍କ ପୌତ୍ର ପ୍ରଥମ ରୁଦ୍ରସେନାଙ୍କ (୩୩୫-୩୬୦ ଖ୍ରୀଷ୍ଟାବ୍ଦ) ବ୍ୟତୀତ ଆଉ କେହି ନୁହନ୍ତି । ତେବେ ସମୁଦ୍ରଗୁପ୍ତଙ୍କ ଦକ୍ଷିଣ ଦେଶ ଅଭିଯାନ କାଳରେ ଅଧିକୃତ ସମସ୍ତ ଅଞ୍ଚଳ ଗୁପ୍ତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ନଥିଲା, ଯଦିଓ ଏହିସବୁ ଅଞ୍ଚଳରେ ଗୁପ୍ତ ରାଜତ୍ୱର ପ୍ରଭାବ ଏହା ପରେ ଆଗ ଅପେକ୍ଷା ବହୁ ପ୍ରବଳ ହୋଇ ଉଠିଥିଲା । ଗୁପ୍ତ ଓ ଭକଟକ ଉଭୟ ରାଜ୍ୟ, ଅବଶ୍ୟ, ପରସ୍ପର

ମଧ୍ୟରେ ବନ୍ଧୁତ୍ୱ ସ୍ଥାପନର ଗୁରୁତ୍ୱ ଉପଲବ୍ଧି କରିଥିଲେ । ଭକଟକମାନଙ୍କ ସାହାଯ୍ୟରେ ଦକ୍ଷିଣ ଭାରତରେ ନାନା ଧରଣର ସ୍ଥପ ସୃଷ୍ଟି କରିବାର ପରିକଳ୍ପନା ଗୁପ୍ତମାନେ କରିଥିଲେ । ଅଥଚ, ଭକଟକମାନଙ୍କର ସେତେବେଳେ ଅବସ୍ଥା ଏତେ ଭଲ ନଥିଲା ଯେ, ଯଦ୍ୱାରା ଗୁପ୍ତମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ସେମାନଙ୍କୁ ପ୍ରତିରୋଧ କରିବେ । ଏହି ସମୟରେ ଗୁପ୍ତମାନେ ପଶ୍ଚିମ ଭାରତର କ୍ଷତ୍ରପମାନଙ୍କ ବିରୁଦ୍ଧରେ ସଂଗ୍ରାମ ପ୍ରତି, ପ୍ରଧାନତଃ, ସେମାନଙ୍କ ମନୋଯୋଗ ନିବେଶ କରିଥିଲେ ଏବଂ ତେଣୁ ବ୍ୟସ୍ତ ହୋଇ ପଡ଼ିଥିଲେ ରାଜ୍ୟର ଦକ୍ଷିଣ ସୀମାନ୍ତକୁ ନିରାପଦ ରଖିବା ପାଇଁ । ଏହି କାରଣରୁ ଗୁପ୍ତ ଏବଂ ଭକଟକ ରାଜ୍ୟ ମଧ୍ୟରେ ବନ୍ଧୁତ୍ୱ ସୃଷ୍ଟିର ସୁଯୋଗ ଦେଖା ଦେଇଥିଲା ଏବଂ ଭକଟକ ସିଂହାସନର ଉତ୍ତରାଧିକାରୀ ଓ ରାଜା ପ୍ରଥମ ରୁଦ୍ରସେନାଙ୍କ ପୌତ୍ର ଦ୍ୱିତୀୟ ରୁଦ୍ରସେନା ବିବାହ କରିଥିଲେ ଗୁପ୍ତ ରାଜା ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ କନ୍ୟା ପ୍ରଭାବତୀଗୁପ୍ତଙ୍କୁ ।

ଭକଟକ ରାଜସଭାରେ ଗୁପ୍ତ ରାଜବଂଶର ପ୍ରଭାବ ବିଶେଷ କରି ଅନୁଭୂତ ହୋଇଥିଲା ସେତିକିବେଳେ, ଯେତେବେଳେ ପ୍ରଭାବତୀଗୁପ୍ତ ରାଜ ପ୍ରତିନିଧି ରୂପେ ରାଜ୍ୟ ପରିଚାଳନାର ଭାର ଲାଭ କଲେ । ଏହି ସମୟରେ କେବଳ ଗୁପ୍ତ ରାଜ୍ୟର ରାଷ୍ଟ୍ରଦୂତମାନେ ନୁହନ୍ତି, ରାଜକର୍ମଚାରୀମାନେ ମଧ୍ୟ ପାଟଳୀପୁତ୍ର ଠାରୁ ଭକଟକ ରାଜ୍ୟର ରାଜଧାନୀ ନନ୍ଦିବର୍ଦ୍ଧନକୁ (ବର୍ତ୍ତମାନ ନାଗପୁର ନିକଟରେ) ଯିବା ଆସିବା କରିବାକୁ ଲାଗିଲେ । ତେବେ ଏହା ପରେ ଅଳ୍ପ ଦିନ ମଧ୍ୟରେ ଐକ୍ୟବଦ୍ଧ ଭକଟକ ରାଜବଂଶ ଭାଙ୍ଗି ଯାଇ ତା ସ୍ଥାନରେ କେତେକ ସ୍ଥାନୀୟ ରାଜବଂଶ ମୁଣ୍ଡ ଟେକି ଉଠିଲା । ଏସବୁ ମଧ୍ୟରେ ସବୁଠାରୁ ପ୍ରତିପତ୍ତିଶାଳୀ ଥିଲା ବସଗୁଲମର (ଦକ୍ଷିଣ ବେରାରରେ ଅବସ୍ଥିତ) ଭକଟକମାନଙ୍କ ରାଜବଂଶ । ତେବେ ଭକଟକମାନଙ୍କର ପ୍ରଧାନ ଧାରାର ଏହିସବୁ ଶାଖା ପ୍ରଶାଖା ବେଶି ଦିନ କ୍ଷମତାରେ ଅଧିଷ୍ଠିତ ରହି ପାରି ନଥିଲେ, ଅଳ୍ପ ଦିନ ମଧ୍ୟରେ ସେସବୁ ପରାକ୍ରାନ୍ତ ଚାଲୁକ୍ୟ ରାଷ୍ଟ୍ରର ସାର୍ବଭୌମତ୍ୱକୁ ମାନି ନେବାକୁ ବାଧ୍ୟ ହେଲେ ।

## ପଲ୍ଲବ ରାଜବଂଶ ଓ ସୁଦୂର ଦକ୍ଷିଣ ଦେଶୀୟ ରାଜ୍ୟସମୂହ

ସାତବାହନ ସାମ୍ରାଜ୍ୟର ପତନ ପରେ ଭକଟକ ରାଜ୍ୟର ପାଖକୁ ଲାଗି ପଲ୍ଲବ ଓ ଇକ୍ଷ୍ୱାକୁବଂଶୀୟ ରାଜ୍ୟ ଦୁଇଟି ଦାକ୍ଷିଣାତ୍ୟର ରାଜନୈତିକ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ । ତେବେ ଦୁଃଖର ବିଷୟ, ପ୍ରାଚୀନ ଲିଖିତ ପତ୍ରରୁ ସେମାନଙ୍କ ସଂପର୍କରେ ଅତୀବ ସ୍ୱଳ୍ପ ଇଙ୍ଗିତ ମିଳିଥାଏ । ପଲ୍ଲବ ରାଜ୍ୟର ରାଜଧାନୀ ଥିଲା କାଞ୍ଚିପୁରମ୍ ନଗରରେ ଏବଂ ରାଜ୍ୟଟିର ଉତ୍ତର ସୀମାନ୍ତ ନିରୂପିତ ଥିଲା କୃଷ୍ଣା ନଦୀର ଗତିପଥ ଦେଇ । ପଲ୍ଲବମାନେ ଏକାଧିକବାର ଗୁପ୍ତମାନଙ୍କ ସହିତ ସଂଘର୍ଷରେ ଲିପ୍ତ ହୋଇଥିଲେ । ଏହି ସମୟରେ ଆନ୍ଧ୍ର ଦେଶରେ କ୍ଷମତାରେ ଅଧିଷ୍ଠିତ ଥିଲେ ଇକ୍ଷ୍ୱାକୁ ରାଜବଂଶ ଏବଂ ପଲ୍ଲବମାନଙ୍କ ବିରୁଦ୍ଧରେ ଏହି ରାଜବଂଶ ପଶ୍ଚିମ ଦେଶୀୟ କ୍ଷତ୍ରପମାନଙ୍କ ସହିତ ସନ୍ଧି ସୂତ୍ରରେ ଆବଦ୍ଧ ହୋଇଥିଲେ । ତେବେ ଏହିସବୁ ଯୁଦ୍ଧ ବିଗ୍ରହରେ ପଲ୍ଲବମାନେ ହିଁ ଶେଷକୁ ବିଜୟ ଲାଭ କରିଥିଲେ ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଦେଶର ଏକେବାରେ ଦକ୍ଷିଣ ଅଞ୍ଚଳରେ ସେପର୍ଯ୍ୟନ୍ତ ଚେର, ପାଣ୍ଡ୍ୟ ଓ ଚୋଳ ରାଜ୍ୟଗୁଡ଼ିକର ଅସ୍ତିତ୍ୱ ବଜାଏ ଥିଲ। ଏହି ରାଜ୍ୟଗୁଡ଼ିକର ଅସ୍ତିତ୍ୱ କଥା ଏଥିପୂର୍ବରୁ ଏପରିକି ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ଶିଳାଲେଖଗୁଡ଼ିକରେ ଦେଖିବାକୁ ମିଳେ। ଏହି ସମସ୍ତ ରାଜ୍ୟ ଏକଦା ରୋମ୍ ସହିତ ସିଧାସଳଖ ଯୋଗାଯୋଗ ସ୍ଥାପନ କରିଥିଲେ ଏବଂ ବିନିମୟରେ ଭାରତର ଏହି ଅତ୍ୟନ୍ତ ଦକ୍ଷିଣରେ ରୋମ୍ ମଧ୍ୟ ତା'ର ବାଣିଜ୍ୟ କେନ୍ଦ୍ରଗୁଡ଼ିକୁ ସ୍ଥାପନ କରିଥିଲେ ମଧ୍ୟ। ଦୁଃଖର କଥା, ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ କେତେକ ପ୍ରାଚୀନ ତାମିଲ ରଚନାର ଆବିର୍ଭାବ ଘଟିଥିଲ, ଉପରୋକ୍ତ ରାଷ୍ଟ୍ରଗୁଡ଼ିକର ପ୍ରାଥମିକ ରାଜନୈତିକ ଇତିହାସ ସଂପର୍କରେ ପ୍ରାୟ କିଛି ଜଣାଯାଏ ନାହିଁ। ଖ୍ରୀଷ୍ଟୀୟ ଚତୁର୍ଥ-ପଞ୍ଚମ ଶତାବ୍ଦୀରେ "ତିରୁ-କୁରଲ" ନାମକ ସାହିତ୍ୟରେ ଏକ ଅସାଧାରଣ ଗ୍ରନ୍ଥ ଲିଖିତ ହୋଇଥିଲ ଏବଂ ତା'ପରେ ବହୁ କାବ୍ୟ, ବ୍ୟାକରଣ ଓ ଅନ୍ୟାନ୍ୟ ରଚନାର ଆବିର୍ଭାବ ଘଟିଥିଲ।

ଏପର୍ଯ୍ୟନ୍ତ ଖୋଦିତ ଲିପି ଆଦିରେ ଯେଉଁ ଉପାଦାନ ମିଳିଛି, ସେଥିରୁ ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ଦାକ୍ଷିଣାତ୍ୟ ଓ ଦକ୍ଷିଣ ଭାରତର ରାଷ୍ଟ୍ରଗୁଡ଼ିକର ଶାସନ-ବ୍ୟବସ୍ଥାର ମୋଟାମୋଟି ଏକ ଚିତ୍ର ମିଳିଥାଏ।

ସାତବାହନ ଓ ଇକ୍ଷ୍ୱାକୁ ରାଜବଂଶ ସୁସଙ୍ଗଠିତ ଏକ କେନ୍ଦ୍ରୀଭୂତ ଶାସନ ବ୍ୟବସ୍ଥା ଗଢ଼ି ତୋଳିଥିଲେ। ସେମାନଙ୍କ ସାମ୍ରାଜ୍ୟ ବିଭକ୍ତ ଥିଲ ବିଭିନ୍ନ ପ୍ରଦେଶରେ। ପ୍ରଦେଶଗୁଡ଼ିକ ବିଭକ୍ତ ଥିଲ ବିଭିନ୍ନ ଜିଲ୍ଲାରେ। ବିଭିନ୍ନ ଧରଣର ରାଜକର୍ମଚାରୀମାନଙ୍କର ଏକ ବୃହତ୍ ସଂପ୍ରଦାୟ ଥିଲ ସେମାନଙ୍କର, ଯଥା, ଖାଦ୍ୟ ଓ ଯୋଗାଣ କର୍ମଚାରୀ, ପ୍ରଧାନ ଲିପିକାର, ସେନାପତି, ଗ୍ରାମାଞ୍ଚଳର ପରିଦର୍ଶକ, ଆଦି।

ସାତବାହନ, ଇକ୍ଷ୍ୱାକୁ ଓ ଅନ୍ୟାନ୍ୟ ଦକ୍ଷିଣ ଭାରତୀୟ ରାଜବଂଶର ଅନୁସୃତ ଧର୍ମ ସଂକ୍ରାନ୍ତ ନୀତି ସମ୍ବନ୍ଧରେ କିଛି କିଛି ଉଲ୍ଲେଖ ମିଳିଥାଏ। ସାତବାହନମାନେ ଥିଲେ ବୌଦ୍ଧ ଧର୍ମର ପୃଷ୍ଠପୋଷକ। ପ୍ରଖ୍ୟାତ ବୌଦ୍ଧ ଦାର୍ଶନିକ ନାଗାର୍ଜୁନଙ୍କ ରଚନାଦି ସହିତ ସାତବାହନ ରାଜସଭା ସଂପୃକ୍ତ ଥିଲ। ଚୀନ୍ ପରିବ୍ରାଜକ ୟୁଏନ୍ ସାଙ୍ଗ ଲେଖିଛନ୍ତି ଯେ, ନାଗାର୍ଜୁନ କାଳେ ସାତବାହନ ରାଜସଭାର ସଦସ୍ୟ ଥିଲେ।

ବୌଦ୍ଧ ଓ ଜୈନ ଧର୍ମର ପାଖାପାଖି ହିନ୍ଦୁ ଧର୍ମ ମଧ୍ୟ ସେତେବେଳେ ବ୍ୟାପକ ଭାବେ ଦକ୍ଷିଣ ଭାରତରେ ବ୍ୟାପୀ ଯାଇଥିଲ। ଇକ୍ଷ୍ୱାକୁ ଲିପିଗୁଡ଼ିକରେ ଉଲ୍ଲିଖିତ ଅଛି ଯେ, ପ୍ରଥମ ରୁଦ୍ରସେନା ଥିଲେ ଶୈବସଂପ୍ରଦାୟ ଭୁକ୍ତ ଏବଂ ଦ୍ୱିତୀୟ ରୁଦ୍ରସେନା ବୈଷ୍ଣବ। ପ୍ରାଚୀନ ଯୁଗରେ ଏବଂ ମଧ୍ୟ ଯୁଗର ପ୍ରାରମ୍ଭରେ ଧର୍ମମତଗୁଡ଼ିକ ମଧ୍ୟରେ ସମନ୍ୱୟ ସାଧନର ଏହି ପ୍ରୟାସ ଦାକ୍ଷିଣାତ୍ୟ ଓ ଦକ୍ଷିଣ ଭାରତର ସାଂସ୍କୃତିକ ବିକାଶ କ୍ଷେତ୍ରରେ ଅନ୍ୟତମ ସୁନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ହୋଇ ଦେଖା ଦେଇଥିଲ।

# ଅର୍ଥନୈତିକ ବିକାଶ ଓ ସମାଜ ବ୍ୟବସ୍ଥା

## କୃଷି

କୁଷାଣ ଏବଂ ଗୁପ୍ତ ଯୁଗରେ କୃଷିରେ ଆଉରି ଅଧିକ ବିକାଶ ସାଧିତ ହୋଇଥିଲା, ବିଶେଷ କରି ଭୂମି ଚାଷରେ । ନୂଆ ନୂଆ ଜମି ଆବାଦ କରାଯାଇଥିଲା ଏବଂ ଜଳାଜମିରୁ ଜଳ ନିଷ୍କାସନ କରାଯାଉଥିଲା, କୃଷିକାର୍ଯ୍ୟ ଅଧିକରୁ ଅଧିକ ଗୁରୁତ୍ୱ ଅର୍ଜନ କରୁଥିଲା । ରାଷ୍ଟ୍ର ପକ୍ଷରୁ କୃଷକମାନଙ୍କୁ ସେତେବେଳେ ଉତ୍ସାହିତ କରାଯାଇଥିଲା ଅନାବାଦୀ ଭୂମି ଓ ଜଙ୍ଗଲ କାଟି ଚାଷ ବାସ କରିବାକୁ । "ମିଲିନ୍ଦ-ପହ୍ନ" ଏବଂ "ମନୁସଂହିତାରେ" କୁହାଯାଇଛି ଯେ, ଯେଉଁମାନେ ଜଙ୍ଗଲ କାଟି ଚାଷ ପାଇଁ ଜମି ପ୍ରସ୍ତୁତ କରିବେ, ସେମାନଙ୍କୁ ସେଇସବୁ ଜମିରେ ମାଲିକାନା ଦିଆଯିବ ।

ଭାରତର ଯେଉଁସବୁ ଅଞ୍ଚଳରେ ଜଳର ପ୍ରାଚୁର୍ଯ୍ୟ ଥିଲା, ସେଠାରେ ଧାନ ଚାଷ ହେଉଥିଲା । ବିଶେଷ କରି ଧାନ ଚାଷ ହେଉଥିଲା ବଙ୍ଗ, ବିହାର, ଆସାମ, ଓଡ଼ିଶା ଏବଂ ଦକ୍ଷିଣ ଭାରତର ସମୁଦ୍ର ତୀରବର୍ତ୍ତୀ ଅଞ୍ଚଳଗୁଡ଼ିକରେ । ସେତେବେଳେ ଲୋକେ ଅନେକ ରକମର ଧାନ କଥା ଜାଣିଥିଲେ । "ଅମରକୋଷରେ" ଧାନ ଚାଷ ଏବଂ ଗହମ, ଯଅ ଏବଂ ତିଳ ଚାଷ ପାଇଁ କେଉଁ କେଉଁ ଧରଣର ମାଟି ଉପଯୋଗୀ, ସେସବୁର ବିବରଣ ଅଛି । ଏହି ଅଭିଧାନଟିର ରଚୟିତା ଅମରସିଂହ ଶିମ ଏବଂ ମସୁର ଡାଲି ସହିତ ପରିଚିତ ଥିଲେ । କାକୁଡ଼ି, ପାନ, ପିଆଜ, ରସୁଣ ଓ ବୋଇତକଖାରୁ କଥା ତ ତାଙ୍କୁ ଜଣାଥିଲା । ଆଖୁ ଚାଷ ମଧ୍ୟ ସେତେବେଳେ ବ୍ୟାପକ ଭାବେ ହେଉଥିଲା ।

ଦକ୍ଷିଣ ଭାରତ ସେତେବେଳେ ଗୋଲମରିଚ ଓ ଅନ୍ୟାନ୍ୟ ମସଲା ପାଇଁ ବିଖ୍ୟାତ ଥିଲା । ପ୍ରାଚୀନ ୟୁରୋପୀୟ ସୂତ୍ରଗୁଡ଼ିକରେ ଭାରତର ଦକ୍ଷିଣାଞ୍ଚଳ ଗୋଲମରିଚର ଦେଶ ବୋଲି ଉଲ୍ଲିଖିତ ହେଉଥିଲା । ଭାରତର କୃଷକମାନେ ସେତେବେଳେ ପ୍ରତି ବର୍ଷ ଜମିରେ ଦୁଇ ଥର କିମ୍ବା ତିନି ଥର କରି ଫସଲ ଫଳଉଥିଲେ । ଏପରିକି ବିଦେଶକୁ ନାନା ରକମର ଶସ୍ୟ ରପ୍ତାନି ହେଉଥିଲା । "ପେରିପ୍ଲୁସ୍ ମାରିସ୍ ଏରିଥ୍ରିଇରେ" (ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ରଚିତ) ଭାରତରୁ ଚାଉଳ ଗହମ ରପ୍ତାନି କଥା ଉଲ୍ଲେଖ ଅଛି । ପରବର୍ତ୍ତୀ କାଳର ଭାରତୀୟ ପୋଥିଗୁଡ଼ିକରେ ବିଶେଷ ଜୋର ଦେଇ କୁହାଯାଇଛି ଯେ, ଯେଉଁମାନେ ପତିତ ଜମି ଚାଷ କରୁଥିଲେ ଏବଂ ଜଳସେଚନର ବ୍ୟବସ୍ଥା କରୁଥିଲେ, ସେମାନେ ଏହିସବୁ ଜମିରେ ପ୍ରଥମେ ବିନିଯୋଗ କରୁଥିବା ମୂଳଧନ ଦିଗୁଣ ନଉଠେଇଲା ପର୍ଯ୍ୟନ୍ତ ରାଜକର ଦେବାରୁ ଅବ୍ୟାହତି ପାଉଥିଲେ । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ଗୁପ୍ତ ଯୁଗରେ ଖୋଦିତ ଶିଳାଲିପିଗୁଡ଼ିକରେ ପତିତ ଜମି କିଣିବାର ଉଲ୍ଲେଖ ଦେଖିବାକୁ ମିଳେ, ଯେଉଁଥିରୁ ମନେ ହୁଏ, ସେତେବେଳେ ନିଶ୍ଚୟ ଏହା ବିଶେଷ ଲାଭଜନକ ଥିଲା ଏବଂ ରାଷ୍ଟ୍ର ପକ୍ଷରୁ ଏ ଦିଗରେ ଉତ୍ସାହ ଦିଆଯାଉଥିଲା ।

ଏହି ସମୟରେ ବିଦେଶରୁ ଆମଦାନୀ ହେଉଥିବା ନୂଆ ନୂଆ ଫଳ ଆଉ ଶସ୍ୟ ମଧ୍ୟ ଭାରତରେ ଚାଷ ହେଉଥିଲା । ଚାଷର ଯନ୍ତ୍ରପାତି ଏବଂ ପଦ୍ଧତିରେ ଉନ୍ନତି ମଧ୍ୟ ଘଟିଥିଲା । ଚାଷ କାର୍ଯ୍ୟରେ

କୃଷକମାନେ ପ୍ରଧାନତଃ ଲଙ୍ଗଳ ବ୍ୟବହାର କରୁଥିଲେ । "ବୃହସ୍ପତି ସ୍ମୃତିରେ" ନିର୍ଦ୍ଦିଷ୍ଟ ଓଜନର ଏକ ବିଶେଷ ଲଙ୍ଗଳର ଲୌହ ଫାଳ ତିଆରି କରିବାର ନିର୍ଦ୍ଦେଶ ଅଛି । ତା'ଛଡ଼ା ଅମରସିଂହ ତାଙ୍କ ଅଭିଧାନରେ ଲଙ୍ଗଳର ବିଭିନ୍ନ ଅଂଶ କଥା ଉଲ୍ଲେଖ କରିଛନ୍ତି । ଏହି ସମୟରେ ଲୁହା ନିର୍ମିତ କୃଷି ଯନ୍ତ୍ରପାତିର ବ୍ୟାପକ ପ୍ରଚଳନ ଆରମ୍ଭ ହୋଇଥିଲା ଏବଂ ନୂଆ ନୂଆ କୃଷି ଯନ୍ତ୍ରପାତି ଦେଖା ଦେଇଥିଲା । ତକ୍ଷଶିଳାରୁ ମିଳିଥିବା ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପ୍ରତ୍ନତାତ୍ତ୍ୱିକ ନିଦର୍ଶନସମୂହ ମଧ୍ୟରେ ନୂତନ ଏବଂ ଉନ୍ନତତର କେତେକ କୁଠାର ଅଛି । ଏହା, ସମ୍ଭବତଃ, ବିଦେଶୀ ପ୍ରଭାବର ଫଳ ଥିଲା, କାରଣ ଏହିଭଳି କୁଠାର ସାଧାରଣତଃ ସେଇସବୁ ଦେଶରେ ମିଳିଛି, ଯେଉଁଗୁଡ଼ିକ ରୋମାନ୍ ସଂସ୍କୃତିର ପ୍ରଭାବରେ ଆସିଥିଲେ । କୁଠାର ଏବଂ କୋଦାଳ ବ୍ୟତୀତ ତକ୍ଷଶିଳାରେ ମିଳିଥିବା ଅନ୍ୟାନ୍ୟ ପ୍ରାଚୀନ ବସ୍ତୁ ମଧ୍ୟରେ ଅଛି ନୂଆ ଧରଣର ଦାଆ ଏବଂ କୋଡ଼ି ।

ଭାରତୀୟ ପ୍ରାଚୀନ ଲିଖିତ ସୂତ୍ରଗୁଡ଼ିକରେ ଚାଷ କାର୍ଯ୍ୟର ବର୍ଣ୍ଣନା ମଧ୍ୟ ମିଳିଥାଏ । ସେଇସବୁ କୃଷକଙ୍କୁ ଉପଯୁକ୍ତ ବୋଲି କୁହାଯାଉଥିଲା, ଯେଉଁମାନେ ଜମିରେ ବୀଜ ବୁଣିବା ପୂର୍ବରୁ ଦୁଇ ତିନି ଥର ମାଟିକୁ ଖୋଳା ଚଢ଼ା କରୁଥିଲେ । ଜମିରୁ ଫସଲ କାଟି ଆଣିବା ପରେ ବିଶେଷ ଖଳାରେ ଫସଲ ଝଡ଼ାଇ ମଳାଇ କରି ଛଣ କୁଟାକୁ ଅଲଗା କରାଯାଉଥିଲା । ତା'ପରେ ସେଇସବୁ ଶସ୍ୟଦାନାକୁ ଢିଙ୍କିରେ କୁଟି କୁଲେଇରେ ଝାଡ଼ି ତୁଷ ବା ଖୋସାକୁ ଅଲଗା କରାଯାଉଥିଲା ଏବଂ ତା'ପରେ ତାକୁ ଶୁଖାଇ ଅମାରରେ ରଖୁଥିଲେ ।

ଆମେ ଯେଉଁ ସମୟର କଥା କହୁଛେ, ସେତେବେଳେ ଉଦ୍ୟାନ ବିଦ୍ୟାର ମଧ୍ୟ ଯଥେଷ୍ଟ ଅଗ୍ରଗତି ଘଟିଥିଲା । ଭାରତରେ ସେତେବେଳେ ନୂଆ ନୂଆ ପନିପରିବା, ପିଚ୍, ନାଶପାତି ଭଳି ଫଳ ଚାଷ ହେଉଥିଲା । ଏହା ଛଡ଼ା ପ୍ରାଚୀନ କାଳର ଭାରତୀୟମାନେ ଆମ୍ବ, କମଳା, ଅଙ୍ଗୁର ଏବଂ କଦଳୀ ସହିତ ପରିଚିତ ଥିଲେ । ସର୍ବତ୍ର, ବିଶେଷ କରି ସମୁଦ୍ର ତୀରବର୍ତ୍ତୀ ଅଞ୍ଚଳରେ, ନଡ଼ିଆ ପ୍ରଚୁର ପରିମାଣରେ ଫଳୁଥିଲା । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଖୋଦିତ ଲିପିଗୁଡ଼ିକର ସାକ୍ଷ୍ୟ ଅନୁଯାୟୀ, ଏହି ସମୟରେ ପ୍ରଥମେ ଯତ୍ନ ସହକାରେ ନଡ଼ିଆ ବଗିଚାସବୁ ସୃଷ୍ଟି କରାଯାଉଥିଲା । ସେତେବେଳର ଲିଖିତ ସୂତ୍ରଗୁଡ଼ିକରେ ଫଳ ଗଛର ରକ୍ଷଣାବେକ୍ଷଣ କରିବା ସଂପର୍କରେ ଏବଂ ଡେଲ ଏବଂ ସାର ଦେବା ଆଦି ସଂପର୍କରେ ଉପଦେଶମାନ ଦିଆଯାଇଛି । ଶାସ୍ତ୍ରମାନଙ୍କରେ ମାଟିର ଗୁଣାଗୁଣ, ଉଦ୍‌ଭିଦର ରୋଗ, ଫଳ ବଗିଚାରେ ଦୁଇଟି ଗଛ ମଧ୍ୟରେ ବ୍ୟବଧାନ ଆଦି ସଂବନ୍ଧରେ ବିଶଦ ତଥ୍ୟ ପ୍ରଦତ୍ତ ହୋଇଛି ।

ଜମିରେ ସେତେବେଳେ ଜଳସେଚନର ବ୍ୟବସ୍ଥା ଦ୍ରୁତ ବିକଶିତ ହେଉଥିଲା ବୋଲି ମନେ ହୁଏ । ମୌର୍ଯ୍ୟ ସାମ୍ରାଜ୍ୟ କାଳରେ ଖୋଦିତ ସୁଦର୍ଶନ ହ୍ରଦର ବନ୍ଧକୁ ଆଉରି ସୁଦୃଢ଼ କରି ରାଜା ରୁଦ୍ରଦମନ ନିର୍ମାଣ କରିଥିଲେ । ଜଳ ସଂଚୟ କରି ରଖିବା ପାଇଁ ବିଶେଷ ଜଳାଧାର ମଧ୍ୟ ନିର୍ମିତ ହୋଇଥିଲା । ଯଥା, ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର ଏକ ଲିପିରେ ଉଜ୍ଜୟିନୀର ଅନତିଦୂରରେ ଥିବା ଏକ ଗ୍ରାମରେ ଏହିଭଳି ଏକ ପ୍ରକାଣ୍ଡ ଜଳାଧାର ନିର୍ମାଣର ଏକ ଉଲ୍ଲେଖ ଦେଖିବାକୁ ମିଳେ । ହାତୀଗୁମ୍ଫାରେ ଖୋଦିତ ଏକ ଶିଳାଲିପିରେ କଳିଙ୍ଗର ରାଜା ଖାରବେଳ ମଧ୍ୟ ସଗର୍ବରେ ଘୋଷଣା କରିଛନ୍ତି ଯେ, ତାଙ୍କ ରାଜ୍ୟରେ ସେ ବହୁ ଜଳାଧାର ଏବଂ ଜଳ ପ୍ରଣାଳୀ ନିର୍ମାଣ କରିଥିଲେ ।

ଗୁପ୍ତ ଯୁଗର ବହୁ ପ୍ରାଚୀନ ସୂତ୍ରରେ କୃଷିର ଗୁରୁତ୍ୱ ଉପରେ ବିଶେଷ ଜୋର ଦିଆଯାଇଛି ।

କବି କାଳିଦାସ ମଧ୍ୟ ତାଙ୍କ ନାଟକରେ କୃଷି ଓ ପଶୁପାଳନକୁ ଐଶ୍ୱର୍ଯ୍ୟର ଗୁରୁତ୍ୱପୂର୍ଣ୍ଣ ଉତ୍ସ ବୋଲି ବର୍ଣ୍ଣନା କରିଛନ୍ତି ।

ପଶୁପାଳନ ଖମାର ଗଢ଼ି ତୋଳିବା ଛଡ଼ା ମାଛଧରା ଓ ଅରଣ୍ୟ ରକ୍ଷଣ ମଧ୍ୟ ସେତେବେଳେ ମୁଖ୍ୟ ହୋଇ ଉଠିଥିଲା । ଜଙ୍ଗଲଗୁଡ଼ିକର ରକ୍ଷଣାବେକ୍ଷଣ କରିବା ପାଇଁ ରାଷ୍ଟ୍ର ତରଫରୁ ବିଶେଷ ପରିଦର୍ଶକ ନିଯୁକ୍ତ ହେଉଥିଲେ ।

## ଜମିର ମାଲିକାନା

## ବ୍ୟକ୍ତିଗତ ଭୂସଂପତ୍ତିର ବିସ୍ତାର

ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ଜମିରେ ବ୍ୟକ୍ତିଗତ ମାଲିକାନା ଆଉରି ବୃଦ୍ଧି ପାଇବାକୁ ଲାଗିଲା । ଭୂସ୍ୱାମୀମାନଙ୍କ ଅଧିକାର ଏବଂ ତା'ର ସଂରକ୍ଷଣ ବିଷୟ ପ୍ରତି ଶାସ୍ତ୍ରମାନଙ୍କରେ ବିଶେଷ ମନୋଯୋଗ ଦିଆଗଲା । ଅନ୍ୟର ଜମିକୁ ବେଆଇନ୍ ଭାବେ ଅପହରଣ କଲେ, ଶାସ୍ତି ହିସାବରେ ମୋଟା ଅର୍ଥଦଣ୍ଡ ଦେବାକୁ ପଡ଼ୁଥିଲା । ବହୁ ଦଶକ ଧରି ଜମିମାଲିକ ଜମି ଉପରେ ମାଲିକାନା କାଏମ ରଖି ପାରୁଥିଲେ । ନିଜେ କିମ୍ବା ଭଡ଼ାଟିଆ ପ୍ରଜା ଦ୍ୱାରା ଜମି ଚାଷ କଲେ ମଧ୍ୟ ସେ ମାଲିକାନାରେ ଆଞ୍ଚ ଆସୁ ନଥିଲା । ଗୁପ୍ତ ଯୁଗରେ ବିଶେଷ ଧରଣର ରାଜକୀୟ ଖତିଆନ ବା ହିସାବ ବହି ଖୋଲୁ କରାଯାଇଥିଲା, ଯାଫଳରେ ଜମିର କିଣା ବିକାର ବିବରଣ ନଥିଭୁକ୍ତ ହେଉଥିଲା । ଗୁପ୍ତ ଯୁଗରେ ଖୋଦିତ ଲିପିଗୁଡ଼ିକରେ ଜମି ବିକ୍ରିର ବହୁ ଘଟଣା ଉଲ୍ଲେଖ ଆମେ ଦେଖିବାକୁ ପାଉଁ । ଅଥଚ, କ୍ଷତ୍ରପ ଓ କୁଶାଣ ଯୁଗର ଲିପିଗୁଡ଼ିକରେ ଏ ପ୍ରକାର ଘଟଣାର ଉଲ୍ଲେଖ ଅତୀବ କ୍ୱଚିତ ଦେଖିବାକୁ ମିଳେ ।

ଆଗ ଭଳି ରାଷ୍ଟ୍ର ପକ୍ଷରୁ ଭୂସଂପତ୍ତି ଏବଂ ଭୂମିଜାତ ସଂପଦ ଉପରେ ନିୟନ୍ତ୍ରଣ ଜାରି କରିବା ଏବଂ ଗ୍ରାମୀଣ ସମାଜଗୁଡ଼ିକ ତରଫରୁ ଚେଷ୍ଟା ହେଉଥିଲା ବ୍ୟକ୍ତିଗତ ମାଲିକାନାର ବିସ୍ତାର କ୍ଷେତ୍ରରେ ବାଧା ସୃଷ୍ଟି କରିବାକୁ । ତେବେ ବ୍ୟକ୍ତିର ମାଲିକାନାଧୀନରେ କ୍ରମଶଃ ଜମିର କେନ୍ଦ୍ରୀଭବନର ଧାରାଟି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅବ୍ୟାହତ ରହି ଯାଇଥିଲା ।

ଉଦାହରଣ ସ୍ୱରୂପ, ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ପଶ୍ଚିମ ଭାରତୀୟ କ୍ଷତ୍ରପମାନଙ୍କର ରାଜତ୍ୱକାଳର ଏକ କୌତୂହଳୋଦ୍ଦୀପକ ତଥ୍ୟ ମିଳିଥାଏ ନାସିକରୁ ମିଳିଥିବା ପଥରଖୋଦେଇ ଲିପିଗୁଡ଼ିକ ମଧ୍ୟରୁ ଗୋଟିକରେ । ସେଥିରେ ଯେଉଁ ଘଟଣାଟିର ଉଲ୍ଲେଖ ଅଛି, ତା ହେଉଛି, ରାଜା ନହପନଙ୍କ ଜାମାତା ଉଷାବଦତ ପ୍ରଥମେ ଏକ ବ୍ୟକ୍ତିବିଶେଷଙ୍କ ନିକଟରୁ ଖଣ୍ଡେ ଜମି କିଣିଥିଲେ କୌଣସି ଏକ ବୌଦ୍ଧ ସଂଘକୁ ସେ ଜମି ଖଣ୍ଡକ ଦାନ କରିବା ପାଇଁ । ସରକାରୀ ବା ରାଜାର ନିଜସ୍ୱ ଭୂସଂପତ୍ତି କ୍ରମଶଃ ବିଭିନ୍ନ ବ୍ୟକ୍ତିର ମାଲିକାନାକୁ ଚାଲିଯିବା ଫଳରେ ଏହି ନୂତନ ପ୍ରକ୍ରିୟାଟି ଆରମ୍ଭ ହୋଇଥିବାର ପ୍ରମାଣ ମିଳୁଛି । ମନେ ହୁଏ, ଉଷାବଦତଙ୍କ ହାତରେ କୌଣସି ମାଲିକାନାହୀନ ଖାଲି ଜମି ନଥିଲା, ତେଣୁ ସେ ବାଧ୍ୟ ହୋଇଥିଲେ ଅନ୍ୟ ଏକ ଭୂସ୍ୱାମୀ ନିକଟରୁ ଜମି କିଣିବାକୁ ।

ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ବ୍ୟକ୍ତିବିଶେଷଙ୍କୁ ଭୂମିଦାନ କରିବାର ସଂଖ୍ୟା ବୃଦ୍ଧି ପାଇଥିଲା ଏବଂ ସବୁଠାରୁ ଯେଉଁଟି ଗୁରୁତ୍ୱପୂର୍ଣ୍ଣ କଥା, ତାହା ହେଲା, ଏହି ଭୂମିଦାନର

ପ୍ରକୃତି ମଧ୍ୟ ବଦଳି ଯିବାକୁ ଆରମ୍ଭ କରିଥିଲା । ଇତିପୂର୍ବରୁ ଭୂମିଦାନ କେବଳ ପ୍ରଯୋଜ୍ୟ ଥିଲା ଭୂମିର ବ୍ୟବହାର କ୍ଷେତ୍ରରେ, ଭୂମି ଚାଷ କରୁଥିବା କୃଷକମାନଙ୍କ ଉପରେ ତା ଦ୍ୱାରା କୌଣସି ଅଧିକାର ସୃଷ୍ଟି ହେଉ ନଥିଲା । ତା'ଛଡ଼ା ଅନେକ କ୍ଷେତ୍ରରେ ଭୂମିଦାନର ମିଆଦ ମଧ୍ୟ ଥିଲା ସାମୟିକ, ଅର୍ଥାତ୍, ଭୂମିର ଗ୍ରହୀତା ଯେପର୍ଯ୍ୟନ୍ତ ବିଶେଷ ସରକାରୀ କାର୍ଯ୍ୟରେ ଲିପ୍ତ ରହୁଥିଲେ କେବଳ ସେଇ ପର୍ଯ୍ୟନ୍ତ । କିନ୍ତୁ ଏବେ ତାହା କ୍ରମଶଃ ଅଧିକରୁ ଅଧିକ ବଂଶାନୁକ୍ରମିକ ହୋଇ ଯିବାକୁ ଆରମ୍ଭ କଲା । ଏହା ଫଳରେ ବ୍ୟକ୍ତିଗତ ମାଲିକମାନଙ୍କର ଅଧିକାର ଦୃଢ଼ ଏବଂ ସ୍ଥାୟୀ ହୋଇ ଉଠିଥିଲା ଏବଂ ଏହି ମାଲିକମାନେ କେନ୍ଦ୍ରୀୟ ଶାସନ କର୍ତ୍ତୃପକ୍ଷଙ୍କ ନିୟନ୍ତ୍ରଣକୁ ଏଡ଼ାଇ ମୋଟାମୋଟି ଭାବେ ସ୍ୱାଧୀନ ହୋଇ ଉଠିଲେ । କେତେକ ପ୍ରକାରର ଭୂମିଦାନ ବ୍ୟବସ୍ଥା ପ୍ରାୟ ଚିରସ୍ଥାୟୀ ହୋଇ ଉଠିଲା, କାରଣ ଏହିସବୁ ଦାନ କର୍ମର ପଟାରେ ପରିଷ୍କାର ଭାବେ ଲେଖା ହେଲା, ଜମି ଚିରକାଳ ପାଇଁ, "ଯାବତ୍ ଚନ୍ଦ୍ରାର୍କେ" ଦାନ କରାଗଲା ।

ଏହି ଯୁଗରେ ରାଷ୍ଟ୍ର ଯେତେବେଳେ ସାମୟିକ ଭୋଗ ଦଖଲ ପାଇଁ ଜମିଦାନ କରୁଥିଲେ, ସେତେବେଳେ ମଧ୍ୟ ସେ ଭୂସ୍ୱାମୀମାନଙ୍କୁ କ୍ରମଶଃ କେତେକ ବିଶେଷ ସୁଯୋଗ ସୁବିଧା, ଅର୍ଥାତ୍, ତଥାକଥିତ ଉନ୍ମୁକ୍ତି ଅଧିକାର ଦାନ କରିବାକୁ ଆରମ୍ଭ କରିଥିଲେ ।

ଏ କ୍ଷେତ୍ରରେ ଏହାର ପରବର୍ତ୍ତୀ ପଦକ୍ଷେପଟି ହେଲା, ଏହିସବୁ ଭୂସ୍ୱାମୀଙ୍କ ଜମି ଓ ସେଇ ଜମିରେ ଯେଉଁମାନେ କାର୍ଯ୍ୟତଃ ଚାଷବାସ କରୁଥିଲେ, ସେମାନଙ୍କ ଉପରେ କେତେକ ଶାସନଗତ କ୍ଷମତା ଅର୍ଜନ କରିବା । କେତେକ ଆଇନଗତ କାର୍ଯ୍ୟ ସେମାନେ ନିଷ୍ପନ୍ନ କରିବାକୁ ଆରମ୍ଭ କରି ଦେଲେ; ରାଜା ସେମାନଙ୍କୁ ସେମାନଙ୍କ ଜମିରେ ରାଜକୀୟ କର୍ମଚାରୀମାନଙ୍କର ପରିଦର୍ଶନ ଏବଂ ତଦାରଖିକୁ ମାନି ନେବା ପାଇଁ ଥିବା ପୂର୍ବତନ ସମସ୍ତ ବାଧ୍ୟ ବାଧକତାରୁ ମୁକ୍ତ କରି ଦେଲେ । ଏହି ଧରଣର ଅଧିକାର ଦାନର ପ୍ରାଚୀନତମ ଉଲ୍ଲେଖ ଦେଖିବାକୁ ମିଳେ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର ଏକ ସାତବାହନ ଲିପିରେ (ଏହି ରାଜକୀୟ ନିର୍ଦ୍ଦେଶଟି ହେଉଛି ସାମନ୍ତବାଦୀ ଭୂମି ବ୍ୟବସ୍ଥାର ଉଦ୍‌ଭବର ଏକ ନିର୍ଭୁଲ ଲକ୍ଷଣ—ଏବଂ ତାହା କେବଳ ଉତ୍ତର ଭାରତରେ ନୁହେଁ, ଦାକ୍ଷିଣାତ୍ୟରେ ମଧ୍ୟ) । ସାତବାହନ ରାଜା ଗୋତମୀପୁତ୍ର ସାତକାନି ବୌଦ୍ଧ ଭିକ୍ଷୁମାନଙ୍କୁ ଭୂମି ଦାନ କରିଥିଲେ ଏବଂ ତତ୍ ସଙ୍ଗେ ସଙ୍ଗେ ଗ୍ରାମ୍ୟ ସମାଜକୁ ସେମାନଙ୍କ ଜମିରେ ରାଜାର ସେନାବାହିନୀର ଉପସ୍ଥିତିର ଓ ରାଜକର୍ମଚାରୀମାନଙ୍କର ହସ୍ତକ୍ଷେପର ପୂର୍ବତନ ବାଧ୍ୟ ବାଧକତାରୁ ମୁକ୍ତ କରିଦେଲେ । ଏହି ପ୍ରଥାଟି ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ପରେ ବ୍ୟାପକତା ଲାଭ କରିଥିଲା, ଯେତେବେଳେ ରାଜା ବ୍ୟକ୍ତିଗତ ମାଲିକାନାଧୀନ ଜମି ସଂକ୍ରାନ୍ତ ସମସ୍ତ ରାଜକର, ଶାସନଗତ ତଥା ଆଇନଗତ ଦାୟିତ୍ୱ ଏହିସବୁ ଜମିର ମାଲିକମାନଙ୍କ ହାତରେ ଛାଡ଼ିଦେଲେ । ଏପରିକି ଖଣିର ମାଲିକାନାର ଅଧିକାରସମୂହକୁ ହସ୍ତାନ୍ତର କରାଗଲା, ଯଦିଓ ଏସବୁକୁ ଇତିପୂର୍ବରୁ ସଦାସର୍ବଦା ପରମ୍ପରାଗତ ରାଜାଙ୍କ ଏକଚାଟିଆ ଅଧିକାର ବୋଲି ଗଣ୍ୟ କରାହୋଇ ଆସିଥିଲା ।

ରାଷ୍ଟ୍ରର ଯେଉଁ କେତେକ ସରକାରୀ ଦାୟିତ୍ୱ ବ୍ୟକ୍ତିବିଶେଷଙ୍କୁ ଅର୍ପଣ କରାଯାଉଥିଲା, ସେସବୁ ନିର୍ଦ୍ଦେଶକୁ ଏକ ବିଶେଷ ଧରଣର ସନନ୍ଦ ବା ନିର୍ଦ୍ଦେଶନାମାରେ ଲିପିବଦ୍ଧ କରାଯାଉଥିଲା । ସନନ୍ଦଗୁଡ଼ିକୁ ତମ୍ବା ଫଳକ ଉପରେ ଖୋଦେଇ କରି ନୂତନ ଭୂସ୍ୱାମୀମାନଙ୍କୁ ଦିଆଯାଉଥିଲା । ଏହି ରାଷ୍ଟ୍ରୀୟ ରୀତି ଅନୁସରଣ କରିବା ଫଳରେ ସାମୟିକ ଭୂସ୍ୱାମୀମାନଙ୍କର ପଦମର୍ଯ୍ୟାଦା ବଂଶାନୁକ୍ରମିକ ସାମନ୍ତବାଦୀ

ପ୍ରଭୁମାନଙ୍କ ପଦମର୍ଯ୍ୟାଦାର ଆଉରି ନିକଟବର୍ତ୍ତୀ ହୋଇ ଉଠିଲ ଏବଂ ଏପରି ଏକ ପରିସ୍ଥିତି ସୃଷ୍ଟି ହେଲା ଯେ, କୃଷକମାନେ କ୍ରମଶଃ ଏହି ପ୍ରଥମୋକ୍ତ ଭୂସ୍ୱାମୀମାନଙ୍କ କର୍ତ୍ତୃତ୍ୱର ଅଧୀନ ହେବାକୁ ଲଗିଲେ । ଏକଥା, ଅବଶ୍ୟ, ମନେ ରଖିବାକୁ ହେବ ଯେ, ଏହି ପ୍ରକ୍ରିୟାଟି ରୂପ ଗ୍ରହଣ କରିବାକୁ ଦୀର୍ଘ କାଳ ଲଗିଥିଲ ଏବଂ ଏହା କ୍ରମଶଃ ଘଟିଥିଲ । ଏହା ପରେ ମଧ୍ୟ ଅନେକ କାଳ ଧରି ଗ୍ରାମାଞ୍ଚଳରେ ଶାସନ ପରିଚାଳନା ସଂକ୍ରାନ୍ତ ଅନେକ ଦାୟିତ୍ୱ ରାଷ୍ଟ୍ର ହାତରେ ନ୍ୟସ୍ତ ଥିଲ ।

ଗ୍ରାମାଞ୍ଚଳରେ ସାମାଜିକ ସଂପର୍କ କ୍ଷେତ୍ରରେ ମଧ୍ୟ ସେତେବେଳେ ପରିବର୍ତ୍ତନ ଘଟିବାକୁ ଲଗିଲ ରଇତମାନଙ୍କ ଜରିଆରେ ଚାଷ କାର୍ଯ୍ୟ କରିବାର ପ୍ରସାର ଦ୍ୱାରା । ଉତ୍ପାଦନର ଉପାୟ, ଅର୍ଥାତ୍, ଜମି ଓ ଚାଷର ସାଜସରଞ୍ଜାମ ହରେଇ ରଇତମାନେ ସଂପୂର୍ଣ୍ଣ ରୂପେ ଭୂସ୍ୱାମୀମାନଙ୍କ ଉପରେ ନିର୍ଭରଶୀଳ ହେବାକୁ ଲଗିଲେ ।

ଏହି ସମୟର ପ୍ରାଚୀନ ଭାରତୀୟ ଲିଖିତ ସୂତ୍ରଗୁଡ଼ିକରେ କ୍ରମଶଃ ବେଶି ବେଶି "ଗ୍ରାମଦାନର" ଉଲ୍ଲେଖ ଦେଖିବାକୁ ମିଳେ । ଏହାର ଅର୍ଥ, ରାଜା ଏହିସବୁ ଗ୍ରାମରୁ ରାଜକର ଆଦାୟ କରିବାର ଅଧିକାର ହସ୍ତାନ୍ତରିତ କରୁଥିଲେ । ଗ୍ରାମର ସମସ୍ତ ଜମିଜମା ଯେ ଏହା ଫଳରେ ଗ୍ରହୀତାଙ୍କ ନିକଟକୁ ହସ୍ତାନ୍ତରିତ ହୋଇ ଯାଉଥିଲ, ତା ନୁହେଁ, ତେବେ ଯେଉଁ ବ୍ୟକ୍ତିକୁ ଏହା ପରେ କୃଷକମାନେ ରାଜକର ଦେଉଥିଲେ, ତା'ର ପଦମର୍ଯ୍ୟାଦା ଯେ ମୋଟେ ଆଗ ଭଳି ରହୁ ନଥିଲ, ତାହା ମୋଟେ ନୁହଁ । ଏହା ଫଳରେ ଗ୍ରାମ୍ୟ ସମାଜର ମୁକ୍ତ ସଦସ୍ୟମାନେ କ୍ରମଶଃ ବ୍ୟକ୍ତିମାଲିକମାନଙ୍କର ଅଧୀନସ୍ଥ ହେବାକୁ ଲଗିଲେ । କାରଣ, ବ୍ୟକ୍ତିମାଲିକମାନେ ଜମି ଉପରେ ସେମାନଙ୍କ ଅଧିକାର ପ୍ରସାର ଦିଗରେ ମନୋଯୋଗୀ ହୋଇ ପଡ଼ିଲେ । ଉପରୋକ୍ତ ଏହିସବୁ "ଗ୍ରାମଦାନର" ଚରିତ୍ର ଯେ ସେତେବେଳେ ସାମନ୍ତବାଦୀ ଥିଲ, ତା ନୁହେଁ, ତେବେ ସେତେବେଳେ ଏହି ଆଭାସ ମିଳୁଥିଲ ଯେ, ଏହାର ସୁନିର୍ଦ୍ଦିଷ୍ଟ ପ୍ରବଣତା ସାମନ୍ତବାଦୀ ସମାଜ ସଂପର୍କ ଗଢ଼ି ତୋଳିବା ଦିଗରେ । ଏହାର ପୂର୍ବବର୍ତ୍ତୀ ଯୁଗ ଭଳି ଏହିସବୁ "ଦାନକାର୍ଯ୍ୟ" ରାଷ୍ଟ୍ରୀୟ କର୍ମଚାରୀମାନଙ୍କୁ ବେତନ ପରିବର୍ତ୍ତେ ସଂପନ୍ନ କରାଯାଉଥିଲ ।

## ପ୍ରତ୍ୟକ୍ଷ ଉତ୍ପାଦକର ଅବସ୍ଥାରେ ପରିବର୍ତ୍ତନ । ସାମନ୍ତବାଦୀ ସାମାଜିକ ସଂପର୍କର ଉଦ୍ଭବ

ଉତ୍ପାଦନ ସହିତ ପ୍ରତ୍ୟକ୍ଷ ଭାବେ ଜଡ଼ିତ ଲୋକମାନଙ୍କର—କ୍ରୀତଦାସ, ଗ୍ରାମ୍ୟ ସମାଜର ଅନ୍ୟାନ୍ୟ ମୁକ୍ତ ସଦସ୍ୟ ଓ ଭଡ଼ାଟିଆ ମଜୁରିଆମାନଙ୍କର—ସାମାଜିକ ଅବସ୍ଥାନ ଓ ଅବସ୍ଥାରେ ଏହି ଯୁଗରେ ନାନା ମୌଳିକ ପରିବର୍ତ୍ତନ ଦେଖିବାକୁ ମିଳେ । ପରବର୍ତ୍ତୀ ଶାସ୍ତ୍ରସମୂହରେ କ୍ରୀତଦାସ ସଂପର୍କିତ ବିଭିନ୍ନ ନିୟମକାନୁନ୍ ବିସ୍ତାରିତ ଭାବେ ଲିପିବଦ୍ଧ ହୋଇଛି ଏବଂ କ୍ରୀତଦାସମାନଙ୍କୁ ନାନା ଗୋଷ୍ଠୀରେ ଭାଗ ଭାଗ କରାଯାଇଛି । ସାମୟିକ କ୍ରୀତଦାସମାନଙ୍କୁ ଆଜୀବନ କ୍ରୀତଦାସରେ ପରିଣତ କରିବା ବିରୁଦ୍ଧରେ ଏକ ଲକ୍ଷଣୀୟ ପ୍ରୟାସ ଏହିସବୁ ଗ୍ରନ୍ଥରେ ଦେଖିବାକୁ ମିଳେ । କ୍ରୀତଦାସ ମାଲିକମାନଙ୍କର କର୍ତ୍ତବ୍ୟଗୁଡ଼ିକୁ ବିଧିବଦ୍ଧ କରାଯାଇଛି ଏବଂ ଏହି ବିଧି ନିଷେଧ ଅମାନ୍ୟ କଲେ, ଦାସପ୍ରଭୁମାନଙ୍କର ବିରୁଦ୍ଧରେ ଅର୍ଥଦଣ୍ଡର ମଧ୍ୟ ବ୍ୟବସ୍ଥା କରାଯାଇଛି ସେସବୁ ଗ୍ରନ୍ଥରେ । ପରବର୍ତ୍ତୀ ଶାସ୍ତ୍ରସମୂହରେ ବିଶେଷ ଗୁରୁତ୍ୱ ପ୍ରଦାନ କରାଯାଇଛି, କ୍ରୀତଦାସମାନେ କେଉଁ ବର୍ଣ୍ଣରୁ ଜାତ, ତା

ଉପରେ । ଗୁପ୍ତ ଯୁଗର ଲିଖିତ ସୂତ୍ରଗୁଡ଼ିକରେ ଏହି ବର୍ଣ୍ଣ ନିର୍ଦ୍ଧାରଣର ନୀତି କଠୋର ଭାବେ ମାନିକି ଚଳିବାର ନିର୍ଦ୍ଦେଶ ଦିଆଯାଇଛି । ସେସବୁଥିରେ ପ୍ରଥମେ ବ୍ରାହ୍ମଣମାନଙ୍କର ଏବଂ ସେମାନଙ୍କ ପରେ "ଦ୍ୱିଜମାନଙ୍କର" ଅଧିକାରସମୂହକୁ ରକ୍ଷା କରିବାର କଥା କୁହାଯାଇଛି । କାତ୍ୟାୟନ ସିଧାସଳଖ ଘୋଷଣା କରିଛନ୍ତି ଯେ, କ୍ରୀତଦାସତ୍ୱ ବ୍ରାହ୍ମଣମାନଙ୍କ ପ୍ରତି ପ୍ରଯୋଜ୍ୟ ନୁହେଁ । ଯାଜ୍ଞବଲ୍କ୍ୟଙ୍କ ମତରେ, ନିମ୍ନତର କୌଣସି ବର୍ଣ୍ଣର ଲୋକକୁ କ୍ରୀତଦାସ କରାଯାଇ ପାରେ, ଅର୍ଥାତ୍, ବ୍ରାହ୍ମଣମାନେ କ୍ଷତ୍ରିୟ କିମ୍ବା ବୈଶ୍ୟ ବର୍ଣ୍ଣ ସମ୍ଭୂତ ଲୋକକୁ କ୍ରୀତଦାସ ରୂପେ ନିଯୁକ୍ତ କରି ପାରନ୍ତି ଏବଂ ତାହା ଶାସ୍ତ୍ରସମ୍ମତ ।

ଏହି ଯୁଗରେ କ୍ରୀତଦାସମାନଙ୍କୁ ମୁକ୍ତ କରି ଦେବା ଉଚିତ କି ଉଚିତ ନୁହେଁ—ଏହି ପ୍ରଶ୍ନଟି ତୁମୁଳ ବିତର୍କ ସୃଷ୍ଟି କରିଥିଲା ଏବଂ ପରବର୍ତ୍ତୀ ଶାସ୍ତ୍ରସମୂହ ଏହି ବିଷୟଟିକୁ ଘେନି ଆଲୋଚନା କରିବାଟା ଆକସ୍ମିକ ନୁହେଁ । କ୍ରୀତଦାସମାନଙ୍କର, ବିଶେଷ କରି ସାମୟିକ କ୍ରୀତଦାସମାନଙ୍କୁ ମୁକ୍ତ କରି ଦେବାର ବିଧାନ ମଧ୍ୟ ଦିଆଯାଇଛି । କ୍ରୀତଦାସମାନଙ୍କୁ ମୁକ୍ତି ଦେବାର ଏକ ଅନୁଷ୍ଠାନର ବିଶଦ ବର୍ଣ୍ଣନା "ନାରଦ-ସ୍ମୃତିରେ" ଦେଖିବାକୁ ମିଳେ । ସେଥିରେ କୁହାଯାଇଛି, ଦାସପ୍ରଭୁ ଏକ ଜଳପାତ୍ରକୁ ଭାଙ୍ଗି କ୍ରୀତଦାସର ମୁଣ୍ଡ ଉପରେ ସେ ଜଳକୁ ଛିଞ୍ଚି ଦେଇ ଘୋଷଣା କଲେ ଯେ, ସେ ଏବେ ମୁକ୍ତ ମଣିଷ । ପରବର୍ତ୍ତୀ ଶାସ୍ତ୍ରସମୂହରେ ଆଉରି କୁହାଯାଇଛି ଯେ, ଦାରିଦ୍ର୍ୟର ଜ୍ୱାଳାରେ (ଖାଦ୍ୟ ସଂଗ୍ରହର ଉପାୟ ହିସାବରେ) ଯେଉଁସବୁ କ୍ରୀତଦାସ ଦାସତ୍ୱ ବରଣ କରିଛନ୍ତି, ଅନ୍ନ ଗ୍ରହଣ କରିବାକୁ ସେମାନେ ଅସ୍ୱୀକାର କଲେ, ସେମାନଙ୍କୁ ମୁକ୍ତି ଦିଆଯିବ । କେହି ଯଦି ଋଣଗ୍ରସ୍ତ ହୋଇ ଦାସତ୍ୱ ବରଣ କରିଥାଏ, ତେବେ ପ୍ରାପ୍ୟ ସୁଧ ସହ ସେହି ଅର୍ଥ ପରିଶୋଧ କରି ଦେଲେ ତା ପକ୍ଷରେ ସ୍ୱାଧୀନତା ଫେରନ୍ତ ପାଇବାର ଯଥେଷ୍ଟ ଯୁକ୍ତି ରହିବ ।

ମୁକ୍ତ କୃଷକମାନଙ୍କର ପୂର୍ବବର୍ତ୍ତୀ ଅବସ୍ଥାରେ ମଧ୍ୟ ବହୁ ପରିବର୍ତ୍ତନ ଘଟିଥିଲା । ପ୍ରଥମେ କେବଳ ଜମି ଜଣେ ମାଲିକ ହାତରୁ ଆଉ ଜଣେ ମାଲିକ ହାତକୁ ହସ୍ତାନ୍ତରିତ ହେଉଥିଲା, ପରେ ଜମି ସହ ଜମିରେ କୃଷିକାର୍ଯ୍ୟରତ ଲୋକେ ପରହସ୍ତଗତ ହେବାକୁ ଲାଗିଲେ । ଏହି ଧରଣର ଜମି ଦାନର ସବୁଠାରୁ ଏକ ପ୍ରାଚୀନ ଦଲିଲ—ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀର ଏକ ପଲ୍ଲବ ଲିପିରେ କୁହାଯାଇଛି ଯେ, ବ୍ରାହ୍ମଣମାନଙ୍କୁ ଜମି ହସ୍ତାନ୍ତର କଲା ପରେ ଏହି ଜମିରେ କର୍ମରତ ଭାଗ ଚାଷୀମାନେ ମଧ୍ୟ ଜମି ସହିତ ଆବଦ୍ଧ ରହି ହସ୍ତାନ୍ତରିତ ହେବେ । କ୍ରମେ ଏହି ପ୍ରଥା ସେହିମାନଙ୍କ କ୍ଷେତ୍ରରେ ପ୍ରଯୁକ୍ତ ହେଲା, ଯେଉଁମାନେ ପୂର୍ବେ ମୁକ୍ତ କୃଷିଜୀବୀ ଏବଂ ଗ୍ରାମ୍ୟ ଗୋଷ୍ଠୀର ସଦସ୍ୟ ଥିଲେ, ଅର୍ଥାତ୍, ସେମାନେ ମଧ୍ୟ ଭୂମିଦାସ ପର୍ଯ୍ୟାୟରେ, କିମ୍ବା ତାଠାରୁ ଟିକିଏ ଉନ୍ନତ ପର୍ଯ୍ୟାୟରେ ପରିଣତ ହେଲେ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ଏକ ଉକତକ ଅନୁଶାସନରେ ଘୋଷଣା କରାଯାଇଛି ଯେ, ସ୍ଥାନୀୟ କୃଷକମାନଙ୍କୁ (ବା କର୍ଷକମାନଙ୍କୁ) ଚାଷ ପାଇଁ ପୃଥକ୍ ଭାବେ ରଖାଯାଇଥିବା ଚାରିଖଣ୍ଡ କ୍ଷେତ ଦିଆଯିବ, ଅର୍ଥାତ୍, ଅନ୍ୟ ଭାବେ କହିବାକୁ ଗଲେ, ଏହିସବୁ କୃଷକ, ଯେଉଁମାନେ ଜମି ଚାଷ କରୁଥିଲେ, ସେମାନଙ୍କୁ ଜମି ସହିତ ନୂତନ ଭୂସ୍ୱାମୀମାନଙ୍କ ଅଧୀନକୁ ହସ୍ତାନ୍ତରିତ କରାଯିବ । ଖ୍ରୀଷ୍ଟୀୟ ପ୍ରଥମ ସହସ୍ରାବ୍ଦର ମଝାମଝି ବେଳକୁ ସାମନ୍ତବାଦୀ ଅର୍ଥନୈତିକ ଛାଞ୍ଚଗୁଡ଼ିକ ଭାରତରେ ରୂପ ପରିଗ୍ରହ କରିଥିଲା ଏବଂ ସାମଗ୍ରିକ ଭାବେ ଏକ ସାମନ୍ତବାଦୀ ସମାଜ ପ୍ରତିଷ୍ଠିତ ହେଲା ପର୍ଯ୍ୟନ୍ତ ତାହା କ୍ରମେ କ୍ରମେ ବିକାଶ ଲାଭ କରିବାକୁ ଲାଗେ । ଖ୍ରୀଷ୍ଟୀୟ ଷଷ୍ଠ ଓ ସପ୍ତମ ଶତାବ୍ଦୀରେ ବହୁ

ସ୍ତର ବିଶିଷ୍ଟ ଭାରତୀୟ ସମାଜର ଢାଞ୍ଚା ମଧ୍ୟରେ ସାମନ୍ତବାଦୀ ସମାଜ ସଂପର୍କ ପ୍ରଧାନ ହୋଇ ଉଠିଥିଲା ।

## କୁଟୀର ଶିଳ୍ପ ଓ
## କାରିଗର ସଂଘ

ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ଭାରତରେ କାରିଗରି ବା ହସ୍ତଶିଳ୍ପର ମାନ ଯଥେଷ୍ଟ ଉନ୍ନତ ହୋଇଥିଲା । ଭାରତୀୟ ଧାତୁକର୍ମୀ ଓ ଜହ୍ଲେଇଶିଳ୍ପୀମାନେ ସେମାନଙ୍କ ଦକ୍ଷତା ପାଇଁ ଖ୍ୟାତି ଲାଭ କରିଥିଲେ । ଏପରିକି ସେଇ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ସେମାନେ କିପରି ଏକ ଲୌହ ସ୍ତମ୍ଭ (ସାତ ମିଟରରୁ ଅଧିକ ଉଚ୍ଚ ଏବଂ ଛଅ ଟନରୁ ଅଧିକ ଓଜନର) ନିର୍ମାଣ କରି ପାରିଥିଲେ, ତାହା ଏପର୍ଯ୍ୟନ୍ତ ରହସ୍ୟପୂର୍ଣ୍ଣ ବୋଧ ହୁଏ । ଦେଶର ଆର୍ଦ୍ର ଜଳବାୟୁ ସତ୍ତ୍ୱେ ଏହା କ୍ଷୟ ଯାଇନି କି ସେଥିରେ କଳଙ୍କି ଲାଗିନି । "ମିଲିନ୍ଦ-ପହ୍ନରେ" ସୁନା, ଲୁହା, ସୀସା ଏବଂ ଟିଣ ଶିଳ୍ପକୁ ଅନ୍ୟାନ୍ୟ କାରୁଶିଳ୍ପ ଠାରୁ ପୃଥକ୍ କରି ଉଲ୍ଲେଖ କରାଯାଇଛି । ଏହିସବୁ ଶିଳ୍ପର କାରିଗରମାନେ ଅନ୍ୟମାନଙ୍କ ଠାରୁ ଏବଂ ପୃଥକ୍ ପୃଥକ୍ ଭାବେ କାର୍ଯ୍ୟ କରୁଥିଲେ ବୋଲି ସେଥିରେ କୁହାଯାଇଛି । ରାଜାର ନିଜସ୍ୱ ଧାତୁଶିଳ୍ପୀ ଓ ଅସ୍ତ୍ରନିର୍ମାତାମାନେ କାରୁଶିଳ୍ପୀମାନଙ୍କ ମଧ୍ୟରେ ବିଶିଷ୍ଟ ଏକ ଗୋଷ୍ଠୀର ଅନ୍ତର୍ଗତ ଥିଲେ । ମନେ ହୁଏ, ଏହି ଗୋଷ୍ଠୀଟି ଉପରେ ରାଷ୍ଟ୍ରୀୟ ନିୟନ୍ତ୍ରଣ କଡ଼ାକଡ଼ି ଥିଲା । କାରଣ ରାଜା ଦେଶର ସମସ୍ତ ଖଣିଜ ପଦାର୍ଥର ମାଲିକ ବୋଲି ଗଣ୍ୟ ହେଉଥିଲେ ଏବଂ ଖଣିରୁ ଧାତୁ ନିଷ୍କାସନ କରିବା ଥିଲା ରାଜକୀୟ ବିଶେଷ ଅଧିକାର । ଅସ୍ତ୍ରଶସ୍ତ୍ର ନିର୍ମାଣ ବିଷୟଟି କେନ୍ଦ୍ରୀୟ ଶାସନ କର୍ତ୍ତୃପକ୍ଷଙ୍କର ଆଉରି ଦୃଢ଼ ତଦାରଖର ଅଧୀନ ଥିଲା ।

ବହୁ ବିଚିତ୍ର ଧରଣର ଲୁହା ସାମଗ୍ରୀ ସେତେବେଳେ ତିଆରି ହେଉଥିଲା । ଅସ୍ତ୍ରଶସ୍ତ୍ର ନିର୍ମାଣ କ୍ଷେତ୍ରରେ ସେ ଯୁଗରେ ଏକ ବୈଶିଷ୍ଟ୍ୟ ଥିଲା, ଏକ ଦିଗରେ, ଗ୍ରୀକ୍-ରୋମ୍‌ର ପ୍ରଭାବ, ଅନ୍ୟ ଦିଗରେ, ମଧ୍ୟ ଏସିଆର ପ୍ରଭାବ (ଯଥା, ଉଦାହରଣ ସ୍ୱରୂପ, ତକ୍ଷଶିଳାରେ ଓ ଭାରତର ଅନ୍ୟାନ୍ୟ ଉତ୍ତର-ପଶ୍ଚିମ ଅଞ୍ଚଳରେ ଅସ୍ତ୍ରଶସ୍ତ୍ର ଶକ ସେନା ଅନୁଯାୟୀ), ତେବେ ମୋଟ ଉପରେ, ଧାତୁଶିଳ୍ପୀମାନେ ସ୍ଥାନୀୟ ଐତିହ୍ୟ ଅନୁସରଣ କରୁଥିଲେ । ଲୁହା ଏବଂ ଇସ୍‌ପାତ ନିର୍ମିତ ଜିନିଷ ଖୁବ୍ ଉଚ୍ଚ ମାନର ଥିଲା । ସେସବୁ ବ୍ୟାପକ ଭାବେ ବିଦେଶକୁ ରପ୍ତାନି କରାଯାଉଥିଲା । "ପେରିପ୍ଲୁସ୍ ମାରିସ୍ ଏରିଥ୍ରିଇରେ" ଉଲ୍ଲେଖ ଅଛି ଯେ, ଭାରତୀୟ ଲୁହା ଏବଂ ଇସ୍‌ପାତ ଆଫ୍ରିକାର ବନ୍ଦରଗୁଡ଼ିକୁ ରପ୍ତାନି ହେଉଥିଲା । ଏହି ଗ୍ରନ୍ଥଟିରେ ଭାରତୀୟ ତମ୍ବା ରପ୍ତାନି କଥା ଉଲ୍ଲେଖ ଅଛି । ଏହି ସମୟର ଧାତୁଶିଳ୍ପୀମାନେ ସୁପରିଚିତ ଥିଲେ ସେମାନଙ୍କ ଶିଳ୍ପ ଦକ୍ଷତା ପାଇଁ । ଏହା ଛଡ଼ା ଭାରତୀୟ ସ୍ୱର୍ଣ୍ଣକାରମାନଙ୍କର କାର୍ଯ୍ୟ ମଧ୍ୟ ଭାରତର ସୀମା ବାହାରେ ବହୁଦୂର ପର୍ଯ୍ୟନ୍ତ ସୁପରିଚିତ ଏବଂ ଆଦୃତ ଥିଲା । ତକ୍ଷଶିଳାରେ ସେତେବେଳେ ହେଲେନିକ୍ ଶିଳ୍ପ ପରମ୍ପରା ସହିତ ପରିଚିତ କେତେକ ବିଦେଶୀ ସ୍ୱର୍ଣ୍ଣକାର ଓ ଅନ୍ୟାନ୍ୟ କାରୁଶିଳ୍ପୀ ଥିଲେ ବୋଲି ମନେ ହୁଏ । କାରଣ, ଏହି ଅଞ୍ଚଳରେ ଆବିଷ୍କୃତ ବହୁ ରତ୍ନାଳଙ୍କାରର ସାଦୃଶ୍ୟ ଦେଖାଯାଏ ତତ୍କାଳୀନ ମିଶର ଓ ସିରିଆରେ ନିର୍ମିତ ରତ୍ନାଳଙ୍କାର ସହିତ । ତେବେ ପୂର୍ବ ଭାରତରେ ଏହି ଧରଣର ବିଦେଶୀ ପ୍ରଭାବ ଅତ୍ୟନ୍ତ ସାମାନ୍ୟ ଥିଲା ।

ଭାରତୀୟ ଚତଶିଳ୍ପର ମଧ୍ୟ ଏହି ସମୟରେ ଦ୍ରୁତ ଅଗ୍ରଗତି ଘଟିଥିଲା, ବିଶେଷ କରି କାର୍ପାସବସ୍ତ୍ର ଉତ୍ପାଦନ କ୍ଷେତ୍ରରେ । କାର୍ପାସ ଏବଂ ରେଶମ ବସ୍ତ୍ର ସେତେବେଳେ ପାଶ୍ଚାତ୍ୟକୁ ରପ୍ତାନି ହେଉଥିଲା, ସେସବୁ ଦେଶରେ ତା'ର ଆଦର ମଧ୍ୟ ଯଥେଷ୍ଟ ଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ଭାରତୀୟ ଗ୍ରନ୍ଥମାନଙ୍କରେ ବିଭିନ୍ନ ରଙ୍ଗ ଦିଆ କାର୍ପାସବସ୍ତ୍ର ଓ ପୋଷାକର ବହୁ ଉଲ୍ଲେଖ ଅଛି । ୟୁରୋପୀୟ ପ୍ରାଚୀନ ଲେଖକମାନେ ଜାଣନ୍ତି ଯେ, ଭାରତୀୟ କାର୍ପାସବସ୍ତ୍ର ଖୁବ୍ ହାଲୁକା ରଙ୍ଗର ଥିଲା ଓ ସେସବୁର ବୟନ ଶୈଳୀ ମଧ୍ୟ ଥିଲା ଅନ୍ୟ ଦେଶର ବସ୍ତ୍ରଠାରୁ ଅନେକ ବିଶୁଦ୍ଧ । ବାରାଣସୀରେ ବୁଣା ରେଶମ ବସ୍ତ୍ରର ଖୁବ୍ ଆଦର ଥିଲା ବିଦେଶରେ । "ପେରିପ୍ଲସ୍ ମାରିସ୍ ଏରିଥ୍ରିଇରେ" ଉଲ୍ଲେଖ ଅଛି ଯେ, ବଙ୍ଗ ଦେଶରେ ପ୍ରସ୍ତୁତ ସୂକ୍ଷ୍ମ କାର୍ପାସବସ୍ତ୍ର ଏହିଭଳି ଆଦରଣୀୟ ଥିଲା । ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳରେ ପଶମ ବସ୍ତ୍ର ମଧ୍ୟ ପ୍ରସ୍ତୁତ ହେଉଥିଲା । ହେଲେନୀୟ ଦେଶମାନଙ୍କରେ ଏବଂ ରୋମ୍‌ରେ ଭାରତୀୟ ମସଲା, ସୁଗନ୍ଧୀଦ୍ରବ୍ୟ ଏବଂ ହସ୍ତୀଦନ୍ତ କାରୁକାର୍ଯ୍ୟର ମଧ୍ୟ ପ୍ରଚୁର ଗ୍ରହିଦା ଥିଲା । କାଚର ଉତ୍ପାଦନ ମଧ୍ୟ ଭାରତରେ ସେତେବେଳେ ଦ୍ରୁତ ବଢ଼ି ଚାଲିଥିଲା, କାଚ ବ୍ୟବହୃତ ହେଉଥିଲା ଖାଦ୍ୟପାତ୍ର ଓ ଗୃହସଜ୍ଜାର ଜିନିଷ ପତ୍ର ନିର୍ମାଣରେ ।

କୁଷାଣ ଏବଂ ଗୁପ୍ତ ଯୁଗରେ କାରିଗରମାନଙ୍କର ସମବାୟ ବା "ଶ୍ରେଣୀଗୁଡ଼ିକ" ଆଉରି ବିକଶିତ ହୋଇ ଉଠିଥିଲେ । କାରିଗରମାନଙ୍କର ଏହିସବୁ ସମବାୟ ଭାରତର ଅର୍ଥନୈତିକ ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ସେତେବେଳେ ଅଧିଷ୍ଠିତ ଥିଲେ । ରାଷ୍ଟ୍ର ତରଫରୁ ଚେଷ୍ଟା ହେଉଥିଲା ସେସବୁର କାର୍ଯ୍ୟକର୍ମକୁ ନିୟନ୍ତ୍ରଣ କରିବା ପାଇଁ । ତେବେ ଶ୍ରେଣୀର ନିୟମକାନୁନ୍‌କୁ ମର୍ଯ୍ୟାଦା ଦେବା ପାଇଁ ଓ ତା'ର ସଂପରିଗତ ଅଧିକାରକୁ ରକ୍ଷା କରିବା ପାଇଁ ଶାସ୍ତ୍ରସମୂହ ରାଜା ନିକଟରେ ଦାବୀ ଜଣାଇଥିଲେ । ଶ୍ରେଣୀଗୁଡ଼ିକର ସ୍ୱାଧୀନତା ସେତେବେଳେ ଏତେ ବେଶି ଥିଲା ଯେ, ତତ୍କାଳୀନ ଖୋଦିତ ଲିପିଗୁଡ଼ିକ ଦ୍ୱାରା ବିଗ୍ଭର କରିବାକୁ ଗଲେ, କହିବାକୁ ହେବ ଯେ, ସେମାନେ ବ୍ୟକ୍ତିବିଶେଷଙ୍କ ସହିତ ନେଣଦେଣ ଚୁକ୍ତିରେ ଆବଦ୍ଧ ହେଉଥିଲେ, ଏପରିକି କେନ୍ଦ୍ରୀୟ କର୍ତ୍ତୃପକ୍ଷଙ୍କ ସହିତ ବ୍ୟବସାୟିକ ଚୁକ୍ତି ମଧ୍ୟ କରୁଥିଲେ । ଯେଉଁସବୁ ବ୍ୟକ୍ତି ଶ୍ରେଣୀଗୁଡ଼ିକୁ ସେମାନଙ୍କ କାମର ଫରମାସି ଦେଉଥିଲେ, ସେମାନଙ୍କ ଠାରୁ ଏମାନେ ଟଙ୍କା ଋଣ ନେଇ ପାରୁଥିଲେ । ପରେ ସେ ଟଙ୍କା ସୁଧ ସମେତ ପରିଶୋଧ କରିବାକୁ ପଡୁଥିଲା । କେତେକ ଶ୍ରେଣୀ ମଧ୍ୟ ଧନୀ ଥିଲେ, ଏମାନେ ବୌଦ୍ଧ ଭିକ୍ଷୁମାନଙ୍କୁ ମୂଲ୍ୟବାନ ଉପହାରସବୁ ଦେଉଥିଲେ, ଏପରିକି ଗୋଟାଏ ଗୋଟାଏ ଘର ଦାନ କରି ଦେଉଥିଲେ । ଶ୍ରେଣୀଗୁଡ଼ିକର ଥିଲା ନିଜସ୍ୱ ମୋହର ଓ ପ୍ରତୀକ ଚିହ୍ନ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ବସତିଗୁଡ଼ିକରେ ଖନନ କାର୍ଯ୍ୟ ଚଳାଇବା ବେଳେ ଖୋଦିତ ଲିପିଯୁକ୍ତ ଏହିଭଳି କେତେକ ମୋହର ପ୍ରତ୍ନତତ୍ତ୍ୱବିଦ୍‌ମାନେ ପାଇଛନ୍ତି ।

## ବ୍ୟବସାୟ ବାଣିଜ୍ୟ

ଆଲୋଚ୍ୟ ଯୁଗରେ ଭାରତର ଆଭ୍ୟନ୍ତରୀଣ ଓ ବହିର୍ବାଣିଜ୍ୟ ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଥିଲା । ପ୍ରାକ୍ତନ ଜନବସତିହୀନ ଅଞ୍ଚଳଗୁଡ଼ିକରେ ଇତିମଧ୍ୟରେ ବସତିସବୁ ଗଢ଼ି ଉଠିଥିଲା । ଯାନବାହନ ଏବଂ ଯୋଗାଯୋଗ ବ୍ୟବସ୍ଥା ତଥା ବାଣିଜ୍ୟ ପଥଗୁଡ଼ିକ ଅପେକ୍ଷାକୃତ ଉନ୍ନତ ହୋଇ

ଉଠିଥିଲା । ଦେଶର ବିଭିନ୍ନ ଅଞ୍ଚଳ ଏହି ସମୟରେ ଅପେକ୍ଷାକୃତ ଦୃଢ଼ ଭାବେ ପରସ୍ପର ସହିତ ଯୁକ୍ତ ହୋଇଥିଲେ । ବିଭିନ୍ନ ଅଞ୍ଚଳ ଏବଂ ଅଂଶଗୁଡ଼ିକରେ ଅର୍ଥନୈତିକ ବିଶେଷୀକରଣର ବିଷୟଟି ପୋଖତ ହୋଇ ଉଠିବାରୁ ସେସବୁ ମଧ୍ୟରେ ପଣ୍ୟ ବିନିମୟକୁ ସ୍ଥାୟୀ କରିବା ଅପରିହାର୍ଯ୍ୟ ହୋଇ ଉଠିଥିଲା । ମୁଦ୍ରାର ପ୍ରଚଳନ ମଧ୍ୟ ଏହି ସମୟରେ ବ୍ୟାପକ ଭାବେ ଦେଖା ଦେଇଥିଲା । ଗୁପ୍ତ ରାଜାମାନଙ୍କ ଅମଳରେ ରାସ୍ତାଘାଟ ଓ ଯୋଗାଯୋଗ ବ୍ୟବସ୍ଥା ଗଢ଼ି ତୋଳିବା ଦିଗରେ ରାଷ୍ଟ୍ର ବିଶେଷ ନଜର ଦେଇଥିଲା । କିନ୍ତୁ ସେସବୁ ପ୍ରୟାସ ସତ୍ତ୍ୱେ ଦେଶର ବିଭିନ୍ନ ଅଂଶ ମଧ୍ୟରେ ଯୋଗାଯୋଗ ଓ ବିନିମୟ ବ୍ୟବସ୍ଥା ସେ ପର୍ଯ୍ୟନ୍ତ ଅତ୍ୟନ୍ତ ସୀମାବଦ୍ଧ ଥିଲା । ଦୀର୍ଘ ଭ୍ରମଣ ପକ୍ଷରେ ରାସ୍ତାଘାଟ ସର୍ବଦା ଓ ସର୍ବତ୍ର ସେପରି ଅନୁକୂଳ ନଥିଲା ଏବଂ ବଣିକମାନଙ୍କୁ ବହୁବିଧ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ୁଥିଲା ।

ସ୍ଥଳପଥ ଛଡ଼ା ନଦୀପଥ ମଧ୍ୟ ଏହି ସମୟରେ ବ୍ୟବସାୟ ବାଣିଜ୍ୟ ପାଇଁ ଆଗ ଅପେକ୍ଷା ଅଧିକ ପରିମାଣରେ ବ୍ୟବହୃତ ହେଉଥିଲା । ବିଶେଷ କରି ଏହି ବ୍ୟବସାୟ ବାଣିଜ୍ୟ ଚାଲିଥିଲା ଗଙ୍ଗା ଏବଂ ସିନ୍ଧୁ ନଦ ଦେଇ ।

ପଣ୍ୟଦ୍ରବ୍ୟର ଏହି ଚଳାଚଳ ଏବଂ ବିକ୍ରୟ ବିଷୟଟିକୁ ରାଷ୍ଟ୍ର ତଦାରଖ କରୁଥିଲା । କେତେକ ପଣ୍ୟଦ୍ରବ୍ୟର କ୍ରୟ ବିକ୍ରୟ ଥିଲା ରାଷ୍ଟ୍ରର କଡ଼ା ନିୟନ୍ତ୍ରଣ ଅଧୀନରେ ଏବଂ କେତେକ ପଣ୍ୟର ବାଣିଜ୍ୟ ମଧ୍ୟ ରାଜାଙ୍କ ଏକଚାଟିଆ ଅଧିକାର ଭୁକ୍ତ ଥିଲା । "ମନୁସଂହିତାରେ" ଲେଖା ଅଛି ଯେ, କୌଣସି ବଣିକକୁ ରାଜକୀୟ ଏକଚାଟିଆ ଅଧିକାରଭୁକ୍ତ ପଣ୍ୟଦ୍ରବ୍ୟ ନେଇ ବାଣିଜ୍ୟ କରିବାକୁ କିମ୍ବା ଏହି ପଣ୍ୟ ଅନ୍ୟତ୍ର ରପ୍ତାନି କରୁଥିବାର ଦେଖିଲେ, ରାଜା ସେ ବଣିକର ସମସ୍ତ ସଂପତ୍ତିକୁ ବାଜ୍ୟାପ୍ତ କରି ଦେଇ ପାରୁଥିଲେ । ବ୍ୟବସାୟ ବାଣିଜ୍ୟ ବିଷୟରେ ବ୍ୟକ୍ତିଗତ ଭାବେ ବଣିକମାନଙ୍କ ମଧ୍ୟରେ ଏବଂ ବଣିକ ସଂଘଗୁଡ଼ିକ ମଧ୍ୟରେ ପ୍ରତିଯୋଗିତା ଚାଲିଥିଲା ।

ସହରଗୁଡ଼ିକରେ ବିଶେଷ ବିଶେଷ ବ୍ୟବସାୟୀ ପଡ଼ାସବୁ ଥିଲା, ଏହିସବୁ ପଡ଼ାରେ ଦୋକାନସବୁ ରହିଥିଲା । "ମିଲିନ୍ଦ-ପହ୍ନରେ" ରାଜା ମେନାଣ୍ଡାରଙ୍କ ରାଜଧାନୀ ଓ ସମୃଦ୍ଧ ସହର ସାଗଲର (ଶାକଲ) ବର୍ଣ୍ଣନା ରହିଛି । ସେଥିରେ କୁହାଯାଇଛି ଯେ, ସହରରେ ବାରାଣସୀର ରେଶମ ବସ୍ତ୍ର, ରତ୍ନାଳଙ୍କାର, ସୁଗନ୍ଧୀଦ୍ରବ୍ୟ ବିକ୍ରୟ ପାଇଁ ବିଶେଷ ବିଶେଷ ଦୋକାନ ଥିଲା ।

ବ୍ୟବସାୟ ବାଣିଜ୍ୟର ପ୍ରଧାନ ଅଞ୍ଚଳ ଥିଲା ଗାଙ୍ଗେୟ ଉପତ୍ୟକା । ସେଠାରୁ ଦେଶର ବିଭିନ୍ନ ଅଞ୍ଚଳକୁ ବାଣିଜ୍ୟ ରାସ୍ତାସବୁ ଯାଇଥିଲା । ଏହି ଅଞ୍ଚଳର ବାଣିଜ୍ୟ କେନ୍ଦ୍ରଗୁଡ଼ିକ ଅବସ୍ଥିତ ଥିଲା ପଶ୍ଚିମର ଭାରୁକଚ୍ଛରେ (ଗ୍ରୀକ୍‌ମାନଙ୍କ ନିକଟରେ ବାରିଗଜା ନାମରେ ପରିଚିତ), ସିନ୍ଧୁ ନଦର ତ୍ରିକୋଣଭୂମି ପାତଲ (ଗ୍ରୀକ୍ ରଚନାରେ ପାତଲେନେ ବୋଲି ବର୍ଣ୍ଣିତ), ଉତ୍ତର-ପଶ୍ଚିମରେ ପୁଷ୍କଳାବତୀ ଏବଂ ପୂର୍ବରେ ତାମ୍ରଲିପ୍ତିରେ (ବର୍ତ୍ତମାନ ତମ୍‌ଲୁକ) । "ପେରିପ୍ଲୁସ୍ ମାରିସ୍ ଏରିଥ୍ରିଇ" ଗ୍ରନ୍ଥରେ ପଷ୍କଳାବତୀରୁ ଦକ୍ଷିଣାଭିମୁଖୀ ବାଣିଜ୍ୟ ପଥଗୁଡ଼ିକର ଉଲ୍ଲେଖ ଦେଖିବାକୁ ମିଳିଥାଏ । ପୂର୍ବ ଭାରତରେ ଉଚ୍ଚ ମାନର ବିଭିନ୍ନ ପଣ୍ୟଦ୍ରବ୍ୟ ପାଇଁ ବାରାଣସୀ, କୌଶାମ୍ବୀ, ପାଟଳୀପୁତ୍ର ଏବଂ ପଶ୍ଚିମ ଭାରତରେ ଉଜ୍ଜୟିନୀ ବିଖ୍ୟାତ ଥିଲା ।

"ପେରିପ୍ଲୁସ୍ ମାରିସ୍ ଏରିଥ୍ରିଇରେ" ଉଲ୍ଲେଖ ଅଛି ଯେ, ବଙ୍ଗୋପସାଗର ଉପକୂଳ ଦେଇ ବୋଇତସବୁ ଯିବା ଆସିବା କରୁଥିଲା ଦକ୍ଷିଣ ଦିଗକୁ ଏବଂ "ମିଲିନ୍ଦ-ପହ୍ନରେ" କୁହାଯାଇଛି ଯେ,

ବୋଇତର ମାଲିକମାନେ ସିନ୍ଧୁ ଦେଶ, ବଙ୍ଗ ଦେଶ ଓ କରମଣ୍ଡଳ ଉପକୂଳକୁ ଯାତାୟତ କରୁଥିଲେ । ଏହିସବୁ ବାଣିଜ୍ୟ ପଥରେ ପଶମ ବସ୍ତ୍ର ଉତ୍ତର ଅଞ୍ଚଳରୁ ଅଣାଯାଉଥିଲା, ଦକ୍ଷିଣରୁ ମୂଲ୍ୟବାନ ରତ୍ନ ଓ ମସଲା ଆସୁଥିଲା, ଧାତୁ ନିର୍ମିତ ଦ୍ରବ୍ୟ ଏବଂ ରେଶମ ଅଣାଯାଉଥିଲା ପୂର୍ବାଞ୍ଚଳରୁ ଏବଂ ବସ୍ତ୍ର ଏବଂ ଘୋଡ଼ା ପଶ୍ଚିମରୁ । ସିନ୍ଧୁ ଦେଶ ଏବଂ ଆରାକୋସିୟା ସେତେବେଳେ ଘୋଡ଼ା ପାଇଁ ପ୍ରସିଦ୍ଧ ଥିଲା ।

କୁଶାଣ ଏବଂ ଗୁପ୍ତ ରାଜାମାନଙ୍କ ରାଜତ୍ୱକାଳରେ ବହିର୍ବାଣିଜ୍ୟର ଦ୍ରୁତ ବିକାଶ ଘଟିଥିଲା । ପ୍ରଥମେ କୁଶାଣ ରାଜାମାନେ ଏବଂ ପରେ ଗୁପ୍ତ ରାଜାମାନେ ବିଦେଶର ବହୁ ରାଜ୍ୟ ସହିତ ଘନିଷ୍ଠ ସଂପର୍କ ରଖିଥିବାରୁ ଏହା ସମ୍ଭବ ହୋଇଥିଲା । ସମୁଦ୍ର ପଥରେ ମଧ୍ୟ ଏହି ସମୟରେ ବାଣିଜ୍ୟ ପ୍ରସାରିତ ହୋଇଥିଲା । ପ୍ରାଚୀନ କାଳର ଭାରତୀୟମାନେ ଦକ୍ଷ ନାବିକ ଥିଲେ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ମଝାମଝିରେ ଗ୍ରୀକ୍ ନାବିକ କାପ୍ତେନ ହିପ୍‌ପଲସ୍ ସମୁଦ୍ରରେ ମୌସୁମୀବାୟୁକୁ କାମରେ ଲଗାଇବା ବିଷୟଟି ଆବିଷ୍କାର କରିବାର ବହୁପୂର୍ବରୁ ସେମାନେ, ସମ୍ଭବତଃ, ଏହାକୁ ଆୟତ୍ତ କରି ସାରିଥିଲେ (କେତେକ ପ୍ରାଚୀନ ଲିଖିତ ସୂତ୍ରରୁ ଅବଶ୍ୟ ଇଙ୍ଗିତ ମିଳେ ଯେ, ଗ୍ରୀକ୍‌ମାନେ ଆଉରି ପୂର୍ବରୁ ମୌସୁମୀବାୟୁର ଚଳାଚଳ ସଂପର୍କରେ ଜାଣିଥିଲେ) । ଭାରତୀୟମାନେ ସେତେବେଳେ ଆରବ ଦେଶ ଓ ଭୂମଧ୍ୟ ସାଗର ଅଞ୍ଚଳୀୟ ଦେଶଗୁଡ଼ିକ ସହିତ ବାଣିଜ୍ୟ କରୁଥିଲେ ଏବଂ ସେମାନଙ୍କ ବୋଇତ ସୁଦୂର ଆଫ୍ରିକା ପର୍ଯ୍ୟନ୍ତ ଯାତାୟତ କରୁଥିଲା । ଏହାର ବହୁ ପୂର୍ବରୁ ଭାରତ ଓ ମିଶର ସମେତ ଭୂମଧ୍ୟ ସାଗର ଅଞ୍ଚଳୀୟ ଦେଶସମୂହ ମଧ୍ୟରେ ଯେ ଯୋଗସୂତ୍ର ଥିଲା, କୁଶାଣ ଓ ଗୁପ୍ତ ଯୁଗର ଏହିସବୁ ସମୁଦ୍ର ଯାତ୍ରା ଥିଲା ତା'ର ଅବିଚ୍ଛିନ୍ନ ସ୍ଥାୟିତ୍ୱ ଓ ସଂପ୍ରସାରଣର ପ୍ରମାଣ । ଏହା ଛଡ଼ା ଦକ୍ଷିଣ-ପୂର୍ବ ଏସିଆର ଦେଶଗୁଡ଼ିକ ଓ ଶ୍ରୀଲଙ୍କା ସହିତ ମଧ୍ୟ ବ୍ୟବସାୟ ବାଣିଜ୍ୟ ଚାଲୁଥିଲା । ସାତବାହନ ରାଜତ୍ୱର ଅନେକଗୁଡ଼ିଏ ମୁଦ୍ରାରେ ବୋଇତର ଚିତ୍ର ଖୋଦାଇ ହୋଇଥିବାର ଦେଖାଯାଏ । ଏଥିରୁ ବୁଝାଯାଏ ଯେ, ସମୁଦ୍ର ପଥରେ ବାଣିଜ୍ୟ କ୍ରମଶଃ ଅଧିକ ଗୁରୁତ୍ୱ ଅର୍ଜନ କରିଥିଲା ।

"ପେରିପ୍ଲସ୍ ମାରିସ୍ ଏରିଥ୍ରିଇରର" ଲେଖକ ମାଲାବାର ସମୁଦ୍ର ତୀର ଦେଇ ଭାରତୀୟ ବୋଇତ ଯାତାୟତ କରୁଥିବାର ଲକ୍ଷ୍ୟ କରିଥିଲେ । ସେ କହିଛନ୍ତି, ଏହି ବୋଇତ ସବୁ ପରିଚିତ ଥିଲା "ସାଙ୍ଗାରା" ନାମରେ । ପ୍ରାଚୀନତମ ପୋଥିଗୁଡ଼ିକ ମଧ୍ୟରୁ ଗୋଟିକରେ ଏହିସବୁ ବୋଇତକୁ ମଧ୍ୟ "ସାଙ୍ଗଦ" ନାମରେ ଅଭିହିତ କରାଯାଇଛି । ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ମିଶରୀୟ ବଣିକମାନେ ସେମାନଙ୍କ ବୋଇତଗୁଡ଼ିକୁ ଭାରତକୁ ପଠାଉଥିଲେ ଏବଂ "ପେରିପ୍ଲସ୍ ମାରିସ୍ ଏରିଥ୍ରିଇଙ୍କ" ବୟାନ ଅନୁଯାୟୀ ଭାରତୀୟ ବଣିକମାନେ ଡାଇଓସାରାଇଡିସ୍ ଦ୍ୱୀପରେ (ସୋକୋଟ୍ରା ଦ୍ୱୀପରେ) ସ୍ଥାୟୀ ବାସସ୍ଥାନ ଗଢ଼ି ତୋଳିଥିଲେ ।

ପ୍ରାଚୀନ ଜଗତର ସମୁଦ୍ର ଯାତ୍ରାର ଇତିହାସରେ ଏକ ଆଗ୍ରହୋଦ୍ଦୀପକ କାହାଣୀ ହେଲା ଚୀନ୍ ପରିବ୍ରାଜକ ଫା-ହ୍ୟାନ୍‌ଙ୍କ ଭାରତରୁ ଚୀନ୍‌କୁ ସମୁଦ୍ରଯାତ୍ରା । ତାମ୍ରଲିପ୍ତି ବନ୍ଦରରୁ ଜାହାଜରେ ବସି ସେ ଶ୍ରୀଲଙ୍କାକୁ ଯାଇଥିଲେ । ପରେ ଭାରତ ମହାସାଗର ପାରି ହୋଇ ଜାଭା ଦ୍ୱୀପ ଦେଇ ଚୀନ୍‌କୁ ସେ ଯାତ୍ରା କରିଥିଲେ ।

ଏହି ଯୁଗରେ ଏହି ପ୍ରାଚ୍ୟ ଦେଶୀୟ ବାଣିଜ୍ୟରେ ରୋମ୍‌ର ଗୁରୁତ୍ୱପୂର୍ଣ୍ଣ ଏକ ଭୂମିକା ଥିଲା । ରୋମାନ୍‌ମାନେ ଭାରତରୁ ବହୁ ପଣ୍ୟଦ୍ରବ୍ୟ ଆମଦାନୀ କରୁଥିଲେ ଏବଂ ତତ୍ ସଙ୍ଗେ ସଙ୍ଗେ

ଭାରତରେ ସେମାନଙ୍କର କେତେକ ନିଜସ୍ୱ ବାଣିଜ୍ୟ କେନ୍ଦ୍ର ମଧ୍ୟ ସ୍ଥାପନ କରିଥିଲେ । ଏହିସବୁ କେନ୍ଦ୍ର ମଧ୍ୟରେ ବିଶେଷ କରି ପ୍ରସିଦ୍ଧ ଥିଲା ଆରିକାମେଡୁ କେନ୍ଦ୍ରଟି (ଆଧୁନିକ ପଣ୍ଡିଚେରି ନିକଟରେ)। ଏଠାରେ ରୋମାନ୍ ମୁଦ୍ରା, ଆମ୍ଫୋରା ବା ଦୁଇ ହ୍ୟାଣ୍ଡଲବାଲା ଭୃଙ୍ଗାର ଏବଂ ରୋମାନ୍ ପାନପାତ୍ର ଆବିଷ୍କୃତ ହୋଇଛି । ଦକ୍ଷିଣ ଭାରତରୁ ନାନା ପଣ୍ୟଦ୍ରବ୍ୟ ନେଇ ବାଣିଜ୍ୟ କରିବା ସେତେବେଳେ ରୋମ୍ ପକ୍ଷରେ ଖୁବ୍ ଲାଭଜନକ ଥିଲା । ତେଣୁ ଭାରତର ଠିକ୍ ସେଇ ଅଂଶରେ ପ୍ରଚୁର ପରିମାଣରେ ରୋମାନ୍ ମୁଦ୍ରା ମିଳିବାଟା ଆକସ୍ମିକ ଘଟଣା ନୁହେଁ । ରୋମ୍‌ର ସମ୍ରାଟ ଅଗଷ୍ଟସ୍ ଓ ସମ୍ରାଟ ଟ୍ରାଜନ୍‌ଙ୍କ ରାଜ ଦରବାରକୁ ଭାରତରୁ ଯେ ବେଶ୍ କେତେଜଣ ରାଜଦୂତଙ୍କୁ ପଠାଯାଇଥିଲା, ତା'ର ନଥିଭୁକ୍ତ ପ୍ରମାଣ ମିଳିଛି । ଏହା ଛଡ଼ା ସମ୍ରାଟ ଅଗଷ୍ଟସ୍‌ଙ୍କ ନିକଟକୁ ରାଜା ପାଣ୍ଡିୟାନ ଉପହାର ସାମଗ୍ରୀ ପ୍ରେରଣର ତଥ୍ୟ ମଧ୍ୟ ମିଳିଛି । ଆପାତଃ ଦୃଷ୍ଟିରେ ମନେ ହୁଏ, ଶେଷୋକ୍ତ ଏହି ରାଜା ଥିଲେ ଦକ୍ଷିଣ ଭାରତର ପାଣ୍ଡ୍ୟ ରାଜ୍ୟର ଶାସକ ।

ଭାରତୀୟ ମସଲା, ବିଶେଷ କରି ଗୋଲମରିଚ୍ ଏବଂ ଅନ୍ୟାନ୍ୟ ସୁଗନ୍ଧୀ ଦ୍ରବ୍ୟ, ବିରଳ ବିଭିନ୍ନ ଧରଣର କାଠ, ବସ୍ତ୍ର ଓ ନୂଆ ନୂଆ ଧରଣର ପଶୁପକ୍ଷୀ ପାଶ୍ଚାତ୍ୟରେ ଅତି ଜନପ୍ରିୟ ଥିଲା ।

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ପ୍ରାରମ୍ଭରେ ଓ୍ୱେଷ୍ଟଗଥମାନଙ୍କ ରାଜା ଅଲାରିକ୍ ରୋମ୍ ଅବରୋଧ କରିଥିଲେ । ସେ ସେତେବେଳେ ଦାବୀ କରିଥିଲେ ପ୍ରଚୁର ପରିମାଣର ଗୋଲମରିଚ୍ ଏବଂ ତାହା ସେ ପାଇଥିଲେ । ପ୍ରାଚୀନ ୟୁରୋପୀୟ ଲେଖକମାନେ ରୋମ୍‌ରେ ପ୍ରଦର୍ଶନୀ ପାଇଁ ପ୍ରେରିତ ଭାରତୀୟ ସିଂହ କଥା ଉଲ୍ଲେଖ କରିଛନ୍ତି । ସମ୍ରାଟ କ୍ଲାଡିୟସ୍‌ଙ୍କ ନିକଟକୁ କେତୋଟି ଭାରତୀୟ ବାଘ ପଠାଯାଇଥିଲା ଓ ସେସବୁକୁ ପ୍ରଦର୍ଶନ କରାଯାଇଥିଲା । ଭାରତୀୟ ଶୁଆମାନେ ରୋମ୍‌ରେ ବିଶେଷ ଜନପ୍ରିୟତା ଲାଭ କରିଥିଲେ ବୋଲି କୁହାଯାଇଛି ।

ଏହା ଛଡ଼ା ଭାରତ ବିଦେଶକୁ ହାତୀଦାନ୍ତର କାରୁକାର୍ଯ୍ୟ, ରେଶମ ବସ୍ତ୍ର, ମୂଲ୍ୟବାନ ବିଭିନ୍ନ ରତ୍ନ ଓ ପଥର, ଶଙ୍ଖ ଏବଂ ଶଙ୍ଖତିଆରି ଜିନିଷ, କସ୍ତୁରୀ, ଲୁହା ଏବଂ ଇସ୍ପାତ ରପ୍ତାନି କରୁଥିଲା । ନୃତ୍ୟଗୀତରେ ପାରଦର୍ଶିନୀ ଭାରତୀୟ କ୍ରୀତଦାସୀମାନଙ୍କୁ ବିଦେଶକୁ ରପ୍ତାନି କରାଯାଉଥିଲା ବୋଲି "ପେରିପ୍ଲୁସ୍ ମାରିସ୍ ଏରିଥ୍ରିଇରେ" ଏକାଧିକ ଉଲ୍ଲେଖ ଅଛି । ଇଟାଲିର ପମ୍ପେ ସହରରେ ଭାରତୀୟ ଦେବୀ ଲକ୍ଷ୍ମୀଙ୍କର ଏକ ହାତୀଦାନ୍ତର ପ୍ରତିମୂର୍ତ୍ତି ମିଳିଛି । ଏହା ଛଡ଼ା କୁଷାଣ ଅମଳରେ ନିର୍ମିତ ହାତୀଦାନ୍ତର ବହୁ ଜିନିଷ ଆଫ୍‌ଗାନିସ୍ତାନର ବେଗ୍ରମରେ ମିଳିଛି ।

ଭାରତ ମଧ୍ୟ କେତେକ ପଣ୍ୟଦ୍ରବ୍ୟ ଆମଦାନୀ କରୁଥିଲା । ଏହାର ଉଲ୍ଲେଖ ଦେଖିବାକୁ ମିଳେ ପ୍ରାଚୀନ ୟୁରୋପୀୟ ଲେଖକମାନଙ୍କ ରଚନାରେ, ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଫଳରେ ମିଳିଥିବା ନିଦର୍ଶନଗୁଡ଼ିକରୁ ଏବଂ ବିଶେଷ କରି "ପେରିପ୍ଲୁସ୍ ମାରିସ୍ ଏରିଥ୍ରିଇ" ଗ୍ରନ୍ଥରେ । ପାଶ୍ଚାତ୍ୟ ଦେଶଗୁଡ଼ିକରୁ ଏହିସବୁ ପଣ୍ୟ ଆମଦାନୀ କରାଯାଉଥିଲା ବାରିଗାଜା ବନ୍ଦର ଦେଇ । ଭାରତ ଆମଦାନୀ କରୁଥିଲା ମଦ୍ୟ, ପ୍ୟାପିରସ୍, ଧୂପ, କେତେକ ଧାତୁ, ଦାନାଶସ୍ୟ (ଯଥା, ଡିଲ), ନାନା ରକମର ତେଲ ଏବଂ ମଧୁ । ଏହି ବିଶେଷ କାଳ ପର୍ଯ୍ୟାୟରେ ସୁବିଖ୍ୟାତ ରେଶମ ପରିବହନ ପଥ ପଣ୍ୟ ସରବରାହର ଗୁରୁତ୍ୱପୂର୍ଣ୍ଣ ପଥରେ ପରିଣତ ହୋଇଥିଲା । ଏହି ପଥଟି ଦୂର ପ୍ରାଚ୍ୟକୁ ପାଶ୍ଚାତ୍ୟ ସହିତ ଯୁକ୍ତ କରିଥିଲା ଏବଂ ଏହା ଭାରତ ଉପର ଦେଇଯାଇଥିଲା ।

ଭାରତୀୟ କାରିଗରମାନଙ୍କ ଭଳି ଭାରତୀୟ ବଣିକମାନଙ୍କର ସେତେବେଳେ ସଂଘ ଥିଲା ଏବଂ ସେସବୁକୁ ମଧ୍ୟ ଶ୍ରେଣୀ କୁହାଯାଉଥିଲା ।

## ପ୍ରାରମ୍ଭିକ ଖ୍ରୀଷ୍ଟୀୟ ଶତାବ୍ଦୀଗୁଡ଼ିକରେ ବର୍ଣ୍ଣ ଓ ଜାତି

ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ସାମାଜିକ ବଂଶାନୁଯାୟୀ ସ୍ତରବିନ୍ୟାସର ବ୍ୟବସ୍ଥାରେ ପୂର୍ବବର୍ତ୍ତୀ ଯୁଗରେ ଆରମ୍ଭ ହୋଇଥିବା ପରିବର୍ତ୍ତନର ପ୍ରକ୍ରିୟାଗୁଡ଼ିକ ଅବ୍ୟାହତ ରହିଥିଲା । ଅର୍ଥାତ୍, ସମାଜରେ ମଣିଷର ଯଥାର୍ଥ ଅବସ୍ଥାନ, ତା'ର ସଂପତ୍ତିଭିତ୍ତିକ ପଦମର୍ଯ୍ୟାଦା କ୍ରମଶଃ ପ୍ରବଳ ହୋଇ ଉଠିଥିଲା । ତତ୍ ସଙ୍ଗେ ସଙ୍ଗେ ତା'ର ବଂଶ ମର୍ଯ୍ୟାଦାର ନିଷ୍ପତ୍ତିମୂଳକ ତାତ୍ପର୍ଯ୍ୟ ଆଉ ଆଗ ଭଳି ରହି ନଥିଲା । ବୌଦ୍ଧ ଏବଂ ଜୈନ ଧର୍ମ ସମାଜରେ କ୍ରମଶଃ ପ୍ରାଧାନ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ଧର୍ମୀୟ ପୂଜାନୁଷ୍ଠାନ ଆଦିର ଏକମାତ୍ର ବା ପ୍ରଧାନ ଅନୁଷ୍ଠାତା ରୂପେ ବ୍ରାହ୍ମଣମାନଙ୍କର ଭୂମିକାର ଗୁରୁତ୍ୱ କମି ଆସୁଥିଲା ।

ଫଳରେ ବହୁ ବ୍ରାହ୍ମଣ ପରିବାର ଦରିଦ୍ର ହୋଇ ପଡ଼ିଥିଲେ ଏବଂ ସର୍ବଶେଷ ବ୍ରାହ୍ମଣମାନେ ବାଧ୍ୟ ହୋଇ ବ୍ରାହ୍ମଣେତର ପେଶା ଗ୍ରହଣ କରୁଥିଲେ । ମତାଦର୍ଶ ଏବଂ ତତ୍ତ୍ୱାଲୋଚନା କ୍ଷେତ୍ରରେ ବ୍ରାହ୍ମଣମାନଙ୍କର ଭୂମିକାର ଗୁରୁତ୍ୱ ସେତେବେଳେ ହ୍ରାସ ପାଉଥିଲା । ପରବର୍ତ୍ତୀ କାଳରେ, ଅବଶ୍ୟ, ହିନ୍ଦୁ ଧର୍ମର ନୂଆ କରି ପୁନରଭ୍ୟୁଦୟ ଘଟିବା ଫଳରେ ବ୍ରାହ୍ମଣମାନଙ୍କର ପ୍ରଭାବ ପୁଣି ବୃଦ୍ଧି ପାଇଥିଲା । ଏହା ଛଡ଼ା ଅନ୍ୟାନ୍ୟ କ୍ଷେତ୍ରରେ ଏଭଳି କେତେକ ଘଟଣା ଘଟୁଥିଲା, ଯା ଫଳରେ କ୍ଷତ୍ରିୟ ବର୍ଣ୍ଣର ଲୋକେ ମଧ୍ୟ କ୍ଷୁଣ୍ଣ ହେଉଥିଲେ । ପ୍ରଜାତନ୍ତ୍ରଗୁଡ଼ିକରେ ଯେଉଁଠି କ୍ଷତ୍ରିୟମାନେ ପ୍ରଧାନ ସ୍ଥାନର ଅଧିକାରୀ ଥିଲେ, ସେମାନଙ୍କ ପ୍ରଭାବ ମଧ୍ୟ କମି ଆସୁଥିଲା । ସେନାବାହିନୀରେ ଇଚ୍ଛା ମୁତାବକ ଭଡ଼ାଟିଆ ସୈନ୍ୟ ନିୟୋଗ ଦ୍ୱାରା ଯୋଦ୍ଧା କ୍ଷତ୍ରିୟମାନଙ୍କର ପଦମର୍ଯ୍ୟାଦା, ସ୍ୱଭାବତଃ, କ୍ଷୁଣ୍ଣ ହେଉଥିଲା । ଫଳରେ ବ୍ରାହ୍ମଣ ପରିବାରଗୁଡ଼ିକ ଭଳି କ୍ଷତ୍ରିୟ ପରିବାରଗୁଡ଼ିକ ମଧ୍ୟ କ୍ରମାଗତ ଦରିଦ୍ର ହୋଇ ପଡ଼ୁଥିଲେ । ଅନ୍ୟ ଦିଗରେ, ଅନ୍ୟାନ୍ୟ ବର୍ଣ୍ଣର ଲୋକେ କ୍ରମଶଃ ଅଧିକରୁ ଅଧିକ ରାଜ ଶାସନ ସଂକ୍ରାନ୍ତ ପଦରେ ନିଯୁକ୍ତ ହୋଇ ଚାଲିଥିଲେ, ଯାହା ଇତିପୂର୍ବରୁ ଅଚିନ୍ତନୀୟ ବୋଲି ମନେ ହେଉଥିଲା ।

ଭାରତ ଭ୍ରମଣରେ ଆସିଥିବା ଚୀନ୍ ପରିବ୍ରାଜକ ୟୁଏନ୍ ଚାଙ୍ଗ୍ ଏ ସଂପର୍କରେ ଏକ କୌତୂହଳୋଦ୍ଦୀପକ ଘଟଣାର ବର୍ଣ୍ଣନା ଲିପିବଦ୍ଧ କରି ଯାଇଛନ୍ତି । ସେ କହିଛନ୍ତି, ଭାରତରେ ସେ ଅବସ୍ଥାନ କଲା ବେଳେ ସମଗ୍ର ଭାରତରେ ବିଭିନ୍ନ ବର୍ଣ୍ଣର ରାଜବଂଶର ସଂଖ୍ୟା ଥିଲା ନିମ୍ନ ମୁତାବକ : ପାଞ୍ଚଟି କ୍ଷତ୍ରିୟ ରାଜବଂଶ, ଚାରୋଟି ବ୍ରାହ୍ମଣ ରାଜବଂଶ, ଦୁଇଟି ବୈଶ୍ୟ ଏବଂ ଦୁଇଟି ଶୁଦ୍ର ରାଜବଂଶ ।

ବୈଶ୍ୟ ବର୍ଣ୍ଣ ମଧ୍ୟରେ ବିଭଙ୍ଗନ ଇତିପୂର୍ବରୁ ଆରମ୍ଭ ହୋଇ ଯାଇଥିଲା । ଗୁପ୍ତ ରାଜାମାନଙ୍କ ଅମଳରେ ସେଇ ଭାଙ୍ଗିବା ଆଉରି ଦ୍ରୁତତର ହୋଇ ଉଠିଲା । ଏହି ସମୟରେ ଦରିଦ୍ର ବୈଶ୍ୟ ଓ ଶୁଦ୍ରମାନଙ୍କ ମଧ୍ୟରେ ପାର୍ଥକ୍ୟ ଥିଲା ଯତ୍ସାମାନ୍ୟ । ବରଂ, କୃଷିର ଦ୍ରୁତ ଅଗ୍ରଗତି ଓ କାରିଗରିର ଉନ୍ନତି ଫଳରେ ସ୍ପଷ୍ଟତଃ ଶୁଦ୍ରମାନଙ୍କ ଅବସ୍ଥାରେ କିଛି ଉନ୍ନତି ଘଟିଥିଲା । ଏହି ଯୁଗର ଲିଖିତ ଉପାଦାନଗୁଡ଼ିକରେ କୃଷିକାର୍ଯ୍ୟରେ ଶୁଦ୍ର ଶ୍ରମିକ ନିୟୋଗର କଥା କ୍ରମଶଃ ବେଶି ବେଶି ଉଲ୍ଲେଖ ଦେଖିବାକୁ ମିଳିଥାଏ । ତାଙ୍କ "ବିବରଣୀ" ଗ୍ରନ୍ଥରେ ୟୁଏନ୍ ଚାଙ୍ଗ୍ ଶୁଦ୍ରମାନଙ୍କୁ ଚାଷବାସ କାମରେ

ନିଯୁକ୍ତ ଲୋକ ବୋଲି ବର୍ଣ୍ଣନା କରିଛନ୍ତି । ଅନ୍ୟ ଦିଗରେ, ଗୁପ୍ତ ଯୁଗର ଶାସ୍ତ୍ରସମୂହରେ ଶୂଦ୍ର ଏବଂ କ୍ରୀତଦାସମାନଙ୍କ ମଧ୍ୟରେ ସୁସ୍ପଷ୍ଟ ପାର୍ଥକ୍ୟର ରେଖା ଟଣାଯାଇଛି । ଏହି ଭାବେ ପରମ୍ପରାଗତ ବର୍ଣ୍ଣବୈଷମ୍ୟ କ୍ରମଶଃ ତା'ର ପ୍ରାକ୍ତନ ତାତ୍ପର୍ଯ୍ୟ ହରାଉଥିଲା । ଏହି ସମୟରେ, ବରଂ, ଜାତି ଭେଦ ପ୍ରଥା ଅଧିକ ତାତ୍ପର୍ଯ୍ୟ ଲାଭ କରୁଥିଲା । ବର୍ଣ୍ଣ ଭଳି ଜାତି ମଧ୍ୟ ଥିଲା ବଂଶଗତ, ସଗୋତ୍ରବିବାହୀ ଏବଂ ସୁନିର୍ଦ୍ଦିଷ୍ଟ ଏକ ପେଶା ସହିତ ଯୁକ୍ତ । ତେବେ ଏହିସବୁ ଜାତି ଥିଲେ ଅପେକ୍ଷାକୃତ ଛୋଟ ଛୋଟ ସଂପ୍ରଦାୟରେ ବିଭକ୍ତ, ବେଳେ ବେଳେ ଏଗୁଡ଼ିକ ପାରସ୍ପରିକ ଅର୍ଥନୈତିକ ସ୍ୱାର୍ଥ ଦ୍ୱାରା ଆବଦ୍ଧ ଛୋଟ ଛୋଟ ଗୋଷ୍ଠୀ ଛଡ଼ା ଆଉ କିଛି ନଥିଲେ । କାଳ କ୍ରମେ ଜାତିମାନଙ୍କର ଏହି ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା ।

ଜାତି ଗଠନର ଏହି ପ୍ରକ୍ରିୟାଟି ଆଉରି ଦୀର୍ଘ ଦିନ ଧରି ଚାଲିଥିଲା । ଶ୍ରମବିଭାଗ ଏବଂ ଶ୍ରମର ବିଶେଷୀକରଣ ଫଳରେ ସହରମାନଙ୍କରେ ବିଭିନ୍ନ ଧରଣର ଓ ସ୍ତରର କାରିଗରମାନଙ୍କ ମଧ୍ୟରେ ଜାତି ସଂଖ୍ୟା ବିଶେଷ ଲକ୍ଷଣୀୟ ଭାବେ ବୃଦ୍ଧି ପାଇଲା । ଗ୍ରାମାଞ୍ଚଳରେ ମଧ୍ୟ ଜାତି ସଂଖ୍ୟା ବୃଦ୍ଧି ପାଉଥିଲା । ବର୍ଣ୍ଣଭେଦ ଛଡ଼ା ମଧ୍ୟ ଏକ ସ୍ୱତନ୍ତ୍ର ସାମାଜିକ ସଂଗଠନ ହିସାବରେ ଜାତି ତିଷ୍ଠିବାକୁ ଲାଗିଲା, ଏଥି ସଙ୍ଗେ ସଙ୍ଗେ ବର୍ଣ୍ଣଭେଦ ରୀତିକୁ ମଧ୍ୟ କଡ଼ାକଡ଼ି ଭାବେ ମାନି ଚଳିବାକୁ ପଡ଼ୁଥିଲା । ତେବେ ପରବର୍ତ୍ତୀ ଯୁଗରେ ଯେପରି ଘଟିଥିଲା, ଗୁପ୍ତ ଯୁଗରେ କିନ୍ତୁ ଜାତିଭେଦର ନିୟମକାନୁନ୍ ଏତେ କଡ଼ା ନଥିଲା । ସେପର୍ଯ୍ୟନ୍ତ କେତେକ କ୍ଷେତ୍ରରେ ଜାତିମାନେ ସେମାନଙ୍କ ପରମ୍ପରାଗତ ପେଶା ବଦଳେଇ ପାରୁଥିଲେ ।

ଯଥା, ଏହି ଯୁଗରେ କେତେକ ଖୋଦିତ ଲିପିରୁ ଜଣାଯାଏ ଯେ, ପଶ୍ଚିମ ଭାରତର ରେଶମ ତନ୍ତୁବାୟ ସଂଘର ସଦସ୍ୟମାନେ ଉତ୍ପାଦନଗତ ବିଭିନ୍ନ ସମସ୍ୟା ହେତୁ ଅନ୍ୟତ୍ର ଯାଇ ବସବାସ କରିଥିଲେ । ସେଠାରେ ସେମାନେ ଅନ୍ୟାନ୍ୟ ପେଶା ଅବଲମ୍ବନ କରିବାକୁ ଆରମ୍ଭ କରିଥିଲେ । ସେହିସବୁ ତନ୍ତୁବାୟମାନଙ୍କ ମଧ୍ୟରୁ କେତେକ ସୈନିକର ପେଶା, କେହି କେହି ଧନୁର୍ଦ୍ଧର, ସୈନିକ ବା କେତେକ ଚାରଣ କବିର ପେଶା ଗ୍ରହଣ କରିଥିଲେ । ସାମାଜିକ ଦୃଷ୍ଟିକୋଣରୁ ଏହାର ଅର୍ଥ, ବର୍ଣ୍ଣଗତ ସ୍ତର ବିଭାଗର ବିଚାରରୁ ସେମାନେ ଅପେକ୍ଷାକୃତ ଉଚ୍ଚ ସ୍ତରକୁ ଉନ୍ନୀତ ହୋଇଥିଲେ ।

ଏହି ଜାତି ଉଦ୍‌ଭବର ବିଷୟଟିକୁ ବ୍ରାହ୍ମଣମାନେ ବର୍ଣ୍ଣସମୂହ ମଧ୍ୟରେ ପରସ୍ପର ମିଶ୍ରଣର ଯୁକ୍ତି ଦ୍ୱାରା ବୁଝାଇବାକୁ ଚେଷ୍ଟା କରିଛନ୍ତି । ବର୍ଣ୍ଣସମୂହ ମଧ୍ୟରେ ପରସ୍ପରର ସଂସ୍ପର୍ଶ ଏଡ଼େଇ ଚାଲିବା କ୍ଷେତ୍ରରେ କଠୋର ନିୟମକାନୁନ୍ କ୍ରମଶଃ ଅଧିକ ଲଂଘିତ ହେଉଥିବାରୁ ବ୍ରାହ୍ମଣ୍ୟ ବିଧାନରେ ପାରଦର୍ଶୀ ପଣ୍ଡିତମାନେ ବର୍ଣ୍ଣସମୂହର "ବିଶୁଦ୍ଧତା" ସଂରକ୍ଷଣ ବିଷୟରେ ସେତେବେଳେ ମନୋଯୋଗ ଦେଉଥିଲେ । କେବଳ ଗୋଟିଏ ବର୍ଣ୍ଣରୁ ଜାତ ବାପ ମାଉ ସନ୍ତାନମାନଙ୍କୁ ବିଶୁଦ୍ଧ ଏବଂ ବୈଧ ବୋଲି ଗଣ୍ୟ କରାଯାଉଥିଲା । ଏପରିକି ବ୍ରାହ୍ମଣ ଏବଂ କ୍ଷତ୍ରିୟ ମଧ୍ୟରେ ବିବାହ ବନ୍ଧନକୁ ବର୍ଣ୍ଣ ବିଭାଗର ଶାସ୍ତ୍ରୀୟ "ବିଧାନରୁ" ବିଚ୍ୟୁତି ବୋଲି ମନେ କରାଯାଉଥିଲା । ମିଶ୍ରବର୍ଣ୍ଣ ବିବାହ ଜାତ ସନ୍ତାନମାନଙ୍କୁ ସେମାନଙ୍କ ବାପମାନଙ୍କ ଠାରୁ ପୃଥକ୍ ଏକ ସ୍ତର ବା ନିର୍ଦ୍ଦିଷ୍ଟ ଏକ ଜାତିର ଅନ୍ତର୍ଭୁକ୍ତ କରାଯାଉଥିଲା । ଏହି ଭାବେ ବ୍ରାହ୍ମଣମାନେ ଚେଷ୍ଟା କରୁଥିଲେ ସାମାଜିକ ବିକାଶ, ବିଶେଷ କରି ଶ୍ରମବିଭାଗ ଫଳରେ ଉଦ୍‌ଭୂତ ନୂଆ ନୂଆ ସାମାଜିକ ସ୍ତର ସଂଗଠନ ବା ଜାତିର ଉତ୍ପତ୍ତିର କାରଣ ଦର୍ଶାଇବାକୁ ।

ସବୁଠାରୁ ନୀଚତମ ଅସ୍ପୃଶ୍ୟମାନଙ୍କ ଗୋଷ୍ଠୀର ଲୋକେ ସବୁଠାରୁ ହୀନ ଧରଣର କାର୍ଯ୍ୟ କରିବାକୁ (ଯଥା, ଆବର୍ଜନା ସଫା କରିବା, ଶ୍ମଶାନ ସଫା କରିବା, କଂସେଇ କାମ, ଆଦି) ବାଧ୍ୟ ହେଉଥିଲେ । ଏହି ଅସ୍ପୃଶ୍ୟମାନଙ୍କ ସହିତ ଉଚ୍ଚତର ଜାତିମାନଙ୍କ ପକ୍ଷରେ କୌଣସି ପ୍ରକାରର ସଂଯୋଗ ସ୍ଥାପନ କରିବା ନିଷିଦ୍ଧ ଥିଲା । ବେଳେ ବେଳେ ଦେହରେ ବିଶେଷ ଧରଣର ଚିହ୍ନ ଆଙ୍କି ଏମାନଙ୍କୁ ନୀଚ ସାମାଜିକ ପଦମର୍ଯ୍ୟାଦା କଥା ସୂଚେଇ ଦିଆଯାଉଥିଲା । ଅସ୍ପୃଶ୍ୟମାନଙ୍କର କୌଣସି ରାଜନୈତିକ ଅଧିକାର ନଥିଲା ।

# ଖ୍ରୀଷ୍ଟୀୟ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ପ୍ରଚଳିତ ଧର୍ମୀୟ ଚିନ୍ତାଧାରା ଓ ଦାର୍ଶନିକ ମତବାଦସମୂହ

## ମହାଯାନ ବୌଦ୍ଧ ଧର୍ମ

ବୌଦ୍ଧ ଧର୍ମର ଇତିହାସର ଏକେବାରେ ଆରମ୍ଭରେ ଏହି ଧର୍ମର ଅନୁଗାମୀମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ଚିନ୍ତାଧାରା ଓ ସଂପ୍ରଦାୟର ଉଦ୍‌ଭବ ଘଟିଥିଲା । ଏପରିକି ଏକାନ୍ତ ପ୍ରାରମ୍ଭିକ ଧର୍ମ ସମ୍ମିଳନୀଗୁଡ଼ିକରେ ବୌଦ୍ଧ ଧର୍ମର ଅନ୍ତର୍ଗତ କେତେକ ସିଦ୍ଧାନ୍ତର ଭିନ୍ନ ଭିନ୍ନ ବ୍ୟାଖ୍ୟା ଓ ଭାଷ୍ୟ ପ୍ରଦତ୍ତ ହୋଇଥିଲା । ମୌର୍ଯ୍ୟ ଯୁଗ ବେଳକୁ ଦୁଇଟି ପ୍ରଧାନ ଧାରାର ଉଦ୍‌ଭବ ଘଟିଥିଲା : ସ୍ଥବିରବାଦିନ୍ (ଅର୍ଥାତ୍, ଯେଉଁମାନେ ପ୍ରବୀଣ ଧର୍ମ ପ୍ରଚାରକମାନଙ୍କ ଶିକ୍ଷାର ଅନୁଗାମୀ ଥିଲେ) ଏବଂ ମହାସାଂଘିକ (ଅର୍ଥାତ୍, ଯେଉଁମାନେ ବଡ଼ ବଡ଼ ଭକ୍ତ ସଂପ୍ରଦାୟ ବା ସଂଘ ପ୍ରତିଷ୍ଠା ଏବଂ ଅପେକ୍ଷାକୃତ ଉଦାର ନିୟମକାନୁନ୍ ପ୍ରଚଳନର ପକ୍ଷପାତୀ) ।

ଏକଥା ପରିଷ୍କାର ବୁଝାଯାଏ ଯେ, ଏହି ଶେଷୋକ୍ତ ଚିନ୍ତାଧାରାଟି ଥିଲା ମହାଯାନ (ମହତ୍ ଯାନ ବା ମହତ୍ ମାର୍ଗ) ଧର୍ମମତର ପ୍ରଧାନ ଭିତ୍ତି । ଏହି ଧର୍ମର ଅନୁଗାମୀମାନେ ସେତେବେଳଠୁଁ ନିଜକୁ ହୀନଯାନ (ହୀନ ଯାନ ବା ହୀନ ମାର୍ଗ) ଧର୍ମମତ ଠାରୁ ବିଚ୍ଛିନ୍ନ କରି ନେବାକୁ ଆରମ୍ଭ କରିଥିଲେ । ହୀନଯାନ କଥାଟି, ଅବଶ୍ୟ, ବୌଦ୍ଧ ରଚନାବଳୀରେ ଖୁବ୍ ବେଶି ଦେଖିବାକୁ ମିଳେ ନାହିଁ । ଏହାକୁ ସାଧାରଣତଃ ତଥାକଥିତ ରକ୍ଷଣଶୀଳ ବୌଦ୍ଧମାନଙ୍କ ଦ୍ୱାରା ଗୃହୀତ ଧର୍ମମତ ବୋଲି ଗ୍ରହଣ କରାଯାଇଥାଏ । ଭାରତରେ ଏହି ଦୁଇ ଧର୍ମମତ ଅନୁଗାମୀମାନଙ୍କ ମଧ୍ୟରେ ଖୋଲାଖୋଲି କୌଣସି ସଂଘର୍ଷ ଘଟି ନାହିଁ । ପ୍ରାରମ୍ଭରେ ମହାଯାନ ମତାବଲମ୍ବୀମାନଙ୍କ ସଂଖ୍ୟା ନଗଣ୍ୟ ଥିଲା । ୟୁଏନ୍ ଚ୍ୱାଙ୍ଗଙ୍କ ମତାନୁଯାୟୀ ମହାଯାନପନ୍ଥୀମାନେ ସେତେବେଳେ ବିନୟର ହୀନଯାନ ନୀତିଗୁଡ଼ିକୁ ମାନି ଚଳୁଥିଲେ । ଏପରିକି ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ଚୀନ୍ ପରିବ୍ରାଜକ ଇ ତ୍‌ସିଙ୍ଗ୍ ଲେଖିଛନ୍ତି ଯେ, ଉତ୍ତର ଭାରତର ବିଭିନ୍ନ ଅଞ୍ଚଳରେ ଏକା ବୌଦ୍ଧ ମଠରେ ହୀନଯାନ ଏବଂ ମହାଯାନ ମତାବଲମ୍ବୀମାନେ ଏକାଠି ବାସ କରୁଥିଲେ । ସେ କହିଛନ୍ତି, ଏହି ଉଭୟ ମତାବଲମ୍ବୀମାନେ ଏକା ବିନୟ ବିଧି ମାନି ଚଳୁଥିଲେ ଏବଂ ସ୍ୱୀକାର କରୁଥିଲେ ବୌଦ୍ଧ ଧର୍ମର ଚତୁଃ ମହାସତ୍ୟକୁ ।

ଯେଉଁମାନେ ବୋଧିସତ୍ୱମାନଙ୍କୁ ଶ୍ରଦ୍ଧା ନିବେଦନ କରୁଥିଲେ ଏବଂ ମହାଯାନ ସୂତ୍ରଗୁଡ଼ିକୁ ଅଧ୍ୟୟନ କରୁଥିଲେ, ସେଇମାନେ ହିଁ ଅବଶ୍ୟ, ମହାଯାନପନ୍ଥୀ ହିସାବରେ ଗଣ୍ୟ ହେଉଥିଲେ, ଏମାନଙ୍କୁ ଛାଡ଼ି ଦେଲେ ଅନ୍ୟମାନେ ଥିଲେ ହୀନଯାନପନ୍ଥୀ ବୌଦ୍ଧ ।

ମନେ ହୁଏ, ପ୍ରାଚୀନତମ ମହାଯାନ ପୋଥିଗୁଡ଼ିକ ଲିଖିତ ହୋଇଥିଲା ସେଇ ସୁଦୂର ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀରେ । ତେବେ ଏହି ମତବାଦର ଅନୁଗାମୀ ଅଧିକାଂଶ ପୋଥି, ଅବଶ୍ୟ, ରଚିତ ହୋଇଥିଲା ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ । ଏହିସବୁ ପୋଥି ମଧ୍ୟରେ ପ୍ରାଚୀନତମ ହେଲା ପ୍ରଜ୍ଞାପାରମିତା ସୂତ୍ରସମୂହ । ଏହି ଶେଷୋକ୍ତ ସୂତ୍ରଗୁଡ଼ିକର ଚୀନ୍ ଭାଷାରେ ଅନୁବାଦ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର ଶେଷ ଆଡ଼କୁ ପ୍ରକାଶିତ ହୋଇଥିଲା । ମହାଯାନ ବୌଦ୍ଧ ମତର ସବୁଠାରୁ ଜନପ୍ରିୟ ଗ୍ରନ୍ଥସମୂହ ହେଉଛି "ସଦ୍ଧର୍ମପୁଣ୍ଡରୀକସୂତ୍ର" ଏବଂ "ସୁବର୍ଣ୍ଣପ୍ରଭାସ ସୂତ୍ର" ।

ମହାଯାନପନ୍ଥୀମାନେ, ଅବଶ୍ୟ, ହୀନଯାନପନ୍ଥାକୁ ସେମାନଙ୍କ ନିଜସ୍ୱ ଧର୍ମବିଶ୍ୱାସର କ୍ଷତିକାରକ ପ୍ରତିପକ୍ଷ କିମ୍ବା ଭ୍ରାନ୍ତ ମତବାଦ ବୋଲି ମନେ କରୁ ନଥିଲେ । ସେମାନେ ଏହି ଶେଷୋକ୍ତ ମତବାଦଟିକୁ ବୌଦ୍ଧ ଧର୍ମର ବ୍ୟାପକ ପ୍ରସାର ପକ୍ଷରେ ଯଥେଷ୍ଟ ଯୁକ୍ତ ନୁହେଁ ଏବଂ ବେଶି ବ୍ୟକ୍ତିତାନ୍ତ୍ରିକ ବୋଲି ମନେ କରୁଥିଲେ । ଯୋଗାଚାର ବିଷୟକ ମହାଯାନୀ ଚିନ୍ତାଧାରାର ଅନ୍ୟତମ ପ୍ରବକ୍ତା ଆସଙ୍ଗ ହୀନଯାନୀ ଚିନ୍ତାଧାରାର ସୀମାବଦ୍ଧ ପ୍ରକୃତି ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲେ । କାରଣ ହୀନଯାନ ମତବାଦ ଅନୁଯାୟୀ, ମଣିଷ କେବଳ ନିଜର "ମୁକ୍ତି" ପାଇଁ ଚେଷ୍ଟା କରିବା ଉଚିତ, ବ୍ୟକ୍ତି ହିସାବରେ ନିଜର ବୋଧି ଓ ନିର୍ବାଣ ଲାଭ ପାଇଁ ମନୋଯୋଗୀ ହେବା ଉଚିତ । ଅନ୍ୟ ପକ୍ଷରେ, ମହାଯାନପନ୍ଥା ଜୀବରେ ଦୟା ଏବଂ ସାହାଯ୍ୟ ଦାନ ଉପରେ ଗୁରୁତ୍ୱ ଆରୋପ କରିଛି ଏବଂ କହିଛି, ବ୍ୟକ୍ତିଗତ ବୈଶିଷ୍ଟ୍ୟ ନିର୍ବିଶେଷରେ ସମସ୍ତ ଜୀବନ୍ତ ପ୍ରାଣୀ ପ୍ରତି କରୁଣା ଓ ସାହାଯ୍ୟର ହାତ ପ୍ରସାରିତ କରିବା ଦରକାର । ମହାଯାନପନ୍ଥୀମାନେ ମନେ କରୁଥିଲେ ଯେ, ସେମାନଙ୍କ ଧର୍ମମତ ହିଁ ହେଲା ବୁଦ୍ଧ ଦେବଙ୍କର ପ୍ରକୃତ ଶିକ୍ଷାର ପୁନରଭ୍ୟୁଦୟ ସ୍ୱରୂପ ଏବଂ ସେମାନେ ଗୁରୁତ୍ୱ ଦେଇ କହୁଥିଲେ ଯେ, ହୀନଯାନପନ୍ଥୀମାନେ (ବିଭାଜବାଦିନ୍ ଓ ସ୍ଥବିରବାଦିନ୍‌ମାନେ) ନିଜର ଅହଂବାଦ ଓ ବ୍ୟକ୍ତିବାଦର ବଶରେ ପଡ଼ି ବୁଦ୍ଧ ଦେବଙ୍କର ସେଇ ଅସଲ ଶିକ୍ଷାକୁ ବିକୃତ ଏବଂ ଶ୍ୱାସରୁଦ୍ଧ କରି ପକାଇଛନ୍ତି । ଏହି କାରଣରୁ ସେମାନେ ନିଜର ଅନୁସୃତ ମତବାଦର ନାମ ଦେଇଥିଲେ "ମହତ୍ ପଥ" ଏବଂ ମାନବ ମୁକ୍ତିର ଧାରଣାଟିକୁ ସେମାନେ ଯେ କେତେ ଉଦାର ଭାବେ ବ୍ୟାଖ୍ୟା କରିଥିଲେ ଏବଂ ବୁଦ୍ଧଙ୍କ ଶିକ୍ଷା ସପକ୍ଷରେ ଅନୁସାରକମାନଙ୍କର ଏକ ବୃହତ୍ ସଂଖ୍ୟାକୁ ଯେ ଟାଣି ଆଣି ପାରିଥିଲେ, ତାହା ଏଥିରୁ ବୁଝାଯାଏ ।

ମହାଯାନ ମତବାଦ ଅନ୍ତର୍ଗତ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ତତ୍ତ୍ୱଗୁଡ଼ିକ ମଧ୍ୟରୁ ଗୋଟିଏ ହେଲା ବୋଧିସତ୍ତ୍ୱ ସଂପର୍କିତ । ବୋଧିସତ୍ତ୍ୱର ଏହି ଧାରଣାଟି, ଅବଶ୍ୟ, ହୀନଯାନ ମତବାଦରେ ଦେଖିବାକୁ ମିଳେ, ବିଶେଷ କରି ପରବର୍ତ୍ତୀ କାଳର ସର୍ବାସ୍ତିବାଦିନ୍ ଚିନ୍ତାଧାରାର ଅନୁସାରକମାନଙ୍କ ମଧ୍ୟରେ (ଏମାନଙ୍କ ମତରେ, "ବୋଧି", ଅର୍ଥାତ୍, ବୁଦ୍ଧତ୍ୱ ଲାଭ ପୂର୍ବରୁ ଗୌତମ ଶାକ୍ୟମୁନି ନିଜେ ଥିଲେ ଜଣେ ବୋଧିସତ୍ତ୍ୱ) । ବୋଧିସତ୍ତ୍ୱ ବୋଇଲେ ମହାଯାନୀମାନଙ୍କ ମତରେ ଏଭଳି ଏକ ମହାଶକ୍ତିମାନଙ୍କୁ ବୁଝାଉଥିଲା, ଯାହାଙ୍କର ବୁଦ୍ଧତ୍ୱ ଅର୍ଜନର ଯୋଗ୍ୟତା ଅଛି ଏବଂ ସେ ନିର୍ବାଣ ଲାଭର ସମୀପବର୍ତ୍ତୀ ହୋଇଛନ୍ତି । କିନ୍ତୁ ଅନ୍ୟାନ୍ୟ ଜୀବକୁଳ ଓ ସମଗ୍ର ଜଗତ ପ୍ରତି ପରମ କରୁଣାବଶରୁ ନିର୍ବାଣ ଲାଭକୁ

ପରିହାର କରି ଗ୍ଭଲିଛନ୍ତି । ହୀନଯାନୀମାନଙ୍କର ଆଦର୍ଶ ଅର୍ହତତ୍ୱ ଅର୍ଜନ ପରିବର୍ତ୍ତେ ବୋଧିସତ୍ତ୍ୱବାଦକୁ ମହାଯାନୀମାନେ ପ୍ରତିଷ୍ଠିତ କରିଛନ୍ତି ।

ମହାଯାନୀମାନେ ମନେ କରନ୍ତି, ହୀନଯାନପନ୍ଥାର ପ୍ରଧାନ ଦୁର୍ବଳତାଟି ହେଲା ଏହି ମତବାଦର ଲକ୍ଷ୍ୟର ସଂକୀର୍ଣ୍ଣତା, ଅର୍ଥାତ୍, କେବଳ ମାତ୍ର ନିଜ ପାଇଁ ମୁକ୍ତିର ସନ୍ଧାନ। ସେମାନଙ୍କ ମତରେ ଅର୍ହତ୍ ମଧ୍ୟ (ବୌଦ୍ଧ ସିଦ୍ଧ ପୁରୁଷ) ଚାଙ୍କ ଆତ୍ମଃସରାର ବନ୍ଧନରୁ ନିଜକୁ ସଂପୂର୍ଣ୍ଣ ରୂପେ ମୁକ୍ତ କରି ପାରନ୍ତି ନାହିଁ, କାରଣ ଅନ୍ୟମାନେ ସଂସାର ଫାନ୍ଦରେ, ଜନ୍ମ ମୃତ୍ୟୁର ବୃତ୍ତରେ ଆବଦ୍ଧ ହୋଇ ରହିଥିଲା ବେଳେ, ସେମାନେ ସେ କଥା ଚିନ୍ତା ନକରି କେବଳ ନିଜର ନିର୍ବାଣ ପାଇଁ ଚେଷ୍ଟା କରନ୍ତି । ମହାଯାନୀମାନେ ବୁଝାଇଥିଲେ ଯେ, ଅର୍ହତ୍ ନିଜର ଓ ଅନ୍ୟମାନଙ୍କ ମଧ୍ୟରେ ବହୁବିଧ ପାର୍ଥକ୍ୟର ପୂର୍ଣ୍ଣ ନିରାକରଣ କରିବାକୁ ଅସମର୍ଥ, ଏବଂ ତେଣୁ କରି ନିଜର "ଅସ୍ତିତ୍ୱ ହୀନତା" ବା ତୁରୀୟ ଅବସ୍ଥା ଅର୍ଜନ କରିବାକୁ ଅସମର୍ଥ । ଏଥିରୁ ବୁଝାଯାଏ ଯେ, ମନୁଷ୍ୟ ପକ୍ଷରେ ଯୁକ୍ତିଯୁକ୍ତ ପଥଟି ହେଲା ନିଜର "ମୁକ୍ତି" ପାଇଁ ଦୃଢ଼ ମନୋଯୋଗୀ ଅର୍ହତ୍‌ଙ୍କ ଆଦର୍ଶକୁ ଅନୁସରଣ ନକରିବା, ବୋଧିସତ୍ତ୍ୱର ଆଦର୍ଶକୁ ଅନୁସରଣ କରିବା, କାରଣ ବୋଧିସତ୍ତ୍ୱ ଅନ୍ୟମାନଙ୍କର – ଦୈନନ୍ଦିନ ଜୀବନ ବନ୍ଧନରେ ଆବଦ୍ଧ ମନୁଷ୍ୟର – ସାଫଲ୍ୟ କଳ୍ପେ ନିଜେ ପାର୍ଥିବ ସୁଖଦୁଃଖମୟ ଜୀବନଠାରୁ ମୁହଁ ଫେରେଇ ନେଇଥାନ୍ତି ।

ମହାଯାନ ସଂପ୍ରଦାୟର ସଦସ୍ୟମାନେ ହୀନଯାନୀ ଧର୍ମ ବିଶ୍ୱାସର ସଂକୀର୍ଣ୍ଣତାକୁ ପସନ୍ଦ କରନ୍ତି ନାହିଁ । ହୀନଯାନ ଧର୍ମମତ ଅନୁଯାୟୀ କେବଳ ଭିକ୍ଷୁ ସନ୍ନ୍ୟାସୀମାନେ ଐହିକ ଜୀବଯାତ୍ରାଠାରୁ ନିଜକୁ ସଂପୂର୍ଣ୍ଣ ରୂପେ ବିଚ୍ଛିନ୍ନ କରି ନେଲା ପରେ ନିର୍ବାଣ ଲାଭ କରି ପାରନ୍ତି । ଅଥଚ ମହାଯାନ ସଂପ୍ରଦାୟ ମନେ କରନ୍ତି, ଗୃହୀ ଭକ୍ତମାନଙ୍କ ପକ୍ଷରେ ମଧ୍ୟ ପରମ ନିର୍ବାଣ ଲାଭ ସମ୍ଭବ । ମହାଯାନ ଧର୍ମମତର ପୋଥିଗୁଡ଼ିକରେ ବାରମ୍ବାର ଜୋର ଦିଆଯାଇଛି ଯେ, ବୋଧିସତ୍ତ୍ୱମାନେ କେବଳ ନିଜ ପାଇଁ ନିର୍ବାଣର ପ୍ରତ୍ୟାଶୀ ନଥିଲେ, ସମଗ୍ର ଜଗତର ସୁଖ ପାଇଁ, ସମସ୍ତ ଜୀବନ୍ତର ନିର୍ବାଣ ଲାଭ ପାଇଁ ପ୍ରୟାସୀ ଥିଲେ। ବୋଧିସତ୍ତ୍ୱମାନେ ଅନ୍ୟମାନଙ୍କ ସାହାଯ୍ୟ କଳ୍ପେ ସ୍ୱେଚ୍ଛାରେ ଦୁଃଖକଷ୍ଟ ବରଣ କରି ନିଅନ୍ତି ଏବଂ ଯେପର୍ଯ୍ୟନ୍ତ ଅନ୍ୟ ସମସ୍ତେ ଦୁଃଖ କବଳରୁ ପରିତ୍ରାଣ ପାଇ ନାହାନ୍ତି, ସେପର୍ଯ୍ୟନ୍ତ ସେମାନେ ନିଜର ମୁକ୍ତି ଗ୍ଭହାନ୍ତି ନାହିଁ । ଗୋଟିଏ ଦିଗରୁ ବୁଦ୍ଧଙ୍କର ସମସ୍ତ ଭକ୍ତ ଏକ ଏବଂ ଅବିଚ୍ଛିନ୍ନ ଏକ ସତ୍ତା ହିସାବରେ ଗଣ୍ୟ ହୁଅନ୍ତି । ମହାଯାନ ବୌଦ୍ଧ ଧର୍ମର ଏହିସବୁ ତତ୍ତ୍ୱ କଥା ଗୃହୀ ଭକ୍ତମାନଙ୍କ ନିକଟରେ ଏହାକୁ ଅତ୍ୟନ୍ତ ଜନପ୍ରିୟ କରିଥିଲା । କାରଣ ଏହି ମତ କରୁଣା ପରବଶ ବୋଧିସତ୍ତ୍ୱମାନଙ୍କ ସାହାଯ୍ୟର ପ୍ରତିଶ୍ରୁତି ସହ ସେମାନଙ୍କ "ମୁକ୍ତି ପଥକୁ" ପ୍ରଶସ୍ତ କରୁଥିଲା ।

ତେବେ ମହାଯାନ ଧର୍ମବିଶ୍ୱାସ ଅନୁଯାୟୀ ବୌଦ୍ଧ ଧର୍ମର ପ୍ରତିଷ୍ଠାତା ବୁଦ୍ଧଙ୍କର ଭାବମୂର୍ତ୍ତି ଏବଂ "ବୁଦ୍ଧ" କଥାଟିର ଅସଲ ବ୍ୟାଖ୍ୟା ଥିଲା ଭିନ୍ନ । ହୀନଯାନ ସଂପ୍ରଦାୟ ବୁଦ୍ଧ ଦେବଙ୍କୁ ଏକ ବାସ୍ତବ ଐତିହାସିକ ବ୍ୟକ୍ତିତ୍ୱ ରୂପେ ଦେଖୁଥିଲେ, ଯିଏକି ଭକ୍ତମାନଙ୍କୁ "ମୁକ୍ତିର" ପଥ ଓ ଉପାୟ ପ୍ରଦର୍ଶନ କରି ଯାଇଛନ୍ତି । କିନ୍ତୁ, ମହାଯାନ ସଂପ୍ରଦାୟ ବୁଦ୍ଧଙ୍କୁ ପରମସ୍ୱୟମ୍ଭୂ ସତ୍ତା, ସମଗ୍ର ଅଣୁବିଶ୍ୱର ଭିତ୍ତି ସ୍ୱରୂପ ବୋଲି ମନେ କରୁଥିଲେ ଏବଂ ଏହି ଭାବେ ତାଙ୍କୁ ବିଶେଷ ଏକ ଅଧିଭୌତିକ ଓ ଧର୍ମୀୟ ତାତ୍ପର୍ଯ୍ୟରେ ମଣ୍ଡିତ କରିଥିଲେ । ସେମାନଙ୍କ ମତରେ, ପ୍ରତ୍ୟେକ ଜୀବନ୍ତ ପ୍ରାଣୀ ବୁଦ୍ଧରେ ପରିଣତ ହେବାର ସମ୍ଭାବନା ଓ ଯୋଗ୍ୟତା ନେଇ ଜନ୍ମ ଗ୍ରହଣ କରିଥାନ୍ତି, କାରଣ ସେମାନଙ୍କ

ମଧ୍ୟରେ ବୁଦ୍ଧତ୍ୱର ଗୋଟିଏ କରି କଣା ଗୁପ୍ତ ରହିଥାଏ । ଏହି ବୁଦ୍ଧତ୍ୱ ପୁଣି ଅସ୍ତିତ୍ୱମୟ ଜଗତର ସବୁ କିଛି ମଧ୍ୟରେ ପରିବ୍ୟାପ୍ତ ହୋଇ ରହିଛି ଏବଂ ନିଜକୁ ପ୍ରକାଶ କରିଛି ବୁଦ୍ଧଙ୍କର ତିନୋଟି ରୂପ ବା "ତ୍ରିକାୟା" ମଧ୍ୟ ଦେଇ । ଯଥା, ଧର୍ମକାୟ ବା ଧର୍ମ ଦେହ, ଅର୍ଥାତ୍, ମହାଜାଗତିକ ପ୍ରକାଶ, ସମ୍ଭୋଗକାୟ ବା ଉପଭୋଗ ଦେହ, ଅର୍ଥାତ୍, ଅତିପ୍ରାକୃତ ପ୍ରାଣୀମାନଙ୍କ ମଧ୍ୟରେ ସ୍ୱର୍ଗୀୟ ପ୍ରକାଶ, ଏବଂ ନିର୍ମାଣକାୟ ବା ସୃଷ୍ଟ ଦେହ (ଏହା ରୂପକାୟ ବା ପ୍ରତିରୂପ ଦେହ ନାମରେ ପରିଚିତ), ଅର୍ଥାତ୍, ମଣିଷର ପ୍ରତିମୂର୍ତ୍ତି ମଧ୍ୟରେ ବୁଦ୍ଧଙ୍କର ପ୍ରକାଶ । ମହାଯାନୀମାନେ ଏକାଧିକ ବୁଦ୍ଧଙ୍କର ଅସ୍ତିତ୍ୱରେ ବିଶ୍ୱାସୀ ଥିଲେ । ସେମାନଙ୍କ ମଧ୍ୟରେ ଗୌତମ ବୁଦ୍ଧ ଥିଲେ ଅନ୍ୟତମ । ସେମାନଙ୍କ ମତରେ, ବୁଦ୍ଧ "ତ୍ରିକାୟା" ମଧ୍ୟରେ ଆତ୍ମ ପ୍ରକାଶ ଦ୍ୱାରା ମହାଜାଗତିକ, ଦିବ୍ୟ ଓ ପାର୍ଥିବ ଜଗତର ସମସ୍ତ ପ୍ରାଣୀଙ୍କର ମୁକ୍ତି ବିଧାନ କରିଥାନ୍ତି ।

ମହାଯାନ ଧର୍ମମତ ଅନୁଯାୟୀ ବୁଦ୍ଧଗଣ ଓ ବୋଧିସତ୍ତ୍ୱଗଣ ହେଉଛନ୍ତି ଉପାସ୍ୟ ବା ଭଜନ ଆରାଧନାର ପାତ୍ର । ଫଳରେ ମହାଯାନୀମାନଙ୍କ ମଧ୍ୟରେ ଉପାସନାର ଆନୁଷ୍ଠାନିକ ତଥା କର୍ମକାଣ୍ଡର ଦିଗଗୁଡ଼ିକ ବିଶେଷ ଗୁରୁତ୍ୱ ଅର୍ଜନ କରିଥିଲା । ବୌଦ୍ଧ ଶିଳ୍ପକଳାରେ ମଧ୍ୟ ବୁଦ୍ଧ ପରମ ସତ୍ତା ହିସାବରେ ଚିତ୍ରିତ ହୋଇଥିଲେ ।

ବୋଧିସତ୍ତ୍ୱମାନଙ୍କ ସହାୟତାରେ ନିର୍ବାଣ ଲାଭ କରିବା ସମ୍ଭବ, ଏକଥା ମହାଯାନପନ୍ଥୀମାନେ ବିଶ୍ୱାସ କରୁଥିଲେ ବୋଲି ମୂଲ୍ୟବାନ ଉପହାର ଆଦି ସେମାନଙ୍କୁ ଭେଟି ଦେଇ ସେମାନଙ୍କ ଅନୁଗ୍ରହ ଲାଭ କରିବାକୁ ଚେଷ୍ଟା କରୁଥିଲେ । ଏହି ଭାବେ ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ବୌଦ୍ଧ ମଠଗୁଡ଼ିକ ବହୁବିଧ ମୂଲ୍ୟବାନ ସଂପତ୍ତିର ମାଲିକ ହୋଇ ଉଠିଥିଲେ । ରାଜା ତଥା ବୁଦ୍ଧଙ୍କର ଅନ୍ୟାନ୍ୟ ଧନୀ ଭକ୍ତଗଣ ମଠଗୁଡ଼ିକୁ ଜମିଜମା, ପ୍ରଚୁର ପରିମାଣର ଅର୍ଥ ଓ ଅନ୍ୟାନ୍ୟ ମୂଲ୍ୟବାନ ସାମଗ୍ରୀ ଦାନ କରୁଥିଲେ ।

ମହାଯାନ ଧର୍ମମତରେ ନିର୍ବାଣର କେତେକ ଅସ୍ୱାଭାବିକ ବିଶେଷ ଲକ୍ଷଣ ଥିଲା ଏବଂ ମହାଯାନମତ ଅନ୍ତର୍ଗତ ବିଭିନ୍ନ ଧାରା ନିର୍ବାଣର ଧାରଣାଟିକୁ ବିଭିନ୍ନ ଭାବେ ଉପସ୍ଥାପିତ କରିଥାନ୍ତି । ତେବେ ହୀନଯାନ ମତ ଭଳି ମହାଯାନ ଧର୍ମମତ ନିର୍ବାଣକୁ ବାସ୍ତବ ଜଗତର ନିର୍ବାପନ ବା ଉତ୍ସର୍ଗନ ବୋଲି ମନେ କରୁ ନଥିଲା, ଗଣ୍ୟ କରୁଥିଲା ବାସ୍ତବତା ହିସାବରେ । ମହାଯାନ ସଂପ୍ରଦାୟ ପାରମିତାସମୂହର (ଅର୍ଜିତ ପୂର୍ଣ୍ଣତାସମୂହର) ତତ୍ତ୍ୱକୁ ଆଉରି ବିକଶିତ କରିଥିଲେ ଏବଂ ଏସବୁର ଚର୍ଚ୍ଚା ମଧ୍ୟ ଦେଇ ଭକ୍ତମାନେ ପୂର୍ଣ୍ଣାଙ୍ଗ ନୈତିକ ବିଶୁଦ୍ଧତା ଅର୍ଜନ କରି ପାରନ୍ତି ବୋଲି ପ୍ରଚାର କରୁଥିଲେ । ଏହି ପାରମିତା ଥିଲା ଛଅ ପ୍ରକାରର: ଦାନ, ଶାଳୀନତା, ସହନଶୀଳତା, ଆତ୍ମିକ ଶକ୍ତି, ଧ୍ୟାନ ଓ ଅନ୍ତର୍ଦୃଷ୍ଟି । ଏସବୁର ଚର୍ଚ୍ଚା ମଣିଷକୁ ପରମ ଚୈତନ୍ୟର ଧାରଣା ଲାଭ କରିବାକୁ ସକ୍ଷମ କରିଥାଏ । ପ୍ରତିଟି ପାରମିତାକୁ ପରମ ଜ୍ଞାନ ବା ପ୍ରଜ୍ଞା ଲାଭ ପଥରେ ଗୋଟିଏ ଗୋଟିଏ ପଦକ୍ଷେପ ହିସାବରେ ଗଣ୍ୟ କରାଯାଉଥିଲା । ଅତଏବ, ହୀନଯାନ ଏବଂ ମହାଯାନ ସଂପ୍ରଦାୟ ଦୁଇଟି ଦ୍ୱାରା ଗୃହୀତ ଧର୍ମମତର ମୌଳିକ ସିଦ୍ଧାନ୍ତଗୁଡ଼ିକ ପରସ୍ପର ଠାରୁ ବ୍ୟାପକ ଭାବେ ପୃଥକ୍ ଥିଲା । ବସ୍ତୁତଃ ବୌଦ୍ଧ ଧର୍ମମତରେ ବିଶେଷଜ୍ଞ କେତେକ ପଣ୍ଡିତ, ଏପରିକି ଏହି ଦୁଇ ଧର୍ମମତକୁ, ସଂପୂର୍ଣ୍ଣ ପୃଥକ୍ ଦୁଇଟି ମତବାଦ ବୋଲି ବିଚାର କରିଥାନ୍ତି । ତେବେ, ଅନ୍ୟମାନେ ମନେ କରନ୍ତି, ମହାଯାନ ଧର୍ମମତ ହେଲା ହୀନଯାନୀ ଧ୍ୟାନଧାରଣାର ସଂପ୍ରସାରଣ ଓ ବିଶଦୀକରଣ ବୋଲି

ଏହି ଦୁଇ ଧର୍ମ ସଂପ୍ରଦାୟ ମଧ୍ୟରେ ନାନା ଧରଣର ଯଥେଷ୍ଟ ପାର୍ଥକ୍ୟ ସତ୍ତ୍ୱେ ବୌଦ୍ଧ ଧର୍ମର ବ୍ୟାଖ୍ୟା କ୍ଷେତ୍ରରେ ଉଭୟ କେତେକ ଅଭିନ୍ନ ମୌଳିକ ଧ୍ୟାନଧାରଣାର ଅଧିକାରୀ ଥିଲେ । ଉଭୟ ସଂପ୍ରଦାୟ "ମାନବ ମୁକ୍ତି" ଏବଂ ଏହାକୁ ଲାଭ କରିବା ଦିଗରେ ଭକ୍ତମାନଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ ଏବଂ ମନେ କରୁଥିଲେ, ଯାହାର ଅସ୍ତିତ୍ୱ ଅଛି, ତାହା ପରିବର୍ତ୍ତନଶୀଳ ଓ ଅଚିରସ୍ଥାୟୀ, ଉଭୟ କର୍ମବାଦକୁ ଗ୍ରହଣ କରି ନେଇଥିଲେ ଏବଂ ମନେ କରୁଥିଲେ, ଭିନ୍ନ ଭିନ୍ନ ପଥରେ ହେଲେ ମଧ୍ୟ, ନିର୍ବାଣ ଲାଭ କରିବା ମଣିଷ ପକ୍ଷରେ ସାଧ୍ୟ ।

## ମହାଯାନ ଦର୍ଶନର ବିଭିନ୍ନ ଧାରା

ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ଉପରୋକ୍ତ ମହାଯାନ ଦର୍ଶନର ଧାରାଗୁଡ଼ିକ ମଧ୍ୟରେ ସବୁଠାରୁ ଅଧିକ ପରିଚିତ ଥିଲା ମାଧ୍ୟମିକ ଏବଂ ଯୋଗାଗ୍ରର ନାମକ ମତବାଦ ଦୁଇଟି । ପ୍ରସିଦ୍ଧ ଦାର୍ଶନିକ ନାଗାର୍ଜୁନ ଓ ଆର୍ଯ୍ୟଦେବଙ୍କୁ (ଉଭୟ, ସମ୍ଭବତଃ, ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର) ପ୍ରଥମୋକ୍ତ ମାଧ୍ୟମିକ ଧାରାର ପ୍ରବକ୍ତା ବୋଲି ମନେ କରାଯାଇ ପାରେ । ତେବେ ମହାଯାନ ଧର୍ମମତ ସଂକ୍ରାନ୍ତ ଗ୍ରନ୍ଥ ମଧ୍ୟ ରଚିତ ହୋଇ ସାରିଥିଲା ଏବଂ ନାଗାର୍ଜୁନ ତାଙ୍କ ଗ୍ରନ୍ଥରେ ସେହିସବୁ ଗ୍ରନ୍ଥ କଥା ଉଲ୍ଲେଖ କରିଛନ୍ତି ।

ମାଧ୍ୟମିକ ଦର୍ଶନର ମୂଳ ଭିତ୍ତି ହେଉଛି ଶୂନ୍ୟତାର ତତ୍ତ୍ୱ ଏବଂ ଏହି କାରଣରୁ ଏହି ଚିନ୍ତାଧାରାଟିକୁ ବାରମ୍ବାର ଶୂନ୍ୟବାଦ ବୋଲି ଅଭିହିତ କରାଯାଇଛି । ନାଗାର୍ଜୁନଙ୍କ ମତରେ, ଏ ନିଖିଳ ବିଶ୍ୱରେ ଯାହାର ଅସ୍ତିତ୍ୱ ଅଛି, ସେ ଭୌତିକ ହେଉ ବା ଆତ୍ମିକ ହେଉ, ସେ ହେଉଛି ଅବାସ୍ତବ । ଏଥି ସଙ୍ଗେ ସଙ୍ଗେ ତାଙ୍କ ମତରେ, ଶୂନ୍ୟ ହେଉଛି ଅନସ୍ତିତ୍ୱ ବା ଅସତ୍ତାର ନେତ୍ରୀକରଣ, ଦ୍ୱୈତ ଭାବର ସଂପୂର୍ଣ୍ଣ ଅନୁପସ୍ଥିତି । ଅତଏବ, ଶୂନ୍ୟ ନେତିବାଚକ ନୁହେଁ, ଅସ୍ତିବାଚକ ତାତ୍ପର୍ଯ୍ୟର ଧାରକ । ଏଥିରୁ ମାଧ୍ୟମିକ ପନ୍ଥୀମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ନିର୍ବାଣ ଏବଂ ସଂସାର ପରସ୍ପରର ବିରୋଧୀ ନୁହନ୍ତି । ସେମାନଙ୍କ ଶିକ୍ଷାନୁଯାୟୀ ସମସ୍ତ ପାରମିତାର ଚର୍ଚ୍ଚା ଫଳରେ ଏବଂ ନୈତିକ ଶୁଦ୍ଧତାର ଚରମ ସ୍ତରରେ ପହଞ୍ଚିଲା ପରେ ବିଷୟ ଏବଂ ବିଷୟୀ ମଧ୍ୟରେ ପ୍ରଭେଦ ଲୋପ ପାଇଯାଏ, ନିର୍ବାଣ ଏବଂ ସଂସାର, ଅସ୍ତିତ୍ୱ ଏବଂ ଅନସ୍ତିତ୍ୱ ମଧ୍ୟରେ ପ୍ରଭେଦ ଆଉ ରହେ ନାହିଁ । ବୁଦ୍ଧଙ୍କ ଶିକ୍ଷା – ତାଙ୍କ ଧର୍ମକୁ ମାଧ୍ୟମିକପନ୍ଥୀମାନେ ଶୂନ୍ୟ ବୋଲି ଘୋଷଣା କରିଥିଲେ । ବୌଦ୍ଧ ଧର୍ମର ଇତିହାସରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣାର ପରିଚାୟକ ନାଗାର୍ଜୁନଙ୍କର ଏହି ମତବାଦ ମହାଯାନ ଧର୍ମମତର ବିକାଶ କ୍ଷେତ୍ରରେ ଏବଂ ପ୍ରାଚୀନ ଓ ମଧ୍ୟ ଯୁଗର ପ୍ରାରମ୍ଭରେ ଭାରତର ଧର୍ମୀୟ ଓ ଦାର୍ଶନିକ ଚିନ୍ତାଧାରା କ୍ଷେତ୍ରରେ ବିପୁଳ ପ୍ରଭାବ ବିସ୍ତାର କରିଥିଲା ।

ଅନ୍ୟ ଦିଗରେ, ଆସଙ୍ଗ ଓ ବସୁବନ୍ଧୁ (ଖ୍ରୀଷ୍ଟୀୟ ଚତୁର୍ଥ ଓ ପଞ୍ଚମ ଶତାବ୍ଦୀ) ନାମକ ଦାର୍ଶନିକଙ୍କୁ ଯୋଗାଗ୍ରର ଧାରାର ପ୍ରତିଷ୍ଠାତା ବୋଲି କୁହାଯାଏ । ଏହି ଦାର୍ଶନିକ ଧାରାର ଅନୁଗାମୀମାନେ କେବଳ ମଣିଷର ଚେତନା ବା ମନକୁ ବାସ୍ତବ ବୋଲି ମନେ କରୁଥିଲେ ଏବଂ ସମଗ୍ର ଭୌତିକ ଜଗତକୁ ଅବାସ୍ତବ ମାୟା ମାତ୍ର ବୋଲି କହୁଥିଲେ । ଏହା ଫଳରେ

ଯୋଗାଗ୍ରରୀମାନେ ସେମାନଙ୍କ ମନୋଯୋଗ ନିବଦ୍ଧ କରିଥିଲେ ମଣିଷର ଚେତନା ଓ ମଣିଷର ଧ୍ୟାନରେ ମନୋନିଯୋଗ କରିବାର ଶକ୍ତିକୁ ନିଖୁଣ କରି ତୋଳିବା ପଦ୍ଧତି ଉପରେ ।

ମହାଯାନ ଧର୍ମମତ (ବିଶେଷ କରି ଏହି ମତବାଦର ମାଧ୍ୟମିକ ଧାରାଟି) ଏସିଆରେ ଅନେକ ଦେଶରେ, ବିଶେଷତଃ, ଦୂର ପ୍ରାଚ୍ୟରେ ବ୍ୟାପକ ଭାବେ ପ୍ରସାରିତ ହୋଇଥିଲା । ସେସବୁ ଦେଶର ସ୍ଥାନୀୟ ଧର୍ମମତଗୁଡ଼ିକ ସହିତ ଏହା ସହଜରେ ଖାପ ଖାଇ ଯାଇଥିଲା ଏବଂ ସ୍ଥାନୀୟ ଆଚାର ବିଧିକୁ ଗ୍ରହଣ କରି ନେଇଥିଲା । କିନ୍ତୁ ଖୋଦ୍ ଭାରତରେ, ଗୁପ୍ତ ରାଜାମାନଙ୍କ ରାଜତ୍ୱକାଳରେ ବୌଦ୍ଧ ଧର୍ମର ପ୍ରଭାବ ଲକ୍ଷଣୀୟ ଭାବେ ହ୍ରାସ ପାଇଥିଲା ।

## ବୌଦ୍ଧ ଧର୍ମର ଅବକ୍ଷୟ ଓ ହିନ୍ଦୁ ଧର୍ମ

ଖ୍ରୀଷ୍ଟୀୟ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ମହାଯାନ ଧ୍ୟାନଧାରଣାର ପ୍ରସାର ଏବଂ ହୀନଯାନ ଓ ମହାଯାନ ଦର୍ଶନର ଅଗ୍ରଗତି ସତ୍ତ୍ୱେ ଗୁପ୍ତ ଯୁଗରେ ଏବଂ ବିଶେଷ କରି ତା'ର ଅବ୍ୟବହିତ ପରେ ବୌଦ୍ଧ ଧର୍ମର ଗୁରୁତ୍ୱ ହ୍ରାସ ପାଇବାକୁ ଲାଗିଥିଲା । ଯେଉଁ ଦେଶରେ ଏହା ଜନ୍ମ ଗ୍ରହଣ କରିଥିଲା, ସେଇ ଦେଶରେ ବୌଦ୍ଧ ଧର୍ମର ପ୍ରସାରରେ ଏବେ ଭଟା ଦେଖା ଦେଇଥିଲା । ଏହି ସମୟରେ ଭାରତକୁ ଆସିଥିବା ବହୁ ଚୀନ୍ ପରିବ୍ରାଜକ ଅନେକ ସମୟରେ ଲୋକ ବାକହୀନ ବୌଦ୍ଧ ମଠସବୁ ଦେଖିବାକୁ ପାଇଥିଲେ । ଏହା ଛଡ଼ା ଗୁପ୍ତ ଯୁଗର ବିଭିନ୍ନ ରଚନାରେ ବୌଦ୍ଧ ଭିକ୍ଷୁମାନଙ୍କ ବିରୁଦ୍ଧରେ ଖୋଲାଖୋଲି ଆକ୍ରମଣ ହେଉଥିବାର ଉଲ୍ଲେଖ ଅଛି । ମିଳିଥିବା ତଥ୍ୟଗୁଡ଼ିକର ଭିତ୍ତିରେ ବିଚାର କରି କୁହାଯାଇ ପାରେ ଯେ, ଗୁପ୍ତ ରାଜାମାନେ ବିଷ୍ଣୁ ଏବଂ ଶିବଙ୍କ ଉପାସକ ଥିଲେ । ତେବେ ଏଥି ସଙ୍ଗେ ସଙ୍ଗେ ଏକଥା ସ୍ପଷ୍ଟ ଯେ, ଏହି ରାଜାମାନେ ଧର୍ମୀୟ ସହନଶୀଳତାର ନୀତି ଅନୁସରଣ କରୁଥିଲେ । କାଳକ୍ରମେ ଉତ୍ତର-ପଶ୍ଚିମ ଭାରତ ଓ କାଶ୍ମୀର ବୌଦ୍ଧ ଧର୍ମର କେନ୍ଦ୍ର ସ୍ଥଳୀରେ ପରିଣତ ହୋଇଥିଲା, ତେବେ ଇତି ମଧ୍ୟରେ ବୈଷ୍ଣବ ଓ ଶୈବ ଧର୍ମ କ୍ରମଶଃ ଗାଙ୍ଗେୟ ଉପତ୍ୟକାରେ ପ୍ରବଳ ହୋଇ ଉଠିଥିଲା ।

ବୌଦ୍ଧ ଧର୍ମର ଏହି ଅବକ୍ଷୟ ଭାରତୀୟ ଧର୍ମ ଓ ସଂସ୍କୃତିର ଇତିହାସରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣାର ସମକାଳୀନ – ତାହା ହେଉଛି ହିନ୍ଦୁ ଧର୍ମର ପୁନରୁତ୍‌ଥାନ । ତେବେ ବାସ୍ତବ କ୍ଷେତ୍ରରେ ଅବଶ୍ୟ ଏହି ଶେଷୋକ୍ତ ଧର୍ମର ବହୁବିଧ ଦିଗ ଓ ସେସବୁ ସହିତ ସଂଶ୍ଳିଷ୍ଟ ଆଚାର ବିଚାର ଦେଶରୁ କେବେହେଲେ ସଂପୂର୍ଣ୍ଣ ଲୁପ୍ତ ହୋଇ ଯାଇ ନଥିଲା । ଯେଉଁ ଆଶ୍ଚର୍ଯ୍ୟଜନକ ସ୍ୱାଚ୍ଛନ୍ଦ୍ୟର ସହିତ ହିନ୍ଦୁ ପରମ୍ପରା ବିଭିନ୍ନ ସ୍ଥାନୀୟ ଧର୍ମର ଆଚାର ବିଧିକୁ ଗ୍ରହଣ କରି ନେଇଥିଲା, କାର୍ଯ୍ୟତଃ ସ୍ୱତନ୍ତ୍ର ଦାର୍ଶନିକ ଚିନ୍ତାଧାରା ଆକାରରେ ଏହି ସମୟରେ ବହୁବିଧ ବ୍ୟାଖ୍ୟାର ଅସ୍ତିତ୍ୱକୁ ହିନ୍ଦୁ ଧର୍ମ ଯେପରି ଭାବେ ମାନି ନେଇଥିଲା ଏବଂ ଏହି ଧର୍ମ ମଧ୍ୟରେ ପରମ୍ପରାଗତ ସାମାଜିକ ବିଭିନ୍ନ ପ୍ରଥା ଯେପରି ଭାବେ ସଂରକ୍ଷିତ ଓ ବିକଶିତ ହୋଇଥିଲା (ଏହା ବର୍ଣ୍ଣବୈଷମ୍ୟ ପ୍ରଥାର ସଂରକ୍ଷଣ କ୍ଷେତ୍ରରେ ସବୁଠାରୁ ବେଶି ପ୍ରଯୋଜ୍ୟ) – ତଦ୍ୱାରା ଏହି ଅସାଧାରଣ ଧର୍ମୀୟ ସଂଶ୍ଳେଷଣ ଫଳରେ ହିନ୍ଦୁ ଧର୍ମ ଭାରତର ବହୁ ବିଚିତ୍ର ସାମାଜିକ ସ୍ତରଗୁଡ଼ିକ ନିକଟରେ ଅନ୍ୟାନ୍ୟ ସଂସାରବାଦୀ ଧର୍ମମତ

ଠାରୁ ଅନେକ ଗ୍ରହଣଯୋଗ୍ୟ ହୋଇ ଉଠିଥିଲା । ମଧ୍ୟ ଯୁଗର ପ୍ରାରମ୍ଭ ବେଳକୁ ହୀନଯାନ ବୌଦ୍ଧ ଧର୍ମ ପ୍ରଥମେ ଶ୍ରୀଲଙ୍କାରେ ଓ ପରେ ଦକ୍ଷିଣ-ପୂର୍ବ ଏସିଆରେ ଏକ ପ୍ରଧାନ ଧର୍ମ ହିସାବରେ ଆବିର୍ଭୂତ ହେଲା ପରେ କାର୍ଯ୍ୟତଃ ଭାରତରୁ ଲୁପ୍ତ ହୋଇଗଲା । ବୌଦ୍ଧ ଧର୍ମର "ଉତ୍ତରାଞ୍ଚଳୀୟ" ସଂସ୍କରଣ (ବା ମହାଯାନ ଧର୍ମମତ), ଅବଶ୍ୟ, ଏହା ପରେ ଆଉ କେଇ ଶତାବ୍ଦୀ ପର୍ଯ୍ୟନ୍ତ ଭାରତରେ କିଛି ପରିମାଣରେ ପ୍ରଭାବ ରକ୍ଷା କରିଥିଲେ ମଧ୍ୟ ଏହା କ୍ରମଶଃ ତା'ର ପୌରାଣିକ ପରମ୍ପରା ଓ ଧର୍ମୀୟ ଆଚାର ଅନୁଷ୍ଠାନ ଦିଗରୁ ହିନ୍ଦୁ ଧର୍ମ ସହିତ ସମାନ ହୋଇଗଲା । ସେତେବେଳେ ବୌଦ୍ଧ ଧର୍ମ ଉପରେ ହିନ୍ଦୁ ଧର୍ମ ମଧ୍ୟ କ୍ରମାଧିକ ପ୍ରଭାବ ବିସ୍ତାର କରିବାକୁ ଲାଗେ ଏବଂ ବୌଦ୍ଧ ମଠଗୁଡ଼ିକରେ ହିନ୍ଦୁ ଦେବଦେବୀ ମୂର୍ତ୍ତିସବୁ ଦେଖିବାକୁ ମିଳିଲା । ପ୍ରସଙ୍ଗତଃ ଏହା ଉଲ୍ଲେଖଯୋଗ୍ୟ ଯେ, ସେତେବେଳେ ବୁଦ୍ଧ ହିନ୍ଦୁମାନଙ୍କ ଦେବତା ବିଷ୍ଣୁଙ୍କର ଦଶ ଅବତାର ମଧ୍ୟରୁ ଅନ୍ୟତମ ବୋଲି ଗଣ୍ୟ ହୋଇ ଗଲେ । ଖ୍ରୀଷ୍ଟୀୟ ଅଷ୍ଟମରୁ ନବମ ଶତାବ୍ଦୀ ମଧ୍ୟରେ ହିନ୍ଦୁ ଧର୍ମ କ୍ରମେ ବିଶୁଦ୍ଧ ଭାରତୀୟ ମହାଯାନ ଧର୍ମମତର ସବୁ ଧାରାକୁ ଚିରକାଳ ପାଇଁ ଗ୍ରାସ କରିନେଲା ।

ଗୁପ୍ତ ଯୁଗ ପର୍ଯ୍ୟନ୍ତ ରକ୍ଷଣଶୀଳ ବ୍ରାହ୍ମଣ ଧର୍ମରେ ମଧ୍ୟ ଯଥେଷ୍ଟ ପରିବର୍ତ୍ତନ ଘଟିଥିଲା । ପ୍ରାଚୀନ ଦେବଦେବୀମାନଙ୍କର ଜନପ୍ରିୟତା ନଷ୍ଟ ହୋଇ ଯାଇଥିଲା ଏବଂ ବେଦ ଆଉ ବ୍ରାହ୍ମଣସମୂହରେ ଲିପିବଦ୍ଧ ଆଚାର ଅନୁଷ୍ଠାନଗୁଡ଼ିକ ସେତେବେଳେ ଅତ୍ୟନ୍ତ ଅକାମି, ପୁରୁଣାକାଳିଆ ଏବଂ ଅଯଥା ଜଟିଳ ନାନା ପଦ୍ଧତି ବୋଲି ମନେ ହେଉଥିଲା । ତା ସତ୍ତ୍ୱେ "ଉପନିଷଦସମୂହ" ଓ "ଭଗବତ୍‌ଗୀତା" ଅନ୍ତର୍ଗତ ବିଭିନ୍ନ ଧର୍ମୀୟ ଓ ଦାର୍ଶନିକ ତତ୍ତ୍ୱକଥା ଯେକୌଣସି ସ୍ଥାନୀୟ ଧର୍ମ ସଂପ୍ରଦାୟ ଓ ଧର୍ମବିଶ୍ୱାସକୁ ଶତାବ୍ଦୀ ଶତାବ୍ଦୀ ଧରି ବର୍ଦ୍ଧିତ ବ୍ରାହ୍ମଣ୍ୟ ପରମ୍ପରାର ଅଙ୍ଗୀଭୂତ କରି ନେବାରେ ସାହାଯ୍ୟ କରିଥିଲା ।

ଯେଉଁ ଧର୍ମମତ "ହିନ୍ଦୁ ଧର୍ମ" (ଅଥବା ଆଉରି ସଠିକ ଭାବେ କହିବାକୁ ଗଲେ, "ହିନ୍ଦୁଦେଶୀ ଧର୍ମ" ବା "ଭାରତୀୟ ନିୟମକାନୁନ୍ ଓ ଆଚାର ବିଚାର") ନାମରେ ଅନେକ ଶତାବ୍ଦୀ ପରେ ପରିଚିତ ହୋଇଥିଲା (ଯେତେବେଳେ ଭାରତରେ ଆରବ ଆକ୍ରମଣ ଫଳରେ ଦେଶର ବହୁ ବିଭିନ୍ନ ଧର୍ମମତ ଓ ସଂପ୍ରଦାୟକୁ ସାମଗ୍ରିକ କୌଣସି ଏକ ସଂଜ୍ଞାରେ ଅଭିହିତ କରିବାର ପ୍ରୟୋଜନ ଦେଖା ଦେଇଥିଲା) ତା'ର ଉତ୍‌ଥାନ ଆରମ୍ଭ ହୋଇଥିଲା ଗୁପ୍ତ ଯୁଗର ବହୁ ପୂର୍ବରୁ ଏବଂ ତାହା ସଂଯୁକ୍ତ ବ୍ରହ୍ମଣ୍ୟବାଦର ପୁରାଣ କଥାକୁ ଦେଶଜ ଉପଜାତିଗୁଡ଼ିକର (ଏବଂ ସେସବୁ ମଧ୍ୟରୁ ଅଧିକାଂଶ ଥିଲେ ଦ୍ରାବିଡ଼) ସ୍ଥାନୀୟ ଧର୍ମବିଶ୍ୱାସ ସହିତ ଖାପ ଖୁଆଇ ନେବାର ପ୍ରାଥମିକ ପ୍ରୟାସ ସହିତ ଯୁକ୍ତ ଥିଲା ।

## ବୈଷ୍ଣବ ଧର୍ମ

ହିନ୍ଦୁ ଧର୍ମ ଅନ୍ତର୍ଗତ ପ୍ରଧାନ ଦୁଇଟି ଧର୍ମମତ ମଧ୍ୟରୁ ପ୍ରଥମଟିର, ଅର୍ଥାତ୍, ବୈଷ୍ଣବ ଧର୍ମର ଉଦ୍‌ଭବ ଘଟିଥିଲା ସେଇ ସୁଦୂର ମୌର୍ଯ୍ୟ ଯୁଗରେ । ତେବେ ଗୁପ୍ତ ରାଜତ୍ୱକାଳରେ ହିଁ କେବଳ ବୈଷ୍ଣବ ଧର୍ମ ବ୍ୟାପକ ଭାବେ ବିସ୍ତାର ଲାଭ କରିଥିଲା । ଏହି ଧର୍ମର ପ୍ରଧାନ ଦେବତା ବିଷ୍ଣୁ ପ୍ରାଚୀନତମ ଭାରତୀୟ ଗ୍ରନ୍ଥମାନଙ୍କରେ ନାରାୟଣ ନାମରେ ଆଖ୍ୟାୟିତ । ସେତେବେଳେ ଏହି ଦେବତା ଉତ୍ତର ଭାରତର ଦେଶଜ ଉପଜାତିଗୁଡ଼ିକ ଦ୍ୱାରା ପୂଜିତ ଥିଲେ ବୋଲି ମନେ ହୁଏ ।

ବ୍ରାହ୍ମଣସମୂହରେ ସେ ଏକ ମହାପରାକ୍ରାନ୍ତ ଦେବତା ହିସାବରେ ଉଲ୍ଲିଖିତ ହୋଇଛନ୍ତି ଏବଂ ବେଳେ ବେଳେ ସ୍ଥାନ ପାଇଛନ୍ତି ପରବର୍ତ୍ତୀ ବୈଦିକ ଯୁଗର ଦେବତା ଓ "ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା" ପ୍ରଜାପତିଙ୍କ ଠାରୁ ଉଚ୍ଚ ପଦମର୍ଯ୍ୟାଦାରେ ।

ପରବର୍ତ୍ତୀ କାଳରେ ନାରାୟଣ ସୂର୍ଯ୍ୟ ଦେବତାଙ୍କର ଅନ୍ୟତମ ବୈଦିକ ଯୁଗୀୟ ରୂପାନ୍ତର ବିଷ୍ଣୁଙ୍କର ଆଉ ଏକ ନାମରେ ପରିଣତ ହୋଇଥିଲେ । ବିଷ୍ଣୁ ନାମଟିର, ମନେ ହୁଏ, ସ୍ଥାନୀୟ ଭାବେ ଉଦ୍‌ଭବ ଘଟିଥିଲା । ପରେ ଅବଶ୍ୟ ଏହି ଦେବତାଙ୍କୁ କେବଳ ବିଷ୍ଣୁ ନାମରେ ଅଭିହିତ କରାଗଲା ଏବଂ ଯେଉଁ ଧର୍ମାନ୍ଦୋଳନ ତାଙ୍କୁ ସର୍ବଶ୍ରେଷ୍ଠ ଦେବତା ରୂପେ ଘୋଷଣା କରିଥିଲା, ତାହା ବୈଷ୍ଣବ ଧର୍ମ ନାମରେ ପରିଚିତ ।

ନାନାବିଧ ସ୍ଥାନୀୟ ଧର୍ମବିଶ୍ୱାସ ଓ ପୂଜା ଅନୁଷ୍ଠାନକୁ ଆତ୍ମସ୍ଥ କରି ନେବାରେ ହିନ୍ଦୁ ଧର୍ମର ଏହି ଶାଖାଟିର ଅସାଧାରଣ କ୍ଷମତାକୁ ଭାରତରେ ଏହି ବୈଷ୍ଣବ ଧର୍ମର ବିପୁଳ ଜନପ୍ରିୟତାର କାରଣ ହିସାବରେ ବ୍ୟାଖ୍ୟା କରାଯାଇଥାଏ । ଏହା ସମ୍ଭବ ହୋଇଥିଲା ଏହି ଧର୍ମ ଅନ୍ତର୍ଗତ ବିଶଦ ବ୍ୟୂହ ଓ ଅବତାରବାଦର କଲ୍ୟାଣରୁ । "ବ୍ୟୂହ" ତତ୍ତ୍ୱର ମୂଳକଥା ହେଲା, ସର୍ବଶକ୍ତିମାନ ଦେବତା ନାରାୟଣ-ବିଷ୍ଣୁ ଅନବରତ ଗ୍ଟରୋଟି ଭିନ୍ନ ଭିନ୍ନ ରୂପରେ ଆତ୍ମ ପ୍ରକାଶ କରିଥାନ୍ତି । ଏହା ଫଳରେ ଅନେକ ଜନପ୍ରିୟ ସ୍ଥାନୀୟ ଦେବତାଙ୍କୁ ବିଷ୍ଣୁଙ୍କ ଅବଧାରଣାର ଅନ୍ତର୍ଭୁକ୍ତ କରି ନେବା ସମ୍ଭବ ହୋଇଥିଲା । ଏହିସବୁ ସ୍ଥାନୀୟ ଦେବତାଙ୍କ ମଧ୍ୟରେ ଥିଲେ ବାସୁଦେବ, ଯିଏକି ପରବର୍ତ୍ତୀ କାଳରେ ବୈଷ୍ଣବ ସାହିତ୍ୟରେ, ଏପରିକି, ସ୍ୱୟଂ ନାରାୟଣଙ୍କ ଠାରୁ ଆଉରି ମୁଖ୍ୟ ହୋଇ ଯାଇଥିଲେ । ମଧ୍ୟ ଯୁଗରେ ବିଷ୍ଣୁଙ୍କର ବହୁ କଳ୍ପିତ ଗୁଣାବଳୀ ବାସୁଦେବଙ୍କ ଉପରେ ଆରୋପ କରାଯାଇଥିବାର ଦେଖିବାକୁ ମିଳେ । ଅନ୍ୟାନ୍ୟ ଅନେକ ବିଷୟ ଭଳି ସ୍ୱର୍ଗର ପକ୍ଷୀରାଜ ଗରୁଡ଼କୁ ବାସୁଦେବଙ୍କ ସହିତ ଯୁକ୍ତ କରି ଦିଆଗଲା । ବାସୁଦେବଙ୍କ ପୂଜା, ଏବଂ ପରେ ବିଷ୍ଣୁ ପୂଜା ମଧ୍ୟ, କୃଷିଜୀବୀ ଉପଜାତିସମୂହର ଉପାସ୍ୟ ଦେବତା ସଂକର୍ଷଣଙ୍କ ପୂଜାକୁ ନିଜର ଅଙ୍ଗୀଭୂତ କରି ନେଲା ।

ବିଷ୍ଣୁଙ୍କ ଉପାସନାରେ ଆଉ ଏକ ଦେବତା କୃଷ୍ଣ ମଧ୍ୟ ଯୁକ୍ତ ହୋଇଗଲେ ଏବଂ ଅଳ୍ପ କାଳ ମଧ୍ୟରେ ସେ ଜନପ୍ରିୟ ଦେବମାନଙ୍କ ମଧ୍ୟରେ ଅନ୍ୟତମ ହୋଇ ଉଠିଲେ । ବୈଷ୍ଣବ ଶାସ୍ତ୍ରରେ ଦେବତା କୃଷ୍ଣଙ୍କୁ ବର୍ଣ୍ଣନା କରାଯାଇଛି ଗୋପୀମାନଙ୍କ ସହିତ ପ୍ରଣୟରତ ଚପଳମତି ଏକ ଯୁବକ ରୂପେ । ଏକମାତ୍ର ବ୍ୟୂହ ତତ୍ତ୍ୱ ବଳରେ ବାସୁଦେବ ଓ କୃଷ୍ଣଙ୍କୁ ବୈଷ୍ଣବ ଧର୍ମର ଅନ୍ତର୍ଭୁକ୍ତ କରିବା ସମ୍ଭବ ହୋଇଛି ।

ଏହାଠାରୁ ଆଉରି ବେଶି ସୁଦୂର ପ୍ରସାରୀ ତାତ୍ପର୍ଯ୍ୟର ସୂଚକ ହେଲା ଅବତାରବାଦ ସହିତ ଯୁକ୍ତ ବୈଷ୍ଣବ ଧର୍ମର ସମନ୍ୱୟ ସାଧନର ପ୍ରବଣତା । "ଅବତାର" ଶବ୍ଦଟି "ଅବତରଣ" ଶବ୍ଦରୁ ଉଦ୍‌ଭୂତ, ଅଥବା ଆଉରି ନିର୍ଦ୍ଦିଷ୍ଟ ଭାବେ କହିଲେ, ଏହାର ଅର୍ଥ ହେଉଛି, "ମଣିଷର ସ୍ୱାର୍ଥ ରକ୍ଷା କରିବା ପାଇଁ ଦେବତାଙ୍କର ମର୍ତ୍ତ୍ୟ ଭୂମିରେ ଜନ୍ମ ପରିଗ୍ରହ" । ପ୍ରାରମ୍ଭିକ କାଳର ବୈଷ୍ଣବ ସାହିତ୍ୟର ନାରାୟଣ-ବିଷ୍ଣୁଙ୍କର ଗ୍ଟରୋଟି ଅବତାରର ଉଲ୍ଲେଖ ଅଛି । ତେବେ ପରବର୍ତ୍ତୀ କାଳରେ ଏହି ଅବତାରମାନଙ୍କ ସଂଖ୍ୟା ବୃଦ୍ଧି ପାଇ ଚବିଶରେ ପହଞ୍ଚିଛି । ବହୁବିଧ ଧର୍ମବିଶ୍ୱାସକୁ ଗୋଟିଏ ମାତ୍ର ଧର୍ମର ଅନ୍ତର୍ଗତ କରିବା ନୀତି ଫଳରେ ବୈଷ୍ଣବ ଧର୍ମ ମଧ୍ୟରେ ବହୁ ବିଚିତ୍ର ଧର୍ମର ଉପାସ୍ୟ ବିପୁଳ ସଂଖ୍ୟକ ଦେବତାଙ୍କୁ ଗ୍ରହଣ କରିବା ସମ୍ଭବ ହୋଇଥାଏ । ସ୍ଥାନାଭାବରୁ ଏଠାରେ କେବଳ ସବୁଠାରୁ

ବିଖ୍ୟାତ କେତେକ ଅବତାରଙ୍କ ନାମ ଉଲ୍ଲେଖ କରାଯାଇ ପାରେ । ଯଥା, ଯେଉଁସବୁ ରୂପ ଧାରଣ କରି ବିଷ୍ଣୁ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଛନ୍ତି, ସେସବୁ ମଧ୍ୟରୁ ତିନୋଟି ହେଉଛି ମନୁଷ୍ୟେତର ପ୍ରାଣୀ : ବିରାଟ ଏକ ବନ୍ୟ ବରାହ ମୂର୍ତ୍ତି ଧାରଣ କରି ସେ ପୃଥିବୀକୁ ପ୍ରଳୟ ପୟୋଧି ଜଳରୁ ଉଦ୍ଧାର କରିଥିଲେ ; ପ୍ରଳୟ ସମୟରେ ମୀନ ମୂର୍ତ୍ତି ଧାରଣ କରି ମାନବାଧିପତି ମନୁଙ୍କ ନୌକାକୁ ନିରାପଦ ତୀରରେ ପହଞ୍ଚାଇଥିଲେ ଏବଂ କୂର୍ମ ରୂପ ଧାରଣ କରି ସମୁଦ୍ର ମନ୍ଥନରେ ଅଂଶଗ୍ରହଣ କରିଥିଲେ । ଏହା ଛଡ଼ା ବୀର ରାମ ଅବତାର ରୂପରେ ପତ୍ନୀ ସୀତାଙ୍କୁ ରାକ୍ଷସ ରାଜ ରାବଣର କବଳରୁ ଉଦ୍ଧାର କରିଥିଲେ ଏବଂ ଲଙ୍କା ଦ୍ୱୀପକୁ ଜୟ କରିଥିଲେ । ରାମ ସୀତାଙ୍କର ଏହି କାହାଣୀଟି ପରେ ବାଲ୍ମିକିଙ୍କ ବିଖ୍ୟାତ "ରାମାୟଣ" ମହାକାବ୍ୟର ମୂଳ ବିଷୟ ହୋଇଥିଲା ।

ବୈଷ୍ଣବ ଧର୍ମର ଆଦି ପର୍ବର ଇତିହାସ ଆଲୋଚନା ପ୍ରସଙ୍ଗରେ ସାହିତ୍ୟଗତ ସୂତ୍ର ଏବଂ ଏହି ଯୁଗରେ ଖୋଦିତ ଶିଳାଲିପିସମୂହରୁ ସଂଗୃହୀତ ତଥ୍ୟର ତୁଳନାମୂଳକ ବିଚାର ହେଉଛି ଖୁବ୍ ଚିତ୍ତାକର୍ଷକ ବିଷୟ ।

ପାଣିନିଙ୍କ ସଂକଳିତ ବ୍ୟାକରଣରେ (ଖ୍ରୀଷ୍ଟ ପୂର୍ବ ପଞ୍ଚମ ବା ଚତୁର୍ଥ ଶତାବ୍ଦୀ) ବାସୁଦେବ ଉପାସନାର ଉଲ୍ଲେଖ ଦେଖିବାକୁ ମିଳେ । ଲୋକଶ୍ରୁତି ଅନୁଯାୟୀ, ବାସୁଦେବ ଥିଲେ କ୍ଷତ୍ରିୟ ବୀର, ବୃଷ୍ଣିମାନଙ୍କ କ୍ଷତ୍ରିୟ ଗୋଷ୍ଠୀର ନାୟକ (ଏହି ଗୋଷ୍ଠୀରେ ବାସୁଦେବ ପରିବାର ବିଶେଷ ସୁବିଧାଭୋଗୀ ଥିଲେ) । ପତଞ୍ଜଳି (ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀ) ତାଙ୍କ ରଚନାରେ ବାସୁଦେବଙ୍କର ଏହି ଦୁଇ ବୈଶିଷ୍ଟ୍ୟକୁ କାମରେ ଲଗାଇଥିଲେ : ସେଠାରେ ବାସୁଦେବଙ୍କୁ କ୍ଷତ୍ରିୟ ହିସାବରେ ଏବଂ ଉପାସନାର ପାତ୍ର ରୂପେ ଅବତାରଣା କରାଯାଇଛି । "ଭଗବତ୍‌ଗୀତାରେ" ବାସୁଦେବଙ୍କର ଏହି ଦ୍ୱିତୀୟ ବୈଶିଷ୍ଟ୍ୟର ବର୍ଣ୍ଣନା ଦିଆଯାଇଛି ବିଶଦ ଭାବେ । ସେଠାରେ ବାସୁଦେବ ପରମ ଦେବତା ଭଗବତଙ୍କ ଅନ୍ୟତମ ମର୍ତ୍ତ୍ୟ ରୂପରେ ଆବିର୍ଭୂତ ।

ମେଗାସ୍ଥେନିସ୍‌ଙ୍କ ବିବରଣୀରେ ଏହି "ଭାରତୀୟ ହେରାକ୍ଲିସ୍‌ଙ୍କର" ଅନେକ ଉଲ୍ଲେଖ ରହିଛି ଏବଂ ମୌର୍ଯ୍ୟ ଯୁଗ ପ୍ରାରମ୍ଭରେ ବାସୁଦେବ ଉପାସନା ଏ ଦେଶରେ ବହୁଳ ପ୍ରଚଳିତ ଥିଲା ବୋଲି ସେଥିରୁ ପ୍ରମାଣିତ ହୁଏ । ସେଲ୍ୟୁକସ୍ ରାଜାଙ୍କର ଏହି ରାଜଦୂତ ବାସୁଦେବଙ୍କୁ ବୀର ଯୋଦ୍ଧା ଓ ଦୈତ୍ୟ ଦମନକାରୀ ହିସାବରେ ବର୍ଣ୍ଣନା କରିଛନ୍ତି । ଭାରତୀୟ ପ୍ରାଚୀନ ଲିଖିତ ସୂତ୍ରସମୂହ ଅନୁଯାୟୀ ବାସୁଦେବ ପୂଜା ବିଶେଷ କରି ମଥୁରାରେ ଜନପ୍ରିୟ ଥିଲା । ମେଗାସ୍ଥେନିସ୍ ମଧ୍ୟ ବାସୁଦେବ ଓ ହେରାକ୍ଲିସ୍‌ଙ୍କ ମଧ୍ୟରେ ତୁଳନା ପ୍ରସଙ୍ଗରେ ଏହି ତଥ୍ୟଟି ଉଲ୍ଲେଖ କରିଛନ୍ତି । ଏକଥା ମନେ କରାଯାଇ ପାରେ ଯେ, ଏହି ଗ୍ରୀକ୍ ବିବରଣୀକାର ବୈଷ୍ଣବ ଧର୍ମର ସେଇ ପ୍ରାରମ୍ଭିକ ଯୁଗର ବର୍ଣ୍ଣନା ଦେଇଛନ୍ତି, ଯେତେବେଳେ ବାସୁଦେବ ଦେବତାଙ୍କ ପଦକୁ ଉନ୍ନୀତ ହେଲେ ମଧ୍ୟ କୃଷ୍ଣଙ୍କ ଭାବମୂର୍ତ୍ତି ସହିତ ମିଶି ଏକ ହୋଇ ଯାଇ ନଥିଲେ ।

ବେସନାଗାରରେ ମିଳିଥିବା ବିଖ୍ୟାତ ହିଲିଓଡୋରାସ୍ ଲିପିରେ (ଖ୍ରୀ : ପୂ : ଦ୍ୱିତୀୟ ଶତାବ୍ଦୀ) "ପରମେଶ୍ୱର" ବାସୁଦେବଙ୍କର ଉଲ୍ଲେଖ ଅଛି । ଏହି ଲିପିର ସାକ୍ଷ୍ୟ ଅନୁଯାୟୀ ବିଚାର କଲେ, ବାସୁଦେବ ଉପାସନା ସେତେବେଳେ ଯେ କେବଳ ଭାରତୀୟମାନଙ୍କ ମଧ୍ୟରେ ବହୁ ପ୍ରଚଳିତ ଥିଲା, ତାହା ନୁହେଁ, ଉତ୍ତର-ପଶ୍ଚିମ ଭାରତର ଅଧିବାସୀ ଗ୍ରୀକ୍‌ମାନଙ୍କ ମଧ୍ୟରେ ବି ବ୍ୟାପକ ଭାବେ ପ୍ରଚଳିତ ଥିଲା ।

ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ଶେଷ ଆଡ଼କୁ ଅନ୍ୟାନ୍ୟ ଖୋଦିତ ଲିପିର ସାକ୍ଷ୍ୟକୁ ଭିତ୍ତି କରି ଏହି ସିଦ୍ଧାନ୍ତରେ ପହଞ୍ଚିବାକୁ ହୁଏ ଯେ, ଏହି ସମୟରେ ବିଷ୍ଣୁ, ନାରାୟଣ ଓ ବାସୁଦେବଙ୍କ ଉପାସନା ମିଳିମିଶି ଏକ ହୋଇ ଯାଇଥିଲା । ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ବୈଷ୍ଣବ ଧର୍ମର ଉପାସ୍ୟ ଦେବତାମାନଙ୍କ (ବିଷ୍ଣୁ, ବାସୁଦେବ ଓ ସଂକର୍ଷଣ) ନାମରେ ସେତେବେଳେ ମନ୍ଦିର ପ୍ରତିଷ୍ଠା ହୋଇ ଯାଇଥିଲା । ପରେ ଏହି ପଦ୍ଧତିଟି ମଧ୍ୟଯୁଗୀୟ ହିନ୍ଦୁ ଧର୍ମର ଏକ ବୈଶିଷ୍ଟ୍ୟ ରୂପେ ଦେଖା ଦେଇଥିଲା । ଯଥା, ଦୃଷ୍ଟାନ୍ତ ସ୍ୱରୂପ, ଦେବତା ସଂକର୍ଷଣଙ୍କ ନାମରେ ବହୁ ମନ୍ଦିର ପ୍ରତିଷ୍ଠା ହୋଇଥିବା କଥା "ଅର୍ଥଶାସ୍ତ୍ରରେ" ଉଲ୍ଲେଖ ଅଛି ।

ଯେଉଁ ବୈଶିଷ୍ଟ୍ୟ ହେତୁ ହିନ୍ଦୁ ଧର୍ମ କେବଳ ବ୍ରାହ୍ମଣ୍ୟ ଧର୍ମଠାରୁ ନୁହେଁ, ଅନ୍ୟାନ୍ୟ ଅଧିକାଂଶ ଧର୍ମଠାରୁ ସ୍ପଷ୍ଟ ଭାବେ ସ୍ୱତନ୍ତ୍ର ହୋଇଛି, ତା ହେଉଛି, ଏହି ଧର୍ମର ପ୍ରଧାନ ଉପାସ୍ୟ ଦେବତା ଜଣେ ନୁହନ୍ତି, ତିନିଜଣ ଏବଂ ସେମାନେ ସମସ୍ତେ ସମାନ ପଦମର୍ଯ୍ୟାଦାର ଅଧିକାରୀ । "ତ୍ରି-ଈଶ୍ୱର" ଏହି ବିଶୁଦ୍ଧ ଭାରତୀୟ ସଂସ୍କରଣ "ତ୍ରିମୂର୍ତ୍ତି" ନାମରେ ପରିଚିତ । ଏହି "ତ୍ରିମୂର୍ତ୍ତି" ହେଲେ ବ୍ରହ୍ମା (ସୃଷ୍ଟିକର୍ତ୍ତା), ବିଷ୍ଣୁ (ପାଳନକର୍ତ୍ତା) ଏବଂ ଶିବ (ସଂହାରକର୍ତ୍ତା) । ଏମାନଙ୍କ ମଧ୍ୟରୁ ପ୍ରଥମ ଦେବତା ବ୍ରହ୍ମା ବୈଦିକ ଦେବଦେବୀଙ୍କ ତାଲିକାର ଅନ୍ତର୍ଗତ । ପରବର୍ତ୍ତୀ କାଳରେ ଧର୍ମସାଧନାରେ ସେ ସୃଷ୍ଟିକର୍ମର ବିଶେଷ ଧାରଣାଟିର ମୂର୍ତ୍ତ ରୂପ ହିସାବରେ ଯେତେ ଗଣ୍ୟ ହୋଇଛନ୍ତି, ସେତେ ଗଣ୍ୟ ହୋଇ ନାହାନ୍ତି ନିଜ ଅଧିକାର ବଳରେ ସ୍ୱତନ୍ତ୍ର ଏକ ଦେବତା ହିସାବରେ । ତେଣୁ ବିଷ୍ଣୁ ଏବଂ ଶିବଙ୍କ ନାମରେ (ଏବଂ ପରବର୍ତ୍ତୀ କାଳରେ ହିନ୍ଦୁ ଦେବଦେବୀଙ୍କ ମଧ୍ୟରେ ବିଶିଷ୍ଟ ସ୍ଥାନର ଅଧିକାରିଣୀ ସ୍ତ୍ରୀ-ଦେବତା ଶକ୍ତିଙ୍କ ନାମରେ) ବହୁ ମନ୍ଦିର ପ୍ରତିଷ୍ଠିତ ହୋଇଛି, ଅଥଚ ବ୍ରହ୍ମାଙ୍କ ନାମରେ କୌଣସି ମନ୍ଦିର ପ୍ରତିଷ୍ଠିତ ହୋଇଛି କି ନାହିଁ ସନ୍ଦେହ, ଯଦିଓ ଧର୍ମୀୟ ଗ୍ରନ୍ଥମାନଙ୍କରେ ବ୍ରହ୍ମାଙ୍କ ନାମ ବହୁବାର ଉଲ୍ଲିଖିତ ହୋଇଛି । ଏଥି ସାଥେ ସାଥେ ଏହି ତିନି ଦେବତାଙ୍କ ମଧ୍ୟରୁ ପ୍ରତ୍ୟେକ କଳ୍ପିତ ହୋଇଛନ୍ତି ସମଗ୍ର ଭାବେ ଏହି ଜଗତର ପ୍ରତୀକ ହିସାବରେ । ଯଥା, ବିଷ୍ଣୁଙ୍କର ଉପାସକମାନେ ତାଙ୍କୁ କେବଳ ବିଶ୍ୱବ୍ରହ୍ମାଣ୍ଡର ପାଳନକର୍ତ୍ତା ବୋଲି ବିଗ୍ରହ କରୁ ନଥିଲେ, ତାଙ୍କୁ ସୃଷ୍ଟିକର୍ତ୍ତା ଓ ଧ୍ୱଂସକର୍ତ୍ତା ବୋଲି ମଧ୍ୟ ମନେ କରୁଥିଲେ । ସେଇପରି ଶିବଙ୍କୁ ମଧ୍ୟ ମନେ କରାଯାଉଥିଲା ବିଶ୍ୱବ୍ରହ୍ମାଣ୍ଡର ଏହି ତିନି ମୂଳ ରହସ୍ୟର ନିୟନ୍ତା ରୂପେ । ହିନ୍ଦୁ ଧର୍ମର ଏହି ବୈଶିଷ୍ଟ୍ୟଟି ଅବଶ୍ୟମ୍ଭାବୀ ରୂପେ ଧର୍ମୀୟ ସହନଶୀଳତାର ଉତ୍ସ ଥିଲା ଏବଂ ଏହା ଫଳରେ ଏହି ଧର୍ମର ପରିଧି ମଧ୍ୟରେ ବିଭିନ୍ନ ଧର୍ମୀୟ ଓ ଦାର୍ଶନିକ ଚିନ୍ତାଧାରା ସହଅବସ୍ଥାନ ସମ୍ଭବ ହୋଇଥିଲା ।

## ଶୈବ ଧର୍ମ

ବୈଷ୍ଣବ ଧର୍ମ ସାଙ୍଱୍ଗକୁ ଶୈବ ଏବଂ ଶକ୍ତି ମତବାଦ ମଧ୍ୟ ବିପୁଳ ଜନପ୍ରିୟତା ଲାଭ କରିଥିଲା । ବ୍ରାହ୍ମଣ୍ୟ ଧର୍ମ ସାହିତ୍ୟରେ ଶିବ ବର୍ଣ୍ଣିତ ହୋଇଛନ୍ତି ବୈଦିକ ଦେବତା ରୁଦ୍ରଙ୍କର ସମାର୍ଥକ ହିସାବରେ । ଏହି ରୁଦ୍ର ହେଉଛନ୍ତି ମଣିଷ ପ୍ରତି ଶତ୍ରୁ ଭାବାପନ୍ନ ନିଷ୍ଠୁର ଦଳେ ଭୂତପ୍ରେତ ପରିବେଷ୍ଟିତ ଝଞ୍ଜା ଆଉ ପ୍ରବଳ ସାମୁଦ୍ରିକ ଝଡ଼ର ଦେବତା । ତେବେ ଶିବ ଏବଂ ରୁଦ୍ରଙ୍କୁ ପରବର୍ତ୍ତୀ ଏକ ପର୍ଯ୍ୟାୟରେ ଏହି ଭାବେ ଏକ କରି ଦେଖାଯାଇଥିଲା । ବସ୍ତୁତଃ, ଏହା ଥିଲା ବ୍ରାହ୍ମଣ୍ୟ ଧର୍ମ ମଧ୍ୟରେ ସ୍ଥାନୀୟ ଭାବେ

ଉପାସ୍ୟ ଏକ ଦେବତାଙ୍କୁ ଅନ୍ତର୍ଭୁକ୍ତ କରି ନେବା ଏବଂ ଏହି ଦେବତାଙ୍କର ପୂଜା ଭାରତୀୟ ଉପମହାଦେଶର ଦକ୍ଷିଣାଂଶର ଜନସାଧାରଣଙ୍କ ମଧ୍ୟରେ ପ୍ରଚଳିତ ଧର୍ମବିଶ୍ୱାସ ସହିତ ସଂପର୍କିତ । ନାରାୟଣ-ବିଷ୍ଣୁ ଉପାସନା ଯେପରି ଦେଶର ଉତ୍ତରାଞ୍ଚଳୀୟ ଜନସାଧାରଣଙ୍କ ଧର୍ମବିଶ୍ୱାସର ପ୍ରତିଫଳନ ଥିଲା, ଏହା ମଧ୍ୟ ଠିକ୍ ସେଇଭଳି ଥିଲା ।

ଶିବଙ୍କ ଉପାସନା ଉଚ୍ଛ୍ୱସିତ ଭାବାବେଗ ସହିତ ଯୁକ୍ତ । ଶ୍ମଶାନରେ ଶିବ ନୃତ୍ୟ କରୁଛନ୍ତି, ଶବଦାହର ଚିତାଭସ୍ମରେ ତାଙ୍କ ଦେହ ଆବୃତ ଏବଂ ଫୁଲମାଳା ପରିବର୍ତ୍ତେ କଣ୍ଠରେ ତାଙ୍କର ଝୁଲୁଛି ନରଖପୁରିର ମାଳ । ନିଃସ୍ୱ ସନ୍ୟାସୀ ବେଶରେ ଯେତେବେଳେ ସେ ମର୍ତ୍ତ୍ୟରେ ଆବିର୍ଭୂତ ହେଲେ, ସେତେବେଳେ ମଣିଷ ମୁଣ୍ଡର ଖପୁରି ହେଲା ତାଙ୍କର ଭିକ୍ଷା ପାତ୍ର । ତାଙ୍କର ଅନ୍ୟାନ୍ୟ ବେଶଭୂଷା ମଧ୍ୟରେ ବିକଟାଳ ଶକ୍ତି ଓ ପରାକ୍ରମ ପ୍ରକାଶ ପାଇଛି : ସେ ବାଘ ଛାଲ ପିନ୍ଧିଛନ୍ତି, ହସ୍ତରେ ଅସ୍ତ୍ର ତ୍ରିଶୂଳ, ଧନୁ ଏବଂ କୁଠାର । ତେବେ, ଧ୍ୱଂସ ହେଲା ତାଙ୍କ କ୍ରିୟାକଳାପର ମାତ୍ର ଗୋଟିଏ ଦିଗ । ଶିବ ହେଉଛନ୍ତି ସନ୍ୟାସୀ ଆଉ ପଶୁବଳିର ଦେବତା, ଦୈନନ୍ଦିନ ଜୀବନରେ ମଣିଷର ରକ୍ଷାକର୍ତ୍ତା ।

ପାଣିନି, ପତଞ୍ଜଳି ଏବଂ ମେଗାସ୍ଥେନିସ୍‌ଙ୍କ ରଚନାବଳୀରେ ମଗଧ, ମୌର୍ଯ୍ୟ ଓ ଶୁଙ୍ଗ ରାଜାମାନଙ୍କ ଅମଳରେ ଉତ୍ତର ଭାରତରେ ଶୈବ ଧର୍ମର ପ୍ରସାର ଘଟିଥିଲା ବୋଲି ଜଣାଯାଏ । ପାଣିନି ତାଙ୍କ ବ୍ୟାକରଣରେ ଶିବ ଉପାସକମାନଙ୍କ କଥା ଲେଖିଛନ୍ତି, ପତଞ୍ଜଳି ଲେଖିଛନ୍ତି ଶିବଲିଙ୍ଗ ସ୍ଥାପନ କଥା । ମେଗାସ୍ଥେନିସ୍ ଯେଉଁ "ଭାରତୀୟ ଡାଇଓନିସିୟସ୍‌ଙ୍କ" କଥା ଉଲ୍ଲେଖ କରିଛନ୍ତି, ଶିବଙ୍କୁ ପାହାଡ଼ ଅଞ୍ଚଳର ବାସିନ୍ଦାମାନଙ୍କ ମଧ୍ୟରେ ଜନପ୍ରିୟ ଦେବତା ବୋଲି କୁହାଯାଇଛି (ଭାରତୀୟ କିଂବଦନ୍ତୀମାନଙ୍କରେ "ପର୍ବତାଧିପତି ଦେବତାଙ୍କ" ସହିତ ତୁଳନୀୟ), ଢୋଲ ବଜେଇ ଓ ପଶୁବଳି ଦେଇ ସେମାନେ ତାଙ୍କ ପୂଜାର ବିଶେଷ ଅନୁଷ୍ଠାନ କରୁଥିଲେ (ଶିବ ପୂଜା ସହିତ ଏହାର ପୂରାପୂରି ମିଳିଥାଏ) ।

କୁଷାଣ ରାଜତ୍ୱକାଳର ମୁଦ୍ରାରେ ଶିବଙ୍କ ପ୍ରତିମୂର୍ତ୍ତି ଦେଖିବାକୁ ମିଳେ ।

ଗଣେଶ ଏବଂ ସ୍କନ୍ଦଙ୍କୁ ତାଙ୍କର ଚିରସଙ୍ଗୀ ରୂପେ ଦେଖାଯାଏ । ଅଥଚ ଏହି ଦୁଇ ଦେବତା ଇତିପୂର୍ବରୁ ନିଜ ଅଧିକାର ବଳରେ ସ୍ୱାଧୀନ ଦୁଇ ଦେବତା ହିସାବରେ ପ୍ରତିଷ୍ଠିତ ଥିଲେ ବୋଲି ମନେ ହୁଏ । ଗଣେଶଙ୍କ ଚେହେରାରେ ପ୍ରାଚୀନ କାଳର ବୈଶିଷ୍ଟ୍ୟ ରହିଛି । ଏହି ସମୟରେ ଗଣେଶଙ୍କୁ ହସ୍ତିମୁଣ୍ଡ ଏବଂ ନର ଦେହ ବିଶିଷ୍ଟ ଦେବତା ରୂପେ ଦେଖିବାକୁ ମିଳେ, ପାଦ ତଳେ ତାଙ୍କର ଏକ ମୂଷିକ । ଗଣେଶ ସେତେବେଳେ ଦୈତ୍ୟମାନଙ୍କ ଜଗତ, ପାତାଳ ରାଜ୍ୟ ସହିତ ସଂଶ୍ଲିଷ୍ଟ ଥିଲେ । ଶୈବ ଧର୍ମର ଦେବତା ମଣ୍ଡଳୀଙ୍କ ମଧ୍ୟରେ ଗଣେଶଙ୍କର ଏହି ଅନ୍ତର୍ଭୁକ୍ତି ଥିଲା ଏକ କୃତ୍ରିମ ଆପୋଷର କଥା ଏବଂ ଅନେକ କାଳ ପରେ ଏହା ଘଟିଥିଲା ।

ଶିବଙ୍କ ଅନୁରକ୍ତ ପୁତ୍ର ସ୍କନ୍ଦ ହେଉଛନ୍ତି ପ୍ରେମ କଳାରେ ଅନଭିଜ୍ଞ, ନିର୍ମଳ ଚରିତ୍ର ଏକ ଯୁବକ ଏବଂ ଅଯୋନିସମ୍ଭୂତ (ଶାସ୍ତ୍ରୀୟ ଉପାଖ୍ୟାନ ଅନୁଯାୟୀ ଶିବଙ୍କଠାରୁ ପ୍ରତ୍ୟକ୍ଷ ଭାବେ ତାଙ୍କର ଜନ୍ମ) । ସେ ହେଉଛନ୍ତି ଦେବମାନଙ୍କ ଦଳର ଅଧିପତି ଏବଂ ତାଙ୍କ ଜୀବନୀ ସହିତ ସଂପୃକ୍ତ ଉପାଖ୍ୟାନାଦିରେ ଶତ୍ରୁ ଭାବାପନ୍ନ ଦୈତ୍ୟମାନଙ୍କ ବିରୁଦ୍ଧରେ ତାଙ୍କ ସଂଗ୍ରାମ ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ହିନ୍ଦୁ ଧର୍ମ ଶାସ୍ତ୍ରରେ ସ୍କନ୍ଦ ହେଉଛନ୍ତି ସମସ୍ତ ଜଟିଳ ଚରିତ୍ରଗୁଡ଼ିକ ମଧ୍ୟରୁ ଅନ୍ୟତମ ।

ନାରାୟଣ-ବିଷ୍ଣୁ ଶିବଙ୍କ ଭଳି ପୌରାଣିକ ଦେବତାମାନଙ୍କୁ ଆତ୍ମସ୍ଥ କରି ନେଇ ପରେ

ବ୍ରାହ୍ମଣ୍ୟ ଧର୍ମ ପରମା ଈଶ୍ୱରୀ, ଶକ୍ତି ପୂଜାକୁ ଗ୍ରହଣ କରି ନେଇଥିଲା । ସମଗ୍ର ଭାରତବର୍ଷରେ ସେତେବେଳେ ବିଭିନ୍ନ ରୂପ ଆଉ ଧରଣରେ ଶକ୍ତି ପୂଜା ବ୍ୟାପକ ଭାବେ ପ୍ରଚଳିତ ଥିଲା । ମୂଳତଃ ଏହି ପ୍ରକ୍ରିୟାର ସୂତ୍ରପାତ ଘଟିଥିଲା ହିନ୍ଦୁ ଧର୍ମରେ ଗୃହୀତ ପୁରୁଷ ଦେବତାମାନଙ୍କ ସହିତ ସେମାନଙ୍କ ସଙ୍ଗିନୀ ନାରୀ ଦେବତାମାନଙ୍କ ପୂଜା ପ୍ରଚଳିତ ହେବା ଫଳରେ । ଯଥା, ଲକ୍ଷ୍ମୀ (ବିଷ୍ଣୁଙ୍କ ପତ୍ନୀ) ଏବଂ ଉମା ବା ପାର୍ବତୀଙ୍କ (ଶିବଙ୍କ ପତ୍ନୀ) ଆରାଧନା ।

ହିନ୍ଦୁ ପୂଜା ପଦ୍ଧତି ଓ ଆଗ୍ରର ଅନୁଷ୍ଠାନ କେତେକାଂଶରେ ମୌଳିକ ଭାବେ ବ୍ରାହ୍ମଣ୍ୟ ପଦ୍ଧତିଠାରୁ ପୃଥକ୍ ଥିଲା । ମଧ୍ୟ ଯୁଗର ପ୍ରାରମ୍ଭରେ ନାନା ବିବର୍ତ୍ତନ ମଧ୍ୟ ଦେଇ ଏହି ପ୍ରଥମୋକ୍ତ ପୂଜା ପଦ୍ଧତିର ଆବିର୍ଭାବ ଘଟିଥିଲା ଏବଂ ଏପର୍ଯ୍ୟନ୍ତ ରକ୍ଷଣଶୀଳ ବ୍ରାହ୍ମଣମାନଙ୍କ ମଧ୍ୟରେ କୌଣସି ପରିବର୍ତ୍ତନ ବ୍ୟତୀତ ଏହା ଅବ୍ୟାହତ ରହିଯାଇଛି । ଅଧିକାଂଶ କ୍ଷେତ୍ରରେ ହିନ୍ଦୁ ଧର୍ମ ପ୍ରାଚୀନ ଦେବତାମାନଙ୍କ ବଦଳରେ ସମଗ୍ର ଭାରତରେ ପରିବ୍ୟାପ୍ତ ଏକ ଧର୍ମର ନୂତନ ଦେବଦେବୀମାନଙ୍କୁ ଗ୍ରହଣ କରି ନେଇଛି । ଏହି ଭାବେ ପ୍ରଜାପତି ବ୍ରହ୍ମାଙ୍କ ସହିତ ଏବଂ କେତେକ ପରିମାଣରେ ନାରାୟଣଙ୍କ ସହିତ ମଧ୍ୟ ଏକ ହୋଇ ଯାଇଛନ୍ତି ।

ଏସବୁ ସହିତ କେତେକ ମୌଳିକ ଉପାଦାନର ମଧ୍ୟ ଆବିର୍ଭାବ ଘଟିଛି । ପ୍ରାଚୀନ ଧର୍ମରେ ପୂଜା ଅନୁଷ୍ଠାନ ପାଇଁ ପୃଥକ୍ ପୂଜା ଗୃହ ବା ମନ୍ଦିରର ପ୍ରୟୋଜନ ହେଉ ନଥିଲା । ଦେବତାମାନଙ୍କର ପାର୍ଥିବ ମୂର୍ତ୍ତି ତିଆରି କରିବା ସେତେବେଳେ ଜଣା ନଥିଲା । ମଧ୍ୟ ଯୁଗର ପ୍ରାରମ୍ଭରେ ଏହି ନୂତନ ପର୍ଯ୍ୟାୟରେ ହିନ୍ଦୁ ଧର୍ମର ପ୍ରକାଶ ଘଟିଲା ସବୁଠାରୁ ବେଶି କରି ଭିନ୍ନ ଧରଣର ପୂଜା ପଦ୍ଧତି ପ୍ରଚଳନ ମଧ୍ୟ ଦେଇ । ଅର୍ଥାତ୍, ମନ୍ଦିରଗୁଡ଼ିକୁ ସେତେବେଳେ "ଦେବତାମାନଙ୍କର ଗୃହ" ବୋଲି ଗଣ୍ୟ କରାଗଲା । ପୁରୋହିତମାନଙ୍କର ଏକମାତ୍ର କାର୍ଯ୍ୟ ହେଲା ସେମାନଙ୍କ "ପୃଷ୍ଠପୋଷକମାନଙ୍କର" ମଙ୍ଗଳ କାମନା କରି ନିରନ୍ତର ପୂଜା ପାଠରେ ଲିପ୍ତ ରହିବା ଏବଂ ସେମାନେ ଦେବ ମୂର୍ତ୍ତି ଓ ବିଭିନ୍ନ ଦେବତାମାନଙ୍କର ବ୍ୟକ୍ତିଗତ ଉପସ୍ଥିତିର ପ୍ରତୀକ ହୋଇ ଉଠିଲେ । ଦେବ ମୂର୍ତ୍ତିଗୁଡ଼ିକୁ ସେତେବେଳେ ପ୍ରତିଦିନ ପ୍ରଭାତରେ ଆନୁଷ୍ଠାନିକ ଭାବେ ସ୍ନାନ କରାଗଲା ଏବଂ ସୁଗନ୍ଧୀ ଜଳ ବର୍ଷଣ କରାଇ ସ୍ନିଗ୍ଧ କରାଗଲା । ଦେବତା ଯେପରି ତାଙ୍କ ଭକ୍ତବୃନ୍ଦଙ୍କୁ ସ୍ୱଚକ୍ଷୁରେ ଦେଖି ସନ୍ତୁଷ୍ଟ ହୋଇ ପାରନ୍ତି, ସେଥି ପାଇଁ ତାଙ୍କୁ ସହରର ରାସ୍ତାମାନଙ୍କରେ ଘୂରେଇ ପୁଣି ସନ୍ଧ୍ୟାବେଳକୁ ମନ୍ଦିରକୁ ଫେରସ୍ତ ଅଣାଗଲା । ସଂଧ୍ୟାରେ ତାଙ୍କୁ ଗୀତବାଦ୍ୟ ଏବଂ ପେଶାଦାର ନର୍ତ୍ତକୀମାନଙ୍କ ଦ୍ୱାରା ଅନୁଷ୍ଠିତ ବିଶଦ ଜଟିଳ ନୃତ୍ୟକଳା ମଧ୍ୟ ଦେଇ ତୁଷ୍ଟ କରାଗଲା ।

ଏହି ମଧ୍ୟ ଯୁଗର ସୂତ୍ରପାତ ବେଳଠୁଁ ହିନ୍ଦୁ ସ୍ଥାପତ୍ୟ କଳା ମଧ୍ୟ ଦ୍ରୁତ ବିକଶିତ ହେବାକୁ ଲାଗିଲା । ମଧ୍ୟ ଯୁଗରେ ନିର୍ମିତ ଦେବ ମନ୍ଦିରଗୁଡ଼ିକ ଭାରତୀୟ ଶିଳ୍ପ ଇତିହାସରେ ଗୁରୁତ୍ୱପୂର୍ଣ୍ଣ କୀର୍ତ୍ତିର ପରିଚ୍ଛାୟକ ।

## ଭଗବତ୍‌ଗୀତା

"ମହାଭାରତର" ଷଷ୍ଠ ଅଧ୍ୟାୟରେ ବର୍ଣ୍ଣିତ ଛୋଟ ଏକ ପ୍ରକରଣ ମାତ୍ର ହେଲେ ମଧ୍ୟ ଭାରତର ଧର୍ମୀୟ ଜୀବନଯାତ୍ରାରେ "ଭଗବତ୍‌ଗୀତା" ବିପୁଳ ଗୁରୁତ୍ୱ ବହନ କରିଛି । ଯୁଗେ ଯୁଗେ ହିନ୍ଦୁ ଧର୍ମ କ୍ଷେତ୍ରରେ ଯେଉଁମାନେ ବିଶିଷ୍ଟ ବିଶେଷଜ୍ଞ ହିସାବରେ ଆବିର୍ଭୂତ ହୋଇଛନ୍ତି, ସେମାନେ ଗୀତା

ସଂପର୍କରେ ସେମାନଙ୍କ ଭାଷ୍ୟ ପ୍ରଦାନ କରିବା କିମ୍ବା ଗୀତାରେ ବିବୃତ ଧର୍ମଶିକ୍ଷା ସମ୍ବନ୍ଧରେ, ଖୁବ୍ କମ୍ ପକ୍ଷେ, ସେମାନଙ୍କ ମତାମତ ବ୍ୟକ୍ତ କରିବାକୁ ବାଧ୍ୟତାମୂଳକ ବୋଲି ବିଗ୍ଭର କରୁଥିଲେ । ୟୁରୋପରେ ଭାରତତତ୍ତ୍ୱ ରୂପ ପରିଗ୍ରହ କଲା ବେଳେ ୟୁରୋପୀୟମାନେ ଗୀତାକୁ ଆବିଷ୍କାର କରିଥିଲେ ଏବଂ ଏ ସଂପର୍କରେ ସେମାନଙ୍କ ଦ୍ୱାରା ଲିଖିତ ବିପୁଳ ସଂଖ୍ୟକ ଗବେଷଣାତ୍ମକ ଗ୍ରନ୍ଥଗୁଡ଼ିକ ଭାରତରେ ପ୍ରଚଳିତ ଗୀତାର ଭାଷ୍ୟ ଗ୍ରନ୍ଥ ସମୁଦ୍ରରେ ଯୁକ୍ତ ହୋଇଥିଲା ।

ଏହି ଅସାଧାରଣ ଧର୍ମଗ୍ରନ୍ଥଟିର ବିଷୟବସ୍ତୁର ସଂକ୍ଷିପ୍ତ ବିଷୟବସ୍ତୁ ହେଉଛି : ମହାକାବ୍ୟ "ମହାଭାରତରେ" ବର୍ଣ୍ଣିତ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଜ୍ଞାତିଗତ ଶତ୍ରୁତାର ପରିଣତି ସ୍ୱରୂପ କୁରୁକ୍ଷେତ୍ରରେ ମହାସମର ଅନୁଷ୍ଠିତ ହୋଇଥିଲା । ତା'ର ଏକ ଘଟଣା ହେଉଛି ପଞ୍ଚ ପାଣ୍ଡବଙ୍କ ମଧ୍ୟରୁ ଜଣେକ ଭ୍ରାତା ଅର୍ଜୁନ ଭ୍ରାତୃଘାତୀ ଯୁଦ୍ଧର ସୂଚନା ମୁହୂର୍ତ୍ତରେ ଯୁଦ୍ଧ କ୍ଷେତ୍ରରେ ନିଜର ଆତ୍ମୀୟ ସ୍ୱଜନଙ୍କୁ ସମବେତ ହେଉଥିବାର ଦେଖି ଯୁଦ୍ଧରେ ପ୍ରବୃତ୍ତ ହେବାକୁ ଅସ୍ୱୀକାର କଲେ ଏବଂ ତାଙ୍କର ସାରଥୀ କୃଷ୍ଣଙ୍କ ଠାରୁ ଏ ବିଷୟରେ ସୁପରାମର୍ଶ ପ୍ରାର୍ଥନା କଲେ । ପ୍ରତ୍ୟୁତ୍ତରରେ କୃଷ୍ଣ ତାଙ୍କୁ କ୍ଷତ୍ରିୟ ଧର୍ମୋଚିତ ଏହି କର୍ତ୍ତବ୍ୟର କଥା ସ୍ମରଣ କରାଇ ଦେଇ ନ୍ୟାୟ ଯୁଦ୍ଧକୁ ଏଡ଼େଇ ଯିବା ଅସମ୍ଭବ ଏବଂ ଅନୁଚିତ ବୋଲି କହିଥିଲେ । ଏହା ପରେ ଅର୍ଜୁନ କୃଷ୍ଣଙ୍କର ଏହି ବିଗ୍ଭରକୁ ସଠିକ ବୋଲି ଗ୍ରହଣ କରିଥିଲେ ଏବଂ ଯୁଦ୍ଧରେ ପ୍ରବୃତ୍ତ ହେଲେ । ତେବେ "ମହାଭାରତରେ" ବର୍ଣ୍ଣିତ ମୁଖ୍ୟ ବିଷୟଟି ସହିତ ଯୁକ୍ତ ଏହି ଘଟଣାଟି ଗୀତାରେ କେବଳ ମାତ୍ର ପ୍ରଥମ କେତୋଟି ଅଧ୍ୟାୟରେ ଉଲ୍ଲେଖ ଅଛି । ପ୍ରଧାନତଃ, ଏହାର ବିଷୟବସ୍ତୁ ହେଉଛି, ମଣିଷର ଭବିତବ୍ୟ, ନୈତିକତାର ନିର୍ଯ୍ୟାସ ଏବଂ ପାର୍ଥିବ ଓ ସ୍ୱର୍ଗୀୟ ଜୀବନ ମଧ୍ୟରେ ପାରସ୍ପରିକ ସଂପର୍କ ବିଷୟରେ ଏକ କଥୋପକଥନ ବା ପ୍ରଶ୍ନୋତ୍ତରମାଳା । "ମହାଭାରତ" ମହାକାବ୍ୟର ବୀର ଚରିତ୍ରଗୁଡ଼ିକ ମଧ୍ୟରେ ଅନ୍ୟତମ କୃଷ୍ଣ ଏଠାରେ ସର୍ବଶକ୍ତିମାନ ଭାଗବତ୍‌ଙ୍କ ପାର୍ଥିବ ରୂପ ବା ଅବତାର ରୂପରେ ପ୍ରକଟିତ ହୋଇଛନ୍ତି । କୃଷ୍ଣଙ୍କର ମନ୍ତ୍ରଣା ଏହି ଯୁଦ୍ଧର ଔଚିତ୍ୟ ବା ଅନୌଚିତ୍ୟର ଉତ୍ତର ଦାନ ମଧ୍ୟରେ ସୀମିତ ନୁହେଁ । ଏହା ହେଉଛି ସମୃଦ୍ଧ ଏକ ଦାର୍ଶନିକ ଆଲୋଚନା, ଏକ ସାମଗ୍ରିକ ଧର୍ମୀୟ ଓ ଦାର୍ଶନିକ ତତ୍ତ୍ୱ ବିଶେଷ । ଗୀତାର ବିଷୟବସ୍ତୁ ଶୀର୍ଷଦେଶରେ ପହଞ୍ଚିଛି ଅର୍ଜୁନଙ୍କ "ଅନ୍ତଃଦୃଷ୍ଟି" ଲାଭ ବା ଜ୍ଞାନ ପ୍ରାପ୍ତି ସହିତ ; ଯେତେବେଳେ ସେ ଅନୁଭବ କରିଛନ୍ତି ଯେ, ସେ କେବଳ ଜଣେ ଯୋଦ୍ଧା, କ୍ଷତ୍ରିୟ ଓ କୌରବମାନଙ୍କର ପ୍ରତିପକ୍ଷ ନୁହନ୍ତି, ସ୍ୱୟଂ ଭାଗବତ୍ କୃଷ୍ଣ ଅବତାର ଗ୍ରହଣ କରି ତାଙ୍କୁ ଯେଉଁ ନୂତନ ଧର୍ମରେ ଦୀକ୍ଷିତ କରିଛନ୍ତି, ତା'ର ସେ ହେଉଛନ୍ତି ଜଣେ ଏକନିଷ୍ଠ ଅନୁଗାମୀ ।

ଗୀତାରେ ଯେଉଁ ଧର୍ମୀୟ ମତବାଦ ପ୍ରଗ୍ଭରିତ ହୋଇଛି, ତାହା ଏପରି ଏକ ଯୁଗରେ ରୂପ ପରିଗ୍ରହ କରିଥିଲା, ଯେତେବେଳେ ଉପନିଷଦସମୂହର ଅନୁଗାମୀ ବ୍ରାହ୍ମଣ୍ୟ ଧର୍ମ, ବୌଦ୍ଧ ଧର୍ମ ଓ ଅଜୀବିକ୍‌ବାଦ ଭଳି ବ୍ୟାପକ ଭାବେ ଭିନ୍ନ ଭିନ୍ନ ପ୍ରକୃତିର ଧର୍ମୀୟ ଏବଂ ଧର୍ମୀୟ-ଦାର୍ଶନିକ ଚିନ୍ତାଧାରାଗୁଡ଼ିକର ଅସ୍ତିତ୍ୱ ବଜାଏ ରହିଥିଲା ଏବଂ ଯେତେବେଳେ ସାଂଖ୍ୟ ଓ ଯୋଗ ଦର୍ଶନର ଧାରାଗୁଡ଼ିକର ଉଦ୍‌ଭବ ଘଟିଥିଲା । ଉପରୋକ୍ତ ଏହିସବୁ ମତବାଦ ସହିତ ମିଶ୍ରକ୍ରିୟା ମଧ୍ୟ ଦେଇ ଏବଂ ସେସବୁର କେତେକ ତତ୍ତ୍ୱକୁ ଆତ୍ମସ୍ଥ କରିବା ସଙ୍ଗେ ସଙ୍ଗେ ଗୀତା ଏକ ସଂପୂର୍ଣ୍ଣ ସ୍ୱତନ୍ତ୍ର ଏବଂ ବହୁ ଦିଗନ୍ତ ମୌଳିକ ଏକ ଭାବନା ସମଷ୍ଟିର ଆକାର ହିସାବରେ ସ୍ୱମହିମାରେ ପ୍ରତିଷ୍ଠିତ ହୋଇ ପାରିଛି । ରକ୍ଷଣଶୀଳ ପରମ୍ପରାର ଢାଞ୍ଚା ମଧ୍ୟରେ ବ୍ରହ୍ମଣ୍ୟବାଦର ଧ୍ୟାନଧାରଣାକୁ ସଂସ୍କାର

କରିବାର ଏହା ଏକ ପ୍ରୟାସ ଏବଂ ଏହି ପ୍ରୟାସର ଲକ୍ଷ୍ୟ ଥିଲା ଗୁରୁତର ସାମାଜିକ ଓ ଆତ୍ମିକ ପରିବର୍ତ୍ତନର ଏକ ଯୁଗରେ ଉପରୋକ୍ତ ସେହି ପରମ୍ପରାକୁ ସଂହତ କରିବା । ଏହି କାରଣରୁ ଗୀତାରେ ଥିବା ଦାର୍ଶନିକ ଧ୍ୟାନଧାରଣାର ପ୍ରକୃତ ଚରିତ୍ରକୁ ସେତିକିବେଳେ ଉପଲବ୍ଧି କରି ହୁଏ, ଯେତେବେଳେ ଏହି ଧ୍ୟାନଧାରଣାଗୁଡ଼ିକ ସହିତ ଉପନିଷଦସମୂହରେ ଆଲୋଚିତ ଓ ସଂସାର ଭିତ୍ତିକ ନାନା ଧର୍ମମତ ଓ ଧର୍ମ ସଂପ୍ରଦାୟ ଦ୍ୱାରା ପ୍ରଚାରିତ ବହୁ ଧ୍ୟାନଧାରଣାକୁ ତୁଳନା କରାଯାଏ ।

ପାଠଗତ ବିଶ୍ଳେଷଣ ଦ୍ୱାରା ଜଣାଯାଇଛି ଯେ, ଗୀତା ରଚିତ ହୋଇଥିଲା ପ୍ରାରମ୍ଭିକ ଉପନିଷଦଗୁଡ଼ିକ ରଚିତ ହେବାର (ଅର୍ଥାତ୍, ଖ୍ରୀଷ୍ଟ ପୂର୍ବ ସପ୍ତମରୁ ପଞ୍ଚମ ଶତାବ୍ଦୀ ମଧ୍ୟରେ) ପରବର୍ତ୍ତୀ କାଳରେ । ଏବଂ ଏହି ଗ୍ରନ୍ଥଟି ଆନୁମାନିକ ଭାବେ ତଥାକଥିତ ମଧ୍ୟବର୍ତ୍ତୀ ଉପନିଷଦସମୂହ ରଚନାର (ଅର୍ଥାତ୍, ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀରୁ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ) ସମକାଳୀନ । ଏହି ଧାରାବାହିକତାକୁ ରକ୍ଷା କରିବା ଗୀତାର ରଚୟିତାମାନଙ୍କର ପୂରାପୂରି ଇଚ୍ଛାକୃତ ଥିଲା ବୋଲି ମନେ ହୁଏ । କାରଣ ଏହାର ପ୍ରତିଫଳନ କେବଳ ମୂଳ ମତବାଦର ଅନ୍ତର୍ଗତ ବହୁ ନୀତିର ଐକ୍ୟ–ସଂବନ୍ଧ ଓ ଏକା ରକମର ଶବ୍ଦାବଳୀର ବ୍ୟବହାର ମଧ୍ୟରେ ଦେଖାଯାଏ ନାହିଁ, ବହୁ କ୍ଷେତ୍ରରେ ପ୍ରତ୍ୟକ୍ଷ, ପ୍ରାୟ ଆକ୍ଷରିକ ମେଳ ମଧ୍ୟ ଦେଖାଯାଏ ।

ଗୀତାର ରଚୟିତାଗଣ ସାଂଖ୍ୟ ଓ ଯୋଗ ଦର୍ଶନର ପ୍ରାଥମିକ ପର୍ଯ୍ୟାୟଗୁଡ଼ିକ ସହିତ ସେମାନଙ୍କ ପରିଚିତିର କଥା ମଧ୍ୟ ଗୋପନ ରଖି ନାହାନ୍ତି (ଉପରୋକ୍ତ ଏହି ଦୁଇଟି ଦାର୍ଶନିକ ଚିନ୍ତାଧାରାର ଉଦ୍‌ଭବ ସଂପର୍କରେ ଗୀତାରୁ ନାନା ଅମୂଲ୍ୟ ତଥ୍ୟ ମିଳିଥାଏ) । ଏପରିକି ଗୀତାରେ ଏବଂ ପ୍ରାରମ୍ଭିକ ଯୁଗର ବୌଦ୍ଧ ଗ୍ରନ୍ଥଗୁଡ଼ିକରେ ଉଲ୍ଲିଖିତ ପାରିଭାଷିକ ଶବ୍ଦାବଳୀ ଓ ଦାର୍ଶନିକ ପ୍ରସ୍ତାବନାଦି ମଧ୍ୟରେ ଅଭିନ୍ନତାର ବହୁ ଉଦାହରଣ ମିଳିଥାଏ, ଯଦିଓ ଏହି ଦୁଇଟି ଦାର୍ଶନିକ ଚିନ୍ତାଧାରାର ସାମଗ୍ରିକ ଚରିତ୍ର ମଧ୍ୟରେ ପାର୍ଥକ୍ୟ ଅନେକ ବେଶି । ଗୀତାରେ ସମାବିଷ୍ଟ ଧର୍ମୀୟ ଓ ଦାର୍ଶନିକ ସିଦ୍ଧାନ୍ତଗୁଡ଼ିକ ରୂପ ପରିଗ୍ରହ କରିଥିଲା ପାରମ୍ପରିକ ବ୍ରହ୍ମଣ୍ୟ ଧର୍ମମତକୁ ତଦାନୀନ୍ତନ ନୂତନ ଯୁଗର ନାନା ଦାବୀ ସହିତ ଖାପ ଖୁଆଇ ନେବା ଦିଗରେ ପୁରୋହିତତନ୍ତ୍ରର ପ୍ରୟାସ ଫଳରେ । ଏହା ଅର୍ଜିତ ନବତମ ସାଫଲ୍ୟଗୁଡ଼ିକୁ ମଧ୍ୟ ବିବେଚନା କରିଥିଲା ।

ଅନ୍ୟାନ୍ୟ ଭାରତୀୟ ଧର୍ମମତ ଭଳି ଗୀତାରେ ସମାବିଷ୍ଟ ମତବାଦ ମଧ୍ୟ ସେଇସବୁ ପଥର ସନ୍ଧାନ ଓ ତା'ର ବର୍ଣ୍ଣନାକୁ ତା'ର ପ୍ରଧାନ କର୍ତ୍ତବ୍ୟ ବୋଲି ଗଣ୍ୟ କରିଛି, ଯାହା ତା'ର ଅନୁଗାମୀମାନଙ୍କୁ "ପରମ ଧର୍ମୀୟ ଲକ୍ଷ୍ୟ", ଅର୍ଥାତ୍, "ମୁକ୍ତି", ଅଥବା "ମୋକ୍ଷ" ଲାଭ ପଥରେ ପରିଗ୍ୱଳନା କରି ପାରେ । ତେବେ ଗୀତାର ବୈଶିଷ୍ଟ୍ୟ ହେଉଛି ଏହା (ଯଥା, ଧରାଯାଇ ପାରେ, ଉପନିଷଦଗୁଡ଼ିକ ଭଳି) କେବଳ ମାତ୍ର "ମୋକ୍ଷ ଲାଭର ନାନା ବିଧ ପଥକୁ" (ବା ମାର୍ଗ) ଅଙ୍ଗୀକାର କରି ନାହିଁ, "ଜ୍ଞାନ ପଥ" (ବା ଜ୍ଞାନ-ମାର୍ଗ), "କର୍ମ ପଥ" (ବା କର୍ମ-ମାର୍ଗ) ଏବଂ "ଧର୍ମୀୟ (ବା ଐଶ୍ୱରିକ) ପ୍ରେମର ପଥ" (ବା ଭକ୍ତି-ମାର୍ଗ)–ମୋକ୍ଷର ଏହି ତିନୋଟି ପଥର ଧାରାକୁ ବିଶଦ ଭାବେ ବ୍ୟାଖ୍ୟା କରିଛି । ଏହି ତିନୋଟି ପଥ ମଧ୍ୟରୁ କେଉଁଟି ଯେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ, ଗୀତାରେ ତା'ର କୌଣସି ଦ୍ୱ୍ୟର୍ଥହୀନ ସଂକେତ ନାହିଁ । ତେବେ ଯେଉଁ କ୍ରମିକ ଧାରାବାହିକତାରେ ଏହି ପଥଗୁଡ଼ିକ ବିବୃତ ହୋଇଛି, ସେଥିରୁ ମନେ ହୁଏ, "ଐଶ୍ୱରିକ ପ୍ରେମ" ତତ୍ତ୍ୱର ବ୍ୟାଖ୍ୟା ଦ୍ୱାରା କାବ୍ୟଟିରେ ଓତପ୍ରୋତ ଧର୍ମଭିତ୍ତିକ କରୁଣରସ ଚରମତା ସ୍ପର୍ଶ କରିଛି । ଏଥି ସଙ୍ଗେ ସଙ୍ଗେ ସମାନ ଗୁରୁତ୍ୱପୂର୍ଣ୍ଣ ହେଉଛି

ଭକ୍ତିମାର୍ଗର ଧାରଣା ସହିତ ପ୍ରତ୍ୟକ୍ଷ ଭାବେ ଭାଗବତ୍-କୃଷ୍ଣଙ୍କର ପୂଜାକୁ ସଂଯୁକ୍ତ କରିବା – ଏହି ଦେବ ଚରିତ୍ରଟି ସହିତ ଆବେଗଭିତ୍ତିକ ସଂଯୋଗର ଧାରଣାଟିକୁ ଦୃଢ଼ କରିବା ଦିଗରେ ଗୀତାର ରଚୟିତାମାନଙ୍କର ଅକ୍ଲାନ୍ତ ପ୍ରୟାସ କରିଛନ୍ତି ।

ଗୀତାରେ "ଜ୍ଞାନ-ମାର୍ଗର" ଧାରଣାଟିର ଉପସ୍ଥାପନା ସହିତ ଉପନିଷଦସମୂହର ଶିକ୍ଷାର ଘନିଷ୍ଠ ମେଳ ଥିବାର ଲକ୍ଷ୍ୟ କରାଗଲେ ମଧ୍ୟ ଏଥିରେ "କର୍ମ-ମାର୍ଗର" ତତ୍ତ୍ୱଟି କିନ୍ତୁ ସଂପୂର୍ଣ୍ଣ ମୌଳିକ ଏକ ଧାରଣା ସହିତ ସମାନ । ସଠିକ ଭାବେ କହିବାକୁ ଗଲେ, "ନିଷ୍କାମ କର୍ମର ପଥ" ସଂପର୍କିତ ଏହି ତତ୍ତ୍ୱଟି ଗୀତାର ମୂଳ ଆଲୋଚ୍ୟ ବିଷୟ ମଧ୍ୟରୁ ଗୋଟିଏ ଏବଂ "ମୁକ୍ତି" (ମୋକ୍ଷ, ଅଥବା ନିର୍ବାଣ) ହିଁ ମାନବ ଜୀବନର ଏକମାତ୍ର ଲକ୍ଷ୍ୟ – ଏହି ତତ୍ତ୍ୱର ପ୍ରବକ୍ତା ଅନ୍ୟାନ୍ୟ ଭାରତୀୟ ଧର୍ମମତ ଓ ଦାର୍ଶନିକ ଚିନ୍ତାଧାରାଠାରୁ ଏହା ଗୀତାକୁ ସ୍ୱତନ୍ତ୍ର ରୂପେ ଚିହ୍ନିତ କରିଛି । ନିଷ୍କାମ କର୍ମର ଏହି ତତ୍ତ୍ୱଟି ପୂର୍ବବର୍ତ୍ତୀ ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ ନାହିଁ, କେବଳ ପରବର୍ତ୍ତୀ କାଳର ହିନ୍ଦୁମାନେ ଏହି ତତ୍ତ୍ୱଟିକୁ ଗ୍ରହଣ କରିଛନ୍ତି ଏବଂ ଏହାକୁ ଭାରତୀୟ ଆଧ୍ୟାତ୍ମିକ ପରମ୍ପରା କ୍ଷେତ୍ରରେ ଗୀତାର ଅବଦାନ ରୂପେ ଗ୍ରହଣ କରାଯାଇଛି ।

ମଣିଷ ସାଂସାରିକ ଜଗତରେ ରହିବ ନା ତାକୁ ବର୍ଜନ କରିବ – ସନ୍ନ୍ୟାସୀ ଧର୍ମାଶ୍ରିତ ଏହି ନୀତିର ଭିତ୍ତି ଉପରେ ପ୍ରଗ୍ରଥିତ ନାନାବିଧ ଧର୍ମଶିକ୍ଷାରେ ଯେଉଁ ପାରମ୍ପରିକ ସଂଶୟର ସଂଧାନ ମିଳିଥାଏ, ତା'ର ପରିବର୍ତ୍ତେ ଏ କ୍ଷେତ୍ରରେ ସଂପୂର୍ଣ୍ଣ ଭିନ୍ନ ଏକ ସମସ୍ୟାକୁ ପ୍ରାଧାନ୍ୟ ଦିଆଯାଇଛି । ସେ ସମସ୍ୟାଟି ହେଉଛି, "ଧର୍ମୀୟ ଆଦର୍ଶ" ଅର୍ଜନ ପାଇଁ ସଂକଳ୍ପବଦ୍ଧ ମଣିଷକୁ କେଉଁ ଧରଣର କ୍ରିୟାକଳାପରୁ ନିବୃତ୍ତ ରହିବାକୁ ହେବ, ତା'ର ସମସ୍ୟା । ଗୀତାରେ ଏହି ସମସ୍ୟାର ମୀମାଂସା କରାଯାଇଛି ଅତ୍ୟନ୍ତ ସରଳ ଭାବେ : ସେଥିରେ କୁହାଯାଇଛି, କର୍ମ ମଣିଷ ପକ୍ଷରେ ସେତିକିବେଳେ ବନ୍ଧନ ହୋଇ ଉଠେ ନାହିଁ, ଯେତେବେଳେ ସେ କର୍ମରେ ସେ ସ୍ୱାର୍ଥଶୂନ୍ୟ ବା ନିଷ୍କାମ ଭାବେ ନିୟୋଜିତ ହୁଏ । ଅର୍ଥାତ୍, ଯେତେବେଳେ ସେ କର୍ମକୁ ବାଧ୍ୟତାମୂଳକ କର୍ତ୍ତବ୍ୟ ହିସାବରେ ଦେଖେ, କିନ୍ତୁ ତା ସହିତ ଆବେଗଗତ ଭାବେ ଜଡ଼ିତ ହୁଏ ନାହିଁ ବା କର୍ମ ସଂପର୍କରେ ନିର୍ବିକାର ରହେ । ମଣିଷ ଯେତେବେଳେ ଏତାଦୃଶ "ନିଷ୍କାମ କର୍ମରେ" ରତ ହୁଏ, ସେତେବେଳେ ତା ସ୍ୱାର୍ଥର ପ୍ରଚୋଦନାସମୂହ ନିର୍ବାପିତ ହୁଏ ଏବଂ କମ ମାଧ୍ୟମରେ କିଛି ଅର୍ଜନ କରିବାର ବାସନା ଆଉ ରହେ ନାହିଁ । ଏହା ଛଡ଼ା ବିଭିନ୍ନ କର୍ମରେ ଲିପ୍ତ ବ୍ୟକ୍ତି କୌଣସି ପ୍ରକାରରେ ନିଜର ଅହଂକୁ ଜାହିର କରିବାକୁ ଚାହେଁ ନାହିଁ, ସେ "ଅହଂକାରରୁ" (ଆତ୍ମସଚେତନା) ମୁକ୍ତ ହୋଇଯାଏ ।

ଅନ୍ୟ ଭାବେ କହିବାକୁ ଗଲେ, ଉପନିଷଦସମୂହରେ ଘୋଷିତ ମର୍ତ୍ତ୍ୟର ଜୀବନ ଓ ଅହଙ୍କାରର ନାଗପାଶରୁ ବ୍ୟକ୍ତିର "ମୁକ୍ତିର" ଆଦର୍ଶଟିକୁ ବିଶଦ କରିବାକୁ ଯାଇ ଗୀତା ଏହି ଆଦର୍ଶର ସଂପୂର୍ଣ୍ଣ ଭିନ୍ନ ଏକ ଧାରଣା ବ୍ୟକ୍ତ କରିଛି । ଗୀତାର ସମଗ୍ର ବିଷୟବସ୍ତୁ ମୂଳତଃ ଏହି କେନ୍ଦ୍ରୀୟ ଧାରଣାଟିକୁ ବ୍ୟାଖ୍ୟା କରିବାରେ ନିୟୋଜିତ ।

ଗୀତାରେ "ଈଶ୍ୱର ପ୍ରେମର ପଥ" (ଭକ୍ତି-ମାର୍ଗ) ଏକ ସ୍ୱତନ୍ତ୍ର ତତ୍ତ୍ୱ ହିସାବରେ ବିକଶିତ ହୋଇଛି । ନିର୍ଦ୍ଦିଷ୍ଟ ଅର୍ଥରେ କହିବାକୁ ଗଲେ, ଭକ୍ତି ପଥର ଏହି ବର୍ଣ୍ଣନା କାବ୍ୟଟିର ଶିଖରକୁ ସ୍ପର୍ଶ କରିଛି । ଉପନିଷଦସମୂହରେ ବ୍ୟକ୍ତି ମଧ୍ୟସ୍ଥ ଦ୍ୱୈଧବୃତ୍ତି ତଥା "ଅହଂତ୍ୱ" ବର୍ଜନର ଯେଉଁ ଆଦର୍ଶର ରୂପରେଖ ପ୍ରଦାନ କରାଯାଇଛି, ତାହା ହିଁ ଏଠାରେ ଅଭିବ୍ୟକ୍ତ ହୋଇଛି କୃଷ୍ଣ-ଭାଗବତଙ୍କ ପୂଜାରେ,

ଏବଂ ଏହି କୃଷ୍ଣ-ଭାଗବତ ଉପସ୍ଥିତ ହୋଇଛନ୍ତି ଉଭୟ ଅବତାର ରୂପୀ ଦେବତା ଓ ସର୍ବବ୍ୟାପୀ ପରମ ବ୍ରହ୍ମଙ୍କ ପ୍ରତୀକ ହିସାବରେ ।

ଗୀତାର କାବ୍ୟ ବସ୍ତୁର ସାମାଜିକ ଦିଗ ଏହା ଦ୍ୱାରା ପ୍ରତିପାଦିତ ଧର୍ମୀୟ ଓ ଦାର୍ଶନିକ ମତବାଦର ଅଂଶବିଶେଷ । ଏହା ଦ୍ୱାରା, ଗୋଟିଏ ଦିଗରେ, ଯେମିତି ବିଶ୍ୱଜଗତର ଅସ୍ତିତ୍ୱ ଓ "ପରମ ସତ୍ୟରେ" ଉପନୀତ ହେବାର ଉପାୟାଦି ପ୍ରଶ୍ନର ବ୍ୟାଖ୍ୟାରେ ଅବୈଦିକ ଧର୍ମମତଗୁଡ଼ିକର ଅନେକ ଧ୍ୟାନଧାରଣାର ପ୍ରଭାବ ଏବଂ ଉପନିଷଦସମୂହରେ ବିବୃତ ବ୍ରାହ୍ମଣ୍ୟ ଧର୍ମର ଯୁଗୋପଯୋଗୀ ସଂସ୍କାରକୃତ ରୂପ ଲକ୍ଷ୍ୟ କରାଯାଏ, ସେହିପରି, ଅନ୍ୟ ଦିଗରେ, ଏହି କାବ୍ୟଟିରେ ଉପସ୍ଥାପିତ ବର୍ଣ୍ଣଭିତ୍ତିକ ସମାଜ ସଂଗଠନର ନମୁନା ବୈଦିକ ଯୁଗର ପୁରୁଣା ଧାରଣାଗୁଡ଼ିକ ସହିତ ଖାପ ଖାଇଯାଏ । ଏହି ଶେଷୋକ୍ତ ବିଷୟଟି ଉପରେ ଗୀତାର ଶିକ୍ଷା ଆଉରି ଅଧିକ ରକ୍ଷଣଶୀଳ ବୋଲି ମନେ ହୁଏ । କାରଣ ଏଥିରେ ଏପରି ବେଶି କଠିନ ଓ ଦୃଢ଼ ବର୍ଣ୍ଣ ବିଭାଗ ପ୍ରଥାର ଉଲ୍ଲେଖ ରହିଛି, ଯାହା ପରବର୍ତ୍ତୀ ଯୁଗର ହିନ୍ଦୁ ଧର୍ମର ସମର୍ଥନ ପୂତ ଶାସ୍ତ୍ରୀୟ ଜାତିଭେଦ ପ୍ରଥାର ପ୍ରକୃତିକୁ ସିଧାସଳଖ ନିର୍ଦ୍ଧାରିତ କରି ଦେଇଥିଲା ।

ତେବେ ଗୀତାର ଅନ୍ତର୍ଗତ ଏହି "କଠୋର ଭାବେ ନିୟନ୍ତ୍ରିତ ସାମାଜିକ ଦିଗଟି" ଅନେକ କାରଣରୁ ଭବିଷ୍ୟତ ବଂଶଧରମାନଙ୍କ ନିକଟରେ ତାତ୍ପର୍ଯ୍ୟପୂର୍ଣ୍ଣ ଭାବେ ପ୍ରାସଙ୍ଗିକ ମନେ ହୋଇନି । ପରବର୍ତ୍ତୀ କାଳରେ ଗୀତାକୁ ଭାରତୀୟମାନେ ସଂସ୍କାରକୃତ ବ୍ରାହ୍ମଣ୍ୟ ଧର୍ମର ମତବାଦର ଘନୀଭୂତ ପ୍ରକାଶ ବୋଲି ଗଣ୍ୟ କରିଛନ୍ତି । ଆଉରି ପରବର୍ତ୍ତୀ କାଳରେ ଏହା ଗଣ୍ୟ ହୋଇଛି ସାଧାରଣ ଭାବେ ହିନ୍ଦୁ ଧର୍ମର ଘନୀଭୂତ ମତବାଦ ହିସାବରେ । ବିଶିଷ୍ଟ ଚିନ୍ତାବିତ୍‌ମାନେ ସେମାନଙ୍କ ନିଜସ୍ୱ, ଏକାନ୍ତ ମୂଳ ଧ୍ୟାନଧାରଣାର ଉତ୍ସ ହିସାବରେ ଗୀତାକୁ ଉଲ୍ଲେଖ କରିଛନ୍ତି ଏବଂ ତାହା କରିବାକୁ ଯାଇ ଉଦ୍ଦେଶ୍ୟପୂର୍ଣ୍ଣ ଭାବେ ଏହାର କାବ୍ୟ ବସ୍ତୁର ଅମୁକ କିମ୍ବା ତମୁକ ବିଶେଷ ଦିଗ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ସାଂପ୍ରତିକ କାଳରେ ଗୀତା ଅନ୍ତର୍ଗତ ବିଭିନ୍ନ ଧ୍ୟାନଧାରଣା ବହୁ ବିଚିତ୍ର ନାନା ତତ୍ତ୍ୱର ଅଙ୍ଗୀଭୂତ ହୋଇଥିବାର ଦେଖାଯାଏ ଏବଂ ଆଉରି ଦେଖାଯାଇଛି ଯେ, ସେଇସବୁ ତତ୍ତ୍ୱ ମଧ୍ୟରୁ ଅନେକ ପରସ୍ପରର ବିରୋଧୀ । ବିଂଶ ଶତାବ୍ଦୀରେ ବାଳ ଗଙ୍ଗାଧର ତିଳକ, ମହାତ୍ମା ଗାନ୍ଧୀ ଓ ଅରବିନ୍ଦ ଘୋଷଙ୍କ (ଅତୀନ୍ଦ୍ରିୟବାଦୀ ଦାର୍ଶନିକ ହିସାବରେ ନୁହେଁ, ରାଜନୈତିକ ନେତା ହିସାବରେ ଏଠାରେ ଅରବିନ୍ଦ ଘୋଷ୍‌ଙ୍କ କଥା କୁହାଯାଇଛି) ଭଳି ବିଶିଷ୍ଟ ବ୍ୟକ୍ତିବୃନ୍ଦ ଗୀତାର ଧ୍ୟାନଧାରଣାପ୍ରତି ପରୋକ୍ଷ ନଜର ଦେଇଛନ୍ତି । ଜବାହରଲାଲ ନେହରୁ ଗୀତାର ମତାଦର୍ଶ ଅନୁଧାବନ କରିବା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଏହି ଭାବେ "ଭଗବତ୍‌ଗୀତା" ସମଗ୍ର ଭାରତୀୟ ସଂସ୍କୃତିର ଏକ ଅଚ୍ଛେଦ୍ୟ ଅଙ୍ଗରେ ପରିଣତ ହୋଇଛି, ଏହି ଐତିହ୍ୟର ଆଦିତମ ମୂଳଗୁଡ଼ିକ ସହିତ ପରବର୍ତ୍ତୀ ବହୁ ଶତାବ୍ଦୀର ଜୀବନ ଜିଜ୍ଞାସାକୁ ଯୁକ୍ତ କରି ତା'ର ଧାରାବାହିକତାର ଶାଶ୍ୱତ ପ୍ରତୀକରେ ପରିଣତ ହୋଇଛି ।

## ପ୍ରାଚୀନ ଭାରତୀୟ ଦର୍ଶନର
## ପ୍ରଧାନ ପ୍ରଧାନ ଶାଖା

ପ୍ରାଚୀନ ଭାରତରେ ଦାର୍ଶନିକ ଜ୍ଞାନ ଅର୍ଜନ ଉପରେ ଅତୀବ ଗୁରୁତ୍ୱ ଆରୋପ କରାଯାଉଥିଲା । କୌଟିଲ୍ୟ ଦର୍ଶନଶାସ୍ତ୍ରକୁ ସମସ୍ତ ଜ୍ଞାନର ଦୀପବର୍ତ୍ତିକା, ସମସ୍ତ ବିଧିବିଧାନର ସ୍ତମ୍ଭ ସ୍ୱରୂପ ବର୍ଣ୍ଣନା କରିଛନ୍ତି ।

ଉପନିଷଦସମୂହରେ ଆମେ ଦେଖିବାକୁ ପାଏଁ ପ୍ରାଚୀନ ଭାରତର ଦାର୍ଶନିକ ଚିନ୍ତାଧାରାର ବ୍ୟବସ୍ଥା ମଧ୍ୟରେ ଦୁଇଟି ପ୍ରଧାନ ଧାରା – ବସ୍ତୁବାଦ ଓ ଭାବବାଦ ମଧ୍ୟରେ ସଂଘର୍ଷର ପ୍ରଥମ ଲକ୍ଷଣଗୁଡ଼ିକୁ । ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରଥମ ଶତାବ୍ଦୀସମୂହରେ ବିଭିନ୍ନ ଦାର୍ଶନିକ ଚିନ୍ତାଧାରା ସୁସ୍ପଷ୍ଟ ରୂପ ପରିଗ୍ରହ କଲା ବେଳେ ଏହି ସଂଘର୍ଷ ବିଶେଷ ସ୍ପଷ୍ଟ ରୂପ ଗ୍ରହଣ କରିଥିଲା । ବସ୍ତୁବାଦୀ ଦାର୍ଶନିକ ଧାରାରେ (ଲୋକାୟତ, ଚାର୍ବାକ, ଆଦି) ତା'ର ଧ୍ୟାନଧାରଣାର ସୁସଙ୍ଗତ ଏବଂ ବିସ୍ତୃତ ବ୍ୟାଖ୍ୟା ପ୍ରକାଶ ପାଇଲା । ଏହି ବିଶେଷ ଯୁଗରେ ଦର୍ଶନଶାସ୍ତ୍ରର ବିକାଶ ସମ୍ଭବ ହୋଇ ଉଠିଥିଲା ବୈଜ୍ଞାନିକ ଜ୍ଞାନର ଅଗ୍ରଗତି କ୍ଷେତ୍ରରେ ବଡ଼ ବଡ଼ ସାଫଲ୍ୟ ଅର୍ଜିତ ହେବା ଫଳରେ । ପ୍ରାଚୀନ ଭାରତୀୟ ସମାଜର ଐତିହାସିକ ଓ ସାଂସ୍କୃତିକ ବିକାଶ କ୍ଷେତ୍ରରେ ଅର୍ଜିତ ଏକ ନୂତନ ସ୍ତର ଏହାର ପଥକୁ ପ୍ରଶସ୍ତ କରି ଦେଇଥିଲା ।

ପ୍ରାଚୀନ ଭାରତୀୟ ଦର୍ଶନ ଅନୁଧ୍ୟାନ କଲେ, ଦେଖାଯାଏ ଯେ, ଏହି ସମୟର ଭାରତୀୟ ଚିନ୍ତାବିତ୍‌ମାନେ ପ୍ରାଚୀନ ୟୁରୋପୀୟ ଦାର୍ଶନିକମାନଙ୍କ ଭଳି ଅଭିନ୍ନ ସମସ୍ୟାଦିର ଉତ୍‌ଥାପନ କରିଥିଲେ । କେବଳ ସେତିକି ନୁହେଁ, ପରସ୍ପର ଠାରୁ ସ୍ୱତନ୍ତ୍ର ଭାବେ ସେମାନେ ଏହି ସମସ୍ୟାଦିର ଏକେଇ ସମାଧାନରେ ଉପନୀତ ହୋଇଥିଲେ । କେତେକ କ୍ଷେତ୍ରରେ ପ୍ରାଚୀନ ଭାରତର ଦାର୍ଶନିକମାନେ ସେମାନଙ୍କ ପୂର୍ବରୁ ଏହି ସମାଧାନରେ ପହଞ୍ଚିଥିଲେ ।

## ପ୍ରାଚୀନ ଭାରତରେ ବସ୍ତୁବାଦୀ ଦର୍ଶନ
## ଓ ତା'ର ଶାଖାସମୂହ

ଭାରତର ସଂସ୍କୃତିର ଇତିହାସରେ ବସ୍ତୁବାଦ ଏକ ବିଶେଷ ସ୍ଥାନ ଅଧିକାର କରିଛି ଏବଂ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ପାଳନ କରି ଆସିଛି ।

ପ୍ରାଚୀନ ଭାରତରେ ବସ୍ତୁବାଦୀ ଧାରା ସବୁଠାରୁ ମୌଳିକ ସଂସ୍କାରପ୍ରୟାସୀ ରୂପ ନେଇ ଆବିର୍ଭୂତ ହୋଇଛି ଦାର୍ଶନିକ ଅନ୍ୱେଷଣ କ୍ଷେତ୍ରରେ । ଏପରିକି ସେଇ ଆଦି ଯୁଗରେ ମଧ୍ୟ ଭାରତୀୟ ବସ୍ତୁବାଦୀ ଚିନ୍ତାଧାରାର ବୈଶିଷ୍ଟ୍ୟ ନିହିତ ଥିଲା ମତାନ୍ଧ ଧର୍ମୀୟ ବିଧିନିଷେଧ ଧର୍ମୀୟ ଉନ୍ମତତାର ଜୀର୍ଣ୍ଣ କୁସଂସ୍କାର ହାତରୁ ଚିନ୍ତାର ସ୍ୱାଧୀନତା ଅର୍ଜନର ପ୍ରୟାସ ରୂପେ ।

ଲିଖିତ ପ୍ରାଚୀନ ସୂତ୍ରଗୁଡ଼ିକରେ ଆଜି ବି ବସ୍ତୁବାଦୀ ଦର୍ଶନର କେତୋଟି ଶାଖାର ନାମ ସଂରକ୍ଷିତ ରହିଛି । ସେସବୁ ମଧ୍ୟରେ ସର୍ବାପେକ୍ଷା ପ୍ରଭାବଶାଳୀ ହେଲା ଲୋକାୟତ । ଏ ପ୍ରସଙ୍ଗରେ ଲକ୍ଷ୍ୟ କରିବାର କଥା ଯେ, ଦର୍ଶନର ଏହି ଶାଖାଟିର ଏ ଧରଣର ନାମର ଅର୍ଥ "ପାର୍ଥିବ ଜଗତ

ସହିତ ସଂଯୁକ୍ତ", ଅଥବା "ଜନସାଧାରଣଙ୍କ ସହିତ ସଂପୃକ୍ତ", ଅଥବା "ଜନସାଧାରଣଙ୍କ ମଧ୍ୟରେ ପ୍ରାପ୍ତବ୍ୟ" । ଏଥିରୁ ବୁଝାଯାଏ ଯେ, ଦର୍ଶନର ଏହି ଶାଖାଟିର ଚରିତ୍ର ଥିଲା ଭାବବାଦ ବିରୋଧୀ ଏବଂ ପ୍ରାଚୀନ ଭାରତର ବସ୍ତୁବାଦୀମାନଙ୍କର ଏହିସବୁ ଧ୍ୟାନଧାରଣା ଏହି ଯୁଗର ସମାଜର ବହୁ ବିଭିନ୍ନ ସ୍ତରରେ ବହୁ ବ୍ୟାପକ ଭାବରେ ବିସ୍ତାର ଲାଭ କରିଥିଲା । ଲୋକାୟତ ଧାରାର ଉଦ୍‌ଭବ ଫଳରେ (ପରବର୍ତ୍ତୀ କାଳରେ ବସ୍ତୁବାଦୀମାନଙ୍କ ମଧ୍ୟରୁ ଅଧିକାଂଶ ଚାର୍ବାକ ନାମରେ ପରିଚିତ ହୋଇଥିଲେ, ତେବେ ଏହି ପରିଭାଷାଗତ ପାର୍ଥକ୍ୟ ମତବାଦ କ୍ଷେତ୍ରରେ କୌଣସି ମୌଳିକ ପାର୍ଥକ୍ୟର ସୂଚକ ନଥିଲା) ବସ୍ତୁବାଦୀ ଧ୍ୟାନଧାରଣାର ବିବର୍ତ୍ତନ କ୍ଷେତ୍ରରେ ସଂପୂର୍ଣ୍ଣ ନୂଆ ଏକ ସ୍ତର ଦେଖା ଦେଇଥିଲା । ଏହି ଲୋକାୟତ ଚିନ୍ତାଧାରାର ଉଦ୍‌ଭବର ପ୍ରଶ୍ନଟି ଏପର୍ଯ୍ୟନ୍ତ ବିତର୍କମୂଳକ ହୋଇ ରହିଯାଇଛି : ବେଳେ ବେଳେ ସ୍ଥାନୀୟ ଜନସାଧାରଣଙ୍କର ଆଦିମ ଧ୍ୟାନଧାରଣା ସହିତ ଏହାକୁ ସଂପୃକ୍ତ କରି ଦିଆଯାଇଥାଏ । ଏହି ମତଟିକୁ ସ୍ୱୀକାର କରିନେଲେ ଲୋକାୟତ ଚିନ୍ତାଧାରା ସହିତ ରକ୍ଷଣଶୀଳ ବ୍ରାହ୍ମଣ୍ୟ ଐତିହ୍ୟର ବିରୋଧ ବିଷୟଟିକୁ, ଅବଶ୍ୟ, ବ୍ୟାଖ୍ୟା କରାଯାଇଥାଏ । ବସ୍ତୁତଃ, ଏହି ଚିନ୍ତାଧାରାର କେତେକ ଦିଗକୁ ଅନୁଧାବନ କଲେ ଏଭଳି ଏକ ସିଦ୍ଧାନ୍ତରେ ଉପନୀତ ହେବା ସମ୍ଭବ ହୁଏ ବୋଲି ମନେ ହେଲେ ମଧ୍ୟ, ଏହି ଦାର୍ଶନିକ ଚିନ୍ତାଧାରାର ସାମଗ୍ରିକ ସ୍ୱରୂପ କିନ୍ତୁ ଉଚ୍ଚ ସ୍ତରର ଦାର୍ଶନିକ ମନର ପରିଚାୟକ ଏବଂ ଏହାର ମୌଳିକ ପ୍ରସ୍ତାବନାଗୁଡ଼ିକୁ କୌଣସି ମତେ ଆଦିମ ଜନଗୋଷ୍ଠୀର ବିଶ୍ୱାସ ବୋଲି କହି ହେବ ନାହିଁ ।

ଏହା ସ୍ପଷ୍ଟ ଯେ, ବହୁ ପ୍ରାଚୀନ କାଳରୁ ଲୋକାୟତ ଚିନ୍ତାଧାରା ଭାରତରେ ବ୍ୟାପକ ଭାବେ ପ୍ରଚଳିତ ଥିଲା ଏବଂ ଦେଶର ଉତ୍ତର ଏବଂ ଦକ୍ଷିଣ ଉଭୟ ଅଞ୍ଚଳରେ ଏହି ମତବାଦର ଅନୁଗାମୀମାନେ ଥିଲେ । ଏହାର ପ୍ରମାଣ ମିଳିଥାଏ ଲୋକାୟତ ଚିନ୍ତାଧାରା ସହିତ ବହୁ ବିଷୟରେ ଉପନିଷଦସମୂହର ଅନ୍ତର୍ଭୁକ୍ତ ଏଭଳି ସବୁ ବସ୍ତୁବାଦୀ ଚିନ୍ତାଧାରାର ଘନିଷ୍ଠ ମେଳ ତଥା ବୌଦ୍ଧ ଓ ଜୈନ ଧର୍ମଶାସ୍ତ୍ରସମୂହରେ ଲୋକାୟତ ଦର୍ଶନର ଉଲ୍ଲେଖ ମଧ୍ୟରେ । କୌଟିଲ୍ୟ ଲୋକାୟତକୁ ତିନୋଟି ପ୍ରଧାନ ଦାର୍ଶନିକ ମତବାଦ ମଧ୍ୟରୁ ଅନ୍ୟତମ ବୋଲି ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ, ଏହି ତିନୋଟି ଦାର୍ଶନିକ ମତବାଦର ନିଜସ୍ୱ ଅନ୍ତର୍ନିହିତ ମୂଲ୍ୟ ଥିଲା । ଏହା ଛଡ଼ା ଲୋକାୟତ ଧାରାର ପ୍ରତିନିଧିମାନଙ୍କର ଉଲ୍ଲେଖ ଅନ୍ୟାନ୍ୟ ପ୍ରାଚୀନ ଭାରତୀୟ ପୋଥି ରହିଛି – ମହାକାବ୍ୟ, ପତଞ୍ଜଳିଙ୍କ ବ୍ୟାକରଣ, "ହର୍ଷଚରିତ" ଓ ଅନ୍ୟାନ୍ୟ ରଚନାରେ ଦେଖିବାକୁ ମିଳିଥାଏ । ପ୍ରାଚୀନ ଯୁଗର ଭାରତୀୟ ବସ୍ତୁବାଦୀ ଦାର୍ଶନିକମାନଙ୍କର ନିଜସ୍ୱ ରଚନା, ଅବଶ୍ୟ, ସଂରକ୍ଷିତ ହୋଇ ରହି ପାରିନି । ଏହାର କାରଣ, ସ୍ପଷ୍ଟତଃ, ସେମାନଙ୍କ ଦାର୍ଶନିକ ପ୍ରତିପକ୍ଷମାନେ ସେସବୁକୁ ନଷ୍ଟ କରି ଦେଇଥିଲେ । ତେବେ ସେମାନଙ୍କ ରଚନାସମୂହର ବିଭିନ୍ନ ବ୍ୟାଖ୍ୟା ଓ ବିଶ୍ଳେଷଣ (ଉଦ୍ଦେଶ୍ୟମୂଳକ ହେଲେ ମଧ୍ୟ) ବିଶଦ ଭାବେ ଦେଖିବାକୁ ମିଳେ ପ୍ରଖ୍ୟାତ ବୈଦାନ୍ତିକ ଦାର୍ଶନିକ ଶଙ୍କରାଚାର୍ଯ୍ୟଙ୍କ ରଚନାବଳୀରେ ଏବଂ ମାଧବାଚାର୍ଯ୍ୟ, ଜୟନ୍ତଭଟ୍ଟ ଏବଂ ଜୈନ ଟୀକାକାର ହରିଭଦ୍ରଙ୍କ ରଚନାବଳୀର ସଂକ୍ଷିପ୍ତ ସାରରେ । ମଧ୍ୟ ଯୁଗର ଶେଷ ଭାଗରେ ରଚିତ ତାମିଲ ପୋଥିଗୁଡ଼ିକରେ ଭାରତର ବସ୍ତୁବାଦୀ ଦାର୍ଶନିକ ଧାରାର ମୂଳ ତତ୍ତ୍ୱଗୁଡ଼ିକର ସଂକ୍ଷିପ୍ତ, ଅଥଚ ସାରଗର୍ଭକ ବିବରଣ ମିଳିଥାଏ । ଶେଷୋକ୍ତ ଏହିସବୁ ପୋଥିକୁ ଭିତ୍ତି କରି ଅନୁମାନ କରି ହୁଏ ଯେ, ଏହି ଯୁଗରେ ଦକ୍ଷିଣ ଭାରତରେ ହିନ୍ଦୁ ଦାର୍ଶନିକ ଐତିହ୍ୟର ପ୍ରଧାନ ବିରୋଧୀ ଥିଲା ବସ୍ତୁବାଦୀ ଦାର୍ଶନିକ ଚିନ୍ତାଧାରା ।

ତେଣୁ, ବିଭିନ୍ନ ସମୟରେ ବିଭିନ୍ନ ପଣ୍ଡିତ ଯେପରି ଭାବେ କହିବାକୁ ଚେଷ୍ଟା କରିଛନ୍ତି, ଘଟଣା ମୋଟେ ସେପରି ନୁହେଁ—ଭାରତୀୟ ସଂସ୍କୃତିର ବିକାଶର ଇତିହାସରେ ବସ୍ତୁବାଦର ଉଦ୍‌ଭବ ମୋଟେ କୌଣସି ଆକସ୍ମିକ ଘଟଣା ନୁହେଁ । ଏହି ଚିନ୍ତାଧାରାର ବିକାଶ ଓ ବିବର୍ତ୍ତନ ଘଟିଥିଲା ପ୍ରାୟ ଦୁଇ ସହସ୍ରାବ୍ଦ ବ୍ୟାପୀ ଏକ ସୁଦୀର୍ଘ ସମୟକାଳ ମଧ୍ୟ ଦେଇ ଏବଂ ବସ୍ତୁବାଦୀ ଓ ଧର୍ମାଧାରିତ ଅନ୍ୟାନ୍ୟ ଦାର୍ଶନିକ ମତବାଦର ଅନୁଗାମୀମାନଙ୍କ ମଧ୍ୟରେ ନିରନ୍ତର ପ୍ରବାହମାନ ତର୍କବିତର୍କ ପ୍ରମାଣ ଦିଏ ଯେ, ପ୍ରାଚୀନ ଯୁଗ ଏବଂ ମଧ୍ୟ ଯୁଗରେ ବସ୍ତୁବାଦୀ ଓ ଭାବବାଦୀ ଏହି ଦୁଇ ପ୍ରଧାନ ଦାର୍ଶନିକ ଧାରା ମଧ୍ୟରେ କି ତୀବ୍ର ସଂଗ୍ରାମ ଚାଲିଥିଲା ।

ଲୋକାୟତ ଚିନ୍ତାଧାରା ଅନ୍ତର୍ଗତ ଧ୍ୟାନଧାରଣାର ପ୍ରଥମ ଉଲ୍ଲେଖ ମିଳେ ଉପନିଷଦସମୂହରେ । କିଂବଦନ୍ତୀ ଅନୁଯାୟୀ ଏହି ଲୋକାୟତ ଧାରାର ପ୍ରତିଷ୍ଠାତା ଥିଲେ ଦେବତ୍ୱ ପର୍ଯ୍ୟାୟକୁ ଉନ୍ନୀତ ଋଷି ବୃହସ୍ପତି, ଯଦିଓ ମହାକାବ୍ୟସମୂହର ବର୍ଣ୍ଣନା ଅନୁଯାୟୀ ଏହି ଋଷି ଏପରି ସବୁ କ୍ରିୟାକଳାପ ଆଚରଣ କରୁଥିଲେ, ଯାହା ରକ୍ଷଣଶୀଳ ଐତିହ୍ୟସମ୍ମତ ବିଧିବିଧାନ ସହିତ ସଂଗତିଶୀଳ ନଥିଲା । ପ୍ରସଙ୍ଗକ୍ରମେ ଉଲ୍ଲେଖଯୋଗ୍ୟ ଯେ, ଉପନିଷଦସମୂହରେ କୁହାଯାଇଛି, ଅସୁରମାନଙ୍କୁ ସତ୍ୟପଥରୁ ବିଚ୍ୟୁତ କରି ସେମାନଙ୍କୁ ଧ୍ୱଂସ କରିବା ଉଦ୍ଦେଶ୍ୟରେ ବୃହସ୍ପତି କାଳେ ଏକ ମିଥ୍ୟା ଦର୍ଶନ ପ୍ରଚାର କରିଥିଲେ । ଏହି ଦର୍ଶନ ପ୍ରାଚୀନ ବସ୍ତୁବାଦୀ ଦାର୍ଶନିକ ରଚନାର ରୂପଭେଦ ମାତ୍ର ଏବଂ ପରବର୍ତ୍ତୀ କାଳରେ ଏହି ଗ୍ରନ୍ଥର ସଂପାଦକମାନେ ଏହାକୁ ବିତର୍କମୂଳକ କରି ଦେଇଥିଲେ । ଏଥିରେ ଅସୁରମାନଙ୍କୁ କୁହାଗଲା ଯେ, ସମସ୍ତ ଜୀବନ୍ତ ପ୍ରାଣୀର ଜୀବନର ଏକମାତ୍ର ନିର୍ଯ୍ୟାସ ହେଉଛି ସେମାନଙ୍କ ଦେହ । ଆତ୍ମା ମରୀଚିକା ଛଡ଼ା ଆଉ କିଛି ନୁହେଁ ।

ବସ୍ତୁବାଦୀ ଦାର୍ଶନିକ ଚିନ୍ତାର ଅପେକ୍ଷାକୃତ ବିଶଦ ଉଲ୍ଲେଖ ମିଳିଥାଏ "ମହାଭାରତରେ" । ଏ କ୍ଷେତ୍ରରେ କୌତୂହଳୋଦ୍ଦୀପକ ବିଷୟଟି ହେଉଛି, ଏହିସବୁ ଚିନ୍ତାଭାବନାର ପ୍ରବକ୍ତା ହେଉଛନ୍ତି ବ୍ରାହ୍ମଣ୍ୟ ପରମ୍ପରା ଦ୍ୱାରା ସ୍ୱୀକୃତ ସର୍ବପୂଜିତ ଋଷିଗଣ । "ମୋକ୍ଷ-ଧର୍ମ" ପ୍ରକରଣ ("ମହାଭାରତର" ଦ୍ୱାଦଶ ଖଣ୍ଡ ଅନ୍ତର୍ଗତ) ଅଧ୍ୟାୟରେ ଅନ୍ୟାନ୍ୟ ବହୁ ଆଲୋଚନା ମଧ୍ୟରେ "ଗୁରୁ ଭରଦ୍ୱାଜଙ୍କ" ମତାମତ ଲିପିବଦ୍ଧ ହୋଇଛି । ଏବଂ ସେଠାରେ କୁହାଯାଇଛି ଯେ, ଭରଦ୍ୱାଜ ହେଲେ ଲୋକାୟତ ଧାରାର ଦାର୍ଶନିକମାନଙ୍କର ଅବ୍ୟବହିତ ପୂର୍ବସୂରୀ । ଘୋରତର ସଂଶୟବାଦୀ ଭଙ୍ଗୀରେ ସେ ସେଠାରେ ମୃତ୍ୟୁ ପରେ ଆତ୍ମାର ଅସ୍ତିତ୍ୱ କଥା, ଧର୍ମୀୟ ପୂଜାପାଠ ଅନୁଷ୍ଠାନ ଏବଂ ପୁରୋହିତଙ୍କୁ ଦାନ ଦକ୍ଷିଣାଦି ପ୍ରଦାନ ଦ୍ୱାରା "ବାଞ୍ଛିତ ନବଜନ୍ମ ଲାଭ" କରିବା କଥା ଉଲ୍ଲେଖ କରିଛନ୍ତି । ବ୍ରାହ୍ମଣକୁ ଗୋ ଦାନ କଲା ପରେ ଯେଉଁ ଧର୍ମବିଶ୍ୱାସୀ ତା'ର ବିନିମୟରେ ପରଜନ୍ମରେ ନାନା ସୁଖସୁବିଧା ଲାଭର ସ୍ୱପ୍ନ ଦେଖେ, ତାକୁ ସେଠାରେ ଭରଦ୍ୱାଜ ଋଷି ବିଦ୍ରୂପ କରିଛନ୍ତି ।

ଆତ୍ମାର ଦେହରୁ ଦେହାନ୍ତରକୁ ଅନୁଗମନ ସଂକ୍ରାନ୍ତ ଧର୍ମୀୟ ଧାରଣାଟିର ବିପରୀତରେ ଭରଦ୍ୱାଜ ପ୍ରକୃତି ମଧ୍ୟରେ କାର୍ଯ୍ୟରତ ବିଧାନ ଅନୁଯାୟୀ ଗୋଟିଏ ଧରଣର ଜୀବନର ଅନ୍ୟ ଧରଣର ଜୀବନକୁ ସ୍ୱାଭାବିକ ଭାବେ ସଂକ୍ରମଣ ସଂକ୍ରାନ୍ତ ବସ୍ତୁବାଦୀ ଧାରଣାଟିକୁ ଉପସ୍ଥାପିତ କରିଥିଲେ ।

ଯୁକ୍ତିବାଦୀ ଏବଂ ବସ୍ତୁବାଦୀ ଧ୍ୟାନଧାରଣା ପଥରେ ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ଅଗ୍ରଗାମୀ ପଦକ୍ଷେପ ସେତେବେଳେ ବୈଜ୍ଞାନିକ ଜ୍ଞାନର, ବିଶେଷ କରି ଗଣିତ, ପଦାର୍ଥବିଦ୍ୟା ଓ ପ୍ରକୃତି ବିଜ୍ଞାନସମୂହ କ୍ଷେତ୍ରରେ ତାତ୍ପର୍ଯ୍ୟପୂର୍ଣ୍ଣ ଅଗ୍ରଗତି ବିନା କଳ୍ପନା କରିବା ଅସମ୍ଭବ ।

ମୌଳିକ ଉପାଦାନସମୂହ ଏବଂ ଚେତନାର ଗଠନ ସଂପର୍କରେ ଅବବୋଧ ଜ୍ଞାନବିଜ୍ଞାନର ବିଶେଷ ବିଶେଷ କ୍ଷେତ୍ରରେ ପ୍ରଗତି ଓ ସାଫଲ୍ୟ ସହିତ ଅଚ୍ଛେଦ୍ୟ ଭାବେ ଜଡ଼ିତ । ଶେଷୋକ୍ତ ଏହିସବୁ ଜ୍ଞାନ ପ୍ରକୃତି ମଧ୍ୟରେ କ୍ରିୟାଶୀଳ ପ୍ରକ୍ରିୟାଗୁଡ଼ିକୁ ବ୍ୟାଖ୍ୟା କରିବାକୁ ସାହାଯ୍ୟ କରିଥାଏ । ଭାରତୀୟ ବସ୍ତୁବାଦୀମାନେ ବାରମ୍ବାର ଜୋର ଦେଇ କହିଛନ୍ତି ଯେ, ସେମାନଙ୍କ ଅନୁସନ୍ଧାନର ବିଷୟ ହେଲା ଇନ୍ଦ୍ରିୟସମୂହ ସାହାଯ୍ୟରେ ଉପଲବ୍ଧ ଜଗତ ଏବଂ ଏକମାତ୍ର ବିଶ୍ଳେଷଣ ସାଧ୍ୟ ବସ୍ତୁ ହିଁ ବୈଜ୍ଞାନିକ କାର୍ଯ୍ୟକାରଣ ସୂତ୍ରର ଅର୍ଥବହ ବିଷୟ ହୋଇ ପାରେ । ଅଲୌକିକ ପ୍ରପଞ୍ଚରାଜିକୁ ପ୍ରତ୍ୟାଖ୍ୟାନ କରି ସେମାନେ କହିଥିଲେ ଯେ, ପରୀକ୍ଷା ନିରୀକ୍ଷା ଦ୍ୱାରା ସେସବୁ ସଂପର୍କରେ କୌଣସି ପ୍ରମାଣାଦି ଉପସ୍ଥାପନା କରିବା ସମ୍ଭବ ନୁହେଁ ବୋଲି ସେସବୁ ପ୍ରତ୍ୟାଖ୍ୟାନ ଯୋଗ୍ୟ ।

ଇନ୍ଦ୍ରିୟାନୁଭୂତ (ବା ପ୍ରତ୍ୟକ୍ଷ) ହିଁ ହେଉଛି ଜଗତ (ବା ପ୍ରମାଣ) ସଂପର୍କରେ ପ୍ରକୃତ ଜ୍ଞାନ ଆହରଣର ଏକମାତ୍ର ଉତ୍ସ – ଏହି ତତ୍ତ୍ୱଟି ହେଉଛି ଲୋକାୟତ ଦର୍ଶନର ଭିତ୍ତି । ଏହି ଦର୍ଶନ ଅନୁଯାୟୀ କର୍ତ୍ତୃସ୍ଥାନୀୟ ପଣ୍ଡିତମାନଙ୍କର ଦୃଢ଼ ଭାବେ ଅଭିବ୍ୟକ୍ତ ମତାମତ, ସେମାନଙ୍କ ଦ୍ୱାରା ପ୍ରଚାରିତ ଦୈବାଦେଶ କିମ୍ବା ଧର୍ମଶାସ୍ତ୍ର ଅନୁଭବ ମଧ୍ୟ ଦେଇ ଆହୃତ ଧାରଣାକୁ ସମୃଦ୍ଧ କରିବାକୁ ସମର୍ଥ ନୁହେଁ ।

ଲୋକାୟତ ଚିନ୍ତାଧାରାର ଅନୁଗାମୀମାନେ ବିଶ୍ୱବ୍ରହ୍ମାଣ୍ଡକୁ ଚିରନ୍ତନ ବୋଲି ମନେ କରନ୍ତି ଏବଂ ମୌଳିକ ଉପାଦାନ ଦ୍ୱାରା ଗଠିତ ସମସ୍ତ ବସ୍ତୁ ମଧ୍ୟରେ ଯେଉଁ ପରିବର୍ତ୍ତନରାଜି ଘଟୁଛି, ସେସବୁ ବିଶ୍ୱବ୍ରହ୍ମାଣ୍ଡର ବିଭିନ୍ନ ବିଧାନ ନିୟନ୍ତ୍ରଣ କରୁଛି ବୋଲି ସେମାନେ ବିଶ୍ୱାସ କରୁଥିଲେ । ସେମାନେ, ଅବଶ୍ୟ, ଜୀବନ ଆଉ ଚେତନାର ଉତ୍ପତ୍ତି ସଂପର୍କିତ ପ୍ରଶ୍ନଟିର ଜଟିଳ ପ୍ରକୃତି ସଂପର୍କରେ ଅବହିତ ଥିଲେ ଏବଂ ଉନ୍ନତତର ଜୀବନର ରୂପକ ନିମ୍ନତର ଜୀବନର ରୂପ ହିସାବରେ ଦେଖାଇବାର ପ୍ରୟାସ କରି ନଥିଲେ । ସେମାନେ ବାରମ୍ବାର ଉଲ୍ଲେଖ କରିଛନ୍ତି ଯେ, ଚେତନା ହେଉଛି ମୌଳିକ ଉପାଦାନସମୂହର ଅସାଧାରଣ ବୈଚିତ୍ର୍ୟପୂର୍ଣ୍ଣ ପ୍ରକାଶର ଅଭିବ୍ୟକ୍ତି ।

ଭାରତୀୟ ଭାବବାଦୀ ଚିନ୍ତାବିତ୍‌ମାନଙ୍କ ନିକଟରେ ସର୍ବଦା ସ୍ୱୀକୃତ "କର୍ମଯୋଗର ତତ୍ତ୍ୱକୁ" ଲୋକାୟତ ଦାର୍ଶନିକମାନେ ଯେଉଁ ଯୁକ୍ତି ଦ୍ୱାରା ଖଣ୍ଡନ କରିଛନ୍ତି, ତାହା ଅତୀବ କୌତୂହଳପ୍ରଦ । ଏ ପ୍ରସଙ୍ଗରେ ଓଲଟା ପ୍ରଶ୍ନ କରି ସେମାନେ ଜାଣିବାକୁ ଚାହିଁଛନ୍ତି ଯେ, ଆତ୍ମା ଯଦି ନିଜକୁ ଦେହରୁ ଦେହାନ୍ତରକୁ ସ୍ଥାନାନ୍ତରଣ କରିବାର କ୍ଷମତା ଧାରଣ କରେ, ତେବେ ମଣିଷ ତା'ର ବହୁବିଧ ପୂର୍ବଜନ୍ମ କଥା ସ୍ମରଣ କରି ପାରେ ନାହିଁ କାହିଁକି ? କିମ୍ବା କୌଣସି ବ୍ୟକ୍ତି ମୃତ୍ୟୁ ପରେ ଯଦି ପୁଣି ନୂତନ ଦେହ ଧାରଣ କରି ପୁନର୍ଜନ୍ମ ଲାଭ କରେ, ତାହେଲେ ପୂର୍ବଜନ୍ମର ଆତ୍ମୀୟ ସ୍ୱଜନ ଓ ପ୍ରିୟଜନମାନଙ୍କ ପ୍ରତି ସ୍ନେହ ବଶତଃ କାହିଁକି ସେ ତା'ର ପୁରୁଣା ଆକାର ପ୍ରକାର ଫେରି ପାଇବାକୁ ଚେଷ୍ଟା କରେ ନାହିଁ ?

କର୍ମଯୋଗର ତତ୍ତ୍ୱଟିକୁ ପ୍ରତ୍ୟାଖ୍ୟାନ କରିବାକୁ ଯାଇ ଲୋକାୟତପନ୍ଥୀମାନେ କେବଳ ଯେ ରକ୍ଷଣଶୀଳ ପରମ୍ପରା ବିରୁଦ୍ଧରେ ଯାଇଥିଲେ, ତାହା ନୁହେଁ, ଅନ୍ୟ ସମସ୍ତ ଦାର୍ଶନିକ ଓ ଧର୍ମୀୟ-ଦାର୍ଶନିକ ଆନ୍ଦୋଳନର ମଧ୍ୟ ବିରୋଧିତା କରିଥିଲେ । ଏହି କାରଣରୁ ସେମାନଙ୍କର ଏହି ଅବସ୍ଥାନ ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତର ଚିନ୍ତାଧାରାର ଇତିହାସରେ ଅନନ୍ୟସାଧାରଣ । ଲୋକାୟତପନ୍ଥୀମାନଙ୍କର

ମୂଳ ତତ୍ତ୍ୱଗୁଡ଼ିକର ଉଦ୍ଭବ ଘଟିଥିଲା ଅତିପ୍ରାଚୀନ ଯୁଗରେ, ତେଣୁ ସେମାନଙ୍କ ଦ୍ୱାରା ପ୍ରଚାରିତ ଧ୍ୟାନଧାରଣାସମୂହ ଖୁବ୍ ଦୃଷ୍ଟି ଆକର୍ଷକ ହୋଇଥିଲା ।

ବସ୍ତୁବାଦୀ ଦାର୍ଶନିକମାନଙ୍କର ନୀତିଶାସ୍ତ୍ର ସମ୍ବନ୍ଧୀୟ ସୂତ୍ରଗୁଡ଼ିକ ସେମାନଙ୍କ ପ୍ରତିପକ୍ଷମାନଙ୍କ ନିକଟରେ ସେଇ ଦର୍ଶନର ଦୁର୍ବଳତମ ଅଂଶ ବୋଲି ମନେ ହୋଇଥିଲା । ଲୋକାୟତପନ୍ଥୀମାନଙ୍କୁ ସେମାନେ ଅତ୍ୟଧିକ ସୁଖସମ୍ଭୋଗର ସ୍ପୃହା, ଐହିକ ଜୀବନର ସୁଖଭୋଗର ବାସନା (ସୁଖବାଦ) ପାଇଁ ଅଭିଯୁକ୍ତ କରୁଥିଲେ । ସେ ଯୁଗର, ଏପରିକି ବହୁ ଆଧୁନିକ ବ୍ୟାଖ୍ୟାକାରଙ୍କ ରଚନାରେ ଏହି ଏକେଇ ଦୃଷ୍ଟିଭଙ୍ଗି ଦେଖିବାକୁ ମିଳେ । ପ୍ରକୃତରେ ଲୋକାୟତପନ୍ଥୀମାନଙ୍କର ନୈତିକ ଆଦର୍ଶ କିନ୍ତୁ ସଂପୂର୍ଣ୍ଣ ଭିନ୍ନ ଥିଲା । ଲୋକାୟତ ଜୀବନ ଦର୍ଶନର ନୀତିଗୁଡ଼ିକ ଯେଉଁସବୁ ଗ୍ରନ୍ଥରେ ଆଲୋଚିତ ହୋଇଛି, ସେସବୁ ମଧ୍ୟରୁ ଅଧିକାଂଶ କ୍ଷେତ୍ରରେ କିନ୍ତୁ ଅନୈତିକତା, ଅଥବା ଅମିତାଚାରର କୌଣସି ଚିହ୍ନ ନାହିଁ (ମନେ ରଖିବାକୁ ହେବ ଯେ, ଏହି ସବୁ ଗ୍ରନ୍ଥ ଲୋକାୟତ ଦର୍ଶନର ବିରୋଧୀମାନଙ୍କ ଦ୍ୱାରା ଲିଖିତ) । ଲୋକାୟତପନ୍ଥୀମାନଙ୍କର ଜୀବନଦର୍ଶନର ମୂଳକଥା ହେଲା ଧର୍ମୀୟ ନୈତିକ ଆଦର୍ଶ ଏବଂ ଜୀବନଯାପନ କ୍ଷେତ୍ରରେ ଐହିକ ସୁଖସମ୍ଭୋଗ ବିଷୟରେ ତା'ର ଆନୁଷଙ୍ଗିକ ନୈରାଜ୍ୟବାଦୀ ଦୃଷ୍ଟିଭଙ୍ଗିକୁ ପରିହାର କରାଯାଇ ପାରେ ।

ପ୍ରସଙ୍ଗତଃ ଏକଥା ଉପରେ ଜୋର ଦେଇ କହିବା ଆବଶ୍ୟକ ଯେ, ଲୋକାୟତ ଓ ଚାର୍ବାକପନ୍ଥୀମାନେ ମଣିଷର ଚତୁର୍ପାର୍ଶ୍ୱସ୍ଥ ବାସ୍ତବ ଜଗତ ସଂପର୍କରେ ସ୍ୱାର୍ଥପର ମନୋଭଙ୍ଗିକୁ କେବେ ସମର୍ଥନ କରି ନାହାନ୍ତି । ବରଂ, ଓଲଟାଟା ଘଟିଛି । ସେମାନେ ମନେ କରିଛନ୍ତି, ମଣିଷର ସ୍ୱାଭାବିକ ଜୀବନଯାପନ କେବଳ ସେତିକିବେଳେ ସମ୍ଭବ ହୁଏ, ଯେତେବେଳେ ସେ ପ୍ରକୃତି ସହିତ ଏକାତ୍ମ ହୋଇ ବାସ କରେ । ସଂଯମକୁ ସେମାନେ ମଣିଷର ପ୍ରଧାନ ଧର୍ମ ବୋଲି ମନେ କରିଛନ୍ତି, ସ୍ୱାଭାବିକ ମନେ କରିଛନ୍ତି ବ୍ୟକ୍ତିବିଶେଷର "ସୁଖସମ୍ଭୋଗର ସ୍ୱାଭାବିକ ବାସନାକୁ" ସଂଯତ କରି କିମ୍ବା ଏହି ଧର୍ମ ଦ୍ୱାରା ନିୟନ୍ତ୍ରିତ କରିବାକୁ । ୟୁରୋପୀୟ ପ୍ରାଚୀନ ଦର୍ଶନର ବିଭିନ୍ନ ଧାରାରେ ବିଶେଷ କରି ଏପିକିଉରସଙ୍କ ଭୋଗବାଦୀ ଦର୍ଶନ ମଧ୍ୟରେ—ଏହିପରି ଅଭିନ୍ନ ଦୃଷ୍ଟିଭଙ୍ଗି ନିହିତ ଥିବାର ଦେଖାଯାଏ ।

ଦୁଃଖର କଥା, ଚାର୍ବାକପନ୍ଥୀମାନଙ୍କର ସାମାଜିକ ମତାମତର କଥା ଖୁବ୍ ଅଳ୍ପ ଜଣାଯାଇଥାଏ । ଏହି କାରଣରୁ ଋଷି ଭରଦ୍ୱାଜଙ୍କର ଉକ୍ତିଗୁଡ଼ିକ ବିଶେଷ ମୂଲ୍ୟବାନ ବୋଲି ମନେ ହୁଏ । ସେ ସ୍ପଷ୍ଟ ଭାବେ ବର୍ଣ୍ଣବିଭେଦ ବିରୁଦ୍ଧରେ ମତ ପ୍ରକାଶ କରିଛନ୍ତି । ଏକଥା ମଧ୍ୟ ସ୍ମରଣ କରିବାର ଯଥେଷ୍ଟ କାରଣ ଅଛି ଯେ, ଲୋକାୟତପନ୍ଥୀମାନେ ଯେ କେବଳ ସେମାନଙ୍କ ଦାର୍ଶନିକ ମତାମତ କ୍ଷେତ୍ରରେ ଯୁକ୍ତିବାଦୀ ମୌଳିକ ସଂସାରର ନୀତିସମୂହ ପ୍ରତି ଏକନିଷ୍ଠ ଥିଲେ, ତାହା ନୁହେଁ, ସାମାଜିକ ସମସ୍ୟାଦି କ୍ଷେତ୍ରରେ ମଧ୍ୟ ସେମାନଙ୍କ ମନୋଭାବ ଅନୁରୂପ ଥିଲା ।

ସାଧାରଣ ଭାବେ କହିବାକୁ ଗଲେ, ବସ୍ତୁବାଦୀ ଆଉ ଭାବବାଦୀ—ଏହି ଦୁଇ ଦାର୍ଶନିକ ଐତିହ୍ୟର ମୂଳ ନୀତିସମୂହ ମଧ୍ୟରେ ପାର୍ଥକ୍ୟଗୁଡ଼ିକ ଏତେ ମୌଳିକ ଥିଲା ଯେ, କୌଣସି ଗୋଟିଏ ପକ୍ଷ ବିରୋଧୀ ପକ୍ଷର ନୀତିଗୁଡ଼ିକୁ ଗୋପନ କରି ରଖିବାକୁ ଚେଷ୍ଟା କରି ନାହାନ୍ତି, ବରଂ, ସେସବୁକୁ ଅତିରଞ୍ଜିତ କରି ଦେଖାଇ, ସେସବୁ ସ୍ୱପକ୍ଷୀୟମାନଙ୍କ ନିକଟରେ କେତେ ଅଗ୍ରହଣୀୟ ତାହା ପ୍ରମାଣ କରିବାକୁ ଚାହିଁଛନ୍ତି । ବସ୍ତୁବାଦୀ ଦାର୍ଶନିକମାନେ ଯେ କେବଳ ବେଦସମୂହର କର୍ତ୍ତୃତ୍ୱକୁ

ପ୍ରତ୍ୟାଖ୍ୟାନ କରିଛନ୍ତି, ତା ନୁହେଁ, ଧର୍ମୀୟ (ଆଉରି ସଠିକ ଭାବେ କହିବାକୁ ଗଲେ, ଅତୀନ୍ଦ୍ରିୟବାଦୀ) ମୋକ୍ଷ ଲାଭର ଆଦର୍ଶ, ଆତ୍ମାର ଦେହରୁ ଦେହାନ୍ତର ଗମନର ଧାରଣା ଏବଂ କର୍ମଯୋଗର ବିଧିବିଧାନ ପର୍ଯ୍ୟନ୍ତ ସବୁ କିଛି ବର୍ଜନ କରିଛନ୍ତି । ଏହି ଦୃଷ୍ଟିକୋଣର ଦୁଃସାହସିକତା ସବୁଠାରୁ ସ୍ପଷ୍ଟ ଭାବେ ଧରା ପଡ଼ିଯାଏ, ଯେତେବେଳେ ଆମେ ଦେଖୁ ଯେ, ଜୈନ କିମ୍ବା ବୌଦ୍ଧ, ଧର୍ମର ଅନୁଗାମୀମାନେ ବ୍ରାହ୍ମଣ୍ୟ ମତାଦର୍ଶ ସମ୍ବନ୍ଧରେ ସେମାନଙ୍କ ନେତିବାଚକ ମତାମତ ସତ୍ତ୍ୱେ ଉପରୋକ୍ତ ଏହି ତତ୍ତ୍ୱଗୁଡ଼ିକ ମଧ୍ୟରୁ କୌଣସିଟି ସଂପର୍କରେ ସନ୍ଦେହ ପ୍ରକାଶ କରିବାକୁ ଭରସା ପାଇ ନଥିଲେ । ବସ୍ତୁବାଦୀ ଦାର୍ଶନିକମାନଙ୍କର ରକ୍ଷଣଶୀଳ ପରମ୍ପରାର ଉପରୋକ୍ତ ଏହି ପ୍ରତ୍ୟାଖ୍ୟାନର ପରବର୍ତ୍ତୀ ପଦକ୍ଷେପଟି ଥିଲା ସମସ୍ତ ପ୍ରକାରର ପୂଜା ଅନୁଷ୍ଠାନ ଓ ଦେବତା ଆରାଧନା (ଏମାନେ କେବଳ ବୈଦିକ ଦେବଦେବୀ ନୁହନ୍ତି) ବର୍ଜନ କରିବା । କେବଳ ଏତିକି ନୁହେଁ, ଧର୍ମାନୁଷ୍ଠାନର ଏହିସବୁ ବାହ୍ୟ ଧରଣକୁ ସେମାନେ ଧର୍ମଗତ ସତ୍ୟର ଅପେକ୍ଷାକୃତ ଅଧିକ ବିଶ୍ଳେଷଣଧର୍ମୀ ଆଳାପ ଆଲୋଚନା ତୁଳନାରେ "ଆଦିମତର" ବୋଲି ସମାଲୋଚନା କରି କ୍ଷାନ୍ତ ହୋଇ ନାହାନ୍ତି, ଏହିସବୁ ଆଗ୍ରର ଅନୁଷ୍ଠାନକୁ ସଂପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ କରି ନିଶ୍ଚିତ ହୋଇଛନ୍ତି ।

ଦେଖାଯାଏ, ଭାରତୀୟ ବସ୍ତୁବାଦୀମାନେ ସେମାନଙ୍କ ମୌଳିକ ସଂସାରପନ୍ଥା ବିଷୟରେ ଏବଂ ଦାର୍ଶନିକ ତଥା ସାମାଜିକ କ୍ଷେତ୍ରରେ ପ୍ରଚଳିତ ଯେକୌଣସି ଅନ୍ଧ ସଂସ୍କାର ବିରୁଦ୍ଧରେ ସେମାନଙ୍କ ଏକନିଷ୍ଠ ସଂଗ୍ରାମରେ ଅବିଚଳ ରହିଥିଲେ । ଶକ୍ତିଶାଳୀ ବିରୋଧୀମାନଙ୍କର ପ୍ରବଳ ବିରୋଧିତା ସତ୍ତ୍ୱେ (ରକ୍ଷଣଶୀଳ ବ୍ରାହ୍ମଣମାନେ କେବଳ "ଗ୍ରନ୍ଥ ସଂରକ୍ଷଣ" ଅଧିକାରକୁ ଯେ କେବଳ ଏକଘଟିଆ କରି ରଖିଥିଲେ, ତା ନୁହେଁ, ସାମାଜିକ ଶକ୍ତିକୁ ନିୟନ୍ତ୍ରଣ କରିବାର "ଯନ୍ତ୍ରଗୁଡ଼ିକୁ" ମଧ୍ୟ କରାୟତ୍ତ କରି ରଖିବା ପାଇଁ ରୀତିମତ ସଚେଷ୍ଟ ଥିଲେ । ଏ ପ୍ରସଙ୍ଗରେ ମନେ ରଖିବାକୁ ହେବ, ଯେଉଁ ଦେଶରେ ହାତ ଲେଖା ପୋଥି ଅନୁଲିଖିତ ନହେଲେ, ଜଳବାୟୁର କାରଣରୁ ନଷ୍ଟ ହୋଇ ଯାଉଥିଲା, ସେଉଳି ଏକ ଦେଶରେ ବ୍ରାହ୍ମଣମାନଙ୍କର ପ୍ରଥମୋକ୍ତ ଅଧିକାର ସଂରକ୍ଷଣ କରିବାର ଗୁରୁତ୍ୱ କେତେ ବେଶି ।) ବସ୍ତୁବାଦୀ ଚିନ୍ତାଧାରାର ପରମ୍ପରା ଭାରତରେ ପ୍ରବହମାନ ଥିଲା ଦୀର୍ଘ ଅନେକ ଶତାବ୍ଦୀ ଧରି । ଭାରତୀୟ ଚିନ୍ତାଧାରାର ଅନ୍ୟାନ୍ୟ କ୍ଷେତ୍ରରେ ଏହି ଧାରାର ପ୍ରଭାବ ବହୁ ବ୍ୟାପକ ଭାବେ ପଡ଼ିଥିଲା । ପ୍ରାଚୀନ ଭାରତୀୟ ବସ୍ତୁବାଦୀ ଚିନ୍ତାଧାରା ସାରା ବିଶ୍ୱର ଦର୍ଶନଶାସ୍ତ୍ରର ଇତିହାସରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଛି – ଏହି ଚିନ୍ତାଧାରାର ଅନ୍ତର୍ଭୁକ୍ତ ଭିନ୍ନ ଭିନ୍ନ ମତବାଦ, ଏହାର ବକ୍ତବ୍ୟସମୂହର ଦୁଃସାହସ ଓ ଗଭୀରତା କେବଳ ଯେ ୟୁରୋପୀୟ ଶାସ୍ତ୍ରୀୟ ଦାର୍ଶନିକମାନଙ୍କ ଦ୍ୱାରା ଅର୍ଜିତ ସାଫଲ୍ୟର ସମକକ୍ଷ ଥିଲା, ତା ନୁହେଁ, ଅନେକ ସମୟରେ ତାକୁ ଅତିକ୍ରମ କରି ଯାଉଥିଲା ।

## ଷଡ଼ ଦର୍ଶନ ।

### ସାଂଖ୍ୟ

ହିନ୍ଦୁ ଧର୍ମ ସହିତ ସଂଯୁକ୍ତ ଦର୍ଶନଶାସ୍ତ୍ରକୁ ପରମ୍ପରାନୁଯାୟୀ ଛଅଟି ଦର୍ଶନ ବା ଦାର୍ଶନିକ ଧାରାରେ ବିଭକ୍ତ କରାଯାଏ । ଏହି ଛଅଟି ଦର୍ଶନ ମଧ୍ୟରେ ଐକ୍ୟ ସୂତ୍ରଟି ହେଉଛି, ଏସବୁ ମଧ୍ୟରେ ଥିବା କେତେକ ସାଧାରଣ ବୈଶିଷ୍ଟ୍ୟ, ଯାହା ଦ୍ୱାରା ହିନ୍ଦୁ ଧର୍ମ ସହିତ ଏସବୁର ସଂପର୍କ ମଧ୍ୟ ନିରୂପିତ ହୋଇଥାଏ । ଏହିସବୁ ବୈଶିଷ୍ଟ୍ୟ ହେଉଛି, ଏହି ଛଅଟିଯାକ ଦାର୍ଶନିକ ଧାରା

ବେଦସମୂହ ପ୍ରତି ଓ "କର୍ମଯୋଗର" ବିଧିବିଧାନ ପ୍ରତି ସେମାନଙ୍କ ଆନୁଗତ୍ୟକୁ ସ୍ୱୀକାର କରି ନେଇଛନ୍ତି । ଏବଂ ଆସ୍ଥା ଜ୍ଞାପନ କରିଛନ୍ତି ମାନବ ଅସ୍ତିତ୍ୱର ପରମ ଲକ୍ଷ୍ୟ ରୂପେ "ଚରମ (ଅର୍ଥାତ୍, ଅତୀନ୍ଦ୍ରିୟବାଦୀ) ମୋକ୍ଷ ଲାଭ" ପ୍ରତି । ତେବେ ଏହା ଛଡ଼ା, ଏହି ଛଅଟି ଦାର୍ଶନିକ ଧାରା ମଧ୍ୟରେ ପାର୍ଥକ୍ୟ ଅନେକ : ଏସବୁ ଅନ୍ତର୍ଗତ ବହୁ ଦାର୍ଶନିକ ଧ୍ୟାନଧାରଣା ଭିନ୍ନ ଭିନ୍ନ ଧରଣର, ବସ୍ତୁତଃ, ସେସବୁ ପ୍ରାୟ ପରସ୍ପର ବିରୋଧୀ ମଧ୍ୟ ।

ସାଂଖ୍ୟ ଦର୍ଶନର ଉତ୍ପତ୍ତି ଓ ତା'ର ପ୍ରକୃତି ନିରୂପଣ ହେଉଛି ଏକ ଜଟିଳ ବିଷୟ । ଏହି ଦାର୍ଶନିକ ଧାରଣାଟିର ପ୍ରକୃତ ପ୍ରକୃତି ନିରୂପଣ ଘେନି ଆଳାପ ଆଲୋଚନା ଚାଲିଛି ଆଜିକି ପ୍ରାୟ ଦେଢ଼ ଶହ ବର୍ଷ ଧରି ଏବଂ ଏ ସଂପର୍କରେ ସଂପୂର୍ଣ୍ଣ ବିପରୀତ ମତାମତ ମଧ୍ୟ ପ୍ରକାଶ ପାଇଛି । କେତେକ କହିଛନ୍ତି, ସାଂଖ୍ୟ ହେଉଛି ଏକ ଧର୍ମୀୟ, ରହସ୍ୟବାଦୀ ବା ଅତୀନ୍ଦ୍ରିୟବାଦୀ ଦର୍ଶନ, ଆଉ କେତେକ ଏହାକୁ ବସ୍ତୁବାଦୀ ଦର୍ଶନ ବୋଲି କହିବାକୁ ମଧ୍ୟ ଦ୍ୱିଧାବୋଧ କରି ନାହାନ୍ତି । ମତରେ ଏତାଦୃଶ୍ୟ ବୈପରୀତ୍ୟର କାରଣକୁ ପ୍ରଥମ ଏବଂ ପ୍ରଧାନତଃ ବ୍ୟାଖ୍ୟା କରାଯାଏ ଯେ, ସାଂଖ୍ୟ ଦର୍ଶନର ପୌରାଣିକ ରୂପ ହେଉଛି ଦାର୍ଶନିକ ଦ୍ୱୈତବାଦର ଏକ ପ୍ରକାଶ ।

ସାଂଖ୍ୟ ଦର୍ଶନର ଉଦ୍ଭବ ଘଟିଥିଲା ଅତ୍ୟନ୍ତ ପ୍ରାଚୀନ କାଳରେ । ଏହା ପୂର୍ବରୁ ମାତ୍ର କେତୋଟି ଉପନିଷଦ ରଚିତ ହୋଇଥିଲା ଏବଂ ଏହା ମଧ୍ୟରେ ପୂର୍ଣ୍ଣତର ପ୍ରକାଶ ଘଟିଥିଲା ସେଇ ସୁଦୂର ଯୁଗର ସ୍ୱତଃସ୍ଫୂର୍ତ୍ତ ବସ୍ତୁବାଦର । କୌଟିଲ୍ୟ ମଧ୍ୟ ମାତ୍ର "ତ୍ରି ଦର୍ଶନର" ଉଲ୍ଲେଖ କରିଛନ୍ତି – ସାଂଖ୍ୟ, ଯୋଗ ଏବଂ ଲୋକାୟତ । ବଦରାୟନଙ୍କ ଦ୍ୱାରା ରଚିତ "ବ୍ରହ୍ମସୂତ୍ରରେ" (ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀରେ ରଚିତ ଏକ ପ୍ରାଚୀନ ବେଦାନ୍ତ ଗ୍ରନ୍ଥ) ସାଂଖ୍ୟର କେତେକ ଦାର୍ଶନିକ ଧାରଣାକୁ ସମାଲୋଚନା କରାଯାଇଛି । ମୌର୍ଯ୍ୟ ଯୁଗର ସାଂଖ୍ୟ, ସମ୍ଭବତଃ, ଏକ ସ୍ୱାଧୀନ ଦାର୍ଶନିକ ଧାରାରେ ପରିଣତ ହୋଇଥିଲା ଏବଂ ପ୍ରାଚୀନ ଭାରତର ବୁଦ୍ଧିଜୀବୀମାନଙ୍କ ଜୀବନରେ ସେତେବେଳେ ଏହା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ପାଳନ କରି ଚାଲିଥିଲା ।

ଲୋକ ଶ୍ରୁତି ଅନୁଯାୟୀ, କପିଳଙ୍କୁ ସାଂଖ୍ୟ ଦର୍ଶନର ପ୍ରତିଷ୍ଠାତା ବୋଲି ବିଚାର କରାଯାଏ । "ଶ୍ୱେତାଶ୍ୱତରୋପନିଷଦରେ" (ପଞ୍ଚମ ଅଧ୍ୟାୟ, ଦ୍ୱିତୀୟ ଖଣ୍ଡ) ଏ ପ୍ରସଙ୍ଗରେ ଜନୈକ "ରକ୍ତ ବର୍ଣ୍ଣ ଋଷିଙ୍କର" ("କପିଳ" ଶବ୍ଦର ଅର୍ଥ ରକ୍ତାଭ ହଳଦୀ ବର୍ଣ୍ଣ) ଉଲ୍ଲେଖ ଅଛି । ତେବେ ସିଏ ଏହି ଦାର୍ଶନିକ ଧାରାର ପ୍ରକୃତ ପ୍ରବକ୍ତା କି ନୁହନ୍ତି, ତାହା ମୋଟେ ସୁନିଶ୍ଚିତ ନୁହେଁ । ବର୍ତ୍ତମାନ ପଣ୍ଡିତ ମହଲରେ ଏ ସମସ୍ୟାର ନିମ୍ନୋକ୍ତ ଆପୋସଟି ସାଧାରଣ ଭାବେ ଗୃହୀତ ହୋଇଛି – ଯେଉଁସବୁ ଋଷି ଏହି ବିଶେଷ ଦାର୍ଶନିକ ଚିନ୍ତାଧାରାର ପ୍ରବକ୍ତା ଥିଲେ ସେମାନଙ୍କ ମଧ୍ୟରେ ପ୍ରକୃତରେ ପ୍ରଥମ, କିମ୍ବା ପ୍ରଥମମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ କପିଳ ନାମକ ଜଣେ ଋଷି । ତେବେ "ଶ୍ୱେତାଶ୍ୱତରୋପନିଷଦରେ" ଯେଉଁ କପିଳ ଋଷିଙ୍କ ନାମ ଉଲ୍ଲେଖ କରାଯାଇଛି, ସିଏ ହିଁ ଏହି କପିଳ କି ନା, ତାହା ନିର୍ଣ୍ଣୟ କରିବା ଅସମ୍ଭବ । ତାଙ୍କର ଏବଂ ତାଙ୍କର ଦୁଇ ଶିଷ୍ୟ ଅସୁର ଏବଂ ପଞ୍ଚଶିଖଙ୍କ ରଚନାବଳୀର ଅସ୍ତିତ୍ୱ ଏବେ ନାହିଁ, ତେବେ ଏ ବିଷୟରେ କୌଣସି ସନ୍ଦେହ ନାହିଁ ଯେ, ଏହି ତିନିଜଣ ଗ୍ରନ୍ଥକାର କାଳ୍ପନିକ ନୁହନ୍ତି, ବାସ୍ତବରେ ଏମାନଙ୍କର ଅସ୍ତିତ୍ୱ ଥିଲା । ଭାରତୀୟ ମହାକାବ୍ୟଗୁଡ଼ିକରେ ଋଷି ଅସୁରଙ୍କ ନାମ ଅନେକ ଥର ଦେଖିବାକୁ ମିଳେ ଏବଂ ଈଶ୍ୱରକୃଷ୍ଣଙ୍କ କୃତ "ସାଂଖ୍ୟ କାରିକାରେ" "କାରିକା" ରଚୟିତାଙ୍କର ପୂର୍ବସୂରୀ ହିସାବରେ ପଞ୍ଚଶିଖଙ୍କ ନାମ ଦେଖିବାକୁ ମିଳିଥାଏ ।

ଈଶ୍ୱରକୃଷ୍ଣଙ୍କର ଏହି ପୋଥି ଖଣ୍ଡକ ଖ୍ରୀଷ୍ଟୀୟ ଚତୁର୍ଥ ପଞ୍ଚମ ଶତାବ୍ଦୀରେ ରଚିତ ହୋଇଥିଲା ବୋଲି ମନେ ହୁଏ । ଏଥିରେ ସାଂଖ୍ୟ ଦର୍ଶନର ଆଦି ରୂପ ପୁଣି ପୁନର୍ନିର୍ମିତ ହୋଇଛି । ଏହି ଶେଷୋକ୍ତ ବକ୍ତବ୍ୟର ସମର୍ଥନ ମିଳିଥାଏ ଉପରୋକ୍ତ "କାରିକାର" ପାଠ ସହିତ ତା'ର ପୂର୍ବବର୍ତ୍ତୀ ପୋଥିସମୂହରେ (ଯଥା, ଉଦାହରଣ ସ୍ୱରୂପ, ବଦରାୟନଙ୍କ ପୋଥିରେ) ଉଲ୍ଲିଖିତ ସାଂଖ୍ୟ ଦର୍ଶନ ସଂପର୍କିତ ମନ୍ତବ୍ୟ ଆଦିକୁ ମିଳେଇ କି ଦେଖିଲେ । ଏ ପ୍ରସଙ୍ଗରେ ବୌଦ୍ଧ ପୋଥିମାନଙ୍କରେ ଉଲ୍ଲିଖିତ ମନ୍ତବ୍ୟାଦିର ତୁଳନା କରାଯାଇ ପାରେ । ବୌଦ୍ଧ ଧର୍ମ ସହିତ ଅସଂଯୁକ୍ତ ଦାର୍ଶନିକ ପୋଥିଗୁଡ଼ିକର ବିପରୀତରେ କେବଳ "ସାଂଖ୍ୟ କାରିକା" ଚୀନା ଭାଷାରେ ଅନୂଦିତ ଏବଂ ମହାଯାନୀ ବୌଦ୍ଧମାନଙ୍କ ନିକଟରେ ପରିଚିତ ଥିଲା ।

ସାଂଖ୍ୟ ଦର୍ଶନର ଆଦି ରୂପର ସଠିକ ପରିଚୟ ସମ୍ବନ୍ଧରେ ଧାରଣା କରିବା କଠିନ । ଏ ବିଷୟରେ ସବୁଠାରୁ ସହାୟକ ଚାବିକାଠିଟି ହେଉଛି ବଦରାୟନଙ୍କ "ବ୍ରହ୍ମସୂତ୍ର" । ଆଦି ସାଂଖ୍ୟ ଦର୍ଶନର ବିରୋଧୀ ହିସାବରେ ବଦରାୟନ ଏହି ଦର୍ଶନର ଯେଉଁସବୁ ବୈଶିଷ୍ଟ୍ୟସୂଚକ ଧ୍ୟାନଧାରଣା ଉପନିଷଦର ଭାବବାଦୀ ଧ୍ୟାନଧାରଣାସମୂହର ବ୍ୟାଖ୍ୟା ବୈଦାନ୍ତିକ ଧାରା ଓ ଭାରତୀୟ ଦର୍ଶନର ଅନ୍ୟାନ୍ୟ ସଂଶ୍ଳିଷ୍ଟ ଚିନ୍ତାଧାରାର ଅନ୍ତର୍ଗତ ଭାବନାର ବିରୋଧୀ, ସେସବୁର ଏକ ନିୟମିତ ଓ ସୁସଙ୍ଗତ ବିବରଣ ଦେଇଛନ୍ତି । "ବ୍ରହ୍ମସୂତ୍ରର" ରଚୟିତା ସାଂଖ୍ୟ ଦର୍ଶନର ପରିଚୟ ପ୍ରଦାନ କରିଛନ୍ତି ଏହାକୁ "ପ୍ରଧାନକରଣବାଦ" (ପ୍ରକୃତି ହେଉଛି ବିଶ୍ୱବ୍ରହ୍ମାଣ୍ଡର ଉତ୍ସ, ଏହି ମତବାଦ), କିମ୍ବା "ଅଚେତନ କରଣବାଦ" (କୌଣସି ଅଚେତନ, ଅର୍ଥାତ୍, ବସ୍ତୁ ବା ପ୍ରକୃତି, ବିଶ୍ୱର ଭିତ୍ତି ସ୍ୱରୂପ ଏହି ମତବାଦ) ଆଖ୍ୟା ପ୍ରଦାନ କରି । ବଦରାୟନ ଜୋର ଦେଇ କହିଛନ୍ତି ଯେ, ଉପରୋକ୍ତ ଏହି ଉଭୟ ମତବାଦ ହିଁ ବୈଦାନ୍ତିକମାନଙ୍କ ପକ୍ଷରେ ସଂପୂର୍ଣ୍ଣ ଅଗ୍ରହଣୀୟ, କାରଣ ସେମାନଙ୍କ ନିକଟରେ ବ୍ରହ୍ମନ୍, ଅଥବା "ବିଶୁଦ୍ଧ ଚୈତନ୍ୟ" ହେଉଛି ବିଶ୍ୱଜଗତର ଆଦି କାରଣ ।

ବଦରାୟନ ସାଂଖ୍ୟ ଦର୍ଶନକୁ ବେଦାନ୍ତର ମୁଖ୍ୟ ବିରୋଧୀ ବୋଲି ମନେ କରିଥିଲେ । ସମ୍ଭବତଃ, ତତ୍କାଳୀନ ସମାଜରେ ଏହି ଦର୍ଶନର ପ୍ରଭାବ ଏବଂ ତାଙ୍କ ନିଜସ୍ୱ ଦାର୍ଶନିକ ବିଶ୍ୱାସ ସହିତ ଏହାର ମତାଦର୍ଶଗତ ସାଦୃଶ୍ୟ ଏହାର କାରଣ ହୋଇ ପାରେ । ସେ ମନେ କରୁଥିଲେ ଯେ, ସାଂଖ୍ୟର ସିଦ୍ଧାନ୍ତ ତତ୍ତ୍ୱଗୁଡ଼ିକୁ ଯଦି ପ୍ରତ୍ୟାଖ୍ୟାନ କରାଯାଏ, ତେବେ ବିନା ବ୍ୟତିକ୍ରମରେ ଅନ୍ୟ ସମସ୍ତ ବସ୍ତୁବାଦୀ ତତ୍ତ୍ୱର ଭିତ୍ତି ଭୂମି ମଧ୍ୟ ଧୂଳିସାତ୍ ହୋଇଯିବ । ଏ ବିଷୟରେ ଶଙ୍କରାଚାର୍ଯ୍ୟ ମଧ୍ୟ ତାଙ୍କ ସହିତ ଏକମତ ଥିଲେ । "ବ୍ରହ୍ମସୂତ୍ରର" ଯେଉଁସବୁ ଅଧ୍ୟାୟରେ ସାଂଖ୍ୟ ଦର୍ଶନ ନେଇ ଆଲୋଚନା ଅଛି, ସେସବୁ ଅଧ୍ୟାୟଗୁଡ଼ିକ ସଂପର୍କରେ ଶଙ୍କରଙ୍କ ଦ୍ୱାରା ରଚିତ ବିଶଦ ଭାଷ୍ୟରେ ସେ ମଧ୍ୟ ଜୋର ଦେଇ କହିଥିଲେ ଯେ, ବୈଦାନ୍ତିକମାନଙ୍କ ପକ୍ଷରେ ଏହି ବିଶେଷ ଦାର୍ଶନିକ ମତ ବିରୁଦ୍ଧରେ ଜୟ ଲାଭ ଅନ୍ୟ ସମସ୍ତ ବିରୋଧୀ ମତ ବିରୁଦ୍ଧରେ ଜୟ ଲାଭ ସହିତ ସମାନ । ପ୍ରଧାନତଃ (ବସ୍ତୁ ବା ପ୍ରକୃତି) ବିଶ୍ୱର ଆଦି କାରଣ ଏହି ତତ୍ତ୍ୱଟି ଶଙ୍କରାଚାର୍ଯ୍ୟଙ୍କ ଦୃଷ୍ଟିରେ ଯେକୌଣସି ଧରଣର ପରମାଣୁ ସଂକ୍ରାନ୍ତ ଧାରଣାର ବିଶ୍ୱଜନୀନ ଏକ ତାତ୍ତ୍ୱିକ ଭିତ୍ତି ହିସାବରେ ପ୍ରତିଭାତ ହୋଇଛି । (ରକ୍ଷଣଶୀଳ ବ୍ରାହ୍ମଣ୍ୟ ମତାଦର୍ଶର ସମର୍ଥକ ଧ୍ୟାନଧାରଣା ଯେଉଁଥିରେ ପ୍ରାଧାନ୍ୟ ଲାଭ କରିଛି) ତତ୍କାଳୀନ ବହୁ ଗ୍ରନ୍ଥରେ ସାଂଖ୍ୟ ଦର୍ଶନର କୌଣସି ଉଲ୍ଲେଖ ମିଳେ ନାହିଁ । ତେବେ, ସାଂଖ୍ୟ ଏବଂ ଲୋକାୟତ ଏହି ଉଭୟ ଦର୍ଶନର ଉଲ୍ଲେଖ ବିଷୟରେ ସେସବୁର ସୁସ୍ପଷ୍ଟ ଅନିଚ୍ଛା ଏହାର କାରଣ ହୋଇ

ପାରେ, ଯେହେତୁ ସେସବୁ ଗ୍ରନ୍ଥର ରଚୟିତାମାନେ ଏହି ଦୁଇ ଦର୍ଶନକୁ ପରସ୍ପର ସହିତ ଘନିଷ୍ଠ ଭାବେ ସଂପୃକ୍ତ ବୋଲି ମନେ କରୁଥିଲେ । ସାଂଖ୍ୟ ଦର୍ଶନର ପ୍ରଧାନ ତାତ୍ତ୍ୱିକ ଭିତ୍ତିଟି ହେଉଛି, ଜଗତର ଆଦି ବସ୍ତୁନିଷ୍ଠ କାରଣ – ପ୍ରକୃତି ଅଥବା ପ୍ରଧାନ – ଅନାଦିକାଳରୁ ବିରାଜିତ ଏବଂ ନିଜସ୍ୱ ଆଭ୍ୟନ୍ତରୀଣ କାରଣ ବ୍ୟତୀତ ଅନ୍ୟ କୌଣସି ବାହ୍ୟ କାରଣ ଦ୍ୱାରା ତାହା ପ୍ରଭାବିତ ହୁଏ ନାହିଁ । ଇଂରେଜୀର "ନେଚର" (ବା ନିସର୍ଗ) ବା ପ୍ରକୃତି ଶବ୍ଦଟି ସାଂଖ୍ୟର ପୋଥିମାନଙ୍କର ଅନୁବାଦରେ ସାଧାରଣତଃ ପ୍ରକୃତି ବୋଲି ଅନୂଦିତ ହୋଇ ଆସିଛି । ତେବେ ପରେ କେତେକ ପଣ୍ଡିତ ପ୍ରମାଣ କରିଛନ୍ତି ଯେ, ପ୍ରକୃତିର ସଠିକ ଅନୁବାଦ ହେଉଛି "ମ୍ୟାଟର" (ବା ବସ୍ତୁ), କାରଣ ସାଂଖ୍ୟ ଗ୍ରନ୍ଥରେ "ମୂଳ ପ୍ରକୃତିର" (ବା ଆଦି ପ୍ରକୃତି) ପ୍ରୟୋଗ ପ୍ରକୃତି ଶବ୍ଦର ସମତୁଲ୍ୟ ଭାବେ ବ୍ୟବହୃତ ହୋଇଛି । ଏହା ଫଳରେ ଅସ୍ତିତ୍ୱର ସମସ୍ତ ରୂପର ଆଦି ଉତ୍ସ ହିସାବରେ ପ୍ରକୃତିର ସାର୍ବିକତା ଉପରେ ଗୁରୁତ୍ୱ ଆରୋପ କରାଯାଇଛି ।

ପ୍ରକୃତିର ଦୁଇଟି ରୂପ – ଗୋଟିଏ ହେଉଛି "ବ୍ୟକ୍ତ" (ସ୍ୱପ୍ରକାଶ) ଏବଂ ଅନ୍ୟଟି "ଅବ୍ୟକ୍ତ" (ଅପ୍ରକାଶ) । ଉପନିଷଦସମୂହରୁ ଏହି ଧାରଣା ଦୁଇଟି ଗୃହୀତ ହେଲେ ମଧ୍ୟ ସାଂଖ୍ୟରେ ତାହା ଭିନ୍ନ ଅର୍ଥରେ ବ୍ୟବହୃତ ହୋଇଛି । ଉପନିଷଦସମୂହରେ "ବ୍ୟକ୍ତ", ଅର୍ଥାତ୍, ସେଇ ଜଗତ, ଯାହା ଇନ୍ଦ୍ରିୟାନୁଭୂତି ଦ୍ୱାରା ଗୋଚର ଏବଂ ଦାର୍ଶନିକ ଦୃଷ୍ଟିଭଙ୍ଗିର ବିଶ୍ୱରରୁ "ଅବ୍ୟକ୍ତ", ତାକୁ ତୁଳନା କରାଯାଇଛି "ଅବ୍ୟକ୍ତ", ଅର୍ଥାତ୍, ଯାହା ଇନ୍ଦ୍ରିୟ ଗୋଚର ନୁହେଁ, ଅଥଚ ଯାହା ଏକମାତ୍ର ପ୍ରକୃତ ବା ସତ୍ୟ ବା ପରମବ୍ରହ୍ମର ଦ୍ୟୋତକ, ତାହା ସହିତ । ଅନ୍ୟ ପକ୍ଷରେ, ସାଂଖ୍ୟ ଦର୍ଶନରେ ଏହି ଦୁଇଟି ଶବ୍ଦରେ ବର୍ଣ୍ଣିତ ହୋଇଛି ବସ୍ତୁର ଦୁଇଟି ସମାନ ଭାବେ ସତ୍ୟ ଅସ୍ତିତ୍ୱର ରୂପ । ସେଠାରେ "ବ୍ୟକ୍ତ" (ପ୍ରକୃତି) ଉପସ୍ଥାପିତ ହୋଇଛି ସ୍ୱତଃସ୍ଫୂର୍ତ୍ତ ଭାବେ ଇନ୍ଦ୍ରିୟ ଗୋଚର ବସ୍ତୁସମୂହର ମୂର୍ତ୍ତ ସାମଗ୍ରିକତା ହିସାବରେ । "ଅବ୍ୟକ୍ତକୁ" ସେଠାରେ ପ୍ରଦର୍ଶିତ କରାଯାଇଛି ବିଶ୍ୱର ବସ୍ତୁସରାର ନୀତିଟିର ପ୍ରତିଫଳନ ହିସାବରେ ସମାନ ମାତ୍ରାରେ ସର୍ବବସ୍ତୁରେ ବିରାଜମାନ ରୂପେ । ଏହି ଅବ୍ୟକ୍ତ ହେଉଛି ସମସ୍ତ ପ୍ରକାରର ସମ୍ଭାବ୍ୟର ଆଧାର । ବିଶ୍ୱର ସୃଷ୍ଟି ପ୍ରକ୍ରିୟା ଏହି "ଆଦ୍ୟ ଅଖଣ୍ଡର" କେତେକ ଭୌତିକ ସ୍ୱରୂପରେ ବିଖଣ୍ଡନରେ ଅଭିବ୍ୟକ୍ତ ହୋଇଥାଏ ଏବଂ ଏହି ଖଣ୍ଡାଂଶଗୁଡ଼ିକ ଆଦି କାରଣରୁ ଠିକ୍ ସେତିକି ପୃଥକ୍ ହୁଏ, ଯେତିକି ମୃଣ୍ମୟ ପାତ୍ରଗୁଡ଼ିକ ସେମାନଙ୍କ ଆଦି କାରଣ ମୃର୍ତ୍ତିକାଠାରୁ ପୃଥକ୍ ହୋଇଥାଏ ।

ତାହେଲେ ଏହି ବିଶ୍ୱର ଗଠନ ଓ ତା'ର ପରବର୍ତ୍ତୀ ପରିବର୍ତ୍ତନର ପ୍ରକ୍ରିୟାଗୁଡ଼ିକ ସମ୍ଭବ ହେଲା ତେବେ କିପରି ? ସାଂଖ୍ୟ ଦର୍ଶନ ଏ ପ୍ରଶ୍ନର ଯେଉଁ ଉତ୍ତର ଦେଇଛି, ତାକୁ ବୁଝିବାକୁ ହେଲେ ଏହି ଧାରାର ଦାର୍ଶନିକମାନେ କାର୍ଯ୍ୟକାରଣ ସମ୍ବନ୍ଧର ଯେଉଁ ତତ୍ତ୍ୱଟିର (ବା ହେତୁବାଦ) ବ୍ୟାଖ୍ୟା କରିଛନ୍ତି, ତା ଘେନି ଆମେ ଆଲୋଚନା କରିବା ଦରକାର । ଏହି ତତ୍ତ୍ୱ "ସତ୍‌କାର୍ଯ୍ୟବାଦ" (କାରଣ ମଧ୍ୟରେ କାର୍ଯ୍ୟର ଉପସ୍ଥିତି ଓ ସେଇ କାରଣରୁ କାର୍ଯ୍ୟର ଉଦ୍‌ଭବ ସଂପର୍କିତ ତତ୍ତ୍ୱ) ନାମରେ ପରିଚିତ ହୋଇ ଆସିଛି । ଉପରୋକ୍ତ ଦାର୍ଶନିକମାନଙ୍କ ମତରେ, କାର୍ଯ୍ୟ ଯଦି କାରଣ ମଧ୍ୟରେ ଉପସ୍ଥିତ ନରହେ, ତେବେ କହିବାକୁ ହେବ, ଶୂନ୍ୟରୁ ତା'ର ଉଦ୍‌ଭବ ଘଟେ, ଅର୍ଥାତ୍, ତାହେଲେ ପ୍ରତ୍ୟେକ ନୂତନ ଘଟଣା ସଂଘଟନ ପାଇଁ ଅଲୌକିକ କୌଣସି ଶକ୍ତିର ହସ୍ତକ୍ଷେପ ଆବଶ୍ୟକ କରେ । ବସ୍ତୁତଃ, କୌଣସି

ବିଶେଷ କାର୍ଯ୍ୟ ସୁନିର୍ଦ୍ଦିଷ୍ଟ କୌଣସି ପ୍ରାଥମିକ କାରଣରୁ ହିଁ କେବଳ ଉଦ୍‌ଭୂତ ହେବାକୁ ସମର୍ଥ । ଯଥା, ଦଧି ଦୁଗ୍ଧରୁ ଉତ୍ପନ୍ନ ହୋଇଥାଏ, ସୂତାରୁ ଲୁଗା, ଆଦି । ତଦ୍ରୂପରି, ଏହି ଭାବେ ପ୍ରସ୍ତୁତ ପ୍ରତ୍ୟେକ ଜିନିଷକୁ ଯେଉଁ କାରଣ ରୂପ ଦେଇଛି, ତା ସହିତ କୌଣସି ନା କୌଣସି ଦିଗରୁ ସଂଯୁକ୍ତ ଥାଏ, ଯଥା, କୌଣସି ଗୋଟିଏ ଚୌକିର ଓଜନ ସେଇ ଚୌକି ତିଆରି କରିବାରେ ଯେତେ କାଠ ଲାଗିଛି, ତା'ର ଓଜନ ସହିତ ସମାନ ହୁଏ । ଗୋଟିଏ ମାଟି ପାତ୍ରର ଓଜନ ପାତ୍ରଟି ତିଆରି କରିବାରେ ଯେତେ ମାଟି ଲାଗିଛି, ସେଇ ମାଟିର ଓଜନ ସହିତ ସମାନ ହୁଏ । ଅବଶ୍ୟ, କାରଣ ମଧ୍ୟରେ କାର୍ଯ୍ୟର ଉପସ୍ଥିତିର ନିଛକ ସରଳ ସ୍ୱୀକୃତିର ଅର୍ଥ ହେଉଛି ବିଶ୍ୱଜଗତ ସ୍ଥିର, ଗତିହୀନ ଏବଂ ପରିବର୍ତ୍ତନକ୍ଷମ ନୁହେଁ ବୋଲି ଧରି ନେବା । ଅର୍ଥାତ୍, ଏହାର ଅର୍ଥ ହେଲା, ସମସ୍ତ କାର୍ଯ୍ୟକୁ କାରଣ ମଧ୍ୟରେ ଦ୍ରୁତ ଏବଂ ତତ୍ ସଙ୍ଗେ ସଙ୍ଗେ ମୂର୍ତ୍ତ ହୋଇ ଉଠିବାକୁ ହେବ । ଏହି କାରଣରୁ ସାଂଖ୍ୟ ଦର୍ଶନର ପ୍ରବକ୍ତାମାନେ ସ୍ପଷ୍ଟ ଭାବେ କହିଛନ୍ତି ଯେ, କାର୍ଯ୍ୟ କାରଣ ମଧ୍ୟରେ ଗୁପ୍ତ ଭାବେ, ସମ୍ଭାବନା ମଧ୍ୟରେ ପୂର୍ଣ୍ଣ ହୋଇ ଉପସ୍ଥିତ ଥାଏ ଏବଂ ତାକୁ ମୂର୍ତ୍ତ ହୋଇ ଉଠିବାକୁ ହେଲେ କେତେକ ସୁନିର୍ଦ୍ଦିଷ୍ଟ ସର୍ତ୍ତପୂରଣର ପ୍ରୟୋଜନ ପଡ଼େ । କାରଣରୁ କାର୍ଯ୍ୟରେ ଉପନୀତ ହେବାଟା ବହୁ ଗୌଣ ଘଟଣାଦି ମାଧ୍ୟମରେ ହୋଇଥାଏ ଏବଂ ସେଇସବୁ ହିଁ କେବଳ କାରଣ ମଧ୍ୟରେ ନିହିତ ବହୁ ସମ୍ଭାବନାକୁ ପ୍ରସ୍ଫୁଟ କରିବାକୁ ସମର୍ଥ ।

ମଧ୍ୟ ଯୁଗରେ ମାଧବାଚାର୍ଯ୍ୟଙ୍କ ଦ୍ୱାରା ରଚିତ ବହୁ ବିଭିନ୍ନ ଦାର୍ଶନିକ ଧାରାର ରଚନାଦିର ସାରସଂକଳନ "ସର୍ବଦର୍ଶନ ସଂଗ୍ରହ" ନାମକ ଗ୍ରନ୍ଥରେ ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତୀୟ କାର୍ଯ୍ୟକାରଣ ସଂପର୍କିତ ଦୁଇଟି ସିଦ୍ଧାନ୍ତର ଉଲ୍ଲେଖ ଦେଖିବାକୁ ମିଳେ । ସେ ଦୁଇଟି ମଧ୍ୟରୁ ଗୋଟିଏ ହେଲା "ପରିଣାମବାଦ" (କାରଣର କାର୍ଯ୍ୟକୁ ରୂପାନ୍ତରର ବାସ୍ତବତା ସଂପର୍କିତ ତତ୍ତ୍ୱ) ଏବଂ ଅନ୍ୟଟି "ବିବର୍ତ୍ତବାଦ" (କାର୍ଯ୍ୟର ମିଥ୍ୟା ବା ଅଳୀକ ପ୍ରକୃତି ସଂବନ୍ଧୀୟ ତତ୍ତ୍ୱ) ।

ଉପରୋକ୍ତ ପ୍ରଥମ ସିଦ୍ଧାନ୍ତଟି ସାଂଖ୍ୟ ଦର୍ଶନ ସହିତ ଏବଂ ଦ୍ୱିତୀୟଟି ବେଦାନ୍ତ ଦର୍ଶନ ସହିତ ଯୁକ୍ତ । ଏହି ସିଦ୍ଧାନ୍ତ ଦୁଇଟିକୁ ସାଧାରଣ ଭାବେ କାର୍ଯ୍ୟ ଓ କାରଣ ମଧ୍ୟରେ ପରସ୍ପର ସଂପର୍କର ପ୍ରକୃତି ବିଷୟକ ପ୍ରଶ୍ନଟିର ଦୁଇଟି ଭିନ୍ନ ଭିନ୍ନ ଉତ୍ତର ହିସାବରେ ଚିହ୍ନିତ କରାଯାଇଥାଏ । ଏଠାରେ ମଧ୍ୟ, ପୁଣି ଥରେ ସାଂଖ୍ୟ ଦାର୍ଶନିକମାନେ ବସ୍ତୁବାଦୀ ଦୃଷ୍ଟିଭଙ୍ଗୀର ସପକ୍ଷରେ ଦଣ୍ଡାୟମାନ ହୋଇଛନ୍ତି, ଗୁଡ଼ିଏ ଘଟଣାର ଆଉ ଗୁଡ଼ିଏ ଘଟଣାକୁ ରୂପାନ୍ତର ହେବାକୁ ଦେଖିଛନ୍ତି ବସ୍ତୁଭିତ୍ତିକ ପ୍ରକୃତ, ସତ୍ୟ ପ୍ରକ୍ରିୟା ହିସାବରେ । ଅପର ପକ୍ଷରେ ବୈଦାନ୍ତିକମାନେ ପ୍ରଶ୍ନଟିକୁ ଭାବବାଦୀ ଦୃଷ୍ଟିକୋଣରୁ ଦେଖିଛନ୍ତି, କାରଣ ଏକମାତ୍ର ପରମବ୍ରହ୍ମକୁ ସେମାନେ ପ୍ରକୃତ ଅସ୍ତିତ୍ୱଶୀଳ ସତ୍ତା ବୋଲି ଗଣ୍ୟ କରିଛନ୍ତି ଏବଂ ବସ୍ତୁସମୂହ ଓ ତା'ର ପରିବର୍ତ୍ତନକୁ ମାୟା ବ୍ୟତୀତ ଆଉ କିଛି ବୋଲି ଭାବି ନାହାନ୍ତି ।

ସାଂଖ୍ୟ ଦର୍ଶନର ଆଉ "ଏକ ଭିତ୍ତି ପ୍ରସ୍ତର" ହେଉଛି ତା'ର ବିବର୍ତ୍ତନ ସିଦ୍ଧାନ୍ତ । ଏହି ତତ୍ତ୍ୱ ଅନୁଯାୟୀ ବସ୍ତୁ, ମୂଳତଃ, ଏକ ସଂହତଃ "ଅବ୍ୟକ୍ତ" ରୂପରେ ଥିଲା । ଆମ ଇନ୍ଦ୍ରିୟ ଦ୍ୱାରା ଗୋଚର ବସ୍ତୁରାଜି ଓ ସତ୍ତାର ଏକ ଜଗତରେ ଏହି ଅବ୍ୟକ୍ତ ରୂପର ରୂପାନ୍ତର ସଂଘଟିତ ହେଉଛି ତିନୋଟି ଗୁଣ ବା ତିନୋଟି "ପ୍ରକୃତି" ସାହାଯ୍ୟରେ – ଯେଉଁମାନଙ୍କର ନାନାବିଧ ଯୋଗ ଫଳର ସାହାଯ୍ୟରେ ପୁଣି ନିର୍ଦ୍ଧାରିତ ହେଉଛି ବିଶ୍ୱବ୍ରହ୍ମାଣ୍ଡର ଗତି ଓ ବିକାଶ । ଏହି ତିନୋଟି ଗୁଣର ନାମରେ ସେମାନଙ୍କ ସ୍ୱରୂପ ପ୍ରତିଫଳିତ ହୁଏ । ଯଥା, "ତମସ୍" (ଅନ୍ଧକାର), "ରଜସ୍" (ଆବେଗ), ଏବଂ "ସତ୍ତ୍ୱ"

(ନିର୍ଯ୍ୟାସ, ସତ୍ୟ) । ଏହି ତିନୋଟି ଗୁଣ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ରଜସ୍ – ତେଜ, ଶକ୍ତି ଓ ସକ୍ରିୟତାର ପ୍ରକାଶକ । ଅନ୍ୟ ଦିଗରେ, ତମସ୍ ଜଡ଼ତ୍ୱ ବା ନିଷ୍କ୍ରିୟତା ଏବଂ ସତ୍ତ୍ୱ ସଚେତନତା, ସମଭାବ ଓ ପ୍ରଶାନ୍ତିର ପରିଚାୟକ । ଏହି ତିନୋଟି ପ୍ରକୃତ ଅଥବା "ଅସ୍ତିତ୍ୱ ଗୁଣର" ଉଲ୍ଲେଖ ଉପନିଷଦସମୂହରେ ମଧ୍ୟ ମିଳିଥାଏ । ତେବେ ସାଂଖ୍ୟ ଦର୍ଶନର ଏହି ତିନୋଟି ଗୁଣ ସଂପୂର୍ଣ୍ଣ ମୌଳିକ ଭାବେ ନୂତନ ତାତ୍ପର୍ଯ୍ୟ ପ୍ରଦାନ କରିଛି । ସେଠାରେ ଏହି ପ୍ରକୃତଗୁଡ଼ିକ ଯୁକ୍ତ ହୋଇଛି ଏହି ଦର୍ଶନର ମୂଳ ତାତ୍ତ୍ୱିକ ଭିତ୍ତି ବା ବିଶ୍ୱ ସୃଷ୍ଟିର ଆଦି କାରଣର ବସ୍ତୁଭିତ୍ତିକ ଚରିତ୍ର ସହିତ । ଗୁଣକୁ ସେଠାରେ ପ୍ରଦର୍ଶନ କରାଯାଇଛି "ସୂତ୍ର" ଅଥବା "ରଜ୍ଜୁ" ହିସାବରେ, "ଗୁଣ" ଅଥବା "ଧର୍ମ" ହିସାବରେ । ଫଳରେ ଗୋଟିଏ ଶବ୍ଦରେ ଦୁଇଟି ବିଭିନ୍ନ ଧାରଣାକୁ (ଯେଥା, "ରଜ୍ଜୁ" ଏବଂ "ଧର୍ମକୁ") ଅଙ୍ଗୀଭୂତ କରିବା ଦ୍ୱାରା ସୃଷ୍ଟି ହୋଇଛି ରୂପକ ଅଳଙ୍କାର, ଏବଂ ସାଂଖ୍ୟ ଦର୍ଶନର ପ୍ରବକ୍ତାମାନେ ଏହିସବୁ ଅଳଙ୍କାର ବ୍ୟବହାର କରିଛନ୍ତି ଇତିପୂର୍ବରୁ ସୁପରିଚିତ "ଗୁଣସମୂହ ତତ୍ତ୍ୱର" ବ୍ୟାଖ୍ୟା ମଧ୍ୟରେ । ପ୍ରକୃତିକୁ ସେମାନେ ତୁଳନା କରିଛନ୍ତି ତିନୋଟି ସୂତାରେ ବୁଣା ଏକ ରଜ୍ଜୁ ସହିତ । ସେମାନେ କହିଛନ୍ତି, ଯେକୌଣସି ବସ୍ତୁ ମଧ୍ୟରେ ଅବଶ୍ୟମ୍ଭାବୀ ରୂପେ ଏକ ସଙ୍ଗରେ ଏହି ତିନୋଟି ଗୁଣର ସମାବେଶ ଘଟିଛି, ତେବେ ବସ୍ତୁ ନିଜକୁ ଯେଉଁ ଭାବେ ପ୍ରକାଶ କରିବ, ତଦନୁଯାୟୀ ଏହି ତିନି ଗୁଣର ହାରରେ ତାରତମ୍ୟ ଘଟିବ ।

"ଆଦି" ଓ ପରବର୍ତ୍ତୀ "ଶାସ୍ତ୍ରୀୟ" ସାଂଖ୍ୟ ଦର୍ଶନ ମଧ୍ୟରେ ପାର୍ଥକ୍ୟ କ'ଣ ଓ କେତେ, ତାହା ଆଜି କେବଳ ଅନୁମାନର ବିଷୟ ହୋଇ ରହିଛି । ତେବେ ମିଳିଥିବା ପୋଥିପତ୍ରର ସାକ୍ଷ୍ୟରୁ ମନେ ହୁଏ ଯେ, ପ୍ରାଥମିକ ପର୍ଯ୍ୟାୟରେ ଏହି ଦର୍ଶନରେ ବସ୍ତୁବାଦୀ ତତ୍ତ୍ୱ ଚିନ୍ତାର ଦିଗଟି ବିଶେଷ ଭାବେ ବିକଶିତ ହୋଇଥିଲା । ତଥାପି, ଏହା କହି ଦେଇ ସାଂଖ୍ୟ ଦର୍ଶନକୁ ପୂରାପୂରି ବସ୍ତୁବାଦୀ ବୋଲି ଘୋଷଣା କରି ଦେବା ଏକ ସ୍ଥୂଳ ବିକୃତିସାଧନ ବ୍ୟତୀତ ଆଉ କିଛି ହେବ ନାହିଁ । ଏହି ଦର୍ଶନ ମଧ୍ୟରେ ଯେଉଁ ଦ୍ୱୈତ ଭାବ ନିହିତ ଥିଲା, ତାହା ବିଶେଷ ଭାବେ ସ୍ପଷ୍ଟ ହୋଇ ଉଠିଛି ଈଶ୍ୱରକୃଷ୍ଣଙ୍କ ସାଂଖ୍ୟ କାରିକାରେ ।

ଏହି ଦର୍ଶନରେ ଆମେ ସମାନ ଭାବେ ଦେଖିବାକୁ ପାଇଥାଏ ବିଶ୍ୱର ସୃଷ୍ଟିକର୍ତ୍ତା ଓ ଗଠନ ନିୟନ୍ତା ପ୍ରକୃତିକୁ ଏବଂ ଏହି ପ୍ରକୃତିଠାରୁ ସ୍ୱତନ୍ତ୍ର "ବିଶୁଦ୍ଧ ଚେତନା" ବା ପୁରୁଷକୁ । ଏକଥା ବିଶ୍ୱାସ କରିବାର କାରଣ ହେଲା, ସାଂଖ୍ୟରେ ପୁରୁଷକୁ ଯେପରି ଭାବେ ଉପସ୍ଥାପିତ କରାଯାଇଛି, ତା'ର ସୂତ୍ର ମିଳିଥାଏ ପୂର୍ବବର୍ତ୍ତୀ ଉପନିଷଦସମୂହରେ ।

ପୁରୁଷ ସକ୍ରିୟତାର ପରିପ୍ରକାଶ ନୁହେଁ, ଏହାର ନିର୍ଯ୍ୟାସ ହେଉଛି ମନନ ବା ଧ୍ୟାନ । ଏହାର ଅସ୍ତିତ୍ୱ ସମସ୍ତ ବସ୍ତୁରେ ବିଦ୍ୟମାନ, ବସ୍ତୁରାଜିର ଅସ୍ତିତ୍ୱ ସମ୍ଭବ ହୁଏ, ସେସବୁ ମଧ୍ୟରେ ଏହାର ଅସ୍ତିତ୍ୱ ଥାଏ ବୋଲି । ପୁରୁଷ ବୋଇଲେ କି ଜିନିଷ, ତାହା ଜାଣି ହୁଏ ନାହିଁ, ବୁଝି ହୁଏ ନାହିଁ କି ତାକୁ ବ୍ୟାଖ୍ୟା କରିବା ମଧ୍ୟ ଅସମ୍ଭବ, ତେବେ ଯେକୌଣସି – ଏପରିକି ସଂପୂର୍ଣ୍ଣ ନଗଣ୍ୟ – ବସ୍ତୁ ମଧ୍ୟରେ ବି ତା'ର ଅସ୍ତିତ୍ୱ ଅଛି । ପୁରୁଷ ଏବଂ ପ୍ରକୃତି (ପ୍ରାଣ ଏବଂ ନିସର୍ଗ) ମିଳିତ ହେଲେ ଯାଇ ପଚିଶଟି ମୂଳ ପଦାର୍ଥ ସୃଷ୍ଟି ହୁଏ, ଅର୍ଥାତ୍, ଅସ୍ତିତ୍ୱର ପଚିଶଟି ଆଦି ରୂପ ସୃଷ୍ଟି ହୁଏ । ସାଂଖ୍ୟ ମତରେ, ଏସବୁ ମଧ୍ୟରେ ବିଶୁଦ୍ଧ ଆତ୍ମିକ ନିର୍ଯ୍ୟାସ (ଯେଥା ପ୍ରଜ୍ଞା) ଠାରୁ ସଂପୂର୍ଣ୍ଣ ବସ୍ତୁ ସର୍ବସ୍ୱ (ଯେଥା, କ୍ଷିତି, ଅପ୍, ମରୁତ୍, ଆଦି) ଉପାଦାନ ମଧ୍ୟ ରହିଛି । ସାଂଖ୍ୟ ଦର୍ଶନ ମଧ୍ୟରେ ଏହା

ଛଡ଼ା ଦ୍ୱୈତଭାବ ପ୍ରକାଶ ପାଇଥାଏ ସେତିକିବେଳେ, ଯେତେବେଳେ ତାହା ପ୍ରକାଶ ପାଏ "ପ୍ରକୃତିର ସ୍ୱାଧୀନ ଗତିବିଧି" ସଂକ୍ରାନ୍ତ ଏକ ବସ୍ତୁବାଦୀ ଧାରଣା ସହିତ (ଅବଶ୍ୟ, ପ୍ରକୃତିର ପ୍ରତିଟି ମୂର୍ତ୍ତ ରୂପ ପ୍ରକାଶ ସହିତ ପୁରୁଷର ଅସ୍ତିତ୍ୱର ଧାରଣାଟି ଓତଃପ୍ରୋତ ଭାବେ ସଂପୃକ୍ତ) ଉପନିଷଦସମୂହର ରକ୍ଷଣଶୀଳ ପରମ୍ପରା ସହିତ ପୂରାପୂରି ଖାପ ଖାଇଲା ଭଳି ଏକ ଧର୍ମୀୟ ମୋକ୍ଷର ଧାରଣାକୁ ମିଳାଇବାରେ । ସାଂଖ୍ୟ ଘୋଷଣା କରିଛି ଯେ, କେବଳ ବସ୍ତୁରାଜିର ସ୍ୱାଭାବିକ ଗତିବିଧିକୁ ଅନୁଧାବନ କଲା ପରେ ମଣିଷ ପରିବର୍ତ୍ତନଶୀଳ ଓ ଅସ୍ଥିତିଶୀଳ ବସ୍ତୁଭିତ୍ତିକ ପ୍ରକୃତି ଉପରେ ସ୍ଥାୟୀ ଓ ଅପରିବର୍ତ୍ତନୀୟ ଆତ୍ମାର ସୀମାହୀନ ଆଧିପତ୍ୟକୁ ଉପଲବ୍ଧି କରି ପାରେ । ଏହି ଧାରଣା ଉପରେ ଭିତ୍ତି କରି ସାଂଖ୍ୟ ଆତ୍ମଶୋଧନ ଓ ଧ୍ୟାନରେ ମନୋନିବେଶ କରିବାକୁ ଆବେଦନ ଜଣାଇଛି ।

ପ୍ରକୃତି ଏବଂ ପୁରୁଷ ସାଥେ ସାଥେ ଅସ୍ତିତ୍ୱର ବିଷୟଟିକୁ ବ୍ୟାଖ୍ୟା କରିବା ଉଦ୍ଦେଶ୍ୟରେ ଈଶ୍ୱରକୃଷ୍ଣ ନିମ୍ନୋକ୍ତ ରୂପକଟିର ଆଶ୍ରୟ ନେଇଛନ୍ତି । ସେ କହିଛନ୍ତି, ପ୍ରକୃତି ହେଉଛି ଏକ ଅନ୍ଧ ମଣିଷ, ଯିଏକି ଚଲାବୁଲା କରି ପାରେ ଏବଂ ପୁରୁଷ ହେଉଛି ଆଉ ଏକ ମଣିଷ, ଯାହାର ଦୃଷ୍ଟି ଶକ୍ତି ଅଛି, କିନ୍ତୁ ଚଲାବୁଲା କରିବାର କ୍ଷମତା ନାହିଁ । ଏହି ଭାବେ "ଶାସ୍ତ୍ରୀୟ" ସାଂଖ୍ୟ ଦର୍ଶନର ପ୍ରବକ୍ତାମାନେ ପ୍ରକୃତିର ଅସ୍ତିତ୍ୱ ବିଷୟକ ପୂର୍ବତନ ବସ୍ତୁବାଦୀ ଧାରଣାକୁ ପ୍ରକୃତି ସାଙ୍ଗକୁ ଅସ୍ତିତ୍ୱଶୀଳ ଏକ ଧରଣର ଆତ୍ମିକ ପଦାର୍ଥର ଧାରଣା ସହିତ ମିଳେଇ ଦେଇଛନ୍ତି ।

"ଅର୍ଥଶାସ୍ତ୍ର", "ବ୍ରହ୍ମସୂତ୍ର", ମହାକାବ୍ୟ, ଚରକ କୃତ "ଚିକିତ୍ସାଶାସ୍ତ୍ର" ଏବଂ "ମାନବ ଧର୍ମଶାସ୍ତ୍ରରେ" ସାଂଖ୍ୟ ଦର୍ଶନର ଉଲ୍ଲେଖ ରହିଛି, ଏବଂ ଏଥିରୁ ପ୍ରମାଣ ମିଳେ ଯେ, ଏହି ଦାର୍ଶନିକ ମତବାଦ ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରଥମ ଶତାବ୍ଦୀଗୁଡ଼ିକରେ ବହୁଳ ଭାବେ ପ୍ରଚାରିତ ଥିଲା ।

ସାଂଖ୍ୟ ଦର୍ଶନ ଧର୍ମ ନିରପେକ୍ଷ ସଂସ୍କୃତି ଓ ବିଭିନ୍ନ ଧରଣର ଧର୍ମୀୟ ଆନ୍ଦୋଳନ ଉଭୟ ଉପରେ ବିପୁଳ ପ୍ରଭାବ ବିସ୍ତାର କରିଥିଲା । ବସ୍ତୁବାଦୀ ଚିନ୍ତାଧାରାଗୁଡ଼ିକୁ କ୍ରମଶଃ ଏହି ଦର୍ଶନରୁ ବହିଷ୍କୃତ କରିବା ସତ୍ତ୍ୱେ ଏହି ଦାର୍ଶନିକ ଧାରାର କେନ୍ଦ୍ରୀୟ ଭାବାଦର୍ଶଟି ଏବେ ମଧ୍ୟ ସ୍ପଷ୍ଟ ହୋଇ ରହିଛି । ଏବଂ ତାହା ହେଉଛି ଯେକୌଣସିମତେ ପରମବ୍ରହ୍ମର ଧାରଣାଟିକୁ ପ୍ରତ୍ୟାଖ୍ୟାନ କରିବା ଏବଂ ଅବିଚଳିତ ଚିତ୍ତରେ ନରତ୍ୱ ଆରୋପିତ ଦେବତାର ବ୍ୟକ୍ତି ସ୍ୱରୂପକୁ ବର୍ଜନ କରିବା ।

ସାଂଖ୍ୟ ଦର୍ଶନରେ ପ୍ରଥମେ ପ୍ରଚାରିତ କ୍ରମିକ ଆତ୍ମବିକାଶକ୍ଷମ "ଆଦି ନିସର୍ଗର" (ବା ପ୍ରକୃତି) ଧାରଣାଟି ପ୍ରାଚୀନ ଓ ମଧ୍ୟ ଯୁଗରେ ଭାରତବ୍ୟାପୀ ବସ୍ତୁବାଦୀ ଚିନ୍ତା ପରମ୍ପରାର ଉଦ୍‌ଭବ କ୍ଷେତ୍ରରେ ନିଃସନ୍ଦେହ ଭାବେ ଏକ ପ୍ରଧାନ ଅବଦାନ ।

## ଯୋଗ

ଦର୍ଶନସମୂହ ମଧ୍ୟରେ ଯୋଗ ଏକ ବିଶେଷ ସ୍ଥାନ ଅଧିକାର କରେ । ସାଧାରଣ ଭାବେ ଯୋଗ ଶବ୍ଦଟିରେ ମଣିଷକୁ କେତେକ ସମାଧି ଭଳି ଅବସ୍ଥାରେ ଉପନୀତ କରିବା ପାଇଁ ପର୍ଯ୍ୟାୟକ୍ରମିକ କେତେକ ବ୍ୟାୟାମ ପଦ୍ଧତିକୁ ବୁଝାଏ । କିମ୍ବା ମଣିଷ ଦେହରେ ଗୁପ୍ତ ଶାରୀରିକ ଶକ୍ତିକୁ ବିକଶିତ କରିବାର ସମ୍ଭାବନାକୁ ବିକଶିତ କରି ତୋଳିବା ଏବଂ ମାନସିକ ଅବସ୍ଥା ଉପରେ ମଣିଷର ନିୟନ୍ତ୍ରଣ

କ୍ଷମତାକୁ ବୃଦ୍ଧି କରିବା ଉଦ୍ଦେଶ୍ୟରେ ଆଚରିତ ଏକ ବ୍ୟାୟାମ ପ୍ରକ୍ରିୟାକୁ ବୁଝାଏ (ଊନବିଂଶ ଶତାବ୍ଦୀରେ ୟୁରୋପରେ ଏହି ଶେଷୋକ୍ତ ଅର୍ଥରେ "ଯୋଗ" ଶବ୍ଦଟି ଗୃହୀତ ହୋଇଥିଲା) । କିନ୍ତୁ ପ୍ରକୃତରେ ଯୋଗ ହେଉଛି ନିଜସ୍ୱ ଅତି ମୌଳିକ ବୈଶିଷ୍ଟ୍ୟଯୁକ୍ତ ଏକ ସୁବିକଶିତ ଚିନ୍ତାଧାରା ।

ଶାସ୍ତ୍ରୀୟ ଯୋଗ ଦର୍ଶନର ସୂତ୍ରପାତ ହିସାବରେ ଋଷି ପତଞ୍ଜଳିଙ୍କର "ଯୋଗସୂତ୍ର" ନାମକ ପୋଥିଟିକୁ ଧରାଯାଏ ।

ଏହି ପୋଥିଟିରେ ଯୋଗ ଦର୍ଶନର ସମସ୍ତ ମୌଳିକ ସିଦ୍ଧାନ୍ତ ନିହିତ ରହିଛି । ପରେ, ଅବଶ୍ୟ, ଏହି ସିଦ୍ଧାନ୍ତଗୁଡ଼ିକୁ ଆଉରି ବିକଶିତ ଏବଂ ପରିଣତ କରାଯାଇଛି ବହୁବିଧ ପରବର୍ତ୍ତୀ ରଚନାରେ । ଏସବୁ ମଧ୍ୟରେ ସର୍ବଶେଷ ଭାବେ ଉଲ୍ଲେଖଯୋଗ୍ୟ "ଯୋଗସୂତ୍ର" ସମ୍ବନ୍ଧରେ ବ୍ୟାସଙ୍କ ବ୍ୟାଖ୍ୟା ସମନ୍ୱିତ "ବ୍ୟାସ ଭାଷ୍ୟ" (ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ) ଏବଂ ବାଚସ୍ପତିଙ୍କ "ତତ୍ତ୍ୱବୈଶାରଦୀ" (ନବମ ଶତାବ୍ଦୀ) ଗ୍ରନ୍ଥ ଦ୍ୱୟ । ଏହି ଦୁଇଟିରେ ଯୋଗ ଦର୍ଶନର ପାରିଭାଷିକ ଶବ୍ଦାବଳୀର ବିଶଦ ବ୍ୟାଖ୍ୟା ଦିଆଯାଇଛି ଏବଂ ପତଞ୍ଜଳିଙ୍କ "ଯୋଗସୂତ୍ରର" କେତେକ ଅଂଶ ଅନୁଧାବନ ପକ୍ଷରେ ଗୁରୁତ୍ୱପୂର୍ଣ୍ଣ ତଥ୍ୟାଦି ରହିଛି ।

ଭାରତୀୟ ପରମ୍ପରା ଅନୁସାରେ ସାଂଖ୍ୟ ଏବଂ ଯୋଗ ଦର୍ଶନର ଦୁଇ ଧାରାକୁ ପରସ୍ପର ପରିପୂରକ ଦୁଇ ଧାରା ହିସାବରେ ଗଣ୍ୟ କରାଯାଇଥାଏ । ବସ୍ତୁତଃ, ସାଂଖ୍ୟ ଦର୍ଶନର ବହୁ ଧ୍ୟାନଧାରଣା (ଯଥା, ଦ୍ୱୈତବାଦ, "ପଚିଶଟି ମୂଳ ଉପାଦାନ" ସଂପର୍କରେ ଧାରଣା, ଆଦି) ଯୋଗ ଦର୍ଶନରେ ଗୃହୀତ ହୋଇଛି । ତେବେ ଯୋଗ ଦାର୍ଶନିକମାନେ ଏହିସବୁ ପ୍ରଭାବକୁ ସେମାନଙ୍କ ମତାଦର୍ଶ କ୍ଷେତ୍ରରେ ଗୌଣ ବ୍ୟାପାର ବୋଲି ଗଣ୍ୟ କରିବାକୁ ଚେଷ୍ଟା କରିଛନ୍ତି । ସେମାନେ, ବରଂ, ମନୋଯୋଗ ନିବଦ୍ଧ କରିଛନ୍ତି ମନସ୍ତତ୍ତ୍ୱ, ଜ୍ଞାନତତ୍ତ୍ୱ ଏବଂ ଦେହ ଉପରେ ମନର ନିୟନ୍ତ୍ରଣ ଲାଭ କଲା ଭଳି ବ୍ୟାବହାରିକ ପ୍ରକ୍ରିୟାଗୁଡ଼ିକ ଦିଗରେ । ଏହା ଛଡ଼ା ଯୋଗ ଦାର୍ଶନିକମାନେ ଘୋଷଣା କରିଛନ୍ତି ଯେ, ସେମାନଙ୍କ ଦର୍ଶନ ହେଉଛି ଈଶ୍ୱରବାଦୀ, କିନ୍ତୁ ସାଂଖ୍ୟ ଦର୍ଶନରେ ଏପରି କୌଣସି ଘୋଷଣା ନାହିଁ ।

ମନସ୍ତାତ୍ତ୍ୱିକ ମୌଳିକ ଧାରଣାଗୁଡ଼ିକର ବ୍ୟାଖ୍ୟାକୁ ଭାରତୀୟ ଦର୍ଶନଶାସ୍ତ୍ରର ଇତିହାସରେ ଯୋଗ ଦର୍ଶନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅବଦାନ ବୋଲି ଗଣ୍ୟ କରାଯାଏ । ଏହିସବୁ ମନସ୍ତାତ୍ତ୍ୱିକ ମୌଳିକ ଧାରଣା ମଧ୍ୟରେ ସବୁଠାରୁ ମୁଖ୍ୟ ହେଲା "ଚିତ୍ତ" (ଅର୍ଥାତ୍, ମନ, କିମ୍ବା ମଣିଷର ମନନ କ୍ରିୟାର ସମସ୍ତ ସମ୍ଭାବ୍ୟ ଧରଣର ଏକ କେନ୍ଦ୍ରୀଭୂତ ରୂପ) । ପତଞ୍ଜଳିଙ୍କ ମତରେ, "ଚିତ୍ତ" ହେଉଛି ଇନ୍ଦ୍ରିୟାନୁଭୂତ ଓ ଅଭିଜ୍ଞତା ଲବ୍ଧ ବ୍ୟାପାର, ଯଦିଓ ଏବସ୍ତୁ ବ୍ୟକ୍ତିବିଶେଷର ସୁନିର୍ଦ୍ଦିଷ୍ଟ ଅବସ୍ଥାର ସରଳ ପ୍ରତିରୂପ ଉତ୍ପାଦନ ବ୍ୟତୀତ ଆଉ କିଛି ପ୍ରକାଶ କରେ ନାହିଁ । ଏ କ୍ଷେତ୍ରରେ ଧରି ନିଆଯାଇଛି ଯେ, ଚିତ୍ତର ଅନ୍ତଃରୂପ ଅପରିବର୍ତ୍ତିତ ରହିଯାଏ ଏବଂ ବ୍ୟକ୍ତିବିଶେଷର ମନୋଭାବର ସମସ୍ତ ଧରଣର ପ୍ରକାଶ ହିଁ ଚିତ୍ତର ଈଷତ୍ ପରିବର୍ତ୍ତନର ଚିହ୍ନ ଛଡ଼ା ବେଶି କିଛି ନୁହେଁ । ବସ୍ତୁ ଜଗତର ଅସ୍ତିତ୍ୱର ପ୍ରକୃତ ନିୟମଗୁଡ଼ିକ ସହିତ ସଙ୍ଗତି ରଖି ଚିତ୍ତ କ୍ରିୟାଶୀଳ ହୁଏ ଏବଂ ଜୀବିତ ରହେ । ତେବେ ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣର ଅଧୀନ ମଣିଷର ବିଭିନ୍ନ ଅବସ୍ଥାନ୍ତରକୁ ଗଣ୍ୟ କରାଯାଏ ଚିତ୍ତର ବିକୃତ ବିକାଶ ହିସାବରେ, ବ୍ୟକ୍ତିବିଶେଷର ନିଜସ୍ୱ ଆଦି ନିର୍ଯ୍ୟାସରୁ ବିଚ୍ୟୁତି ହିସାବରେ । ବାସ୍ତବରେ ପ୍ରକାଶିତ ମାନସିକ ଅବସ୍ଥାରାଜିକୁ କୁହାଯାଇଛି ନାନାବିଧ "କ୍ଲେଶ" (ବିପତ୍ତି ବା କଷ୍ଟ) ଏବଂ

ଚିତ୍ତର ଆଦି ଓ ଅନିର୍ଦ୍ଦେଶ୍ୟ ଅସ୍ତିତ୍ୱର ଅବସ୍ଥା ଏହିସବୁ "କ୍ଲେଶରୁ" ମୁକ୍ତ ଅବସ୍ଥା ଧରି ବୋଲି ନିଆଯାଇଛି ।

ପତଞ୍ଜଳି ପାଞ୍ଚ ରକମର କ୍ଲେଶର କଥା କହିଛନ୍ତି । ତାଙ୍କର ଏହି ତାଲିକାର ପ୍ରକୃତି ଓ କ୍ଲେଶର ବିକାଶକୁ ଲକ୍ଷ୍ୟ କଲେ ଏହି ପଦ୍ଧତିଟିର ପଛରେ ନିହିତ ସାମଗ୍ରିକ ଧ୍ୟାନଧାରଣା ସମ୍ବନ୍ଧରେ ମୋଟାମୋଟି ଏକ ପରିଷ୍କାର ଚିତ୍ର ମିଳିଥାଏ । "ତାଲିକାଟି" ଆରମ୍ଭ ହୋଇଛି ଅବିଦ୍ୟା (ଅଜ୍ଞତା) ଦେଇ ; ଅସ୍ଥାୟୀକୁ ସ୍ଥାୟୀ ଏବଂ ସାମୟିକକୁ ଚିରସ୍ଥାୟୀ ବୋଲି ଗଣ୍ୟ କରିବା ବିଷୟରେ ମଣିଷର ମଜ୍ଜାଗତ ଧାରଣା ମଧ୍ୟରେ ଏହି ଅବିଦ୍ୟାର ପ୍ରକାଶ ଘଟିଥାଏ । ଏ କ୍ଷେତ୍ରରେ ଉପନିଷଦସମୂହର ଅନ୍ତର୍ଗତ ଭାବବାଦୀ ଧାରାର ମୂଳ ନୀତିଟିକୁ ଆରୋପ କରାଯାଇଛି ବ୍ୟକ୍ତିବିଶେଷର ମନସ୍ତତ୍ୱ କ୍ଷେତ୍ରରେ । ଅର୍ଥାତ୍, ଦୃଶ୍ୟମାନ ବହୁର ସମାବେଶ ଏବଂ ବାହ୍ୟ ବସ୍ତୁସମୂହର ବସ୍ତୁଭିତ୍ତିକ ପ୍ରକୃତି ମାୟାମୟ, ଏକମାତ୍ର ତାହା ହିଁ ପ୍ରକୃତ ବା ସତ୍ୟ, ଯାହା ଅଖଣ୍ଡ, ଐକ୍ୟବଦ୍ଧ ଓ ଅସ୍ପର୍ଶ୍ୟ । ଏହା ଛଡ଼ା ଦ୍ୱିତୀୟ କ୍ଲେଶ ହେଲା ଅସ୍ମିତା : ଅହଂବୋଧ ସହିତ ମଣିଷର ଦେହ ଓ ତା'ର ବ୍ୟକ୍ତିଗତ ମନସ୍ତାତ୍ତ୍ୱିକ ଧରଣର ସମୀକରଣ । ଏହା ମଧ୍ୟ ଏପରି ଏକ ଦୃଷ୍ଟିଭଙ୍ଗିର ପ୍ରତିଫଳନ, ଯାହାର ସୂତ୍ର ଉପନିଷଦସମୂହରେ ମିଳିଥାଏ । ଅର୍ଥାତ୍, ଏହା ହେଉଛି "ବିଶ୍ୱବ୍ରହ୍ମାଣ୍ଡର ଅଖିଳ ଆତ୍ମା" (ଆତ୍ମନ୍-ବ୍ରହ୍ମନ୍) ସହିତ ବ୍ୟକ୍ତିବିଶେଷର ସୁନିର୍ଦ୍ଦିଷ୍ଟ ଅହଂର ବିପରୀତ । ତୃତୀୟ କ୍ଲେଶ — ରାଗ ହେଉଛି ଦୈହିକ ସୁଖ, ଆନନ୍ଦ ସମ୍ଭୋଗ ଓ ଜୀବନରେ ସାଫଲ୍ୟ ଲାଭର ବାସନା । ଏହାର ବିପରୀତରେ ଅଛି ଦ୍ୱେଷ — ସୁଖସମ୍ଭୋଗ ପଥରେ ଯାହା ବାଧା ଦିଏ, ସେସବୁ ପ୍ରତି ତୀବ୍ର ଘୃଣାବୋଧ । ଏହି କ୍ଲେଶର ତାଲିକାର ଶେଷରେ ଅଛି ଅଭିନିବେଶ, ଅର୍ଥାତ୍, ଜୀବନ ସଂପର୍କରେ ସହଜ ପ୍ରବୃତ୍ତିଗତ ଏକ ଭଲ ପାଇବା ଏବଂ ତାକୁ ହରେଇବାର ଭୟ ।

ପତଞ୍ଜଳିଙ୍କ ଗ୍ରନ୍ଥରେ ସନ୍ନିବିଷ୍ଟ ଜ୍ଞାନତତ୍ତ୍ୱ ମଧ୍ୟ କେତେକ ମୌଳିକ ଧାରଣା ହେତୁ ବିଶିଷ୍ଟ । ବହିର୍ଜ୍ଜଗତର ସଂସ୍ପର୍ଶରେ ଆସିବା ପରେ (ଯୋଗସୂତ୍ର ମତରେ, ବିଷୟମୁଖ ବାସ୍ତବତାର ଅସ୍ତିତ୍ୱ ମଣିଷ ମନର ବାହାରେ ମଧ୍ୟ ଥାଏ — ଅର୍ଥାତ୍, ଏ କ୍ଷେତ୍ରରେ ଯୋଗ ଦର୍ଶନ ଉପରେ ସାଂଖ୍ୟର ପ୍ରଭାବ ପଡ଼ିଛି ବୋଲି ମନେ କରାଯାଇ ପାରେ ; କେବଳ ଯୋଗ ଦର୍ଶନରେ "ମୋକ୍ଷ" ଶବ୍ଦଟିର ଅର୍ଥ ଏକ ସାଙ୍ଗରେ ଅସ୍ତିତ୍ୱ, ପ୍ରକୃତି ଏବଂ ବିଷୟମୁଖ ବାସ୍ତବତାକୁ ଯେଉଁ ଅହଂ ଅନୁଧାବନ କରେ, ତା'ର ବିନାଶ) ଚିତ୍ତ ଏହି ଜଗତକୁ ଉପଲବ୍ଧି କରିବାର ଉପାୟ ଉଦ୍‌ଭାବନ କରେ । ଯୋଗ ଦାର୍ଶନିକମାନେ ବସ୍ତୁ ଓ ଘଟଣାସମୂହ ମଧ୍ୟରେ ଐକ୍ୟ ଓ ପାର୍ଥକ୍ୟ ନିରୂପଣର ଉଦ୍ଦେଶ୍ୟରେ ବହୁବିଧ ନୀତି ନିର୍ଦ୍ଧାରଣ କରିଥିଲେ । ମାନବ ଚେତନାର ଯୁକ୍ତିସମ୍ମତ କ୍ରିୟା ପ୍ରଥମେ ପ୍ରାଥମିକ ସାଦୃଶ୍ୟ ନିରୂପଣ ଓ ପରେ ଐହିକ ବ୍ୟାପାରର ବିକାଶର ଅପେକ୍ଷାକୃତ ଜଟିଳ ନିୟମସବୁ ସ୍ୱରୂପ ନିର୍ଦ୍ଧାରଣ କରିବା ସମ୍ଭବ କରିଥିଲା ।

ପତଞ୍ଜଳି ଓ ତାଙ୍କ ଅନୁଗାମୀମାନଙ୍କ ପକ୍ଷରେ କେନ୍ଦ୍ରୀୟ ଗୁରୁତ୍ୱପୂର୍ଣ୍ଣ ବିଷୟ ଥିଲା ଧର୍ମରେ ନିମଗ୍ନଚିତ୍ତ ବ୍ୟକ୍ତିବିଶେଷଙ୍କ ଚିତ୍ତବୃତ୍ତି ନିରୁଦ୍ଧ କରିବାର ନିୟମରାଜି — ଅର୍ଥାତ୍, ଯୋଗର ତଥାକଥିତ ଅଷ୍ଟ ମାର୍ଗ — ଶିକ୍ଷା ଦେବା । ଏହିସବୁ "ଉନ୍ନତିର ସୋପାନ" ଆରୋହଣ ଆୟତ୍ତ କରିବା ଉଦ୍ଦେଶ୍ୟରେ ବିଭିନ୍ନ କଳା କୌଶଳ ବର୍ଣ୍ଣନା ଯୋଗ ଦର୍ଶନର ସମସ୍ତ ପୋଥିର ଅଧିକାଂଶ ସ୍ଥାନ ଅଧିକାର କରିଛି ।

ଯୋଗର ଦାର୍ଶନିକ ମତାଦର୍ଶର ପରିଣତି ଘଟିଛି ଜଗତ ଉପରେ ପ୍ରାଧାନ୍ୟ ବିସ୍ତାରକାରୀ

"ପରମସତ୍ତାର" (ଈଶ୍ୱରଙ୍କର) ବର୍ଣ୍ଣନା ମଧ୍ୟରେ । ଈଶ୍ୱର ସମସ୍ତ "ପୂର୍ଣ୍ଣତାର" ଅଧିକାରୀ ଏବଂ ଭକ୍ତକୁ "ଚରମ ଲକ୍ଷ୍ୟ" ଅର୍ଜନରେ ସେ ସାହାଯ୍ୟ କରିଥାନ୍ତି । ତେବେ ଏ ସଂପର୍କରେ କୌତୂହଳୋଦ୍ଦୀପକ ବିଷୟଟି ହେଲା, ପତଞ୍ଜଳିଙ୍କ ନିଜ ରଚନାରେ ଈଶ୍ୱରଙ୍କ ଉଲ୍ଲେଖ ଖୁବ୍ କମ୍ ଅଛି ଏବଂ ଏହି ଉଲ୍ଲେଖ ଥିବା ତାଙ୍କ ରଚନାର ଅନୁଚ୍ଛେଦଗୁଡ଼ିକ ଗ୍ରନ୍ଥଟିର ଅଭିନ୍ନ ଅଂଶ ନହୋଇ ବରଂ, କିଛି ପରିମାଣରେ ପ୍ରକ୍ଷିପ୍ତ ଅଂଶ ହୋଇଛି ବୋଲି ମନେ ହୁଏ । ସାଂଖ୍ୟର ସୃଷ୍ଟି ତତ୍ତ୍ୱର ସମର୍ଥକ ପ୍ରଥମ ଯୁଗର ଯୋଗ ଦର୍ଶନରେ କାର୍ଯ୍ୟତଃ ବ୍ୟକ୍ତିତ୍ୱ ଆରୋପିତ ଦେବତାର କ୍ରିୟାକଳାପ ବର୍ଣ୍ଣନାର ବିଶେଷ ସ୍ଥାନ ସଂକଳନ ହୋଇ ନାହିଁ । ବସ୍ତୁତଃ, କେତେକ ଅନୁଚ୍ଛେଦରେ ଏଭଳି କେତେକ କଥା କୁହାଯାଇଛି, ଯାହାକି ଈଶ୍ୱର ଧର୍ମୀୟ ଅନୁରାଗ ନିବେଦନ ପାତ୍ର ଛଡ଼ା ଆଉ କିଛି ନୁହନ୍ତି ଏବଂ ଆଧ୍ୟାତ୍ମିକ ତତ୍ତ୍ୱଗତ କୌଣସି ତାତ୍ପର୍ଯ୍ୟ ତାଙ୍କର ନାହିଁ । ତେବେ ଏ ପ୍ରସଙ୍ଗରେ ଏକଥା ମନରେ ରଖିବା ଦରକାର ଯେ, ଏହି ଦାର୍ଶନିକ ଧାରାର ଅନୁଗାମୀମାନେ ବ୍ୟକ୍ତିତ୍ୱ ଆରୋପିତ ଦେବତାର ଆରାଧନା କରୁଥିଲେ ଏବଂ ଏହା ଫଳରେ ସେମାନଙ୍କ ମତାମତ ରକ୍ଷଣଶୀଳ ଧର୍ମୀୟ ପରମ୍ପରାର ଓ ହିନ୍ଦୁ ପୂଜା ପଦ୍ଧତିର ବ୍ୟାବହାରିକ ଦିଗଗୁଡ଼ିକର ଅଧିକ ସଦୃଶ ହୋଇ ଉଠିଛି ।

ମୋଟ ଉପରେ କହିବାକୁ ଗଲେ, ଏହି ମୌଳିକ ଦାର୍ଶନିକ ଧାରାର ପର୍ଯ୍ୟାଲୋଚନା ପ୍ରାଚୀନ ଭାରତର ଦାର୍ଶନିକ ଚିନ୍ତା କ୍ଷେତ୍ରରେ ବହୁବିଧ ପ୍ରବଣତା ମଧ୍ୟରେ ପାରସ୍ପରିକ ସଂପର୍କର ଜଟିଳ ବିକାଶଟିକୁ ଅପେକ୍ଷାକୃତ କାର୍ଯ୍ୟକର ଭାବେ ବ୍ୟାଖ୍ୟା କରିବା ଦିଗରେ ସାହାଯ୍ୟ କରିଥାଏ । ତତ୍ ସଙ୍ଗେ ସଙ୍ଗେ ଏହା ଫଳରେ ଦର୍ଶନଶାସ୍ତ୍ର ଏବଂ କେତେକ ବିଜ୍ଞାନଶାସ୍ତ୍ରର ସାଫଲ୍ୟ ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ମଧ୍ୟ ସ୍ପଷ୍ଟ ହୋଇ ଉଠିଛି । କହିବା ବାହୁଲ୍ୟ ଯେ, ଶରୀର ଗଠନ, ଶାରୀରିକ କ୍ରିୟା, ଶରୀର ବୃତ୍ତ ଏବଂ ମନୋବିଜ୍ଞାନର କ୍ଷେତ୍ରଗୁଡ଼ିକରେ ଅଗ୍ରଗତି ନଘଟିଥିଲେ, "ଯୋଗର ଅଷ୍ଟ ମାର୍ଗ" ରଚନା ସମ୍ଭବ ହୋଇ ନଥାନ୍ତା ।

## ନ୍ୟାୟ ଓ ବୈଶେଷିକ ଦର୍ଶନ

ଏହି ଦୁଇଟି ଦାର୍ଶନିକ ଧାରାର ଉଦ୍‌ଭବ ଘଟିଥିଲା ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଏବଂ ଗୁପ୍ତ ଯୁଗ ବେଳକୁ ଏହା ସୁନିର୍ଦ୍ଦିଷ୍ଟ ଆକାର ଧାରଣ କରିଥିଲା । ଏହି ଧାରା ଦୁଇଟି ଥିଲା ଘନିଷ୍ଠ ଭାବେ ପରସ୍ପର ସହିତ ସଂପର୍କିତ ଏବଂ ଏହା ମଧ୍ୟ ଏକାନ୍ତ ଆକସ୍ମିକ ଘଟଣା ନୁହେଁ । ଉଭୟ ଧାରା ଥିଲା ପ୍ରାକୃତିକ ଘଟଣାବଳୀର ଯୁକ୍ତିସିଦ୍ଧ ବ୍ୟାଖ୍ୟାର ଅଭିମୁଖୀ, ଯଦିଓ ଉପରୋକ୍ତ ପ୍ରଥମ ଧାରାଟି ବିଶେଷ ଭାବେ ମନୋଯୋଗ ଦେଇଥିଲା ଆଧ୍ୟାତ୍ମିକ ଜ୍ଞାନତତ୍ତ୍ୱର ସମସ୍ୟାଦି ପ୍ରତି ଏବଂ ଅବଧାରଣାର ମାଧ୍ୟମ ହିସାବରେ ଯୁକ୍ତି ବିଦ୍ୟାର ବିକାଶ ନେଇ ବ୍ୟସ୍ତ ଥିଲା (ପରେ ଏହି ନ୍ୟାୟ ଶବ୍ଦଟି ଯୁକ୍ତି ବା ତର୍କବିଦ୍ୟା ହିସାବରେ ବ୍ୟବହୃତ ହୋଇଛି) । ଅନ୍ୟ ପକ୍ଷରେ, ଦ୍ୱିତୀୟ ଧାରାଟି ସତ୍ତା ଏବଂ ଯେଉଁ ନିର୍ଯ୍ୟାସସମୂହର ମିଳନରେ ସତ୍ତା ଗଠିତ ହୁଏ, ସେ ସଂପର୍କୀୟ ତତ୍ତ୍ୱଗୁଡ଼ିକୁ ଘେନି ବ୍ୟସ୍ତ ଥିଲା । ଏହି ଦୁଇଟି ଧାରାର ଦାର୍ଶନିକମାନେ କେବେ ପରସ୍ପର ବିରୁଦ୍ଧରେ ତର୍କ ଯୁଦ୍ଧରେ ପ୍ରବୃତ୍ତ ହୋଇ ନାହାନ୍ତି : ବରଂ, ନ୍ୟାୟାୟିକମାନେ ବୈଶେଷିକ ଧାରାର ଅଧିବିଦ୍ୟାକୁ ମାନି ନେଇଥିଲେ, କାରଣ ସେମାନେ ମନେ କରିଥିଲେ, ଅଧିବିଦ୍ୟା ହେଉଛି ସେମାନଙ୍କ ନିଜ ଜ୍ଞାନତତ୍ତ୍ୱର ସ୍ୱାଭାବିକ ସଂପ୍ରସାରଣର ଫଳ ।

ବୈଶେଷିକ ଦାର୍ଶନିକମାନେ ପ୍ରାରମ୍ଭିକ ଯୁଗରେ ଯେଉଁ ଦାର୍ଶନିକ ଚିନ୍ତା ପ୍ରଘ୍ନର କରିଥିଲେ, ତାହା ଥିଲା ଭାରତୀୟ ବସ୍ତୁବାଦୀ ଚିନ୍ତା ପରମ୍ପରାର ଏକ ଅବିଚ୍ଛେଦ୍ୟ ଅଂଶବିଶେଷ । ତେବେ ଲୋକାୟତ ଦର୍ଶନ ସହିତ ଏହି ଦର୍ଶନର ଯେଉଁ ପାର୍ଥକ୍ୟ ଥିଲା, ତାହା ହେଉଛି, ପରବର୍ତ୍ତୀ କାଳରେ ବୈଶେଷିକ ଦର୍ଶନ ଭାବବାଦ ଓ ଆସ୍ତିକ୍ୟବାଦ ନିକଟରେ ଅନେକ ବିଶେଷୀକୃତ ଓ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉପରେ ନତିସ୍ୱୀକାର କରିଥିଲା ।

"ବୈଶେଷିକ" ଶବ୍ଦଟି ସଂସ୍କୃତର ବିଶେଷ (ନିର୍ଦ୍ଦିଷ୍ଟ ରୂପେ ସ୍ୱତନ୍ତ୍ର) ଶବ୍ଦରୁ ଜାତ । ଏହା ଫଳରେ ଏହି ଦାର୍ଶନିକ ଧାରାର ନାମଟି ଏହାର ମତବାଦର ନିର୍ଯ୍ୟାସ ସହିତ ଘନିଷ୍ଠ ଭାବେ ଖାପ ଖାଇ ଯାଇଛି । ଏହି ମତାଦର୍ଶର ମୂଳ କଥା ହେଲା, ଯାହା "ସାଧାରଣ" ଓ ଯାହା "ବିଶେଷ", ସେସବୁ ମଧ୍ୟରେ ପରସ୍ପର ସଂପର୍କ ସ୍ଥାପନ । ଏହି ମତର ଅନୁଗାମୀମାନେ ସାଧାରଣ ଓ ସୁନିର୍ଦ୍ଦିଷ୍ଟକୁ ସତ୍ତାର ବ୍ୟାଖ୍ୟା କ୍ଷେତ୍ରରେ ଏକ ଅଖଣ୍ଡ ବ୍ୟବସ୍ଥାର ବିଭିନ୍ନ ଉପାଦାନ ହିସାବରେ ଦେଖିଛନ୍ତି । ତତ୍ ସଙ୍ଗେ ସଙ୍ଗେ ବିଶେଷକୁ ସେମାନେ ତାତ୍‌କ୍ଷଣିକ ଇନ୍ଦ୍ରିୟଗ୍ରାହ୍ୟ ହିସାବରେ ବୁଝିଛନ୍ତି ଏବଂ ସାଧାରଣକୁ ଦେଖିଛନ୍ତି ମଣିଷର ଯୁକ୍ତିବୁଦ୍ଧି ସାହାଯ୍ୟରେ ପ୍ରଣାଳୀବଦ୍ଧ ପ୍ରଥମୋକ୍ତ ଏହି ବିଶେଷ ସଂପର୍କିତ ବହୁବିଧ ତଥ୍ୟାଦିର ଯୋଗ ଫଳ ହିସାବରେ । ଏହାର ଅର୍ଥ ହେଲା, ଏହି ଧାରାର ଦାର୍ଶନିକମାନଙ୍କର ପ୍ରଧାନ ବିବେଚ୍ୟ ବିଷୟ ହେଉଛି, କିପରି ବିଶେଷ ସହିତ ବହୁ ଉପାଦାନ ବିଶିଷ୍ଟକୁ ମିଳିଯାଏ, କିପରି ଏକ ପ୍ରତ୍ୟକ୍ଷ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁରୁ ସାଧାରଣୀକୃତ ବହୁବିଧ ମୌଳିକ ଧାରଣାଗୁଡ଼ିକୁ କ୍ରମବିକାଶ ଲାଭ କରାଯାଏ, ଯାଫଳରେ ସତ୍ତାକୁ ଅଖଣ୍ଡ ଏକ ସମଗ୍ର ହିସାବରେ ବ୍ୟାଖ୍ୟା କରିବା ସମ୍ଭବ ହୁଏ । ଏ ବିଷୟରେ ବୈଶେଷିକ ଦର୍ଶନ ଯେଉଁସବୁ ସମାଧାନ ଲିପିବଦ୍ଧ କରିଛି, ତାହା ଯେ ସର୍ବତ୍ର ବୈଜ୍ଞାନିକ ବିଘ୍ନର ଦ୍ୱାରା ଅକାଟ୍ୟ, ତା ନୁହେଁ । ତେବେ ଏହିସବୁ ଅନୁସନ୍ଧାନର ବସ୍ତୁବାଦୀ ସୂଚନାସୂତ୍ରଟିର ବିଶେଷ ସ୍ୱାତନ୍ତ୍ର୍ୟ ସେଇ ସୁଦୂର ଅତୀତରେ ମଧ୍ୟ କୌଣସି ପ୍ରକାରର ସନ୍ଦେହ ବା ତର୍କର ଅବକାଶ ସୃଷ୍ଟି କରିନି ।

ବୈଶେଷିକ ଦର୍ଶନର ପ୍ରତିଷ୍ଠାତା ଋଷି କନାଦଙ୍କ (ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀଗୁଡ଼ିକ) ମତରେ, ଜଗତର ଉଦ୍ଭବ ଏପରିସବୁ ପରମାଣୁର ପାରସ୍ପରିକ କ୍ରିୟା ବିକ୍ରିୟା ଫଳରେ ସୃଷ୍ଟି ହୋଇଛି, ଯେଉଁ ପରମାଣୁଗୁଡ଼ିକୁ କେହି ସୃଷ୍ଟି କରି ନାହାନ୍ତି । ସେସବୁ ପରମାଣୁ ଶାଶ୍ୱତ ଏବଂ ଅବିନଶ୍ୱର । ଏହି କେନ୍ଦ୍ରୀୟ ତତ୍ତ୍ୱଟିର ଅସ୍ତିତ୍ୱ ବୈଶେଷିକ ଦର୍ଶନକୁ ଆସ୍ତିକ୍ୟବାଦୀ ଦର୍ଶନ ହିସାବରେ ଗଣ୍ୟ କରିବାକୁ ଅସମ୍ଭବ କରି ଦେଇଛି । ଅବଶ୍ୟ, ପରବର୍ତ୍ତୀ ଯୁଗରେ କନାଦଙ୍କ ରଚନାବଳୀର ଭାଷ୍ୟକାରମାନେ ଚେଷ୍ଟା କରିଛନ୍ତି ସେ ରଚନାରେ ଈଶ୍ୱରଙ୍କ ଅସ୍ତିତ୍ୱର ସ୍ୱୀକୃତି ଏବଂ ପ୍ରକୃତି ମଧ୍ୟରେ ନିୟମିତ ଭାବେ କ୍ରିୟାଶୀଳ ପ୍ରକ୍ରିୟାଗୁଡ଼ିକରେ ଈଶ୍ୱରଙ୍କର ହସ୍ତକ୍ଷେପ ବିଷୟକ ସ୍ୱୀକାରୋକ୍ତି ଖୋଜି ବାହାର କରିବାକୁ । କନାଦ ପରମାଣୁସମୂହକୁ ଘ୍ରୋଟି ମୂଳ ଉପାଦାନର ଗୁଣ ବିଶିଷ୍ଟ ଘ୍ରୋଟି ପୃଥକ୍ ଶ୍ରେଣୀରେ ବିଭକ୍ତ କରି ଦେଖାଇଛନ୍ତି ଏବଂ କହିଛନ୍ତି, କିପରି ବହୁ ବିଚିତ୍ର ଧରଣରେ ପରମାଣୁସମୂହ ସଂଯୁକ୍ତ ହୋଇ ସମସ୍ତ ପ୍ରକାରର ଜଡ଼ ପଦାର୍ଥ ଓ ଜୀବନ୍ତ ପ୍ରାଣୀକୁ ଜନ୍ମ ଦିଏ । ଏହି ପରିପ୍ରେକ୍ଷିତରେ ସେ "ଧର୍ମ" ଶବ୍ଦଟିର ବ୍ୟବହାର କରିଛନ୍ତି । ତେବେ ତାହା ନୈତିକ ବା ଧର୍ମୀୟ ତତ୍ତ୍ୱ ସହିତ ସଂପୃକ୍ତ ପ୍ରଚଳିତ ଅର୍ଥରେ ନୁହେଁ, ବରଂ, ପ୍ରାକୃତିକ ବିକାଶ ଓ କାର୍ଯ୍ୟକାରଣ ସମ୍ବନ୍ଧୀୟ ନିୟମାବଳୀର ଅତ୍ୟନ୍ତ ସାଧାରଣ ଏକ ସଂଜ୍ଞା ହିସାବରେ । କନାଦ, ଅବଶ୍ୟ, ପାରମ୍ପରିକ "ଚକ୍ରାକାରରେ

ଘୂର୍ଣାୟମାନ ସୃଷ୍ଟିର ଉପରି ରହସ୍ୟରୁ" ଆରମ୍ଭ କରିଛନ୍ତି (ଏହି ତତ୍ତ୍ୱଟି ହେଉଛି : ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ହୁଏ, ତାହା କ୍ରମଶଃ ବିକାଶ ଲାଭ କରେ ଏବଂ ତା'ପରେ ଧ୍ୱଂସ ପାଇଯାଏ "ବିଶ୍ୱ ପ୍ରଳୟରେ", ଏହା ପରେ ଏହି ସଂପୂର୍ଣ୍ଣ ପ୍ରକ୍ରିୟାଟି ପୁଣି ଆରମ୍ଭ ହୁଏ) । ତେବେ ସେ ଏ ତତ୍ତ୍ୱକୁ ଏପରି ଭାବେ ଉପସ୍ଥାପିତ କରିଛନ୍ତି, ଯଦ୍ୱାରା ପ୍ରାୟ ପ୍ରାକୃତିକ ଦର୍ଶନ କଥା ମନେ ପଡ଼ିଯାଏ । ଅର୍ଥାତ୍, ବିଶ୍ୱର ପ୍ରଳୟ ମୁହୂର୍ତ୍ତରେ ପରମାଣୁସମୂହର ବିଲୋପ ଘଟେ ନାହିଁ । ଏହି ମୁହୂର୍ତ୍ତରେ ଯାହା ଘଟେ, ତାହା ହେଉଛି ପରମାଣୁସମୂହର ମଧ୍ୟରେ ଥିବା ସେହି ପାରସ୍ପରିକ "ଯୋଗସୂତ୍ରଗୁଡ଼ିକ" ଛିନ୍ନ ହୋଇଯାଏ, ଯେଉଁସବୁ "ଯୋଗସୂତ୍ର" ମଣିଷର ବୋଧଗମ୍ୟ ଘଟଣା ବିଷୟସମୂହକୁ ଜନ୍ମ ଦିଏ । ତା'ଛଡ଼ା, ବିଶ୍ୱବ୍ରହ୍ମାଣ୍ଡର ପୁନର୍ଜନ୍ମ ସଂଘଟିତ ହୁଏ ପରମାଣୁସମୂହର ବାରମ୍ବାର ସଂଯୋଗ ସାଧନ ଫଳରେ ଏବଂ ଏହି ପ୍ରକ୍ରିୟାଟି କୌଣସି ଦେବତାର ଅଲୌକିକ ହସ୍ତକ୍ଷେପ ଛଡ଼ା ଘଟିଥାଏ ।

ରକ୍ଷଣଶୀଳ ଧର୍ମୀୟ ଦାର୍ଶନିକ ଧାରାସମୂହର ପ୍ରବକ୍ତାମାନଙ୍କ ଦାବୀର ବିପରୀତରେ କନାଦ ଘୋଷଣା କରିଛନ୍ତି ଯେ, ପ୍ରକୃତି ମଧ୍ୟରେ କ୍ରିୟାଶୀଳ ପ୍ରକ୍ରିୟାଗୁଡ଼ିକ ସହିତ "ଅଲୌକିକ" ସତ୍ତାମାନଙ୍କର କ୍ରିୟାକଳାପ କୌଣସି ଦିଗରୁ ଯୁକ୍ତ ନୁହେଁ । ଅବଶ୍ୟ, ଏକଥା ଠିକ୍ ଯେ, କୌଣସି ସମୟରେ ସେ ଈଶ୍ୱରଙ୍କ ଧାରଣାଟିକୁ ସିଧାସଳଖ ଅସ୍ୱୀକାର କରି ନାହାନ୍ତି । ତେବେ, ଏପରିକି ଭାବବାଦୀ ଚିନ୍ତାଧାରାର ଅନୁଗାମୀ ପଣ୍ଡିତମାନେ ମଧ୍ୟ ଏକଥା କହିବାକୁ ବାଧ୍ୟ ହୋଇଥିଲେ ଯେ, ଈଶ୍ୱର ସମ୍ବନ୍ଧୀୟ କନାଦଙ୍କ ଏହି ସ୍ୱୀକୃତିକୁ ଧର୍ମୀୟ ପରମ୍ପରାର ଧ୍ୟାନଧାରଣା ସହିତ ତାଙ୍କର "ବାହ୍ୟ" ଆପୋଷର ଫଳ ରୂପେ ଗଣ୍ୟ କରିବା ଦରକାର । ତେବେ, ଏହି ଆପୋଷ ସତ୍ତ୍ୱେ, ବାସ୍ତବରେ ଏହି ଅସାମାନ୍ୟ ଚିନ୍ତାବିତ୍‌ଙ୍କ ଦ୍ୱାରା ପ୍ରଚାରିତ ଦାର୍ଶନିକ ମତବାଦଟିର ଅନ୍ତର୍ନିହିତ ଯୁକ୍ତି ପ୍ରକୃତିରେ ନାସ୍ତିକ୍ୟ ବୁଦ୍ଧିରୁ ଜାତ (ଅନ୍ତତଃ, ବିଶ୍ୱବ୍ରହ୍ମାଣ୍ଡର ସ୍ରଷ୍ଟା ହିସାବରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରିବା ଦ୍ୱାରା) ।

କନାଦଙ୍କ ଦର୍ଶନର ଅନ୍ୟତମ ପ୍ରଧାନ ତତ୍ତ୍ୱ ହେଉଛି ବସ୍ତୁ ସଂପର୍କିତ ତତ୍ତ୍ୱ । ପରମାଣୁସମୂହର ପ୍ରାଥମିକ ପରସ୍ପର ସଂଯୋଗରୁ ଆରମ୍ଭ କରି ପ୍ରକୃତିର ସର୍ବାଙ୍ଗୀନ ବିକାଶର ଫଳ ହିସାବରେ ଉଦ୍‌ଭୂତ ବିଶ୍ୱବ୍ରହ୍ମାଣ୍ଡର ଅସ୍ତିତ୍ୱର ଅମୁକ ବା ତମୁକ ଦିଗର ବ୍ୟାଖ୍ୟା ହେଉଛି ଏହି ତତ୍ତ୍ୱର ମୂଳ କଥା । ସେଇ ସୁଦୂର ପ୍ରାଚୀନ ଯୁଗରେ, ଏପରିକି ପରବର୍ତ୍ତୀ ମଧ୍ୟ ଯୁଗରେ, ଏହି ଅଭିନବ ଦାର୍ଶନିକ ତତ୍ତ୍ୱର ପ୍ରଚାର ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା, କାରଣ ଏହା ମାଧ୍ୟମରେ ଚେଷ୍ଟା କରାଯାଇଥିଲା ସେଇସବୁ ପ୍ରକ୍ରିୟାର ସମାଧାନ ଖୋଜିବାକୁ, ଯେଉଁ ପ୍ରକ୍ରିୟା ସାହାଯ୍ୟରେ ସରଳ ବସ୍ତୁ ଅପେକ୍ଷାକୃତ ଜଟିଳ ବସ୍ତୁରେ ପରିଣତ ହୁଏ ଏବଂ ନିୟନ୍ତ୍ରିତ ହୁଏ ବିଶ୍ୱଜଗତର ଆଭ୍ୟନ୍ତରୀଣ କ୍ରିୟାଶୀଳ ପଦ୍ଧତିସମୂହ ଦ୍ୱାରା । ଏହି ତତ୍ତ୍ୱ ଅନୁଯାୟୀ ଦ୍ରବ୍ୟ ହେଉଛି ଅନ୍ୟସବୁ କିଛି ଠାରୁ ସ୍ୱତନ୍ତ୍ର ଏକ ବାସ୍ତବ ବସ୍ତୁ, ଯାହା ଅନ୍ୟାନ୍ୟ ଦ୍ରବ୍ୟ ଓ ଭିନ୍ନ ଭିନ୍ନ ବସ୍ତୁ (ଅର୍ଥାତ୍, ବିଶେଷ ଏକ ଦ୍ରବ୍ୟରୁ ଉତ୍ପନ୍ନ ଗୌଣ ଫଳାଫଳର, କିମ୍ବା କେତେକ ଦ୍ରବ୍ୟର ସଂଯୋଗ ସ୍ଥାପନ ଫଳରେ ଉତ୍ପନ୍ନ ବସ୍ତୁର) ଉପରେ କ୍ରିୟାଶୀଳ ଏବଂ ଯାହା ଅବିନାଶୀ, ଏ ପ୍ରସଙ୍ଗରେ କନାଦ ଲେଖିଥିଲେ, "କାର୍ଯ୍ୟ ବା କାରଣ ଦ୍ୱାରା ଏହା ବିନଷ୍ଟ ହୁଏ ନାହିଁ । ଦ୍ରବ୍ୟର ସଂଜ୍ଞା ଏହି ଭାବେ ଦିଆଯାଇ ପାରେ – ଏହା କ୍ରିୟାଶୀଳ ହେବାକୁ ସମର୍ଥ, ଏବଂ ବିଭିନ୍ନ ଗୁଣର ଆକର । ଏହା କାରଣର ଅନ୍ତର୍ନିହିତ ।" ଏହା ପରେ ସେ ଆଉରି କହିଛନ୍ତି, "ଦ୍ରବ୍ୟ ହେଉଛି ବସ୍ତୁସମୂହର, ଗୁଣାବଳୀର ଓ କ୍ରିୟାକଳାପର ସାଧାରଣ କାରଣ ।"

ଅର୍ଥାତ୍, ଦ୍ରବ୍ୟର ବାହାରେ (କିମ୍ବା ଆଉରି ସଠିକ ଭାବେ କହିବାକୁ ଗଲେ, ଯେଉଁସବୁ ପରମାଣୁ ଦେଇ ଦ୍ରବ୍ୟଟି ଗଠିତ, ସେମାନଙ୍କର ନିଜସ୍ୱ ସଂଯୋଗ ବିଯୋଗ ଛଡ଼ା) ଦ୍ରବ୍ୟର ଉପରି ଘଟେ ନାହିଁ; ନିଜର ଇଛା ମୁତାବକ ତାହା ଗତିଶୀଳ ହୋଇ ପାରେ, ଏବଂ ତେଣୁ କାର୍ଯ୍ୟର ଉପରି ଘଟାଇ ପାରେ; ଏହି ପରି ବହୁ ଦ୍ରବ୍ୟର କ୍ରିୟାକଳାପ ଫଳରେ ଉଦ୍‌ଭୂତ ସେମାନଙ୍କ ସାମଗ୍ରିକ ଯୋଗଫଳରେ ଗଠିତ ଏହି ବିଶ୍ୱଜଗତ ।

ପ୍ରାରମ୍ଭରେ ବୈଶେଷିକ ଦର୍ଶନ ସଂକ୍ରାନ୍ତ ରଚନାବଳୀରେ "ବିଶ୍ୱଜନୀନ ଆତ୍ମାର" (ବା ପରମାତ୍ମନ) ଧାରଣାଟିକୁ ଉପେକ୍ଷା କରାଯାଇଛି, ସେଠାରେ ସ୍ୱୀକୃତି ପାଇଛି କେବଳ ମାତ୍ର "ବ୍ୟକ୍ତିଗତ ଆତ୍ମିକ ବସ୍ତୁ" (ବା ଆତ୍ମନ) । ପରବର୍ତ୍ତୀ ଯୁଗର ବୈଶେଷିକୀ ରଚନାବଳୀରେ, ଅବଶ୍ୟ, ବେଦାନ୍ତ ଦର୍ଶନରୁ ଗୃହୀତ ପରମାତ୍ମାର ଧାରଣାଟି ସମଗ୍ର ଭାବେ ଏହି ଦର୍ଶନର ଅଙ୍ଗୀଭୂତ ହୋଇଛି । ତେବେ ଏହି ମତାଦର୍ଶର ଆଦି ନିର୍ଯ୍ୟାସର ଏହିସବୁ ବିକୃତୀକରଣ ବୈଶେଷିକ ଧାରାର ବସ୍ତୁବାଦୀ ପ୍ରବଣତାକୁ ଓ ନ୍ୟାୟ ଦର୍ଶନର ଜ୍ଞାନତତ୍ତ୍ୱକୁ ମୂଳତଃ ପ୍ରଭାବିତ କରି ପାରିନି ।

ଭାରତୀୟ ଚିନ୍ତନ ଇତିହାସରେ ଏହି ଦୁଇଟି ଦାର୍ଶନିକ ଧାରାର ତାତ୍ପର୍ଯ୍ୟ ପ୍ରଧାନତଃ ନିହିତ ତର୍କବିଦ୍ୟା ଓ ଜ୍ଞାନତତ୍ତ୍ୱର ବିଷୟ ଦୁଇଟି ଉପରେ ଅସାଧାରଣ ଗୁରୁତ୍ୱ ଆରୋପ ଉପରେ । ଆଜି ପର୍ଯ୍ୟନ୍ତ ଏହି ବିଶେଷ କ୍ଷେତ୍ରର ଜ୍ଞାନର ସୁସଂବଦ୍ଧ ପରିଚୟର ନମୁନା ସ୍ୱରୂପ ଯେଉଁ ସର୍ବପ୍ରାଚୀନ ପୋଥିଟି ମିଳିଛି, ଋଷି ଗୌତମଙ୍କର ସେଇ "ନ୍ୟାୟସୂତ୍ରରେ" ତର୍କବିଦ୍ୟାର ବିଭିନ୍ନ ମୌଳିକ ଧାରଣାର ବିଶଦୀକରଣର ଅତ୍ୟନ୍ତ ଉଚ୍ଚ ଏକ ମାତ୍ରାର ପରିଚୟ ମିଳିଥାଏ ।

ଗୌତମ ତାଙ୍କ ତତ୍ତ୍ୱର ବିଶଦୀକରଣର ସ୍ୱତନ୍ତ୍ର ଓ ବିଶିଷ୍ଟ ଭିତ୍ତି ହିସାବରେ ବହିର୍ଜଗତର ବାସ୍ତବତାକୁ ଗ୍ରହଣ କରନ୍ତି, ତା'ର ବିଷୟଠାରୁ ସ୍ୱତନ୍ତ୍ରତା ଏବଂ ମଣିଷ ମନରେ, ଯାହା ଇନ୍ଦ୍ରିୟସମୂହର ମାଧ୍ୟମରେ ଯୁକ୍ତିବଦ୍ଧ ସଂଶ୍ଳେଷଣର ରୂପ ଗ୍ରହଣ କରିଥାଏ, ସେଇ ବିଶ୍ୱଜଗତର ମୂଳଗତଃ ଅବଧାରଣଯୋଗ୍ୟତା । ନ୍ୟାୟ ଦର୍ଶନରେ କେନ୍ଦ୍ରୀୟ ଚିନ୍ତାଟି ପ୍ରକାଶ ପାଇଛି "ସ୍ୱଚ୍ଛ ଚିନ୍ତାର" ନିୟମ ମଧ୍ୟ ଦେଇ । ଦୃଷ୍ଟିରେ ଯେଉଁସବୁ ଚିତ୍ର ଫୁଟି ଉଠେ, ଏକକ ପର୍ଯ୍ୟବେକ୍ଷଣ ଓ ଅନୁମାନସମୂହ, ବିଷୟସମୂହର ସମ୍ୟକ୍ ଧାରଣା ଗଢ଼ି ତୋଳିବା ପକ୍ଷରେ ତାହା ମୋଟେ ଯଥେଷ୍ଟ ନୁହେଁ । ବିଷୟସମୂହର ପ୍ରାମାଣିକତାର ବାସ୍ତବ କଷଟି ହେଉଛି ଏକମାତ୍ର ଅଭିଜ୍ଞତାର ସାକ୍ଷ୍ୟ ପ୍ରମାଣ ସହିତ ସେସବୁର ଅନୁରୂପ ହେବା ଦ୍ୱାରା । କେବଳ ଅଭିଜ୍ଞତା ଲବ୍ଧ ସେଇସବୁ ସୂଚନା, ଯାହା ଯୁକ୍ତିସମ୍ମତ ବିଶ୍ଳେଷଣର "ପ୍ରହରାକୁ ପାରି ହୋଇ" ଆସି ପାରେ, ସେଇସବୁ ହିଁ ପ୍ରକାଶ କରିବାକୁ ସମର୍ଥ ହୋଇ ପାରେ ବସ୍ତୁ ଏବଂ ଘଟଣାସମୂହର ପ୍ରାମାଣିକ ନିର୍ଯ୍ୟାସକୁ ।

ଅବଧାରଣା ପଦ୍ଧତି ଓ ଉପାୟସମୂହ ସହିତ ସଂପୃକ୍ତ ନ୍ୟାୟଶାସ୍ତ୍ର, ବିଶେଷ କରି ଯେଉଁସବୁ ପଦ୍ଧତି ଓ ଉପାୟ ଯୁକ୍ତିବିଦ୍ୟା ସହିତ ଜଡ଼ିତ, ସେସବୁ ସଂପର୍କିତ ନ୍ୟାୟଶାସ୍ତ୍ର ସଂପୂର୍ଣ୍ଣ ପୁଙ୍ଖାନୁପୁଙ୍ଖତା ସହିତ ବିଶଦାକାରରେ ଲିପିବଦ୍ଧ ।

ଭାରତୀୟ ନ୍ୟାୟଶାସ୍ତ୍ରର ଯୁକ୍ତିବିନ୍ୟାସ ସହିତ ଏକଦା ପାଶ୍ଚାତ୍ୟର ତର୍କବିଦ୍ୟାର ମୂଳ ଭିତ୍ତି ଯୋଗାଇଛି ଆରିଷ୍ଟୋଟଲଙ୍କ ଯେଉଁ ତ୍ରିମୁଖ ଯୁକ୍ତିବିନ୍ୟାସ, ସେମାନଙ୍କ ମଧ୍ୟରେ ଅବସ୍ଥାଭିତ୍ତିକ ତୁଳନା କରିବାକୁ ଯାଇ ଏଫ୍.ଇ. ଷେର୍‌ବାତ୍‌ସୟ ଗ୍ରୀସ୍ ଓ ଭାରତର ଯୁକ୍ତିବିଦ୍ୟାର ବିଭିନ୍ନ ସଂଜ୍ଞା, ଆଦିର ବିବର୍ତ୍ତନ କ୍ଷେତ୍ରରେ ଯେଉଁ ବହୁବିଧ ସମାନ୍ତରାଳ ଅବସ୍ଥାନ ଲକ୍ଷ୍ୟ କରାଯାଇ ପାରେ, ସେସବୁ

ଦିଗରୁ ଦୃଷ୍ଟି ଆକର୍ଷଣ କରିଛନ୍ତି । ଷ୍ଟେର୍‌ବାଟ୍‌ସ୍ୟ ଆଉରି ଦେଖିଛନ୍ତି ଯେ, ନ୍ୟାୟଶାସ୍ତ୍ରର ଯୁକ୍ତିବିନ୍ୟାସର ଅନେକ ବୈଶିଷ୍ଟ୍ୟ ତର୍କବିଦ୍ୟାର ଉପରୋକ୍ତ ସଂଜ୍ଞା ଆଦିର ଉଦ୍‌ଭବ ଓ ସୁନିର୍ଦ୍ଦିଷ୍ଟ ରୂପଦାନ ପଛରେ ନିହିତ ସାଧାରଣ ନିୟମସମୂହର ଦିକ୍‌ନିର୍ଦ୍ଦେଶକ ହିସାବରେ ବିଶେଷ ଆଗ୍ରହୋଦ୍ଦୀପକ ।

ଜ୍ଞାନର ସ୍ୱତନ୍ତ୍ର ଏକ କ୍ଷେତ୍ର ହିସାବରେ ତର୍କବିଦ୍ୟାର ସୃଷ୍ଟି ଓ ତା'ର ବିଶଦୀକରଣ ବିଷୟରେ ଭାରତୀୟ ନ୍ୟାୟ ଦର୍ଶନର ଅବଦାନ ଅପରିସୀମ । ସାମଗ୍ରିକ ଭାବେ ଭାରତୀୟ ବିଜ୍ଞାନ ଚର୍ଚ୍ଚା କ୍ଷେତ୍ରରେ ଏହି ଦର୍ଶନର ପ୍ରଭାବ ଯେପରି ଗୁରୁତ୍ୱପୂର୍ଣ୍ଣ, ସେହିପରି ଫଳପ୍ରସୂ । ବିଶେଷ କରି ଏହି ଦର୍ଶନର ପରବର୍ତ୍ତୀ ବିକାଶ ଯୁଗରେ ଏହି ପ୍ରଭାବଟି ସ୍ପଷ୍ଟ ଭାବେ ପ୍ରତୀୟମାନ । ନ୍ୟାୟ ଦର୍ଶନର ବିଶିଷ୍ଟ ସାଫଲ୍ୟସମୂହ ଭାରତର ପ୍ରାଚୀନ ଓ ମଧ୍ୟ ଯୁଗର ପ୍ରାରମ୍ଭରେ ଦିଂନାଗ ଓ ଧର୍ମକୀର୍ତ୍ତି ଭଳି ସୁବିଖ୍ୟାତ ନ୍ୟାୟୟିକମାନଙ୍କର ନିଜସ୍ୱ ମତବାଦ ବିକାଶ ପକ୍ଷରେ ଭିତ୍ତି ସ୍ୱରୂପ ହୋଇ ଛିଡ଼ା ହୋଇଥିଲା ।

କନାଦଙ୍କ ପରମାଣୁ ତତ୍ତ୍ୱ ସହିତ ଆଂଶିକ ଭାବେ ସାଦୃଶ୍ୟ ଦେଖିବାକୁ ମିଳେ ଗ୍ରୀକ୍‌ମାନଙ୍କର, ବିଶେଷ କରି ଏମ୍‌ପିଡୋକ୍ଲିସ୍‌ଙ୍କ ଦ୍ୱାରା ପ୍ରସ୍ତାବିତ ପରମାଣୁ ତତ୍ତ୍ୱର । ଏମ୍‌ପିଡୋକ୍ଲିସ୍ ମଧ୍ୟ ଚାରୋଟି ମୌଳିକ ଉପାଦାନର ଅସ୍ତିତ୍ୱକୁ ସ୍ୱୀକାର କରୁଥିଲେ (ଏହି ମୌଳିକ ଉପାଦାନସମୂହ ଥିଲେ ଉଭୟ କ୍ଷେତ୍ରରେ ଏକା ରକମର—ଯଥା, ମାଟି, ଜଳ, ନିଆଁ ଓ ପବନ ବା କ୍ଷିତି, ଅପ୍, ତେଜ୍ ଓ ମରୁତ୍) ଏବଂ ଏହିସବୁ "ଶାଶ୍ୱତ ନିର୍ଯ୍ୟାସର" ଯୋଗ-ବିଯୋଗ ଫଳକୁ ବସ୍ତୁମୟ ଜଗତର ବୈଚିତ୍ର୍ୟର କାରଣ ବୋଲି ମନେ କରିଥାନ୍ତି । ବସ୍ତୁର ରୂପ ପରିଗ୍ରହଣକୁ ଏମ୍‌ପିଡୋକ୍ଲିସ୍ ବ୍ୟାଖ୍ୟା କରିଥିଲେ ଆଦି ଅଣୁ କଣାଗୁଡ଼ିକର ଯାନ୍ତ୍ରିକ ପରସ୍ପର ସଂଯୁକ୍ତି ଓ ବିଯୁକ୍ତି ଦ୍ୱାରା ଏବଂ ଏହି ଦୁଇ ବିରୋଧୀ ଶକ୍ତିର, ପ୍ରେମ ଓ ଘୃଣାର ଶକ୍ତି ମଧ୍ୟରେ ପାର୍ଥକ୍ୟ ଟାଣିଛନ୍ତି ସର୍ବସାପେକ୍ଷ ଭାବେ । ଯେକୌଣସି ବସ୍ତୁ ବେଳେ ବେଳେ ତା'ର ମୌଳିକ ଉପାଦାନଗୁଡ଼ିକରେ ଭାଙ୍ଗି ହୋଇ ବିଛିନ୍ନ ହୋଇଯାଏ ଏବଂ ସେହି ମୌଳିକ ପଦାର୍ଥସମୂହର ପରସ୍ପର କ୍ରିୟାବିକ୍ରିୟାର ପ୍ରକ୍ରିୟା ପୁଣି ପୁନର୍ଗଠିତ ହୁଏ—ଏହାକୁ ଏମ୍‌ପିଡୋକ୍ଲିସ୍ ବ୍ୟାଖ୍ୟା କରିଛନ୍ତି ଉପରୋକ୍ତ ଦୁଇଟି ତଥାକଥିତ "ନୀତି" ମଧ୍ୟରୁ କୌଣସି ଗୋଟିକର ପ୍ରାଧାନ୍ୟ ବିସ୍ତାର ଉପରେ ନିର୍ଭରତାର କାରଣ ଦର୍ଶାଇ । ଏହି ତତ୍ତ୍ୱଟି ସହିତ ବୈଶେଷିକପନ୍ଥୀମାନଙ୍କର ପ୍ରକୃତିର ଚକ୍ରବତ୍ ପରିବର୍ତ୍ତନଶୀଳ ସ୍ୱଭାବ ବିଷୟକ ତତ୍ତ୍ୱଟିକୁ ତୁଳନା କରାଯାଇ ପାରେ । ତେବେ ପାର୍ଥକ୍ୟଟି ହେଉଛି ଯେ, ଗ୍ରୀକ୍ ଦାର୍ଶନିକ ବସ୍ତୁର ସାମୟିକ ବିଲୋପ ଓ ତା'ର ପୁନର୍ନିର୍ମାୟନ ସଂପର୍କିତ ତାଙ୍କ ତତ୍ତ୍ୱଟିକୁ ଇନ୍ଦ୍ରିୟଗ୍ରାହ୍ୟ ସମଗ୍ର ଜଗତ କ୍ଷେତ୍ରରେ ପ୍ରୟୋଗ କରି ନାହାନ୍ତି ।

ବୈଶେଷିକ ଦର୍ଶନ ଓ ଡିମୋକ୍ରିଟସ୍‌ଙ୍କ ଦର୍ଶନ ମଧ୍ୟରେ ବି କେତେକ ପରିମାଣରେ ସାଦୃଶ୍ୟ ଲକ୍ଷ୍ୟ କରାଯାଏ । ଡିମୋକ୍ରିଟସ୍ ମଧ୍ୟ ବସ୍ତୁର ନାନାବିଧ ପ୍ରକ୍ରିୟାକୁ ଅଦୃଶ୍ୟ କଣା ବା ପରମାଣୁସମୂହର ଗତି ଓ ପରସ୍ପର କ୍ରିୟାବିକ୍ରିୟାର ଫଳ ବୋଲି ବିସ୍ତାର କରିଛନ୍ତି । ତେବେ ଡିମୋକ୍ରିଟସ୍‌ଙ୍କ ଧ୍ୟାନଧାରଣା ସହିତ ବୈଶେଷିକ ଦର୍ଶନର ପାର୍ଥକ୍ୟ ଥିଲା ଏହିଠାରେ ଯେ, ପ୍ରଥମୋକ୍ତ ଦାର୍ଶନିକ ପରମାଣୁସମୂହକୁ ପୂରାପୂରି ଏକାଭଳି ମନେ କରୁଥିଲେ ବେଳେ ସେ କହୁଥିଲେ, ପରମାଣୁସମୂହ ବିବିଧ ସଂଯୁକ୍ତିର ରୂପ ମଧ୍ୟରେ ଯେଉଁ ପାର୍ଥକ୍ୟ ଦେଖାଯାଏ, ତାହା ଗୁଣଗତ ନୁହେଁ, ସଂପୂର୍ଣ୍ଣ ବିଶୁଦ୍ଧ ପରିମାଣଗତ ପାର୍ଥକ୍ୟ । ବୈଶେଷିକ ଦର୍ଶନ ଓ ଗ୍ରୀକ୍ ବସ୍ତୁବାଦୀ ଦର୍ଶନର

ସର୍ବଶେଷ ପ୍ରତିନିଧିଙ୍କର ମତବାଦ ମଧ୍ୟରେ ଏହି ସାଦୃଶ୍ୟଟି ବିପୁଳ ତାତ୍ପର୍ଯ୍ୟ ବହନ କରିଥାଏ । ଅବଶ୍ୟ, ଏହା ଫଳରେ ଗ୍ରୀକ୍‌ମାନଙ୍କ ଉପରେ ଭାରତୀୟ ଦର୍ଶନର କୌଣସି ପ୍ରତ୍ୟକ୍ଷ ପ୍ରଭାବକୁ ବୁଝାଏ ନାହିଁ, ବରଂ, ଏହି ଦୁଇ ସଭ୍ୟତାର ଅନ୍ତର୍ଗତ ଚିନ୍ତାଧାରାସମୂହର ବିକାଶ କ୍ଷେତ୍ରରେ ଏକା ରକମର ସମାନ୍ତରାଳ ଭାବନା ଚିନ୍ତାର ପ୍ରକାଶକୁ ବୁଝାଏ ।

## ମୀମାଂସା

ଭାରତୀୟ ଷଡ଼ ଦର୍ଶନର ପାରମ୍ପରିକ ତାଲିକା ଶେଷରେ ସର୍ବଦା ମୀମାଂସା ଆଉ ବେଦାନ୍ତ ନାମକ ଦାର୍ଶନିକ ଧାରା ଦୁଇଟି ସ୍ଥାନ ପାଇ ଆସିଛି । ଏହି ଧାରା ଦୁଇଟି ଏତେ ଘନିଷ୍ଠ ଭାବେ ପରସ୍ପର ସହିତ ସଂପୃକ୍ତ ଯେ, ବେଳେ ବେଳେ ବେଦାନ୍ତକୁ "ଉତ୍ତର ମୀମାଂସା" ନାମରେ (ଅର୍ଥାତ୍, "ଉତ୍ତରର" ବା "ପରବର୍ତ୍ତୀ" ମୀମାଂସା) ଆଖ୍ୟାୟିତ କରାଯାଇଛି, ଏବଂ ଖୋଦ୍ ମୀମାଂସା ଦର୍ଶନକୁ କୁହାଯାଇଛି ପୂର୍ବ ବା "ଆଦି ମୀମାଂସା" ବୋଲି । ତେବେ ପ୍ରକୃତରେ, ଏହି ଦୁଇ ଦାର୍ଶନିକ ଧାରା ମଧ୍ୟରେ ବିଭିନ୍ନ ତାତ୍ପର୍ଯ୍ୟପୂର୍ଣ୍ଣ ପାର୍ଥକ୍ୟ ରହିଛି । ଏହା ସେମାନଙ୍କର ମୌଳିକ ନୀତିସମୂହ ଓ ସେମାନଙ୍କ ଦୁଇ ମତାଦର୍ଶର ମର୍ମବାଣୀ ଉଭୟ କ୍ଷେତ୍ରରେ ସତ୍ୟ । ଏହି ଦୁଇ ଦାର୍ଶନିକ ଧାରା ମଧ୍ୟରେ ପ୍ରଥମେ ଯେ କେଉଁଟିର ଆବିର୍ଭାବ ଘଟିଥିଲା, ଆଜି ତାହା ନିରୂପଣ କରିବା ସମ୍ଭବ ନୁହେଁ, ତେବେ ଗୋଟିଏ ବିଷୟରେ ନିଃସନ୍ଦେହରେ କୁହାଯାଇ ପାରେ, ସେ ହେଉଛି, ଏହି ଦୁଇ ଧାରାର ସମ୍ମିଶ୍ରଣରେ ଏକ ଅଖଣ୍ଡ ଦାର୍ଶନିକ ଧାରାର ଉଦ୍‌ଭବ ଘଟିଥିଲା ମଧ୍ୟ ଯୁଗର ଶେଷାର୍ଦ୍ଧରେ ଏବଂ ସେପର୍ଯ୍ୟନ୍ତ ବେଦାନ୍ତର ମତ ହିଁ ପ୍ରାଧାନ୍ୟ ଲାଭ କରିଥିଲା ।

ମୀମାଂସା ଦର୍ଶନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବେଦସମୂହକୁ ପ୍ରାମାଣ୍ୟ ହିସାବରେ ଉଲ୍ଲେଖ କରି ଯାଇଛି ଏବଂ ଏହି ପ୍ରୟାସ କ୍ଷେତ୍ରରେ ଏହି ଦାର୍ଶନିକ ଶାଖାଟି, ଏପରିକି ରକ୍ଷଣଶୀଳ ହିନ୍ଦୁ ଈଶ୍ୱର ତତ୍ତ୍ୱଠାରୁ ଅଧିକ କୌଣସି ଆପୋଷମୂଳକ ସମାଧାନ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରି ଆସିଛି । ବେଦସମୂହର ମୂଳପାଠ ବା ସଂହିତାଗୁଡ଼ିକୁ ଏହି ଦର୍ଶନ ଗ୍ରହଣ କରିଛି ସମସ୍ତ ଜ୍ଞାନବିଜ୍ଞାନର ଭିତ୍ତି ହିସାବରେ । ଆଉରି ଅନେକ ଭାରତୀୟ ଧର୍ମ ଓ ଦାର୍ଶନିକ ଧାରା ଭଳି ମୀମାଂସା ଦର୍ଶନ ମଧ୍ୟ ଗଭୀର ଭାବେ ବ୍ୟାବହାରିକ, ତେବେ ଏ କ୍ଷେତ୍ରରେ ପ୍ରାୟୋଗିକ ଦିଗ ଉପରେ ଏହି ଗୁରୁତ୍ୱ ଅର୍ପଣ କରିବାର ଧରଣଟି ବିଶେଷ ରକମର । ଏହି ଦାର୍ଶନିକ ଧାରାର କେନ୍ଦ୍ରୀୟ ଆଲୋଚ୍ୟ ବସ୍ତୁ ହେଉଛି ଧର୍ମୀୟ ଅନୁଷ୍ଠାନାଦିର ନୀତି ଓ ଧରଣଧାରଣ ଏବଂ ପୂଜା ଅର୍ଚ୍ଚନାର ସଠିକ ପଦ୍ଧତି ସଂପର୍କିତ । ତେବେ ଏହିସବୁ ଆନୁଷ୍ଠାନିକ ରୀତିନୀତିର ପୁଙ୍ଖାନୁପୁଙ୍ଖତା ବିଷୟରେ ମୀମାଂସା ଦର୍ଶନର ବକ୍ତବ୍ୟ ବୈଦିକ ପରମ୍ପରାର ଖାଣ୍ଟି ମର୍ମବାଣୀଟି ଠାରୁ ମୌଳିକ ଭାବେ ବିଚ୍ୟୁତ ହୋଇଛି । ଯଥା, ବେଦସମୂହରେ କୁହାଯାଇଛି ଯେ, ଦେବତାମାନଙ୍କ ଉଦ୍ଦେଶ୍ୟରେ ବଳିଦାନ କରାଯିବ, ଅଥଚ ମୀମାଂସା ଦର୍ଶନ ମତରେ ବଳିଦାନ ଗ୍ରହଣ ମଧ୍ୟରେ ଦେବତାମାନଙ୍କ ଅସ୍ତିତ୍ୱ ନିହିତ । ଦେବତାମାନେ ଏଠାରେ ପ୍ରାକୃତିକ ଶକ୍ତିସମୂହ ଓ ମାନବ ଜୀବନର ଚକ୍ର ପ୍ରଚଳନରେ ହସ୍ତକ୍ଷେପକାରୀ ପ୍ରକୃତିର ଅଧୀଶ୍ୱର ନୁହନ୍ତି, ଧର୍ମୀୟ ଅନୁଷ୍ଠାନାଦିର ଏକ ଅପରିହାର୍ଯ୍ୟ ଯୋଗସୂତ୍ର ବ୍ୟତୀତ ଆଉ କିଛି ନୁହନ୍ତି । କାରଣ, ସେମାନଙ୍କ ଅସ୍ତିତ୍ୱ ନରହିଲେ, ବଳିଦାନ ଅର୍ଥହୀନ ହୋଇ ପଡ଼ିଥାନ୍ତା ।

ଏହା ତେଣୁ ଖୁବ୍ ସ୍ୱାଭାବିକ ଯେ, ମୀମାଂସା ଦର୍ଶନର ପୋଥିଗୁଡ଼ିକରେ ବେଦସମୂହରେ ବର୍ଣ୍ଣିତ କେତେକ କର୍ମକାଣ୍ଡର ବିଶଦ ବ୍ୟାଖ୍ୟା ଓ ସେସବୁ ବିଷୟରେ ଧର୍ମାଧର୍ମ ବିଗ୍ଭର ସର୍ବୋଚ୍ଚ ସ୍ଥାନ ଅଧିକାର କରିଛି ।

ଧର୍ମୀୟ ସମସ୍ୟାଦି ଘେନି ପ୍ରଧାନତଃ ବ୍ୟସ୍ତ ରହିବା ସତ୍ତ୍ୱେ ମୀମାଂସା ଦର୍ଶନର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା ଏହାର ଜ୍ଞାନ ତତ୍ତ୍ୱ ବିଷୟକ ଆଲୋଚନା । ମୀମାଂସା ଦର୍ଶନର ପ୍ରତିଷ୍ଠାତା ବୋଲି କଥିତ ଜୈମିନି "ଯଥାର୍ଥ ଜ୍ଞାନର" (ବା ପ୍ରମାଣ) ପାଞ୍ଚଟି ଉତ୍ସ ମଧ୍ୟରେ, ଅବଶ୍ୟ, ପ୍ରାମାଣ୍ୟ (ଶବ୍ଦ) ବା ବୈଦିକ ପାଠସମୂହର ସାକ୍ଷ୍ୟକୁ ଅନ୍ୟତମ ବୋଲି ଗଣ୍ୟ କରିଛନ୍ତି । ତେବେ ତାଙ୍କ "ମୀମାଂସାସୂତ୍ର" ଗ୍ରନ୍ଥରେ ଉଲ୍ଲିଖିତ ଅନ୍ୟ ଗ୍ଭରୋଟି ଉତ୍ସ କିନ୍ତୁ ଏହି ଦର୍ଶନର ସାମଗ୍ରିକ ଧର୍ମୀୟ ଦୃଷ୍ଟିଭଙ୍ଗି ସହିତ ସଂପୃକ୍ତ ନୁହେଁ । ଏହି ଶେଷୋକ୍ତ ଗ୍ଭରୋଟି ଉତ୍ସ ହେଲା, ଇନ୍ଦ୍ରିୟାନୁଭୂତି ମଧ୍ୟ ଦେଇ ଆହୃତ ଧାରଣା, ଯୁକ୍ତିବିଦ୍ୟାସମ୍ମତ କାର୍ଯ୍ୟକାରଣ ସମ୍ବନ୍ଧ ନିର୍ଣ୍ଣୟ, ତୁଳନା ଏବଂ ପ୍ରସ୍ତାବନା ।

ସାଧାରଣ ଭାବେ ନ୍ୟାୟ ଦର୍ଶନ ଯେଉଁଠି ବସ୍ତୁରାଜି ମଧ୍ୟରେ ସାଦୃଶ୍ୟ ବା ଅନୁରୂପତା ବିଗ୍ଭର ପ୍ରଶ୍ନରେ ଯୁକ୍ତିବିଦ୍ୟାର ଅବରୋହୀ ପଦ୍ଧତି ପ୍ରୟୋଗ କରିଥାଏ, ମୀମାଂସା ଦର୍ଶନ ସେଠାରେ ପ୍ରୟୋଗ କରିଥାଏ ଯୁକ୍ତିବିଦ୍ୟାର ଆରୋହୀ ପଦ୍ଧତି । ମତାଦର୍ଶ ବିଗ୍ଭର କ୍ଷେତ୍ରରେ ରକ୍ଷଣଶୀଳ ମୀମାଂସା ଦର୍ଶନ ଏବଂ ବହୁ ଦିଗରୁ "ପ୍ରଚଳିତ ଧର୍ମମତ ବିରୋଧୀ" ନ୍ୟାୟ ଦର୍ଶନ ଏକ ଓ ଅଭିନ୍ନ ସମସ୍ୟାଦି ଘେନି ବିଗ୍ଭର କଲା ବେଳେ ପରସ୍ପର ବିରୁଦ୍ଧରେ ତର୍କ ଯୁଦ୍ଧରେ ପ୍ରବୃତ୍ତ ହୋଇଛନ୍ତି । ମତ ବିରୋଧ କ୍ଷେତ୍ରରେ ବାଗ୍‌ବିତଣ୍ଡାରେ ପ୍ରବୃତ୍ତ ହେବା ଫଳରେ ଏହି ମଜ୍ଜାଗତ ଅଭ୍ୟାସଟି ଇତିପୂର୍ବରୁ ଆଲୋଚିତ ଅନ୍ୟାନ୍ୟ ଧର୍ମୀୟ ଓ ଦାର୍ଶନିକ ମତାଦର୍ଶଗୁଡ଼ିକ ଭଳି ମୀମାଂସା ଦର୍ଶନରେ ମଧ୍ୟ କମ୍ ପ୍ରକଟିତ ନୁହେଁ । ମୀମାଂସା ଦର୍ଶନରେ ଗ୍ରନ୍ଥଗୁଡ଼ିକ ଏହି ଦର୍ଶନର ପ୍ରତିପକ୍ଷମାନଙ୍କ ବିରୁଦ୍ଧରେ ସମାଲୋଚନାର ଉଚ୍ଚ କୋଳାହଳରେ ପରିପୂର୍ଣ୍ଣ ।

ମୀମାଂସକମାନେ (ମୀମାଂସା ଧାରାର ଦାର୍ଶନିକଗଣ) "ପ୍ରସ୍ତାବନା", କିମ୍ବା ଆଉରି ସଠିକ ଭାବେ କହିବାକୁ ଗଲେ, "ସ୍ୱତଃସିଦ୍ଧର ସ୍ୱୀକୃତିର" ଧାରଣାଟି ପ୍ରବର୍ତ୍ତନ କରିଛନ୍ତି । ଏହି ଧାରଣାଟିର ତାତ୍ପର୍ଯ୍ୟ ହେଲା, ଯଦି କୌଣସି ଘଟଣା ବା ଅନ୍ୟ କୌଣସି ବିଷୟ ଆମ ପକ୍ଷରେ ଅକାରଣ ବୋଲି ମନେ ହୁଏ, ତେବେ ଆମେ ବାଧ୍ୟ ହୋଇ ବିଷୟଟିର ପରୋକ୍ଷ ଏକ ବ୍ୟାଖ୍ୟାର ଆଶ୍ରୟ ନେଇ ଏବଂ ନେତି ନେତି କରି କରି (ଅର୍ଥାତ୍, ଏହା ନୁହେଁ, ତାହା ନୁହେଁ କହି ଗୋଟିକ ପରେ ଗୋଟିକୁ ବାଦ୍ ଦେଇ) ବିଷୟଟିର ବିଶ୍ଳେଷଣ ମଧ୍ୟ ଦେଇ ଶେଷକୁ ଆମେ ବିଷୟଟିର ଯଥାର୍ଥ କାରଣରେ ପହଞ୍ଚିବାକୁ ସମର୍ଥ ହୋଇଥାଏଁ । ଫଳରେ ଭାରତୀୟ ଚିନ୍ତାଧାରା କ୍ଷେତ୍ରରେ ଏହି ପ୍ରଥମ ଅବଧାରଣା ଲାଭ କରିବାର ପ୍ରକ୍ରିୟାରେ ଅନୁମାନଭିତ୍ତିକ ପ୍ରକଳ୍ପର ଧାରଣାଟି ଦାନା ବାନ୍ଧିଥିଲା । ଏକଥା, ଅବଶ୍ୟ, ଠିକ୍ ଯେ, ସ୍ୱତଃସିଦ୍ଧର ସ୍ୱୀକୃତି (ଅର୍ଥାପତ୍ତି) କୌଣସି ପ୍ରକାରେ ପୂରାପୂରି "ଅନୁମାନଭିତ୍ତିକ ପ୍ରକଳ୍ପ" ନୁହେଁ, ବିଶେଷ କରି ମୀମାଂସା ଦର୍ଶନରେ "ସ୍ୱତଃସିଦ୍ଧର ସ୍ୱୀକୃତି" କହିଲେ, ମୋଟେ ଅନୁମାନକୁ ବୁଝାଏ ନାହିଁ, ବୁଝାଏ ତର୍କାତୀତ ସିଦ୍ଧାନ୍ତକୁ ।

ପ୍ରସଙ୍ଗତଃ ଏହା ଲକ୍ଷଣୀୟ ଯେ, ବିଶ୍ୱଜଗତ ସଂପର୍କରେ ମୀମାଂସା ଦର୍ଶନର ସାଧାରଣ ଦୃଷ୍ଟିଭଙ୍ଗି ମଧ୍ୟରେ ବାସ୍ତବବାଦର ସୁନିର୍ଦ୍ଦିଷ୍ଟ ଲକ୍ଷଣ ରହିଛି । ଏହି ଦର୍ଶନରେ ବ୍ରହ୍ମାଣ୍ଡର ବାସ୍ତବିକ

ଅସ୍ତିତ୍ୱ ଏବଂ ତା'ର ଅବଧାରଣଯୋଗ୍ୟତା ସମ୍ବନ୍ଧରେ କୌଣସି ସନ୍ଦେହ ପୋଷଣ କରାଯାଇ ନାହିଁ, ଯଦିଓ ଜୈମିନି କେବଳ ବସ୍ତୁବାଦୀ ଓ ସାଂଖ୍ୟ ଦର୍ଶନ ବିରୁଦ୍ଧରେ ନୁହେଁ, ବୌଦ୍ଧ ଦର୍ଶନ ବିରୁଦ୍ଧରେ ମଧ୍ୟ ସକ୍ରିୟ ଲେଖନୀ ଚାଳନା କରିଥିଲେ ।

ମୀମାଂସା ଦର୍ଶନର ଅଙ୍ଗୀଭୂତ ଉପରୋକ୍ତ ଏହି ବାସ୍ତବବାଦ ବିଶେଷ କରି ଏହି କାରଣରୁ ପ୍ରଣିଧାନଯୋଗ୍ୟ ଯେ, ଏହି ଧାରଣାଟି ଏହି ଅଧ୍ୟାୟରେ ଇତିପୂର୍ବରୁ ଆଲୋଚିତ ଅନ୍ୟାନ୍ୟ ଦାର୍ଶନିକ ଧାରା ଭଳି ମୋଟେ ନୁହଁ, ବରଂ, ଏହି ଧାରାଟି ଥିଲା ବେଦସମୂହର କର୍ମକାଣ୍ଡର ନୀତି ଓ ରୀତିର ସର୍ତ୍ତହୀନ ଅନୁଗାମୀ । ସେଇ କାରଣରୁ ଏହା ଉଲ୍ଲେଖଯୋଗ୍ୟ ଯେ, ପାରମ୍ପରିକ ଧ୍ୟାନଧାରଣାଗୁଡ଼ିକର ସତ୍ୟତାକୁ ପରୀକ୍ଷା କରିବା ଏବଂ ସେସବୁକୁ ସମାଲୋଚନାମୂଳକ ବିଶ୍ଳେଷଣର ବିଷୟ କରିବାର ଯେଉଁ ପ୍ରୟାସ ତତ୍କାଳୀନ ଯୁଗରେ ଏକ ସାଧାରଣ ପ୍ରବଣତା ସ୍ୱରୂପ ଥିଲା, ତାହା ଏପରିକି ମୀମାଂସା ଦର୍ଶନ ଭଳି ଘୋର ରକ୍ଷଣଶୀଳ ଏକ ମତାଦର୍ଶକୁ ମଧ୍ୟ ପ୍ରଭାବିତ କରିଥିଲା ।

## ବେଦାନ୍ତ

ମଧ୍ୟ ଯୁଗରେ ବେଦାନ୍ତ ଦର୍ଶନର ପ୍ରଭାବ ପ୍ରାଧାନ୍ୟ ଲାଭ କରିଥିଲେ ମଧ୍ୟ ତା'ର ଅର୍ଥ ଏହା ନୁହେଁ ଯେ, ଦର୍ଶନର ଏହି ଧାରାଟିର ଉଦ୍‌ଭବ ଅନ୍ୟାନ୍ୟ ଦର୍ଶନର ଉଦ୍‌ଭବ ପରେ ଘଟିଥିଲା । ଋଷି ବଦରାୟନଙ୍କ ରଚନା ବୋଲି ଖ୍ୟାତ ପ୍ରଥମ ବିଶୁଦ୍ଧ ବେଦାନ୍ତ ଗ୍ରନ୍ଥ "ବ୍ରହ୍ମସୂତ୍ର" ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀରେ ରଚିତ ହୋଇଥିଲା ବୋଲି ଜଣାଯାଏ । ବୈଦାନ୍ତିକମାନେ, ଅବଶ୍ୟ, ପ୍ରମାଣ କରିବାକୁ ଚାହାନ୍ତି ଯେ, ସେମାନଙ୍କର ଏହି ଦାର୍ଶନିକ ମତାଦର୍ଶଟିର ମୂଳ ଉପନିଷଦସମୂହରେ ନିହିତ, ଉପନିଷଦସମୂହକୁ ସେମାନଙ୍କ ସମସ୍ତ ଦାର୍ଶନିକ ରଚନାର ଆଦି ଉତ୍ସ ବୋଲି ସେମାନେ ଜ୍ଞାନ କରନ୍ତି । ଏହି ବକ୍ତବ୍ୟ ପଛରେ ଥିବା ଉଦ୍ଦେଶ୍ୟଟି, ଅବଶ୍ୟ, ସ୍ୱତଃ ବୋଧଗମ୍ୟ । ତା'ଛଡ଼ା ସଂକ୍ଷିପ୍ତ ଏବଂ ସର୍ବତ୍ର ବୋଧଗମ୍ୟ ନହେଲା ଭଳି ଉକ୍ତିସମୂହର ସମାହାର ବଦରାୟନଙ୍କର ଉପରୋକ୍ତ ଗ୍ରନ୍ଥଟିରେ ଏହି ଦର୍ଶନର ସୁନିର୍ଦ୍ଦିଷ୍ଟ ଚରିତ୍ର ଅପେକ୍ଷା, ବରଂ, ଏହାର ପ୍ରଧାନ ବକ୍ତବ୍ୟଗୁଡ଼ିକୁ କେବଳ ପ୍ରଚାରିତ କରିଛି । ତେବେ ବଦରାୟନ ଏହି ଗ୍ରନ୍ଥରେ ବେଦାନ୍ତ ଦର୍ଶନର ମୂଳ ନୀତିଗୁଡ଼ିକୁ ବିବୃତ କରିଛନ୍ତି, ଯଦିଓ ସେ ତାହା ପ୍ରକାଶ କରିଛନ୍ତି ପ୍ରଧାନତଃ ନେତିବାଚକ ଉକ୍ତି ସାହାଯ୍ୟରେ । ଦୃଷ୍ଟାନ୍ତ ସ୍ୱରୂପ, ସେ କହିଛନ୍ତି, ବିଶ୍ୱବ୍ରହ୍ମାଣ୍ଡ କୌଣସି ପ୍ରକାରେ ବସ୍ତୁର ଶକ୍ତିସମୂହରୁ ଉଦ୍‌ଭୂତ ହୋଇନି, ଏକମାତ୍ର ବାସ୍ତବ ସତ୍ୟ ହେଉଛି "ବ୍ରହ୍ମନ୍" (ଏଠାରେ ଆତ୍ମିକ ନିର୍ଯ୍ୟାସକୁ ବୁଝାଏ) ଏବଂ ଯାହା କିଛି ବାସ୍ତବ ଅସ୍ତିତ୍ୱ ସଂପନ୍ନ, ତାହା ବହୁ ବିଚିତ୍ର ରୂପରେ ଏହି ବ୍ରହ୍ମନ୍ ଠାରୁ ଉଦ୍‌ଭୂତ । ଏହି ଚରମ ଭାବବାଦୀ ଦୃଷ୍ଟିଭଙ୍ଗିର ସମର୍ଥକ "ବ୍ରହ୍ମସୂତ୍ରର" ରଚୟିତା ଯେ ତାଙ୍କ ସମକାଳୀନ ବସ୍ତୁବାଦୀ ଭାବଧାରାର ପ୍ରତିକ୍ରିୟାରେ ସେସବୁର ବିରୋଧିତା କରିଛନ୍ତି, ଏହା ସ୍ୱାଭାବିକ । ଏହି କାରଣରୁ ତାଙ୍କ ରଚନାରେ ସାଂଖ୍ୟ ଓ ଲୋକାୟତ ମତ ବିରୁଦ୍ଧରେ ଆଲୋଚନା କାଳରେ ତୀବ୍ର ବିତର୍କ ଘଟିଥିବାର ଦେଖାଯାଏ ।

ବଦରାୟନଙ୍କ ଅସମ୍ଭବ ସଂକ୍ଷିପ୍ତ, ସୂତ୍ରାକାର ରଚନା, ସ୍ୱଭାବତଃ, ଭାରତରେ ଭାଷ୍ୟ ରଚନାର ପରମ୍ପରାକୁ ବିକଶିତ କରିଥିଲା । ମଧ୍ୟ ଯୁଗର ଊଷାକାଳରେ ଗୌଡ଼ପାଦ ଏହି ଦାର୍ଶନିକ

ମତବାଦର ଯେଉଁ ପ୍ରଥମ ଭାଷ୍ୟଟି ଲେଖିଥିଲେ, ତାହା ଏପର୍ଯ୍ୟନ୍ତ ତିଷ୍ଠି ରହିଛି । ପରବର୍ତ୍ତୀ କାଳରେ ବେଦାନ୍ତ ଦର୍ଶନର ଏହି ଧାରାଟି ବିଭକ୍ତ ହୋଇ ଯାଇ ଭିନ୍ନ ଭିନ୍ନ ପ୍ରଗ୍ରରକଙ୍କ ନାମାନୁଯାୟୀ ବିଭିନ୍ନ ଉପଧାରାର ରୂପ ଗ୍ରହଣ କରିଥିଲା । ଏହି ଉପଧାରାଗୁଡ଼ିକ ଶଙ୍କର, ରାମାନୁଜ, ମାଧବ, ବଲ୍ଲଭ ଏବଂ ନିମ୍ବାର୍କଙ୍କ ନାମ ସହିତ ଯୁକ୍ତ । ଏହି ଦାର୍ଶନିକମାନଙ୍କ ମଧ୍ୟରୁ ପ୍ରତ୍ୟେକ ସେମାନଙ୍କ ମୂଳ ଗ୍ରନ୍ଥ ରଚନା କରିଥିଲେ ବଦରାୟନଙ୍କ "ବ୍ରହ୍ମସୂତ୍ରର" ନିଜସ୍ୱ "ଭାଷ୍ୟ" ଆକାରରେ । ତେବେ ଏସବୁ ମଧ୍ୟରେ ମାତ୍ର ଦୁଇଟି – ଶଙ୍କର ଓ ରାମାନୁଜଙ୍କ ରଚିତ ଭାଷ୍ୟ ଦୁଇଟି – ପରେ ବେଦାନ୍ତ ଦର୍ଶନର ବିକାଶରେ କାର୍ଯ୍ୟତଃ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଭାବ ବିସ୍ତାର କରିବାରେ ସମର୍ଥ ହୋଇଥିଲା ।

ଶଙ୍କର (ଖ୍ରୀଷ୍ଟୀୟ ଅଷ୍ଟମ – ନବମ ଶତାବ୍ଦୀ) ଓ ରାମାନୁଜଙ୍କ (ଏକାଦଶ ଶତାବ୍ଦୀ) ବହୁସଂଖ୍ୟକ ଦାର୍ଶନିକ ରଚନା ଆଜି ପର୍ଯ୍ୟନ୍ତ ତିଷ୍ଠି ରହିଛି । ଶଙ୍କରଙ୍କ ମତବାଦ ଅନୁଯାୟୀ ପରମବ୍ରହ୍ମଙ୍କ ଠାରୁ ଜାତ ଏହି ବିଶ୍ୱ ସଂସାର ମାୟା ବା ଭ୍ରାନ୍ତି ମାତ୍ର । ଭୌତିକ ପ୍ରକୃତି ଆନୁଭାବିକ "ଅହଂ" ଭଳି ମିଥ୍ୟା, ଅବାସ୍ତବ । କେବଳ ମାତ୍ର ଆତ୍ମନ୍, ଯିଏକି ପରମବ୍ରହ୍ମର ପ୍ରତିବିମ୍ବ, ସେଇ କାଳ୍ପନିକ ମାନସିକତାର ସମଷ୍ଟିକୁ ପ୍ରଭାବିତ କରିଥାଏ, ଯେଉଁ ସମଷ୍ଟିକୁ ଦୈନନ୍ଦିନ ଭାଷାରେ ମଣିଷର ବ୍ୟକ୍ତିତ୍ୱ ବୋଲି କୁହାଯାଏ । ବେଦାନ୍ତ ଧାରାର ଅନ୍ତର୍ଗତ ଦୁଇଟି ପ୍ରଧାନ ପ୍ରବଣତା ମଧ୍ୟରେ କେଇ ଶତାବ୍ଦୀ ଧରି ବିତର୍କର ବିଷୟ ହୋଇଥିଲା କାର୍ଯ୍ୟତଃ ଧର୍ମୀୟ ଆଗ୍ରର ଆଚରଣ ଓ ଅତିନ୍ଦ୍ରିୟବାଦ ବୈଷୟିକ ପ୍ରଶ୍ନରାଜି । ଶଙ୍କରାଗ୍ରର୍ଯ୍ୟ କେବଳ "ଜ୍ଞାନମାର୍ଗକୁ" (ଅର୍ଥାତ୍, ସର୍ବବ୍ୟାପୀ ଓ ବିଶ୍ୱଜନୀନ ବ୍ରହ୍ମର ବାସ୍ତବତାର ପଟ୍ଟଭୂମିରେ ନିଜସ୍ୱ ବ୍ୟକ୍ତିସତ୍ତାର ମାୟାମୟ ବା ଅଳୀକ ପ୍ରକୃତି ସଂପର୍କରେ ଚେତନାକୁ) ସଠିକ ଏବଂ ସତ୍ୟ ବୋଲି ମନେ କରିଛନ୍ତି ଏବଂ ଫଳତଃ ଘୋଷଣା କରିଛନ୍ତି ଯେ, "ଅହମ୍" (ଜୀବାତ୍ମା) ଓ "ଆତ୍ମନ୍ ବ୍ରହ୍ମନ୍" (ପରମାତ୍ମା) ସଂପୂର୍ଣ୍ଣ ଏକ ଓ ଅଭିନ୍ନ । ଅନ୍ୟ ଦିଗରେ, "ଧର୍ମୀୟ ପ୍ରେମମାର୍ଗର" ପ୍ରବକ୍ତା ରାମାନୁଜ ବ୍ୟକ୍ତିସତ୍ତାର (ଅହମ୍‌ର) ଦେବସତ୍ତା (ପରମବ୍ରହ୍ମ) ସହିତ ଏକାତ୍ମସାଧନକୁ ପରମ ଲକ୍ଷ୍ୟ ହିସାବରେ ଦେଖିଛନ୍ତି । ତେବେ ତାଙ୍କର ଏହି ଏକାତ୍ମତା ସାଧନ ଫଳରେ ଭକ୍ତ ତା'ର ଆରାଧ୍ୟର ସାମୀପ୍ୟ ଲାଭ କରିଲେ ମଧ୍ୟ ତା'ର ସମକକ୍ଷ ହୋଇ ପାରେ ନାହିଁ ।

ଶଙ୍କର ସର୍ବବ୍ୟାପୀ ଭାବବାଦୀ ଅଦ୍ୱୈତବାଦ ଏବଂ ବହିର୍ବିଶ୍ୱର ବହୁବିଚିତ୍ର ବିଷୟସମୂହ ବା ପ୍ରପଞ୍ଚରାଜିକୁ "ମହାକାଗତିକ ପରମ" ବା ବ୍ରହ୍ମର ଆତ୍ମପ୍ରକାଶ ହିସାବରେ ବ୍ୟାଖ୍ୟା କରିଛନ୍ତି । କ୍ରମଶଃ ଶଙ୍କରଙ୍କ ଦାର୍ଶନିକ ମତ ସମଗ୍ର ଭାବେ ବେଦାନ୍ତର ମତ ବୋଲି ପରିଚିତ ହୋଇଛି । ରକ୍ଷଣଶୀଳ ହିନ୍ଦୁ ଧର୍ମ ଏହି ଦାର୍ଶନିକଙ୍କ ମତବାଦକୁ ନିଜସ୍ୱ ଆନୁଷ୍ଠାନିକ ବା ପ୍ରାମାଣିକ ମତାଦର୍ଶ ହିସାବରେ ଗ୍ରହଣ କରି ନେଇଛି ।

ଯଦିଓ ବିଶେଷ ଏକ ସମୟରେ ଏହି ବେଦାନ୍ତ ଦର୍ଶନ ପ୍ରଧାନ ଏକ ଦାର୍ଶନିକ ଧାରା ରୂପେ ଦେଖା ଦେଇଥିଲା, ତେବେ ପାରମ୍ପରିକ ଦାର୍ଶନିକ ମତବାଦଗୁଡ଼ିକ ମଧ୍ୟରେ ଏହା ଯେ ଏକ ଅନ୍ୟତମ ଧାରା, ଏହି ସତ୍ୟଟି ତା ଦ୍ୱାରା ଲୋପ ପାଇଲା ନାହିଁ । ବସ୍ତୁତଃ, ସେଇ ସମୟରେ ଅପେକ୍ଷାକୃତ ପ୍ରାଚୀନତମ ଅନ୍ୟାନ୍ୟ ଦାର୍ଶନିକ ଧାରା ନୂଆ ନୂଆ ଭାବଧାରାକୁ ଜନ୍ମ ଦେଇଥିଲେ । ବାହ୍ୟତଃ, ବେଦାନ୍ତ ଦର୍ଶନର ପ୍ରାଧାନ୍ୟ ଅବ୍ୟାହତ ରହିଥିଲେ ମଧ୍ୟ ଅନ୍ୟାନ୍ୟ ଚିନ୍ତାଧାରାର, ବିଶେଷ କରି ଲୋକାୟତ ଓ ସାଂଖ୍ୟ ଦର୍ଶନର, ବ୍ୟାପକ ପ୍ରଭାବ ଜନସମାଜରେ ଅକ୍ଷୁଣ୍ଣ ରହି ଯାଇଥିଲା ।

# କୁଷାଣ ଓ ଗୁପ୍ତ ଯୁଗର ସଂସ୍କୃତି

## ନାଟକ ଓ ସାହିତ୍ୟ

ଦୁଃଖର ବିଷୟ, କୁଷାଣ ଯୁଗରେ ରଚିତ ସାହିତ୍ୟର ସାମାନ୍ୟ କେତେକ ଗ୍ରନ୍ଥ ଏବେ ତିଷ୍ଠି ରହିଛି । ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ସଂସ୍କୃତ ସାହିତ୍ୟର ବିକାଶ ସଂପର୍କରେ ଆମ ଜ୍ଞାନ ମୂଳତଃ ଗୁପ୍ତ ଯୁଗର ସାହିତ୍ୟ ରଚନା ଉପରେ ଭିତ୍ତି କରି ଗଢ଼ି ଉଠିଛି । ଅବଶ୍ୟ, କିଂବଦନ୍ତୀ ଅନୁଯାୟୀ ଅସାଧାରଣ ଲେଖକ ଓ ନାଟ୍ୟକାର, ବୌଦ୍ଧ ସଂସ୍କୃତ ସାହିତ୍ୟର ଅନ୍ୟତମ ପ୍ରତିଷ୍ଠାତା ଓ କନିଷ୍କ ପ୍ରଧାନ ଦାର୍ଶନିକ ପଣ୍ଡିତ ଅଶ୍ୱଘୋଷଙ୍କ ରଚନାବଳୀ କନିଷ୍କଙ୍କ ରାଜତ୍ୱକାଳ ସହିତ (ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର ପ୍ରାରମ୍ଭ) ସଂଯୁକ୍ତ । ଅଶ୍ୱଘୋଷଙ୍କ ବହୁ ଗ୍ରନ୍ଥ ଏବେ ମଧ୍ୟ ଅଜ୍ଞାତ ରହି ଯାଇଛି । କେବଳ ସଂସ୍କୃତ ଭାଷାରେ ଲିଖିତ ତାଙ୍କର ନିମ୍ନୋକ୍ତ ଗ୍ରନ୍ଥଗୁଡ଼ିକର କେତେକ ଅଂଶ ହେଉଛି, "ବୁଦ୍ଧଚରିତ" ("ବୁଦ୍ଧ ଦେବଙ୍କ ଜୀବନ କଥା"; ଏହି ଗ୍ରନ୍ଥଟିର ସଂପୂର୍ଣ୍ଣ ଅଂଶ ଏହାର ଚୀନ୍ ଏବଂ ତିବ୍ବତୀୟ ଭାଷାର ଅନୁବାଦରେ ସଂରକ୍ଷିତ ଅଛି), "ସୌନ୍ଦରାନନ୍ଦ" ("ସୁନ୍ଦରୀ ଓ ନନ୍ଦ") ଏବଂ "ଶାରୀପୁତ୍ରପ୍ରକରଣ" ନାମକ ନାଟକଟି ("ଶାରୀପୁତ୍ରଙ୍କ ବୌଦ୍ଧ ଧର୍ମ ଗ୍ରହଣର କାହାଣୀ ଅବଲମ୍ବନରେ ରଚିତ ନାଟକ") । ପ୍ରାଚୀନ ଭାରତରେ ଅଶ୍ୱଘୋଷଙ୍କର ଏହିସବୁ ଗ୍ରନ୍ଥ ବ୍ୟାପକ ଜନପ୍ରିୟତା ଲାଭ କରିଥିଲା । ସପ୍ତମ ଶତାବ୍ଦୀରେ ଭାରତ ପରିଭ୍ରମଣକାରୀ ବୌଦ୍ଧ ଚୀନ୍ ପରିବ୍ରାଜକ ଇ ତ୍‌ସିଙ୍ଗ୍ ଲେଖିଛନ୍ତି ଯେ, "କାବ୍ୟଟି" ପାଠକମାନଙ୍କ ହୃଦୟକୁ ଏପରି ଭାବେ ଆନନ୍ଦ ଆପ୍ଳୁତ କରି ଦେଉଥିଲା ଯେ, ସେମାନେ ତାକୁ ବାରମ୍ବାର ପାଠ କରି ମଧ୍ୟ କ୍ଳାନ୍ତି ବୋଧ କରୁ ନଥିଲେ ।

"ବୁଦ୍ଧଚରିତ" ଏବଂ "ଶାରୀପୁତ୍ରପ୍ରକରଣରେ" ବୌଦ୍ଧ କାହାଣୀ ଲିପିବଦ୍ଧ ଏବଂ ବୌଦ୍ଧ ଶିକ୍ଷା ପ୍ରଚାରିତ ହେଲେ ମଧ୍ୟ କାବ୍ୟ ଦୁଇଟିର କାବ୍ୟିକ ଓ ଶିଳ୍ପଗତ ଗୁଣ ଯଥେଷ୍ଟ ରହିଛି । କାବ୍ୟ ରଚନାରେ ଅଶ୍ୱଘୋଷ ମହାକାବ୍ୟୀୟ ପରମ୍ପରା ଉପରେ ଭିତ୍ତି କରିଛନ୍ତି ଏବଂ ତାଙ୍କ ସୃଷ୍ଟ ଚରିତ୍ରଗୁଡ଼ିକର ଜୀବନ ପରିପୂର୍ଣ୍ଣ ହୋଇଛି ନାଟକୀୟତା ଏବଂ ଆବେଗଭରା ଅଭିଜ୍ଞତା ଦ୍ୱାରା ।

ଅଶ୍ୱଘୋଷ ତାଙ୍କ ନାଟକଗୁଡ଼ିକରେ ପ୍ରାଚୀନ ଭାରତୀୟ ନାଟ୍ୟଶିଳ୍ପର ଯେଉଁ ଭିତ୍ତି ରଚନା କରିଥିଲେ, ତାହା ପରେ ଭାସ, କାଳିଦାସ, ଶୂଦ୍ରକ, ପ୍ରଭୃତି କବି ଓ ନାଟ୍ୟକାରମାନଙ୍କ ରଚନାରେ ବିକଶିତ ଏବଂ ପରିଣତ ହୋଇଛି । ଭାସ ମୋଟ ତେରଖଣ୍ଡ ନାଟକ ରଚନା କରିଥିଲେ ବୋଲି କୁହାଯାଏ, କିନ୍ତୁ ଏହିସବୁ ନାଟକ ମଧ୍ୟରୁ ବାସ୍ତବରେ କେତୋଟି ଏହି ଅସାଧାରଣ ନାଟ୍ୟକାର ରଚନା କରିଥିଲେ, ତାହା ଏପର୍ଯ୍ୟନ୍ତ ସଠିକ ଭାବେ ନିଶ୍ଚିତ ହୋଇ ନାହିଁ । ଭାସ ମଧ୍ୟ ମହାକାବ୍ୟୀୟ ପରମ୍ପରାର ସଦ୍‌ବ୍ୟବହାର କରିଛନ୍ତି, ତେବେ ତାଙ୍କ ନାଟକଗୁଡ଼ିକ କଠୋର ଭାବେ ଶାସ୍ତ୍ରୀୟ ନାଟ୍ୟ ରଚନାର ନିୟମ ଅନୁଯାୟୀ ରଚିତ ହୋଇଛି । କେତେକ ଆଧୁନିକ ପଣ୍ଡିତ କହନ୍ତି ଏବଂ ସେମାନଙ୍କର ଏହି କଥା ସପକ୍ଷରେ ମଧ୍ୟ ଯଥେଷ୍ଟ ଯୁକ୍ତି ଅଛି ଯେ, ଭାସଙ୍କ ରଚିତ ନାଟକ ବୋଲି ଯେଉଁଥିରୁ ଉଲ୍ଲେଖ କରାଯାଏ, ତା ମଧ୍ୟରେ କେତେକ ଭାରତୀୟ ବିୟୋଗାନ୍ତକ ନାଟକର ସବୁଠାରୁ ପ୍ରାଚୀନ ନମୁନା ରହିଛି । ଏହି ଉପରୋକ୍ତ ନାଟକଟି ଭାସଙ୍କ ପକ୍ଷରେ ଦୁଃସାହସିକ

ନବଉଦ୍‌ଭାବନା ସ୍ୱରୂପ ଥିଲ, ତତ୍‌କାଳୀନ ଶିଳ୍ପ ରୀତିକୁ ଭାସ ଲଘନ କରିଥିଲେ । ପ୍ରାଚୀନ ଭାରତୀୟ ନାଟ୍ୟକଳାର ଏହି ବିଶେଷ ଧାରାଟିକୁ ଆଉରି ବିକଶିତ କରିଥିଲେ "ମୃଚ୍ଛକଟିକ" ("ମୃତ ଶକଟିକ" ବା "ମାଟି ନିର୍ମିତ ଛୋଟ ଶଗଡ଼") ନାଟକର ରଚୟିତା ଶୂଦ୍ରକ । ଏହି ନାଟକରେ ଦରିଦ୍ର ଅବସ୍ଥାରେ ପଡ଼ିଥିବା ଏକ ବଣିକ ଜଣେ ଗଣିକାର ଉନ୍ନତ ପ୍ରେମରେ କିପରି ପଡ଼ିଛନ୍ତି, ସେ କାହାଣୀ ବର୍ଣ୍ଣିତ ହୋଇଛି ।

ପ୍ରାଚୀନ ଭାରତୀୟ ସାହିତ୍ୟର ଉଜ୍ଜ୍ୱଳ ରତ୍ନମାନଙ୍କ ମଧ୍ୟରେ ଅନ୍ୟତମ ହେଉଛି କବି, ନାଟ୍ୟକାର ଏବଂ ଲେଖକ କାଳିଦାସଙ୍କର (ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ଶେଷ ଏବଂ ପଞ୍ଚମ ଶତାବ୍ଦୀର ପ୍ରଥମାଂଶ) ରଚନାବଳୀ । ବିଶ୍ୱ ସଂସ୍କୃତିର ଇତିହାସରେ କାଳିଦାସଙ୍କ ରଚନାବଳୀ ହେଉଛି ଏକ ଗୌରବମୟ ଅଧ୍ୟାୟ । ଗତ ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ କାଳିଦାସଙ୍କ ରଚନାବଳୀର ୟୁରୋପୀୟ ଭାଷାମାନଙ୍କରେ ଅନୁବାଦ ପାଶ୍ଚାତ୍ୟରେ ପ୍ରବେଶ ଲାଭ କରିଥିଲା ଏବଂ ପ୍ରଥମରୁ ତାହା ମହା ସମାଦର ଲାଭ କରିଥିଲା; ୧୭୯୨-୧୭୯୩ ମସିହାରେ ନିକଲାଇ କାରାମ୍‌ଜିନ୍ କାଳିଦାସଙ୍କ "ଶକୁନ୍ତଳା" ନାଟକର ଗୋଟିଏ ଅଂଶ ଅନୁବାଦ କରିଥିଲେ । ଏହି ଅନୁବାଦ ଗ୍ରନ୍ଥର ଭୂମିକାରେ କାରାମ୍‌ଜିନ୍ ଲେଖିଥିଲେ, ନାଟକଟିର ଅନୁପମ ସୌନ୍ଦର୍ଯ୍ୟ ଭରା କାବ୍ୟାଂଶ ରହିଛି ଏବଂ ନାଟକଟି ହେଉଛି ସର୍ବଶ୍ରେଷ୍ଠ ଶିଳ୍ପକୃତିର ଏକ ନମୁନା ।

ମନେ ହୁଏ, ଲେଖକ ହିସାବରେ କାଳିଦାସ ଥିଲେ ବହୁ ରଚନାର ପ୍ରଣେତା । ତେବେ ପଣ୍ଡିତମାନେ ଏପର୍ଯ୍ୟନ୍ତ ତାଙ୍କର ମାତ୍ର ତିନୋଟି ନାଟକ – "ଶକୁନ୍ତଳା", "ମାଳବିକାଗ୍ନିମିତ୍ର" ଓ "ବିକ୍ରମୋର୍ବଶୀ"; "ମେଘଦୂତ" ନାମକ ଏକ କାବ୍ୟ ଏବଂ ଦୁଇଟି ଦୀର୍ଘତର କାବ୍ୟ – "କୁମାରସମ୍ଭବ" ("କୁମାରଙ୍କ ଜନ୍ମ କଥା") ଏବଂ "ରଘୁବଂଶର" ସନ୍ଧାନ ପାଇଛନ୍ତି ।

କାଳିଦାସଙ୍କ ସମସ୍ତ କାବ୍ୟ ଆଉ ନାଟକର କେନ୍ଦ୍ରବିନ୍ଦୁ ହେଉଛି ମଣିଷ ଆଉ ତା'ର ଆବେଗ ଅନୁଭୂତି, ତା'ର ପାର୍ଥିବ ଜୀବନର କାର୍ଯ୍ୟକଳାପ ଏବଂ ଆନନ୍ଦ ବେଦନାର ଅଭିବ୍ୟକ୍ତି । ବୁଦ୍ଧଙ୍କ ଆଦର୍ଶ ଜୀବନ ଏବଂ ତାଙ୍କ ଶିଷ୍ୟମାନଙ୍କର ପ୍ରଶସ୍ତି ଗାଇଥିବା ଅଶ୍ୱଘୋଷଙ୍କ କାବ୍ୟ ନାଟକର ତୁଳନାରେ କାଳିଦାସଙ୍କ କାବ୍ୟ ଏକ ଅଗ୍ର ପଦକ୍ଷେପ ସ୍ୱରୂପ । କାଳିଦାସଙ୍କ କାବ୍ୟ ଓ ନାଟକର ବହୁ ନାୟକ ଚରିତ୍ର ହେଉଛନ୍ତି ରାଜା । କବି କେବଳ ଯେ ସେମାନଙ୍କର ବୀର କାର୍ତ୍ତିର ଜୟଗାନ କରିଛନ୍ତି, ତାହା ନୁହେଁ, ସେମାନଙ୍କ ନୀଚତାର ମଧ୍ୟ ନିନ୍ଦା କରିଛନ୍ତି । କାଳିଦାସଙ୍କର କେତେକ ରଚନା ଭାରତରେ ମହାକାବ୍ୟର ବିକାଶର ସାକ୍ଷ୍ୟ ବହନ କରେ । ନାଟକ ଏବଂ କାବ୍ୟ ରଚନା କ୍ଷେତ୍ରରେ କାଳିଦାସ ଅତ୍ୟନ୍ତ ନାଟକୀୟ ବିଷୟବସ୍ତୁର ଉପଯୋଗ କରିଛନ୍ତି ଏବଂ ସେଇସବୁଥିରେ ହିଁ ପ୍ରକୃତି ତଥା ମଣିଷର ଆବେଗ ଅନୁଭୂତିର ବର୍ଣ୍ଣନାରେ ନୀତିକାବ୍ୟର ସୌକୁମାର୍ଯ୍ୟ ଓ ମାନବିକତା ଗୁଣଦ୍ୱାରା ବିଶିଷ୍ଟ ହୋଇ ଉଠିଛନ୍ତି । ପୂର୍ବତନ କାବ୍ୟର ପରମ୍ପରାରୁ ବିଚ୍ୟୁତ ନହୋଇ ମଧ୍ୟ ବିଭିନ୍ନ ଦିଗରୁ ନୂତନ କାବ୍ୟ ଭାବନାର ଉଦ୍‌ଭାବକ ହିସାବରେ ସେ ସ୍ୱୀକୃତି ଲାଭ କରିଛନ୍ତି । ଏହି କାରଣରୁ ଶତାବ୍ଦୀ ଶତାବ୍ଦୀ ଧରି ତାଙ୍କ ରଚନା ଭାରତର ଜନ ମାନସରେ ଏତେ ପ୍ରିୟ ହୋଇ ରହି ଆସିଛି ।

ପ୍ରାଚୀନ ଭାରତରେ ନାଟ୍ୟକଳାର ପ୍ରଭୂତ ଅଗ୍ରଗତି ଘଟିଥିଲା । ଗୁପ୍ତ ଯୁଗରୁ ନାଟ୍ୟକଳା ସମ୍ବନ୍ଧରେ ବହୁବିଧ ବିଶେଷ ଗ୍ରନ୍ଥ ରଚିତ ହୋଇଛି । ରଙ୍ଗମଞ୍ଚରେ ଅଭିନୟ ଓ ନାଟ୍ୟକଳାର

ଉଦ୍ଦେଶ୍ୟ ସମ୍ବନ୍ଧରେ ବିଶଦ ଆଲୋଚନା, ନାଟକର ବହୁ ବିଚିତ୍ର ରୀତିପଦ୍ଧତି ଆଦି ଏହିସବୁ ଗ୍ରନ୍ଥର ଅନ୍ତର୍ଭୁକ୍ତ ।

ସେସବୁ ଗ୍ରନ୍ଥ ମଧ୍ୟରୁ ଗୋଟିଏ ଗ୍ରନ୍ଥ ଏପର୍ଯ୍ୟନ୍ତ ତିଷ୍ଠି ରହିଛି । ଏହି ଗ୍ରନ୍ଥଟିର ନାମ ହେଉଛି "ନାଟ୍ୟଶାସ୍ତ୍ର" । ଏହା ଭରତଙ୍କ ଦ୍ୱାରା ରଚିତ ହୋଇଥିଲା ବୋଲି ପ୍ରସିଦ୍ଧି ଲାଭ କରିଛି । ପଣ୍ଡିତମାନେ ମନେ କରନ୍ତି, ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ଗ୍ରନ୍ଥଟି ରଚିତ ହୋଇଥିଲା । ଏହା ପ୍ରାଚୀନ ଭାରତୀୟ ନାଟ୍ୟ ଶିଳ୍ପର ବିଶ୍ୱକୋଷ ନାମରେ କଥିତ ହୋଇ ଆସିଛି । ନାଟ୍ୟକଳାର ନାନାବିଧ ସମସ୍ୟା, ଯଥା ରଙ୍ଗାଳୟର ସ୍ଥାପତ୍ୟ, ଅଭିନୟ, ବିଭିନ୍ନ ଧରଣର ନାଟକ, ନାଟକ ସହିତ ସଂଶ୍ଳିଷ୍ଟ ସଙ୍ଗୀତ, ମଞ୍ଚ ଉପସ୍ଥାପନା ଆଦି ଆଲୋଚିତ ହୋଇଛି ସେଥିରେ ।

ପ୍ରାଚୀନ ଭାରତୀୟ ନାଟକଗୁଡ଼ିକ ଯେତେବେଳେ ୟୁରୋପରେ ପ୍ରଥମେ ପ୍ରବେଶାଧିକାର ଲାଭ କଲା, ସେତେବେଳେ ବହୁ ୟୁରୋପୀୟ ପଣ୍ଡିତ କହିଥିଲେ ଯେ, ଭାରତୀୟ ରଙ୍ଗମଞ୍ଚର ମୂଳ ପ୍ରାଚୀନ ଗ୍ରୀସ୍‌ର ନାଟ୍ୟଶାଳାରୁ ମିଳିଥିଲା । କିନ୍ତୁ ତା'ପରେ ଏହା ନିଃସନ୍ଦେହରେ ଜଣାଯାଇଛି ଯେ, ଭାରତରେ ସଂପୂର୍ଣ୍ଣ ସ୍ୱାଧୀନ ଭାବେ ନାଟ୍ୟକଳାର ଉଦ୍‌ଭବ ଘଟିଥିଲା । ତା'ଛଡ଼ା ଆଉରି ପ୍ରମାଣ ମିଳିଛି ଯେ, ଭାରତୀୟ ନାଟ୍ୟକଳା ଓ ନାଟ୍ୟାଭିନୟର ପରମ୍ପରା ପ୍ରାଚୀନ ଗ୍ରୀସ୍‌ଠାରୁ ଆହୁରି ପୂର୍ବବର୍ତ୍ତୀ ଏବଂ ବିଶେଷ କରି ନାଟ୍ୟ ବିଷୟକ ତତ୍ତ୍ୱ ବିଷୟରେ ଗ୍ରୀକ୍ ନାଟ୍ୟତତ୍ତ୍ୱ ଅପେକ୍ଷା ତାହା ବହୁ ଗୁଣରେ ସମୃଦ୍ଧ ।

ଏହି ଗୁପ୍ତ ଯୁଗରେ ହିଁ ସବୁଠାରୁ ପ୍ରାଚୀନ ପୁରାଣଗୁଡ଼ିକ ପ୍ରଥମେ ସଂକଳିତ ହୋଇଥିଲା । ପ୍ରାଚୀନ କାଳର ଭାରତୀୟମାନଙ୍କର ପୌରାଣିକ ଓ ସୃଷ୍ଟିତତ୍ତ୍ୱ ବିଷୟକ ଧ୍ୟାନଧାରଣାର ପରିଚୟଜ୍ଞାପକ, ଭାରତୀୟ ଦେବଦେବୀ, ରାଜବର୍ଗ ଓ ବୀର ପୁରୁଷମାନଙ୍କର ଲୋକବିଶ୍ରୁତ ଉପକଥାର ଏହିସବୁ ସଂଗ୍ରହ ଗ୍ରନ୍ଥ ଯୁଗ ପରେ ଯୁଗ, ବହୁ ଦୀର୍ଘ ଦିନ ଧରି ସଂଗୃହୀତ ଓ ଲିଖିତ ହୋଇଥିଲା ଏବଂ ସେସବୁର ବାରମ୍ବାର ବ୍ୟାପକ ଭାବେ ସଂପାଦନ ଓ ସଂଶୋଧନ ହୋଇଥିଲା ।

"ଯାଜ୍ଞବଲ୍କ୍ୟ ସଂହିତା" (ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ) କିମ୍ବା "ନାରଦ ସ୍ମୃତିର" (ଖ୍ରୀଷ୍ଟୀୟ ଚତୁର୍ଥ ଓ ପଞ୍ଚମ ଶତାବ୍ଦୀ) ଭଳି କେତେକ ଧର୍ମଶାସ୍ତ୍ର ମଧ୍ୟ ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ରଚିତ ହୋଇଥିଲା । ସଂସ୍କୃତ ସାହିତ୍ୟର ଶ୍ରେଷ୍ଠ କୃତିଗୁଡ଼ିକ ମଧ୍ୟରେ ବିଶେଷ ଉଲ୍ଲେଖଯୋଗ୍ୟ ହେଉଛି "ପଞ୍ଚତନ୍ତ୍ର" (ଖ୍ରୀଷ୍ଟୀୟ ତୃତୀୟ ଓ ଚତୁର୍ଥ ଶତାବ୍ଦୀ) ନାମକ ଗ୍ରନ୍ଥଟି । ଛୋଟ ଛୋଟ ଗଳ୍ପ କଥା ଓ ନୀତିଗର୍ଭକ ରୂପ କାହାଣୀର ଏହି ସଂଗ୍ରହ ଗ୍ରନ୍ଥଟି ଆଜି ପର୍ଯ୍ୟନ୍ତ ଭାରତରେ ଓ ଅନ୍ୟାନ୍ୟ ଦେଶରେ ଅତ୍ୟନ୍ତ ଜନପ୍ରିୟ । ମଧ୍ୟ ଯୁଗର ପ୍ରାରମ୍ଭରେ ଏହି ଗ୍ରନ୍ଥଟିର ଅନୁବାଦ ପ୍ରକାଶିତ ହୋଇଥିଲା ପହ୍ଲବୀ, ସିରୀୟ ଓ ଆରବୀ ଭାଷାରେ । ମଧ୍ୟ ପ୍ରାଚ୍ୟରେ ଏହି ଅନୂଦିତ ଗ୍ରନ୍ଥଟିର ନାମକରଣ ହୋଇଥିଲା "କାଲିଲ ଓ ଦିମନା" । ପରବର୍ତ୍ତୀ କାଳରେ ଏହି ଗ୍ରନ୍ଥଟି ୟୁରୋପରେ ମଧ୍ୟ ପରିଚିତ ହୋଇଥିଲା । ମୋଟ ଉପରେ, ସମଗ୍ର ପ୍ରାଚ୍ୟ ଓ ପାଶ୍ଚାତ୍ୟରେ "ପଞ୍ଚତନ୍ତ୍ର" ଅପ୍ରତିରୋଧ୍ୟ ପ୍ରଭାବ ବିସ୍ତାର କରିଥିଲା ।

ଏହି ଗୁପ୍ତ ଯୁଗରେ ତାମିଲ ଭାଷାରେ ଲିଖିତ ଦକ୍ଷିଣ ଭାରତର ପ୍ରଥମ ସାହିତ୍ୟିକ ରଚନାଗୁଡ଼ିକ ମଧ୍ୟ ପ୍ରକାଶିତ ହୋଇଥିଲା । ତାମିଲ ଭାଷାର ପ୍ରାରମ୍ଭିକ ଯୁଗର ଏହିସବୁ ପୁସ୍ତକ ମଧ୍ୟରେ ସବୁଠାରୁ ବିଖ୍ୟାତ ଏକ ପୁସ୍ତକର ନାମ "କୁରାଲ" । ନୀତି ଗର୍ଭକ କାହାଣୀ ସଂକଳନର କିଂବଦନ୍ତୀ

ଖ୍ୟାତ ସଂକଳକ ହେଉଛନ୍ତି କୃଷକ ସମାଜର ଜନୈକ ପ୍ରତିନିଧି ତିରୁଭାଲୁଭାର । ଏ ବିଷୟରେ କୌଣସି ସନ୍ଦେହ ନାହିଁ ଯେ, ଲୋକ କାହାଣୀରୁ ସଂଗୃହୀତ ଉପାଦାନର ଭିତ୍ତିରେ "କୁରାଲ" ରଚିତ ହୋଇଥିଲା ଏବଂ ସେଇ ପ୍ରାଚୀନ କାଳରେ ବିପୁଳ ଜନପ୍ରିୟତା ଅର୍ଜନ କରିଥିଲା । ଖ୍ରୀଷ୍ଟୀୟ ଚତୁର୍ଥ ଏବଂ ପଞ୍ଚମ ଶତାବ୍ଦୀରେ ତାମିଲ ଭାଷାରେ ଲିଖିତ ନୀତି କବିତାର ବିଭିନ୍ନ ସଂକଳନ ମଧ୍ୟ ପ୍ରକାଶ ପାଇଥିଲା ।

ଦକ୍ଷିଣ ଭାରତର ଅନ୍ୟାନ୍ୟ ଭାଷାଭାଷୀ ଅଞ୍ଚଳର ସାହିତ୍ୟ, ଅବଶ୍ୟ, ପରେ ମଧ୍ୟ ଯୁଗର ପ୍ରାରମ୍ଭରେ ଆବିର୍ଭୂତ ହୋଇଥିଲା ।

## ବିଜ୍ଞାନର ଅଗ୍ରଗତି

ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରଥମ ଶତାବ୍ଦୀଗୁଡ଼ିକରେ ବିଜ୍ଞାନ କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି ସାଧିତ ହୋଇଥିଲା । ଏହି ଅଗ୍ରଗତି ଘଟିଥିଲା ବିଶେଷ କରି ଗଣିତ, ଜ୍ୟୋତିର୍ବିଦ୍ୟା, ଭେଷଜ ଏବଂ ରସାୟନଶାସ୍ତ୍ର କ୍ଷେତ୍ରରେ । ବିଜ୍ଞାନର ଅନେକ କ୍ଷେତ୍ରରେ ନାନାବିଧ ଗ୍ରନ୍ଥ ପ୍ରକାଶ ପାଇଥିଲା ଏହି ସମୟରେ । ଦେଶର ଅର୍ଥନୀତିର ନାନାବିଧ ଚାହିଦା ଗଣିତଶାସ୍ତ୍ରର ଅଗ୍ରଗତିକୁ ଖୁବ୍ ପ୍ରୋତ୍ସାହିତ କରିଥିଲା । ଧର୍ମୀୟ ପୂଜା ପାଠ ଓ ଅନ୍ୟାନ୍ୟ ଅଟ୍ଟାଳିକା ନିର୍ମାଣ କାର୍ଯ୍ୟରେ ଗଣିତ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ବିଜ୍ଞାନ ।

ପ୍ରାଚୀନ ଯୁଗରେ ଏବଂ ମଧ୍ୟ ଯୁଗର ପ୍ରାରମ୍ଭରେ ଭାରତରେ ଜୀବିତ ଥିଲେ ଆର୍ଯ୍ୟଭଟ୍ଟ (ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ଓ ଷଷ୍ଠ ଶତାବ୍ଦୀର ପ୍ରାରମ୍ଭ), ବରାହମିହିର (ଷଷ୍ଠ ଶତାବ୍ଦୀ) ଏବଂ ବ୍ରହ୍ମଗୁପ୍ତଙ୍କ (ଷଷ୍ଠ ଶତାବ୍ଦୀର ଶେଷ ଓ ସପ୍ତମ ଶତାବ୍ଦୀର ପ୍ରାରମ୍ଭ) ଭଳି ଅସାଧାରଣ ଗଣିତଜ୍ଞ ପଣ୍ଡିତମାନେ । ଏମାନଙ୍କର ଆବିଷ୍କାରଗୁଡ଼ିକରେ ଆଧୁନିକ ବିଜ୍ଞାନର ବିଭିନ୍ନ ସାଫଲ୍ୟ ସୂଚୀତ ହୋଇଥିଲା । ଆର୍ଯ୍ୟଭଟ୍ଟଙ୍କ $\pi$ ଚିହ୍ନର ମୂଲ୍ୟ ୩.୧୪୧୬ ପର୍ଯ୍ୟନ୍ତ ହୋଇ ଯାଇଥିଲା । "ପିଥାଗୋରସ୍ ଥିଓରମ୍" ନାମରେ ପରିଚିତ ଜ୍ୟାମିତିକ ଉପପାଦ୍ୟଟି ମଧ୍ୟ ସେତେବେଳେ ଜଣାଥିଲା । ଦୁଇଟି ଅଜ୍ଞାତ ରାଶି ବିଶିଷ୍ଟ ଏକଘାତ ସମୀକରଣର ଏପରି ଏକ ମୌଳିକ ସମାଧାନ ଉଦ୍‌ଭାବନ କରିଥିଲେ, ଯାହା ସହିତ ଆଧୁନିକ ଯୁଗର ସମାଧାନର ଘନିଷ୍ଠ ସଂପର୍କ ଦେଖିବାକୁ ମିଳେ ।

ପ୍ରାଚୀନ ଭାରତୀୟମାନେ ଶୂନ୍ୟ ସଂଖ୍ୟା ବ୍ୟବହାର କରି ଅଙ୍କ ଗଣନାର ଏଭଳି ଏକ ପଦ୍ଧତିର ଉଦ୍‌ଭାବନ କରିଥିଲେ, ଯାହା ପରେ ଆରବ ଦେଶର ଲୋକେ ସେମାନଙ୍କ ଗଣନାର ଅଙ୍ଗ ହିସାବରେ ଗ୍ରହଣ କରି ନେଇଥିଲେ (ଏହା ତଥାକଥିତ ଆରବୀ ସଂଖ୍ୟା ଚିହ୍ନ ନାମରେ ପରିଚିତ) ଏବଂ ପରେ ଅନ୍ୟାନ୍ୟ ଦେଶର ଲୋକେ ଏହି ସଂଖ୍ୟା ଚିହ୍ନଗୁଡ଼ିକୁ ଗ୍ରହଣ କରି ନେଇଥିଲେ ।

ଆର୍ଯ୍ୟଭଟ୍ଟର ମତାବଲମ୍ବୀମାନେ ତ୍ରିକୋଣମିତିର ଜ୍ୟା (ସାଇନ୍) ଓ କୋଟି ଜ୍ୟା (କୋସାଇନ୍) ଚହ୍ନ ସହିତ ପରିଚିତ ଥିଲେ ।

ଆର୍ଯ୍ୟଭଟ୍ଟଙ୍କ ଅନୁଗାମୀ ବ୍ରହ୍ମଗୁପ୍ତ କେତେକ ସମୀକରଣର ସମାଧାନ ପ୍ରସ୍ତୁତ କରିଥିଲେ ।

ଏହି ଯୁଗରେ ଭାରତର ବିଜ୍ଞାନୀମାନେ ଜ୍ୟୋତିର୍ବିଦ୍ୟା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ବିଭିନ୍ନ ସାଫଲ୍ୟ ଅର୍ଜନ କରିଥିଲେ । ତତ୍କାଳୀନ ଜ୍ୟୋତିର୍ବିଦ୍ୟାର କେତେକ ଗ୍ରନ୍ଥ ଏପର୍ଯ୍ୟନ୍ତ ସଂରକ୍ଷିତ ହୋଇ ରହିଛି

ଏବଂ ଏହିସବୁ ସିଦ୍ଧାନ୍ତ ପ୍ରାଚୀନ କାଳର ଭାରତୀୟମାନଙ୍କର ଜ୍ୟୋତିର୍ବିଦ୍ୟା ବୈଷୟିକ ଉଚ୍ଚସ୍ତରୀୟ ଜ୍ଞାନର ସାକ୍ଷ୍ୟ ବହନ କରେ ।

ଗୁପ୍ତ ଯୁଗର ପଣ୍ଡିତମାନେ ଗ୍ରହ ନକ୍ଷତ୍ରର ଗତିବିଧି ସହିତ ପରିଚିତ ଥିଲେ । ସୂର୍ଯ୍ୟ ଏବଂ ଚନ୍ଦ୍ର ଗ୍ରହଣର କାରଣ ମଧ୍ୟ ସେମାନଙ୍କୁ ଜଣାଥିଲା । ନିଜର ଅକ୍ଷଦଣ୍ଡର ଭିତ୍ତିରେ ପୃଥିବୀର ଘୂର୍ଣ୍ଣନ ସମ୍ବନ୍ଧରେ ଏକ ଚମତ୍କାର ତତ୍ତ୍ୱ ପ୍ରଣୟନ କରିଥିଲେ ଆର୍ଯ୍ୟଭଟ୍ଟ ।

ବ୍ରହ୍ମଗୁପ୍ତ ଇଙ୍ଗିତ ଦେଇ କହିଥିଲେ ଯେ, (ଏବଂ ତାହା ନିଉଟନ୍‌ଙ୍କର ବହୁ ଶତାବ୍ଦୀ ପୂର୍ବରୁ) ପୃଥିବୀର ମାଧ୍ୟାକର୍ଷଣ ଫଳରେ ବସ୍ତୁସମୂହ ମାଟିରେ ପଡ଼ିଥାଏ ।

ବରାହମିହିରଙ୍କ ରଚନା "ବୃହତ୍‌ସଂହିତାରେ" ଜ୍ୟୋତିର୍ବିଦ୍ୟା, ଭୂଗୋଳ ଓ ଖଣିଜ ବିଜ୍ଞାନ ସଂକ୍ରାନ୍ତ ବହୁ ଆଗ୍ରହୋଦ୍ଦୀପକ ତଥ୍ୟ ରହିଛି ।

ଧାତୁବିଦ୍ୟାରେ ଅଗ୍ରଗତି ସଙ୍ଗେ ସଙ୍ଗେ ଏହି ସମୟର ରସାୟନଶାସ୍ତ୍ରର ନିୟମକାନୁନ୍ ଆୟତ୍ତ କରିବାଟା ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଥିଲା । ପ୍ରାଚୀନ ଭାରତୀୟମାନେ ସେତେବେଳେ ଖ୍ୟାତି ଲାଭ କରିଥିଲେ ଇସ୍‌ପାତ ତରଳାଇବା, ପକ୍କା ରଙ୍ଗ ତିଆରି କରିବା, ବସ୍ତ୍ର ବୁଣିବା, ଚମଡ଼ା ଶିଳ୍ପ ଏବଂ ବିଭିନ୍ନ ଔଷଧ ତିଆରିରେ ସେମାନଙ୍କ ଦକ୍ଷତା ପାଇଁ । ତତ୍କାଳୀନ ଅନେକ ଗ୍ରନ୍ଥରେ ପାରଦ ବ୍ୟବହାରର ଉଲ୍ଲେଖ ଦେଖିବାକୁ ମିଳେ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ରସାୟନ ଓ ଅପରସାୟନଶାସ୍ତ୍ର ବିଷୟରେ କେତେକ ପ୍ରଥମ ବୈଜ୍ଞାନିକ ପୁସ୍ତକ ରଚିତ ହୋଇଥିଲା । କିଂବଦନ୍ତୀ ଅନୁଯାୟୀ ସେଇସବୁ ପୁସ୍ତକ ମଧ୍ୟରୁ କେତେକର ରଚୟିତା ଅସାଧାରଣ ପଣ୍ଡିତ ନାଗାର୍ଜୁନ ଖ୍ୟାତି ଲାଭ କରିଥିଲେ ।

ଏହି ଯୁଗରେ ଚିକିତ୍ସାଶାସ୍ତ୍ରର ଏବଂ ବିଶେଷ କରି ଶରୀର ଗଠନ ଏବଂ ଅଙ୍ଗବ୍ୟବଚ୍ଛେଦ ବିଦ୍ୟାର ମଧ୍ୟ ବିକାଶ ହୋଇଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରଚିତ ଚିକିତ୍ସାଶାସ୍ତ୍ର ସଂକ୍ରାନ୍ତ ଗ୍ରନ୍ଥାଦିରେ ମଣିଷ ଶରୀରର ବିଶଦ ବର୍ଣ୍ଣନା ରହିଛି ଏବଂ ଶବବ୍ୟବଚ୍ଛେଦ ପଦ୍ଧତି ଓ ଦେହର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର କ୍ରିୟାକଳାପ ସଂପର୍କରେ ଲିପିବଦ୍ଧ ହୋଇଛି । ଏହିସବୁ ଗ୍ରନ୍ଥରେ କୁହାଯାଇଛି ଯେ, ମଣିଷର ଦେହ ପାଞ୍ଚଟି ପ୍ରଧାନ ଉପାଦାନ ବା ପଞ୍ଚ ମହାଭୂତରେ ଗଠିତ, ଯଥା, ମାଟି, ଜଳ, ନିଆଁ (ତେଜ୍), ପବନ ଓ ଆକାଶକୁ (ଇଥର) ନେଇ । ପ୍ରାଚୀନ ଭାରତୀୟମାନେ ମନେ କରୁଥିଲେ ଯେ, ମଣିଷ ଦେହର ସମସ୍ତ ରୋଗ ହେଉଛି ଏହି ପଞ୍ଚ ଭୂତର ଆପେକ୍ଷିକ ଅନୁପାତର ତାରତମ୍ୟର ଫଳ । ବିଭିନ୍ନ ଉପକରଣର ସାହାଯ୍ୟରେ ଶରୀର ଶଲ୍ୟଚିକିତ୍ସା ମଧ୍ୟ ଏହି ସମୟରେ ପ୍ରଚଳିତ ହୋଇଥିଲା । ଚିକିତ୍ସାଶାସ୍ତ୍ରର ବିଭିନ୍ନ ଶାଖା, ଯଥା, ଶିଶୁ ରୋଗ, ସ୍ନାୟବିକ ରୋଗ, କର୍ଣ୍ଣ ଓ ସ୍ୱରଯନ୍ତ୍ର ପ୍ରବାହର ଚିକିତ୍ସା ଏବଂ ଭେଷଜ ବିଜ୍ଞାନ ଏତେ ବିକଶିତ ହୋଇଥିଲା ଯେ, ଏସବୁ ପୃଥକ୍ ପୃଥକ୍ ଚିକିତ୍ସାବିଜ୍ଞାନ ହିସାବରେ ପରିଚିତ ହୋଇଥିଲା । ବିଭିନ୍ନ ରୋଗ ନିର୍ଣ୍ଣୟ ଓ ସେସବୁର ଚିକିତ୍ସା ବିଷୟରେ ଯଥେଷ୍ଟ ମନୋଯୋଗ ପ୍ରଦାନ କରାଯାଉଥିଲା । ବିଶେଷ କରି ଜଳ ଚିକିତ୍ସା ଏବଂ ଭେଷଜ ଗୁଣସଂପନ୍ନ ଲତା ପତ୍ରର ରସ ଏବଂ ଉପଯୁକ୍ତ ପଥ୍ୟ ଉପଚାର ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଥିଲା ।

ଚରକ (ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀ) ଏବଂ ସୁଶ୍ରୁତଙ୍କ (ଖ୍ରୀଷ୍ଟୀୟ ଚତୁର୍ଥ ଏବଂ ପଞ୍ଚମ ଶତାବ୍ଦୀ) ଲେଖା ଚିକିତ୍ସା ସଂକ୍ରାନ୍ତ ପୋଥିଗୁଡ଼ିକ ଏପର୍ଯ୍ୟନ୍ତ ତିଷ୍ଠି ରହିଛି । ଏହିସବୁ ପୋଥିରେ

ମସ୍ତିଷ୍କରେ ଅସ୍ତ୍ରୋପଚାର, ହାତ ଏବଂ ପାଦ ବ୍ୟବଚ୍ଛେଦ ଏବଂ ଆଖିର ପରଳ କାଟିବା ଭଳି ଜଟିଳ ଧରଣର ଶଲ୍ୟଚିକିତ୍ସାର ଉଲ୍ଲେଖ ଦେଖିବାକୁ ମିଳେ ।

## ସ୍ଥାପତ୍ୟ କଳା

କୁଶାଣ ଏବଂ ଗୁପ୍ତ ଯୁଗରେ ଧର୍ମ ନିରପେକ୍ଷ ଏବଂ ଧର୍ମୀୟ ଉଭୟ ଧରଣର ସ୍ଥାପତ୍ୟ କଳାର ବିକାଶ ଘଟିଥିଲା । ଖ୍ରୀଷ୍ଟୀୟ ଶତାବ୍ଦୀର ପୂର୍ବାହ୍ନରେ କାର୍ଲେରେ (ବମ୍ବେ ନିକଟବର୍ତ୍ତୀ) ଗୋଟିଏ ଚମତ୍କାର ଗୁହାମନ୍ଦିର ନିର୍ମିତ ହୋଇଥିଲା । ଏହିସବୁ ଗୁହା ମଧ୍ୟରେ ପ୍ରଧାନ ମନ୍ଦିର ବା ଚୈତ୍ୟଟି ଭାରତର ବୃହତ୍ତମ ଗୁହାମନ୍ଦିର । ଏହାର ଦୈର୍ଘ୍ୟ ହେବ ପ୍ରାୟ ୩୮ ମିଟର ଏବଂ ପ୍ରସ୍ଥ ୧୪ ମିଟରରୁ ଅଧିକ ଏବଂ ଉଚ୍ଚତା ପ୍ରାୟ ୧୪ ମିଟର । ଏହି ପ୍ରଶସ୍ତ ଗୁହାଗୁଡ଼ିକରେ ଦୁଇ ଧାଡ଼ି ସ୍ତମ୍ଭ ଏବଂ ଗୋଟିଏ ସ୍ତୂପ ଓ ପ୍ରସ୍ତର ନିର୍ମିତ ବହୁବିଧ ଭାସ୍କର୍ଯ୍ୟ ମୂର୍ତ୍ତି ରହିଛି । ଆଉ କାଠ ସହ ବିଶେଷ ଭାବେ ତିଆରି ଝରକାବାଟି ମଧ୍ୟ ଦେଇ ଘରକୁ ଆଲୁଅ ପବନ ଆସିବାର ବ୍ୟବସ୍ଥା ଅଛି । ଗୁହା ବାହାରର କାନ୍ଥରେ ବହୁ ରିଲିଫ୍ ଖୋଦାଇ ମୂର୍ତ୍ତି ମଧ୍ୟ ରହିଛି । ବୁଦ୍ଧ ମୂର୍ତ୍ତି ଛଡ଼ା ଏସବୁ ମଧ୍ୟରେ ଅଛି ସେଇ ସବୁ ବ୍ୟକ୍ତିମାନଙ୍କର ମୂର୍ତ୍ତି, ଯେଉଁମାନେ ଏହି ମନ୍ଦିର ନିର୍ମାଣରେ ସାହାଯ୍ୟ କରିଥିଲେ । ଏହିସବୁ ଗୁହାମନ୍ଦିରଗୁଡ଼ିକୁ ନିର୍ମାଣ କରାଯାଇଥିଲା ପାହାଡ଼କୁ କାଟି । ଗୁହାଗୁଡ଼ିକର ଗଠନ ଦେଖିବାକୁ ଯେପରି ସୁନ୍ଦର, ସେଇପରି ଆଖି ଝଲସିଆ । ଗୁପ୍ତ ଯୁଗରେ ଏହି ଧରଣର ଗୁହାମନ୍ଦିରର ସ୍ଥାପତ୍ୟ ଆଉରି ବିକଶିତ ହୋଇ ଉଠିଥିଲା—ଏହାର ଏକ ବିଶେଷ ଉଲ୍ଲେଖଯୋଗ୍ୟ ଉଦାହରଣ ହେଉଛି ଅଜନ୍ତାର ଗୁହାମନ୍ଦିରଗୁଡ଼ିକ । ଏହି ଯୁଗର ମନ୍ଦିରର ଗାତ୍ର ସାଧାରଣତଃ ଖୋଦାଇ କରା ଭାସ୍କର୍ଯ୍ୟ ମୂର୍ତ୍ତି ଦ୍ୱାରା ବିଶେଷ ଭାବେ ଅଳଙ୍କୃତ ହୋଇଛି ।

ତେବେ ଏ ଯୁଗର ଅଧିକାଂଶ ଧର୍ମୀୟ ଓ ଧର୍ମ ନିରପେକ୍ଷ ଅଟ୍ଟାଳିକାସମୂହ ନିର୍ମିତ ହୋଇଥିଲା କାଠ ଦ୍ୱାରା । ଏହି କାରଣରୁ ବର୍ତ୍ତମାନ ପର୍ଯ୍ୟନ୍ତ ସେସବୁ ତିଷ୍ଠି ପାରିନି । ଅବଶ୍ୟ, ଗୁପ୍ତ ଯୁଗର ଯେଉଁସବୁ ଅଟ୍ଟାଳିକା ତିଷ୍ଠି ରହିଛି, ସେସବୁ ଉନ୍ନତ ମାନର ସ୍ଥାପତ୍ୟ ଶିଳ୍ପର ସାକ୍ଷ୍ୟ ପ୍ରଦାନ କରୁଛି । ମାଟି ଉପରେ ଖୋଲା ଜାଗାରେ ନିର୍ମିତ ସର୍ବପ୍ରାଚୀନ ହିନ୍ଦୁ ମନ୍ଦିରର ନିଦର୍ଶନ ହେଲା ସାଞ୍ଚୀ ମନ୍ଦିର । ଏହା ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ନିର୍ମିତ ହୋଇଥିଲା । ଏହାର ପ୍ରବେଶପଥ ସାମ୍ନାରେ ତୋରଣର ଦୁଇ ଧାରରେ ଥିବା ସ୍ତମ୍ଭଗୁଡ଼ିକର ଉପରଦେଶଟି ସିଂହ ମୂର୍ତ୍ତି ଦ୍ୱାରା ଶୋଭିତ । ଅଶୋକ ସ୍ତମ୍ଭର ବିଖ୍ୟାତ ସିଂହଚୂଡ଼ା ସହିତ ଏଗୁଡ଼ିକର ସାଦୃଶ୍ୟ ଲକ୍ଷ୍ୟ କରାଯାଏ । ସାଞ୍ଚୀର ମନ୍ଦିର ଭାରତୀୟ ସ୍ଥାପତ୍ୟର ଶ୍ରେଷ୍ଠ ଐତିହ୍ୟ ସହିତ ସଙ୍ଗତି ରଖି ନିର୍ମିତ ହୋଇଥିଲା ।

ଏହା ଠାରୁ ପ୍ରାଚୀନ ଭାରତୀୟ ମନ୍ଦିରଗୁଡ଼ିକର ନିଦର୍ଶନ ହେଲା ନାଳନ୍ଦାର ଛୋଟ ବୌଦ୍ଧ ମନ୍ଦିରଟି (ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ନିର୍ମିତ) । ଏହି ମନ୍ଦିରର ଭିତ୍ତିଟି କେବଳ ଏପର୍ଯ୍ୟନ୍ତ ତିଷ୍ଠି ରହିଛି । ଏହି ନାଳନ୍ଦାରେ ଏକଦା ପ୍ରକାଣ୍ଡ ଏକ ବିଶ୍ୱବିଦ୍ୟାଳୟର ଭବନମାଳା ଗଢ଼ି ଉଠିଥିଲା । ଏଥିରେ ଦଶ ହଜାରରୁ ଅଧିକ ଛାତ୍ରଛାତ୍ରୀ ରହି ଅଧ୍ୟୟନ କରୁଥିଲେ । ଏହା ଛଡ଼ା ଏଠାରେ ଉପାସନା ଏବଂ ସାଧାରଣ ଲୋକଙ୍କର ବସବାସ ପାଇଁ ଆଉରି ଅନେକ ଗୃହ ଥିଲା ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ବୁଦ୍ଧ-ଗୟାରେ ଏକ ପ୍ରକାଣ୍ଡ ବୌଦ୍ଧ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ

ହୋଇଥିଲା । ଏହି ମନ୍ଦିରଟିର ପ୍ରଧାନ ଚୂଡ଼ାର ଉଚ୍ଚତା ଥିଲା ୮୫ ମିଟର । ଫଳରେ ସମଗ୍ର ଏସିଆରେ ସର୍ବାପେକ୍ଷା ଉଚ୍ଚ ବୌଦ୍ଧ ମନ୍ଦିରଗୁଡ଼ିକ ମଧ୍ୟରୁ ଏହା ଥିଲା ଅନ୍ୟତମ ।

ଏହା ଛଡ଼ା ଏହି ସମୟରେ ଉତ୍ତର-ପଶ୍ଚିମ ଭାରତରେ ବଡ଼ ବଡ଼ କେତେକ ବୌଦ୍ଧ ବିହାର ମଧ୍ୟ ଗଢ଼ି ଉଠିଥିଲା । ଏପରିକି ସୁଦୂର ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ତକ୍ଷଶିଳାରେ ଧର୍ମରାଜିକା ବିହାରର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା ଏବଂ ପଞ୍ଚମ ଶତାବ୍ଦୀ ବେଳକୁ ଏହାର ବହୁ ବଡ଼ ବଡ଼ ଭବନ ଓ ସଂଲଗ୍ନ ଅନ୍ୟାନ୍ୟ କ୍ଷୁଦ୍ରତର ଅଟ୍ଟାଳିକା ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା ।

ପ୍ରାଚୀନ ଜନବସତିଗୁଡ଼ିକରେ ଖନନ କାର୍ଯ୍ୟ ଚଳାଇଲା ବେଳେ ସେସବୁଥିରେ ଯେଉଁସବୁ ପ୍ରତ୍ନତାତ୍ତ୍ୱିକ ସ୍ତର ଦେଖିବାକୁ ମିଳେ, ସେଥିରେ ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ନିର୍ମିତ ଧର୍ମନିରପେକ୍ଷ ଭବନ ଓ ବାସଗୃହର ବହୁ ଭଗ୍ନାବଶେଷ ଦେଖିବାକୁ ମିଳିଛି । ସାଞ୍ଚୀ ଏବଂ ଅମରାବତୀର ସ୍ତୂପଗୁଡ଼ିକ ଦେହରେ ଭାସ୍କର୍ଯ୍ୟ କଳାର ଯେଉଁ ନିଦର୍ଶନ ମିଳିଛି, ସେଥିରୁ ଉପରୋକ୍ତ ଏହିସବୁ ବାସଗୃହର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ କଳାର କେତେକ ଆଭାସ ମିଳିଥାଏ । ଏଥିରୁ ବୁଝାଯାଏ ଯେ, ଗୃହଗୁଡ଼ିକ ଏକାଧିକ ତଳ ବିଶିଷ୍ଟ ଥିଲା ଏବଂ ରାଜ ପ୍ରାସାଦଗୁଡ଼ିକ ଜାକଜମକପୂର୍ଣ୍ଣ ଥିଲା ।

## ଶିଳ୍ପକଳା

କୁଶାଣ ଯୁଗରେ ଶିଳ୍ପଶିଳ୍ପ ଜଗତରେ, ବିଶେଷ କରି ଭାସ୍କର୍ଯ୍ୟ ଶିଳ୍ପ କ୍ଷେତ୍ରରେ କେତେକ ନୂତନ ଶୈଳୀର ପ୍ରସ୍ଫୁଟନ ଘଟିଥିଲା ।

ମଧ୍ୟ ଏସିଆରେ ସେତେବେଳେ ସ୍ଥାନୀୟ ବ୍ୟାକ୍‌ଟ୍ରୀୟ ଶୈଳୀର ବିକାଶ ଘଟିଥିଲା । ଏହି ଶୈଳୀଟିର ଶିଳ୍ପ କର୍ମରେ ଧର୍ମ ନିରପେକ୍ଷତାର ପ୍ରବଣତା ଲକ୍ଷଣୀୟ ଭାବେ ଦେଖାଯାଏ । ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ଗଢ଼ି ଉଠିଥିଲା ଗାନ୍ଧାର ଶୈଳୀ, ଗଙ୍ଗା ଉପତ୍ୟକାର ମଥୁରା ଶିଳ୍ପରୀତି ଏବଂ ଦକ୍ଷିଣ ଭାରତର ଅନ୍ଧ୍ର ଦେଶରେ ଅମରାବତୀ ଶିଳ୍ପକଳା ।

ଗାନ୍ଧାର ଭାସ୍କର୍ଯ୍ୟ ଶୈଳୀରେ ଗ୍ରୀକ୍, ରୋମ୍ ଏବଂ ମଧ୍ୟ ଏସୀୟ, ପ୍ରଭୃତି ବିଦେଶୀ ଶିଳ୍ପ ରୀତିର ପ୍ରଭାବ ଲକ୍ଷ୍ୟ କରାଯାଏ ଏବଂ ବୌଦ୍ଧ ଧର୍ମର ପ୍ରବଳ ପ୍ରଭାବ ମଧ୍ୟ ଦେଖାଯାଏ । କେତେକ ପଣ୍ଡିତଙ୍କ ମତରେ, ଗାନ୍ଧାର ଶୈଳୀର ଭାସ୍କର୍ଯ୍ୟଗୁଡ଼ିକ ହେଉଛି ହେଲିନିକ୍ ଭାବଧାରାରେ ଆଚ୍ଛନ୍ନ ଭାରତୀୟମାନଙ୍କ କାମ ଏବଂ ଅନ୍ୟ କେତେକ ମନେ କରନ୍ତି ଯେ, ସେମାନେ କାଳେ ରୋମାନ୍ ଶିଳ୍ପୀମାନଙ୍କର ଶିଳ୍ପକଳା । ତେବେ ଏହି ଶିଳ୍ପ ଶୈଳୀରେ "ପାଶ୍ଚାତ୍ୟ" ପ୍ରଭାବ ପ୍ରକୃତରେ ସ୍ପଷ୍ଟ ହେଲେ ମଧ୍ୟ ଗାନ୍ଧାର ଶିଳ୍ପର ଭାସ୍କର୍ଯ୍ୟମାନଙ୍କର ଶିଳ୍ପ ପ୍ରେରଣାର ପ୍ରଧାନ ଉତ୍ସ ଥିଲା ସ୍ଥାନୀୟ ପରମ୍ପରା । ବୁଦ୍ଧଙ୍କୁ ମଣିଷ ବୋଲି ଗଣ୍ୟ କରି ତାଙ୍କ ମୂର୍ତ୍ତି ଗଠନର ଗାନ୍ଧାର ଭାସ୍କର୍ଯ୍ୟର ପ୍ରାରମ୍ଭରେ ଦେଖିବାକୁ ମିଳେ । ଇତିପୂର୍ବରୁ ଶିଳ୍ପକଳା କ୍ଷେତ୍ରରେ ବୁଦ୍ଧଙ୍କର ଭାବରୂପ କଳ୍ପନା କରାଯାଇଛି ଚକ୍ର, ସିଂହାସନ, ବୋଧିଦ୍ରୁମ, ଆଦି ନାନା ଧରଣର ପ୍ରତୀକ ସାହାଯ୍ୟରେ । ସମ୍ଭବତଃ, ଭାବରୂପ କଳ୍ପନାର ଏହି ପରିବର୍ତ୍ତନ ଥିଲା ମହାଯାନୀ ଧ୍ୟାନଧାରଣାର ଫଳ ।

ଏହି ଧରଣର ବୁଦ୍ଧ ଓ ବୋଧିସତ୍ତ୍ୱମାନଙ୍କର କେତେକ ମୂର୍ତ୍ତିରେ ପଣ୍ଡିତମାନେ ବେଲ୍‌ଭିଡିୟାର୍ ଆପୋଲୋ ମୂର୍ତ୍ତିର ଏକ ଅସନ୍ଦିଗ୍ଧ ପ୍ରଭାବ ପଡ଼ିଥିଲା ବୋଲି ମନେ କରନ୍ତି, ତେବେ ଏହି ଶୈଳୀରେ

ତିଆରି ବୁଦ୍ଧ ମୂର୍ତ୍ତିର ଅଙ୍ଗ ପ୍ରତ୍ୟଙ୍ଗ ସଂପୂର୍ଣ୍ଣ ସ୍ଥାନୀୟ ପରମ୍ପରା ଅନୁଯାୟୀ ଯେ ନିର୍ମିତ ହୋଇଛି, ସେ ବିଷୟରେ ମଧ୍ୟ କୌଣସି ସନ୍ଦେହ ନାହିଁ । ତେବେ ମୂର୍ତ୍ତି ଗଢ଼ିବାର ଉପାଦାନ ଏବଂ ମୂର୍ତ୍ତିଗୁଡ଼ିକୁ କାମରେ ଲଗାଇବା ଉଦ୍ଦେଶ୍ୟ ମଧ୍ୟ ଭିନ୍ନ ଥିଲା । ସଂପୂର୍ଣ୍ଣ ନିର୍ଦ୍ଦିଷ୍ଟ ନିୟମ ଅନୁଯାୟୀ ଭାରତର ଭାସ୍କର୍ଯ୍ୟଗୁଡ଼ିକ ଥିଲା ବିଶେଷ ବିଶେଷ ଅଟ୍ଟାଳିକା ବା ମନ୍ଦିର ଆଦିର ଅବିଚ୍ଛେଦ୍ୟ ଅଙ୍ଗ । ଏ କ୍ଷେତ୍ରରେ ମୂର୍ତ୍ତି ନିର୍ମାଣର ବିଷୟ ଭାରତୀୟ ହେଲେ ମଧ୍ୟ ଶିଳ୍ପକଳାର ବହୁ କୃତ୍‌କୌଶଳ ଯେ ଅନୁପ୍ରେରଣା ଦିଗରୁ ଗ୍ରୀକ୍ ଥିଲା, ସେ ବିଷୟରେ ସନ୍ଦେହର ଅବକାଶ ନାହିଁ । କେତେକ ଶିଳ୍ପକଳା ଇତିହାସବିତ୍‌ଙ୍କ ଭାଷାରେ, ଗାନ୍ଧାର ରୀତିର ଭାସ୍କରଙ୍କ ହୃଦୟ ଥିଲା ଭାରତୀୟ ଏବଂ ହାତ ଦୁଇଟି ଗ୍ରୀକ୍ । ଭାସ୍କର୍ଯ୍ୟ ଶିଳ୍ପକଳାର ଇତିହାସରେ ଗାନ୍ଧାର ରୀତିର ପରମ୍ପରା ମଧ୍ୟ ଏସିଆ ଓ ଦୂର ପ୍ରାଚ୍ୟର ବହୁ ଦେଶର ସ୍ଥାପତ୍ୟକଳା ଉପରେ ପ୍ରଧାନ ଏକ ପ୍ରଭାବ ରୂପରେ କାର୍ଯ୍ୟ କରିଥିଲା ।

ମଥୁରା ଶୈଳୀର ଭାସ୍କର୍ଯ୍ୟଶିଳ୍ପ ଥିଲା ଅତ୍ୟନ୍ତ ମୌଳିକ । ବୌଦ୍ଧଧର୍ମାଶ୍ରିତ ଭାସ୍କର୍ଯ୍ୟଗୁଡ଼ିକ ଛଡ଼ା ଧର୍ମନିରପେକ୍ଷ ବିଷୟବସ୍ତୁକୁ ନେଇ ରଚିତ ଭାସ୍କର୍ଯ୍ୟ କର୍ମର ସଂଖ୍ୟା ଥିଲା ଅନେକ । ଏହି ଶେଷୋକ୍ତ ବିଭିନ୍ନ କାର୍ଯ୍ୟ ମଧ୍ୟରେ କୁଷାଣ ରାଜାମାନଙ୍କ ମୂର୍ତ୍ତି ଏବଂ ମନ୍ଦିର ଓ ମଠଗୁଡ଼ିକର ଧନୀ ପୃଷ୍ଠପୋଷକମାନଙ୍କର ମୂର୍ତ୍ତି ଦେଖିବାକୁ ମିଳେ । ଏହି ମୂର୍ତ୍ତିଗୁଡ଼ିକ ପ୍ରତିକୃତିର ରୀତିମତ ପ୍ରଦର୍ଶନୀ ବିଶେଷ । ମଥୁରା ଶୈଳୀରେ ସବୁଠାରୁ ପ୍ରଧାନ ପ୍ରଭାବ ଲକ୍ଷ୍ୟ କରାଯାଏ ପ୍ରାଚୀନ ଜୈନ ଓ ମୌର୍ଯ୍ୟ ଭାସ୍କର୍ଯ୍ୟ ଶୈଳୀର । ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ବିଷୟଟି ହେଉଛି, ମଥୁରା ଶୈଳୀରେ ବୁଦ୍ଧଙ୍କର ନରତ୍ୱ ଆରୋପିତ ମୂର୍ତ୍ତି ନିର୍ମାଣ କରିବା ଦେଖାଯାଏ । ମନେ ହୁଏ, ଗାନ୍ଧାର ଶୈଳୀର ପ୍ରଭାବ ବ୍ୟତିରେକେ ଏହା ସମ୍ଭବ ହୋଇଥିଲା, ସମ୍ଭବତଃ, ଭାରତର ଉତ୍ତର-ପଶ୍ଚିମ ଅଂଶରେ ଏହା ଘଟିବାର କିଛି ପୂର୍ବରୁ ତାହା ଦେଖିବାକୁ ମିଳିଥିଲା । ମଥୁରା ଶୈଳୀରେ ବୁଦ୍ଧଙ୍କର ମୂର୍ତ୍ତି ଏହି ଧର୍ମ ପ୍ରଚାରକଙ୍କର ପାର୍ଥିବ ପ୍ରତିକୃତି ନିର୍ମିତ ହେଲେ ମଧ୍ୟ ଏହି ପର୍ଯ୍ୟାୟର ମୂର୍ତ୍ତିଗୁଡ଼ିକ ମଧ୍ୟରେ କେତେକ ପରିମାଣରେ କିନ୍ତୁ ନିସ୍ପୃହ ଓ ଦୂରତ୍ୱର ଭାବ ସେତେବେଳେ ଅନୁଭବଯୋଗ୍ୟ ହୋଇ ଉଠିଥିଲା ।

ଅମରାବତୀର ଶିଳ୍ପ ଶୈଳୀରେ ଭାସ୍କର୍ଯ୍ୟ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ନିର୍ମିତ ବୌଦ୍ଧ ସ୍ତୂପଗୁଡ଼ିକର ପୂରକ ଅଂଶ ହିସାବରେ ରହିଯାଇଛି । ପ୍ରଧାନତଃ ବୁଦ୍ଧଙ୍କ ଜୀବନ କଥାର ଘଟଣାବଳୀକୁ ଅବଲମ୍ବନ କରି ନିର୍ମିତ ଏହି ଭାସ୍କର୍ଯ୍ୟ ଦୃଶ୍ୟାବଳୀ, ତଥାପି ଏହିସବୁ ଭାସ୍କର୍ଯ୍ୟର ସ୍ୱର ଥିଲା ସ୍ଥାନୀୟ ଏବଂ ସେସବୁ ଏହି ବିଶେଷ ରୀତିର ଶିଳ୍ପଗତ ଅନୁଶାସନର ଅନ୍ତର୍ନିହିତ ସୁନିର୍ଦ୍ଦିଷ୍ଟ ନୀତିଗୁଡ଼ିକୁ ପ୍ରକାଶ କରିଛି । ଉତ୍ତରାଞ୍ଚଳର ଶିଳ୍ପ ପରମ୍ପରାର ପ୍ରଭାବ ମଧ୍ୟ ଏହିସବୁ ଭାସ୍କର୍ଯ୍ୟ ଶୈଳୀରେ ଲକ୍ଷ୍ୟ କରାଯାଏ ।

ଗୁପ୍ତ ଯୁଗରେ କିନ୍ତୁ ଏହି ବିଭିନ୍ନ ଶିଳ୍ପ ରୀତିର ସୁନିର୍ଦ୍ଦିଷ୍ଟ, ବିଶିଷ୍ଟ ଲକ୍ଷଣଗୁଡ଼ିକୁ ପୃଥକ୍ କରି ଚିହ୍ନିବା ଅପେକ୍ଷାକୃତ କଠିନ ହୋଇ ପଡ଼ିଥିଲା । ଭାସ୍କର୍ଯ୍ୟ ଶିଳ୍ପ କ୍ଷେତ୍ରରେ ଏହି ସମୟରେ ଆରମ୍ଭ ହୋଇଥିଲା ଅପେକ୍ଷାକୃତ ସମପ୍ରକୃତିର ଏକ ପରମ୍ପରା ଗଢ଼ି ଉଠିବାର ପର୍ଯ୍ୟାୟ ଏବଂ ଏହି ନୂତନ ପରମ୍ପରାର ଭିତ୍ତି ଥିଲା, ମୁଖ୍ୟତଃ, ଉତ୍ତର ଭାରତୀୟ ମଥୁରା ଶିଳ୍ପଶୈଳୀ । ଏହି ଯୁଗରେ ବୁଦ୍ଧ ମୂର୍ତ୍ତିର ବୌଦ୍ଧଧର୍ମୀୟ ବ୍ୟାଖ୍ୟା ଆଉରି ବିଶଦ ଭାବେ ବିସ୍ତାରିତ ହୋଇଥିଲା ଏବଂ ଏହି ଧର୍ମଗୁରୁ ଓ ପ୍ରଚାରକଙ୍କ ମୂର୍ତ୍ତି କଳ୍ପନାର ମାନବିକ ଦିଗଟି କ୍ଷେତ୍ରରେ ଏକ ଧରଣର ବିବର୍ତ୍ତନ ଲକ୍ଷ୍ୟ କରାଯାଇଥିଲା । ବୁଦ୍ଧଙ୍କୁ ସେତେବେଳେ କଳ୍ପନା କରାଯାଉଥିଲା ଦେବତ୍ୱ ଆରୋପିତ ଏକ ପରମ ସତ୍ତା ହିସାବରେ ।

ଗୁପ୍ତ ଯୁଗର ଶେଷ ଆଡ଼କୁ ବୌଦ୍ଧଧର୍ମାଶ୍ରିତ ଭାସ୍କର୍ଯ୍ୟ ଶିଳ୍ପର ବିଧିବିଧାନ କ୍ଷେତ୍ରରେ

କେତେକ ପରିବର୍ତ୍ତନ ଦେଖା ଦେଇଥିଲା ବୌଦ୍ଧ ଧର୍ମର ଅବକ୍ଷୟ ଆରମ୍ଭ ହୋଇଯିବା ଫଳରେ । ବୁଦ୍ଧଙ୍କ ଭାବମୂର୍ତ୍ତିଟି ଏକ ପରିକଳ୍ପନାରେ ପରିଣତ ହୋଇଥିଲା । ତା'ପରେ ବୁଦ୍ଧ ମୂର୍ତ୍ତିଗୁଡ଼ିକ ଏକା ଧରଣର ଧର୍ମୀୟ ଲକ୍ଷଣ ଯୁକ୍ତ ଓ ଶିଳ୍ପ ଆଙ୍ଗିକର ଅଧିକାରୀ ହୋଇ ଉଠିଥିଲା ଏବଂ ଦେଶର ବିଭିନ୍ନ ଅଂଶରୁ ମିଳିଥିବା ଏହି ସମୟକାଳର ଭାସ୍କର୍ଯ୍ୟ – ପ୍ରତିକୃତି ଦେଖିବାକୁ ଅନେକ ପରିମାଣରେ ଏକାରକମର ଥିଲା । ଏହି ସମୟର ଭାସ୍କର୍ଯ୍ୟର ଭଲ ନିଦର୍ଶନ ହେଉଛି ସୁଲତାନ୍‌ଗଞ୍ଜ (ବିହାର) ଓ ସାର୍‌ନାଥରେ (ବାରାଣସୀ ନିକଟରେ) ମିଳିଥିବା ପଞ୍ଚମ ଶତାବ୍ଦୀର ବୁଦ୍ଧ ମୂର୍ତ୍ତି ଦ୍ୱୟ । ସୁଲତାନ୍‌ଗଞ୍ଜରେ ମିଳିଥିବା ମୂର୍ତ୍ତିଟି ପିତଳ ନିର୍ମିତ ଏବଂ ଦେଖିବାକୁ ପ୍ରକାଣ୍ଡକାୟ । ଉଚ୍ଚତାରେ ଦୁଇ ମିଟରରୁ ଅଧିକ ଏବଂ ଓଜନ ପ୍ରାୟ ଏକ ଟନ୍ । ବୁଦ୍ଧଙ୍କୁ ଏହି ମୂର୍ତ୍ତିରେ ଉପସ୍ଥାପିତ କରାଯାଇଛି ଦୈବ ଶକ୍ତିର ମୂର୍ତ୍ତିମନ୍ତ ରୂପ ହିସାବରେ । ମୂର୍ତ୍ତିଟିର ଦେହ ପ୍ରଶସ୍ତ, କଟି ଦେଶ କ୍ଷୀଣ ଏବଂ ଦେହରେ ମାଂସପେଶୀର ଅସ୍ତିତ୍ୱ ପ୍ରାୟ ସ୍ପଷ୍ଟ ନୁହେଁ । ସମଗ୍ର ମୂର୍ତ୍ତିଟି ବିଶେଷ ଏକ ଭଙ୍ଗିରେ ଠିଆଗି – ମଣ୍ଡିସଟି ଆଗକୁ ଅଳ୍ପ ଆନତ ଏବଂ ଡାହାଣ ହାତଟି କହୁଣି ପାଖରୁ ଅଭୟ ମୁଦ୍ରାରେ ବଙ୍କା । ଏଠାରେ ଏହି ଧର୍ମପ୍ରଚାରକଙ୍କ ମୂର୍ତ୍ତିଟିକୁ ସ୍ପଷ୍ଟତଃ ଏକ ଆଦର୍ଶ ରୂପ ପ୍ରଦାନ କରାଯାଇଛି । ବୁଦ୍ଧଙ୍କର ଭାବଭଙ୍ଗି ଏଠାରେ ସ୍ୱାଭାବିକ ଏବଂ ସ୍ୱଚ୍ଛନ୍ଦ, ଅନ୍ତର ଧ୍ୟାନମଗ୍ନତାର ଦ୍ୟୋତକ, ଏବଂ ମୁହଁରେ ପ୍ରସନ୍ନ ହସର ଆଭାସ ।

ହିନ୍ଦୁ ଧର୍ମର ପୁନରଭ୍ୟୁତ୍‌ଥାନ ମଧ୍ୟ ଭାରତୀୟ ଭାସ୍କର୍ଯ୍ୟ ଶିଳ୍ପକୁ ପ୍ରତ୍ୟକ୍ଷ ଭାବେ ପ୍ରଭାବିତ କରିଥିଲା । ବୈଷ୍ଣବ ଓ ଶୈବଧର୍ମାଶ୍ରିତ ଦେବଦେବୀଙ୍କର ଭାସ୍କର୍ଯ୍ୟ ମୂର୍ତ୍ତି ଏହି ସମୟରେ ବହୁଳ ଭାବେ ପ୍ରଚଳିତ ହୋଇଥିଲା । ଗୁପ୍ତ ଯୁଗର ଅଧିକାଂଶ ଭାଗର ହିନ୍ଦୁ ଧର୍ମାଶ୍ରିତ ଭାସ୍କର୍ଯ୍ୟ ହେଉଛି ଶିବ ମୂର୍ତ୍ତି । ଖୁବ୍ ସମ୍ଭବତଃ, ବୁଦ୍ଧଙ୍କୁ ରକ୍ତ ମାଂସର ମଣିଷ ହିସାବରେ ଉପସ୍ଥାପିତ କରିବାର ରୀତିଟି (ଖ୍ରୀଷ୍ଟ ଧର୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ବୌଦ୍ଧଧର୍ମାଶ୍ରିତ ଭାସ୍କର୍ଯ୍ୟ ଶିଳ୍ପର ଯାହା ବୈଶିଷ୍ଟ୍ୟ ଥିଲା) ତତ୍‌କାଳୀନ ହିନ୍ଦୁ ଦେବଦେବୀମାନଙ୍କର ମୂର୍ତ୍ତି ଗଠନ ପ୍ରକ୍ରିୟାକୁ ପ୍ରଭାବିତ କରିଥିଲା ।

ତେବେ ହିନ୍ଦୁମାନେ ସେମାନଙ୍କ ଦେବଦେବୀଙ୍କ ମୂର୍ତ୍ତିକୁ ଏପରିକି ମଣିଷର ଆକୃତି ପ୍ରଦାନ କଲେ ମଧ୍ୟ ମୂର୍ତ୍ତିଗୁଡ଼ିକୁ ସେମାନେ ପ୍ରତୀକ ରୂପେ ଗ୍ରହଣ କରୁଥିଲେ । ତେଣୁ କରି ମୂର୍ତ୍ତିଗୁଡ଼ିକରେ ସେମାନେ ଆରୋପ କରୁଥିଲେ ଚାରିଟି କିମ୍ବା ତତୋଧିକ ହାତ (ଚତୁର୍ଭୁଜ, ଦଶଭୁଜ, ଆଦି) । ଏହି ଭାବେ ବିଭିନ୍ନ ରକମର ଜୋଡ଼ା ହାତର ସଂଖ୍ୟା ବିଶେଷ ବିଶେଷ ନିର୍ଦ୍ଦିଷ୍ଟ ଦେବତାଙ୍କ ଅଥବା ଏହି ଦେବତାଙ୍କ ବିଭିନ୍ନ ପ୍ରକାରର କ୍ରିୟାକଳାପର ପ୍ରତୀକ ଚିହ୍ନ ।

ଗୁପ୍ତ ଯୁଗରେ କଠୋର ଭାବେ ଧର୍ମାଶ୍ରିତ ଭାସ୍କର୍ଯ୍ୟଶିଳ୍ପ ବ୍ୟତୀତ ତଥାକଥିତ ଅର୍ଦ୍ଧଧର୍ମନିରପେକ୍ଷ ଓ ଧର୍ମନିରପେକ୍ଷ ଭାସ୍କର୍ଯ୍ୟଶିଳ୍ପର ମଧ୍ୟ ସୁନିର୍ଦ୍ଦିଷ୍ଟ ଅଗ୍ରଗତି ଘଟିଥିଲା ।

ଏହି ଯୁଗଟି ଥିଲା ପ୍ରାଚୀନ ଭାରତୀୟ ଚିତ୍ର ଶିଳ୍ପର ବିକାଶର ଗୁରୁତ୍ୱପୂର୍ଣ୍ଣ ଏକ ପର୍ଯ୍ୟାୟ । ଅଜନ୍ତାର (ବର୍ତ୍ତମାନ ମହାରାଷ୍ଟ୍ର ଅନ୍ତର୍ଗତ) * ବିଶ୍ୱବିଖ୍ୟାତ ଗୁମ୍ଫାଗୁଡ଼ିକରେ ଅଙ୍କା ପ୍ରାଚୀର ଚିତ୍ରଗୁଡ଼ିକ

---

* ସେ କାଳରେ ଅଜନ୍ତା ଅଞ୍ଚଳଟି ଗୁପ୍ତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ନଥିଲା ; ସ୍ଥାନୀୟ ଭାବେ ପ୍ରାପ୍ତ ଶିଳାଲିପି ଆଦିର ସାକ୍ଷ୍ୟ ଅନୁଯାୟୀ ଅନୁମାନ କରାଯାଏ ଯେ, ଏହି ଅଞ୍ଚଳଟି ଭକଟକ ରାଜ୍ୟର ଅଂଶବିଶେଷ ଥିଲା ।

ଭାରତୀୟ ଓ ବିଶ୍ୱ ଶିଳ୍ପ କ୍ଷେତ୍ରରେ ପ୍ରକୃଷ୍ଟ ନିଦର୍ଶନ । ଚିତ୍ରାଙ୍କନର ଆଙ୍ଗିକଗତ ବିଗ୍ଭର ଦୃଷ୍ଟିରୁ ଏହି ଚିତ୍ରଗୁଡ଼ିକୁ, ଅବଶ୍ୟ, ଖାଣ୍ଟି ଫ୍ରେସ୍କୋ ଜାତୀୟ ପ୍ରାଚୀର ଚିତ୍ର ବୋଲି କହି ହେବ ନାହିଁ । କାରଣ ଚିତ୍ରଗୁଡ଼ିକ ଅଙ୍କା ହୋଇଥିଲା ପ୍ରାଚୀର ଏବଂ ଛାତର ସୂକ୍ଷ୍ମ ପ୍ରଲେପ ଉପରେ । ସେ ଯାହା ହେଉ, ଅଜନ୍ତାର ଉଣେଇଶଟି ଗୁମ୍ଫା ପ୍ରାଚୀର ଓ ଛାତ ଏହି ଚିତ୍ରଗୁଡ଼ିକ ଦ୍ୱାରା ପରିପୂର୍ଣ୍ଣ । ଚିତ୍ରଗୁଡ଼ିକର ବିଷୟବସ୍ତୁ ଯେମିତି ବ୍ୟାପକ, ସେଇଭଳି ବିଚିତ୍ର: ବୁଦ୍ଧଙ୍କ ଜୀବନର ବିଭିନ୍ନ ଦୃଶ୍ୟ, ଜାତକମାନଙ୍କ ଜୀବନ ଚରିତ, ବୁଦ୍ଧ ଦେବଙ୍କର ବିଭିନ୍ନ ପ୍ରତିକୃତି, ଯକ୍ଷିଣୀମାନଙ୍କର ମୂର୍ତ୍ତି, ବିଭିନ୍ନ ଅଳଙ୍କରଣ ନକ୍ସା, ଆଦି ଏହିସବୁ ଚିତ୍ରର ବିଷୟବସ୍ତୁ । ଏହା ଛଡ଼ା ପ୍ରକୃତିର ବିଭିନ୍ନ ଦୃଶ୍ୟ ମଧ୍ୟ ଚମତ୍କାର ଭାବେ ଅଙ୍କା ହୋଇଛି ଏବଂ ଦୈନନ୍ଦିନ ଦୃଶ୍ୟାବଳୀ ଏବଂ ରାଜସଭାର କେତେକ ଦୃଶ୍ୟ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଅଜନ୍ତାର ଗୁମ୍ଫାଗୁଡ଼ିକୁ ଦେଖି ୟୁଏନ୍ ସାଙ୍ଗ୍ ଲେଖିଥିଲେ, ମନ୍ଦିରଟିର ପ୍ରାଚୀର ଗାତ୍ରରେ ଅଙ୍କିତ ହୋଇଛି "ମହତ୍ ଏବଂ ସୂକ୍ଷ୍ମ ସବୁ" । ଚିତ୍ରଗୁଡ଼ିକରେ ବ୍ୟବହୃତ ହୋଇଥିବା ବିଭିନ୍ନ ରଙ୍ଗ ମଧ୍ୟ ଅତ୍ୟନ୍ତ ଚମତ୍କାର, ସମ୍ଭାବ୍ୟ ପ୍ରାୟ ସମସ୍ତ ରକମର ରଙ୍ଗର ଆଭାସ ସେଥିରେ ମିଳେ । ଶୁଷ୍କ ପ୍ରଲେପନ ଉପରେ ଚିତ୍ରସବୁ ଅଙ୍କିତ ହୋଇଛି ।

ଅଜନ୍ତାର ପ୍ରାଚୀର ଚିତ୍ରଗୁଡ଼ିକର କାର୍ଯ୍ୟ ଆରମ୍ଭ ହୋଇଥିଲା ଗୁପ୍ତ ଯୁଗର ପୂର୍ବରୁ ଏବଂ ପ୍ରତ୍ୟେକଟି ଗୁମ୍ଫାର ଚିତ୍ର ଆଙ୍କିବାର କାର୍ଯ୍ୟ ଶେଷ ହେବାକୁ କେଇ ଶତାବ୍ଦୀ ଲାଗିଥିଲା । କେବଳ ମାତ୍ର ଭାରତୀୟ ସଂସ୍କୃତି ନୁହେଁ, ପ୍ରାଚ୍ୟଦେଶୀୟ ଅନ୍ୟ କେତେକ ଦେଶର ସଂସ୍କୃତି ଉପରେ ମଧ୍ୟ ଗୁମ୍ଫାଚିତ୍ରଗୁଡ଼ିକ ଅସାମାନ୍ୟ ପ୍ରଭାବ ପାତ କରିଥିଲା ।

# ପ୍ରାଚୀନ ଭାରତ ଓ ଅନ୍ୟାନ୍ୟ ଦେଶ ମଧ୍ୟରେ ଐତିହାସିକ ଓ ସାଂସ୍କୃତିକ ଯୋଗାଯୋଗ

ଐତିହାସିକ ଯୁଗର, ଏପରିକି ସଂପୂର୍ଣ୍ଣ ପ୍ରାରମ୍ଭିକ ଯୁଗରୁ ଭାରତ ଅନ୍ୟାନ୍ୟ ବହୁ ଦେଶ ସହିତ ଘନିଷ୍ଠ ସଂପର୍କ ସ୍ଥାପନ କରିଥିଲା । ଶତାବ୍ଦୀ ପରେ ଶତାବ୍ଦୀ ଧରି ଏହିସବୁ ସଂପର୍କ ବିକଶିତ ଏବଂ ସୁଦୃଢ଼ ହୋଇ ଉଠିଥିଲା । ଭାରତୀୟ ସଂସ୍କୃତି ସେତେବେଳେ ଅନ୍ୟାନ୍ୟ ନୂତନ ସଂସ୍କୃତିର ଅଞ୍ଚଳ ମଧ୍ୟକୁ ପ୍ରବେଶ କରିଥିଲା ଏବଂ ସଂସ୍କୃତିଗୁଡ଼ିକର ପାରସ୍ପରିକ ସମୃଦ୍ଧି ସାଧନର ଏକ ପ୍ରକ୍ରିୟା ଆରମ୍ଭ ହୋଇ ଯାଇଥିଲା ।

ଏହି ସାଂସ୍କୃତିକ ପରସ୍ପର ସଂପର୍କଗୁଡ଼ିକ ମଧ୍ୟରେ ସର୍ବପ୍ରାଚୀନ ଓ ସବୁଠାରୁ ଘନିଷ୍ଠ ସଂପର୍କଗୁଡ଼ିକ ଥିଲା ଭାରତ ଓ ଇରାନ୍ ମଧ୍ୟରେ । ସେଇ ସୁଦୂର ନବପ୍ରସ୍ତରଯୁଗରୁ ଏହି ସଂପର୍କର ଅସ୍ତିତ୍ୱ ଲକ୍ଷ୍ୟ କରାଯାଏ । ପ୍ରାଚୀନ ଭାରତୀୟ ଓ ପ୍ରାଚୀନ ଇରାନୀୟମାନେ ନୃକୁଳ ଏବଂ ଭାଷା ଦିଗରୁ ଥିଲେ ଘନିଷ୍ଠ ଭାବେ ସଂପୃକ୍ତ । ଭାରତୀୟ-ଇରାନୀୟ ସଂପର୍କର ବିଶେଷ ଘନିଷ୍ଠ ଯୁଗ ଆରମ୍ଭ ହୋଇଥିଲା ଆକିମେନିଡ୍ ସାମ୍ରାଜ୍ୟ ସ୍ଥାପିତ ହେଲା ପରେ, ଉତ୍ତର-ପଶ୍ଚିମ ଭାରତର କେତେକ ଅଞ୍ଚଳ

ଏହି ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେବା ସମୟରୁ । ମୌର୍ଯ୍ୟ ଯୁଗରେ ଆକିମେନିଡ୍ ସଂସ୍କୃତି ମଧ୍ୟ (ସ୍ଥାପତ୍ୟ, ଭାସ୍କର୍ଯ୍ୟ, ଆଦି) ଭାରତୀୟ ସଂସ୍କୃତିର ବିକାଶ କ୍ଷେତ୍ରରେ ସହାୟକ ହୋଇଥିଲା । ଅନ୍ୟ ପକ୍ଷରେ, ବୌଦ୍ଧ ଧର୍ମ ଭାରତରୁ ଇରାନ୍‌କୁ ବିସ୍ତାର ଲାଭ କରିଥିଲା ଏବଂ ଭାରତର ବହୁ ବୈଜ୍ଞାନିକ କୃତି ଓ ଶିଳ୍ପକର୍ମ ଇରାନ୍‌ରେ ପରିଚିତ ଲାଭ କରିଥିଲା ।

ମଧ୍ୟ ଏସିଆରେ ସୋଭିଏତ୍ ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କର ସାଂପ୍ରତିକ ଖନନ କାର୍ଯ୍ୟ ଫଳରେ ଦେଖିବାକୁ ମିଳେ ଯେ, ସେଇ ସୁଦୂର ହରପ୍ପା ସଭ୍ୟତା ଯୁଗରେ ବି ମଧ୍ୟ ଏସିଆର ଦକ୍ଷିଣ ଅଞ୍ଚଳଗୁଡ଼ିକ ଓ ଭାରତ ମଧ୍ୟରେ ବିଭିନ୍ନ ପ୍ରତ୍ୟକ୍ଷ ଯୋଗସୂତ୍ର ଥିଲା । ତେବେ ଏହି ଯୋଗସୂତ୍ରଗୁଡ଼ିକ ବିଶେଷ ଭାବେ ନିବିଡ଼ ହୋଇ ଉଠିଥିଲା କୁଶାଣ ରାଜତ୍ୱକାଳରେ । କୁଶାଣ ଏବଂ ଶକମାନେ ଭାରତରେ ଅନୁପ୍ରବେଶ କଲା ପରେ ଭାରତରେ ମଧ୍ୟ ଏସିଆର ବିଭିନ୍ନ ପ୍ରଭାବ ଅନୁଭୂତ ହୋଇଥିଲା । ଅନ୍ୟ ଦିଗରେ, ବୌଦ୍ଧ ଧର୍ମ ଏବଂ ଭାରତର ବିଭିନ୍ନ ସାଂସ୍କୃତିକ ସାଫଲ୍ୟ ସଂପର୍କିତ ଧ୍ୟାନଧାରଣା ମଧ୍ୟ ଏସିଆରେ ବିସ୍ତାର ଲାଭ କରିଥିଲା ।

ମଧ୍ୟ ଏସିଆରୁ ମିଳିଥିବା ବହୁବିଧ ଖୋଦିତ ଲିପି ଅନୁଯାୟୀ ବିଚାର କଲେ, କହିବାକୁ ହୁଏ ଯେ, କୁଶାଣ ଏବଂ ଗୁପ୍ତ ଯୁଗରେ ଭାରତୀୟମାନେ ଏହି ଅଞ୍ଚଳରେ ଅନେକଗୁଡ଼ିଏ ବସତି ସ୍ଥାପନ କରିଥିଲେ ଏବଂ ବଡ଼ ବଡ଼ କେତେକ ମଠ ପ୍ରତିଷ୍ଠା କରିଥିଲେ । ଏହାର ସବୁଠାରୁ ଲକ୍ଷଣୀୟ ପ୍ରମାଣ ହେଲା କାରା-ତେପେହ୍ (ତେରମେଜ୍‌ର ନିକଟବର୍ତ୍ତୀ, ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀରେ) ଏବଂ ଅଜିନ୍-ତେପେହ୍‌ରେ (ଦକ୍ଷିଣ ତାଜିକିସ୍ତାନରେ, ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ) ପ୍ରତିଷ୍ଠିତ ବୌଦ୍ଧ ମଠ ଦୁଇଟି । ଭାରତ ସହିତ ପ୍ରତ୍ୟକ୍ଷ ବିଭିନ୍ନ ସଂପର୍କର ଲିଖିତ ପ୍ରମାଣ ବି ମଧ୍ୟ ଏସିଆରେ ମିଳିଛି । ଏସବୁ ହେଉଛି ବାର୍ଚ୍ଚ ଗଛର ବକ୍କଳ ଏବଂ ତାଳପତ୍ରରେ ଲିଖିତ କେତେକ ବୌଦ୍ଧ ପୋଥି ।

ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ଭାରତ ସହିତ ଚୀନ୍‌ର ବାଣିଜ୍ୟିକ ସଂପର୍କ ଦ୍ରୁତ ବୃଦ୍ଧି ପାଇଥିଲା । ଏହି ବାଣିଜ୍ୟିକ ନେଣ ଦେଣ ଚାଲିଥିଲା ସୁବିଖ୍ୟାତ ରେଶମ ପରିବହନ ପଥ ଏବଂ ସମୁଦ୍ର ପଥ ଦେଇ । ଭାରତୀୟ ରାଷ୍ଟ୍ରଦୂତ ଓ ବୌଦ୍ଧ ପରିବ୍ରାଜକ ଦଳଗୁଡ଼ିକୁ ସେତେବେଳେ ଚୀନ୍‌କୁ ପଠାଯାଇଥିଲା । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ବେଳକୁ ଚୀନ୍‌ରେ ବଡ଼ ବଡ଼ ବୌଦ୍ଧ ମଠ ଗଢ଼ି ଉଠିଥିଲା ଏବଂ ଚୀନ୍ ଭାଷାରେ ବୌଦ୍ଧ ପୋଥିଗୁଡ଼ିକର ଅନୁବାଦ ଆରମ୍ଭ ହୋଇ ଯାଇଥିଲା ।

ଏହି ସମୟରେ ମଧ୍ୟ ଏସିଆରେ ଗଢ଼ି ଉଠିଥିଲା ଭାରତୀୟ ବସତିଗୁଡ଼ିକ । ଏହାର ପର୍ଯ୍ୟାପ୍ତ ପ୍ରମାଣ ମିଳେ ଖରୋଷ୍ଠୀ ଲିପିରେ ଲିଖିତ ଏବଂ ଏ ପର୍ଯ୍ୟନ୍ତ ତିଷ୍ଠି ରହିଥିବା ପୋଥି ପତ୍ରସବୁ ।

ଖ୍ରୀଷ୍ଟ ପୂର୍ବ ଷଷ୍ଠ ଶତାବ୍ଦୀରେ ସିଂହଳ ଦ୍ୱୀପକୁ ପ୍ରଥମ ଭାରତୀୟ ଆର୍ଯ୍ୟ ବସତିକାରୀମାନେ ଯିବାର ଅବ୍ୟବହିତ ପରେ ଭାରତ ଏବଂ ସିଂହଳ ମଧ୍ୟରେ ସଂପର୍କ ସ୍ଥାପିତ ହୋଇଥିଲା । ତା'ପରେ ମୌର୍ଯ୍ୟ ରାଜାମାନଙ୍କ ଅମଳରେ ଏହି ଦ୍ୱୀପଟିରେ ବୌଦ୍ଧ ଧର୍ମ ବିସ୍ତାର ଲାଭ କରିବାକୁ ଆରମ୍ଭ କରିବା ଦ୍ୱାରା ଏହି ସାଂସ୍କୃତିକ ସଂପର୍କ ଆଉରି ଘନିଷ୍ଠ ହୋଇଥିଲା । ଭାରତୀୟ ସଂସ୍କୃତି ସିଂହଳର ସାହିତ୍ୟ, ସ୍ଥାପତ୍ୟ ଶିଳ୍ପ ଏବଂ ଧର୍ମକୁ ପ୍ରବଳ ଭାବେ ପ୍ରଭାବିତ କରିଥିଲା । ଏହା ଛଡ଼ା ଅତ୍ୟନ୍ତ ପ୍ରାଚୀନ କାଳରୁ ଦକ୍ଷିଣ-ପୂର୍ବ ଏସିଆର ବହୁ ଦେଶ ସହିତ ଭାରତ ବ୍ୟବସାୟ ବାଣିଜ୍ୟ ଆରମ୍ଭ କରିଥିଲା ଏବଂ ପରେ ଏହି ଶେଷୋକ୍ତ ଦେଶଗୁଡ଼ିକ ମଧ୍ୟରୁ କେତେକରେ ଭାରତୀୟ ବସତି ଗଢ଼ି ଉଠିଥିଲା । ଏହି ବସତିକାରୀମାନେ ସଙ୍ଗରେ ସଂସ୍କୃତ ଭାଷା ଏବଂ ଭାରତୀୟ ସଂସ୍କୃତିର ଅନ୍ୟାନ୍ୟ

ବହୁ କୃତି ନେଇ ଯାଇଥିଲେ । ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ଇଣ୍ଡୋନେସିଆରେ ମଧ୍ୟ ଭାରତୀୟ ଜନବସତି ଗଢ଼ି ଉଠିଥିଲା ।

ହରପ୍ପା ସଭ୍ୟତା ଅମଳରେ ସୁମେରୀୟମାନଙ୍କ ସହିତ ଭାରତର ବାଣିଜ୍ୟିକ ଏବଂ ସାଂସ୍କୃତିକ ସଂପର୍କ ଗଢ଼ି ଉଠିଥିଲା । ଏହା ପରେ ଭାରତୀୟମାନେ ଲିପ୍ତ ହୋଇଥିଲେ ଆରବ ଓ ଆଫ୍ରିକାର ଦେଶଗୁଡ଼ିକ ସହିତ ସମୁଦ୍ର ପଥରେ ବାଣିଜ୍ୟ ବ୍ୟବସାୟରେ । ଏହି ଭାବେ ସେମାନଙ୍କର ମିଶର ସହିତ ଭୂମଧ୍ୟ ସାଗରର ତୀରବର୍ତ୍ତୀ ଦେଶଗୁଡ଼ିକ ସହିତ ଯୋଗାଯୋଗ ଦୃଢ଼ ହୋଇଥିଲା ।

ଭାରତ ସହିତ ପାଶ୍ଚାତ୍ୟ ଦୁନିଆର ବିଭିନ୍ନ ସଂପର୍କର ଏକ ନୂଆ ଯୁଗର ସୂତ୍ରପାତ ହୋଇଥିଲା ଦିଗ୍‌ବିଜୟୀ ମ୍ୟାସିଡନ୍‌ର ଆଲେକ୍‌ଜାଣ୍ଡାରଙ୍କ ବିଜୟ ଅଭିଯାନ ପରେ । ଗ୍ରୀକ୍‌ମାନେ ଏହି ସମୟରେ ସିଧାସଳଖ ଭାରତ ସହିତ, ତା'ର ବିଭିନ୍ନ ଜାତି ଏବଂ ପରମ୍ପରା ଆଦି ସହିତ ପରିଚିତ ହୋଇଥିଲେ । ଏହା ପରେ କୁଶାଣ ଯୁଗରେ ଭାରତ ସହିତ ରୋମ୍‌ର ବହୁବିଧ ସଂପର୍କ ଦୃଢ଼ ହୋଇଥିଲା – ମୂଲ୍ୟବାନ ଉପହାର ସାମଗ୍ରୀ ସମେତ ଭାରତୀୟ ରାଷ୍ଟ୍ରଦୂତମାନଙ୍କୁ ସେତେବେଳେ ରୋମ୍‌କୁ ପଠାଯାଇଥିଲା ଏବଂ ରୋମାନ୍‌ମାନେ ଦକ୍ଷିଣ ଭାରତରେ ସେମାନଙ୍କ ବାଣିଜ୍ୟ କେନ୍ଦ୍ରଗୁଡ଼ିକ ଖୋଲିଥିଲେ ।

ଉତ୍ତର-ପଶ୍ଚିମ ଭାରତରେ ଭାରତୀୟ-ଗ୍ରୀକ୍ ରାଜ୍ୟଗୁଡ଼ିକ ଗଢ଼ି ଉଠିଲା ବେଳେ ଏବଂ ପରେ କୁଶାଣ ଯୁଗର ପତନ ଘଟିବା ସମୟରେ ପ୍ରାଚୀନ ଗ୍ରୀସ୍ ଏବଂ ରୋମ୍‌ର ପ୍ରଭାବ ଭାରତରେ ବିଶେଷ ଭାବେ ସ୍ପଷ୍ଟ ହୋଇ ଉଠିଥିଲା । ଏହି ପ୍ରଭାବ ଦେଖିବାକୁ ମିଳେ ସେ ଯୁଗର ଭାରତୀୟ ଶିଳ୍ପକଳା କ୍ଷେତ୍ରରେ (ଗାନ୍ଧାର ଭାସ୍କର୍ଯ୍ୟ ମଧ୍ୟରେ), ବିଜ୍ଞାନ କ୍ଷେତ୍ରରେ ଏବଂ ଦର୍ଶନଶାସ୍ତ୍ରରେ । ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ରଚିତ କେତେକ ଭାରତୀୟ ଜ୍ୟୋତିର୍ବିଦ୍ୟା ଗ୍ରନ୍ଥରୁ ଏପରି କେତେକ ଇଙ୍ଗିତ ମିଳେ ଯେ, ଭାରତୀୟ ପଣ୍ଡିତମାନେ ଆଲେକ୍‌ଜାଣ୍ଡ୍ରିଆନ୍ ଜ୍ୟୋତିର୍ବିଦ୍‌ମାନଙ୍କର ରଚନାବଳୀ ସହିତ ପରିଚିତ ଥିଲେ । ଏପରିକି ଏହି ସମୟର ଏକ ସିଦ୍ଧାନ୍ତ ଗ୍ରନ୍ଥ (ଜ୍ୟୋତିର୍ବିଦ୍ୟା ଗ୍ରନ୍ଥ) ପରିଚିତ ହୋଇଥିଲା "ରୋମାନ୍ ସିଦ୍ଧାନ୍ତ" ନାମରେ ।

ଅଳ୍ପ ଦିନ ପୂର୍ବେ "ଯବନ ଜାତକ" ("ଗ୍ରୀକ୍ ଗଳ୍ପକାହାଣୀ") ନାମରେ ଜ୍ୟୋତିର୍ବିଦ୍ୟା ଭିତ୍ତିକ ଏକ କାବ୍ୟର ହାତ ଲେଖା ପୋଥି ଆବିଷ୍କୃତ ହୋଇଛି । ମୂଳ ଗ୍ରୀକ୍‌ରୁ ଅନୂଦିତ ଅପେକ୍ଷାକୃତ ପ୍ରାଚୀନ ଆଉ ଏକ ଭାରତୀୟ ପୋଥିର ଭିତ୍ତିରେ ଗତ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ଆଲୋଚ୍ୟ ଏହି ପୋଥିଟି ସଂକଳିତ ହୋଇଥିଲା । ଏହି ଆବିଷ୍କାରଟି ସ୍ପଷ୍ଟତଃ ପ୍ରମାଣ କରି ଦେଉଛି ଯେ, ପ୍ରାଚୀନ ଭାରତୀୟ ପଣ୍ଡିତମାନେ ଶାସ୍ତ୍ରୀୟ ୟୁରୋପୀୟ ପଣ୍ଡିତମାନଙ୍କର କାର୍ଯ୍ୟକଳାପ ସହିତ ପରିଚିତ ଥିଲେ ।

ତେବେ ପ୍ରାଚୀନ ଗ୍ରୀସ୍ ଓ ରୋମ୍ ସହିତ ଭାରତର ଏହିସବୁ ସଂପର୍କ ସତ୍ତ୍ୱେ ମଧ୍ୟ ଭାରତୀୟ ସଂସ୍କୃତିରେ ପୂର୍ବୋକ୍ତ ଏହି ଦୁଇ ସଂସ୍କୃତିର ପ୍ରଭାବ ସେପରି ବ୍ୟାପକ ହୋଇ ପାରି ନଥିଲା । ଏହି ପ୍ରଭାବ ସାଧାରଣତଃ ସୀମିତ ଥିଲା ସମାଜର ଉଚ୍ଚତର ସ୍ତରଗୁଡ଼ିକରେ (ତା ତଳକୁ ଏହା ପ୍ରସାରିତ ହୋଇ ନଥିଲା) ଏବଂ କେବଳ ମାତ୍ର ଉତ୍ତର-ପଶ୍ଚିମ ଭାରତରେ ଏବଂ ପଶ୍ଚିମ ଉପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକରେ । ଏଥି ସଙ୍ଗେ ସଙ୍ଗେ ଭାରତୀୟ ସଂସ୍କୃତିର ପ୍ରଭାବ ମଧ୍ୟ ଅନୁଭୂତ ହେବାକୁ ଆରମ୍ଭ କରିଥିଲା ଏହି ସମୟର ପାଶ୍ଚାତ୍ୟ ବିଜ୍ଞାନ, ଦର୍ଶନ ଏବଂ ସଂସ୍କୃତି କ୍ଷେତ୍ରରେ ।

ଯଥା, ଉଦାହରଣ ସ୍ୱରୂପ, ଏକଥା ସମସ୍ତେ ଜାଣନ୍ତି ଯେ, ଶାସ୍ତ୍ରୀୟ ପାଶ୍ଚାତ୍ୟ ଜଗତରେ

ଭାରତୀୟ ଔଷଧ ବ୍ୟବହୃତ ହେଉଥିଲା । ଏହା ଛଡ଼ା କେତେକ ପଣ୍ଡିତ ମନେ କରନ୍ତି ଯେ, ପିଥାଗୋରସ୍ ଏବଂ ତାଙ୍କ ଅନୁଗାମୀମାନଙ୍କର ରଚନାବଳୀରେ ଉପନିଷଦସମୂହର ଚିନ୍ତାଧାରାର ପ୍ରଭାବ ଲକ୍ଷ୍ୟ କରାଯାଇ ପାରେ । ସେମାନେ ଆଉରି କହନ୍ତି ଯେ, ପ୍ରାଚୀନ ଭାରତୀୟ ଦର୍ଶନଶାସ୍ତ୍ରର ପ୍ରଭାବ ଲକ୍ଷ୍ୟ କରାଯାଏ ନବପ୍ଲେଟୋପନ୍ଥୀମାନଙ୍କ ରଚନାରେ ।

ତେବେ ଏ ପ୍ରସଙ୍ଗରେ ଏହି ବିଷୟଟିର ଆଉ ଏକ ଦିଗ ଉପରେ ଗୁରୁତ୍ୱ ଆରୋପ କରିବା ପ୍ରୟୋଜନ । ତାହା ହେଉଛି, ପ୍ରାଚୀନ ସଭ୍ୟତାର ଉପରୋକ୍ତ ଏହି ଉଭୟ କେନ୍ଦ୍ରରେ ଦାର୍ଶନିକ ଚିନ୍ତାଧାରାର ସମାନ୍ତରାଳ ବା ଅନୁରୂପ ବିଷୟଟି । ବିଶ୍ୱବ୍ରହ୍ମାଣ୍ଡ, ମଣିଷ ଓ ପ୍ରକୃତି ସମ୍ବନ୍ଧୀୟ ବହୁ ମୌଳିକ ପ୍ରଶ୍ନ ଭାରତୀୟ ଏବଂ ଶାସ୍ତ୍ରୀୟ ୟୁରୋପୀୟ ଚିନ୍ତାବିତ୍‌ମାନେ ଏକାରକମର ଉତ୍ଥାପନ ଏବଂ ସେସବୁର ସମାଧାନ କରିଛନ୍ତି । ଏହାର କାରଣ ହେଉଛି, ପ୍ରାଚୀନ କାଳରେ ଉଭୟ ଅଞ୍ଚଳରେ ଐତିହାସିକ ବିକାଶର ପ୍ରକ୍ରିୟାରେ ଯେଉଁ ସାଂସ୍କୃତିକ ବିକାଶର ଧାରାଗୁଡ଼ିକ ରୂପ ପରିଗ୍ରହ କରିଥିଲା, ଏହା ସେସବୁର ଅନ୍ତର୍ନିହିତ ଏକାରକମର ଛକର ଇଙ୍ଗିତ ଦେଉଛି । ସେ ଯାହା ହେଉ, ମୋଟ ଉପରେ କହିବାକୁ ଗଲେ, ବହୁ ଶତାବ୍ଦୀ ଧରି ବହୁ ବିଚିତ୍ର ବିଭିନ୍ନ ଦେଶ ସହିତ ଘନିଷ୍ଠ ବାଣିଜ୍ୟିକ ସଂପର୍କ ଏବଂ ସାଂସ୍କୃତିକ ଯୋଗାଯୋଗ ରକ୍ଷା କରିବା ଓ ତାକୁ ଦୃଢ଼ତର କରିବା ସଙ୍ଗେ ସଙ୍ଗେ ଭାରତ ତା'ର ନିଜସ୍ୱ ବିଶିଷ୍ଟ ସଂସ୍କୃତି, ଦର୍ଶନ, ଐତିହ୍ୟ, ସାମାଜିକ ଓ ରାଜନୈତିକ ରୀତିନୀତି, ଆଦିକୁ ଆଖିର ପିତୁଳା ଭଳି ରକ୍ଷା କରି ଆସିଛି ।

ପ୍ରାଚୀନ ଭାରତୀୟ ସଭ୍ୟତାର ଐତିହ୍ୟ ଆଦି ପ୍ରବଳ ଭାବେ ପ୍ରଭାବିତ କରିଛି ଭାରତୀୟ ସମାଜ ଓ ସମଗ୍ର ଭାବେ ଭାରତୀୟ ସଂସ୍କୃତିର ପରବର୍ତ୍ତୀ ବିକାଶର ସ୍ତରଗୁଡ଼ିକୁ । ବିଶ୍ୱ ସଭ୍ୟତାର ସମୃଦ୍ଧ ଉତ୍ତରାଧିକାର କ୍ଷେତ୍ରରେ ପ୍ରାଚୀନ ଭାରତର ଅବଦାନ ପ୍ରକୃତରେ ଅପରିମେୟ ।

# ଷଷ୍ଠ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତ

## ଭାରତୀୟ ସାମନ୍ତବାଦ

ସପ୍ତମ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀର ଭାରତୀୟ ଇତିହାସକୁ ଅଧିକାଂଶ ସୋଭିଏତ୍ ଭାରତତତ୍ତ୍ୱ ବିଶାରଦ ସାମନ୍ତବାଦ ଦ୍ୱାରା ପ୍ରଭାବିତ ଯୁଗ ବୋଲି ବିଚାର କରିଥାନ୍ତି । ତେବେ ଆଉ କେତେକ ଇତିହାସବିଦ୍ ଏହି ଧାରଣାଟିର ସତ୍ୟତା ସଂପର୍କରେ ସନ୍ଦେହ ପ୍ରକାଶ କରିଥାନ୍ତି । ସେମାନେ କହନ୍ତି, ମଧ୍ୟଯୁଗୀୟ ୟୁରୋପର ଯେଉଁ ସାମାଜିକ ଅର୍ଥନୈତିକ ବ୍ୟବସ୍ଥା ଏକଦା ସାମନ୍ତବାଦ ନାମରେ ଅଭିହିତ ହୋଇଥିଲା, ତାହା ସହିତ ମଧ୍ୟଯୁଗୀୟ ଭାରତର ସାମାଜିକ ବ୍ୟବସ୍ଥା ଅନେକ ପୃଥକ୍ ଥିଲା । ଭାରତରେ ଶାସକ ଶ୍ରେଣୀ ମଧ୍ୟରେ କ୍ରମୋଚ୍ଚ ସ୍ତରବିନ୍ୟାସର ଗଢ଼ଣ ଥିଲା ଦୁର୍ବଳ । ଏପରିକି କେତେକ ପର୍ଯ୍ୟାୟରେ ତାହା ସଂପୂର୍ଣ୍ଣ ଅନୁପସ୍ଥିତ ଥିଲା । ଭୂସ୍ୱାମୀମାନେ ବେଳେ ବେଳେ ସେମାନଙ୍କ ଜମିଦାରିର ଶାସକ ନଥିଲେ । ବିନା ପାରିଶ୍ରମିକରେ ଜବରଦସ୍ତି ଶ୍ରମ (ବେଠି ବେଗାରି) ଅଧିକାଂଶ କ୍ଷେତ୍ରରେ କେବଳ ମାତ୍ର ଦୁର୍ଗ, ଜଳସେଚନ ବ୍ୟବସ୍ଥା ଆଦି ନିର୍ମାଣ କାର୍ଯ୍ୟରେ ଲଗାଯାଉଥିଲା । କୃଷକମାନଙ୍କ ନିକଟରୁ ସାଧାରଣତଃ ଖଜଣା ଆଦାୟ କରାଯାଉଥିଲା ସୁନିର୍ଦ୍ଦିଷ୍ଟ ରାଷ୍ଟ୍ରୀୟ କର ହିସାବରେ ।

ଦେଶର ଶାସକମାନେ ସେମାନଙ୍କ ପ୍ରଜାବୃନ୍ଦଙ୍କୁ ଜମିରେ ମାଲିକାନା ସ୍ୱତ୍ୱ ସର୍ତ୍ତାଧୀନରେ ପ୍ରଦାନ କରୁଥିଲେ, ଅର୍ଥାତ୍, ଶେଷୋକ୍ତମାନଙ୍କର ମାଲିକାନା ଥିଲା ଜମିରୁ ରାଜସ୍ୱ ଆଦାୟ କରିବା ବ୍ୟାପାରରେ, ଖୋଦ୍ ଜମି ଉପରେ ନୁହେଁ । ଏହାର ବିନିମୟରେ ଶାସକମାନେ ରାଷ୍ଟ୍ରୀୟ କରର ସୁନିର୍ଦ୍ଦିଷ୍ଟ ଏକ ଅଂଶ ପାଇବାକୁ ଆଶା କରୁଥିଲେ । ଏହିଭଳି ସର୍ତ୍ତାଧୀନ ମାଲିକାନାର ଭିତ୍ତିରେ ଯେଉଁମାନେ ଜମି ପାଉଥିଲେ, ସେମାନେ ନିଜର ପ୍ରୟୋଜନ ମେଣ୍ଟାଇବା ପାଇଁ ରାଜସ୍ୱ ସହିତ ଖଜଣା ମଧ୍ୟ ଆଦାୟ କରୁଥିଲେ । କିନ୍ତୁ ଏଥି ସଙ୍ଗେ ସଙ୍ଗେ ନିର୍ଦ୍ଦିଷ୍ଟ ସଂଖ୍ୟକ ଏକ ସେନାଦଳକୁ ପୋଷଣ କରିବାକୁ ସେମାନେ ବାଧ୍ୟ ହେଉଥିଲେ । ରାଜ୍ୟର ବିଭିନ୍ନ ଅଞ୍ଚଳର ଏହିସବୁ ସୈନ୍ୟଦଳ ଏକତ୍ର ରାଜ୍ୟର ସୈନ୍ୟବାହିନୀର ଅନ୍ତର୍ଭୁକ୍ତ ଥିଲେ । ସାଧାରଣତଃ ଏହିସବୁ ପ୍ରଦତ୍ତ ଜମି କିମ୍ବା ଖେତାବ ଉତ୍ତରାଧିକାର ହିସାବରେ ଗଣ୍ୟ ହେଉ ନଥିଲା । ଏହା ଛଡ଼ା ଭାରତରେ ଭୂମିଦାସ ପ୍ରଥା ମଧ୍ୟ ପ୍ରଚଳିତ ନଥିଲା, ଅର୍ଥାତ୍, କୃଷକମାନେ ଆଇନ୍ ସଂକ୍ରାନ୍ତ ବିଚାର ଆଦି ବିଷୟରେ ସାମନ୍ତବାଦୀ ଭୂସ୍ୱାମୀମାନଙ୍କ ଉପରେ ନିର୍ଭରଶୀଳ ନଥିଲେ । କେବଳ ମାତ୍ର ରାଜସ୍ୱ ଆଦାୟ ବ୍ୟାପାରରେ ଭୂସ୍ୱାମୀମାନଙ୍କର ଆଇନଗତ ବିଚାର ଓ ଶାସ୍ତିଦାନର ଅଧିକାର ଥିଲା । ସାମାଜିକ ପଦମର୍ଯ୍ୟାଦାଗତ ବୈଷମ୍ୟ ପରିବର୍ତ୍ତେ ଜାତିଗତ ବୈଷମ୍ୟ ଥିଲା । ଭାରତବର୍ଷର ଇତିହାସର କେତେକ ପର୍ଯ୍ୟାୟରେ

ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ଜମିଦାରି, ଖେତାବ ଓ ଦୃଢ଼ବଦ୍ଧ ସାମାଜିକ ପଦମର୍ଯ୍ୟାଦାର ଅନୁପସ୍ଥିତି ଫଳରେ ଦରିଦ୍ର ଅବସ୍ଥା ଯୋଗ୍ୟ ଲୋକଙ୍କ ପକ୍ଷରେ ସେନାଦଳର ସେନାଧ୍ୟକ୍ଷ ହିସାବରେ ନିଜର ପଦମର୍ଯ୍ୟାଦାର ଉନ୍ନତି ଘଟାଇବା ଅପେକ୍ଷାକୃତ ସହଜ ଥିଲା ।

ଭାରତୀୟ ସାମନ୍ତବାଦ ଠାରୁ ୟୁରୋପୀୟ ଧରଣର ସାମନ୍ତବାଦର ପାର୍ଥକ୍ୟ କ୍ଷେତ୍ରରେ ଏକ ସୁନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ହେଲା – ଭାରତରେ ରାଷ୍ଟ୍ରୀୟ ମାଲିକାନାଧୀନ ଜମିର ଆଧିକ୍ୟ ।

ଏସବୁ ସତ୍ତ୍ୱେ ଏଥି ସଙ୍ଗେ ସଙ୍ଗେ ମଧ୍ୟଯୁଗୀୟ ୟୁରୋପ ଓ ଭାରତର ସମାଜ ବ୍ୟବସ୍ଥା ମଧ୍ୟରେ କେତେକ ଗୁରୁତ୍ୱପୂର୍ଣ୍ଣ ସାଦୃଶ୍ୟ ମଧ୍ୟ ଥିଲା । ଉଭୟ ମହାଦେଶରେ ଅର୍ଥନୀତି ଗଢ଼ି ଉଠିଥିଲା ଛୋଟ କୃଷକ ଓ କାରିଗରମାନଙ୍କର କାୟିକ ଶ୍ରମକୁ ଭିତ୍ତି କରି । ଏହିସବୁ କୃଷକ ଓ କାରିଗର ଥିଲେ ସେମାନଙ୍କ ଉତ୍ପାଦନ ଯନ୍ତ୍ରପାତିର ମାଲିକ ଏବଂ କୌଣସି ପ୍ରକାରେ ଦିମୁଠା ଖାଇ ଏବଂ ଖଣ୍ଡେ ପିନ୍ଧି ଜୀବନ ବିତାଉଥିଲେ । ସମାଜର ଭିତ୍ତି ଥିଲା ଖଜଣା (କିମ୍ବା ରାଜସ୍ୱ ସମେତ ଖଜଣା) ଆଦାୟ ମାଧ୍ୟମରେ ଉପରୋକ୍ତ ସଂପ୍ରଦାୟଗୁଡ଼ିକ ଉପରେ ହେଉଥିବା ଶୋଷଣ । ଅର୍ଥନୈତିକ ବିଗ୍ଭର ଦୃଷ୍ଟିରୁ ଅବିଚକ୍ଷଣ ଜୋରଜବରଦସ୍ତି ଉପାୟରେ ସେ ଖଜଣା ମଧ୍ୟ ଆଦାୟ କରାଯାଉଥିଲା । ଏହି କାରଣରୁ ସାମନ୍ତବାଦ – ଏହି ପରିଭାଷାଟି ଭାରତବର୍ଷ କ୍ଷେତ୍ରରେ ବ୍ୟବହୃତ ହୋଇ ଆସିଛି । ତେବେ ତତ୍‌ସଙ୍ଗେ ସଙ୍ଗେ ଏକଥା ମଧ୍ୟ ଜୋର ଦେଇ କହିବା ଦରକାର ଯେ, ଭାରତୀୟ ସାମନ୍ତବାଦର କେତେକ ବୈଶିଷ୍ଟ୍ୟ ୟୁରୋପୀୟ ଢାଞ୍ଚାର ସାମନ୍ତବାଦ ଠାରୁ ରୀତିମତ ପୃଥକ୍ ।

ସୋଭିଏତ୍ ଇତିହାସବିଦ୍‌ମାନେ ଭାରତ ଇତିହାସର ଯେଉଁସବୁ ପ୍ରଶ୍ନ ଘେନି ବିଶେଷ ଆଲୋଚନା କରିଛନ୍ତି, ତନ୍ମଧ୍ୟରେ ଅନ୍ୟତମ ହେଉଛି ଜମିରେ ରାଷ୍ଟ୍ରୀୟ ମାଲିକାନା ବିଷୟ । ଜମିରେ ରାଷ୍ଟ୍ରୀୟ ମାଲିକାନା ବିଷୟଟି ଆଇନ୍‌ସଂକ୍ରାନ୍ତ ଭାରତୀୟ କୌଣସି ପ୍ରାଚୀନ ଲିଖିତ ଗ୍ରନ୍ଥରେ ବ୍ୟାଖ୍ୟାୟିତ ହୋଇନି । କେବଳ ଏତିକି ଜଣାଯାଏ ଯେ, ଜମି ବାବଦକୁ ଆଦାୟ ହେଉଥିବା ଖଜଣାକୁ କୁହାଯାଉଥିଲା ରାଷ୍ଟ୍ରୀୟ କର ବା ରାଜସ୍ୱ । ଏ ପ୍ରସଙ୍ଗରେ ମନେ ରଖିବାକୁ ହେବ ଯେ, ମଧ୍ୟଯୁଗୀୟ ଭାରତରେ "ଜମି" ବା "ଭୂମି" ଶବ୍ଦଟିରେ ଦୁଇଟି ସଂପୂର୍ଣ୍ଣ ଭିନ୍ନ ଅର୍ଥ ପ୍ରକାଶ ପାଉଥିଲା । କୃଷକ ନିକଟରେ ଏହି ଶବ୍ଦଟିର ଅର୍ଥ ଥିଲା, ଯେଉଁଠି ସେ କାମ କରୁଥିଲା, ସେଇ ନିର୍ଦ୍ଦିଷ୍ଟ କ୍ଷେତଟି । ଏହି ଜମି ଉପରେ, ଏପରି ଦୀର୍ଘ କାଳ ଧରି କାମ ନକଲେ ମଧ୍ୟ ତା' ଉପରେ ତା'ର ଅଧିକାର ଅକ୍ଷୁଣ୍ଣ ରହୁଥିଲା । ଯେପର୍ଯ୍ୟନ୍ତ କୃଷକ ଗ୍ରାମୀଣ ସମାଜର ପରମ୍ପରାଗତ କେତେକ ନିୟମକାନୁନ୍ ମାନିକି ଚଳୁଥିଲା, ସେପର୍ଯ୍ୟନ୍ତ ଏହି ଜମିକୁ ବଂଶଧରଙ୍କୁ ହସ୍ତାନ୍ତର ବା ଦାନ କରି ପାରୁଥିଲା । ଜମି ପାଇଁ ସେ ବାଧ୍ୟ ରହୁଥିଲା ରାଷ୍ଟ୍ରକୁ ବା ଯେଉଁ ବ୍ୟକ୍ତିକୁ ରାଜା ରାଜସ୍ୱ ଆଦାୟ କରିବାର ଅଧିକାର ଅର୍ପଣ କରୁଥିଲେ, ତାକୁ ନିର୍ଦ୍ଦିଷ୍ଟ ପରିମାଣର ରାଜସ୍ୱ ସମେତ ଖଜଣା ଦେବାକୁ ।

ଅନ୍ୟ ପକ୍ଷରେ, ସାମନ୍ତବାଦୀ ଭୂସ୍ୱାମୀ କିମ୍ବା ସାମନ୍ତବାଦୀ ରାଷ୍ଟ୍ର ନିକଟରେ ଭୂମି ବୋଇଲେ ସେଇ ଭୂଖଣ୍ଡକୁ ବୁଝାଉଥିଲା, ଯାହାର ଅଧିବାସୀମାନଙ୍କ ଠାରୁ ପ୍ରତ୍ୟେକ ପାଇଁ ସ୍ଥିରୀକୃତ ନିର୍ଦ୍ଦିଷ୍ଟ ପରିମାଣର ରାଜସ୍ୱ ସଂଗ୍ରହ କରାଯାଉଥିଲା । ରାଜା ସ୍ୱୟଂ ରାଜ୍ୟର କେତେକ ଭୂଖଣ୍ଡ ସର୍ତ୍ତାଧୀନରେ ଦାନ କରୁଥିଲେ, ଯେଉଁସବୁଥିରୁ ନିର୍ଦ୍ଦିଷ୍ଟ ପରିମାଣର ରାଜସ୍ୱ ରାଜାକୁ ଆଦାୟ କରି ଦିଆଯାଉଥିଲା । ପରବର୍ତ୍ତୀ କାଳରେ ରାଜାଙ୍କ କର୍ମଚାରୀମାନେ ସ୍ଥିର କରୁଥିଲେ, ରାଜ୍ୟର କେଉଁ ଅଞ୍ଚଳ ବା କେଉଁ

କେଉଁ ଅଞ୍ଚଳ ଏହି ଭୂମିଦାନର ଅନ୍ତର୍ଭୁକ୍ତ ହେବ । ପରବର୍ତ୍ତୀ ବିକଶିତ ସାମନ୍ତବାଦୀ ଯୁଗରେ ଏହିସବୁ ତାଲୁକର ବିରାଟ ଅଂଶ ସର୍ତ୍ତାଧୀନ ଥିଲା : ଅପେକ୍ଷାକୃତ କମ୍ ଧନୀ ଭୂସ୍ୱାମୀମାନଙ୍କ ପକ୍ଷରେ ଏହିସବୁ ତାଲୁକକୁ ଦାନ, ହସ୍ତାନ୍ତର କିମ୍ବା ଭଡ଼ା ଦେବା ସମ୍ଭବ ହେଉ ନଥିଲା । କୃଷକମାନେ କିପରି ସେମାନଙ୍କ ଜମି ଚାଷବାସ କରିବେ, ସେ ବିଷୟରେ ସାମନ୍ତବାଦୀ ଭୂସ୍ୱାମୀ ହସ୍ତକ୍ଷେପ କରୁ ନଥିଲେ । ତେବେ ଯେହେତୁ କେବଳ ମାତ୍ର ଆବାଦୀ ଜମି ଉପରେ ରାଜସ୍ୱ ଧାର୍ଯ୍ୟ କରାଯାଉଥିଲା, ତେଣୁ ଏହି ଭୂସ୍ୱାମୀମାନେ ଆବାଦୀ ଜମିର ପରିମାଣ ବୃଦ୍ଧି କରିବା ଉଦ୍ଦେଶ୍ୟରେ ଯଥାସାଧ୍ୟ ଚେଷ୍ଟା କରୁଥିଲେ । ସେମାନେ ନିୟମ କରି ଦେଉଥିଲେ, ଯଦି କୃଷକମାନେ ପତିତ ବା ଅନାବାଦୀ ଜମିକୁ ଚାଷ କରି ପାରନ୍ତି, ତେବେ ବେଶ୍ କିଛି ବର୍ଷ ପର୍ଯ୍ୟନ୍ତ ସେ ଜମି ଉପରେ ରାଜସ୍ୱଗତ ବିଭିନ୍ନ ସୁଯୋଗ ସୁବିଧା ଉପଭୋଗ କରିବେ । ଯେଉଁସବୁ କୃଷକ ନିବିଡ଼ ଏବଂ ଉଚ୍ଚ ଫଳନଶୀଳ ଫସଲ ଫଳାଇ ପାରୁଥିଲେ, ସେମାନଙ୍କୁ ଭୂସ୍ୱାମୀମାନେ ପୁରସ୍କୃତ କରୁଥିଲେ ।

ଜମିରେ ରାଷ୍ଟ୍ରୀୟ ମାଲିକାନାର ଅର୍ଥ ବୋଇଲେ, ସେଇସବୁ ଜମିରେ ରାଷ୍ଟ୍ର ତରଫରୁ ରାଜସ୍ୱର ପରିମାଣ ଏବଂ ତାହା ଆଦାୟ କରିବାର ପଦ୍ଧତି ନିର୍ଦ୍ଧାରଣ କରି ଦିଆଯାଉଥିଲା । ଜମିରେ ଏହି ରାଜସ୍ୱର ପରିମାଣ ଓ ପ୍ରକୃତି ସାମନ୍ତବାଦୀ ଭୂସ୍ୱାମୀମାନଙ୍କର ନିର୍ଦ୍ଦିଷ୍ଟ ଖଜଣା ଭଳି ହେଉଥିଲା । ଏହି ରାଜସ୍ୱ, ହୁଏତ, ବ୍ୟକ୍ତିଗତ ଭାବେ ରାଷ୍ଟ୍ରୀୟ କର୍ମଚାରୀମାନେ ଆଦାୟ କରୁଥିଲେ ବା ଏହି ଅଧିକାର ଦିଆଯାଉଥିଲା ସାମନ୍ତବାଦୀ ଭୂସ୍ୱାମୀମାନଙ୍କୁ । ଏହା ଫଳରେ ମଧ୍ୟଯୁଗୀୟ ଭାରତରେ ବିଭିନ୍ନ ସାମାଜିକ ସ୍ତର ମଧ୍ୟରେ ଜମି ସଂପର୍କରେ ଓ ଭୂସଂପତ୍ତିଗତ ଅଧିକାର ସଂପର୍କରେ ଭିନ୍ନ ଭିନ୍ନ ଏବଂ ବିଶିଷ୍ଟ ଧାରଣା ଗଢ଼ି ଉଠିଥିଲା । ଏ ପ୍ରସଙ୍ଗରେ, ଅବଶ୍ୟ, ମନେ ରଖିବାକୁ ହେବ ଯେ, ତତ୍କାଳୀନ ଭାରତରେ ଜମି ଉପରେ ରାଷ୍ଟ୍ରୀୟ ମାଲିକାନାର ଧାରଣାଟିର ପ୍ରାଧାନ୍ୟ ଥିଲେ ମଧ୍ୟ ଦେଶର ଭୂସଂପତ୍ତିର ଏକ କ୍ଷୁଦ୍ରତର ଅଂଶ ଥିଲା ଉତ୍ତରାଧିକାର ସୂତ୍ରରେ ସ୍ୱାଧୀନ, ଅଥବା ସାମନ୍ତ ଭୂସ୍ୱାମୀମାନଙ୍କ ଅଧୀନରେ (ମୋଗଲ ସମ୍ରାଟମାନଙ୍କ ଅମଳରେ ଏହି ଧରଣର ଭୂସ୍ୱାମୀମାନେ "ଜମିଦାର" ନାମରେ ପରିଚିତ ଥିଲେ) । ଏହି ଧରଣର ଭୂସ୍ୱାମୀମାନେ ନିଜେ ନିର୍ଦ୍ଦିଷ୍ଟ କରି ଦେଉଥିଲେ, କେତେ ପରିମାଣର ଖଜଣା ସେମାନେ କୃଷକମାନଙ୍କ ଠାରୁ ଆଦାୟ କରିବେ ଏବଂ ବେଳେ ବେଳେ ସେମାନେ ନିଜ ଖମାରର ତତ୍ତ୍ୱାବଧାନ କରୁଥିଲେ ସେମାନଙ୍କ ଅଧୀନସ୍ଥ ଅନ୍ୟାନ୍ୟ କୃଷକ କିମ୍ବା ଖମାରର ଭୃତ୍ୟମାନଙ୍କ ସାହାଯ୍ୟରେ ।

କୃଷିକାର୍ଯ୍ୟରେ ଶ୍ରମ ବାହିନୀର ମୂଳ ଏକକଟି ଥିଲା ପରିବାର । ଗ୍ରାମୀଣ ସମାଜ ଓ ସେଇ ସମାଜର ସବଠାରୁ ବିଶିଷ୍ଟ ସଦସ୍ୟମାନଙ୍କୁ ନେଇ ଗଠିତ ଗ୍ରାମ ପରିଷଦର ଅସ୍ତିତ୍ୱ ଅନେକ ସମୟରେ ବିଭିନ୍ନ ପ୍ରାଚୀନ ଲିଖିତ ଗ୍ରନ୍ଥରେ ଦେଖିବାକୁ ମିଳେ । ମନେ ହୁଏ, ଉତ୍ତର ଭାରତର ଗୋଟିଏ କରି କିମ୍ବା କେତୋଟି ଗ୍ରାମ ଏହିସବୁ ଗ୍ରାମୀଣ ସମାଜର ଅନ୍ତର୍ଭୁକ୍ତ ଥିଲା, ଏବଂ ଏହି ଗ୍ରାମଗୁଡ଼ିକ ପୁଣି ପରସ୍ପର ସହିତ ଯୁକ୍ତ ରହୁଥିଲେ ଆଲୋଚ୍ୟ ବସତିର ପ୍ରତିଷ୍ଠାତାଙ୍କ ସହିତ, ଅଥବା ଆଲୋଚ୍ୟ ଏଲାକାରେ ବସତି ସ୍ଥାପନକାରୀ ବିଜେତା ଉପଜାତି ସହିତ କିଛି ପରିମାଣରେ ଯୌଥ ଆତ୍ମୀୟତା ସୂତ୍ରରେ । ଦକ୍ଷିଣ ଭାରତରେ ଚତୁର୍ଦ୍ଦଶ ବା ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଗ୍ରାମୀଣ ସମାଜଗୁଡ଼ିକର ଆକାର ଥିଲା ବଡ଼ ବଡ଼ । ଏସବୁ ଗଠିତ ହେଉଥିଲା କେଇ କୋଡ଼ି, କେଇ ଶହ ଏବଂ ଏପରିକି କେଇ ହଜାର ଗ୍ରାମକୁ ଘେନି । ଯଦିଓ ସେଇ ସୁଦୂର ନବମ କିମ୍ବା ଦଶମ ଶତାବ୍ଦୀରୁ

ଏହି ଧରଣର ପ୍ରକାଣ୍ଡ ଗ୍ରାମୀଣ ସମାଜଗୁଡ଼ିକର ସଂହତ ଅର୍ଥନୈତିକ ଏକକ ହିସାବରେ ଆଉ ଅସ୍ତିତ୍ୱ ନଥିଲା, ତେବେ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ଶକ୍ତି କେନ୍ଦ୍ର ହିସାବରେ ଏସବୁ ରହି ଯାଇଥିଲା । ଏଭଳି କେତେକ ସମାଜରେ ନିର୍ଦ୍ଦିଷ୍ଟ ସମୟର ବ୍ୟବଧାନରେ ଜମି ପୁନର୍ବଣ୍ଟିତ ହେଉଥିଲା, ପୁଣି ଅନ୍ୟ କେତେକ ସ୍ଥାନରେ ଚାଷ ଯୋଗ୍ୟ ଜମି ଚିରସ୍ଥାୟୀ ଭିତ୍ତିରେ ପରିବାରଗୁଡ଼ିକ ମଧ୍ୟରେ ଭାଗ କରି ଦିଆଯାଉଥିଲା । ମନେ ହୁଏ, ଏହିସବୁ ଗ୍ରାମୀଣ ସମାଜ ତା ଅଧୀନସ୍ଥ ସମସ୍ତ ପତିତ ଜମିକୁ ସମଷ୍ଟିଗତ ଭାବେ ନିୟନ୍ତ୍ରଣ କରୁଥିଲା, ବ୍ୟକ୍ତିଗତ ସଦସ୍ୟମାନଙ୍କ ଜମିର ରାଜସ୍ୱ ପରିମାଣ ନିର୍ଦ୍ଦିଷ୍ଟ କରି ଦେଉଥିଲା ଏବଂ, ସମ୍ଭବତଃ, କେତେକ ସଂଖ୍ୟକ ଭୃତ୍ୟ ଓ କାରିଗରଙ୍କୁ ପୋଷଣ କରୁଥିଲା । ଦକ୍ଷିଣ ଭାରତର ଏହି ଗ୍ରାମୀଣ ସମାଜସବୁ, ସମ୍ଭବତଃ, ଦେଶର ଉତ୍ତରାଞ୍ଚଳର ସମାଜଗୁଡ଼ିକ ଠାରୁ ବେଶି ଅର୍ଥବାନ୍ ଏବଂ ପ୍ରତିପତ୍ତିଶାଳୀ ଥିଲେ । ଏକଥା ଅନ୍ତତଃ ଠିକ୍ ଯେ, ପ୍ରଥମୋକ୍ତ ସମାଜଗୁଡ଼ିକର ବିଭିନ୍ନ ସିଦ୍ଧାନ୍ତ ଓ ନିର୍ଦ୍ଦେଶ ଅପେକ୍ଷାକୃତ ଘନ ଘନ ପ୍ରସ୍ତର ଗାତ୍ରରେ ଖୋଦାଇ କରାଯାଉଥିଲା, କିମ୍ବା ଅନ୍ୟାନ୍ୟ ମଜବୁତ୍ ଉପାଦାନ ଉପରେ ଖୋଦେଇ କରି କିମ୍ବା ଲେଖିକି ରଖାଯାଉଥିଲା । ସମସ୍ତ ଭାରତୀୟ ଗ୍ରାମୀଣ ସମାଜରେ ଅପେକ୍ଷାକୃତ ବିଶିଷ୍ଟ ବ୍ୟକ୍ତିମାନେ (ସାଧାରଣତଃ ସମାଜର ମୁଖିଆ ଓ ଲିପିକାର) ବିଶେଷ ସୁବିଧାଭୋଗୀ ପଦ ଲାଭ କରୁଥିଲେ । ମନେ ହୁଏ, ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତଗୁଡ଼ିକ ଗ୍ରାମ ପରିଷଦର ଅଧିବେଶନରେ ଗୃହୀତ ହେଉଥିଲା । ତେବେ, କ୍ରମଶଃ ଅଧିକରୁ ଅଧିକ କ୍ଷମତା କେନ୍ଦ୍ରୀଭୂତ ହେଉଥିଲା ସମାଜ ଅଧୀନସ୍ଥ ଗ୍ରାମର ମୁଖିଆ ଏବଂ ଲିପିକାରମାନଙ୍କ ହାତରେ । ଗ୍ରାମୀଣ ସମାଜର ଉଚ୍ଚ ସ୍ତରଗୁଡ଼ିକର ଲୋକେ କାର୍ଯ୍ୟତଃ ଛୋଟ ଛୋଟ ସାମନ୍ତବାଦୀ ପ୍ରଭୁରେ ପରିଣତ ହେଉଥିଲେ ଏବଂ ସେମାନଙ୍କ ଜମିକୁ ସେମାନଙ୍କ ଉପରେ ନିର୍ଭରଶୀଳ ଲୋକେ ଚାଷବାସ କରି ଦେଉଥିଲେ ।

## ସାମନ୍ତବାଦୀ ଯୁଗର ପ୍ରାରମ୍ଭିକ କାଳ

ଭାରତର ପ୍ରାଚୀନ କାଳରେ ସାମନ୍ତବାଦୀ ଶୋଷଣର କେତେକ ଧରଣ ଓ ବୈଶିଷ୍ଟ୍ୟ ଦେଖିବାକୁ ମିଳେ । ଏକ ଦିଗରେ ଦାସ ନୁହନ୍ତି, ଅଥଚ ଗୋଟି ଶ୍ରମିକମାନେ ବେଶି ଭାଗ ଜମି ଚାଷ କଲା ବେଳେ, ଅନ୍ୟ ଦିଗରେ, "ରାଷ୍ଟ୍ରର ସେବାର" ବିନିମୟରେ ଅନ୍ୟମାନଙ୍କୁ ଜମି ମଧ୍ୟ ଦାନ କରାଯାଉଥିଲା । ଷଷ୍ଠ ଏବଂ ସପ୍ତମ ଶତାବ୍ଦୀରେ ଏହି ଧରଣର ଭୂମିଦାନର ପଟ୍ଟା ହିସାବରେ ବ୍ୟବହୃତ ଛୋଟ ଛୋଟ ତାମ୍ର ଫଳକର ସଂଖ୍ୟା ଲକ୍ଷଣୀୟ ଭାବେ ବୃଦ୍ଧି ପାଇଥିଲା । ସାମନ୍ତବାଦୀ ସଂପର୍କର ବିକାଶର ଧାରାକୁ ଅନୁଧ୍ୟାନ କରିବା ଦିଗରେ ଏହିସବୁ ଫଳକ ଇତିହାସବିଦ୍‌ମାନଙ୍କ କାର୍ଯ୍ୟରେ ଲାଗେ । ଏସବୁରେ ଜନସାଧାରଣଙ୍କ ନିକଟରୁ ଆଦାୟ କରାଯାଉଥିବା ବିଭିନ୍ନ ରାଜକରର କ୍ରମବର୍ଦ୍ଧମାନ ବିଭିନ୍ନତାର ସଂଖ୍ୟା ଓ ତାଲିକା ମିଳିଥାଏ : ଏହିସବୁ ତାମ୍ର ଫଳକ ଲାଭ କରିଥିବା ବ୍ୟକ୍ତିମାନେ ସେସବୁ ରାଜକର ଦେବାରୁ ଅବ୍ୟାହତି ପାଉଥିଲେ, କିମ୍ବା ଅନୁମତି ପାଉଥିଲେ, ସେସବୁ କର ଆଦାୟ କରି ନିଜର କାମରେ ଲଗାଇବା ପାଇଁ । କ୍ରମଶଃ ଅଧିକରୁ ଅଧିକ ଏବଂ ଘନ ଘନ ନିରାପତ୍ତାଦାନର ଛକବନ୍ଧା ଆଶ୍ୱାସ ମଧ୍ୟ ଏହିସବୁ ତାମ୍ର ଫଳକରେ ଦେଖିବାକୁ ମିଳେ— ଯେଉଁଠି "ଚଟ" ଓ "ଭଟଙ୍କୁ" (ସ୍ପଷ୍ଟତଃ ମନେ ହୁଏ, ରାଜ କର୍ମଚାରୀ ଓ ସେନାବାହିନୀକୁ) ଏହିସବୁ ପ୍ରଦତ୍ତ ଜମିରେ ପ୍ରବେଶ କରିବାକୁ ନିଷିଦ୍ଧ କରାଯାଇଛି । ସାମନ୍ତବାଦୀ ଭୂସ୍ୱାମୀମାନେ

କ୍ରମଶଃ ପ୍ରଜାମାନଙ୍କର ନ୍ୟାୟ ଅନ୍ୟାୟ ବିଗ୍ଭର କରିବାର ଅଧିକାର ଲାଭ କରିଥିଲେ ଏବଂ କୃଷକମାନେ କ୍ରମଶଃ ଅଧିକରୁ ଅଧିକ ସେମାନଙ୍କ ପ୍ରଭୁମାନଙ୍କ ଉପରେ ନିର୍ଭରଶୀଳ ହୋଇ ପଡ଼ିଥିଲେ । ଅନେକ ସମୟରେ ବଡ଼ ବଡ଼ ସାମନ୍ତବାଦୀ ଭୂସ୍ୱାମୀ (ଯେଉଁମାନଙ୍କ ପଦବୀ ଦେଖି ମନେ ହୁଏ ଯେ, ସେମାନେ ରାଜାର ସ୍ଥାନୀୟ ପ୍ରତିନିଧି ଓ ଶାସକ ରୂପେ କାର୍ଯ୍ୟ କରୁଥିଲେ) ସେମାନଙ୍କ ତାଲୁକର ଗୋଟିଏ ଗୋଟିଏ ଅଂଶକୁ ରାଜାର ଅନୁମତି ନନେଇ ରାଜ ସେବାର ପୁରସ୍କାର ହିସାବରେ ଅନ୍ୟମାନଙ୍କୁ ଦାନ କରି ପାରୁଥିଲେ । ବେଳେ ବେଳେ, ଅବଶ୍ୟ, ରାଜାଙ୍କ ନାମରେ ଭୂମିଦାନ କରାଯାଉଥିଲା, ତେବେ ତାହା କରାଯାଉଥିଲା ଅପେକ୍ଷାକୃତ କମ୍ କ୍ଷମତାଶାଳୀ ସାମନ୍ତବାଦୀ ଭୂସ୍ୱାମୀଙ୍କ "ଅନୁରୋଧ" କ୍ରମେ ।

ସାମାଜିକ ଏବଂ ରାଜନୈତିକ ପରିସ୍ଥିତି ବିଗ୍ଭର କଲେ, ଏକଥା କହିବାକୁ ହୁଏ ଯେ, ରୋମ୍ ସାମ୍ରାଜ୍ୟର ପତନ ପରେ ୟୁରୋପରେ ଯେପରି ବିରାଟ ଉତ୍‌ଥାନ ପତନ ଘଟି ଯାଇଥିଲା, ଭାରତରେ ମଧ୍ୟ ଯୁଗର ପ୍ରାରମ୍ଭରେ ସେପରି ଘଟି ନଥିଲା । ଭୂମଧ୍ୟସାଗରୀୟ ଦେଶଗୁଡ଼ିକ ସହିତ ବୈଦେଶିକ ବାଣିଜ୍ୟର ପରିମାଣ, ଅବଶ୍ୟ, ହ୍ରାସ ପାଇଥିଲା କ୍ରମଶଃ, ତେବେ ସେତେବେଳେ ମଧ୍ୟ ମିଶରରୁ ଚୀନ୍ ପର୍ଯ୍ୟନ୍ତ ପ୍ରାଚ୍ୟ ଦେଶଗୁଡ଼ିକକୁ ବିପୁଳ ପରିମାଣରେ ପଣ୍ୟ ରପ୍ତାନି କରାଯାଉଥିଲା । ଭାରତରୁ ସେତେବେଳେ ପ୍ରଧାନତଃ ରପ୍ତାନି ହେଉଥିଲା କାର୍ପାସ ବସ୍ତ୍ର, ଭାରତୀୟ କାରିଗରମାନଙ୍କ ଦ୍ୱାରା ନିର୍ମିତ ବିଭିନ୍ନ ଧରଣର ହସ୍ତଶିଳ୍ପ ଏବଂ ତତ୍‌ସହିତ ମସଲା, ହାତୀ ଦାନ୍ତ, ମୂଲ୍ୟବାନ ପ୍ରସ୍ତର ଏବଂ କେତେକ ଧରଣର ମୂଲ୍ୟବାନ କାଠ । ଭାରତକୁ ଆମଦାନି କରାଯାଉଥିବା ପଣ୍ୟ ମଧ୍ୟରେ ଥିଲା ରେଶମ, ସୁନା, ବିଳାସ ଦ୍ରବ୍ୟ, ଭାରତୀୟ ବସ୍ତ୍ର ପାଇଁ ରଙ୍ଗ ଏବଂ ପ୍ରଚୁର ପରିମାଣର ଘୋଡ଼ା । ଭାରତୀୟ ଜଳବାୟୁ ଏବଂ ଦାନା ଘୋଡ଼ା ପ୍ରଜନନ ପକ୍ଷରେ ଉପଯୋଗୀ ନଥିଲା ବୋଲି ଘୋଡ଼ା ଆମଦାନି କରାଯାଉଥିଲା ।

ପ୍ରଥମ ଖ୍ରୀଷ୍ଟାବ୍ଦ ଠାରୁ ଦକ୍ଷିଣ ପ୍ରାଚ୍ୟର ବହୁ ଦେଶରେ, ବିଶେଷ କରି ଯେଉଁସବୁ ଦେଶକୁ ଏବେ ମାଳୟ, ଇଣ୍ଡୋନେସିଆ ଓ ଇଣ୍ଡୋଚୀନ୍ କୁହାଯାଏ, ସେସବୁ ଠାରେ ଭାରତୀୟ ବଣିକମାନଙ୍କର ବସତି ଗଢ଼ି ଉଠିଥିଲା । ଭାରତର ସମୁଦ୍ରତଟ ରେଖାରେ ସେତେବେଳେ ମୁଣ୍ଡ ଟେକି ଉଠିଥିଲା ବହୁ ବନ୍ଦର ନଗରୀ : ଯଥା, ଭାରୁକଚ୍ଛ (ଆଧୁନିକ ବ୍ରୋଚ), ସୁରଥ (ଆଧୁନିକ ସୁରାଟ), ଶୂର୍ପାରକ (ଆଧୁନିକ ସୋପର), ଉରାୟୁର, ମଦୁରାଇ, କାଞ୍ଚିପୁରମ୍, ଆଦି । ଏହା ଛଡ଼ା ବାଣିଜ୍ୟିକ ସ୍ଥଳ ପଥରେ ଅନେକ ବଡ଼ ସହର ମଧ୍ୟ ଅବସ୍ଥିତ ଥିଲା : ଯଥା, ପଞ୍ଜାବରେ ତକ୍ଷଶିଳା, ଶାକଲା (ଶିଆଲକୋଟ୍) ଓ ପୁରୁଷପୁର (ପେଶଓ୍ୱାର); ଉତ୍ତର ଭାରତରେ କାନ୍ୟକୁବ୍‌ଜ (କନୌଜ) ଓ ସ୍ଥାନେଶ୍ୱର (ଥାନେଶ୍ୱର); ମଧ୍ୟ ଭାରତରେ ଉଜ୍‌ଜୟିନୀ ଏବଂ ଦକ୍ଷିଣ ଭାରତରେ ଏତାଦୃଶ ବହୁ ସହର ମଧ୍ୟରୁ ତିନୋଟି — ବାଟାପି, ତାଗାରା ଓ ପୈଥାନ । ଏହିସବୁ ସହର ଥିଲା ବଡ଼ ବଡ଼ ବାଣିଜ୍ୟ ଓ ଉତ୍ପାଦନ କେନ୍ଦ୍ର । ତେବେ ଏସବୁର ବହୁ ଅଧିବାସୀ କୃଷିକାର୍ଯ୍ୟରେ ନିଯୁକ୍ତ ଥିଲେ । ସହରର ସୀମା ମଧ୍ୟରେ ସେମାନେ ଗୃହପାଳିତ ପଶୁପଲ ରଖୁଥିଲେ ଏବଂ କୃଷି କ୍ଷେତରେ କାର୍ଯ୍ୟ କରୁଥିଲେ । ବଣିକମାନେ ବିଭିନ୍ନ ରକମର ପ୍ରଭାବଶାଳୀ ସମବାୟ ସଂଘ ସଂଗଠିତ କରୁଥିଲେ । ଏହିସବୁ ସଂଘ ଦେଶର ଅର୍ଥନୈତିକ ଜୀବନରେ ଏବଂ ଅପେକ୍ଷାକୃତ କମ୍ ମାତ୍ରାରେ ରାଜନୈତିକ ଜୀବନରେ ମଧ୍ୟ ବିଶିଷ୍ଟ ଭୂମିକା ପାଳନ କରୁଥିଲେ । ଯେଉଁସବୁ ପ୍ରାଚୀନ ଲିଖିତ ଉପାଦାନ ଏବେ

ମିଳେ, ସେସବୁକୁ ବିଚାର କଲେ ଜଣାଯାଏ ଯେ, ବଣିକମାନେ କାରିଗରମାନଙ୍କ ଠାରୁ ଅପେକ୍ଷାକୃତ ଧନବାନ ଓ ପ୍ରଭାବଶାଳୀ ଥିଲେ, ଅଧିକାଂଶ ସମୟରେ ଜାଗା ଜମି କିଣୁଥିଲେ ଏବଂ ମନ୍ଦିରଗୁଡ଼ିକୁ ବେଶ୍ ପରିମାଣର ଅର୍ଥ ଦାନ କରୁଥିଲେ । ସଂକ୍ଷେପରେ କହିବାକୁ ଗଲେ, ମଧ୍ୟଯୁଗର ସୂତ୍ରପାତ ବେଳକୁ ସହର ଜୀବନରେ ଅବକ୍ଷୟ ଆରମ୍ଭ ହୋଇ ନଥିଲା ।

ଏହି ଯୁଗରେ ଦେଶର ଆଭ୍ୟନ୍ତରୀଣ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ଭଟା ଦେଖା ଦେଇ ନଥିଲା । ଭାରତ ମଧ୍ୟରେ ସବୁଠାରୁ ସୁବିଧାଜନକ ବାଣିଜ୍ୟ ପଥ ଥିଲା ଗଙ୍ଗା ନଦୀ ଓ ତା'ର ଶାଖାପ୍ରଶାଖାଗୁଡ଼ିକ । ବଙ୍ଗ ଦେଶରୁ ଦକ୍ଷିଣ ଭାରତକୁ ପଣ୍ୟ ସମ୍ଭାର ନେଇ ସମୁଦ୍ର ଉପକୂଳରେ ଚାଲୁଥିବା ବୋଇତ ଓ ସ୍ଥଳ ପଥରେ ପଦବ୍ରଜରେ ଯିବା ଆସିବା ହେଉଥିଲା ।

ଦାକ୍ଷିଣାତ୍ୟର ଅଭ୍ୟନ୍ତରରେ ମଧ୍ୟ ବିଭିନ୍ନ ବାଣିଜ୍ୟ ପଥ ରହିଥିଲା ଏବଂ ସେସବୁ ଥିଲା ବଡ଼ ବଡ଼ ନଦୀ ମଧ୍ୟ ଦେଇ । ଏହା ଫଳରେ ବଡ଼ ବଡ଼ ବନ୍ଦରରୁ ଦେଶର ଅଭ୍ୟନ୍ତରକୁ ପଣ୍ୟ ସମ୍ଭାର ବହି ନେବାରେ ସୁବିଧା ହେଉଥିଲା । ତେବେ ଦେଶର ଆଭ୍ୟନ୍ତରୀଣ ଏହି ବାଣିଜ୍ୟ ବୈଦେଶିକ ବାଣିଜ୍ୟ ଭଳି ଏତେ ଉନ୍ନତ ନଥିଲା ।

# ଷଷ୍ଠ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଭାରତର ରାଜନୈତିକ ଇତିହାସ

ଅବିଚ୍ଛିନ୍ନ ବାଣିଜ୍ୟିକ ଯୋଗାଯୋଗ ଏବଂ ବନ୍ଦରଗୁଡ଼ିକ ବିକଶିତ ହୋଇ ଉଠିଥିବାରୁ ଭାରତର ବିଭିନ୍ନ ଅଞ୍ଚଳ ମଧ୍ୟ ଯୁଗର ପ୍ରାରମ୍ଭରେ ୟୁରୋପରେ ଯେପରି ଥିଲା, ସେପରି ପରସ୍ପର ଠାରୁ ବିଚ୍ଛିନ୍ନ ହୋଇ ପଡ଼ି ନଥିଲା । ଏହି ଯୁଗରେ ଭାରତରେ ୟୁରୋପ ଭଳି ଏତେ ସାଂସ୍କୃତିକ ଅବକ୍ଷୟ ଘଟି ନଥିଲା । ତେବେ ଭାରତରେ ମଧ୍ୟ ସାମନ୍ତବାଦୀ ସଂପର୍କର ଦୃଢ଼ୀକରଣ ଫଳରେ ବଡ଼ ବଡ଼ ରାଷ୍ଟ୍ର ସଂଘର ଅସ୍ତିତ୍ୱ ବିପନ୍ନ ହୋଇ ପଡ଼ିଥିଲା । ଏହା ପରିବର୍ତ୍ତେ ଛୋଟ ଛୋଟ ସାମନ୍ତବାଦୀ ରାଜ୍ୟ ମଧ୍ୟରେ ଦ୍ୱନ୍ଦ୍ୱ ଏବଂ ପ୍ରବଳ ସଂଘର୍ଷ ଏବଂ ଏହାର ପରିଣତି ସ୍ୱରୂପ ରାଜନୈତିକ ବିଖଣ୍ଡୀକରଣ ଦେଶର ସାଧାରଣ ଦୃଶ୍ୟ ପଟରେ ପରିଣତ ହୋଇଥିଲା । ଏହି ପରିସ୍ଥିତି ହେତୁ ଗୁପ୍ତ ସାମ୍ରାଜ୍ୟ ପରବର୍ତ୍ତୀ କାଳରେ "ଭାରତର ସ୍ୱର୍ଣ୍ଣ ଯୁଗ" ବୋଲି ବର୍ଣ୍ଣିତ ହୋଇଛି ।

ପଞ୍ଚମ ଶତାବ୍ଦୀର ଶେଷ ବେଳକୁ ଗୁପ୍ତ ସାମ୍ରାଜ୍ୟ ଦୁର୍ବଳ ହୋଇ ପଡ଼ିବାକୁ ଆରମ୍ଭ କରିଥିଲା ଏବଂ ହୂନ୍ ଉପଜାତିମାନଙ୍କର ବାରମ୍ବାର ଆକ୍ରମଣ ଦ୍ୱାରା ଶେଷକୁ ଏହି ସାମ୍ରାଜ୍ୟର ପତନ ଘଟିଥିଲା । ତେବେ ଖୋଦ ମଗଧରେ ଗୁପ୍ତ ରାଜବଂଶ କ୍ଷମତାରେ ଆସୀନ ଥିଲା ସପ୍ତମ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ । ଏପରିକି ୫୧୦ ଖ୍ରୀଷ୍ଟାବ୍ଦରେ ହୂନ୍ ରାଜ ତୋରମାନ୍ ପରାଜିତ ହୋଇଥିଲେ ଶେଷ ଗୁପ୍ତ ରାଜା ଭାନୁଗୁପ୍ତଙ୍କ ଦ୍ୱାରା ଯାହାଙ୍କ ସଂପର୍କରେ ଏପର୍ଯ୍ୟନ୍ତ ନିର୍ଭରଯୋଗ୍ୟ ତଥ୍ୟାଦି ମିଳିଥାଏ । ତେବେ, ଏକଥା ମଧ୍ୟ ଜଣାଯାଏ ଯେ, ୫୩୦ ଖ୍ରୀଷ୍ଟାବ୍ଦ ବେଳକୁ ରାଜା ମିହିରକୂଳଙ୍କ ଅଧୀନସ୍ଥ ହୂନ୍‌ମାନେ କେବଳ ଯେ ଉତ୍ତର-ପଶ୍ଚିମ ଭାରତରେ ରାଜତ୍ୱ କରୁଥିଲେ, ତା ନୁହେଁ, ମାଳବ

ଦେଶରେ ଏବଂ ଗଙ୍ଗା-ଯମୁନାର ଉପତ୍ୟକାରେ ବର୍ତ୍ତମାନର ଗୋଆଲିଅର ପର୍ଯ୍ୟନ୍ତ ସେମାନେ ରାଜ୍ୟ ବିସ୍ତାର କରିଥିଲେ । ପ୍ରାପ୍ତ ତଥ୍ୟାଦିରୁ ମନେ ହୁଏ, ରାଜା ମିହିରକୁଳ ଅତ୍ୟନ୍ତ ନୃଶଂସ ଆକ୍ରମଣକାରୀ ଥିଲେ । ଉତ୍ତର ଭାରତର ରାଜାଗଣ ତାଙ୍କ ବିରୁଦ୍ଧରେ ମିଳିତ ହୋଇ ଶକ୍ତି ସଂହତ କରିଥିଲେ ଏବଂ ୫୩୩ ଖ୍ରୀଷ୍ଟାବ୍ଦରେ ତାଙ୍କୁ ଶୋଚନୀୟ ଭାବେ ପରାଜିତ କରିଥିଲେ ।

ହୁନ୍ ଆକ୍ରମଣ ସମୟରେ ଯେଉଁସବୁ ଉପଜାତି ଭାରତରେ ପ୍ରବେଶ କରି ଏଣେ ତେଣେ ବସତି ସ୍ଥାପନ କରିଥିଲେ, ଭାରତ ଇତିହାସରେ ସେମାନେ ଗଭୀର ଦାଗ ରଖିଛନ୍ତି । ଏହିସବୁ ଉପଜାତି ଉତ୍ତର-ପଶ୍ଚିମ ଭାରତରେ ବସତି ସ୍ଥାପନ କରି ସ୍ଥାନୀୟ ଅଧିବାସୀମାନଙ୍କ ସହିତ ସାମାଜିକ ଭାବେ ମିଶି ଯାଇଥିଲେ । ଏମାନଙ୍କ ସହିତ ଗୁର୍ଜରମାନେ ଆସିଥିଲେ, ଏମାନେ ବସତି ସ୍ଥାପନ କରିଥିଲେ ପଞ୍ଜାବରେ, ସିନ୍ଧୁ ଦେଶ ଏବଂ ରାଜପୁତାନାରେ । ପରବର୍ତ୍ତୀ କାଳରେ ଏମାନଙ୍କ ମଧ୍ୟରୁ ଗୋଟିଏ ଅଂଶ ମାଳବରେ ପ୍ରବେଶ କରିଥିଲେ । ଭାରତର ଯେଉଁ ଅଞ୍ଚଳଟି ପରେ ଏମାନଙ୍କ ନାମରେ ପରିଚିତ ହୋଇଥିଲା, ସେଇ ଗୁଜରାଟରେ ସେମାନେ ଅନୁପ୍ରବେଶ କରିଥିଲେ । ହୁନ୍ ଏବଂ ଗୁର୍ଜରମାନଙ୍କ ସହିତ ସ୍ଥାନୀୟ ଅଧିବାସୀମାନଙ୍କର ଘନିଷ୍ଠ ସଂପର୍କ ଓ ବିବାହ ସଂପର୍କ ଗଢ଼ି ଉଠିବା ଫଳରେ ଯେଉଁ ଜାତିଗୋଷ୍ଠୀର ସୃଷ୍ଟି ହୋଇଥିଲା, ସେମାନେ ପରେ ପରିଚିତ ହୋଇଥିଲେ ରାଜପୁତ ନାମରେ ("ରାଜପୁତ" ଶବ୍ଦଟିର ଏକାଧିକ ଅର୍ଥ ଅଛି । ଏହା ଦ୍ୱାରା ଏକାଧାରରେ ଏକ ଜାତିଗୋଷ୍ଠୀ, କେତୋଟି ଉପଜାତି ଏବଂ ଏକ ବର୍ଣ୍ଣକୁ ବୁଝାଏ) ।

ସେଇ ସୁଦୂର ସପ୍ତମ ଶତାବ୍ଦୀରେ ସାମନ୍ତବାଦୀ ସାମାଜିକ ସଂପର୍କ ଦେଶର ଏହି ଅଞ୍ଚଳରେ ଦାନାବାନ୍ଧିବାକୁ ଆରମ୍ଭ କରିଥିଲା । ଅଷ୍ଟମ ଶତାବ୍ଦୀରେ ରାଜପୁତମାନେ ଗଙ୍ଗା ଉପତ୍ୟକାର ସମୃଦ୍ଧ ଅଞ୍ଚଳରେ ଏବଂ ମଧ୍ୟ ଭାରତରେ ପ୍ରବେଶ କରିଥିଲେ । ଭାରତ ଇତିହାସରେ ବହୁ ଶତାବ୍ଦୀ ଧରି ରାଜପୁତମାନେ ଏକ ଦୃଢ଼ବଦ୍ଧ ନୃକୁଳ ଗୋଷ୍ଠୀ ହିସାବରେ ତିଷ୍ଠି ପାରିଥିଲେ । ରାଜପୁତ ଅଧ୍ୟୁଷିତ ଭୂଖଣ୍ଡଗୁଡ଼ିକରେ ଯେଉଁ ସାମାଜିକ ସଂପର୍କ ଦାନାବାନ୍ଧି ଉଠିଥିଲା, ତା ସହିତ ଅନ୍ୟାନ୍ୟ ଅଞ୍ଚଳର ସାମାଜିକ ସଂପର୍କର କେତେକ ଦିଗରୁ ପାର୍ଥକ୍ୟ ଦେଖାଯାଏ । ରାଜପୁତ ସମାଜରେ ସାମନ୍ତବାଦୀ ସ୍ତରଗୁଡ଼ିକର କ୍ରମବିନ୍ୟାସ ଯେପରି ଜଟିଳତର, ସେଇଭଳି ସେଠାକାର ସାମନ୍ତ ଭୂସ୍ୱାମୀ ସଂକ୍ରାନ୍ତ ପରମ୍ପରା ଆଦି ମଧ୍ୟ ଅପେକ୍ଷାକୃତ ଅଧିକ ଦୃଢ଼ମୂଳ ।

ଷଷ୍ଠ ଶତାବ୍ଦୀର ଶେଷ ଆଡ଼କୁ ଉତ୍ତର ଭାରତର ବୃହତ୍ତମ ରାଷ୍ଟ୍ର ବୋଇଲେ ଥିଲା ଗୌଡ଼ ରାଜ୍ୟ (ଉତ୍ତର ଏବଂ ପଶ୍ଚିମ ବଙ୍ଗ), ରାଜଧାନୀ କନୌଜ ସମେତ ମୌଖରୀ ରାଜ୍ୟ (ଦୋୟାବ୍ ବା ଗଙ୍ଗା – ଯମୁନାର ମଧ୍ୟବର୍ତ୍ତୀ ସଂକୀର୍ଣ୍ଣ ଭୂଖଣ୍ଡ) ଏବଂ ରାଜଧାନୀ ସ୍ଥାନେଶ୍ୱର ସମେତ ପୁଷ୍ୟଭୂତି ରାଜ୍ୟ (ଉତ୍ତର ଦୋୟାବ୍, ବର୍ତ୍ତମାନ ଦିଲ୍ଲୀର ଚତୁର୍ପାର୍ଶ୍ୱସ୍ଥ ଅଞ୍ଚଳ ଏବଂ ସିର୍‌ହିନ୍ଦ୍) । ଏହି ତିନୋଟି ରାଜ୍ୟ ଅନବରତ ନିଜ ନିଜ ମଧ୍ୟରେ ଯୁଦ୍ଧ ବିଗ୍ରହରେ ଲିପ୍ତ ରହୁଥିଲେ । ଗୌଡ଼ର ରାଜା ପ୍ରଥମ ଶଶାଙ୍କ (ଷଷ୍ଠ ଶତାବ୍ଦୀର ଶେଷରୁ ସପ୍ତମ ଶତାବ୍ଦୀର ତୃତୀୟ ଦଶକ ପର୍ଯ୍ୟନ୍ତ ସେ ରାଜତ୍ୱ କରିଥିଲେ) ମଗଧ ଏବଂ ପ୍ରୟାଗ ପର୍ଯ୍ୟନ୍ତ ପଶ୍ଚିମର ସମଗ୍ର ଭୂଭାଗ ଜୟ କରି ନେଇଥିଲେ, ପୂର୍ବ ଦିଗରେ ସେ ଅଧିକାର କରିଥିଲେ ମହେନ୍ଦ୍ରଗିରି ନାମକ ପର୍ବତ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ (ବର୍ତ୍ତମାନ ଏହା ଓଡ଼ିଶା ରାଜ୍ୟ ନାମରେ ପରିଚିତ) । ମୌଖରୀମାନଙ୍କ ବିରୁଦ୍ଧରେ ଶଶାଙ୍କ ମାଳବ ରାଜାଙ୍କ ସହିତ ମୈତ୍ରୀ ବନ୍ଧନରେ ଆବଦ୍ଧ ହୋଇଥିଲେ । ଅନ୍ୟ ଦିଗରେ, ମୌଖରୀମାନେ ପୁଷ୍ୟଭୂତିମାନଙ୍କ ରାଜାଙ୍କ

ସମର୍ଥନ ଲାଭ କରିଥିଲେ, କିନ୍ତୁ ଯୁଦ୍ଧରେ ସେମାନେ ବିଜିତ ହୋଇଥିଲେ । ପରେ ପୁଷ୍ୟଭୂତି ରାଜାଙ୍କ କନିଷ୍ଠ ଭ୍ରାତା ହର୍ଷବର୍ଦ୍ଧନ ବା ହର୍ଷ ସିଂହାସନ ଆରୋହଣ କରିଥିଲେ ।

କିମ୍ବଦନ୍ତୀ ଅନୁଯାୟୀ ହର୍ଷବର୍ଦ୍ଧନ କୋଡ଼ିଏ ହଜାର ଅଶ୍ୱାରୋହୀ, ପଚାଶ ହଜାର ପଦାତିକ ଓ ପାଞ୍ଚ ହଜାର ହାତୀ ବିଶିଷ୍ଟ ଏକ ବିରାଟ ସେନାବାହିନୀ ଗଢ଼ି ତୋଳିଥିଲେ । ତା'ପରେ ଛଅ ବର୍ଷ ମଧ୍ୟରେ ହର୍ଷବର୍ଦ୍ଧନ କାର୍ଯ୍ୟତଃ ସମଗ୍ର ଉତ୍ତର ଭାରତକୁ ଜୟ କରି ନେବାକୁ ସମର୍ଥ ହୋଇଥିଲେ । ହର୍ଷଙ୍କ ଜୀବନୀକାର ବାଣଙ୍କ ମତରେ, "ସେତେବେଳେ ହାତୀପୃଷ୍ଠର ହାଉଦା ଓ ସୈନ୍ୟମାନଙ୍କର ଶିରସ୍ତ୍ରାଣ ଥରେ ହେଲେ ଖୋଲା ହୋଇ ନଥିଲା ।" ତେବେ, ଯାହା ମନେ ହୁଏ, ତାଙ୍କ ଦାକ୍ଷିଣାତ୍ୟ ଅଭିଯାନର ପରିଣତି ନର୍ମଦା ତୀରବର୍ତ୍ତୀ ପଶ୍ଚିମ ଚାଲୁକ୍ୟ ରାଜ୍ୟର ଅଧିପତି ଦ୍ୱିତୀୟ ପୁଲକେଶୀନ୍‌ଙ୍କ ହାତରେ ପରାଜୟ ମଧ୍ୟ ଦେଇ ଘଟିଥିଲା । ତା'ପରେ ପୁଲକେଶୀନ୍ କିନ୍ତୁ ଆଉ ଉତ୍ତର ଆଡ଼କୁ ଅଗ୍ରସର ହେବାକୁ ଚେଷ୍ଟା କରି ନଥିଲେ । ରାଜା ଶଶାଙ୍କଙ୍କ ମୃତ୍ୟୁ ପରେ ହର୍ଷବର୍ଦ୍ଧନ ମଗଧ ଏବଂ ବଙ୍ଗ ଦେଶ ଜୟ କରି ନେଇଥିଲେ । ଜୀବନର ପରବର୍ତ୍ତୀ ବର୍ଷଗୁଡ଼ିକ ସେ କଟେଇଥିଲେ ଅଧିକୃତ ଅଞ୍ଚଳଗୁଡ଼ିକର ଶାସନ ବ୍ୟବସ୍ଥା ଓ ଅର୍ଥନୈତିକ ଉନ୍ନତି ସାଧନ ଦିଗରେ ।

ତ୍ରୟୋଦଶ ଶତାବ୍ଦୀର ସୂତ୍ରପାତ ପୂର୍ବରୁ ହର୍ଷବର୍ଦ୍ଧନଙ୍କ ରାଜ୍ୟ ହିଁ ଥିଲା ଭାରତର ଶେଷ ସାମ୍ରାଜ୍ୟ, ଯେଉଁଥିରେ ଭାରତ ଉପମହାଦେଶର ଏକ ପ୍ରଧାନ ଅଂଶ ଅନ୍ତର୍ଭୁକ୍ତ ଥିଲା । ତେବେ ଏହି ସାମ୍ରାଜ୍ୟର ବିଭିନ୍ନ ଅଂଶ ମଧ୍ୟରେ ଯୋଗାଯୋଗ ଗୁପ୍ତ ସାମ୍ରାଜ୍ୟ ଅମଳଠାରୁ ଦୁର୍ବଳତର ଥିଲା । ସାମ୍ରାଜ୍ୟର ସାମାନ୍ୟ ଏକ ଅଂଶ ଥିଲା କେନ୍ଦ୍ରର ପ୍ରତ୍ୟକ୍ଷ ଅଧୀନ ଏବଂ ବାକି ଅଧିକାଂଶ ଅଂଶକୁ ଶାସନ କରୁଥିଲେ ସାମନ୍ତ ରାଜପୁରୁଷମାନେ । ଆଭ୍ୟନ୍ତରୀଣ ରାଜନୀତି ପରିଚାଳନା ବିଷୟରେ ଏହି ସାମନ୍ତ ରାଜାମାନଙ୍କର କ୍ଷମତା ଥିଲା ଉଲ୍ଲେଖଯୋଗ୍ୟ । ତା'ଛଡ଼ା ହର୍ଷଙ୍କ ସାମ୍ରାଜ୍ୟର ସୀମାନ୍ତ ଉତ୍ତର ଭାରତ ଅତିକ୍ରମ କରି ଆଉ ବିସ୍ତାର ଲାଭ କରି ନଥିଲା ଏବଂ ମାଳବ ଓ ରାଜପୁତାନାର କେତେକାଂଶ ସ୍ୱାଧୀନ ହୋଇ ଯାଇଥିଲା ।

ହର୍ଷବର୍ଦ୍ଧନଙ୍କ ଦିଗ୍‌ବିଜୟ ଏବଂ ଶାସନ ପରିଚାଳନାର କାହିଁ କାହାଣୀ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ସଂରକ୍ଷିତ ହୋଇଛି ବାଣଙ୍କ ଲିଖିତ ପ୍ରଶସ୍ତିମୂଳକ ଇତିକଥା "ହର୍ଷଚରିତ" ଏବଂ ଚୀନ୍ ଦେଶର ବୌଦ୍ଧ ପରିବ୍ରାଜକ ୟୁଏନ୍ ଚ୍ୱାଙ୍ଗ୍‌ଙ୍କ ବିବରଣୀରେ । ହର୍ଷଙ୍କ ରାଜତ୍ୱକାଳରେ ୟୁଏନ୍ ଚ୍ୱାଙ୍ଗ୍ ଭାରତ ପରିଭ୍ରମଣ କରିଥିଲେ । ବାଣଙ୍କ ବିବରଣୀ ଅନୁଯାୟୀ ହର୍ଷଙ୍କ ସାମ୍ରାଜ୍ୟରେ ଭୂମିରାଜସ୍ୱର ପରିମାଣ ଥିଲା ଉତ୍ପନ୍ନ ଫସଲର ଏକ ଷଷ୍ଠାଂଶ । ଏହା ଛଡ଼ା ଆଉ କେତେକ ଧରଣର ଆଭ୍ୟନ୍ତରୀଣ ଶୁଳ୍କ ଓ ବଜାରରୁ ଆଦାୟ ହେଉଥିବା ଖଜଣା ଦ୍ୱାରା ରାଜକୋଷକୁ ପରିପୂର୍ଣ୍ଣ କରାଯାଉଥିଲା ।

ହର୍ଷଙ୍କ ପୂର୍ବପୁରୁଷମାନେ ଶୈବଧର୍ମାବଲମ୍ବୀ ହେଲେ ମଧ୍ୟ ହର୍ଷ ନିଜେ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ । ସେ ପ୍ରଚୁର ଅର୍ଥ, ସମୟ ଏବଂ ସାମର୍ଥ୍ୟ ପ୍ରଦାନ କରିଥିଲେ ବହୁ ବୌଦ୍ଧ ବିହାର ନିର୍ମାଣ କରିବାରେ । ତାଙ୍କ ରାଜତ୍ୱକାଳରେ ନାଳନ୍ଦାର (ଆଧୁନିକ ପାଟଣା ସହର ନିକଟରେ) ପ୍ରକାଣ୍ଡ ବୌଦ୍ଧ ବିହାର ଓ ବିଶ୍ୱବିଦ୍ୟାଳୟଟିର ଖ୍ୟାତି ଏବଂ ପ୍ରତିପତ୍ତି ଭାରତର ସୀମା ବାହାରେ ବହୁଦୂର ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା । ହଜାର ହଜାର ଭିକ୍ଷୁ ଛାତ୍ର ସେଠାରେ ବାସ କରୁଥିଲେ ଏବଂ ଶିକ୍ଷା ଲାଭ କରୁଥିଲେ । ନାଲନ୍ଦାର ବୌଦ୍ଧ ବିଦ୍ୟାଳୟର ଭବନଗୁଡ଼ିକ ଥିଲା ବହୁ ତଳ ବିଶିଷ୍ଟ ଏହି ବିଦ୍ୟାଳୟ ଏବଂ ବାସଗୃହଗୁଡ଼ିକ ଏକ ବିଶାଳ ଅଞ୍ଚଳ ବ୍ୟାପୀ ଅବସ୍ଥିତ ଥିଲା । ତେବେ

ସେତେବେଳକୁ ବୌଦ୍ଧ ଧର୍ମର ପ୍ରଭାବ ସ୍ପଷ୍ଟତଃ କ୍ଷୟ ପାଇବାକୁ ଆରମ୍ଭ କରିଥିଲା ଏବଂ ଶିବ, ବିଷ୍ଣୁ ଓ ସୂର୍ଯ୍ୟ ଦେବତାଙ୍କ ଭଳି ବ୍ରାହ୍ମଣ୍ୟ ଧର୍ମର ଦେବତାମାନେ ଅଧିକ ଜନପ୍ରିୟ ହୋଇ ଉଠିଥିଲେ ।

ହର୍ଷଙ୍କ ସାମ୍ରାଜ୍ୟ ପ୍ରାୟ ତିରିଶ ବର୍ଷ କାଳ ତିଷ୍ଠି ରହିଥିଲା । ତାଙ୍କ ମୃତ୍ୟୁ ପରେ ତାଙ୍କ ସାମ୍ରାଜ୍ୟ ଖଣ୍ଡବିଖଣ୍ଡ ହୋଇ ପଡ଼ିଥିଲା ଏବଂ ତା'ପରେ ବହୁ ଶତାବ୍ଦୀ ଧରି ଭାରତ ସାରା ବହୁ ସଂଖ୍ୟକ ଛୋଟ ଛୋଟ ରାଜ୍ୟ ବିରାଜ କରିଥିଲା । ଏହିସବୁ ରାଷ୍ଟ୍ର ମଧ୍ୟରୁ କେତେକ ରାଜ୍ୟ ମୋଟାମୋଟି ବଡ଼ ଥିଲେ ମଧ୍ୟ କୌଣସିଟି ମୌର୍ଯ୍ୟ ଓ ଗୁପ୍ତ ସାମ୍ରାଜ୍ୟ ଭଳି ଭାରତୀୟ ଉପମହାଦେଶର ଅଧିକାଂଶ ଅଞ୍ଚଳ ବ୍ୟାପୀ ନଥିଲା । ଏହିସବୁ ରାଜ୍ୟ ପରସ୍ପର ସହିତ ଯୁଦ୍ଧ ବିଗ୍ରହରେ ଲିପ୍ତ ରହୁଥିଲେ, କିମ୍ବା ବେଳେ ବେଳେ ନୂଆ କରି ସଂଘର୍ଷରେ ଲିପ୍ତ ହେବା ପୂର୍ବରୁ ସାମରିକ ଓ ସ୍ୱଳ୍ପକାଳୀନ ସନ୍ଧି ଚୁକ୍ତି କରୁଥିଲେ । ଏହି ଯୁଗର ବିଚିତ୍ର ଘଟଣାବଳୀ ଓ ବିଚିତ୍ର ଦୃଶ୍ୟପଟର ବର୍ଣ୍ଣନା ଦେବା ଅତ୍ୟନ୍ତ କଠିନ କାର୍ଯ୍ୟ । ତେଣୁ ଆମେ ସବୁଠାରୁ ପରିଚିତ ବିଭିନ୍ନ ନାମ ଓ ଘଟଣାର ସଂକ୍ଷିପ୍ତ ବର୍ଣ୍ଣନା ମଧ୍ୟରେ ନିଜକୁ ସୀମିତ ରଖିବୁ ।

ଏହି ସମୟରେ ଦକ୍ଷିଣ ଭାରତରେ ଯେଉଁ ପ୍ରଧାନ ରାଜ୍ୟଗୁଡ଼ିକ ସର୍ବଦା ନିଜ ନିଜ ମଧ୍ୟରେ ଯୁଦ୍ଧବିଗ୍ରହରେ ଲିପ୍ତ ରହୁଥିଲେ, ସେଗୁଡ଼ିକ ହେଲେ ପଶ୍ଚିମ ଚାଲୁକ୍ୟ ରାଜ୍ୟ (ଏହାର ରାଜଧାନୀ ଥିଲା ବାତାପି; ରାଜା ଦ୍ୱିତୀୟ ପୁଲକେଶୀନ୍ ହର୍ଷବର୍ଦ୍ଧନଙ୍କୁ କେତୋଟି ଯୁଦ୍ଧରେ ପରାସ୍ତ କଲା ପରେ ଚାଲୁକ୍ୟମାନେ ପରାକ୍ରାନ୍ତ ହୋଇ ଉଠିଥିଲେ), ପଲ୍ଲବ ରାଜ୍ୟ ଓ ପାଣ୍ଡ୍ୟ ରାଜ୍ୟ । ପୁଲକେଶୀନ୍ ସ୍ୱୟଂ ସମ୍ରାଟ ଉପାଧି ଗ୍ରହଣ କରିଥିଲେ ଏବଂ ଗୁଜରାଟ ଓ ପୂର୍ବ ଦାକ୍ଷିଣାତ୍ୟ ଅଞ୍ଚଳର ଅଧିପତି ତାଙ୍କର ଭ୍ରାତୃଦ୍ୱୟ ପୁଲକେଶୀନ୍‌ଙ୍କ ସାର୍ବଭୌମତ୍ୱକୁ ମାନି ନେଇଥିଲେ । କିନ୍ତୁ ଇତି ମଧ୍ୟରେ ପଲ୍ଲବ (ରାଜଧାନୀ କାଞ୍ଚିପୁରମ୍) ଓ ପାଣ୍ଡ୍ୟ ରାଜ୍ୟ (ରାଜଧାନୀ ମଦୁରାଇ) ଚାଲୁକ୍ୟ ରାଜ୍ୟ ଆକ୍ରମଣ କରିଥିଲେ । ପାଣ୍ଡ୍ୟମାନେ କ୍ରମଶଃ ଏକ ପ୍ରକାଣ୍ଡ ନୌବାହିନୀ ଗଢ଼ି ତୋଳିଥିଲେ ଏବଂ ଏହା ଫଳରେ ବେଳେ ବେଳେ ସେମାନେ ସମର୍ଥ ହୋଇଥିଲେ ସମଗ୍ର ସିଂହଳ ଦ୍ୱୀପ ଉପରେ କର୍ତ୍ତୃତ୍ୱ ପ୍ରତିଷ୍ଠା କରିବାକୁ । ୬୪୦ ଖ୍ରୀଷ୍ଟାବ୍ଦରେ ପଲ୍ଲବମାନେ ଚାଲୁକ୍ୟମାନଙ୍କୁ ଯୁଦ୍ଧରେ ଶୋଚନୀୟ ଭାବେ ପରାସ୍ତ କରିଥିଲେ ଏବଂ ରାଜଧାନୀ ଅବରୁଦ୍ଧ ଥିଲା ବେଳେ ଦ୍ୱିତୀୟ ପୁଲକେଶୀନ୍ ନିହତ ହୋଇଥିଲେ । ତେବେ ପୁଲକେଶୀନ୍‌ଙ୍କ ସିଂହାସନର ଉତ୍ତରାଧିକାରୀଗଣ ତାଙ୍କ ରାଜ୍ୟର ବୃହତ୍ତର ଏକ ଅଂଶ ଉପରେ କର୍ତ୍ତୃତ୍ୱ ବଜାୟ ରଖିବାକୁ ସମର୍ଥ ହୋଇଥିଲେ ଏବଂ ଏକାଧିକବାର ଦକ୍ଷିଣକୁ ସୈନ୍ୟ ଚାଳନା କରି ନୂଆ ନୂଆ ଭୂଖଣ୍ଡ ଅଧିକାର କରିଥିଲେ ।

ଭାରତୀୟ ସଂସ୍କୃତିକୁ ପଲ୍ଲବମାନେ ଉଲ୍ଲେଖନୀୟ ଭାବେ ପ୍ରଭାବିତ କରିଥିଲେ । ସମୁଦ୍ର କୂଳବର୍ତ୍ତୀ ମହାବଳୀପୁରମ୍‌ର ପାହାଡ଼କୁ କାଟି ସେମାନେ ଅନେକ ମନ୍ଦିର ନିର୍ମାଣ କରିଥିଲେ । ସେଠାକାର ମନ୍ଦିର ସମାହାରର ସମଗ୍ର ଭିତ୍ତି ଉପରେ ଯେଉଁସବୁ ଭାସ୍କର୍ଯ୍ୟ ମୂର୍ତ୍ତି ଓ ବାସରେଲିଫ୍ ଖୋଦାଇ ସମେତ ଯେଉଁ ସ୍ଥାପତ୍ୟ ଶୈଳୀ ପ୍ରୟୋଗ କରାଯାଇଛି, ତା'ର ପ୍ରଭାବ ପରେ ସାରା ଦାକ୍ଷିଣାତ୍ୟରେ ପରିବ୍ୟାପ୍ତ ହୋଇଥିଲା । ପଲ୍ଲବମାନଙ୍କ ରାଜ୍ୟ ସାମୁଦ୍ରିକ ପଥରେ ବ୍ୟାପକ ଭାବେ ବୈଦେଶିକ ବାଣିଜ୍ୟରେ ଲିପ୍ତ ଥିବା ହେତୁ ଏହି ସ୍ଥାପତ୍ୟ ଶୈଳୀ ଦକ୍ଷିଣ-ପୂର୍ବ ଏସିଆର ବହୁ ଦେଶର ଶିଳ୍ପ ଶୈଳୀ ଉପରେ ଛାପ ପକାଇଥିଲା । ଏବେ ଯେଉଁସବୁ ଦେଶକୁ ଇଣ୍ଡୋନେସିଆ ଓ କାମ୍ବୋଡିଆ କୁହାଯାଏ, ସେଇସବୁ ଦେଶରେ ଏହି ସମୟରେ ଦକ୍ଷିଣ ଭାରତୀୟ ବଣିକମାନଙ୍କର ବଡ଼ ବଡ଼

ବସତି ଗଢ଼ି ଉଠିଥିଲା । ପଶ୍ଚିମ ଚାଲୁକ୍ୟ ରାଜ୍ୟ ଅଷ୍ଟମ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ଅସ୍ତିତ୍ୱ ବଜାଏ ରଖି ପାରିଥିଲା : ଏହି ସମୟରେ ଚାଲୁକ୍ୟ ରାଜ୍ୟ ଦ୍ୱିତୀୟ କୀର୍ତ୍ତିବର୍ମନ ପରାଜିତ ହୋଇଥିଲେ ମହାରାଷ୍ଟ୍ରର ରାଷ୍ଟ୍ରକୂଟମାନଙ୍କ ଦ୍ୱାରା । ତା'ପରେ ପ୍ରାୟ ଦୁଇ ଶତାବ୍ଦୀ ଧରି ରାଷ୍ଟ୍ରକୂଟ ବଂଶ ଦାକ୍ଷିଣାତ୍ୟରେ ନିଜ ଅଧିକାର ବଜାଏ ରଖିଥିଲେ । ଏହି ବଂଶର ଶାସନ କାଳର ସ୍ଥାୟୀ ଏକ କୀର୍ତ୍ତିସ୍ତମ୍ଭ ହେଉଛି ଏଲୋରାରେ ପାହାଡ଼କୁ (ଆଧୁନିକ ଆଓରଙ୍ଗାବାଦର ନିକଟବର୍ତ୍ତୀ) କାଟି ନିର୍ମାଣ କରାଯାଇଥିବା କୈଳାଶ ମନ୍ଦିରଟି ।

ରାଷ୍ଟ୍ରକୂଟ ରାଜ୍ୟର ପୂର୍ଣ୍ଣ ସମୃଦ୍ଧି ସମୟରେ ରାଷ୍ଟ୍ରକୂଟମାନେ ଉତ୍ତର ଭାରତ ମଧ୍ୟକୁ କେଇ ଥର ଅଭିଯାନ ପରିଚାଳନା କରିଥିଲେ । ଏହିସବୁ ଅଭିଯାନରେ ସେମାନଙ୍କର ପ୍ରଧାନ ପ୍ରତିପକ୍ଷ ହୋଇ ଦେଖା ଦେଇଥିଲେ ବିହାର ଓ ବଙ୍ଗ ଦେଶର ପାଳ ବଂଶ ଏବଂ ଗୁର୍ଜ୍ଜର-ପ୍ରତିହାରମାନେ । ଗୁର୍ଜ୍ଜର-ପ୍ରତିହାରମାନଙ୍କ ରାଜଧାନୀ ଥିଲା କନୌଜ । ଏହି ତିନୋଟି ରାଜ୍ୟ ମଧ୍ୟରେ ଯୁଦ୍ଧ ବିଗ୍ରହର ପ୍ରଧାନ ଉପଲକ୍ଷ୍ୟ ଥିଲା ଗଙ୍ଗା ଏବଂ ଯମୁନା ନଦୀର ମଧ୍ୟବର୍ତ୍ତୀ ଉର୍ବର ଦୋୟାବ୍ ଉପତ୍ୟକା ଉପରେ ଅଧିକାର ପ୍ରତିଷ୍ଠା । ଏହି ସମୟରେ ଭାରତର ଉତ୍ତର ଅଞ୍ଚଳରେ କେତେକ ଛୋଟ ସାମନ୍ତ ରାଜ୍ୟ ବିରାଜ କରୁଥିଲେ – ଯଥା, ବିଶ୍ୱବିଖ୍ୟାତ ଖାଜୁରାହୋ ମନ୍ଦିର ସମାହାରର ପ୍ରତିଷ୍ଠାତା ଚାନ୍ଦେଲ ରାଜବଂଶ ଏବଂ ଦିଲ୍ଲୀକାରେ (ଆଧୁନିକ ଦିଲ୍ଲୀରେ) ରାଜଧାନୀ ସ୍ଥାପନ କରିଥିବା ସେଇ ତୋମର ରାଜବଂଶ ଦ୍ୱାରା ଶାସିତ ରାଜ୍ୟ ଦ୍ୱୟ, ଆଦି ।

ଦଶମ ଖ୍ରୀଷ୍ଟାବ୍ଦରେ ଉତ୍ତର ଭାରତର ତିନୋଟି ପ୍ରଧାନ ରାଷ୍ଟ୍ର ଶକ୍ତି ରାଷ୍ଟ୍ରକୂଟ, ପାଳ ଓ ଗୁର୍ଜ୍ଜର-ପ୍ରତିହାରମାନଙ୍କ ରାଜ୍ୟ ପତନର ସମ୍ମୁଖୀନ ହୋଇଥିଲେ । ଏମାନଙ୍କ ଅଧୀନସ୍ଥ ଅପେକ୍ଷାକୃତ ଛୋଟ ସାମନ୍ତ ରାଜ୍ୟଗୁଡ଼ିକର ଶକ୍ତି ସାମର୍ଥ୍ୟ ସେତେବେଳେ ବଢ଼ି ଚାଲିଥିଲା । ସେମାନେ ସେତେବେଳେ ରାଜ୍ୟ ବିସ୍ତାର କରି ଭୂତପୂର୍ବ ଶାସକ ରାଜ୍ୟଗୁଡ଼ିକୁ କ୍ରମଶଃ ଦୁର୍ବଳ କରି ଏବଂ ଉଚ୍ଛେଦ କରି ଚାଲିଥିଲେ । ଯଥା, ଦୃଷ୍ଟାନ୍ତ ସ୍ୱରୂପ, ଗର୍ଜର-ପ୍ରତିହାରମାନଙ୍କ ଦ୍ୱାରା ଅଧିକୃତ ଭୂଖଣ୍ଡରେ ସେତେବେଳେ ସ୍ୱାଧୀନ ରାଷ୍ଟ୍ର ହିସାବରେ ଆବିର୍ଭୂତ ହୋଇଥିଲେ ପାରମାର, ଚାନ୍ଦେଲ, ଗୁହିଲ, ଚୌହାନ (ଚାହାମନ୍) ଏବଂ ଚାଲୁକ୍ୟ (ସୋଲଙ୍କି) ରାଜବଂଶ ଶାସିତ ରାଜ୍ୟଗୁଡ଼ିକ । ସେଇଭଳି ପାଳ ବଂଶ ଦ୍ୱାରା ଶାସିତ ଭୂଖଣ୍ଡ ମଧ୍ୟ କେତେକ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇ ଯାଇଥିଲା ଏବଂ ସେମାନଙ୍କ ମଧ୍ୟରେ ସର୍ବାପେକ୍ଷା ଶକ୍ତିଶାଳୀ ହୋଇ ଉଠିଥିଲେ ସାମନ୍ତ ସେନ ରାଜବଂଶ । ଚୌହାନ ରାଜବଂଶ (ବା ଚାହାମନ୍‌ମାନେ) ରାଜତ୍ୱ କରୁଥିଲେ ପୂର୍ବ ଓ ମଧ୍ୟାଞ୍ଚଳୀୟ ରାଜସ୍ଥାନରେ ଏବଂ ଗୁଜରାଟର କେତେକ ଅଂଶରେ । ପାରମାର ରାଜବଂଶ ରାଜସ୍ଥାନ, ଗୁଜରାଟ ଓ ଦାକ୍ଷିଣାତ୍ୟରେ କେତେ ଥର ଅଭିଯାନ ଚଳେଇଲେ ମଧ୍ୟ ସେମାନଙ୍କ ମୂଳ ଭିତ୍ତି ଥିଲା ମାଳବ ଦେଶରେ । ତେବେ ଏକାଦଶ ଶତାବ୍ଦୀର ମଧ୍ୟ ଭାଗକୁ ପାରମାର ରାଜ୍ୟ ଦୁର୍ବଳ ହୋଇ ପଡ଼ିଥିଲା । ଚାନ୍ଦେଲ ରାଜ୍ୟର କେନ୍ଦ୍ରରେ ପରିଣତ ହେଲା ତତ୍କାଳୀନ ବୁନ୍ଦେଲଖଣ୍ଡ । ତେବେ ଚାନ୍ଦେଲମାନଙ୍କର ଅଧିକାର ଭୁକ୍ତ ଥିଲା ସେତେବେଳକାର ଦୋୟାବ୍‌ର ଏକ ଅଂଶ, ବାରାଣସୀ ଏବଂ ବିହାରର କେତେକ ଅଞ୍ଚଳ । ମଧ୍ୟ ଭାରତରେ ସାମନ୍ତ କାଳଚୁରି (ହୈହୟ) ରାଜ୍ୟ ପୂର୍ବେ ଥିଲା ରାଷ୍ଟ୍ରକୂଟ ରାଜ୍ୟର ଅଧୀନ ସାମନ୍ତ ଶାସିତ ପ୍ରଦେଶ ମାତ୍ର । ସେ ରାଜ୍ୟଟି ବି ଏହି ସମୟରେ ସ୍ୱାଧୀନ ହୋଇ ଉଠିଥିଲା ଏବଂ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ତା'ର ସ୍ୱାଧୀନ ଅସ୍ତିତ୍ୱକୁ ବଜାଏ ରଖି ପାରିଥିଲା ।

ଅନ୍ୟ ଦିଗରେ, ଚାଲୁକ୍ୟ (ସୋଲଙ୍କି) ରାଜବଂଶ ଦୃଢ଼ ଭାବେ ଉତ୍ତର ଗୁଜରାଟରେ ନିଜସ୍ୱ ରାଜ୍ୟ ପ୍ରତିଷ୍ଠା କରିଥିଲେ ।

ପଲ୍ଲବ ଏବଂ ପାଣ୍ଡ୍ୟ ରାଜ୍ୟ ଦ୍ୱୟ ମଧ୍ୟରେ ଅବିରତ ଯୁଦ୍ଧବିଗ୍ରହ ଫଳରେ ଉଭୟ ରାଜ୍ୟ କ୍ଷମତାହୀନ ହୋଇ ପଡ଼ିଥିଲେ । ଫଳରେ ଉରାୟୁର ପାର୍ଶ୍ୱବର୍ତ୍ତୀ ଛୋଟ ଏକ ଭୂଖଣ୍ଡର ଶାସକ ଚୋଳମାନଙ୍କ ତାମିଲ ରାଜବଂଶ କ୍ରମଶଃ ପ୍ରଧାନ ହୋଇ ଉଠିଲେ । ୮୯୩ ଖ୍ରୀଷ୍ଟାବ୍ଦର ଏକ ଯୁଦ୍ଧରେ ଚୋଳମାନେ ପଲ୍ଲବମାନଙ୍କୁ ଚୂଡ଼ାନ୍ତ ଭାବେ ପରାଜିତ କଲେ । ତା'ପରେ ୯୧୫ ଖ୍ରୀଷ୍ଟାବ୍ଦରେ ପାଣ୍ଡ୍ୟ ରାଜବଂଶକୁ ବିଧ୍ୱଂସ କରି ବର୍ତ୍ତମାନ ତାମିଲନାଡ଼ୁ ନାମରେ ପରିଚିତ ଅଞ୍ଚଳଟିକୁ ପ୍ରାୟ ସଂପୂର୍ଣ୍ଣ ରୂପେ ନିଜର ଶାସନାଧୀନରେ ଐକ୍ୟବଦ୍ଧ କରିବାକୁ ସମର୍ଥ ହୋଇଥିଲେ । ଏକ ଦିଗରେ, ଚୋଳମାନଙ୍କ ବିରୁଦ୍ଧରେ ସର୍ବଦା ଯୁଦ୍ଧ କରିବା ହେତୁ ଏବଂ ଅନ୍ୟ ଦିଗରେ, ଉତ୍ତର ଭାରତରେ ନିଜର ଆଧିପତ୍ୟ ବଜାଏ ରଖିବା ପାଇଁ ନିୟତ ଚେଷ୍ଟା କରିବା ହେତୁ ରାଷ୍ଟ୍ରକୂଟ ରାଜ୍ୟଟି ଦୁର୍ବଳ ହୋଇ ପଡ଼ିଥିଲା ଏବଂ ୯୭୩ ଖ୍ରୀଷ୍ଟାବ୍ଦରେ ରାଷ୍ଟ୍ରକୂଟମାନଙ୍କୁ କ୍ଷମତାଚ୍ୟୁତ କରି ରାଜା ଦ୍ୱିତୀୟ ତୈଳପ ସ୍ଥାପନ କରିଥିଲେ ପରବର୍ତ୍ତୀ ଚାଲୁକ୍ୟ ରାଜ୍ୟ । ପ୍ରବଳ ପରାକ୍ରାନ୍ତ ରାଷ୍ଟ୍ରକୂଟ ରାଜବଂଶର ପତନ ଘଟିବା ଫଳରେ ଚୋଳମାନେ ପରବର୍ତ୍ତୀ ଦୁଇ ଶହ ବର୍ଷ ଧରି ଦକ୍ଷିଣ ଭାରତରେ ଆଧିପତ୍ୟ ରକ୍ଷା କରିବାକୁ ସମର୍ଥ ହୋଇଥିଲେ । ଏକାଦଶ ଶତାବ୍ଦୀରେ ମଧ୍ୟ ଚୋଳ ରାଜ୍ୟର ଶକ୍ତି ଓ ସମୃଦ୍ଧି କ୍ରମାନ୍ୱୟରେ ବଢ଼ି ଚାଲିଥିଲା । ପ୍ରଥମ ରାଜରାଜ (୯୮୫-୧୦୧୫ ଖ୍ରୀଷ୍ଟାବ୍ଦ) ଏବଂ ପ୍ରଥମ ରାଜେନ୍ଦ୍ରଙ୍କ (୧୦୧୫-୧୦୪୪ ଖ୍ରୀଷ୍ଟାବ୍ଦ) ରାଜତ୍ୱକାଳରେ ଚୋଳମାନେ ଭେଙ୍ଗିନିବାସୀ ପୂର୍ବାଞ୍ଚଳୀୟ ଚାଲୁକ୍ୟ ରାଜ୍ୟମାନଙ୍କ ସହିତ ଦୀର୍ଘସ୍ଥାୟୀ ଯୁଦ୍ଧରେ ବ୍ୟାପୃତ ରହିଥିଲେ ଏବଂ ପରିଶେଷରେ ଚାଲୁକ୍ୟମାନଙ୍କୁ ସାମନ୍ତ ରାଜଶକ୍ତିରେ ପରିଣତ କରିଥିଲେ । କିନ୍ତୁ ଶେଷକୁ ସେମାନଙ୍କୁ କୌଣସି ପ୍ରକାରେ ସଂପୂର୍ଣ୍ଣ ପଦାନତ କରି ପାରି ନଥିଲେ । ତେବେ ଅନ୍ୟ ଦିଗରେ, ଚୋଳମାନେ ସିଂହଳ ଦ୍ୱୀପ ଦଖଲ କଲେ ଏବଂ ସେଠାରେ ଦୀର୍ଘ କାଳ ପାଇଁ ନିଜକୁ ଶାସକ ହିସାବରେ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇଥିଲେ । ବସ୍ତୁତଃ, ଏହା ଫଳରେ ଶ୍ରୀଲଙ୍କାର ବର୍ତ୍ତମାନ ଅଧିବାସୀମାନଙ୍କର ଏକାଂଶ ତାମିଲ ହୋଇ ରହି ଯାଇଛନ୍ତି । ଚୋଳମାନେ ଶ୍ରୀବିଜୟ ରାଜାମାନଙ୍କ ରାଜ୍ୟ ସହିତ ମଧ୍ୟ ଯୁଦ୍ଧରେ ଲିପ୍ତ ରହିଥିଲେ । ଏହି ଶେଷୋକ୍ତ ରାଜାମାନଙ୍କର କେନ୍ଦ୍ରସ୍ଥଳୀ ଥିଲା ସୁମାତ୍ରା ଦ୍ୱୀପରେ, ତେବେ ଆଂଶିକ ଭାବେ ଜାଭା ଦ୍ୱୀପ ଓ ମଲାକା ଉପଦ୍ୱୀପ ମଧ୍ୟ ସେମାନଙ୍କ ଅଧୀନରେ ଥିଲା । ୧୦୨୫ ଖ୍ରୀଷ୍ଟାବ୍ଦରେ ଚୋଳମାନେ ଶ୍ରୀବିଜୟମାନଙ୍କ ରାଜ୍ୟର ଏକାଂଶ ମଧ୍ୟ ଦଖଲ କରିଥିଲେ ଏବଂ ପରେ, ଅବଶ୍ୟ, ସେଠାରୁ ବିତାଡ଼ିତ ହୋଇଥିଲେ । ଭାରତରେ ସେତେବେଳେ ଚୋଳମାନଙ୍କ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ବର୍ତ୍ତମାନର ମହୀଶୂର (କର୍ଣ୍ଣାଟକ) ଓ କେରଳ ରାଜ୍ୟ ଦ୍ୱୟ । କଲ୍ୟାଣୀସ୍ଥିତ ଚାଲୁକ୍ୟମାନଙ୍କୁ କେଇ ଥର ଯୁଦ୍ଧରେ ପରାଜିତ କରିଥିଲେ ଚୋଳମାନେ । ସେମାନେ ଦୀର୍ଘ କାଳ ଧରି ଓଡ଼ିଶା ଏବଂ ବଙ୍ଗ ଦେଶ ଉପରେ ଅଭିଯାନ ଚଳାଇଥିଲେ । କିଂବଦନ୍ତୀ ଅନୁଯାୟୀ, ଏହିସବୁ ଅଭିଯାନ ପରିଚାଳନା କଲା ବେଳେ ସେମାନେ କାଳେ ସୁଦୂର ଗଙ୍ଗା ତୀର ପର୍ଯ୍ୟନ୍ତ ଅନୁପ୍ରବେଶ କରିବାକୁ ସମର୍ଥ ହୋଇଥିଲେ ।

ଚୋଳ ରାଜାମାନଙ୍କ ଅଧୀନରେ ଶକ୍ତିଶାଳୀ ସେନାବାହିନୀ ଓ ସୁସଜ୍ଜିତ ରଣତରୀ ବାହିନୀ ଥିବା ହେତୁ ଏବଂ ଶ୍ରୀବିଜୟ ରାଜ୍ୟ ଓ ଆରବ ସାଗରର ତୀରବର୍ତ୍ତୀ ଦେଶସମୂହ ସହିତ ସେମାନଙ୍କର

ବାଣିଜ୍ୟ ସଂପର୍କ ଥିବା ଯୋଗୁ ଚୋଳମାନଙ୍କର ବୈଷୟିକ ସମୃଦ୍ଧି ଘଟିଥିଲା ଏବଂ ସେମାନେ ଅସମ୍ଭବ ଭାବେ ଧନୀ ହୋଇ ଉଠିଥିଲେ । ସେମାନେ ଅପୂର୍ବ ଚମତ୍କାର ମନ୍ଦିରସବୁ ନିର୍ମାଣ କରିଥିଲେ (ଯଥା, ଚିଦମ୍ବରମ୍‌ର ମନ୍ଦିର) ଏବଂ ବହୁ ସଂଖ୍ୟକ ବ୍ରଞ୍ଜ ଦେବଦେବୀ ମୂର୍ତ୍ତି ଖୋଦାଇ କରିଥିଲେ । ୧୦୭୦ ଖ୍ରୀଷ୍ଟାବ୍ଦରେ ଚୋଳ ରାଜବଂଶ ଓ ଭେଙ୍ଗିର ପୂର୍ବାଞ୍ଚଳୀୟ ଚାଲୁକ୍ୟ ରାଜବଂଶ ପରସ୍ପର ସହିତ ମିଳିତ ହୋଇଥିଲେ । ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ କୃଷ୍ଣା ଏବଂ ତୁଙ୍ଗଭଦ୍ରା ନଦୀର ଦକ୍ଷିଣସ୍ଥ ପ୍ରାୟ ସମସ୍ତ ଦକ୍ଷିଣ ଭାରତ ଚୋଳ ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା ଏବଂ ପୂର୍ବ ଦିଗରେ ଏହି ରାଜ୍ୟର ସୀମା ବିସ୍ତୃତ ହୋଇଥିଲା ସୁଦୂର ଗୋଦାବରୀ ନଦୀ ପର୍ଯ୍ୟନ୍ତ । ତେବେ ସାମନ୍ତବାଦର ଅଗ୍ରଗତିର ପ୍ରକ୍ରିୟା ଅବଶେଷରେ ଚୋଳ ରାଜବଂଶର ପତନକୁ ଡାକି ଆଣିଥିଲା । ରାଜ୍ୟର ଉପାନ୍ତ ଅଞ୍ଚଳଗୁଡ଼ିକରେ କ୍ରମଶଃ ମୁଣ୍ଡ ଟେକି ଉଠିଥିଲେ ସ୍ୱାଧୀନ ସାମନ୍ତ ରାଜ୍ୟସବୁ । ସରକାରୀ ଭାବେ ସେପର୍ଯ୍ୟନ୍ତ ସେଗୁଡ଼ିକ ଚୋଳ ରାଜ୍ୟର ଅଧୀନସ୍ଥ ହେଲେ ମଧ୍ୟ କେନ୍ଦ୍ରୀୟ ସରକାରକୁ ସଂପୂର୍ଣ୍ଣ ରୂପେ ଉପେକ୍ଷା କରିବା, ପରସ୍ପର ମଧ୍ୟରେ ଇଚ୍ଛା ମୁତାବକ ଯୁଦ୍ଧ ବିଗ୍ରହ ଓ ସନ୍ଧି ସ୍ଥାପନ ଆଦି କାର୍ଯ୍ୟ ସେମାନେ ଚଳେଇ ଯାଉଥିଲେ । କ୍ରମଶଃ ଦକ୍ଷିଣ ଭାରତରେ ସ୍ୱାଧୀନ ଏବଂ ପ୍ରଧାନ ହୋଇ ଉଠିଥିଲେ ଦ୍ୱାରସମୁଦ୍ରର ହୟସଲ ବଂଶ, ଦେବଗିରିର ଯାଦବ ଓ ଓୟାରଙ୍ଗଲର କାକତୀୟ ରାଜବଂଶ ଏବଂ ବର୍ତ୍ତମାନ ତାମିଲନାଡ଼ୁର ଦକ୍ଷିଣ ଅଂଶରେ କ୍ଷମତା ଦଖଲକାରୀ ପାଣ୍ଡ୍ୟ ରାଜବଂଶ । ଏହି ଭାବେ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗକୁ ଚୋଳମାନେ ତାଞ୍ଜୋର ଏଲାକାର ନଗଣ୍ୟ ଏକ ସାମନ୍ତରାଜ୍ୟର ଅଧିପତିରେ ପରିଣତ ହୋଇଥିଲେ ।

ଯାଦବ ରାଜବଂଶ ସେମାନଙ୍କ କ୍ଷମତା ଗୌରବର ତୁଙ୍ଗ ଦେଶରେ ପହଞ୍ଚିଥିଲେ ରାଜା ସିଂହନଙ୍କ ରାଜତ୍ୱକାଳରେ (୧୨୦୦-୧୨୪୭ ଖ୍ରୀଷ୍ଟାବ୍ଦରେ) । କୃଷ୍ଣା ଏବଂ ନର୍ମଦା ନଦୀର ମଧ୍ୟବର୍ତ୍ତୀ ସମଗ୍ର ଦାକ୍ଷିଣାତ୍ୟ ସେତେବେଳେ ସେମାନଙ୍କ ରାଜ୍ୟ ଅନ୍ତର୍ଗତ ହୋଇଥିଲା ।

ଏହି ସମୟରେ ଉତ୍ତର ଭାରତରେ ରାଜ୍ୟ ଭଙ୍ଗାଗଢ଼ାର ପ୍ରକ୍ରିୟା ତୀବ୍ର ବେଗରେ ଚାଲିଥିଲା । ସେଠାରେ ପ୍ରବଳ ସଂଘର୍ଷ ଚାଲିଥିଲା ଚୌହାନ (ସେମାନଙ୍କର ରାଜ୍ୟର ରାଜଧାନୀ ଥିଲା ଆଜମିର ଏବଂ ବେଳେ ବେଳେ ଦିଲ୍ଲୀରେ) ଓ ଗହଦାବାହନ ରାଜବଂଶର (ବର୍ତ୍ତମାନ ଉତ୍ତର ପ୍ରଦେଶ ଏବଂ ବିହାର ସେମାନଙ୍କ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା) ରାଜ୍ୟ ଦ୍ୱୟ ମଧ୍ୟରେ । ଅବଶ୍ୟ, ପରବର୍ତ୍ତୀ କାଳରେ ଏହି ରାଜ୍ୟ ଦୁଇଟି ଖୋରାସାନ୍‌ର ବିଦେଶୀ ଆକ୍ରମଣକାରୀ ବାହିନୀର ଆକ୍ରମଣକୁ ରୋକିବାରେ ବ୍ୟର୍ଥ ହୋଇଥିଲେ । ଏହିସବୁ ରାଜ୍ୟ କ୍ରମଶଃ ଖଣ୍ଡ ଖଣ୍ଡ ହୋଇଯାଇଥିଲେ । ଦ୍ୱାଦଶ ଶତାବ୍ଦୀରେ ଉତ୍ତର ଭାରତରେ କେବଳ ଗୋଟିଏ ମାତ୍ର ବଡ଼ ରାଜ୍ୟ ରହି ଯାଇଥିଲା ସେ ହେଉଛି ବଙ୍ଗ ଦେଶର ସେନ୍ ବଂଶର ରାଜ୍ୟ ।

ଏକାଦଶ ଶତାବ୍ଦୀର ଆରମ୍ଭରୁ ଭାରତରେ ଉତ୍ତର ଦିଗରୁ ମୁସଲିମ୍ ଆକ୍ରମଣ ଆରମ୍ଭ ହୋଇ ଯାଇଥିଲା । ଦ୍ୱାଦଶ ଶତାବ୍ଦୀ ବେଳକୁ ଭାରତୀୟ ଭୂଖଣ୍ଡର ବଡ଼ ବଡ଼ ଅଂଶକୁ ମୁସଲମାନମାନେ ଦଖଲ କରି ନେବାକୁ ଆରମ୍ଭ କରି ଦେଇଥିଲେ । ଏହା ଫଳରେ ଭାରତରେ ସଂପୂର୍ଣ୍ଣ ନୂଆ ଏକ ପରିସ୍ଥିତିର ଉଦ୍‌ଭବ ଘଟିଥିଲା ।

# ଷଷ୍ଠ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ସାମନ୍ତବାଦୀ ସାମାଜିକ ସଂପର୍କର ବିକାଶ

ଏକ ଦିଗରେ, ଭାରତର ରାଜନୈତିକ ରଙ୍ଗମଞ୍ଚରେ ଯେପରି ବହୁବିଚିତ୍ର ବିଭିନ୍ନ ରାଜ୍ୟ ଓ ରାଜାଙ୍କର ଆବିର୍ଭାବ ଘଟିଥିଲା ଏବଂ ଯୁଦ୍ଧବିଗ୍ରହ ଘଟି ଚାଲିଥିଲା, ସେଇପରି, ଅନ୍ୟ ଦିଗରେ, ଭାରତୀୟ ସମାଜର ସାମାଜିକ-ଅର୍ଥନୈତିକ ଜୀବନରେ ସାମନ୍ତତନ୍ତ୍ରୀକରଣର ଏକ ଦୀର୍ଘ ଓ କ୍ରମିକ ପ୍ରକ୍ରିୟା ଚାଲିଥିଲା । ଏହି ପ୍ରକ୍ରିୟା ଚାଲିଥିଲା ସମାଜର ଦୁଇଟି ସ୍ତରରେ । ଏକ ଦିଗରେ, ଯେତେ ବେଶି ପରିମାଣରେ ଜମି କ୍ରମଶଃ ଖଜଣାର ଅଧୀନ ହେବାକୁ ଲାଗିଲା, ସେତେ ସେସବୁକୁ ଭୂମିଦାନ ହିସାବରେ ବଣ୍ଟନ କରାଗଲା । ଏହିସବୁ ଦାନ କରାଯାଉଥିବା ଜମିର ଗ୍ରହୀତାମାନେ କେନ୍ଦ୍ରୀୟ ସରକାର ଓ ସେମାନଙ୍କ ଉପରେ ନିର୍ଭରଶୀଳ କୃଷକ ପ୍ରଜାବୃନ୍ଦ ଉଭୟଙ୍କ ସହିତ ସଂପର୍କ କ୍ଷେତ୍ରରେ କ୍ରମଶଃ ଅଧିକରୁ ଅଧିକ ଅଧିକାର ଭୋଗର ସୁଯୋଗ ପାଇବାକୁ ଲାଗିଲେ । ଅନ୍ୟ ଦିଗରେ, ଗ୍ରାମୀଣ ସମାଜ ମଧ୍ୟରେ ଗ୍ରାମ ସଂଗଠନର କର୍ମଚାରୀମାନେ, ବିଶେଷ କରି ମୁଖିଆମାନେ, ଅନେକ କ୍ଷେତ୍ରରେ ଗ୍ରାମବାସୀମାନଙ୍କ ଉପରେ ଅଧିକତର କ୍ଷମତା ପ୍ରୟୋଗର ଅଧିକାରୀ ହୋଇ ଉଠିଲେ । ନିଜ ନିଜ ଗ୍ରାମ ମଧ୍ୟରେ ଭୂମି ରାଜସ୍ୱର ବଣ୍ଟନ ବ୍ୟାପାରରେ ସେମାନଙ୍କ କର୍ତ୍ତୃତ୍ୱ କରିବାର କ୍ଷମତା କ୍ରମଶଃ ଅଧିକତର ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଲା । ଏହାର ଅର୍ଥ, ଇତିପୂର୍ବରୁ ଏହିସବୁ ଗ୍ରାମ ମୁଖିଆମାନଙ୍କର ପ୍ରଧାନ କର୍ତ୍ତବ୍ୟ ଥିଲା ସମଗ୍ର ଭାବେ ଗ୍ରାମୀଣ ସମାଜର ସ୍ୱାର୍ଥ ରକ୍ଷା କରିବା, କିନ୍ତୁ ଏହା ପରେ ପ୍ରଧାନ ଗୁରୁତ୍ୱପୂର୍ଣ୍ଣ ବ୍ୟାପାର ହୋଇ ଉଠିଲା ରାଷ୍ଟ୍ର ଯନ୍ତ୍ରର କର୍ତ୍ତୃତ୍ୱାଧୀନ ଗ୍ରାମୀଣ ଶାସନ ବ୍ୟବସ୍ଥାର ପରିଚାଳକ ହିସାବରେ ସେମାନଙ୍କ ଭୂମିକା । ଗ୍ରାମୀଣ ସମାଜର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଓ ଗ୍ରାମର ଅଧୀନ ଅନାବାଦୀ ଜମିକୁ କାର୍ଯ୍ୟରେ ଲଗାଇବା କ୍ଷେତ୍ରରେ ଏହି ଗ୍ରାମକର୍ତ୍ତାମାନଙ୍କର ନିୟନ୍ତ୍ରଣ କ୍ଷମତା ମଧ୍ୟ ଦେଇ ଏବଂ ନିଜର ପ୍ରୟୋଜନ ଦିଗରୁ ଜମି ଦଖଲ ଓ ଅନ୍ୟାନ୍ୟ ଗ୍ରାମବାସୀମାନଙ୍କର ବେଗାରି ଖଟଣିକୁ ଇଚ୍ଛା ମୁତାବକ କାର୍ଯ୍ୟରେ ଲଗାଇବା ମଧ୍ୟ ଦେଇ ଏହିଭଳି କେତେକ ଗ୍ରାମ ମୁଖିଆ କାର୍ଯ୍ୟତଃ ଛୋଟ ଛୋଟ ସାମନ୍ତବାଦୀ ଭୂସ୍ୱାମୀରେ ପରିଣତ ହୋଇଗଲେ । ସେମାନେ ଏଇ ଯେଉଁ ପଦମର୍ଯ୍ୟାଦାର ଅଧିକାରୀ ହେଲେ, ତାହା ପରେ ରାଜକୀୟ ସନନ୍ଦ ଦ୍ୱାରା ଆଇନସଙ୍ଗତ ହୋଇ ଉଠିଲା । ତେବେ ଐତିହାସିକ ଦଲିଲଗୁଡ଼ିକରେ, ଅବଶ୍ୟ, କୃଷକ ସଂପ୍ରଦାୟ ମଧ୍ୟରୁ ଏହି ଭାବେ ନୂତନ ସାମନ୍ତବାଦୀ ଭୂସ୍ୱାମୀମାନଙ୍କର ଉଦ୍‌ଭବର ଇଂଗିତ ଖୁବ୍ ସଂକ୍ଷିପ୍ତ ଭାବେ ରହିଛି ।

ଏହି ଆଲୋଚ୍ୟ ଯୁଗରେ (ଅର୍ଥାତ୍, ଷଷ୍ଠ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ) ଅଧିକାଂଶ ଖୋଦିତ ଲିପିରେ ରାଜାଙ୍କ ଧର୍ମପ୍ରବଣତା ପ୍ରଚାର ଉଦ୍ଦେଶ୍ୟରେ ବ୍ରାହ୍ମଣମାନଙ୍କୁ ଭୂମିଦାନର ବର୍ଣ୍ଣନା ମିଳିଥାଏ । ଏହିସବୁ ଭୂମିଦାନର ଉଲ୍ଲେଖ ଅଛି "ଚିରସ୍ଥାୟୀ" ଆଖ୍ୟା ଦେଇ ଏବଂ ଏସବୁକୁ

ଲିପିବଦ୍ଧ କରାଯାଇଛି ମଜ୍‌ବୁତ୍ ଉପାଦାନ ଉପରେ, ସାଧାରଣତଃ ତାମ୍ର ଫଳକ ଉପରେ । ଅବଶ୍ୟ, ଧର୍ମ ନିରପେକ୍ଷ ଭାବେ ଆଉ କେତେକ ଲୋକଙ୍କୁ ମଧ୍ୟ ଭୂମିଦାନ କରାଯାଉଥିଲା ସେତେବେଳେ ଏବଂ ତାହା ସହଜରେ ବିନଷ୍ଟ ହୋଇଗଲା ଭଳି ତାଳପତ୍ରରେ ଲିପିବଦ୍ଧ କରାଯାଉ ନଥିଲା (ଦକ୍ଷିଣ ଭାରତରେ ଏହି ତାଳପତ୍ର ଥିଲା ଏହି ଧରଣର ଲିପି ରଚନା ପକ୍ଷରେ ପ୍ରଚଳିତ ଉପାଦାନ), ବ୍ରାହ୍ମଣମାନଙ୍କୁ ପ୍ରଦତ୍ତ ତାମ୍ର ଫଳକ ଭଳି ତାମ୍ର ପତ୍ର ଉପରେ । ତେବେ ଏହା ସମ୍ଭବ ଯେ, ରାଜ କାର୍ଯ୍ୟ ସଂପାଦନ କରିବାର ସମୟକାଳ ପାଇଁ ବ୍ରାହ୍ମଣ ବ୍ୟତୀତ ଅନ୍ୟମାନଙ୍କୁ ଏ ଧରଣର କେତେକ ଭୂମିଦାନ କରାଯାଉଥିଲା ।

ବିନା ବ୍ୟତିକ୍ରମରେ ଏବଂ ବିଶେଷ କରି ବଙ୍ଗ ଦେଶରେ ଏହି ଧରଣର ଭୂମିଦାନର ଅଧିକାରୀ ଥିଲେ ସାମନ୍ତବାଦୀ ରାଜାମାନେ । ତେବେ ଉତ୍ତର ଭାରତରେ, ଗୁର୍ଜର-ପ୍ରତିହାର ସାମ୍ରାଜ୍ୟରେ ଏ ଧରଣର ଭୂମିଦାନ କରୁଥିଲେ ସେଇସବୁ ସାମନ୍ତ ଭୂସ୍ୱାମୀମାନେ, ଯେଉଁମାନେ ସାମ୍ରାଜ୍ୟର ଉପାନ୍ତ ଭୂଖଣ୍ଡରେ ଅବସ୍ଥାନ କରୁଥିଲେ । ଏମାନେ ବେଳେ ବେଳେ କେନ୍ଦ୍ରୀୟ ଶାସନ କର୍ତ୍ତୃପକ୍ଷଙ୍କର ସମ୍ମତି ଅନୁଯାୟୀ, ଅଥବା ବେଳେ ବେଳେ ସେମାନଙ୍କ ଅଜ୍ଞାତ ସାରରେ ଏସବୁ ଭୂମିଦାନ କରୁଥିଲେ । ଦଶମ ଶତାବ୍ଦୀରେ ବଡ଼ ବଡ଼ ରାଜ୍ୟର ପତନ ସମୟରେ ଏହି ଧରଣର ଭୂମିଦାନ ବିଶେଷ ଭାବେ ପ୍ରଚଳିତ ହୋଇଥିଲା ।

ଖୋଦିତ ଲିପିସମୂହରେ କ୍ଷମତାରେ ଅଧିଷ୍ଠିତ ବିଭିନ୍ନ ବ୍ୟକ୍ତିଙ୍କର, ଯଥା, ସାର୍ବଭୌମରାଜ୍ୟ, ବିଭିନ୍ନ ଆଞ୍ଚଳିକ ଓ ଜିଲା ଶାସକ ଆଦିଙ୍କର ପଦବି, ପରାମର୍ଶଦାତା ଆଦିଙ୍କର ଉଲ୍ଲେଖରୁ ବୁଝାଯାଏ ଯେ, ଭାରତରେ, ବିଶେଷ କରି ବଙ୍ଗ ଦେଶରେ ଏକ ବିକାଶ ପ୍ରାପ୍ତ ସାମନ୍ତବାଦୀ ଶାସନ ବ୍ୟବସ୍ଥାର ଅସ୍ତିତ୍ୱ ଥିଲା । ଉତ୍ତର ଭାରତରେ, ଅବଶ୍ୟ, ଏହି ଧରଣର ଶାସନ ପରିଚାଳକଙ୍କ ପଦବିର ସଂଖ୍ୟା ଥିଲା ଅନେକ କମ୍ । ମନେ ହୁଏ, ସାମନ୍ତ ଭୂସ୍ୱାମୀମାନେ ସେଠାରେ ଅପେକ୍ଷାକୃତ ଅଧିକ ସ୍ୱାଧୀନତା ଉପଭୋଗ କରୁଥିଲେ ।

ଏହି ସମୟରେ ଭାରତରେ ଯେଉଁମାନେ ଦାନ ହିସାବରେ ବା ଅନ୍ୟ ଭାବେ ଜମିଜମା ପାଉଥିଲେ, ସେମାନେ କ୍ରମଶଃ ଶାସନତାନ୍ତ୍ରିକ ଓ ବିଧାନତାନ୍ତ୍ରିକ ଦାୟିତ୍ୱରୁ ଅବ୍ୟାହତି ପାଇବାର ଅଧିକାରୀ ହୋଇ ଉଠିଥିଲେ । ଏହି ସମୟର ବିଗ୍ରହରାଜସମୂହର ସ୍ୱୀକୃତ "ଦଶଟି ଅପରାଧ" ସଂକ୍ରାନ୍ତ ବିଷୟରେ ସେମାନେ ସେମାନଙ୍କ ତାଲୁକରେ ବସବାସ କରୁଥିବା ବ୍ୟକ୍ତିଙ୍କର ବିଚାର କରିବାର ଅଧିକାର ପର୍ଯ୍ୟନ୍ତ ଲାଭ କରିଥିଲେ । ଅଧିକାଂଶ ରାଜକର୍ମଚାରୀମାନଙ୍କ ପକ୍ଷରେ ଏହିସବୁ ତାଲୁକରେ ପ୍ରବେଶ କରିବା ନିଷିଦ୍ଧ ଥିଲା । ଏହାର ଅର୍ଥ କୃଷକମାନେ କ୍ରମଶଃ ଏହିସବୁ ଭୂମିଦାନ ଫଳରେ ଜମିର ସ୍ୱତ୍ୱ ଭୋଗୀମାନଙ୍କ ଉପରେ ବେଶି କରି ନିର୍ଭରଶୀଳ ହୋଇ ପଡ଼ିଥିଲେ । ରାଷ୍ଟ୍ରର ସାଧାରଣତଃ ଅଧିକାର ଥିଲା ଏକମାତ୍ର ଗୁରୁତର ଅପରାଧର ବିଚାର କରିବାର ଏବଂ ପ୍ରାଣଦଣ୍ଡ ଦେବାର । ବେଳେ ବେଳେ ଏବଂ ବିଶେଷ କରି ଦ୍ୱାଦଶ ଶତାବ୍ଦୀ ଠାରୁ ଆରମ୍ଭ କରି ପରବର୍ତ୍ତୀ କାଳରେ ସାମନ୍ତବାଦୀ ତାଲୁକର ମାଲିକମାନେ ନିଜେ ଗ୍ରାମୀଣ ସମାଜର ଅଧୀନସ୍ଥ ଖଜଣା ଆଦାୟୀ ଜମିର ବଣ୍ଟନ କର୍ତ୍ତାରେ ପରିଣତ ହୋଇଥିଲେ ।

ଆଲୋଚ୍ୟ କାଳରେ ଖୋଦିତ ଲିପିଗୁଡ଼ିକରେ ଏଭଳି ସବୁ ରାଜସ୍ୱର ଉଲ୍ଲେଖ ଅଛି, ଭୂମିଦାନ ଫଳରେ ଜମିର ସ୍ୱତ୍ୱ ଭୋଗୀମାନେ ଯେଉଁଥିରୁ ଅବ୍ୟାହତି ପାଉଥିଲେ । କ୍ରମଶଃ ବିଭିନ୍ନ ଧରଣର

ରାଜସ୍ୱର ତାଲିକା ବୃଦ୍ଧି ପାଇବାକୁ ଲାଗିଲା, ଏହା ବିଶେଷ କରି ଘଟିଥିଲା ଦଶମ ଶତାବ୍ଦୀରେ । ଏହିସବୁ ରାଜସ୍ୱ ମଧ୍ୟରେ ଥିଲା ବିବାହ, ନିଃସନ୍ତାନ ଅବସ୍ଥା, ଉତ୍ସବ ଉଦ୍‌ଯାପନ କିମ୍ବା ଭୂସ୍ୱାମୀଙ୍କ ଗୃହରେ ପାରିବାରିକ ଉତ୍ସବ ଉଦ୍‌ଯାପନ ଉପଲକ୍ଷେ ପ୍ରଦତ୍ତ ରାଜକର । ଏହା ଛଡ଼ା ଉଲ୍ଲେଖ ଅଛି, ରାଜକୀୟ ସନନ୍ଦ ପ୍ରଦାନ ଉପଲକ୍ଷେ ଦେୟ ଅର୍ଥର କିମ୍ବା ଗ୍ରାମ ପରିଦର୍ଶନକାରୀ ରାଜକର୍ମଚାରୀମାନଙ୍କ ଖାଇବା ରହିବାର ବ୍ୟବସ୍ଥା କରି ଦେବାର, ବିଚାରାଳୟ ଦ୍ୱାରା ନିର୍ଦ୍ଧାରିତ ଜରିମାନା ଦେବାର, ବାଣିଜ୍ୟ ଶୁଳ୍କ ଦେବା ଆଦି । ଅନେକ ଥର, ଅବଶ୍ୟ, ଚେଷ୍ଟା ହୋଇଛି ଏହି ଜଟିଳ ବିଧିକୁ "ନିୟମବଦ୍ଧ" କରିବା ପାଇଁ, ଅର୍ଥାତ୍, ଏହି ବହୁବିଧ ଶୁଳ୍କକୁ ଏକ ମୂଳ ରାଜସ୍ୱରେ ଏକତ୍ରିତ କରିବା ପାଇଁ । କିନ୍ତୁ ତା'ପରେ ଦେଖିବାକୁ ମିଳେ, ଆଉରି ନୂଆ ନୂଆ ରାଜକରର ପ୍ରବର୍ତ୍ତନ ଘଟିବା ଫଳରେ ଅବସ୍ଥା ଶେଷକୁ ଯଥା ପୂର୍ବ ହୋଇ ରହିଯାଇଛି । ଏଥିରେ ପ୍ରତିଫଳିତ ହେଉଥିଲା ଜନସାଧାରଣଙ୍କ ଉପରେ ଆର୍ଥିକ ଉତ୍ପୀଡ଼ନ ବୃଦ୍ଧି ଏବଂ ଗ୍ରାମବାସୀମାନଙ୍କର କ୍ରମବର୍ଦ୍ଧମାନ ପରନିର୍ଭରଶୀଳତା । ଅତ୍ୟଧିକ ଭୂମିରାଜସ୍ୱର ଗୁରୁଭାର ଦ୍ୱାରା ଦୁର୍ଦ୍ଦଶାଗ୍ରସ୍ତ ଗ୍ରାମୀଣ ସମାଜର ସଦସ୍ୟମାନେ କାର୍ଯ୍ୟତଃ ସେମାନଙ୍କ ବ୍ୟକ୍ତିଗତ ସ୍ୱାଧୀନତା ହରାଇବାକୁ ଲାଗିଲେ ।

ଏକ ଦିଗରେ, ରାଜକରର ମାତ୍ରା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ, ଅନ୍ୟ ଦିଗରେ, ବୃଦ୍ଧି ପାଇବାକୁ ଲାଗିଲା ବିଭିନ୍ନ ଧରଣର ବାଧ୍ୟତାମୂଳକ ଶ୍ରମ । ଏହି ବାଧ୍ୟତାମୂଳକ ଶ୍ରମ ବା ବେଗାରି ଥିଲା ୟୁରୋପୀୟ କାରଭେର ଏକ ପ୍ରକାରଭେଦ । ଏହି ସମୟରେ କୃଷକମାନଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ ଥିଲା ରାସ୍ତା ଘାଟ ଓ ପୋଲର ରକ୍ଷଣାବେକ୍ଷଣ ଓ ମରାମତ କରିବା କାର୍ଯ୍ୟ, ଗ୍ରାମରେ ପରିଦର୍ଶନ ରାଜକର୍ମଚାରୀମାନଙ୍କର ଯାବତୀୟ ପ୍ରୟୋଜନ ମେଣ୍ଟାଇବା ଏବଂ ନାନା ଧରଣର ନିର୍ମାଣ କର୍ମରେ ଯୋଗଦାନ । ତେବେ ସେମାନଙ୍କ ଦାନସ୍ୱତ୍ୱ ଜମିରେ ମାଲିକର ହୋଇ ସେମାନଙ୍କୁ ଚାଷବାସ କରିବାକୁ ହେଉଥିଲା କି ନାହିଁ, ତାହା ଜଣାଯାଏ ନାହିଁ । ସମକାଳୀନ ଖୋଦିତ ଲିପିଗୁଡ଼ିକରେ କେବଳ ମାତ୍ର ଉଲ୍ଲେଖ ଅଛି ଯେ, ଏ ଧରଣର ଜମିର ଦାସତ୍ୱ ଭୋଗୀର ଅଧିକାର ଅଛି, ଏହି "ଜମି ଚାଷ କରିବାର କିମ୍ବା ଚାଷ କରେଇ ନେବାର" । ତେବେ ଏହା ଦ୍ୱାରା ବାଧ୍ୟତାମୂଳକ ବେଗାରି ଖଟାଇବାକୁ ବୁଝାଉଛି ନା ଭାଗ ଚାଷ କଥା କୁହାଯାଇଛି, ତାହା ପରିଷ୍କାର ବୁଝାଯାଏ ନାହିଁ । ଏଥିରେ, ଅବଶ୍ୟ, ମୋଟେ ସନ୍ଦେହ ନାହିଁ ଯେ, ଗ୍ରାମବାସୀମାନଙ୍କର ବାଧ୍ୟତାମୂଳକ ଭାବେ ବେଗାରି ଖଟାଇବାର ପ୍ରଥା ବହୁଳ ଭାବେ ପ୍ରଚଳିତ ଥିଲା ।

ସେତେବେଳେ ସର୍ବାପେକ୍ଷା ଧନୀ ସାମନ୍ତବାଦୀ ଭୂସ୍ୱାମୀ (ଅବଶ୍ୟ, ପ୍ରକୃତ ରାଜାମାନଙ୍କୁ ଛାଡ଼ି) ଥିଲେ "ଯୌଥ ଭୂସ୍ୱାମୀମାନେ", ଅର୍ଥାତ୍, ହିନ୍ଦୁ ମନ୍ଦିର ଓ ମଠଗୁଡ଼ିକ । ଏହି ଯୁଗରେ ଧର୍ମୀୟ ପ୍ରତିଷ୍ଠାନଗୁଡ଼ିକୁ ଭୂମିଦାନ ଏବଂ ପୁରୋହିତ ଓ ସାଧୁସନ୍ନ୍ୟାସୀମାନଙ୍କୁ ଭୂମିଦାନ ମଧ୍ୟରେ ଏକ ପାର୍ଥକ୍ୟ ଥିଲା । ସେତେବେଳେ ଜମି, ଗ୍ରାମ କିମ୍ବା ଗ୍ରାମସମୂହର ଅଂଶବିଶେଷ ବ୍ୟକ୍ତିଗତ ଭାବେ କିମ୍ବା ଗୋଷ୍ଠୀଗତ ଭାବେ ବ୍ରାହ୍ମଣମାନଙ୍କୁ ଦାନ କରାଯାଉଥିଲା । ଏହି ବ୍ରାହ୍ମଣମାନେ ସେତେବେଳେ ଜମି ଖଜଣାର ଭାଗ ନିର୍ଦ୍ଦିଷ୍ଟ କରି ନେଉଥିଲେ ନିଜ ନିଜ ମଧ୍ୟରେ । ବ୍ରାହ୍ମଣମାନଙ୍କୁ ପ୍ରଦତ୍ତ ଏହି ଧରଣର ଗ୍ରାମଗୁଡ଼ିକର ପ୍ରଶାସନ ସଂପର୍କିତ ସମସ୍ତ ସମସ୍ୟାର ସମାଧାନ କରୁଥିଲା ବ୍ରାହ୍ମଣମାନଙ୍କର ପରିଷଦ କିମ୍ବା ସଭା । ଏହି ସଭା ହିଁ ଖଜଣାର ହାର (ଏବଂ ତାହା ସାଧାରଣତଃ ଥରେ ମାତ୍ର) ନିର୍ଦ୍ଦିଷ୍ଟ କରି ଦେବା ସଂପର୍କିତ ସମସ୍ୟାଗୁଡ଼ିକର ସମାଧାନ କରୁଥିଲା ।

ବ୍ରାହ୍ମଣ ସଭା ସହିତ ଗ୍ରାମୀଣ ସମାଜର ପାର୍ଥକ୍ୟଟା ହେଲା, ସଭା ଥିଲା କେବଳ ମାତ୍ର ଭୂସ୍ୱାମୀମାନଙ୍କୁ ନେଇ ଗଠିତ ଏକ ପରିଷଦ, ଯଦିଓ ମଝିରେ ଏମିତି ଦେଖାଯାଉଥିଲା ଯେ, ବ୍ରାହ୍ମଣମାନଙ୍କୁ ପ୍ରଦତ୍ତ ଜମି ସେମାନଙ୍କ ବଂଶଧରମାନଙ୍କ ମଧ୍ୟରେ ଟୁକୁରା ଟୁକୁରା ହୋଇ ଏଭଳି ଭାବେ ଭାଗବଣ୍ଟା ହୋଇ ଯାଉଥିଲା ଯେ, ଏହିସବୁ ଟୁକୁରା ଠାରୁ ଅନ୍ୟାନ୍ୟ ଗ୍ରାମବାସୀମାନଙ୍କ ଜମିର ଆୟତନକୁ ପ୍ରଭେଦ କରି ହେଉ ନଥିଲା । ମନ୍ଦିରଗୁଡ଼ିକର ଭୂସଂପତ୍ତି, ଅବଶ୍ୟ, ଭାଗ ହେଉ ନଥିଲା, ବରଂ, ଭକ୍ତ ରାଜା ରାଜୁଡ଼ା, ସାମନ୍ତ ଭୂସ୍ୱାମୀ ଏବଂ ଗ୍ରାମୀଣ ସମାଜ ନିକଟରୁ ବିଭିନ୍ନ ଧରଣର ଭୂମିଦାନ ଆଦି ଉପହାର ହିସାବରେ ଲାଭ କରି ଏବଂ ଜମି କିଣିବା ଏବଂ ବନ୍ଧକ ଦେବା ଆଦି କରିଆରେ ସେମାନଙ୍କ ଜମିର ପରିମାଣ ବୃଦ୍ଧି ପାଉଥିଲା । ମନ୍ଦିରଗୁଡ଼ିକୁ ପ୍ରଦତ୍ତ ଜମି ସର୍ବଦା ନିଷ୍କର ହେଉଥିଲା ଏବଂ ତାହା ବିଭିନ୍ନ ରକମର ଦାୟିତ୍ୱ ମୁକ୍ତିର ସୁଯୋଗ ମଧ୍ୟ ଭୋଗ କରୁଥିଲେ ।

ଏପର୍ଯ୍ୟନ୍ତ ତିଷ୍ଠି ରହିଥିବା ଖୋଦିତ ଲିପିଗୁଡ଼ିକୁ ବିଗ୍ଭର କଲେ, ଏକଥା କୁହାଯାଇ ପାରେ ଯେ, ଆରମ୍ଭରେ କେବଳମାତ୍ର ଅନାବାଦୀ ଜମି ଦାନ କରାଯାଉଥିଲା । କୌଣସି ମନ୍ଦିରକୁ ଭୂମି ଦାନ କରିବାକୁ ହେଲେ, ରାଜା କିମ୍ବା ସାମନ୍ତବାଦୀ ଭୂସ୍ୱାମୀ ପ୍ରଥମେ ସେଇ ଜମି କିଣିବାକୁ ବାଧ୍ୟ ହେଉଥିଲେ । କାରଣ ମଧ୍ୟଯୁଗୀୟ ଭାରତରେ ଜମି, ବିଶେଷ କରି ଯାହା ସେପର୍ଯ୍ୟନ୍ତ ଅନାବାଦୀ ରହି ଯାଇଥିଲା, ତାହା ପ୍ରାୟ କିଣା ବିକା ହେଉଥିଲା । ତେବେ ଏଭଳି କ୍ଷେତ୍ରରେ, ଜମି ଯେଉଁ ଗ୍ରାମୀଣ ସମାଜ ବା ସାମାଜିକ ଗୋଷ୍ଠୀର ମାଲିକାନାଧୀନ ଥିଲା, ତା'ର ପୂର୍ବ ଅନୁମୋଦନ ନେବାକୁ ପଡ଼ୁଥିଲା । ତ୍ରୟୋଦଶ ଏବଂ ଚତୁର୍ଦ୍ଦଶ ଶତାବ୍ଦୀ ପରେ ଜମିର ବିକା କିଣା ସଂପର୍କିତ ବିଧି ନିଷେଧ ଆହରି ଦୃଢ଼ ହୋଇଥିଲା । ସମ୍ଭବତଃ, ଦାନ ହିସାବରେ ମିଳୁଥିବା ଅନାବାଦୀ ଜମିରେ ମନ୍ଦିରଗୁଡ଼ିକ ତରଫରୁ ସେପର୍ଯ୍ୟନ୍ତ ନିଜସ୍ୱ ମାହାଲ ଗଢ଼ି ତୋଳୁଥିଲେ, ଗ୍ଭଷକାର୍ଯ୍ୟରେ ନିଯୁକ୍ତ କରାଯାଉଥିଲା ମଠବାସୀ ସାଧୁ ସନ୍ନ୍ୟାସୀ ଏବଂ ତା'ଛଡ଼ା କ୍ରୀତଦାସ, ଭାଗ ଗ୍ଭଷୀ ଓ ଭଡ଼ାଟିଆ ଶ୍ରମିକମାନଙ୍କୁ । ଷଷ୍ଠ – ଅଷ୍ଟମ ଶତାବ୍ଦୀଠାରୁ ଆରମ୍ଭ କରି ପରବର୍ତ୍ତୀ କାଳରେ ମନ୍ଦିରଗୁଡ଼ିକ ତରଫରୁ ଏକ ସାଧାରଣ ପ୍ରଥା ହୋଇ ଦେଖା ଦେଇଥିଲା ଗୋଟିଏ ଗୋଟିଏ ସମଗ୍ର ଗ୍ରାମର ଭକ୍ତମାନଙ୍କ ଶ୍ରମଦାନକୁ ଉପଗ୍ଭର ହିସାବରେ ଗ୍ରହଣ କରିବା । ଏହିସବୁ ଗ୍ରାମର ଅଧିବାସୀଗଣ ସେତେବେଳେ ପୁରୋହିତ ବା ସାଧୁମାନଙ୍କର ହୋଇ ଜମିରେ ଗ୍ଭଷ କରୁଥିଲେ । ଘଟଣା ହିସାବରେ ଏକଥା ମଧ୍ୟ ଜଣାଯାଏ ଯେ, ସପ୍ତମ ଏବଂ ଅଷ୍ଟମ ଶତାବ୍ଦୀରେ ମନ୍ଦିରଗୁଡ଼ିକ ଟଙ୍କା ବଦଳରେ ଜିନିଷପତ୍ର ଆକାରରେ ଖଜଣା ଆଦାୟ କରୁଥିଲେ । ଜମିରେ ଉତ୍ପନ୍ନ ଖାଦ୍ୟ ଶସ୍ୟର ଅଂଶ ବ୍ୟତୀତ କୃଷକମାନେ ସେତେବେଳେ ବାଧ୍ୟ ହେଉଥିଲେ ମନ୍ଦିରଗୁଡ଼ିକୁ ପୂଜା ଏବଂ ଧର୍ମୀୟ ଉତ୍ସବ ଉଦ୍‌ଯାପନ ଉପଯୋଗୀ ଅପରିହାର୍ଯ୍ୟ ସମସ୍ତ ଉପଗ୍ଭର ଯୋଗାଇବାକୁ, ଯଥା, ସେମାନେ ଯୋଗାଉଥିଲେ ତେଲ, ଧୂପ, ଝୁଣା, ଫୁଲମାଳ, ଉତ୍ସବ ଉପଲକ୍ଷେ ପରିଧାନଯୋଗ୍ୟ ପୋଷାକପତ୍ର, ଆଦି ।

ମନ୍ଦିର ଅଧୀନସ୍ଥ ତାଲୁକର ଦେଖା ଶୁଣା କରୁଥିଲେ ସାଧାରଣତଃ ବ୍ରାହ୍ମଣ ଓ ଅନ୍ୟାନ୍ୟ କୃଷକ ବା ବଣିକମାନଙ୍କର ଏବଂ କାରିଗରମାନଙ୍କର ଜାତି ବା ସଂପ୍ରଦାୟର ମୁଖିଆମାନଙ୍କୁ ନେଇ ଗଠିତ ଏକ ପରିଷଦ । ମନ୍ଦିର ପରିଗ୍ଭଳନା କର୍ମୀମାନଙ୍କର ସଂଖ୍ୟା ଥିଲା ବିପୁଳ । ସେମାନଙ୍କ ମଧ୍ୟରେ ଥିଲେ ପୋଥି ଲେଖିଲା ବାଲା, କାରିଗର, ଗାୟକ ଗାୟିକା, ବାଦକ, ନର୍ତ୍ତକ ନର୍ତ୍ତକୀ, ଆଦି ।

ଦକ୍ଷିଣ ଭାରତର ଏହି ଧରଣର ମନ୍ଦିର କର୍ମୀମାନଙ୍କର ସଂଖ୍ୟା ଏବଂ ସେମାନଙ୍କ କାମର ଧରଣ ଥିଲା ବିଶେଷ ଭାବେ ବ୍ୟାପକ ଏବଂ ସମଗ୍ର ବ୍ୟବସ୍ଥାଟି ଥିଲା ସୁସଂଗଠିତ ।

ମନ୍ଦିରଗୁଡ଼ିକୁ ଯଦିଓ ସେତେବେଳେ "ଯାବତ୍ ଚନ୍ଦ୍ରାର୍କେ" ଭୂମିଦାନ କରାଯାଉଥିଲା ଏବଂ ଖୋଦିତ ଲିପିଗୁଡ଼ିକରେ ମନ୍ଦିର ଜମିରେ ସମ୍ଭାବ୍ୟ ହସ୍ତକ୍ଷେପକାରୀଙ୍କ ବିରୁଦ୍ଧରେ ଅଭିଶାପ ବାଣୀ ଲିପିବଦ୍ଧ ରହୁଥିଲା, ତେବେ ଐତିହାସିକ ଦଲିଲ ପତ୍ରାଦିରୁ ଏହା ପରିଷ୍କାର ଜଣାଯାଏ ଯେ, ଅନେକ ସମୟରେ, ବିଶେଷ କରି ରାଷ୍ଟ୍ରୀୟ ଘଡ଼ିସନ୍ଧି ବେଳେ—ଯେତେବେଳେ ଗୋଟିଏ ରାଜ୍ୟର ପତନ ଓ ଅପର ଏକ ରାଜ୍ୟର ଉତ୍‌ଥାନ ଘଟୁଥିଲା—କିମ୍ବା ଯେତେବେଳେ ବିଦେଶୀ ଆକ୍ରମଣ ଅଭିଯାନ ଫଳରେ ସ୍ଥାନୀୟ ଜନସାଧାରଣ ପରାଧୀନ ହୋଇ ପଡ଼ୁଥିଲେ, ସେତେବେଳେ କେବଳ ମାତ୍ର ସାମନ୍ତ ଭୂସ୍ୱାମୀମାନଙ୍କର ତାଲୁକ ନୁହେଁ, ବ୍ରାହ୍ମଣ ସଂପ୍ରଦାୟର ଓ ମନ୍ଦିର ଅଧୀନସ୍ଥ ଜମିଜମାକୁ ମଧ୍ୟ ରାଷ୍ଟ୍ର ବାଜ୍ୟାପ୍ତ କରି ନେଉଥିଲା । ଏଥିରୁ ଜଣାଯାଏ, କିପରି ଏହି ଯୁଗରେ ରାଷ୍ଟ୍ର ଅଧୀନସ୍ଥ ଜମି ଓ ସାମନ୍ତ ଭୂସ୍ୱାମୀମାନଙ୍କର ବ୍ୟକ୍ତିଗତ ମାଲିକାନାଧୀନ ଜମିର ଆପେକ୍ଷିକ ପରିମାଣ ଅନବରତ ବଦଳିବାରେ ଲାଗିଥିଲା ।

ତେବେ, ଏସବୁ ସତ୍ତ୍ୱେ ଭାରତରେ ଗ୍ରାମୀଣ ସମାଜର ସଦସ୍ୟମାନେ ସେମାନଙ୍କ ବହୁବିଧ ଅଧିକାର ରକ୍ଷା କରିବାକୁ ସମର୍ଥ ହୋଇଥିଲେ, ଏବଂ ତାହା କେବଳ ବ୍ୟକ୍ତିଗତ ସ୍ୱାଧୀନତା ରକ୍ଷାର ବିଷୟ ନୁହେଁ, ଅନ୍ୟ କେତେକ ଅଧିକାର ଓ ସୁଯୋଗ ସୁବିଧା ବଜାଏ ରଖିବାର ବିଷୟ ମଧ୍ୟ । ସେ ଯୁଗରେ ଭୂମିଦାନ (ଏବଂ ଏହା ବିଶେଷ କରି ବଙ୍ଗ ଦେଶ କ୍ଷେତ୍ରରେ ପ୍ରଯୋଜ୍ୟ ଥିଲା) କରାଯାଉଥିଲା ସମଗ୍ର ଭାବେ ସ୍ଥାନୀୟ ଜନସାଧାରଣଙ୍କର ଉପସ୍ଥିତିରେ, ଏପରିକି ସମାଜର ସବୁଠାରୁ ନୀଚ ସଂପ୍ରଦାୟଗୁଡ଼ିକର ସପକ୍ଷରେ । ଭୂମିଦାନ ସହିତ ସଂଶ୍ଳିଷ୍ଟ ଖୋଦିତ ଲିପିଗୁଡ଼ିକରେ, ଅବଶ୍ୟ, ବିଶେଷ ଭାବେ ଉଲ୍ଲେଖ କରାଯାଉଥିଲା ମହତ୍ତରମାନଙ୍କ, ଅର୍ଥାତ୍, ସମାଜର "ସମ୍ମାନୀୟ ସଦସ୍ୟମାନଙ୍କ" ସଂପର୍କରେ । ମନେ ହୁଏ, ବିଭିନ୍ନ ସଂପ୍ରଦାୟର ମୁଖ୍ୟ ଏବଂ ପୋଥି ଲେଖକମାନେ ଏହି ମହତ୍ତରମାନଙ୍କ ଅନ୍ତର୍ଭୁକ୍ତ ଥିଲେ ।

ଦକ୍ଷିଣ ମହାରାଷ୍ଟ୍ରରୁ ମିଳିଥିବା ଭୂମିଦାନର ଏହି ଭଳି ଏକ ପଟ୍ଟାରେ ଉଲ୍ଲେଖ ଅଛି ଯେ, ନିଷ୍କର ଏକ କ୍ଷେତର ମାଲିକ ଥିଲେ କୌଣସି ଏକ ଗ୍ରାମର ମୁଖିଆ । ମଧ୍ୟ ଯୁଗରେ ଲିଖିତ ସାହିତ୍ୟର ପୋଥିଗୁଡ଼ିକରୁ ଏହା ସ୍ପଷ୍ଟ ରୂପେ ପ୍ରତୀତ ହୁଏ ଯେ, ଗ୍ରାମର ଏହିସବୁ ମୁଖିଆ ଉତ୍କୋଚ ଆଦାୟ ନିମିତ୍ତ ପ୍ରାୟ ନିଜର କ୍ଷମତା ପ୍ରୟୋଗ କରୁଥିଲେ । ଗ୍ରାମର ଅନ୍ୟାନ୍ୟ ଅଧିବାସୀମାନଙ୍କ ଠାରୁ ସେମାନେ ମାନ ମର୍ଯ୍ୟାଦା ଓ ଉପହାର ଦାବୀ କରୁଥିଲେ । ଗ୍ରାମ୍ୟ ସମାଜର ଅନ୍ୟାନ୍ୟ ସଦସ୍ୟଙ୍କ ଅପେକ୍ଷା ସେମାନେ ଥିଲେ ଅନେକ ଗୁଣରେ ଧନୀ ଏବଂ ସେମାନଙ୍କ ପ୍ରଭାବ ଅନେକ ସମୟରେ ଗ୍ରାମର ସୀମା ପାରି ହୋଇ ବାହାରକୁ ପ୍ରକାଶ ପାଉଥିଲା । ନାମ ଅନୁଯାୟୀ ବିଗ୍ରହ କଲେ, ଏକଥା କହିବାକୁ ହୁଏ ଯେ, ରାଷ୍ଟ୍ରକୂଟ ନାମକ ରାଜବଂଶର ଉଦ୍‌ଭବ ଘଟିଥିଲା ଗ୍ରାମବାସୀଙ୍କର ଠିକ୍ ଏହି ସ୍ତରଟିରୁ । କ୍ଷମତାସୀନ ହେଲା ପରେ ରାଷ୍ଟ୍ରକୂଟ ବଂଶଟି ଗ୍ରାମ୍ୟ ସମାଜରେ ସେମାନଙ୍କ ସଂପ୍ରଦାୟର ଅବସ୍ଥାନର ଭିତ୍ତିରେ ସେମାନଙ୍କ ଉପାଧିଟିକୁ (ଗ୍ରାମଶ୍ରେଷ୍ଠ) ପୂରାପୂରି ଭାବେ ରାଜବଂଶ ନାମରେ ପରିଣତ କରିଥିଲେ ଏବଂ ନିଜର ଗ୍ରାମୀଣ ଉତ୍ପତ୍ତି ପାଇଁ ବିନ୍ଦୁମାତ୍ର ଲଜ୍ଜାବୋଧ କରି ନଥିଲେ ।

ମଧ୍ୟ ଯୁଗରେ ଭାରତରେ ଗ୍ରାମ୍ୟ ସମାଜ ଥିଲା ଏକ ଶକ୍ତିଶାଳୀ ସମାଜ ସଂଗଠନ ଏବଂ ତାହା ଯେ କେବଳ ଉଲ୍ଲେଖନୀୟ ସାମାଜିକ-ଅର୍ଥନୈତିକ ଭୂମିକା ପାଳନ କରୁଥିଲା, ତାହା ନୁହେଁ, ବିଶେଷ ଏକ ରାଜନୈତିକ ଭୂମିକା ମଧ୍ୟ ପାଳନ କରୁଥିଲା । ବିଶେଷ କରି ଦକ୍ଷିଣ ଭାରତରେ ଏହା ଥିଲା ଲକ୍ଷଣୀୟ । ଉତ୍ତର ଭାରତରେ ଗ୍ରାମ୍ୟ ସମାଜଗୁଡ଼ିକ ଆୟତନରେ ଅପେକ୍ଷାକୃତ ଛୋଟ ଏବଂ କମ୍ ପ୍ରଭାବଶାଳୀ ଥିଲା ବୋଲି ମନେ ହୁଏ । ତେବେ ସେଠାରେ ମଧ୍ୟ ଅନେକ ସମୟରେ ଅନେକଗୁଡ଼ିଏ ଗ୍ରାମ କିମ୍ବା ଅପେକ୍ଷାକୃତ ଛୋଟ ଏକକ (ଯଥା, କୋଣ, ପଟ୍ଟକ ପ୍ରଭୃତି) ଏହି ସମାଜର ଅନ୍ତର୍ଭୁକ୍ତ ଥିଲେ । ସମ୍ମାନଜନକ ବ୍ୟକ୍ତିମାନଙ୍କୁ ନେଇ ଗଠିତ ପରିଷଦ ପ୍ରତ୍ୟେକ ସମାଜର ଥିଲା । ଏହି ପରିଷଦ ସମାଜର ଅଧୀନସ୍ଥ ସକଳ ଜମିର ଭାରପ୍ରାପ୍ତ ରହୁଥିଲା ଏବଂ ସମସ୍ତ ସ୍ଥାନୀୟ ବିବାଦ ଓ ମକଦ୍ଦମାର ନିଷ୍ପତ୍ତି କରୁଥିଲା । ଦକ୍ଷିଣ ଭାରତରେ ଗ୍ରାମୀଣ ସମାଜର ଆଧିପତ୍ୟ ଗୋଟାଏ ଗୋଟାଏ ଜିଲ୍ଲାର ଭୂଖଣ୍ଡ (ତାମିଲମାନଙ୍କ ନାଡ଼ୁ) ଉପରେ ବିସ୍ତୃତ ଥିଲା । କର୍ଣ୍ଣାଟକର ବିଭିନ୍ନ ଭୌଗଳିକ ନାମ ପଛରେ ଗୋଟିଏ କରି ସଂଖ୍ୟା ଯୁକ୍ତ ହେଉଥିଲା ଏବଂ ସେଥିରୁ ବଡ଼ ବଡ଼ ଗ୍ରାମୀଣ ସମାଜକୁ ଜାଣି ହେଉଥିଲା । ଯଥା ବେଲ୍‌ଭୋଲ ୩୦୦, କିମ୍ବା ଚିରାପି ୧୨, ଆଦି । ଏହିସବୁ ସଂଖ୍ୟା ଦେଇ ପ୍ରକୃତରେ କ'ଣ ପ୍ରକାଶ ପାଉଥିଲା, ସେ ସଂପର୍କରେ ଏପର୍ଯ୍ୟନ୍ତ ପଣ୍ଡିତମାନେ ଏକମତ ନୁହନ୍ତି, ତେବେ, ଖୁବ୍ ସମ୍ଭବତଃ, ଏହି ସଂଖ୍ୟାଗୁଡ଼ିକ ଦ୍ୱାରା ପ୍ରକାଶ ପାଉଥିଲା ଏକ ବିଶେଷ ଗ୍ରାମ୍ୟ ସମାଜର ସଂଗଠନ ଅନ୍ତର୍ଭୁକ୍ତ ଖମାରର ସଂଖ୍ୟା, କିମ୍ବା ସ୍ଥାନୀୟ ଗ୍ରାମ ପରିଷଦର ସଂଖ୍ୟା ।

ଏହିସବୁ ଗ୍ରାମ୍ୟ ସମାଜ ସେମାନଙ୍କ ନିଜସ୍ୱ ପ୍ରଶାସନ ଓ ପ୍ରତିରକ୍ଷା ବ୍ୟବସ୍ଥା ସଂଗଠିତ କରୁଥିଲେ, କୃଷକମାନଙ୍କ ମଧ୍ୟରେ ପାରସ୍ପରିକ ସାହାଯ୍ୟର ବନ୍ଦୋବସ୍ତ କରୁଥିଲେ, ଜମିରେ ଜଳସେଚନ ବ୍ୟବସ୍ଥା ନିର୍ମାଣ କରୁଥିଲେ ଏବଂ ସ୍ଥାନୀୟ ସାମନ୍ତ ଭୂସ୍ୱାମୀମାନଙ୍କ ମଧ୍ୟରେ ସଂଘର୍ଷ ହେଲେ ସେଥିରେ ଯୋଗ ଦେଉଥିଲେ । ସମାଜର ଘୋଷଣାପତ୍ରଗୁଡ଼ିକ ଖୋଦିତ ହେଉଥିଲା ପଥରର ଫଳକ ଉପରେ ଏବଂ ଅନେକ ସମୟରେ ସେସବୁକୁ ମନ୍ଦିର ଦେହରେ ସଂଯୁକ୍ତ କରି ରଖାଯାଉଥିଲା । ଏହିସବୁ କାର୍ଯ୍ୟ ପାଇଁ ଚାନ୍ଦା ଆକାରରେ ଅର୍ଥ ସଂଗ୍ରହ କରାଯାଉଥିଲା ଏବଂ ବେଳେ ବେଳେ ଏହି ଚାନ୍ଦା ବା ଦେୟ ଅର୍ଥର ପରିମାଣ ଭୂମି ରାଜସ୍ୱ ଠାରୁ କମ୍ ହେଉ ନଥିଲା । କ୍ରମଶଃ ସାମନ୍ତତନ୍ତ୍ରୀକରଣର ପ୍ରକ୍ରିୟାର ଅଗ୍ରଗତି ଯେତେ ଘଟିବାକୁ ଲାଗିଲା, ସେତେ ଏହିସବୁ ବଡ଼ ବଡ଼ ଗ୍ରାମୀଣ ସମାଜ ସେମାନଙ୍କ ସ୍ୱାୟତ୍ତଶାସନର ଅଧିକାର ହରାଇବାକୁ ବସିଲେ ଏବଂ ସାଧାରଣ ପ୍ରଶାସନିକ ଏକକରେ ପରିଣତ ହେବାକୁ ଲାଗିଲେ ଏବଂ ଏସବୁ କ୍ରମଶଃ ଆସିବାକୁ ଲାଗିଲେ କେନ୍ଦ୍ରୀୟ କର୍ତ୍ତୃପକ୍ଷଙ୍କ ନିୟୋଜିତ କର୍ମଚାରୀମାନଙ୍କର ନିୟନ୍ତ୍ରଣାଧୀନକୁ । ମନେ ହୁଏ, ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଏହିସବୁ ବଡ଼ ବଡ଼ ଗ୍ରାମୀଣ ସମାଜର ଚରମ ପତନ ଘଟିଲା ଏବଂ ଏସବୁ ଖୁବ୍ ବେଶି ହେଲେ ଗୋଟିଏ କିମ୍ବା ଦୁଇଟି ଗ୍ରାମର ଭିତ୍ତିରେ ଗଠିତ ଛୋଟ ଛୋଟ ବିଭିନ୍ନ ସଂଗଠନରେ ପରିଣତ ହେଲେ ।

ମଧ୍ୟଯୁଗୀୟ ଭାରତରେ ଏହିସବୁ ଗ୍ରାମୀଣ ସମାଜର ନିୟନ୍ତ୍ରଣାଧୀନ ଆବାଦୀ ଜମିକୁ କୃଷକମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଉଥିଲା । ଦକ୍ଷିଣ ଭାରତ ସଂପର୍କିତ ଲିଖିତ ଉପାଦାନଗୁଡ଼ିକରେ ଏକାଦଶ ଏବଂ ଦ୍ୱାଦଶ ଶତାବ୍ଦୀରେ ଓ ତା'ର ପରବର୍ତ୍ତୀ ସମୟରେ କୃଷକମାନଙ୍କ ମଧ୍ୟରେ ଅପେକ୍ଷାକୃତ ନ୍ୟାଯ୍ୟ ଭାବେ, ଅର୍ଥାତ୍, ଅପେକ୍ଷାକୃତ ଉର୍ବର ଜମି ଓ ଅପେକ୍ଷାକୃତ ସୁବିଧାଜନକ

ପରିବେଶରେ ଅବସ୍ଥିତ ଜମି ବଣ୍ଟନ ପାଇଁ ମୋଟ ଜମିର ପୁନର୍ବିଭାଗ କଥା ଉଲ୍ଲେଖ ଥିବାର ଜଣାଯାଏ । ଅବଶ୍ୟ, ଜମିର ଏହି ପୁନର୍ବିଭାଗ କୌଣସି କ୍ରମେ ସେତେବେଳେ ସାଧାରଣ ନିୟମର ଅଙ୍ଗୀଭୂତ ନଥିଲା ଏବଂ ଏହା ଫଳରେ ଗ୍ରାମ୍ୟ ସମାଜର ଜମିରେ କୃଷକମାନଙ୍କର ନ୍ୟାଯ୍ୟ ଅଂଶ ଉପରେ (ଯାହାକୁ ସେ ଦାନ ହସ୍ତାନ୍ତର ଆଦି କରି ପାରୁଥିଲେ) ତା'ର ମାଲିକାନାର ଅଧିକାର ମଧ୍ୟ କ୍ଷୁଣ୍ଣ ହୋଇ ନଥିଲା । ଗ୍ରାମ୍ୟ ସମାଜର ପ୍ରତ୍ୟେକ ଅଧିକାରସଂପନ୍ନ ସଦସ୍ୟ ଥିଲେ ଜମିର ମାଲିକ ଏବଂ ଇଚ୍ଛା କଲେ, ଜମିଦାନ କରି ପାରୁଥିଲେ । ସେ ଯେପରି ଜମିଦାନ କିମ୍ବା ହସ୍ତାନ୍ତର କରି ପାରୁଥିଲେ, ସେଇପରି ଜମି ବିକ୍ରି ବା କିଣି ପାରୁଥିଲେ । ତେବେ ଜମି ଥରେ ଗ୍ରାମ୍ୟ ସମାଜର ବାହାରକୁ ହସ୍ତାନ୍ତର କରିବାକୁ ଗଲେ ଏକମାତ୍ର ସମାଜର ନିୟନ୍ତ୍ରଣାଧୀନରେ ତାହା କରିବା ସମ୍ଭବ ଥିଲା । ପତିତ ଜମି ସମଗ୍ର ଭାବେ ସେତେବେଳେ ସମାଜର ଅଧୀନରେ ଥିଲା ଏବଂ ସେ ଧରଣର ଜମି ପାଇଁ ଭୂମି ରାଜସ୍ୱ ଦେବାକୁ ପଡୁ ନଥିଲା । ଏହା ଛଡ଼ା ପ୍ରତ୍ୟେକ ଗ୍ରାମରେ ଏପରିସବୁ ଜମିମାଲିକ ଥିଲେ ଯେଉଁମାନଙ୍କର ଏସବୁ ଅଧିକାର ନଥିଲା । ଏହି ସ୍ତରର ଲୋକଙ୍କ ସଂଖ୍ୟା ବେଶି ନଥିଲା ବୋଲି ମନେ ହୁଏ । ଏକାଦଶ ଏବଂ ଦ୍ୱାଦଶ ଶତାବ୍ଦୀରେ ଗ୍ରାମ୍ୟ କାରିଗରମାନଙ୍କୁ ଗ୍ରାମର ଅନ୍ୟାନ୍ୟ ଅଧିବାସୀମାନଙ୍କ ଠାରୁ ପୃଥକ୍ ବୋଲି ଗଣ୍ୟ କରାଯାଉଥିଲା ଏବଂ ଗ୍ରାମ୍ୟ ସମାଜ ସେମାନଙ୍କର ଭରଣ ପୋଷଣ ଦାୟିତ୍ୱ ନେଉଥିଲା । ଏହି ସମୟର ପୂର୍ବ ପର୍ଯ୍ୟନ୍ତ ଲିଖିତ ଦଲିଲ ପତ୍ରରେ ଗ୍ରାମ୍ୟ ସମାଜର ଅନ୍ତର୍ଭୁକ୍ତ ଶ୍ରେଣୀ ଓ ସଂପ୍ରଦାୟଗୁଡ଼ିକର କୌଣସି ଉଲ୍ଲେଖ ମିଳେ ନାହିଁ । ଯେହେତୁ ଗ୍ରାମ୍ୟ ସମାଜଗୁଡ଼ିକର ଆଭ୍ୟନ୍ତରୀଣ ପରିବର୍ତ୍ତନ ଫଳରେ ଭୂମିରାଜସ୍ୱଦାତା ଭୂଖଣ୍ଡ ହିସାବରେ ସେମାନଙ୍କ ଅବସ୍ଥାନରେ କୌଣସି ପରିବର୍ତ୍ତନ ଘଟିନ୍ଥିଲା ନାହିଁ, ତେଣୁ ସାମନ୍ତ ଭୂସ୍ୱାମୀମାନେ ଗ୍ରାମ୍ୟ ଜୀବନ ଓ ତା'ର କ୍ରିୟାକଳାପରେ ହସ୍ତକ୍ଷେପ କରୁ ନଥିଲେ ।

ମଧ୍ୟଯୁଗୀୟ ଭାରତରେ, କହିବାକୁ ଗଲେ, ଥିଲା ତିନୋଟି ବିଭିନ୍ନ ଜଗତ ଏବଂ ତା'ର ତିନି ରକମର ବିଚିତ୍ର ଜୀବନଯାତ୍ରା ପ୍ରଣାଳୀର ଅସ୍ତିତ୍ୱ : ପ୍ରଥମ – ସମସ୍ତ ପ୍ରଭୁ ବା ମନ୍ଦିର ଓ ତା'ର ଅନୁଗାମୀ ତଥା ସଂଶ୍ଳିଷ୍ଟ ଜଗତ ; ଦ୍ୱିତୀୟ – ଗ୍ରାମ୍ୟ ସମାଜ, ଏବଂ ତୃତୀୟ – ସହର ।

ତ୍ରୟୋଦଶ ଶତାବ୍ଦୀର ଏକେବାରେ ଶେଷ ପର୍ଯ୍ୟନ୍ତ, ଏପରିକି ଚତୁର୍ଦ୍ଦଶ ଶତାବ୍ଦୀରେ ମଧ୍ୟ ସହରଗୁଡ଼ିକ, ବିଶେଷ କରି ଦକ୍ଷିଣ ଭାରତର ସମୁଦ୍ର ବନ୍ଦରସ୍ଥ ସହରଗୁଡ଼ିକ ବ୍ୟାପକ ସ୍ୱାୟତ୍ତ-ଶାସନ ଉପଭୋଗ କରୁଥିଲେ । ଏହିସବୁ ସହରର ଜୀବନଯାତ୍ରା ନିୟନ୍ତ୍ରଣ କରୁଥିଲେ ନଗର ପରିଷଦଗୁଡ଼ିକ ଏବଂ ଏସବୁର ସଦସ୍ୟମାନଙ୍କ ମଧ୍ୟରେ ରହୁଥିଲେ ଅପେକ୍ଷାକୃତ ଧନୀ ଓ ଅଧିକ ପ୍ରଭାବଶାଳୀ ଜାତି ବା ସଂପ୍ରଦାୟଗୁଡ଼ିକର ମୁଖିଆମାନେ । ବଣିକମାନଙ୍କର ପ୍ରତିନିଧିମାନେ ସାଧାରଣତଃ ଏସବୁଥିରେ ରହୁଥିଲେ ଏବଂ ବେଳେ ବେଳେ ସେଥିରେ କାରିଗରମାନେ ମଧ୍ୟ ରହୁଥିଲେ (ଯଥା, ତମ୍ବା କାରିଗର ଓ ତେଲିକାର) । ନଗର ପରିଷଦ କେବଳ ଯେ, ସହରର ଆଇନ୍ ଶୃଙ୍ଖଳା ରକ୍ଷାର ବ୍ୟାପାରରେ ମଥା ଖେଳଉଥିଲେ ବା ମକଦ୍ଦମା ନିଷ୍ପତ୍ତି କରୁଥିଲେ, ତା ନୁହେଁ, କାରିଗରମାନଙ୍କ ନିକଟରୁ ତାହା ବାଣିଜ୍ୟ ସଂକ୍ରାନ୍ତ ଶୁଳ୍କ ଓ ଅନ୍ୟାନ୍ୟ କର ମଧ୍ୟ ଆଦାୟ କରୁଥିଲେ ନିଜର ଉପଭୋଗାର୍ଥେ ଏବଂ ସ୍ୱାଧୀନ ଭାବେ ନିର୍ଦ୍ଦିଷ୍ଟ କରି ଦେଉଥିଲେ ଏହିସବୁ ଶୁଳ୍କ ଆଉ କରର ପରିମାଣ । ନଗର ପରିଷଦ ନିଜ ଉଦ୍ୟୋଗରେ ଧର୍ମୀୟ ଅନୁଷ୍ଠାନାଦି ଉପଲକ୍ଷେ ମନ୍ଦିରଗୁଡ଼ିକୁ ଅର୍ଥଦାନ କରୁଥିଲା, ସାଧାରଣ ଭାବେ ପରୋପକାରାର୍ଥେ ମଧ୍ୟ ଅର୍ଥ ଦେଉଥିଲା ।

ଚା'ଛଡ଼ା ବାଣିଜ୍ୟ ସଂକ୍ରାନ୍ତ ଶୁଳ୍କ କିମ୍ବା କାରୁଶିଳ୍ପୀମାନଙ୍କର ବାସସ୍ଥାନ ବାବଦରୁ କର ଆଦାୟ ଦ୍ୱାରା ଏହି ପ୍ରତିଷ୍ଠାନର ଯେଉଁ ଆୟ ହେଉଥିଲା, ସେଥିରୁ ସେମାନେ କେବଳ ଅର୍ଥଦାନ କରୁ ନଥିଲେ, ସହରର ଅଧିକାର ଭୁକ୍ତ ସେଇସବୁ ଜମିକୁ ଦାନ କରି ପାରୁଥିଲେ, ଯେଉଁସବୁ ଜମି, ତତ୍କାଳୀନ ଖୋଦିତ ଲିପିଗୁଡ଼ିକର ଭାଷାରେ – "ଗୃହ ନିର୍ମାଣ ଉଦ୍ଦେଶ୍ୟରେ ବ୍ୟବହୃତ ହେଉ ନଥିଲା" । ଏହିସବୁ ନଗର ପରିଷଦ ଥିଲା ବହୁ ସଂପ୍ରଦାୟର ମିଳିତ ସଂଗଠନ । ବହୁ ପରିମାଣରେ ଏସବୁ ଥିଲା ସ୍ୱଶାସିତ ।

ଏଥି ସଙ୍ଗେ ସଙ୍ଗେ ଗୋଟିଏ ଗୋଟିଏ ବାଣିଜ୍ୟ ଅଞ୍ଚଳରେ କର୍ତ୍ତୃତ୍ୱ କରୁଥିଲେ ଗୋଟିଏ ଗୋଟିଏ ବଣିକ ସଂଘ । ଏହି ଭଳି ଏକ ସଂଘର ଉଦାହରଣ ହେଉଛି ଆଇହୋଲର ବଣିକ ସଂଘ । ଏହାର ପ୍ରଭାବ ଏକଦା ବ୍ୟାପୀ ଯାଇଥିଲା ଦକ୍ଷିଣ ଭାରତର ବହୁ ଅଞ୍ଚଳରେ ଏବଂ ଦକ୍ଷିଣ-ପୂର୍ବ ଏସିଆର ଭାରତୀୟ ବଣିକମାନଙ୍କର ବିଭିନ୍ନ ବାଣିଜ୍ୟ କେନ୍ଦ୍ରରେ । ତେବେ ଏହି ସଂଘଟିର ହୃତ୍‌କେନ୍ଦ୍ର – ପାଞ୍ଚଶହ ସ୍ୱାମୀଙ୍କୁ ନେଇ ଗଠିତ ଏହାର ପରିଷଦ – ଅବସ୍ଥିତ ଥିଲା ଦକ୍ଷିଣ ଭାରତର ଆଇହୋଲ ସହରରେ । ଏହିଭଳି ଆଉ ଏକ ସଂଘ ହେଲା ମଣିଗ୍ରାମମ୍, ଏହା କେନ୍ଦ୍ର ଥିଲା ବର୍ତ୍ତମାନର କେରଳରେ । ମଣିଗ୍ରାମମ୍‌ର ପ୍ରଭାବ କେବଳ ଭାରତ ମଧ୍ୟରେ ସୀମିତ ନଥିଲା, ତାହା ବିସ୍ତୃତ ହୋଇଥିଲା ମିଶର, ଆରବ ଓ ଦକ୍ଷିଣ-ପୂର୍ବ ଏସିଆରେ । ପେନୁକୋଣ୍ଡାକୁ କେନ୍ଦ୍ର କରି କୋମଟି ନାମକ ଯେଉଁ ବଣିକ ସଂଘଟି ଗଢ଼ି ଉଠିଥିଲା ତା'ର ସଦସ୍ୟମାନେ ଅଠରଟି ବିଭିନ୍ନ ନଗର ପରିଷଦର ଅଧିକାଂଶ ସଦସ୍ୟ ପଦ ଦଖଲ କରିଥିଲେ । ଏହିଭଳି ଆଉରି ଅନେକ ବଣିକ ସଂଗଠନର ଅସ୍ତିତ୍ୱ ସେତେବେଳେ ରହିଥିଲା ।

ତେବେ ଏକଥା ମନେ କଲେ ଭୁଲ ହେବ ଯେ, ଏହି ଯୁଗର ଭାରତୀୟ ସହରଗୁଡ଼ିକ ନୂତନ ପୁଞ୍ଜିବାଦୀ ସଂପର୍କର ଭ୍ରୂଣାବସ୍ଥାରେ ଥିଲା ବୋଲି । ତତ୍କାଳୀନ ସହରଗୁଡ଼ିକରେ ବ୍ୟାପକ ସ୍ୱାୟତ୍ତଶାସନ ବ୍ୟବସ୍ଥା କେବଳ ମାତ୍ର ଏହି ସତ୍ୟଟିର ଇଂଗିତ ଦିଏ ଯେ, ସାମନ୍ତବାଦୀ ଭୂସ୍ୱାମୀମାନେ ସେପର୍ଯ୍ୟନ୍ତ ଦେଶର ଅର୍ଥନୀତି ଓ ସମାଜ ଜୀବନ ଉପରେ ନିଜର କର୍ତ୍ତୃତ୍ୱ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇ ନଥିଲେ । ଏପରି ଉଲ୍ଲେଖ ମିଳି ପାରେ ଯେ, କେତେକ ସହରରେ ସେତେବେଳେ ରାଷ୍ଟ୍ରୀୟ ପ୍ରଶାସନର ପ୍ରତିନିଧିମାନେ ରହୁଥିଲେ ଏବଂ କେତେକ କ୍ଷେତ୍ରରେ ସେଇମାନେ ହିଁ ଚୂଡ଼ାନ୍ତ ସିଦ୍ଧାନ୍ତ ନେଉଥିଲେ । କ୍ରମଶଃ ସାମନ୍ତବାଦୀ ରାଷ୍ଟ୍ରର କ୍ଷମତା ଯେତେ ବୃଦ୍ଧି ପାଇବାକୁ ଲାଗିଲା, ସହରଗୁଡ଼ିକ ସେମାନଙ୍କ ସ୍ୱାୟତ୍ତଶାସନର ଅଧିକାର ସେତେ ହରେଇବାକୁ ଲାଗିଲେ । ରାଜକର୍ମଚାରୀମାନେ କ୍ରମଶଃ ରାଜସ୍ୱ ଆଦାୟ କରିବାକୁ ଲାଗିଲେ । ରାଜସ୍ୱର ପରିମାଣ ସେଇମାନେ ହିଁ ନିର୍ଦ୍ଦିଷ୍ଟ କରି ଦେଲେ । ସହରର ଛୋଟ ଛୋଟ ଦୋକାନ ଓ କାରିଗରମାନଙ୍କର ମହଲଗୁଡ଼ିକରୁ ଆଦାୟ ହେଉଥିବା ରାଜସ୍ୱକୁ ତୋଳି ନିଆଗଲା ସାମନ୍ତବାଦୀ ଭୂସ୍ୱାମୀମାନଙ୍କ ହାତକୁ । ନଗର ପରିଷଦଗୁଡ଼ିକର ଅସ୍ତିତ୍ୱର ଅବସାନ ଘଟିଲା । ବଣିକ ସଂଘଗୁଡ଼ିକ ରାଜନୈତିକ ପ୍ରଭାବ ହରାଇ ବସିଲେ । ଫଳରେ ଅବଶେଷରେ, ତ୍ରୟୋଦଶ ଶତାବ୍ଦୀର ଶେଷ ଓ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାରମ୍ଭର ପରଠାରୁ, ରାଜାମାନେ ଥରେ ଥରେ ଗୋଟିଏ ଗୋଟିଏ ବା କେତେକ ସହରକୁ ଦାନ କରି ଦେବାକୁ ଲାଗିଲେ ସାମନ୍ତ ଭୂସ୍ୱାମୀମାନଙ୍କୁ । ଚତୁର୍ଦ୍ଦଶ ଶତାବ୍ଦୀରୁ ଆରମ୍ଭ କରି ସହରଗୁଡ଼ିକର ସ୍ୱଶାସନ ବ୍ୟବସ୍ଥାର ଅସ୍ତିତ୍ୱ ଆଉ ରହିଲା ନାହିଁ । ସାମନ୍ତ ଭୂସ୍ୱାମୀମାନେ ଗ୍ରାମରେ ଯେତିକି, ସହରରେ ସେତିକି ସ୍ୱୈରଶାସନ ପ୍ରବର୍ତ୍ତନ କଲେ । ଏହା ପରେ

ବଣିକମାନେ ଧନସମ୍ପଦ ସତ୍ତ୍ୱେ ସାମନ୍ତ ଭୂସ୍ୱାମୀମାନଙ୍କର ଖିଆଲର ଶିକାର ହୋଇ ପଡ଼ିଲେ : ରାଜା ବା ସାମନ୍ତ ରାଜାର ପ୍ରୟୋଜନ ଅନୁଯାୟୀ ପ୍ରଚୁର ପରିମାଣର ଅର୍ଥ ନଦେଲେ, ସେମାନଙ୍କୁ ଉତ୍ପୀଡ଼ନ କରାଯାଉଥିଲା, ଏପରିକି ବେଳେ ବେଳେ କାରାରୁଦ୍ଧ କରାଯାଉଥିଲା ।

ଏହି ସମୟରେ ଭାରତୀୟ ସମାଜରେ ସମାଜ ସଂଗଠନର ଭିତ୍ତି ଥିଲା ଜାତି ପ୍ରଥା । ପ୍ରାଚୀନ କାଳରୁ ଚାରିଟି ବର୍ଣ୍ଣରେ (ବା ସାମାଜିକ ସଂପ୍ରଦାୟରେ) ସମଗ୍ର ସମାଜର ସ୍ତରବିନ୍ୟାସର ରୀତି ଚଳି ଆସିଥିଲା । ଏବଂ ପ୍ରତ୍ୟେକ ବର୍ଣ୍ଣ ବିଭକ୍ତ ହୋଇଥିଲା ବହୁ ସଂଖ୍ୟକ ଜାତିରେ । ବଣିକ ଏବଂ କାରିଗରମାନଙ୍କର ଜାତିଗୁଡ଼ିକ ମଧ୍ୟରୁ ଅଧିକାଂଶ ଗଢ଼ି ଉଠିଥିଲେ ଶ୍ରମବିଭାଗ ଫଳରେ । ଏହା ଛଡ଼ା ଆଉରି କେତେକ ଜାତି ମଧ୍ୟ ସୃଷ୍ଟି ହୋଇଥିଲେ ବିଭିନ୍ନ ଗୋଷ୍ଠୀର ଲୋକ ନୂଆ ନୂଆ ଅଞ୍ଚଳରେ ଆସି ବସତି ସ୍ଥାପନ କଲା ପରେ — ରୀତିନୀତି ଓ ଧର୍ମ ବିଶ୍ୱାସର ପାର୍ଥକ୍ୟ ହେତୁ ସ୍ଥାନୀୟ ଜନସାଧାରଣଙ୍କ ମଧ୍ୟରୁ ଅଧିକାଂଶଙ୍କ ଠାରୁ ସେମାନେ ପୃଥକ୍ ହୋଇ ରହିବା ଫଳରେ । ଆଉ କେତେକ ଜାତି ଗଢ଼ି ଉଠିଥିଲେ ମୂଳତଃ ସ୍ୱତନ୍ତ୍ର ଉପଜାତି ଗୋଷ୍ଠୀଗୁଡ଼ିକୁ ନେଇ । ପରମ୍ପରାଗତ ପେଶା ଓ ସାମାଜିକ କ୍ରିୟାକଳାପ ଭିତ୍ତିରେ ଏହିସବୁ ଉପଜାତି ଗୋଷ୍ଠୀ କାଳକ୍ରମେ ଜାତି ପ୍ରଥାର ଅନ୍ତର୍ଭୁକ୍ତ ହୋଇ ପଡ଼ିଥିଲେ । ଏହିଭଳି ପ୍ରତିଟି ଜାତିକୁ ଦେଖାଯାଉଥିଲା ସୁନିର୍ଦ୍ଦିଷ୍ଟ ମାତ୍ରାର "ବିଶୁଦ୍ଧତା" ଓ "ଅବିଶୁଦ୍ଧତାର" ଅଧିକାରୀ ହିସାବରେ ଏବଂ ଜଟିଳ ସାମାଜିକ ସ୍ତରବିନ୍ୟାସ ମଧ୍ୟରେ ଅନ୍ୟାନ୍ୟ ଜାତି ସହିତ ସଂପର୍କ ସୂତ୍ରରେ ବନ୍ଧା ଏକ ସୁନିର୍ଦ୍ଦିଷ୍ଟ ଅବସ୍ଥାନରେ ଚିହ୍ନିତ ହିସାବରେ ।

ବିଭିନ୍ନ ବର୍ଣ୍ଣର ସଂଜ୍ଞା ମଧ୍ୟରେ ନିହିତ ବୈଶିଷ୍ଟ୍ୟଗୁଡ଼ିକ ଇତି ମଧ୍ୟରେ ବଦଳି ଯାଇଥିଲା । ବ୍ରାହ୍ମଣମାନେ ସେତେବେଳେ କେବଳ ପୁରୋହିତ ନଥିଲେ, କ୍ରମଶଃ ବେଶି ବେଶି ସଂଖ୍ୟାରେ ସେମାନେ ଭୂସ୍ୱାମୀ ରାଜକର୍ମଚାରୀ ଓ ସେନାଧ୍ୟକ୍ଷ ହୋଇ ଉଠିଥିଲେ । ଉତ୍ତର ଭାରତରେ ରାଜପୁତମାନେ ସେତେବେଳେ ନିଜକୁ କ୍ଷତ୍ରିୟ ବୋଲି ଜାହିର କରିବାକୁ ଲାଗିଥିଲେ । ଏହି ସମୟରେ ଯୁଦ୍ଧ ସେମାନଙ୍କର କେବଳ ପରମ୍ପରାଗତ ପେଶା ହୋଇ ନଥିଲା, ସେମାନେ ଚାଷବାସ ମଧ୍ୟ କରୁଥିଲେ । ତେବେ ହାତରେ ଲଙ୍ଗଳ ଧରିବାକୁ ସେପର୍ଯ୍ୟନ୍ତ ସେମାନେ ଅଯୋଗ୍ୟ ବୋଲି ମନେ କରୁଥିଲେ । ଚାଷବାସର କାମ ସେମାନଙ୍କ ଆଶ୍ରିତମାନଙ୍କ ଉପରେ ନ୍ୟସ୍ତ କରିବା ଉଚିତ ବୋଲି ସେମାନେ କହୁଥିଲେ । ଦକ୍ଷିଣ ଭାରତରେ ଜାତି ହିସାବରେ କ୍ଷତ୍ରିୟମାନଙ୍କର କାର୍ଯ୍ୟତଃ ଉଦ୍‌ଭବ ଘଟି ନଥିଲା । ଯୋଦ୍ଧା ଏବଂ କୃଷିଜୀବୀ ଜାତିର ଲୋକମାନଙ୍କୁ ସେଠାରେ ଶୂଦ୍ର ବୋଲି ଗଣ୍ୟ କରାଯାଉଥିଲା । ତେବେ ଏହି ବିଶେଷ ବର୍ଣ୍ଣଟିର ବାସ୍ତବ ପଦମର୍ଯ୍ୟାଦାରେ ସେଠାରେ ଉନ୍ନତି ଘଟିଥିଲା : ଶୂଦ୍ରମାନେ ଗ୍ରାମ୍ୟ ସମାଜର ପୂରା ସଦସ୍ୟ ହୋଇ ଉଠିଲେ ଏବଂ ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ କାରିଗରମାନଙ୍କର କେତେକ ଅଂଶ କ୍ଷେତ୍ରରେ ମଧ୍ୟ ଏହି ବିଷୟଟି ଘଟିଥିବାର ଦେଖାଯାଏ । ତେବେ ବଣିକ ଏବଂ ବିତ୍ତବାନ କାରିଗରମାନେ ନିଜକୁ ବୈଶ୍ୟ ବୋଲି ଦାବି କରିବାକୁ ଲାଗିଲେ ।

ଜାତି ପ୍ରଥା ସାଧାରଣ ଭାବେ ଖାପ ଖାଇ ଯାଇଥିଲା ସମାଜର ଶ୍ରେଣୀ ବୈଷମ୍ୟ ସହିତ ଏବଂ ଏହି ବୈଷମ୍ୟକୁ ତାହା ଧର୍ମୀୟ ଆବରଣ ଯୋଗାଇଥିଲା । ପ୍ରଭାବଶାଳୀ ଓ ଧନୀ ଜନଗୋଷ୍ଠୀଗୁଡ଼ିକ ଜାତି ବିନ୍ୟାସର ଉଚ୍ଚତମ ସ୍ତରଗୁଡ଼ିକରେ ଅଧିଷ୍ଠିତ ହୋଇଥିଲେ । ଅନ୍ୟ ଦିଗରେ, ଜନସାଧାରଣଙ୍କର ନିମ୍ନତମ ସାମାଜିକ ଅର୍ଥନୈତିକ ଗୋଷ୍ଠୀଗୁଡ଼ିକୁ ସ୍ଥାନ ମିଳିଥିଲା ନିମ୍ନରେ ଥିବା ଜାତିଗୁଡ଼ିକର ସ୍ତରରେ ।

ପୁଣି ଏଥି ସଙ୍ଗେ ସଙ୍ଗେ ଯଦି କୌଣସି ବ୍ୟକ୍ତିବିଶେଷ ବା କୌଣସି ପରିବାର ଉଚ୍ଚତର ସାମାଜିକ ପଦ ଅର୍ଜନ କରୁଥିଲେ, ଅର୍ଥାତ୍, ସେମାନେ ଯଦି ବଡ଼ ଭୂସ୍ୱାମୀ, କାର୍ତ୍ତିବାନ ସେନାଧ୍ୟକ୍ଷ, ଏପରିକି ରାଜା ବା ରାଜପରିବାର ହେଉଥିଲେ, ତେବେ ସେମାନଙ୍କ ଉପର, କିମ୍ବା ଅନ୍ତତଃପକ୍ଷେ ସେମାନଙ୍କ ବଂଶଧରମାନଙ୍କ ଉପରେ ଆରୋପ କରାଯାଉଥିଲା କ୍ଷତ୍ରିୟର, ଅଥବା ସେଇଭଳି ଧରଣର ଉଚ୍ଚ ଜାତିର ମର୍ଯ୍ୟାଦା । ବ୍ୟବସାୟ ବାଣିଜ୍ୟରେ ଲିପ୍ତ ଶୁଦ୍ରମାନଙ୍କର ଗୋଷ୍ଠୀ ପରେ ଗୋଷ୍ଠୀ ଏହି ଭାବେ ବୈଶ୍ୟର ମର୍ଯ୍ୟାଦା ଅର୍ଜନ କରୁଥିଲେ । ଏପରିକି ଅସ୍ପୃଶ୍ୟମାନେ ମଧ୍ୟ ବେଳେ ବେଳେ ଶୁଦ୍ର ସ୍ତରକୁ ନିଜକୁ ଉନ୍ନୀତ କରିବାକୁ ସକ୍ଷମ ହେଉଥିଲେ, କିମ୍ବା ଅନ୍ତତଃପକ୍ଷେ ଉଚ୍ଚ ସ୍ତରର ଜାତିକୁ ଉଠିବା ପାଇଁ ଦାବୀ କରୁଥିଲେ । ଏଥି ସଙ୍ଗେ ସଙ୍ଗେ ଜାତି-ନିଶୁଣୀରେ ତଳକୁ ଖସି ଆସିବା ମଧ୍ୟ ସମ୍ଭବ ଥିଲା ।

ଏହାର ଅର୍ଥ, ଜାତି ପ୍ରଥା ଥିଲା ତତ୍କାଳୀନ ପ୍ରଚଳିତ ସମାଜ ବ୍ୟବସ୍ଥାକୁ ଅକ୍ଷୁଣ୍ଣ ରଖିବା ନିମିତ୍ତ ସମସ୍ତ କିଛି ଉପରେ ଏକ ଉପାୟ । ତେବେ ପରିବର୍ତ୍ତନ ବେଳେ ଏହା ନୂତନ ପରିବେଶ ସହିତ ନିଜକୁ ଖାପ ଖୁଆଇ ନେବାକୁ ସମର୍ଥ ମଧ୍ୟ ଥିଲା । ଜାତି ପ୍ରଥାର ସ୍ତରବିନ୍ୟାସ ପରେ ଯେପରି ହୋଇଥିଲା, ଏହି ସମୟରେ ସେପରି ଜଡ଼ ପ୍ରସ୍ତରୀଭୂତ ପ୍ରତିଷ୍ଠାନରେ ଏହା ପରିଣତ ହୋଇ ନଥିଲା ।

# ଷଷ୍ଠ ଏବଂ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଭାରତୀୟ ସଂସ୍କୃତିର ଅବସ୍ଥା

ମଧ୍ୟ ଯୁଗରେ ମଣିଷର ବିଶ୍ୱଦୃଷ୍ଟିକୋଣ ତା'ର ଧର୍ମବିଶ୍ୱାସ ମଧ୍ୟ ଦେଇ ପ୍ରକାଶ ପାଉଥିଲା । ଭାରତରେ ଏହି ଧର୍ମ ଏକ ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରୁଥିଲା । ଆମମାନଙ୍କର ଆଲୋଚ୍ୟ ଏହି ଯୁଗଟିରେ ଦେଖା ଦେଇଥିଲା ବୌଦ୍ଧ ଧର୍ମର ଅବକ୍ଷୟ ଏବଂ ହିନ୍ଦୁ ଧର୍ମର ପ୍ରାଧାନ୍ୟର ସୂଚନା । ଏହି ବିଷୟଟି ମୂଳରେ କେଉଁସବୁ କାରଣ ଥିଲା, ପଣ୍ଡିତମାନେ ସେ ସଂପର୍କରେ ଏକମତ ହୋଇ ପାରି ନାହାନ୍ତି । ସେମାନଙ୍କ ମଧ୍ୟରେ କେହି କେହି ମନେ କରନ୍ତି ଯେ, ଭାରତରେ ବୌଦ୍ଧ ଧର୍ମର ବିସ୍ତାର ଯୁକ୍ତ ଥିଲା ବଡ଼ ବଡ଼ ସାମ୍ରାଜ୍ୟର ଶୀର୍ଷରେ ଅବସ୍ଥିତ କ୍ଷତ୍ରିୟମାନଙ୍କ ପ୍ରାଧାନ୍ୟ ସହିତ । ଆଉ କେତେକଙ୍କ ମତରେ, ଅସଂଖ୍ୟ ମଠ ଓ ତୀର୍ଥ ଯାତ୍ରୀମାନଙ୍କର ବ୍ୟାପକ ଶାଖାପ୍ରଶାଖା ବିଶିଷ୍ଟ ଏକ ବ୍ୟବସ୍ଥା ସହିତ ବୌଦ୍ଧ ଧର୍ମ ପକ୍ଷରେ ସମ୍ଭବ ହୋଇ ନଥିଲା ଆଦି ମଧ୍ୟ ଯୁଗର ଅପେକ୍ଷାକୃତ ଅଧିକ ଅବରୁଦ୍ଧ ଅର୍ଥନୈତିକ ଗଢ଼ଣ ମଧ୍ୟରେ ନିଜକୁ ଖାପ ଖୁଆଇ ନେବାକୁ । ସେ ଯାହା ହେଉ ନା କାହିଁକି, ମହାଯାନ ଧର୍ମମତ ଆକାରରେ ବୌଦ୍ଧ ଧର୍ମର ଶେଷ ଉତ୍ଥାନ ଘଟିଥିଲା ହର୍ଷବର୍ଦ୍ଧନଙ୍କ ସାମ୍ରାଜ୍ୟରେ, ଯେତେବେଳେ ବିଭିନ୍ନ ବୌଦ୍ଧମତାବଲମ୍ବୀ ଦେଶମାନଙ୍କର ନାଲନ୍ଦା ବିଶ୍ୱବିଦ୍ୟାଳୟ ହଜାର ହଜାର ଛାତ୍ରଙ୍କୁ ଆକର୍ଷଣ କରି ଆଣିବାକୁ ସମର୍ଥ ହୋଇଥିଲା । ବଙ୍ଗ ଦେଶର ପାଲ ରାଜବଂଶ ମଧ୍ୟ ବୌଦ୍ଧ ଧର୍ମର ସମର୍ଥକ ଥିଲେ । ଏପରିକି ଗତ ଦ୍ୱାଦଶ ଶତାବ୍ଦୀରେ ମଧ୍ୟ ବଙ୍ଗ

ଦେଶର ଜନସଂଖ୍ୟାର ବଡ଼ ଏକ ଅଂଶ ଥିଲେ ବୌଦ୍ଧମତାବଲମ୍ବୀ । ଦକ୍ଷିଣ ଭାରତରେ, ଅବଶ୍ୟ, ସୁଦୂର ଅଷ୍ଟମ ଶତାବ୍ଦୀରେ ବୌଦ୍ଧ ଧର୍ମର ପତନ ସଂପର୍କରେ ଉଲ୍ଲେଖ ଦେଖିବାକୁ ମିଳିଥାଏ ।

ଅନୁସୃତ ଧର୍ମମତର ଏହି ପରିବର୍ତ୍ତନ ଦ୍ୱାରା ଜୀବନଯାତ୍ରାର ପଦ୍ଧତିରେ କିନ୍ତୁ ପରିବର୍ତ୍ତନ ଘଟି ନଥିଲା । ବହୁ ସଂଖ୍ୟକ ଧର୍ମ ସଂପ୍ରଦାୟ ଓ ଧର୍ମମତ ହିନ୍ଦୁ ଧର୍ମର ଅନ୍ତର୍ଭୁକ୍ତ ହୋଇଛନ୍ତି, ସେସବୁ ମଧ୍ୟରେ ପାର୍ଥକ୍ୟ ହେଉଛି ଭକ୍ତର ଉପାସ୍ୟ ହିନ୍ଦୁ ଦେବଦେବୀମାନଙ୍କର ବ୍ୟାପକ ସମାବେଶ ମଧ୍ୟରୁ ମନ ମୁତାବକ ଦେବତା ନିର୍ବାଚନ ଏବଂ ତତ୍ ସଙ୍ଗେ ସଙ୍ଗେ ଧର୍ମୀୟ ଆସ୍ଥାର ଆଚରଣ ଓ ରୀତି ନୀତି ପାଳନର ବିଭିନ୍ନତା । ତେବେ କେତେକ ରୀତି ନୀତି ଓ ଧ୍ୟାନଧାରଣା ସମସ୍ତ ହିନ୍ଦୁଙ୍କ ପକ୍ଷରେ ଏକ । ହିନ୍ଦୁମାନେ ଅତିରିକ୍ତ ଗୁରୁତ୍ୱ ଆରୋପ କରିଥାନ୍ତି କର୍ତ୍ତବ୍ୟ ପାଳନର (ବା ଧର୍ମ) ଧାରଣାଟି ଉପରେ – ଏହା ହେଲା ଦୃଢ଼ ଭାବେ ଓ ଅବିଚଳ ନିଷ୍ଠାର ସହିତ ନିର୍ଦ୍ଦିଷ୍ଟ ଜାତିଗତ ଦାୟିତ୍ୱ ପାଳନ । ଯଥା, ଉଚ୍ଚତର ଜାତିମାନଙ୍କ ପକ୍ଷରେ ଧର୍ମ ପାଳନ ଅର୍ଥ ହେଲା, କେବଳ ପ୍ରଶାସନ ପରିଚାଳନା, କିମ୍ବା ଯୁଦ୍ଧ କ୍ଷେତ୍ରରେ ବୀରୋଚିତ ଆଚରଣ, ଏବଂ ନିମ୍ନତର ଜାତିମାନଙ୍କ ପକ୍ଷରେ ତାହା ହେଉଛି ସେମାନଙ୍କର ପରମ୍ପରାଗତ ବୃତ୍ତିଗୁଡ଼ିକ ବିବେକର ସହିତ କାର୍ଯ୍ୟକର କରିଯିବା ଏବଂ ଉଚ୍ଚତର ଜାତିର ଲୋକଙ୍କ ପ୍ରତି ସମ୍ମାନ ଓ ଶ୍ରଦ୍ଧା ପ୍ରଦର୍ଶନ କରିବା । ହିନ୍ଦୁ ଧର୍ମ ତା'ର ଅନୁଗାମୀମାନଙ୍କ ମନରେ ଏହି ଧାରଣା ସଞ୍ଚାର କରିଥାଏ ଯେ, ବିଭିନ୍ନ ଜାତି ମଧ୍ୟରେ ସମାଜର ଏହି ସ୍ତରବିଭାଗ ଏକ ପୂର୍ବନିର୍ଦ୍ଧାରିତ ବ୍ୟାପାର, ସମସ୍ତ ଜାତିଙ୍କର ଅସ୍ତିତ୍ୱ ଅପରିହାର୍ଯ୍ୟର ଏବଂ ଜାତି ପ୍ରଥାର ଗଠନ ମଧ୍ୟରେ ପ୍ରତିଟି ବ୍ୟକ୍ତିର ଅବସ୍ଥାନ ଜନ୍ମର ଅବ୍ୟବହିତ ପୂର୍ବଜନ୍ମର ଆଚରଣ ଦ୍ୱାରା ସ୍ଥିରୀକୃତ ଓ ପୂର୍ବନିର୍ଦ୍ଦିଷ୍ଟ ହୋଇଥାଏ । ମଣିଷ ଆତ୍ମାର ମୃତ୍ୟୁ ନାହିଁ, ତେବେ ଦେହର ମୃତ୍ୟୁ ସଙ୍ଗେ ସଙ୍ଗେ ଏହା ସେ ଦେହ ତ୍ୟାଗ କରି ଅନ୍ୟ ଜୀବ ଦେହରେ ସଞ୍ଚାରିତ ହୁଏ । କୌଣସି ଲୋକ ସୁନୀତି ସଂପନ୍ନ ଧର୍ମମୟ ଜୀବନଯାପନ କଲେ, ତା'ର ପୁନର୍ଜନ୍ମରେ ତା'ର ଜାତି ମର୍ଯ୍ୟାଦାର ଉନ୍ନତି ଘଟେ । ସେ ଯଦି ନଷ୍ଟ, ପଙ୍କିଳ ଜୀବନଯାପନ କରେ, ଅସ୍ପୃଶ୍ୟ ଜାତିରେ – ଏପରିକି ଘୃଣ୍ୟ କୌଣସି ଜନ୍ତୁ ଦେହ ଧାରଣ କରି – ହୁଏତ, ପୁନର୍ଜନ୍ମ ଲାଭର ସମ୍ଭାବନା ଥାଏ । ଅତଏବ, ସଂସାରରେ ଯାହା କିଛି ଘଟୁଛି, ସେସବୁ ନ୍ୟାଯ୍ୟ, କାରଣ କୌଣସି ସତ୍ ମଣିଷକୁ ଯଦି ଜୀବନରେ ଅସହ୍ୟ ଦୁଃଖ ଯାତନା ଭୋଗ କରିବାର ଦେଖାଯାଏ, ତାହେଲେ ବୁଝିବାକୁ ହେବ, ଅତୀତ ଜୀବନରେ କୌଣସି ଅନ୍ୟାୟ କର୍ମ ଫଳରୁ ସେ ଏଭଳି ଶାସ୍ତି ପାଉଛି ।

ଅହିଂସା ଧାରଣାଟି ସମସ୍ତ ହିନ୍ଦୁଙ୍କ ପକ୍ଷରେ ଗ୍ରାହ୍ୟ । ଏହି ଧାରଣା ଅନୁଯାୟୀ, ମଣିଷର କର୍ତ୍ତବ୍ୟ ହେଉଛି କୌଣସି ଜୀବନ୍ତ ପ୍ରାଣୀର କୌଣସି ପ୍ରକାର କ୍ଷତି ସାଧନ ନକରିବା ଏବଂ ବେଶ୍ କେତୋଟି ଗୃହପାଳିତ ପ୍ରାଣୀର ସେବା କରିବା – ବିଶେଷ କରି ଗୋରୁର, ଯିଏକି ସମସ୍ତ ହିନ୍ଦୁମାନଙ୍କ ପକ୍ଷରେ ପୂଜାର୍ହ୍ୟ । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ମଣିଷର ସାରା ଜୀବନରେ ବିଶେଷ ବିଶେଷ ଅନୁଷ୍ଠାନ ଉପଲକ୍ଷେ ପୂଜା ଆଦି ଧର୍ମୀୟ ଆଚରଣ କରିବା ସେ ଯୁଗରେ ଥିଲା ସମସ୍ତ ହିନ୍ଦୁଙ୍କର ମିଳିତ ପରମ୍ପରାର ଅଙ୍ଗ, ଯଦିଓ ଏହିସବୁ ପୂଜା ଅନୁଷ୍ଠାନର ପୁଙ୍ଖାନୁପୁଙ୍ଖ ପଦ୍ଧତିରେ ବହୁ ତାରତମ୍ୟ ଥିଲା । ସମସ୍ତ ହିନ୍ଦୁଙ୍କୁ ପୂଜାର ଉପଚାର ଦେଇ ଦେବତାଙ୍କୁ ନିବେଦନ କରିବାକୁ ପଡ଼ୁଥିଲା, କେହି କେହି ସେ କାର୍ଯ୍ୟ କରୁଥିଲେ ପଶୁବଳୀ ମାଧ୍ୟମରେ । ତେବେ ବେଶି ଭାଗ ଲୋକ ପୂଜା ଅର୍ପଣ କରୁଥିଲେ ଫୁଲ ଏବଂ ଧୂପଝୁଣା ସାହାଯ୍ୟରେ । ସମସ୍ତେ ବାଧ୍ୟ ଥିଲେ ବ୍ରାହ୍ମଣମାନଙ୍କ ନିକଟରେ ଓ ମନ୍ଦିରମାନଙ୍କରେ

ନିଜର ସାଧ୍ୟ ଅନୁଯାୟୀ ପୂଜା ଦେବାକୁ ଏବଂ ସମସ୍ତେ ନାନା ଧରଣର ସାଧୁ ସନ୍ନ୍ୟାସୀ, ଯୋଗୀ ତପସ୍ୱୀ, ଭ୍ରାମ୍ୟମାଣ ଧର୍ମ ପ୍ରଗ୍ଧରକ, ଆଦିଙ୍କୁ ପବିତ୍ର ମଣିଷ ବୋଲି ଜ୍ଞାନ କରି ପୂଜା କରୁଥିଲେ । ବିଶେଷ ଜାତିଗତ ପୂଜା ଅନୁଷ୍ଠାନ ଉଦ୍‌ଯାପନ ଏବଂ ଜାତିଗତ ବିଧିନିଷେଧ ମାନି ଚଳିବା ମଧ୍ୟ ସମସ୍ତ ହିନ୍ଦୁ ବାଧ୍ୟତାମୂଳକ ବୋଲି ମନେ କରୁଥିଲେ, ବସ୍ତୁତଃ, ଏହିସବୁ ପୂଜା ଅନୁଷ୍ଠାନ ଓ ଆଗ୍ଧର ପାଳନକୁ ଦେବତାର ଆରାଧନା ଠାରୁ କମ୍ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ କରାଯାଉ ନଥିଲା ।

ସେତେବେଳେ ହିନ୍ଦୁମାନଙ୍କ ମଧ୍ୟରେ ସବୁଠାରୁ ଜନପ୍ରିୟ ଉପାସ୍ୟ ଦେବତା ଥିଲେ ବିଷ୍ଣୁ ଓ ଶିବ । ଶିବଙ୍କ ଉପାସନା ସହିତ ଯୁକ୍ତ ଥିଲା ତାଙ୍କ ପତ୍‌ନୀଙ୍କ ଉପାସନା ମଧ୍ୟ । ଏହି ଶିବ ପତ୍‌ନୀ ଦେଶର ସର୍ବତ୍ର ବିଭିନ୍ନ ନାମରେ ପରିଚିତ ଥିଲେ, ଯଥା କାଳୀ, ଉମା, ପାର୍ବତୀ, ଶକ୍ତି, ଆଦି । କାଳୀ ହେଲେ ଏକ ଭୟଙ୍କରୀ ଦେବୀ, ଭକ୍ତ ନିକଟରେ ଯାହାଙ୍କର ନିର୍ଦ୍ଦେଶ ହେଉଛି ରକ୍ତାକ୍ତ ବଳିଦାନ କରିବା । ଅନ୍ୟ ଦିଗରେ, ଉମା ଏବଂ ପାର୍ବତୀ ହେଲେ ସ୍ନିଗ୍ଧ ମାତୃ ସ୍ୱରୂପା । ଏକଥା ସ୍ପଷ୍ଟ ଯେ, ଏହି ଦେବୀ କଳ୍ପ ମଧ୍ୟରେ ମିଳି ମିଶି ଏକତ୍ର ହୋଇଛି ବହୁ ବିଭିନ୍ନ ଧର୍ମମତ ଓ ଉପାସନା ପରମ୍ପରା ।

ଏହି ଯୁଗରେ ଶକ୍ତି ଉପାସନାର ବିକାଶ ଘଟିଥିଲା । ଶକ୍ତିଙ୍କୁ ମଧ୍ୟ କଳ୍ପନା କରାଯାଇଥିଲା ଶିବଙ୍କ ପରାକ୍ରମର ନିର୍ଗଳିତ ନିର୍ଯ୍ୟାସ ହିସାବରେ ଏବଂ ଶକ୍ତି ପୂଜା ଯୁକ୍ତ ହୋଇ ଯାଇଥିଲା ତାନ୍ତ୍ରିକ ମତବାଦ ସହିତ । ତନ୍ତ୍ରବାଦ ହେଲା ହିନ୍ଦୁ ଧର୍ମର ଅନ୍ତର୍ଭୁକ୍ତ ଏକ ଧର୍ମାନ୍ଦୋଳନ, ଯିଏକି ଅନ୍ୟାନ୍ୟ ଧର୍ମାନ୍ଦୋଳନ ଠାରୁ ସଂପୂର୍ଣ୍ଣ ପୃଥକ୍ । ଏହି ଆନ୍ଦୋଳନର ନିଜସ୍ୱ ପବିତ୍ର ଶାସ୍ତ୍ରଗୁଡ଼ିକ ତନ୍ତ୍ର ନାମରେ ପରିଚିତ ଏବଂ ଏହାର ଦେବ (ପ୍ରଧାନ ଦେବୀ) ଆରାଧନାର ନିଜସ୍ୱ ପଦ୍ଧତି ମଧ୍ୟ ରହିଛି । ତନ୍ତ୍ରବାଦର ପ୍ରଧାନ ଝୁଙ୍କ ହେଲା ଅତୀନ୍ଦ୍ରିୟବାଦ ଓ ଇନ୍ଦ୍ରଜାଲର କେତେକ ଦିଗର ଚର୍ଚ୍ଚା ପ୍ରତି । ହିନ୍ଦୁ ଧର୍ମରେ ଯାହା ନିଷିଦ୍ଧ (ଯଥା, ଗୁପ୍ତ ଧର୍ମାନୁଷ୍ଠାନ, ସ୍ୱଜାତି ମଧ୍ୟରେ ବିବାହ ନୀତି ଭଙ୍ଗ କରିବା, ଆଦି) ସେଭଳି ସବୁ ଆଗ୍ଧର ଓ ରୀତି ନୀତି ପାଳନ କରିବା । ଆଲୋଚ୍ୟ ଏହି ଯୁଗରେ ତନ୍ତ୍ରବାଦ ପ୍ରଗ୍ଧର କରୁଥିଲେ ପ୍ରଧାନତଃ ନୀଚ ଜାତିର ଲୋକମାନେ ଏବଂ ଅନାର୍ଯ୍ୟ ଉପଜାତି ଓ ଗୋଷ୍ଠୀଗୁଡ଼ିକର ପ୍ରତିନିଧିମାନେ ।

ଷଷ୍ଠ ଶତାବ୍ଦୀର ପରବର୍ତ୍ତୀ କାଳରେ ଦକ୍ଷିଣ ଭାରତରେ ଭକ୍ତିବାଦ ଅନେକ ବିସ୍ତାର ଲାଭ କରିଥିଲା । ଏହି ମତବାଦର ତାତ୍ପର୍ଯ୍ୟ ହେଲା ଦେବତା ପ୍ରତି ଭକ୍ତର ଉଚ୍ଛ୍ୱସିତ ପ୍ରେମ ନିବେଦନ, ଯାହା ନିକଟରେ ପୂଜା ଅନୁଷ୍ଠାନ, ଯୋଗ ତପସ୍ୟା ଏବଂ ବ୍ରାହ୍ମଣ୍ୟ ଧର୍ମର ରକ୍ଷଣଶୀଳତା ଅତ୍ୟନ୍ତ ମ୍ଳାନ ଓ ଅର୍ଥହୀନ । ଦ୍ୱାଦଶ ଶତାବ୍ଦୀରେ ଲିଙ୍ଗାୟତ ସଂପ୍ରଦାୟର (ଯେଉଁମାନେ ବିଶେଷ କରି ଶିବର ପ୍ରତୀକ ହିସାବରେ ଲିଙ୍ଗମୂର୍ତ୍ତିର ପୂଜା କରୁଥିଲେ) ପ୍ରତିଷ୍ଠାତା ବାସବ ଭକ୍ତିବାଦକୁ ତନ୍ତ୍ରବାଦ ସହିତ ଯୁକ୍ତ କରିଥିଲେ ଏବଂ ଜାତି ପ୍ରଥା ଭଳି ହିନ୍ଦୁ ଧର୍ମର ଏକ ଅପରିହାର୍ଯ୍ୟ ନୀତିକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେ ବିଶେଷ ଭାବେ ପୂଜା ଓ ଆଗ୍ଧର ଅନୁଷ୍ଠାନ ଉପରେ ଯେତେ ଜୋର ଦେଇ ନଥିଲେ, ତା ଅପେକ୍ଷା ବେଶି ଜୋର ଦେଇଥିଲେ ଶିବ ଦେବତାଙ୍କୁ ଭଲ ପାଇବାର ପ୍ରୟୋଜନ ଉପରେ । ପୁଣି ଏଥି ସଙ୍ଗେ ସଙ୍ଗେ ମାନି ନେଇଥିଲେ କଠୋର ତପସ୍ୟାବ୍ରତର ଶ୍ରେଷ୍ଠତ୍ୱକୁ । ଦ୍ୱାଦଶ ଏବଂ ତ୍ରୟୋଦଶ ଶତାବ୍ଦୀରେ ବାସବଙ୍କ ଲିଙ୍ଗାୟତ ସଂପ୍ରଦାୟ ଖୋଲାଖୋଲି ଭାବେ ଆନୁଷ୍ଠାନିକ ହିନ୍ଦୁ ଓ ଜୈନ ଧର୍ମର ବିରୋଧିତା କରିଥିଲେ ।

ସପ୍ତମ ଏବଂ ନବମ ଶତାବ୍ଦୀରେ ବୈଷ୍ଣବ ସଂପ୍ରଦାୟ ଉପରେ ମଧ୍ୟ ଏହି ନୂତନ ଧର୍ମତତ୍ତ୍ୱର ପ୍ରଭାବ ପଡ଼ିଥିଲା ଏବଂ ପରେ ଏହି ଧର୍ମମତ ପ୍ରଚାର କରିଥିଲେ ବଙ୍ଗ ଦେଶର ଭକ୍ତକୁଳ । ଭକ୍ତକୁଳର (ଭକ୍ତିବାଦର ଅନୁଗାମୀବୃନ୍ଦ) ପକ୍ଷରୁ ହିନ୍ଦୁ ଧର୍ମର ଆଚାର ଅନୁଷ୍ଠାନ ଦିଗଟି ଏବଂ ବ୍ରାହ୍ମଣମାନଙ୍କର ଶ୍ରେଷ୍ଠତ୍ୱର ଧାରଣାଟି ପ୍ରତ୍ୟାଖ୍ୟାନ ଫଳରେ ଭକ୍ତିବାଦର ପ୍ରଚାର ମଧ୍ୟରେ ସାମାଜିକ ପ୍ରତିବାଦର ଏକ ସୁର ଧ୍ୱନିତ ହୋଇ ଉଠିଥିଲା ।

ଷଷ୍ଠ ଶତାବ୍ଦୀରୁ ଦଶମ ଶତାବ୍ଦୀ ମଧ୍ୟରେ ଭାରତର ସମୁଦ୍ର ତୀରବର୍ତ୍ତୀ ଅଞ୍ଚଳରେ, ଅଧିକାଂଶ କ୍ଷେତ୍ରରେ ବନ୍ଦରଗୁଡ଼ିକରେ, ଜୈନ ଧର୍ମ ହିଁ ବ୍ୟାପକ ଜନସାଧାରଣଙ୍କ ଧର୍ମରେ ପରିଣତ ହୋଇଥିଲା । ଭାରତର ସମସ୍ତ ଜୈନ ମନ୍ଦିର ମଧ୍ୟରେ ସେତେବେଳେ ସବୁଠାରୁ ବିଖ୍ୟାତ ହୋଇ ଉଠିଥିଲା ସପ୍ତମ ଶତାବ୍ଦୀରେ ନିର୍ମିତ ଆଇହୋଲର (ବା ଆଇଭାଲର) ଜୈନ ମନ୍ଦିରଟି । ମଧ୍ୟ ଯୁଗରେ ଆଉରି ବହୁ ସଂଖ୍ୟକ ଅନ୍ୟାନ୍ୟ ମନ୍ଦିର ଓ ତୀର୍ଥଙ୍କର ମୂର୍ତ୍ତି ନିର୍ମିତ ହୋଇଥିଲା । ଜୈନମାନଙ୍କର ବିଶେଷ ପ୍ରତିପତ୍ତି ଥିଲା ତାମିଲ ଜନସାଧାରଣଙ୍କ ମଧ୍ୟରେ । ତେବେ ଷଷ୍ଠ ଏବଂ ଅଷ୍ଟମ ଶତାବ୍ଦୀର ମଧ୍ୟରେ ଜୈନ ଧର୍ମ ବିରୁଦ୍ଧରେ ଭକ୍ତିବାଦୀମାନେ ଏକ ପ୍ରବଳ ମତାଦର୍ଶଗତ ସଂଗ୍ରାମ ଆରମ୍ଭ କରି ଦେଇଥିଲେ ଏବଂ ଜୈନ ଧର୍ମ ପଶ୍ଚାଦ୍‌ପସରଣ କଲା ହିନ୍ଦୁ ଧର୍ମ ନିକଟକୁ । ପଞ୍ଚଦଶ ଶତାବ୍ଦୀ ବେଳକୁ ଦେଖାଗଲା ଯେ, ଜୈନ ଧର୍ମ ଗୁଜରାଟରେ କିଛି ପ୍ରଭାବ ବଜାଏ ରଖିବାକୁ ସମର୍ଥ ହୋଇଥିଲା, ଯଦିଓ ସେତେବେଳେ ଭାରତର ବହୁ ସହରରେ ବିଶେଷ କରି ବଣିକ ଏବଂ କୁସୀଦଜୀବୀ ସଂପ୍ରଦାୟଗୁଡ଼ିକ ମଧ୍ୟରେ ଛୋଟ ଛୋଟ ଧର୍ମାବଲମ୍ବୀ ଗୋଷ୍ଠୀ ରହି ଯାଇଥିଲେ ।

ଭାରତରେ ଦାର୍ଶନିକ ଚିନ୍ତାଧାରା ଧର୍ମୀୟ ଧ୍ୟାନଧାରଣା ସହିତ ସେପର୍ଯ୍ୟନ୍ତ ଘନିଷ୍ଠ ଭାବେ ସଂପୃକ୍ତ ଥିବା ସତ୍ତ୍ୱେ, ମଧ୍ୟ ଯୁଗରେ ଦାର୍ଶନିକ ଚିନ୍ତାଧାରା ନିଜ ଅଧିକାର ବଳରେ ଜ୍ଞାନର ସ୍ୱତନ୍ତ୍ର ଏକ ଶାଖା ହିସାବରେ ବିକଶିତ ହେବାକୁ ଆରମ୍ଭ କରିଥିଲା ।

ଇତିପୂର୍ବରୁ ଆମେ ଭାରତୀୟ ଦର୍ଶନର ଯେଉଁ ଛଅଟି ଶାସ୍ତ୍ରୀୟ ଧାରା ନେଇ ଆଲୋଚନା କରିଛେ, ଆଲୋଚ୍ୟ ଏହି ଯୁଗଟିରେ ସୁସ୍ପଷ୍ଟ ରୂପ ନେଇ ବିକଶିତ ହୋଇ ଉଠିଥିଲା : ସେଇ ନ୍ୟାୟ, ବୈଶେଷିକ, ସାଂଖ୍ୟ, ଯୋଗ, ମୀମାଂସା ଓ ବେଦାନ୍ତ ଦର୍ଶନର ଧାରାଗୁଡ଼ିକ । ବେଦସମୂହର କର୍ତ୍ତୃତ୍ୱ ମାନି ନେବା ଦ୍ୱାରା ଏହି ଧାରାଗୁଡ଼ିକୁ ସେତେବେଳେ ରକ୍ଷଣଶୀଳ ବୋଲି ଗଣ୍ୟ କରାଗଲେ ମଧ୍ୟ ଏବଂ ଏସବୁର ଧ୍ୟାନଧାରଣାଗୁଡ଼ିକୁ ଧର୍ମ ଓ ଅତୀନ୍ଦ୍ରିୟବାଦର ଖୋଳରେ ଭରି ଉପସ୍ଥାପିତ କରିବା ସତ୍ତ୍ୱେ, ଉପରୋକ୍ତ ଏହି ପ୍ରତିଟି ଦାର୍ଶନିକ ଚିନ୍ତାଧାରା ବିଶ୍ୱବ୍ରହ୍ମାଣ୍ଡ ସଂପର୍କରେ ମଣିଷର ଜ୍ଞାନ ଓ ଚିନ୍ତନର ବିଧିବିଧାନ କ୍ଷେତ୍ରରେ ନିଜସ୍ୱ ବିଶିଷ୍ଟ ଅବଦାନ ରଖିଥିଲା । ଏହିସବୁ ଆନୁଷ୍ଠାନିକ ଦାର୍ଶନିକ ଧାରା ବ୍ୟତୀତ ଦେଶରେ ସେତେବେଳେ ପ୍ରଚଳିତ ଥିଲା ମାଧ୍ୟମିକ ଓ ବିଜ୍ଞାନବାଦ ନାମରେ ଦୁଇଟି ବୌଦ୍ଧ ଦାର୍ଶନିକ ଧାରା । ଏ ଦୁଇଟି ଧାରା ଜଗତ ଓ ଜ୍ଞାନର ବାସ୍ତବତାକୁ ଅସ୍ୱୀକାର କରୁଥିଲା ଏବଂ ଈଶ୍ୱରଙ୍କୁ ଜଗତର ସ୍ରଷ୍ଟା ହିସାବରେ ମଧ୍ୟ ଗ୍ରହଣ କରୁ ନଥିଲା । ମାଧ୍ୟମିକ ଧାରାଟି ପ୍ରଚାର କରୁଥିଲା — "ଈଶ୍ୱରର ଯଦି କୌଣସି ଲକ୍ଷଣ ନଥାଏ, ତେବେ କହିବାକୁ ହେବ, ତା'ର କୌଣସି ଅସ୍ତିତ୍ୱ ନାହିଁ" । ଏହି ଧାରାଟା ଦୁଇଟି ଏକମାତ୍ର ବିଶୁଦ୍ଧ ଚୈତନ୍ୟକୁ ପ୍ରକୃତ ବା ବାସ୍ତବ ବୋଲି ଗ୍ରହଣ କରୁଥିଲା, ଯାହା, ସେମାନଙ୍କ ମତରେ, ଥିଲା ମହାଜାଗତିକ ନିର୍ଯ୍ୟାସବିଶେଷ । ଅନ୍ୟ ପକ୍ଷରେ, ଚାର୍ବାକ ସଂପ୍ରଦାୟ ବସ୍ତୁବାଦୀ ଧ୍ୟାନଧାରଣାର ପ୍ରଚାରକ ଥିଲେ ଏବଂ ଦେହର

ବାହାରେ ଆତ୍ମାର ସ୍ୱାଧୀନ ଅସ୍ତିତ୍ୱ ପ୍ରମାଣ କରିବା ଅସମ୍ଭବ ବୋଲି ଆତ୍ମାର ଅସ୍ତିତ୍ୱକୁ ସେମାନେ ଅସ୍ୱୀକାର କରୁଥିଲେ । ଏହି ଏକେଇ କାରଣରୁ ଚାର୍ବାକପନ୍ଥୀମାନେ ପରମାତ୍ମା ବା ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରତ୍ୟାଖ୍ୟାନ କରିଥିଲେ ।

ଅଷ୍ଟମ ଶତାବ୍ଦୀର ଶେଷ ଓ ନବମ ଶତାବ୍ଦୀର ପ୍ରାରମ୍ଭରୁ ଆରମ୍ଭ କରି ପରବର୍ତ୍ତୀ ଯୁଗରେ ଶଙ୍କରାଚାର୍ଯ୍ୟଙ୍କର (୭୮୮ରୁ ୮୨୦ ଖ୍ରୀଷ୍ଟାବ୍ଦ) ପ୍ରବର୍ତ୍ତିତ ଅଦ୍ୱୈତ ବେଦାନ୍ତ ଦାର୍ଶନିକ ଧାରାଟି କ୍ରମଶଃ ଅଧିକ ଜନପ୍ରିୟ ହୋଇ ଉଠିଥିଲା । ଏହି ଦାର୍ଶନିକ ଧାରାଟି ଉପନିଷଦସମୂହର ପ୍ରାଚୀନ ଶିକ୍ଷାର ପୁନରୁଜ୍ଜୀବନ ସପକ୍ଷରେ ପ୍ରଚାର କରିଥିଲା ଏବଂ ପୋଷଣ କରିଥିଲା ଯେ, ଈଶ୍ୱର ହିଁ ଏକମାତ୍ର ବାସ୍ତବ ସତ୍ୟ ଏବଂ ଜଗତ ମାୟା ମରୀଚିକା ବା ଇନ୍ଦ୍ରଜାଲ ବ୍ୟତୀତ ଆଉ କିଛି ନୁହେଁ ଏବଂ ଏକମାତ୍ର ନିର୍ଜ୍ଞାନ ମଣିଷ ହିଁ ଜଗତର ବାସ୍ତବତାରେ ବିଶ୍ୱାସୀ । ଅତଏବ, "ଜ୍ଞାନୀ" ମଣିଷର ଲକ୍ଷ୍ୟ ହେବା ଉଚିତ ନିଜକୁ ଏହି ମାୟାବନ୍ଧନରୁ ମୁକ୍ତ କରିବା ଓ ବ୍ରହ୍ମର (ବା ଈଶ୍ୱରଙ୍କର) ସହିତ ସେମାନଙ୍କ ଏକାତ୍ମତା ସଂପର୍କରେ ସଚେତନ ହେବା । ଶଙ୍କର କେବଳ ଦାର୍ଶନିକ ନଥିଲେ, ଧର୍ମ ସଂସ୍କାରକ ମଧ୍ୟ ଥିଲେ; ହିନ୍ଦୁ ଧର୍ମର ଆଦି ବିଶୁଦ୍ଧତା ବିନଷ୍ଟକାରୀ ତାଙ୍କ ପରବର୍ତ୍ତୀ ଯୁଗର ସଂଯୋଜନଗୁଡ଼ିକରୁ ଧର୍ମକୁ ମୁକ୍ତ କରିବାର ପ୍ରୟାସ ପାଇଥିଲେ ସେ । ସେ ସାରା ଦେଶରେ ଚାରୋଟି ମଠ ନିର୍ମାଣ କରିଥିଲେ ଏବଂ ସନ୍ନ୍ୟାସୀ ସଂପ୍ରଦାୟର ଜୀବନଯାତ୍ରାରେ କେତେକ ସଂସ୍କାର ସାଧନ କରିଥିଲେ ।

କିନ୍ତୁ ପରବର୍ତ୍ତୀ ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀରେ "ନିର୍ବାଚିତ ମୁଷ୍ଟିମେୟଙ୍କ" ପକ୍ଷରେ ବୋଧଗମ୍ୟ ଶଙ୍କରାଚାର୍ଯ୍ୟଙ୍କ ମତବାଦ ତା'ର ଜନପ୍ରିୟତା ହରେଇବାକୁ ଆରମ୍ଭ କରିଥିଲା । ରାମାନୁଜ (ଏକାଦଶ ଶତାବ୍ଦୀରେ) ବେଦାନ୍ତ ଧାରାର ଧ୍ୟାନଧାରଣାସମୂହକୁ ସରଳତର କରି ଦେଇ ବ୍ୟାପକ ଜନସାଧାରଣଙ୍କ ନିକଟରେ ସେଗୁଡ଼ିକୁ ଗ୍ରହଣଯୋଗ୍ୟ କରିଥିଲେ । ରାମାନୁଜଙ୍କ ମତରେ, ଈଶ୍ୱର ତାଙ୍କ ଠାରୁ ପୃଥକ୍ ତିନିଟି ବସ୍ତୁ—ପଦାର୍ଥ, କାଳ ଓ ଆତ୍ମା ସାହାଯ୍ୟରେ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କରିଛନ୍ତି । ଈଶ୍ୱରଙ୍କୁ ଉପଲବ୍ଧି କରିବାକୁ ହେଲେ, ଶାସ୍ତ୍ର ସଂପର୍କରେ ବିସ୍ତୃତ ଜ୍ଞାନାର୍ଜନର ପ୍ରୟୋଜନ ନାହିଁ, ବରଂ, ଏହା ଠାରୁ ଢେର ବେଶି ଗୁରୁତ୍ୱପୂର୍ଣ୍ଣ ହେଉଛି ଈଶ୍ୱରଙ୍କ ପ୍ରତି ମଣିଷର ପ୍ରେମ । କାରଣ, ଏକମାତ୍ର ପ୍ରେମ ମଧ୍ୟ ଦେଇ ମଣିଷ ପକ୍ଷରେ ପ୍ରକୃତ ଈଶ୍ୱରଙ୍କ ଉପଲବ୍ଧି ସମ୍ଭବ । ଈଶ୍ୱରଙ୍କ ପ୍ରତି ପ୍ରେମ ଓ ଭକ୍ତି ନିବେଦନ ଭକ୍ତର ଜାତି ବିଚାର ଉପରେ ନିର୍ଭର କରେ ନାହିଁ । ରାମାନୁଜଙ୍କ ଶିକ୍ଷାନୁଯାୟୀ, ଈଶ୍ୱର କେବଳ ଏ ଜଗତର ନିର୍ବିକାର ସ୍ରଷ୍ଟା ନୁହନ୍ତି; ପ୍ରତ୍ୟେକ ମଣିଷର ଭବିତବ୍ୟ ସଂପର୍କରେ ଆଗ୍ରହୀ ସ୍ରଷ୍ଟା ସେ । ମଣିଷର ପ୍ରାର୍ଥନା ସେ ଶୁଣନ୍ତି ଏବଂ ମଣିଷର ଭାଗ୍ୟ ପରିବର୍ତ୍ତନ କରିବାକୁ ସେ ସମର୍ଥ । ରାମାନୁଜଙ୍କର ଏହି ଦର୍ଶନ ଥିଲା ବହୁ ବେଦାନ୍ତ ବିଶ୍ୱାସୀ ସଂପ୍ରଦାୟର ମୌଳିକ ଭାବାଦର୍ଶ ।

ମଧ୍ୟଯୁଗୀୟ ଭାରତରେ ଅପେକ୍ଷାକୃତ ପ୍ରାଚୀନ କାଳର ଜ୍ଞାନବିଜ୍ଞାନ ଉପରେ ଭିତ୍ତି କରି ଗଢ଼ି ଉଠିଥିବା ବୈଜ୍ଞାନିକ ଚିନ୍ତାଧାରାର ବହୁତ ଅଗ୍ରଗତି ଘଟିଥିଲା । ଗଣିତ, ଜ୍ୟୋତିର୍ବିଦ୍ୟା ଓ ଚିକିତ୍ସା ଶାସ୍ତ୍ର, କୃଷି, ନିର୍ମାଣ କର୍ମ ଓ ରୋଗ ଚିକିତ୍ସା ସହିତ ସଂଯୁକ୍ତ ମଣିଷର ବାସ୍ତବ ଅଭିଜ୍ଞତା ସହିତ ସଂପର୍କିତ ହୋଇ ବିଭିନ୍ନ କ୍ଷେତ୍ରରେ ସାଫଲ୍ୟ ଅର୍ଜନ କରିଥିଲା ।

ଷଷ୍ଠ ଶତାବ୍ଦୀରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ଭାରତର ବିଭିନ୍ନ ଅଞ୍ଚଳରେ ସ୍ଥାନୀୟ

ଭାଷାଗୁଡ଼ିକରେ ରଚିତ ସାହିତ୍ୟର ବିକାଶ ଘଟିଥିଲା । ଏହା ଘଟିଥିଲା ବହୁ କବି "ଦେବ ଭାଷା" ସଂସ୍କୃତରେ ସେ ପର୍ଯ୍ୟନ୍ତ ସାହିତ୍ୟ ରଚନା କରୁଥିବା ସତ୍ତ୍ୱେ । ସଂସ୍କୃତ ସାହିତ୍ୟ ସେତେବେଳେ କ୍ରମଶଃ କଷ୍ଟକଳ୍ପିତ ଓ ଆୟାସସାଧ୍ୟ ହୋଇ ଉଠିଥିଲା । ଏହାର ଏକ ଚମତ୍କାର ଦୃଷ୍ଟାନ୍ତ ହେଉଛି ବଂଗ ଦେଶର ରାଜା ରାମପାଲଙ୍କ (୧୦୭୭ରୁ ୧୧୧୯ ଖ୍ରୀଷ୍ଟାବ୍ଦ) ରାଜ ସଭାର କବି ସନ୍ଧ୍ୟାକର ନନ୍ଦୀଙ୍କ ରଚିତ "ରାମଚରିତ" କାବ୍ୟଟି । ଏହି କାବ୍ୟର ପ୍ରତ୍ୟେକଟି ପଂକ୍ତି ଥିଲା ଦ୍ୱ୍ୟର୍ଥବ୍ୟଞ୍ଜକ ଏବଂ ତାହା "ରାମାୟଣ" ମହାକାବ୍ୟର ନାୟକ ରାମଚନ୍ଦ୍ର, ଅଥବା ରାଜା ରାମପାଲ, ଯେକୌଣସି ଜଣଙ୍କର ଚରିତ କଥା ବୋଲି ଗ୍ରହଣ କରାଯାଇ ପାରେ । ଏହି ଭାବେ କବି ସନ୍ଧ୍ୟାକର ନନ୍ଦୀ ତାଙ୍କ ପୃଷ୍ଠପୋଷକ ରାଜାଙ୍କ କୀର୍ତ୍ତି କଥାକୁ "ରାମାୟଣର" ରାମଚନ୍ଦ୍ରଙ୍କ କୀର୍ତ୍ତି ସହିତ ଏକାସନରେ ବସେଇଛନ୍ତି । ବିଶେଷ କରି ମଧ୍ୟ ଯୁଗରେ ଜନପ୍ରିୟତା ଲାଭ କରିଥିଲା ଦ୍ୱାଦଶ ଶତାବ୍ଦୀର କବି ଜୟଦେବଙ୍କ ରଚିତ "ଗୀତଗୋବିନ୍ଦ" କାବ୍ୟଟି । ଏହି କାବ୍ୟରେ ଭଗବାନଙ୍କ ପ୍ରତି ଭକ୍ତର ଆତ୍ମାର ଆକୁତିର ପ୍ରତୀକ ରୂପେ ରାଧାଙ୍କ ପ୍ରତି କୃଷ୍ଣଙ୍କର ପ୍ରେମ ବର୍ଣ୍ଣିତ ହୋଇଛି । କାବ୍ୟଟିରେ ସୂକ୍ଷ୍ମ ମନସ୍ତାତ୍ତ୍ୱିକ ବର୍ଣ୍ଣନା ଓ ପ୍ରାଣବନ୍ତ ଭାବକଳ୍ପର ପ୍ରାଚୁର୍ଯ୍ୟ ଥିବା ହେତୁ ତାହା ପ୍ରାୟ ସମସ୍ତ ନୂତନ ଭାରତୀୟ ଭାଷାରେ କବିତାର ବିକାଶକୁ ବିପୁଳ ଭାବେ ପ୍ରଭାବିତ କରିଥିଲା । ଏହି କାବ୍ୟରେ ଯୌନ ଆକର୍ଷଣର ଅତୀନ୍ଦ୍ରିୟ ବ୍ୟାଖ୍ୟାର ଧରଣଟି ପରେ "ଭକ୍ତିବାଦୀ" କାବ୍ୟ ଧାରାରେ ବ୍ୟାପକ ଭାବେ ବ୍ୟବହୃତ ହୋଇଥିଲା ।

ସ୍ଥାନୀୟ ଭାଷାଗୁଡ଼ିକରେ ସାହିତ୍ୟର ବିକାଶ ଏ ଯୁଗରେ କେବଳ ମାତ୍ର ସଂସ୍କୃତରୁ ମହାକାବ୍ୟଗୁଡ଼ିକର ଭାଷାନ୍ତର ମଧ୍ୟରେ (ଯଥା ତ୍ରୟୋଦଶ ଶତାବ୍ଦୀରେ ବୁଦ୍ଧ ରେଡ଼ିଙ୍କର ତେଲୁଗୁ ଭାଷାରେ "ରାମାୟଣର" ଅନୁବାଦ) ସୀମାବଦ୍ଧ ନଥିଲା, ଏଥି ସଙ୍ଗେ ସଙ୍ଗେ ମୌଳିକ ସାହିତ୍ୟ ରଚନା ମଧ୍ୟ ସୃଷ୍ଟି ହୋଇଥିଲା ।

ମଧ୍ୟ ଯୁଗରେ ଯଦିଓ ପ୍ରଧାନତଃ କାବ୍ୟ ସାହିତ୍ୟର ତାତ୍ପର୍ଯ୍ୟପୂର୍ଣ୍ଣ ଅଗ୍ରଗତି ସାଧିତ ହୋଇଥିଲା, ତେବେ ଗଦ୍ୟ ସାହିତ୍ୟ ମଧ୍ୟ ଖୁବ୍ ଅବହେଳିତ ନଥିଲା । ଏହି ସମୟରେ ସଂସ୍କୃତ ଭାଷାରେ ଏକ ସୂତ୍ରରେ ଗ୍ରଥିତ ଗଳ୍ପ ସମାହାର ଆଦି ଗଦ୍ୟ ଗ୍ରନ୍ଥ ମଧ୍ୟ ରଚିତ ହୋଇଥିଲା । ଏହାର ଏକ ଉଦାହରଣ ହେଉଛି ବାଣଙ୍କ ରଚିତ "କାଦମ୍ବରୀ" ଗ୍ରନ୍ଥ । ଏହି ଗ୍ରନ୍ଥଟିରେ ଏକ ପ୍ରେମିକ ଯୁଗଳର ଦୁଇ ଥର ବିଭିନ୍ନ ରୂପ ନେଇ ପୃଥିବୀରେ ଆବିର୍ଭାବର କଥା ବର୍ଣ୍ଣିତ ହୋଇଛି । ଆଉ ଗୋଟିଏ ଉଦାହରଣ ହେଉଛି ଦଣ୍ଡୀଙ୍କ ବ୍ୟଙ୍ଗାତ୍ମକ "ଦଶ କୁମାର କାହାଣୀ" । ଏଥିରେ ନିର୍ବିଘ୍ନର ଭାବେ ରାଜାରାଜୁଡ଼ା, ଅଭିଜାତ ରାଜକର୍ମଚାରୀ, ସାଧୁସନ୍ନ୍ୟାସୀ ଏବଂ ଏପରିକି ଦେବତାମାନଙ୍କୁ ନେଇ ବ୍ୟଙ୍ଗ ବିଦ୍ରୂପ କରାଯାଇଛି । ଏହି ଧରଣର ଗଦ୍ୟ ରଚନାର ଆଉ ଏକ ନିଦର୍ଶନ ହେଲା ସପ୍ତମ-ଅଷ୍ଟମ ଶତାବ୍ଦୀରେ ପ୍ରାକୃତ ଭାଷାରେ ରଚିତ ହରିଭଦ୍ରଙ୍କ "ଠକ କାହାଣୀ" ।

ଦକ୍ଷିଣ ଭାରତରେ ସେତେବେଳେ ସବୁଠାରୁ ଉନ୍ନତ ସାହିତ୍ୟ ଥିଲା ତାମିଲ ଭାଷାର ରଚନାବଳୀ । ଏହି ଭାଷାରେ ପ୍ରଥମ ସାହିତ୍ୟ ରଚନାଦି ଖ୍ରୀଷ୍ଟ ଜନ୍ମର ପରବର୍ତ୍ତୀ ପ୍ରାରମ୍ଭିକ ଶତାବ୍ଦୀଗୁଡ଼ିକରେ ପ୍ରକାଶ ପାଇଥିଲା । ତେବେ ପ୍ରଧାନ ସାହିତ୍ୟ କୃତିଗୁଡ଼ିକ, ଯଥା, ତିରୁଭାଲୁଭାରଙ୍କ ଦ୍ୱାରା ରଚିତ "କୁରାଲ" ("ଦ୍ୱିପଦୀସମୂହ") ଏବଂ ଦୁଇଟି ମହାକାବ୍ୟ "ଶିଲ୍ପାପ୍ପାଡିଗାରାମ୍" ("ମଣିଖଚିତ କଙ୍କଣ") ଓ "ମଣିମେଖଳା" ଦ୍ୱିତୀୟରୁ ଷଷ୍ଠ ଶତାବ୍ଦୀ ମଧ୍ୟରେ ଯେକୌଣସି ସମୟରେ ରଚିତ ବୋଲି ବହୁ

ପଣ୍ଡିତ ମନେ କରନ୍ତି । ଅଷ୍ଟମ ଏବଂ ନବମ ଶତାବ୍ଦୀରେ ଭକ୍ତିବାଦୀ କବିତା ପ୍ରାଧାନ୍ୟ ଲାଭ କରିବାକୁ ଆରମ୍ଭ କରିଥିଲା । ଆଲଭାର ଓ ନୟନାର ସଂପ୍ରଦାୟ ଦୁଇଟିର (ଭକ୍ତି ମାର୍ଗର ଯଥାକ୍ରମେ ବୈଷ୍ଣବ ଓ ଶୈବ ଅନୁଗାମୀମାନଙ୍କର) ରଚିତ ଭକ୍ତି ଗୀତଗୁଡ଼ିକ ସେମାନଙ୍କ ଗଭୀର ଲାଳିତ୍ୟ ଗୁଣରୁ ଲୋକ ଗୀତି ହିସାବରେ ବ୍ୟାପକ ସମାଦର ଲାଭ କରିଥିଲା ।

ଉତ୍ତର ଭାରତରେ ସ୍ଥାନୀୟ ଭାଷାରେ ବୀର ଗାଥାର ଏକ ନୂଆ ଶୈଳୀ ଏହି ଯୁଗରେ ବିକାଶ ଲାଭ କରିଥିଲା । ଏହି ଶୈଳୀର ଏକ ଉଦାହରଣ ହେଉଛି ଚାନ୍ଦ ବର୍ଦାଇଙ୍କ (୧୧୨୬ରୁ ୧୧୯୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) ଦ୍ୱାରା ରଚିତ ହିନ୍ଦି କାବ୍ୟ "ପୃଥ୍ୱିରାଜରସ" । ସ୍ତୁତି କାବ୍ୟର ଢଙ୍ଗରେ ରଚିତ ଏହି ଗାଥା କାବ୍ୟଟିରେ ମୁସଲମାନ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ପୃଥ୍ୱିରାଜ ଚୌହାନ୍‌ଙ୍କ ଯୁଦ୍ଧ କାହାଣୀ ବର୍ଣ୍ଣିତ ହୋଇଛି ।

ଆଲୋଚ୍ୟ ଏହି ଯୁଗରେ ସ୍ଥାପତ୍ୟ ଏବଂ ଭାସ୍କର୍ଯ୍ୟ ଶିଳ୍ପ ଥିଲା ଶିଳ୍ପକଳାସମୂହ ମଧ୍ୟରେ ସବୁଠାରୁ ଉନ୍ନତ । ଷଷ୍ଠ ଏବଂ ଅଷ୍ଟମ ଶତାବ୍ଦୀ ମଧ୍ୟରେ ମୁଖ୍ୟତଃ ଗୁହାମନ୍ଦିରଗୁଡ଼ିକ (ଏଲୋରା ଓ ଏଲିଫାଣ୍ଟା ଏବଂ ତା'ର କିଛି କାଳ ପରେ ଅଜନ୍ତା), କିମ୍ବା ମହାବଳିପୁରମ୍ ଭଳି ପାହାଡ଼ କାଟି ମନ୍ଦିର ନିର୍ମାଣ ବା କୋଣାର୍କର "ସୂର୍ଯ୍ୟ ମନ୍ଦିର" (ରଥ ଆକାରରେ) ନିର୍ମିତ ହୋଇଥିଲା । ପାହାଡ଼ କାଟି ମନ୍ଦିର ନିର୍ମାଣ କରିବାରେ, ଅବଶ୍ୟ, ଜଟିଳ କାରିଗରୀ ବିଦ୍ୟାର ପ୍ରୟୋଜନ ନଥିଲା । କାରଣ ପାହାଡ଼କୁ କାଟି ମନ୍ଦିରାଦି ନିର୍ମାଣ କରିବା ଅପେକ୍ଷାକୃତ ସହଜ ଥିଲା, ପାହାଡ଼ରୁ ପଥର ଖଣ୍ଡମାନ କାଟି ବହୁ ଦୂର ପର୍ଯ୍ୟନ୍ତ ସେସବୁକୁ ବହି ନେଇ ତା'ପରେ ସେସବୁ ଦ୍ୱାରା ବଡ଼ ବଡ଼ ଏବଂ ସ୍ଥାୟୀ ଅଟ୍ଟାଳିକା ବା ମନ୍ଦିର ନିର୍ମାଣ ଅପେକ୍ଷା । ଅଜନ୍ତାର ଗୁହାମନ୍ଦିରଗୁଡ଼ିକୁ ନିର୍ମାଣ କରିଥିଲେ ବୌଦ୍ଧମାନେ, କିନ୍ତୁ ଏଲୋରାରେ ବୌଦ୍ଧ ମନ୍ଦିରଗୁଡ଼ିକର ପାଖକୁ ଲାଗି ହିନ୍ଦୁ ଏବଂ ଜୈନ ମନ୍ଦିରସବୁ ମିଳିଛି । ଏହିସବୁ ଗୁହାମନ୍ଦିରକୁ ଅଳଙ୍କୃତ କରାଯାଇଛି ବ୍ୟାସ୍‌ରେଲିଫ୍, ଭାସ୍କର୍ଯ୍ୟ ମୂର୍ତ୍ତି ଓ ଫ୍ରେସ୍କୋ ପଦ୍ଧତିରେ ଭିତ୍ତି ଚିତ୍ର ଦ୍ୱାରା । ଏହିସବୁ ଶିଳ୍ପକର୍ମ ମଧ୍ୟରେ ସର୍ବାପେକ୍ଷା ବିଖ୍ୟାତ ହେଲା ମହାବଳୀପୁରମ୍‌ର ବହୁବିଧ ମୂର୍ତ୍ତି ସମ୍ବଳିତ "ଗଙ୍ଗାର ମର୍ତ୍ତ୍ୟାବତରଣ" (ସପ୍ତମ ଶତାବ୍ଦୀ) ଏବଂ ଏଲୋରା ପର୍ବତ ଶୃଙ୍ଗରେ ସମାସୀନ ଶିବ ଓ ପାର୍ବତୀଙ୍କ ମୂର୍ତ୍ତି ସହ "ରାବଣର କୈଳାଶ ପର୍ବତ ଦଳନ" ଶୀର୍ଷକ ଦୁଇଟି ବିରାଟ ବ୍ୟାସ୍‌ରେଲିଫ୍ ଚିତ୍ର ।

ନବମ ଶତାବ୍ଦୀରେ ପଥର କାଟି ମନ୍ଦିର ନିର୍ମାଣ କରିବା ଆରମ୍ଭ ହୋଇଥିଲା । ଉତ୍ତର ଭାରତର ମନ୍ଦିରଗୁଡ଼ିକର ଆକାର ଥିଲା ଅଧିବୃତ୍ତ ଭଳି ଏବଂ ମନ୍ଦିରଗୁଡ଼ିକର ଛାତ ଥିଲା ଶତଦଳ ପଦ୍ମ ଭଳି । ଦକ୍ଷିଣ ଭାରତର ମନ୍ଦିରଗୁଡ଼ିକର ଆକୃତି ଥିଲା ସମକୋଣୀ ଚତୁର୍ଭୁଜ ପିରାମିଡ୍ ଭଳି । ମନ୍ଦିରର ଆଭ୍ୟନ୍ତରୀଣ ଘରଗୁଡ଼ିକ ଥିଲା ନୂଆଁଣିଆଛାତ ବିଶିଷ୍ଟ ଏବଂ ଅନ୍ଧକାରପୂର୍ଣ୍ଣ । ସେଗୁଡ଼ିକରେ ପୂଜା ଅର୍ଚ୍ଚନାଦି ହେଉଥିଲା ଏବଂ ମନ୍ଦିର ବାସୀମାନଙ୍କର ନିଭୃତ ଆବାସ ଥିଲା । ସେଠାକୁ ସମସ୍ତଙ୍କର ପ୍ରବେଶ ଅଧିକାର ନଥିଲା । ଭକ୍ତମାନଙ୍କ ପ୍ରଧାନ ଅଂଶଟି ସେତେବେଳେ ଏହିସବୁ ମନ୍ଦିରର ବାହାରୁ ମନ୍ଦିରଟିକୁ କେବଳ ପ୍ରଦକ୍ଷିଣ କରୁଥିଲେ । ଏହିସବୁ ମନ୍ଦିର ପ୍ରାଙ୍ଗଣଗୁଡ଼ିକରେ ଓ ମନ୍ଦିରଗୁଡ଼ିକର ପ୍ରାଚୀର ଗାତ୍ରରେ ବହୁ ଭାସ୍କର୍ଯ୍ୟ ମୂର୍ତ୍ତି ରହୁଥିଲା । ସେସବୁଥିରେ ପ୍ରଦର୍ଶିତ ହେଉଥିଲା ମହାକାବ୍ୟଗୁଡ଼ିକର ବିଭିନ୍ନ ଦୃଶ୍ୟ କିମ୍ବା ମନ୍ଦିରଗୁଡ଼ିକୁ ଯେଉଁସବୁ ଦେବତାଙ୍କ ନାମରେ ଅର୍ପିତ କରାଯାଉଥିଲା ସେହିସବୁ ବିଶେଷ ଦେବତାଙ୍କର ପୂଜା ଉପାସନାର ପ୍ରତୀକ ଚିତ୍ରସବୁ । ପରବର୍ତ୍ତୀ କାଳରେ ଏବଂ ବିଶେଷ କରି ଦକ୍ଷିଣ ଭାରତରେ

ମନ୍ଦିର ଗାତ୍ରରେ ଭାସ୍କର୍ଯ୍ୟ ମୂର୍ତ୍ତିର ଏହି ବିଶଦ ବାହୁଲ୍ୟ ଏତେ ବୃଦ୍ଧି ପାଇଥିଲା ଯେ, ମନ୍ଦିରଗୁଡ଼ିକ ପରିଣତ ହୋଇଥିଲା ଭାସ୍କର୍ଯ୍ୟ ନିଦର୍ଶନଗୁଡ଼ିକର ପୀଠବିଶେଷରେ । କାରଣ ମନ୍ଦିରର ଚୂଡ଼ା ପର୍ଯ୍ୟନ୍ତ ସେସବୁର ସମସ୍ତ ଗାତ୍ର ଛାଇ ହୋଇ ଯାଉଥିଲା ବହୁବିଧ ଭାସ୍କର୍ଯ୍ୟ ମୂର୍ତ୍ତି, ଉଚ୍ଚ ରେଲିଫ୍ ଚିତ୍ର ଓ ବ୍ୟାସ୍‌ରେଲିଫ୍ ଚିତ୍ରରେ । ଏହି ଅତି ପ୍ରାଚୁର୍ଯ୍ୟର କାରଣରୁ ମଣିଷର ଦୃଷ୍ଟିରେ ଆଉ ଅଲଗା କରି ପୃଥକ୍ ଦୃଶ୍ୟ ବା ଭାସ୍କର୍ଯ୍ୟ ମୂର୍ତ୍ତିଗୁଡ଼ିକ ଧରା ପଡ଼େ ନାହିଁ । ଉଦାହରଣ ସ୍ୱରୂପ, କୁହାଯାଇ ପାରେ, ଖାଜୁରାହୋର ମନ୍ଦିରଗୁଡ଼ିକରେ ଏଭଳି ଅବସ୍ଥା ସୃଷ୍ଟି ହୋଇଛି (ଆନୁମାନିକ ୯୫୪ରୁ ୧୦୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ମିତ) । ଓଡ଼ିଶାର କୋଣାର୍କ (୧୨୩୪ରୁ ୧୨୬୪ ଖ୍ରୀଷ୍ଟାବ୍ଦରେ ନିର୍ମିତ) ମନ୍ଦିରର ଭିତ୍ତି ଗାତ୍ର ଠାରୁ ଛାତ ପର୍ଯ୍ୟନ୍ତ ଏଭଳିସବୁ ସୂକ୍ଷ୍ମ ଓ ଭାସ୍କର୍ଯ୍ୟ ଶିଳ୍ପର ଅଳଙ୍କାରରେ ମଣ୍ଡିତ ଯେ, ମନ୍ଦିର ଗାତ୍ରର ପ୍ରତିଟି ପଥରର ଟୁକୁରା ରତ୍ନାଳଙ୍କାର ଭଳି ଅପୂର୍ବ କାରୁକର୍ମମୟ । ପରବର୍ତ୍ତୀ କାଳରେ, ଅବଶ୍ୟ, ଏହି ଧରଣର ବୃହଦାକାର ଭାସ୍କର୍ଯ୍ୟ କ୍ଷେତ୍ରରେ ମାନର ଅବନତି ଲକ୍ଷ୍ୟ କରାଯାଏ । ଚତୁର୍ଦ୍ଦଶ ଶତାବ୍ଦୀରୁ ଆରମ୍ଭ କେବଳ ମାତ୍ର ବିଚ୍ଛିନ୍ନ, ଅନୁଶାସନ ମଣ୍ଡିତ ଭାସ୍କର୍ଯ୍ୟ ମୂର୍ତ୍ତି ଦେଖିବାକୁ ମିଳେ । ପୂର୍ବବର୍ତ୍ତୀ ଯୁଗର ପ୍ରାଣୈଶ୍ୱର୍ଯ୍ୟ ଓ ବୈଚିତ୍ର୍ୟ ସେତେବେଳେ ଲୋପ ପାଇବାକୁ ଆରମ୍ଭ କରିଥିଲା । ଇତି ମଧ୍ୟରେ ତାମିଲ ଅଞ୍ଚଳଗୁଡ଼ିକରେ ବ୍ରୋଞ୍ଜ ନିର୍ମିତ ଛୋଟ ଛୋଟ ମୂର୍ତ୍ତିର ଢଳେଇ ଶିଳ୍ପ ଅତ୍ୟନ୍ତ ବିକଶିତ ହୋଇ ଉଠିଥିଲା ଏବଂ ଏହି ମୂର୍ତ୍ତିଗୁଡ଼ିକରେ ଜୀବନ୍ତ ଭାବଭଙ୍ଗି ଓ ବାସ୍ତବ ଦୃଷ୍ଟିଭଙ୍ଗି ବଜାଏ ରହିଥିଲା । ଏହି ଧରଣର ଛୋଟ ମୂର୍ତ୍ତିର ଚମତ୍କାର ଏକ ନିଦର୍ଶନ ହେଲା "ଶିବ ନଟରାଜ" ("ନୃତ୍ୟଗତ ଶିବ") । ପରବର୍ତ୍ତୀ କାଳରେ ସାମାନ୍ୟ କେତେକ ଅଦଳବଦଳ ସହ ଏହି ମୂର୍ତ୍ତିଟିର ବହୁ ସଂଖ୍ୟକ ପ୍ରତିମୂର୍ତ୍ତି ସାରା ଦକ୍ଷିଣ ଭାରତରେ ନିର୍ମିତ ହୋଇଛି ଏବଂ ଏବେ ମଧ୍ୟ ହେଉଛି ।

ଅଜନ୍ତାର ଗୁହା ମନ୍ଦିରଗୁଡ଼ିକରେ ଯେପରି ମିଳେ, ସେଇପରି ଫ୍ରେସ୍କୋ-ପଦ୍ଧତିର ପ୍ରାଚୀର ଚିତ୍ରର ନିଦର୍ଶନ ଅଷ୍ଟମ ଶତାବ୍ଦୀ ପରେ ଆଉ ମିଳେ ନାହିଁ । ବସ୍ତୁତଃ, ଏହି ଯୁଗର ଆଉ କୌଣସି ଅଙ୍କିତ ଚିତ୍ର ପରେ ତିଷ୍ଠି ପାରି ନି । ଦକ୍ଷିଣ ଭାରତର ମନ୍ଦିରଗୁଡ଼ିକରେ ଶାସ୍ତ୍ରୀୟ ଭାରତୀୟ ନୃତ୍ୟ ଶିଳ୍ପ ସଂରକ୍ଷିତ ହୋଇଥିଲା ସଂଶ୍ଳିଷ୍ଟ ଧର୍ମୀୟ ଅନୁଷ୍ଠାନାଦି ସହିତ ।

# ଦିଲ୍ଲୀରେ ସୁଲତାନ୍ ରାଜତ୍ୱ ଅମଳର ଭାରତ (ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାରମ୍ଭ କାଳ)

## ଦିଲ୍ଲୀରେ ସୁଲତାନ୍ ରାଜତ୍ୱର ରାଜନୈତିକ ଇତିହାସ

### ସୁଲତାନ୍ ବଂଶର ସୂଚନା

ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭରେ ଯେଉଁ ଆରବ ଦେଶୀୟମାନେ ଆକ୍ରମଣ କରିଥିଲେ, ସେମାନେ ସିନ୍ଧୁ ଦେଶ ଜୟ କରି ସେଠାରେ ସେମାନଙ୍କର ଶାସନ ପ୍ରତିଷ୍ଠା କରିଥିଲେ । ଏହି ଭାବେ ସିନ୍ଧୁ ଦେଶ ଭାରତର ବାକି ଅଂଶଠାରୁ ବିଚ୍ଛିନ୍ନ ହୋଇଗଲେ ମଧ୍ୟ ତଦ୍ୱାରା ଭାରତର ଏହି ଅଂଶର ବିକାଶ ବ୍ୟାହତ ହୋଇ ନଥିଲା । ତେବେ ଏକାଦଶ ଶତାବ୍ଦୀର ସୂତ୍ରପାତ ଠାରୁ ଭାରତ ବାରମ୍ବାର ତୁର୍କି ବଂଶୋଦ୍‌ଭୂତ ମୁସଲମାନ ଆକ୍ରମଣକାରୀମାନଙ୍କର ଆକ୍ରମଣର ଲକ୍ଷ୍ୟରେ ପରିଣତ ହୋଇଥିଲା । ଏହିସବୁ ଅଭିଯାନ ସେମାନେ ପରିଚାଳନା କରିଥିଲେ ବିଧର୍ମୀମାନଙ୍କ ବିରୁଦ୍ଧରେ ଧର୍ମଯୁଦ୍ଧ ପରିଚାଳନା ନାମରେ । ଭାରତୀୟ ରାଜ୍ୟଗୁଡ଼ିକ ସେତେବେଳେ ପରସ୍ପର ବିରୁଦ୍ଧରେ ଯୁଦ୍ଧବିଗ୍ରହରେ ଲିପ୍ତ ଥିଲେ, ତେଣୁ ଏହିସବୁ ଆକ୍ରମଣକୁ ପ୍ରତିହତ କରିବା ସେମାନଙ୍କ ପକ୍ଷରେ କଠିନ ହୋଇଥିଲା । ଫଳରେ କାଳକ୍ରମେ ଭାରତର ଉତ୍ତରାଞ୍ଚଳରେ ମୁସଲମାନ ବିଜେତାମାନଙ୍କର ଶାସନାଧୀନ ବଡ଼ ଏକ ରାଜ୍ୟ ପ୍ରତିଷ୍ଠିତ ହୋଇ ପାରିଥିଲା । ଏହି ରାଜ୍ୟଟି ପରିଚିତ ହେଲା ଦିଲ୍ଲୀରେ ସୁଲତାନ୍ ରାଜତ୍ୱ ନାମରେ । ଏହି ରାଜ୍ୟଟିର – ଯାହା ପରେ ଭାରତର ଦକ୍ଷିଣ ଅଞ୍ଚଳକୁ ମଧ୍ୟ ପ୍ରସାରିତ ହୋଇଥିଲା – ଉଦ୍‌ଭବ ଭାରତର ସମଗ୍ର ଇତିହାସକୁ ପ୍ରଭାବିତ କରିଥିଲା । ଏହି ଭାବେ ଭାରତ ଦିନେ ଆସି ଯାଇଥିଲା ତଥାକଥିତ ମୁସଲମାନ ଦୁନିଆର ଆଧିପତ୍ୟ ମଧ୍ୟକୁ ।

ଭାରତକୁ ତୁର୍କି ଆକ୍ରମଣକାରୀମାନେ ପ୍ରଥମ ଆକ୍ରମଣ କରିଥିଲେ ୧୦୦୧ ଖ୍ରୀଷ୍ଟାବ୍ଦରେ । ପରେ ମାହମୁଦ୍‌ଙ୍କ (୯୯୮ରୁ ୧୦୩୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) ସୈନ୍ୟଦଳ ପଞ୍ଜାବ ଆକ୍ରମଣ କଲେ। ମାହମୁଦ୍ ଥିଲେ ଆଫ୍‌ଗାନିସ୍ତାନର ଅନ୍ତର୍ଗତ ତତ୍‌କାଳୀନ ପରିଚିତ ଖୋରାସାନ୍ ଅଞ୍ଚଳର ଏକ ରାଜ୍ୟର ଶାସକ । ତାଙ୍କ ରାଜଧାନୀ ଥିଲା ଗଜ୍‌ନିରେ । ଭାରତୀୟ ରାଜା ଜୟପାଲ ମାହମୁଦ୍‌ଙ୍କ ଅଗ୍ରଗତିକୁ ପ୍ରତିରୋଧ କରିବା ପାଇଁ ଚେଷ୍ଟା କରିଥିଲେ, କିନ୍ତୁ ପେଶଓ୍ୱାର ନିକଟରେ ଏକ ଯୁଦ୍ଧରେ ପରାଜିତ ହୋଇ ସେ ଆତ୍ମହତ୍ୟା କଲେ । ଏହା ପରେ ମାହମୁଦ୍ ୧୦୨୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନିୟମିତ ଭାବେ ପ୍ରତି ବର୍ଷ ଶୀତ କାଳରେ ଭାରତ ଆକ୍ରମଣ କରି ପୁଣି ସ୍ୱଦେଶକୁ ଫେରି ଯାଉଥିଲେ । ଏହିସବୁ ଅଭିଯାନ ସମୟରେ ମାହମୁଦ୍ ନିୟମିତ ଭାବେ ହିନ୍ଦୁ ମନ୍ଦିରଗୁଡ଼ିକର ଧ୍ୱଂସ ସାଧନ କରୁଥିଲେ ଏବଂ ବିଭିନ୍ନ ଭାରତୀୟ ରାଜାମାନେ ବଂଶ ପରମ୍ପରାକ୍ରମେ ଯେଉଁସବୁ ଐଶ୍ୱର୍ଯ୍ୟରେ ମନ୍ଦିରଗୁଡ଼ିକୁ ଭୂଷିତ କରିଥିଲେ, ସେହିସବୁ ବିପୁଳ ଐଶ୍ୱର୍ଯ୍ୟକୁ ଲୁଣ୍ଠନ କରିଥିଲେ । ଏହା ଛଡ଼ା

ସ୍ଥାନୀୟ ଜନସାଧାରଣଙ୍କ ନିକଟରୁ ଖେସାରତ୍ ଆଦାୟ କରି ଓ ଲୁଣ୍ଠିତ ସମୁଦାୟ ଐଶ୍ୱର୍ଯ୍ୟକୁ ଓଟ ପିଠିରେ ଲଦି ଫେରି ଯାଉଥିଲେ । ଉତ୍ତର ଭାରତରେ ମାହମୁଦ୍‌ଙ୍କର ଏହି ଆକ୍ରମଣର ଅଞ୍ଚଳ ଥିଲା ବହୁ ବିସ୍ତୃତ – ପଶ୍ଚିମରେ ସୋମନାଥ (କାଥିଆବାଡ଼) ଠାରୁ ପୂର୍ବରେ ଗଙ୍ଗା ଉପତ୍ୟକାର କନୌଜ ପର୍ଯ୍ୟନ୍ତ । ତେବେ ଭାରତର ଯେଉଁ ଏକମାତ୍ର ଅଞ୍ଚଳଟିକୁ ସେ ନିଜ ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ ଓ ଯେଉଁଠି ତାଙ୍କର ପ୍ରତ୍ୟକ୍ଷ ଶାସନ ପ୍ରବର୍ତ୍ତନ କରିଥିଲେ, ସେ ହେଉଛି ପଞ୍ଜାବ ।

ମାହମୁଦ୍‌ଙ୍କ ବଂଶଧରଙ୍କ ରାଜତ୍ୱକାଳରେ ଆତ୍ମୀୟ ପରିଜନମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଲାଗିରହିଥିବା ହେତୁ ଏବଂ ଅନବରତ ମଧ୍ୟ ଓ ପଶ୍ଚିମ ଏସିଆର ସେଲଜୁକ୍ ରାଜାମାନଙ୍କର ଆକ୍ରମଣ ଭୟରେ ସଂତ୍ରସ୍ତ ହୋଇ ଗଜନିଭୀ ରାଜ୍ୟର ରାଜଧାନୀକୁ ପଞ୍ଜାବର ଲାହୋରକୁ ସ୍ଥାନାନ୍ତରିତ କରାଯାଇଥିଲା । ଦ୍ୱାଦଶ ଶତାବ୍ଦୀର ସତୁରି ଦଶକରେ ଆକ୍ରମଣକାରୀ ଶାସକମାନଙ୍କ ମଧ୍ୟରେ ପରସ୍ପର ଯୁଦ୍ଧବିଗ୍ରହର ସୁଯୋଗ ନେଇ ଘୁର୍‌ର ଛୋଟ ସାମନ୍ତ ରାଜ୍ୟର ଶାସକମାନେ ୧୧୭୩ ଖ୍ରୀଷ୍ଟାବ୍ଦରେ ଗଜନି ଦଖଲ କରି ନେଲେ ଏବଂ ତା'ପରେ ୧୧୮୬ ଖ୍ରୀଷ୍ଟାବ୍ଦରେ ସେମାନଙ୍କ ପ୍ରାକ୍ତନ ପ୍ରଭୁମାନଙ୍କର ତତ୍କାଳୀନ ରାଜଧାନୀ ଲାହୋର ମଧ୍ୟ ଦଖଲ କଲେ । ଘୁର୍‌ର ତତ୍କାଳୀନ ଶାସକଙ୍କ ଭାଇ ମହମ୍ମଦ ଘୁରୀ ପ୍ରଥମେ ପଞ୍ଜାବ ଦଖଲ କଲେ ଏବଂ ପରେ ଭାରତର ଆଉରି ଅଭ୍ୟନ୍ତରକୁ ଅଗ୍ରସର ହେବାକୁ ଲାଗିଲେ । ୧୧୯୧ ଖ୍ରୀଷ୍ଟାବ୍ଦରେ ତରାଇନ୍ ଯୁଦ୍ଧରେ ଦିଲ୍ଲୀ ଏବଂ ଆଜମିରର ରାଜ୍‌ପୁତ ରାଜା ପୃଥ୍ୱିରାଜଙ୍କ ଦ୍ୱାରା ସେ ପରାସ୍ତ ହୋଇଥିଲେ । କିନ୍ତୁ ଏହାର ପରବର୍ତ୍ତୀ ବର୍ଷରେ ଏହି ଏକେଇ ଯୁଦ୍ଧ କ୍ଷେତ୍ରରେ ପୃଥ୍ୱିରାଜଙ୍କ ନେତୃତ୍ୱରେ ସମସ୍ତ ରାଜପୁତ ରାଜାମାନଙ୍କର ମିଳିତ ବାହିନୀକୁ ମହମ୍ମଦ ପରାସ୍ତ କରିଥିଲେ ଏବଂ ଗଙ୍ଗା ପର୍ଯ୍ୟନ୍ତ ଅଗ୍ରସର ହେବାର ପଥ ଦଖଲ କରି ନେଲେ । ଏହା ପରେ ସମଗ୍ର ଗଙ୍ଗା-ଯମୁନାର ଉପତ୍ୟକା ଅଞ୍ଚଳ ତାଙ୍କ ଅଧିକାରକୁ ଆସି ଯାଇଥିଲା ।

ମହମ୍ମଦ ଘୁରୀ ନିହତ ହେବା ପରେ ତାଙ୍କର ଏକ ତୁର୍କୀ କ୍ରୀତଦାସ ଏବଂ ରକ୍ଷୀ ବାହିନୀର ସେନାନାୟକ ଓ ଉତ୍ତର ଭାରତରେ ମହମ୍ମଦଙ୍କ ପ୍ରତିନିଧି କୁତ୍‌ବ ଉଦ୍ଦିନ୍ ଆଇବେକ୍ (୧୨୦୬ରୁ ୧୨୧୦ ଖ୍ରୀଷ୍ଟାବ୍ଦ) ନିଜକୁ ଭାରତରେ ଘୁରୀ ଶାସିତ ରାଜ୍ୟର ସ୍ୱାଧୀନ ସୁଲତାନ୍ ବୋଲି ଘୋଷଣା କରିଥିଲେ ଏବଂ ଦିଲ୍ଲୀରେ ରାଜଧାନୀ ପ୍ରତିଷ୍ଠା କରିଥିଲେ । ଏହି ଭାବେ ଦିଲ୍ଲୀରେ ଜନ୍ମ ନେଇଥିଲା ସୁଲତାନେତ୍ ବା ସୁଲତାନ୍‌ମାନଙ୍କ ଶାସନ । ଆଇବେକ୍‌ଙ୍କ ମୃତ୍ୟୁ (ପୋଲ ଖେଳ ଖେଳୁ ଖେଳୁ ଘୋଡ଼ା ପିଠିରୁ ପଡ଼ି ଯାଇ ମୃତ୍ୟୁ ଘଟିଥିଲା) ପରେ ଆଉ ଜଣେ ଶାସକ କ୍ଷମତାରେ ଅଧିଷ୍ଠିତ ହେଲେ । ତାଙ୍କ ନାମ ଶାମସ୍ ଉଦ୍ଦିନ୍ ଇଲ୍‌ତୁତ୍‌ମିଶ୍, ସେ ଥିଲେ ଗୋଲାମ (ରାଜକୀୟ ରକ୍ଷୀ ବାହିନୀରେ କର୍ମରତ କ୍ରୀତଦାସ) ବା ଦାସବଂଶୀୟ । ତାଙ୍କ ସିଂହାସନର କେତେକ ଉତ୍ତରାଧିକାରୀ ରକ୍ଷୀବାହିନୀରେ କର୍ମରତ ସାଧାରଣ କ୍ରୀତଦାସ ଥିବା ହେତୁ ଇଲ୍‌ତୁତ୍‌ମିଶ୍‌ଙ୍କ ରାଜବଂଶ ଗୋଲାମ ବା ଦାସରାଜବଂଶ ନାମରେ ପରିଚିତ ହୋଇ ଆସିଛି ।

## ଗୋଲାମ ବା ଦାସବଂଶ

ଇଲ୍‌ତୁତ୍‌ମିଶ୍ ତାଙ୍କ ରାଜ୍ୟକୁ ସୁଦୃଢ଼ କରି ଗଢ଼ି ତୋଳିଲା ବେଳେ ଏବଂ ରାଜ୍ୟର ସୀମାକୁ ବିସ୍ତାର କରୁଥିଲା ବେଳେ ଭାରତ ଆକ୍ରମଣ କରିଥିଲେ ମଙ୍ଗୋଲ ଆକ୍ରମଣକାରୀମାନେ । ସେମାନଙ୍କ

ଦ୍ୱାରା ପରାଜିତ ଖରେଜମ୍ ଶାହ୍‌ଙ୍କ ପୁତ୍ର ଜଲଲ ଉଦ୍ଦିନ୍‌ଙ୍କ ପଶ୍ଚାତ୍‌ଧାବନ କରି ସେମାନେ ଭାରତକୁ ଆସିଥିଲେ । ଏହି ସମୟରେ ମଙ୍ଗୋଲମାନେ ମାଞ୍ଚୁରିଆରୁ ତୁର୍କିସ୍ତାନ ପର୍ଯ୍ୟନ୍ତ ସମଗ୍ର ମଧ୍ୟ ଏସିଆ ଜୟ କରି ନେଇଥିଲେ ଏବଂ ସେଇ ବିଜୟ ଅଭିଯାନ ବେଳେ ଅସଂଖ୍ୟ ଲୋକଙ୍କୁ ନିଷ୍ଠୁର ଭାବେ ହତ୍ୟା କରିଥିଲେ । ଚିଙ୍ଗିଜ୍ ଖାଁଙ୍କ ନାମ ଶୁଣିଲେ, ସେତେବେଳେ ଲୋକେ ଭୟରେ ହିମ ପାଲଟି ଯାଉଥିଲେ । ଇଲ୍‌ତୁତ୍‌ମିଶ୍ ଜାଲଲ ଉଦ୍ଦିନ୍‌ଙ୍କୁ ସାହାଯ୍ୟ କରିବାକୁ ଅସ୍ୱୀକାର କଲେ । ଜାଲଲ ଉଦ୍ଦିନ୍ ପଶ୍ଚିମ ପଞ୍ଜାବ, ସିନ୍ଧୁ ଦେଶ ଓ ଉତ୍ତର ଗୁଜରାଟ ଲୁଣ୍ଠନ ଏବଂ ବିଧ୍ୱଂସ କରି, ଅବଶେଷରେ, ଭାରତ ତ୍ୟାଗ କରିଥିଲେ । ଅବଶ୍ୟ, ଏହା ପରେ ଆଉରି ବହୁ ଦିନ ପର୍ଯ୍ୟନ୍ତ ଭାରତରେ ମଙ୍ଗୋଲ ଆକ୍ରମଣର ଭୟ ଦୂରେଇ ଯାଇଥିଲା ଏବଂ ତାହା ସାହାଯ୍ୟ କରିଥିଲା ମୁସଲମାନ ଅଭିଜାତ ବଂଶୀୟମାନଙ୍କୁ ଦିଲ୍ଲୀ ସିଂହାସନ ରକ୍ଷା କରିବାରେ ତା'ର ଚାରି ପାଖରେ ସମବେତ ଓ ଐକ୍ୟବଦ୍ଧ ହେବାକୁ ।

ଇଲ୍‌ତୁତ୍‌ମିଶ୍‌ଙ୍କ ରାଜତ୍ୱକାଳରେ ମୁସଲିମ୍ ସେନାନାୟକମାନେ ଉତ୍ତର ଭାରତରେ ସେମାନଙ୍କ ଆଧିପତ୍ୟ ବିସ୍ତାର କରିବାକୁ ସମର୍ଥ ହୋଇଥିଲେ । ଦିଲ୍ଲୀରେ ସୁଉଚ୍ଚ ଓ ସୁନ୍ଦର କୁତ୍‌ବ ମିନାରଟି ନିର୍ମିତ ହୋଇଥିଲା ଇଲ୍‌ତୁତ୍‌ମିଶ୍‌ଙ୍କ ସ୍ମୃତି ଉଦ୍ଦେଶ୍ୟରେ । ଏହି ମିନାର ନିର୍ମାଣର କାର୍ଯ୍ୟ, ଅବଶ୍ୟ, ଆରମ୍ଭ ହୋଇଥିଲା କୁତ୍‌ବ ଉଦ୍ଦିନ୍‌ଙ୍କ ରାଜତ୍ୱକାଳରେ । କିନ୍ତୁ ଏହାର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା ଇଲ୍‌ତୁତ୍‌ମିଶ୍‌ଙ୍କ ଅମଳରେ । ଏହି ମିନାର ନିକଟରେ ଇଲ୍‌ତୁତ୍‌ମିଶ୍‌ଙ୍କ କବରଟି ରହିଛି ।

ଏହି ସମୟରେ ମୁସଲିମ୍ ଯୋଦ୍ଧୃ ଅଭିଜାତ ସଂପ୍ରଦାୟ ଗଠିତ ହୋଇଥିଲା, ମୁଖ୍ୟତଃ, ମଧ୍ୟ ଏସିଆରୁ ଆଗତ ତୁର୍କୀମାନଙ୍କୁ ନେଇ । ଏହି ତୁର୍କୀ ସେନାନାୟକମାନେ ନିଜକୁ ଐକ୍ୟବଦ୍ଧ କରିଥିଲେ "ଚାଳିଶ" ନାମକ ଏକ ଶକ୍ତିଶାଳୀ ସଂଗଠନ ମଧ୍ୟରେ (କାରଣ ସଂଗଠନଟିର ପ୍ରତିଷ୍ଠାତା ଥିଲେ ଚାଳିଶଜଣ ସେନାନାୟକ) । ଏହି ସମୟରେ ରାଜକର୍ମଚାରୀ ଓ ଧର୍ମୀୟ ନେତୃବୃନ୍ଦ ଥିଲେ ଖୋରାସାନୀ (ଅର୍ଥାତ୍, ତାଜିକ୍, କିମ୍ବା ପାରସୀୟ) । ରାଷ୍ଟ୍ରୀୟ ଧର୍ମ ଥିଲା ସୁନ୍ନି ମତାବଲମ୍ବୀ ଇସ୍‌ଲମ ଧର୍ମ । ହିନ୍ଦୁମାନଙ୍କୁ ସୁନ୍ନିମାନେ ବିଧର୍ମୀ ("ଜିମ୍ମିସ୍") ବୋଲି ଗଣ୍ୟ କରୁଥିଲେ । ଫାରସୀ ଥିଲା ସେତେବେଳେ ରାଷ୍ଟ୍ରର ସରକାରୀ ଭାଷା । ସ୍ୱୈରତନ୍ତ୍ର ଶାସନ ଦେଶରେ ପ୍ରଚଳିତ ଥିଲା ।

ଦିଲ୍ଲୀର ପ୍ରଥମ ଦୁଇଜଣ ସୁଲତାନ୍ ମୁସଲିମ୍ ସେନାନାୟକଙ୍କ ମଧ୍ୟରୁ ନିର୍ବାଚିତ ହୋଇଥିଲେ ମଧ୍ୟ ଇଲ୍‌ତୁତ୍‌ମିଶ୍ ଚାହିଁଥିଲେ ସୁଲତାନେତ୍‌କୁ ବଂଶାନୁକ୍ରମିକ କରିବା ପାଇଁ । ସେ ତାଙ୍କର ଉତ୍ତରାଧିକାରୀ ହିସାବରେ ନିର୍ବାଚିତ କରିଥିଲେ ନିଜର କନ୍ୟା ରାଜିୟାକୁ । ଏହି କନ୍ୟାଙ୍କୁ ନିଜର ପୁତ୍ରମାନଙ୍କ ଠାରୁ "ଯୋଗ୍ୟତମ ପୁରୁଷ" ବୋଲି ସେ ଜ୍ଞାନ କରୁଥିଲେ । ସୁଲ୍‌ତାନା ରାଜିୟା, ଅବଶ୍ୟ, ସାହସିନୀ ଓ ବୁଦ୍ଧିମତୀ ମହିଳା ଥିଲେ । କିନ୍ତୁ ମୁସ୍‌ଲିମ୍ ଧର୍ମୀୟ କୁସଂସ୍କାର ହେତୁ ଯୋଦ୍ଧୃ ନେତୃବୃନ୍ଦ ଜଣେ ମହିଳାର ଅଧୀନସ୍ଥ ହୋଇ ରହିବାକୁ ଅସମ୍ମାନ ବୋଲି ମନେ କଲେ । ରାଜିୟା ଚାରି ବର୍ଷ ରାଜତ୍ୱ କଲା ପରେ ତାଙ୍କୁ ହତ୍ୟା କରାଗଲା । ତାଙ୍କ ପରେ କିଛି କାଳ ପାଇଁ ବିରାଜ କରିଥିଲା ରାଜନୈତିକ ଅଶାନ୍ତି ଏବଂ ବାରମ୍ବାର ପ୍ରାସାଦ ବିଦ୍ରୋହ । ଏହି ସମୟରେ ମଙ୍ଗୋଲମାନେ ବାରମ୍ବାର ଭାରତ ଆକ୍ରମଣ କରିଥିଲେ ଏବଂ ୧୨୪୧ ଖ୍ରୀଷ୍ଟାବ୍ଦରେ ଲହୋର ଅଧିକାର କରିବାକୁ ସମର୍ଥ ହୋଇଥିଲେ ।

ଅବଶେଷରେ, ୧୨୪୬ ଖ୍ରୀଷ୍ଟାବ୍ଦରେ ଇଲ୍‌ତୁତ୍‌ମିଶ୍‌ଙ୍କ କନିଷ୍ଠ ପୁତ୍ର ନାସିର ଉଦ୍ଦିନ୍‌ଙ୍କୁ ବସାଗଲା ସିଂହାସନରେ । ତେବେ ପ୍ରକୃତ ରାଷ୍ଟ୍ର କ୍ଷମତା ନ୍ୟସ୍ତ ରହିଲା ତାଙ୍କ ଯୋଗ୍ୟ ଅଭିଭାବକ ଗିୟାସ୍

ଉଦ୍ଦିନ୍ ବଲ୍‌ବନ୍‌ଙ୍କ ହାତରେ । ୧୨୬୫ ଖ୍ରୀଷ୍ଟାବ୍ଦରେ ନାସିର ଉଦ୍ଦିନ୍‌ଙ୍କ ମୃତ୍ୟୁ ପରେ ଗିୟାସ୍ ଉଦ୍ଦିନ୍ ନିଜେ ସିଂହାସନରେ ବସିଥିଲେ । ୧୨୮୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବାଇଶ୍ ବର୍ଷ କାଳ ସେ ରାଜତ୍ୱ କରିଥିଲେ । ସିଂହାସନରେ ବସିଲା ପରେ ବଲ୍‌ବନ୍ ମଙ୍ଗୋଲମାନଙ୍କୁ ଦେଶରୁ ବିତାଡ଼ିତ କରିବାକୁ ସମର୍ଥ ହୋଇଥିଲେ ଏବଂ ଦେଶର ଉତ୍ତର-ପଶ୍ଚିମ ସୀମାନ୍ତରେ ତାଙ୍କ ପ୍ରତିରକ୍ଷା ବ୍ୟୂହର ସୀମାନ୍ତରେ ଅନେକଗୁଡ଼ିଏ ଦୁର୍ଗ ନିର୍ମାଣ କରିଥିଲେ । ତାଙ୍କ ରାଜତ୍ୱକାଳଟି ରାଷ୍ଟ୍ରଶକ୍ତିକୁ ସୁସଂହତ କରିବାରେ ଅନବରତ ଯୁଦ୍ଧ ବିଗ୍ରହ ଚଳେଇ ଯିବାର ସମୟ ଥିଲା । ବିଦ୍ରୋହ ଦମନ କ୍ଷେତ୍ରରେ ବଲ୍‌ବନ୍ ଥିଲେ ଅତ୍ୟନ୍ତ ନିଷ୍ଠୁର ଏବଂ ନିର୍ମମ , ବନ୍ଦୀ ବିଦ୍ରୋହୀମାନଙ୍କୁ ହାତୀ ପାଦତଳେ ପେଷିକି ମାରିବା , କିମ୍ବା ଜୀବନ୍ତ ଅବସ୍ଥାରେ ସେମାନଙ୍କ ଚମଡ଼ା ଛାଲି ପକାଇବା ପାଇଁ ସେ ହୁକୁମ ଦେଇଥିଲେ (ଦୋୟାବ୍‌ର ଅଧିବାସୀମାନଙ୍କୁ ସେ ଏହି ଭାବେ ଶାସ୍ତି ଦେଇଥିଲେ) । "ଚ୍ଚଲିଶ" ନାମକ ଦଳଟିର ଶକ୍ତିକୁ ଚୂର୍ଣ୍ଣ କରିବାରେ ସେ ସମର୍ଥ ହୋଇଥିଲେ ଏବଂ ୧୨୮୦ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ମୁସ୍‌ଲିମ୍ ସେନାନାୟକମାନଙ୍କର ବିଦ୍ରୋହକୁ ନିଷ୍ଠୁର ଭାବେ ଦମନ କରିଥିଲେ । ବିଦ୍ରୋହର ନେତାମାନଙ୍କୁ ସେ ଶାସ୍ତି ଦେଇଥିଲେ ଜନସାଧାରଣଙ୍କ ସମକ୍ଷରେ ଶୂଳିରେ ଚଢ଼େଇ ହତ୍ୟା କରି । ବୃଦ୍ଧ ବୟସରେ ଗିୟାସ୍ ଉଦ୍ଦିନ୍ ବଲ୍‌ବନ୍‌ଙ୍କର ମୃତ୍ୟୁ ଘଟିଲା ପରେ ପୁଣି ସାମନ୍ତ ଭୂସ୍ୱାମୀମାନଙ୍କର ବିଭିନ୍ନ ଗୋଷ୍ଠୀ ମଧ୍ୟରେ କ୍ଷମତା ପାଇଁ ଲଢ଼େଇ ଆରମ୍ଭ ହୋଇ ଯାଇଥିଲା । ଏହା ପରେ ଯେଉଁ ପ୍ରତିଦ୍ୱନ୍ଦ୍ୱିତା ଚାଲିଲା , ସେଥିରେ ଖିଲ୍‌ଜି ବଂଶୀୟ ତୁର୍କୀ ଉପଜାତିର ଯୋଦ୍ଧୃ ନେତୃବର୍ଗ ଶେଷକୁ ଜୟୀ ହେଲେ ଏବଂ ସିଂହାସନରେ ବସିଲେ ସତୁରି ବର୍ଷର ବୃଦ୍ଧ ଜାଲାଲ ଉଦ୍ଦିନ୍ ଫିରୁଜ୍ । ଜାଲାଲ ଉଦ୍ଦିନ୍ ଫିରୁଜ୍ ରାଜତ୍ୱ କରିଥିଲେ ୧୨୯୦ରୁ ୧୨୯୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ।

## ଖିଲ୍‌ଜି ରାଜତ୍ୱ

ଖିଲ୍‌ଜି ବଂଶର ପ୍ରଥମ ସୁଲତାନ୍‌ଙ୍କ ରାଜତ୍ୱକାଳରେ ମଙ୍ଗୋଲ ସେନାବାହିନୀ ପୁଣି ଥରେ ଭାରତ ଆକ୍ରମଣ କଲା । କିନ୍ତୁ ଜାଲାଲ ଉଦ୍ଦିନ୍ ସେମାନଙ୍କର ଗୋଟିଏ ଅଂଶକୁ ପରାସ୍ତ କରିବାକୁ ଏବଂ ଅନ୍ୟ ଏକ ଅଂଶକୁ ଉତ୍‌କୋଚ ଦ୍ୱାରା ବଶୀଭୂତ କରିବାକୁ ସମର୍ଥ ହୋଇଥିଲେ ।

ଜାଲାଲ ଉଦ୍ଦିନ୍ ଫିରୁଜ୍‌ଙ୍କ ରାଜତ୍ୱକାଳର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା ତାଙ୍କ ଜାମାତା ଓ ଭ୍ରାତୃଷ୍ପୁତ୍ର ଆଲା ଉଦ୍ଦିନ୍‌ଙ୍କ ନେତୃତ୍ୱରେ ଦାକ୍ଷିଣାତ୍ୟ ଅଭିଯାନ । ଦେବଗିରିର ଯାଦବ ରାଜବଂଶର ରାଜା ରାମଚନ୍ଦ୍ରଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କ ଧନସଂପଦ ଲୁଣ୍ଠନ କଲା ପରେ ଆଲା ଉଦ୍ଦିନ୍ ଦିଲ୍ଲୀକୁ ଫେରି ଆସିଥିଲେ । ରାଜଧାନୀର ନିକଟବର୍ତ୍ତୀ ଏକ ସ୍ଥାନରେ ଶ୍ୱଶୁରଙ୍କ ସହିତ ସାକ୍ଷାତ କଲା ବେଳେ ସେ ବିଶ୍ୱାସଘାତକତା କରି ଶ୍ୱଶୁରକୁ ହତ୍ୟା କରିଥିଲେ ଏବଂ ନିଜେ ଦିଲ୍ଲୀର ନୂତନ ସୁଲତାନ୍ ରୂପେ ଅଧିଷ୍ଠିତ ହେଲେ (ଦିଲ୍ଲୀରେ ସେ ରାଜତ୍ୱ କରିଥିଲେ ୧୨୯୬ରୁ ୧୩୧୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) ।

ଏହି ନିଷ୍ଠୁର ଓ ଦୃଢ଼ମନା ନୂତନ ସୁଲତାନ୍ ଥିଲେ ଜଣେ ଦକ୍ଷ ସେନାନାୟକ ଏବଂ ପ୍ରତିଭାବାନ ପ୍ରଶାସକ । ଏହି ସମୟରେ ମଙ୍ଗୋଲମାନେ ଆଉରି ଘନ ଘନ ଭାରତ ଆକ୍ରମଣ କରୁଥିଲେ ଏବଂ ଆଲା ଉଦ୍ଦିନ୍ ଏହି ଶତ୍ରୁକୁ ଉତ୍‌ଖାତ କରିବା ପାଇଁ ତାଙ୍କର ସମଗ୍ର ସେନାବାହିନୀକୁ ସମବେତ

କରିଥିଲେ । ତାଙ୍କ ରାଜ୍ୟରେ ବାସ କରୁଥିବା ମଙ୍ଗୋଲ ଉପଜାତିର ଲୋକେ କାଳେ ବିଦ୍ରୋହ କରି ପାରନ୍ତି, ଏହି ସନ୍ଦେହ କରି, ଥରେ ଜାଲାଲ ଉଦ୍ଦିନ୍‌ଙ୍କ ରାଜତ୍ୱକାଳରେ ଦିଲ୍ଲୀର ଆଖପାଖରେ ଯେତେ ମଙ୍ଗୋଲ ବାସ କରୁଥିଲେ ଏବଂ ଏପରିକି ଯେଉଁମାନେ ଜାଲାଲ ଉଦ୍ଦିନ୍‌ଙ୍କ ସୈନ୍ୟଦଳରେ ଯୋଗ ଦେଇ ଇଣ୍ଡେଇ କରିଥିଲେ, ସେ ସମସ୍ତଙ୍କୁ ଗୋଟିଏ ରାତ୍ରି ମଧ୍ୟରେ ଘେରଉ ଏବଂ ବନ୍ଦୀ କରି ହତ୍ୟା କରିବାକୁ ସେ ହୁକୁମ ଦେଇଥିଲେ । ଏହି ମଙ୍ଗୋଲମାନଙ୍କର ସଂଖ୍ୟା ପନ୍ଦରରୁ ତିରିଶ ହଜାର ପର୍ଯ୍ୟନ୍ତ ହେଲେ ମଧ୍ୟ ତାଙ୍କର ଏହି ହୁକୁମରେ କୌଣସି ପରିବର୍ତ୍ତନ ଘଟି ନଥିଲା । ଏହିଥିରୁ ତାଙ୍କର ନିଷ୍ଠୁରତାର ଦିଗଟି ପରିଷ୍କାର ଜଣା ପଡ଼େ । ପୁରୋହିତ, ମୋଲ୍ଲା ଓ ଧନୀ ଗୋଷ୍ଠୀର ନିଷ୍କର ଜମିକୁ ସେ ବାଜ୍ୟାପ୍ତ କରି ଦେଇଥିଲେ, କିମ୍ବା ସେସବୁ ଉପରେ କର ଧାର୍ଯ୍ୟ କରିଥିଲେ । ଷଡ଼ଯନ୍ତ୍ରର ସମ୍ଭାବନାକୁ ମୂଳରୁ ବିନଷ୍ଟ କରି ଦେବା ପାଇଁ ସେ ସମସ୍ତ ପ୍ରକାରର ଭୋଜି, ଖାନାପିନା ଓ ସମାବେଶ ନିଷିଦ୍ଧ କରି ଦେଇଥିଲେ ଏବଂ ସାରା ଦେଶକୁ ଗୁପ୍ତଚର ଦେଇ ଛାଇ ଦେଇଥିଲେ ।

ଦେଶର ଭୂସଂପତ୍ତିକୁ ନିଜ ହାତରେ କେନ୍ଦ୍ରୀଭୂତ କରିବା ପାଇଁ ଆଲ୍ଲା ଉଦ୍ଦିନ୍ ସେ ପର୍ଯ୍ୟନ୍ତ ପ୍ରଚଳିତ ଭୂମିଦାନ ପ୍ରଥାର ପରିବର୍ତ୍ତେ ଇକ୍ତାଦାରମାନଙ୍କୁ ପାଇଁ ସ୍ୱଳ୍ପ ପରିମାଣର ଅର୍ଥଦାନର ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ଜିନିଷପତ୍ରର ବିନିମୟ ପ୍ରଥା ଯେଉଁ ଦେଶରେ ପ୍ରଧାନ ପ୍ରଚଳିତ ପ୍ରଥା ଥିଲା ସେଠି ରାଜଧାନୀରେ ଖାଦ୍ୟ ଦ୍ରବ୍ୟର ମୂଲ୍ୟ କମେଇବା ଉଦ୍ଦେଶ୍ୟରେ ଚରମ ବ୍ୟବସ୍ଥାଦି ଅବଲମ୍ବନ କରାଯାଇଥିଲା । ଏହି ଭାବେ ସେ ତାଙ୍କର ଅନିୟମିତ ବେତନ ଭୁକ୍ତ ସୈନ୍ୟମାନଙ୍କ ମଧ୍ୟରେ ଖାଦ୍ୟ ସରବରାହ ନିଶ୍ଚିତ କରିଥିଲେ । ସେ ଏକ ନିର୍ଦ୍ଦେଶ ଜାରି କରିଥିଲେ, ଦୋୟାବ୍ ଅଞ୍ଚଳର ସମସ୍ତ ରାଷ୍ଟ୍ରୀୟ ମାଲିକାନାଧୀନ ଜମିରୁ ପ୍ରାପ୍ୟ ରାଜସ୍ୱ ଫସଲ ଆକାରରେ ଆଦାୟ କରାଯିବ । ଏହା ଫଳରେ ବଣିକମାନେ ବାଧ୍ୟ ହେଲେ ଦିଲ୍ଲୀରେ ବିଶେଷ ଭାବେ ନିର୍ମିତ ପ୍ରକାଣ୍ଡ ଶସ୍ୟ ଗୋଲାଗୁଡ଼ିକୁ ଫସଲ ଯୋଗାଇବାକୁ । ରାଜଧାନୀର ଏବଂ ଦୋୟାବ୍ ଅଞ୍ଚଳର ରାଜ୍ୟଗୁଡ଼ିକରେ ଫସଲର ମୂଲ୍ୟକୁ ଦୃଢ଼ ହାତରେ ନିୟନ୍ତ୍ରଣ କରାଗଲା ଏବଂ ରାଷ୍ଟ୍ରର ନିୟମକାନୁନ୍ ପ୍ରତିପାଳିତ ହେଉଛି କି ନାହିଁ, ତାହା ତଦାରଖ କରିବା ପାଇଁ ବିଶେଷ ଦଳେ କର୍ମଚାରୀ ନିଯୁକ୍ତ ହେଲେ । ବଜାରରେ କ୍ରେତାମାନଙ୍କୁ ଠକାଇଲେ କିମ୍ବା ଠିକ୍ ଓଜନର ଜିନିଷ ନଦେଲେ, ବିଭିନ୍ନ ନିଷ୍ଠୁର ଶାସ୍ତି ଦିଆଗଲା । ଆବାଦୀ ଜମିର ଖଜଣା ବୃଦ୍ଧି କରି ତାହାକୁ ଉତ୍ପନ୍ନ ଫସଲର ଏକ ଚତୁର୍ଥାଂଶରୁ ଅର୍ଦ୍ଧେକ କରାଗଲା । ହିନ୍ଦୁମାନଙ୍କ ପକ୍ଷରେ ଅସ୍ତ୍ରଶସ୍ତ୍ର ରଖିବା, ମୂଲ୍ୟବାନ ପୋଷାକ ପିନ୍ଧିବା ଏବଂ ଘୋଡ଼ା ଚଢ଼ିବା ନିଷିଦ୍ଧ କରି ଦିଆଗଲା । ମୁସଲମାନମାନଙ୍କ ମଧ୍ୟରେ ଅପେକ୍ଷାକୃତ ଧର୍ମଯୁଦ୍ଧ ପରାୟଣ ଲୋକମାନଙ୍କୁ ସନ୍ତୁଷ୍ଟ ରଖିବା ପାଇଁ ଏହି ବ୍ୟବସ୍ଥା ଅବଲମ୍ବନ କରାଯାଇଥିଲା । ତେବେ ସୈନ୍ୟମାନଙ୍କୁ ଅପେକ୍ଷାକୃତ ଅଧିକ ବେତନ ଦିଆଗଲା ।

ପ୍ରାରମ୍ଭରେ ଏହିସବୁ କଡ଼ା ବ୍ୟବସ୍ଥା ଅବଲମ୍ବନ କରିବା ଫଳରେ ସୁଲତାନ୍‌ଙ୍କ ପକ୍ଷରେ ୪ ଲକ୍ଷ ୭୫ ହଜାର ଅଶ୍ୱାରୋହୀ ସୈନ୍ୟଙ୍କୁ ନେଇ ଏକ ବିଶାଳ କର୍ମଦକ୍ଷ ସେନାବାହିନୀ ଗଢ଼ି ତୋଳିବା ସମ୍ଭବ ହୋଇଥିଲା । ଏହା ସାହାଯ୍ୟରେ ସେ ମଙ୍ଗୋଲମାନଙ୍କ ଆକ୍ରମଣକୁ ପ୍ରତିହତ କରି ପାରିଥିଲେ । ଆଲ୍ଲା ଉଦ୍ଦିନ୍‌ଙ୍କ ରାଜତ୍ୱକାଳରେ ମଙ୍ଗୋଲମାନେ ଶେଷ ଥର ପାଇଁ ଭାରତ ୧୩୦୬ ଖ୍ରୀଷ୍ଟାବ୍ଦରେ ଆକ୍ରମଣ କରିଥିଲେ ଏବଂ ଇରାବତୀ ନଦୀ ତୀରରେ ଏକ ଯୁଦ୍ଧରେ ସୁଲତାନ୍‌ଙ୍କ ସୈନ୍ୟମାନଙ୍କ ଦ୍ୱାରା ପରାଜିତ ହୋଇଥିଲେ ।

ତେବେ ଏଭଳି ଏକ ପ୍ରକାଣ୍ଡ ସୈନ୍ୟବାହିନୀକୁ ପୋଷଣ କରିଯିବା ଭଳି ଆଲ୍ଲା ଉଦ୍ଦିନ୍‌ଙ୍କର ସମ୍ବଳ ନଥିବାରୁ ସେ ସ୍ଥିର କଲେ ପୁଣି ଥରେ ଦାକ୍ଷିଣାତ୍ୟର ନୂଆ ନୂଆ ଏଲାକା ଓ ସହରଗୁଡ଼ିକୁ ଲୁଣ୍ଠନ କରି ରାଜକୋଷ ପୂର୍ଣ୍ଣ କରିବାକୁ । ସେନାଧ୍ୟକ୍ଷ ମାଲିକ କାଫୁରଙ୍କୁ ସେ ଏହି ଅଭିଯାନର ନେତୃତ୍ୱ ଅର୍ପଣ କରିଥିଲେ ଏବଂ ୧୩୦୭ ଖ୍ରୀଷ୍ଟାବ୍ଦରେ ମାଲିକ କାଫୁର ପୁଣି ଥରେ ଦେବଗିରି ଏବଂ ପରେ କାକତୀୟ ବଂଶର ରାଜଧାନୀ ଓୟାରଙ୍ଗଲ (ବର୍ତ୍ତମାନର ତେଲେଙ୍ଗାନା ନାମରେ ପରିଚିତ ଅଞ୍ଚଳ) ଦଖଲ କରିଥିଲେ । ତା'ପରେ ୧୩୧୧ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଥର ଅଭିଯାନ ଚଳେଇ କାଫୁର ଦଖଲ କରି ନେଇଥିଲେ ହୟସଲ ରାଜ୍ୟର ରାଜଧାନୀ ଦ୍ୱାରସମୁଦ୍ର ଏବଂ ପାଣ୍ଡ୍ୟ ରାଜ୍ୟର କେନ୍ଦ୍ର ମଦୁରାଇକୁ । ଏହାର ପରବର୍ତ୍ତୀ ଦୁଇ ତିନି ବର୍ଷ ମଧ୍ୟରେ ମାଲିକ କାଫୁର ଏହିଭଳି ଆଉ କେତୋଟି ଅଭିଯାନ ଚଳେଇଥିଲେ ଏବଂ ଭାରତର ଦକ୍ଷିଣ ପ୍ରାନ୍ତସ୍ଥ କୁମାରିକା ଅନ୍ତରୀପରେ ପହଞ୍ଚି ଯାଇଥିଲେ । ଏହିସବୁ ସାମରିକ ଅଭିଯାନରୁ ପ୍ରତ୍ୟାବର୍ତ୍ତନ କଲାବେଳେ ଆଲ୍ଲା ଉଦ୍ଦିନ୍‌ଙ୍କ ସେନାବାହିନୀ ସୁନା, ମଣି ମୁକ୍ତା ଓ ଘୋଡ଼ା ପଲ ସହ ଅପରିମିତ ଐଶ୍ୱର୍ଯ୍ୟ ସମ୍ଭାର ଲୁଟ କରି ଆଣିଥିଲେ । ଦକ୍ଷିଣ ଭାରତର ଭୂଖଣ୍ଡଗୁଡ଼ିକର ପରାଜିତ ରାଜାମାନେ ଦିଲ୍ଲୀ ସୁଲତାନ୍ ରାଜତ୍ୱର ଆଧିପତ୍ୟ ମାନି ନେବାକୁ ଏବଂ ଦିଲ୍ଲୀକୁ ବାର୍ଷିକ କର ଦେବାକୁ ବାଧ୍ୟ ହୋଇଥିଲେ ।

ଆଲ୍ଲା ଉଦ୍ଦିନ୍‌ଙ୍କ ବିଶାଳ ସାମ୍ରାଜ୍ୟ ଦୃଢ଼ବଦ୍ଧ ଏବଂ କେନ୍ଦ୍ରବଦ୍ଧ ନଥିଲା । ତାଙ୍କ ଜୀବନର ଶେଷ ବର୍ଷଗୁଡ଼ିକରେ ଗୁଜରାଟରେ ନିଯୁକ୍ତ ତାଙ୍କର ଶାସନ ପ୍ରତିନିଧିମାନେ ତାଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ଅନ୍ୟ ଦିଗରୁ ରାଜପୁତ୍‌ମାନେ ଅବଦମିତ ହୋଇ ରହି ଯାଇଥିଲେ ; ରାଜପୁତ୍ ଗାଥା କାବ୍ୟଗୁଡ଼ିକରେ ମୁସ୍‌ଲିମ୍ ଆକ୍ରମଣକାରୀ ବାହିନୀଗୁଡ଼ିକ ବିରୁଦ୍ଧରେ ସେମାନଙ୍କର ଅବିରତ ସଂଘର୍ଷ ଏବଂ ସଂଗ୍ରାମର କଥା ରହିଛି । ବଙ୍ଗ ଦେଶ ମଧ୍ୟ ସେତେବେଳେ ବିଭକ୍ତ ହୋଇ ଯାଇଥିଲା ବିଭିନ୍ନ ସ୍ୱାଧୀନ ମୁସଲମାନମାନଙ୍କ ରାଜ୍ୟରେ । ହୟସଲ ଓ ପାଣ୍ଡ୍ୟ ରାଜାମାନେ ଦିଲ୍ଲୀକୁ ବାର୍ଷିକ କର ଦେବା ବ୍ୟତୀତ କାର୍ଯ୍ୟତଃ ସ୍ୱାଧୀନ ଥିଲେ । ଅନ୍ୟ ଦିଗରେ, ସିନ୍ଧୁ ନଦୀର ଆର ପାରିର ଉତ୍ତରାଞ୍ଚଳଗୁଡ଼ିକରେ ସେପର୍ଯ୍ୟନ୍ତ ବାସ କରୁଥିଲେ ବିଭିନ୍ନ ସ୍ୱାଧୀନ ଉପଜାତି ।

ସଫଳ ଯୁଦ୍ଧାଭିଯାନ ପରିଚାଳନା ପରେ ରାଜଧାନୀକୁ ଆନୀତ ଲୁଣ୍ଠନ ଦ୍ରବ୍ୟାଦିକୁ ସୁଲତାନ୍ ମୁକ୍ତ ହସ୍ତରେ ବିତରଣ କରୁଥିଲେ ମଧ୍ୟ ତାଙ୍କର ସନ୍ଦେହୀମନୋଭାବ ଏବଂ ଜମି ଆଦି ବାଜ୍ୟାପ୍ତ କରିବାର ଅଭ୍ୟାସ, ହିନ୍ଦୁମାନଙ୍କ ଉପରେ ନିପୀଡ଼ନ ଏବଂ ତତ୍ ସଙ୍ଗେ ସଙ୍ଗେ ଅର୍ଥନୀତି ଭାଙ୍ଗି ପଡ଼ିବା ଫଳରେ ଚାରି ଦିଗରେ ବ୍ୟାପକ ଅସନ୍ତୋଷ ସୃଷ୍ଟି ହୋଇଥିଲା । ସର୍ବତ୍ର ଦେଖା ଦେଲା ବିଦ୍ରୋହ ଏବଂ ଅଭ୍ୟୁତ୍‌ଥାନ । ଆଲ୍ଲା ଉଦ୍ଦିନ୍‌ଙ୍କ ମୃତ୍ୟୁ ପରେ (୧୩୧୬ ଖ୍ରୀଷ୍ଟାବ୍ଦରେ ଶୋଥ ରୋଗରେ ପଡ଼ି ସେ ମୃତ୍ୟୁବରଣ କଲେ) ସେନାଧ୍ୟକ୍ଷମାନଙ୍କ ମଧ୍ୟରେ ସିଂହାସନ ନେଇ ପ୍ରବଳ ସଂଘର୍ଷ ଲାଗିଗଲା ଏବଂ କ୍ଷମତା ଦଖଲ କରିବାକୁ ଯାଇ ମାଲିକ କାଫୁର ନିହତ ହେଲେ । କେଇ ମାସ ପରେ ଆଲ୍ଲା ଉଦ୍ଦିନ୍‌ଙ୍କ ପୁତ୍ର (୧୩୧୬-୧୩୨୦ ଖ୍ରୀଷ୍ଟାବ୍ଦ) କୁତ୍‌ବ ଉଦ୍ଦିନ୍ ମୁବାରକ ଶାହ୍ ନାମ ଗ୍ରହଣ କରି ସିଂହାସନରେ ବସିଲେ । ପିତାଙ୍କ ଦ୍ୱାରା ପ୍ରବର୍ତ୍ତିତ ସମସ୍ତ ଅର୍ଥନୈତିକ ସଂସ୍କାରକୁ ସେ ନିଷେଧ କରି ଦେଲେ, କିନ୍ତୁ ରାଜ୍ୟଜୟ ଓ ପରରାଜ୍ୟ ଦଖଲର ନୀତି ତ୍ୟାଗ କଲେ ନାହିଁ ଏବଂ ଖସରୁ ଖାଁଙ୍କ ନେତୃତ୍ୱରେ ଏକ ସେନାବାହିନୀ ଦାକ୍ଷିଣାତ୍ୟକୁ ପଠାଇଲେ । ଏହି ସେନାଧ୍ୟକ୍ଷଜଣକ ମଦୁରାଇ ଏବଂ ତେଲେଙ୍ଗାନା ଜୟ କରି ପ୍ରଚୁର ଲୁଣ୍ଠିତ ଦ୍ରବ୍ୟ ନେଇ ଫେରି ଆସିଲେ ଦିଲ୍ଲୀକୁ । ତେବେ, ଦିଲ୍ଲୀକୁ

ଫେରି ଆସି ସେ ମୁବାରକ ଶାହ୍‌ଙ୍କୁ ହତ୍ୟା କଲେ ନିଜେ ଦିଲ୍ଲୀରେ ସୁଲତାନ୍ ହେବା ଆଶାରେ । କିନ୍ତୁ ଆଉ ଏକ ଗୋଷ୍ଠୀର ତୁର୍କୀ ଅଭିଜାତମାନେ ଅବିଳମ୍ବେ ଏହି ପଥର କଣ୍ଟକଟିକୁ ନିର୍ମୂଳ କରି ଦେଲେ । ତା'ପରେ ଦିଲ୍ଲୀ ସିଂହାସନରେ ବସିଲେ ପଞ୍ଜାବର ଜନୈକ ଶାସକ ଫୌଜଦାର ମାଲିକ ଗାଜୀ । ସେ ସୁଲତାନ୍ ହେଲେ ଗିୟାସ୍ ଉଦ୍ଦିନ୍ ତୁଘଲକ (୧୩୨୦-୧୩୨୫ ଖ୍ରୀଷ୍ଟାବ୍ଦ) ନାମ ଗ୍ରହଣ କରି ଏବଂ ନୂଆ ଏକ ସୁଲତାନ୍ ବଂଶ ପ୍ରତିଷ୍ଠା କଲେ ।

## ତୁଘଲକ ବଂଶ

ଆଲ୍ଲା ଉଦ୍ଦିନ୍‌ଙ୍କ ବିଭିନ୍ନ ସଂସ୍କାର ସାଧନ ଫଳରେ ବିଭିନ୍ନ ଦିଗରୁ ଯେଉଁସବୁ ତ୍ରୁଟି ବିଚ୍ୟୁତି ଦେଖା ଦେଇଥିଲା, ତା'ର ଅବସାନ କଲେ ନୂଆ ସୁଲତାନ୍ କେତେକ ନୂଆ ବ୍ୟବସ୍ଥା ପ୍ରବର୍ତନ କରିଥିଲେ । ଭୂମିରାଜସ୍ୱର ପରିମାଣ ହ୍ରାସ କରି ଉତ୍ପନ୍ନ ଫସଲର ଏକଦଶମାଂଶ କରି ଦିଆଗଲା ଏବଂ ରାଷ୍ଟ୍ର ଖର୍ଚ୍ଚରେ ଜମିରେ ଜଳସେଚନ ଉପଯୋଗୀ କେନାଲ ଖୋଳାଇବା କାମ ଆରମ୍ଭ କରାଗଲା । ଗିୟାସ୍ ଉଦ୍ଦିନ୍ ନିଜ ପାଇଁ ଦିଲ୍ଲୀରେ ଗୋଲାପୀ ରଙ୍ଗର ମୁଗୁନି ପଥରରେ ସଂପୂର୍ଣ୍ଣ ଏକ ସହର ନିର୍ମାଣ କରି ଦେଇ ତାକୁ ତୁଘଲକାବାଦ ବୋଲି ନାମିତ କଲେ । ସହରର ଚାରି ପାଖରେ ପ୍ରବଳ ଶକ୍ତିଶାଳୀ ବୁରୁଜ ଯୁକ୍ତ ଏକ ପ୍ରାଚୀର ନିର୍ମାଣ କରି ସହରଟିକୁ ଘେରାଇ ଦିଆଗଲା (ସହରଟି ଏବେ ମାତ୍ର କେତୋଟି ସମାଧି ସୌଧ ଛଡ଼ା ପୂରାପୂରି ଧ୍ୱଂସସ୍ତୂପରେ ପରିଣତ ହୋଇଛି) । ସହରକୁ ଲାଗି ସେ ନିଜ ପାଇଁ ନିର୍ମାଣ କରିଥିଲେ ଲାଲ ଏବଂ ସଫେଦ ପଥରରେ ଏକ ଚମତ୍କାର ସମାଧି ସୌଧ । ପ୍ରାଚୀର ପରିବେଷ୍ଟିତ ଏହି ସୌଧଗୁଡ଼ିକ ଦେଖିବାକୁ ଦୁର୍ଗ ଭଳି ଥିଲା (ସେସବୁ ଏପର୍ଯ୍ୟନ୍ତ ତିଷ୍ଠି ରହିଛି) । କୃତ୍ରିମ ଏକ ହ୍ରଦ ମଧ୍ୟରେ ଏହି ସହରଟି ବିରାଜ କରୁଥିଲା, କିନ୍ତୁ ହ୍ରଦଟି ବର୍ତମାନ ସଂପୂର୍ଣ୍ଣ ରୂପେ ଶୁଖିଯାଇଛି ।

ପୂର୍ବବର୍ତୀ ସୁଲତାନ୍‌ମାନଙ୍କ ଭଳି ଗିୟାସ୍ ଉଦ୍ଦିନ୍ ଏକ ସକ୍ରିୟ ବୈଦେଶିକ ନୀତି ଅନୁସରଣ କରିଥିଲେ । ଦିଲ୍ଲୀର ରାଜକୋଷ ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ପୁଣି ଥରେ ସାମରିକ ଅଭିଯାନର ଆୟୋଜନ କରାଗଲା ଏବଂ ତାଙ୍କ ପୁତ୍ର ଜୌନା ଖାଁଙ୍କ ସେନାପତିତ୍ୱରେ ସୁଲତାନ୍ ଦାକ୍ଷିଣାତ୍ୟକୁ ଏକ ସେନାବାହିନୀ ପ୍ରେରଣ କଲେ । ଜୌନା ଖାଁ କାକତୀୟମାନଙ୍କ ରାଜଧାନୀ ଓୟାରଙ୍ଗଲ ଦଖଲ କରି ତା'ର ନାମକରଣ କରି ଦେଲେ ସୁଲତାନ୍‌ପୁର । ଗିୟାସ୍ ଉଦ୍ଦିନ୍ ନିଜେ ପୂର୍ବ ବଙ୍ଗକୁ ବଶ୍ୟତା ସ୍ୱୀକାର କରାଇଥିଲେ ଏବଂ ପଶ୍ଚିମ ବଂଗର ଶାସକଙ୍କୁ ବାଧ୍ୟ କରିଥିଲେ ଦିଲ୍ଲୀ ସୁଲତାନ୍‌ଙ୍କ ସାମନ୍ତ କରଦ ଭୂସ୍ୱାମୀତ୍ୱକୁ ମାନି ନେବାକୁ (୧୩୨୪ ଖ୍ରୀଷ୍ଟାବ୍ଦ) । ବଙ୍ଗ ଦେଶରୁ ଫେରିଯିବା ପରେ ଗିୟାସ୍ ଉଦ୍ଦିନ୍‌ଙ୍କ ପାଇଁ ପୁତ୍ର ଜୌନା ଖାଁ ଦିଲ୍ଲୀରେ ଏକ ମହା ଆଡ଼ମ୍ବରପୂର୍ଣ୍ଣ ଅଭ୍ୟର୍ଥନାର ଆୟୋଜନ କରିଥିଲେ । କିନ୍ତୁ ହସ୍ତୀବାହିନୀର ଶୋଭାଯାତ୍ରାଟି ଗଲା ବେଳେ ଉତ୍ସବ କ୍ଷେତ୍ରରେ ଏକ କାଠ ନିର୍ମିତ ଚାନ୍ଦୁଆ ଓ ମଞ୍ଚ ଭାଙ୍ଗି ପଡ଼ିଥିଲା ଏବଂ ତା'ତଳେ ଚାପା ପଡ଼ି ଗିୟାସ୍ ଉଦ୍ଦିନ୍ ମୃତ୍ୟୁବରଣ କରିଥିଲେ । ଆରବୀ ପର୍ଯ୍ୟଟକ ଇବନ୍ ବତୁତାଙ୍କ ଭାଷ୍ୟ ଅନୁଯାୟୀ "ଏହି ଆକସ୍ମିକ ଦୁର୍ଘଟଣାଟି" ନିଜେ ଜୌନା ଖାଁ ପରିକଳ୍ପନା କରିଥିଲେ ସିଂହାସନ ଲାଭ କରିବା ଉଦ୍ଦେଶ୍ୟରେ । ବସ୍ତୁତଃ, ଏହା ପରେ ଶୀଘ୍ର

ସେ ସିଂହାସନ ଆରୋହଣ କରିଥିଲେ ମହମ୍ମଦ ବିନ୍ ତୁଘଲକ (୧୩୨୫-୧୩୫୧) ନାମ ଗ୍ରହଣ କରି ।

ମହମ୍ମଦ ବିନ୍ ତୁଘଲକ ଥିଲେ ଜଣେ ଯୋଗ୍ୟ ସେନାଧ୍ୟକ୍ଷ ଓ ସୁଶିକ୍ଷିତ ଲୋକ । ଏଥି ସଙ୍ଗେ ସଙ୍ଗେ ସେ ଥିଲେ ନିଷ୍ଠୁର ଅତ୍ୟାଚାରୀ । ତାଙ୍କର ଚିନ୍ତାହୀନ କାର୍ଯ୍ୟକଳାପ ଫଳରେ ଅଳ୍ପ କାଳ ମଧ୍ୟରେ ରାଜ୍ୟରେ ମହାବିଶୃଙ୍ଖଳା ସୃଷ୍ଟି ହୋଇଥିଲା । ଦିଲ୍ଲୀ ତାଙ୍କ ସାମ୍ରାଜ୍ୟର ଦକ୍ଷିଣ ପ୍ରାନ୍ତଠାରୁ ବହୁ ଦୂରରେ ଅବସ୍ଥିତ ବୋଲି ଚିନ୍ତା କରି ସେ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ ଦେବଗିରିକୁ ଏବଂ ତା'ର ନାମକରଣ କରିଥିଲେ ଦୌଲତାବାଦ ବୋଲି । ଏହା ଫଳରେ କେବଳ ଯେ ତାଙ୍କର ଦରବାର ସ୍ଥାନାନ୍ତରିତ ହୋଇଥିଲା, ତା ନୁହେଁ, ସୁଲତାନ୍ ପରିବାରର ସମସ୍ତ ଲୋକେ ବାଧ୍ୟ ହୋଇଥିଲେ ଦେବଗିରିକୁ ଚାଲି ଆସିବାକୁ । ଅଳ୍ପ କେତେକ ବର୍ଷ ପରେ ମହମ୍ମଦ ବିନ୍ ତୁଘଲକ ପୁଣି ସବୁକିଛି ଧରି ଫେରି ଆସିଲେ ଦିଲ୍ଲୀକୁ । କିନ୍ତୁ ରାଜଧାନୀର କ୍ଷତିଗ୍ରସ୍ତ ପ୍ରାକ୍ତନ ଅର୍ଥନୈତିକ ଜୀବନର ପୁନରୁଦ୍ଧାର ବେଶ୍ କଠିନ ହୋଇ ଉଠିଥିଲା ।

ଏଭଳି ଏକ ବିଶାଳ ସାମ୍ରାଜ୍ୟର ପ୍ରତିରକ୍ଷା ନିମିତ୍ତ ବିପୁଳ ଏକ ସେନାବାହିନୀକୁ ପୋଷଣ କରିବା ଏବଂ ସାମ୍ରାଜ୍ୟର ରକ୍ଷଣାବେକ୍ଷଣ ପାଇଁ ବହୁ ଶାଖାପ୍ରଶାଖା ବିଶିଷ୍ଟ କେନ୍ଦ୍ରୀୟ ଓ ପ୍ରାଦେଶିକ ଏକ ପ୍ରଶାସନ ବ୍ୟବସ୍ଥା ଚାଲୁ ରଖିବା ଅପରିହାର୍ଯ୍ୟ ହୋଇ ପଡ଼ିଥିବାରୁ ରାଜକୋଷ ଶୂନ୍ୟ ହୋଇ ପଡ଼ିଥିଲା । ଫଳରେ ନୂଆ କରି ସଂପଦ ସଂଗ୍ରହ କରିବା ଆବଶ୍ୟକ ହୋଇ ପଡ଼ିଲା । ମହମ୍ମଦ ବିନ୍ ତୁଘଲକ କୃଷକମାନଙ୍କ ନିକଟରୁ ଅତିରିକ୍ତ ଏକ କର ଆଦାୟର (ଆବୱାବ) ବ୍ୟବସ୍ଥା ପ୍ରବର୍ତ୍ତନ କଲେ । ଏହି ଅତିରିକ୍ତ ଆଦାୟର ପରିମାଣ ଏତେ ବେଶି ଥିଲା ଯେ, ସର୍ବସ୍ୱାନ୍ତ ହେବା, ନିଃସ୍ୱ ହୋଇ ଯାଇଥିବା କୃଷକମାନେ ଜମିଜମା ଛାଡ଼ି ଜଙ୍ଗଲକୁ ପଳାଇବାକୁ ଲାଗିଲେ । ଫଳରେ ବିଭିନ୍ନ ଅଞ୍ଚଳ ଆଉରି ଦରିଦ୍ର ହୋଇ ପଡ଼ିଲା ଏବଂ ରାଜକୋଷକୁ ଅର୍ଥ ଆଗମନ ପ୍ରାୟ ବନ୍ଦ ହୋଇଯିବାର ଉପକ୍ରମ ଦେଖା ଦେଲା । ଏହି ସମୟରେ ଦେଖା ଦେଲା ଆଉ ଏକ ବିପଦ, ବହୁ ଅଞ୍ଚଳରେ ଗୁରୁତର ଅନାବୃଷ୍ଟି । ଇତି ମଧ୍ୟରେ ସୁଲତାନ୍ ତାମ୍ର ମୁଦ୍ରା ପ୍ରଚଳନ ଆରମ୍ଭ କରି ଦେଲେ, ଏହା ଇତିପୂର୍ବରୁ ପ୍ରଚଳିତ ସ୍ୱର୍ଣ୍ଣ ଏବଂ ରୌପ୍ୟ ମୁଦ୍ରାର ତୁଲ୍ୟ ମୂଲ୍ୟ ବୋଲି ସେ ପ୍ରଚାର କଲେ । ଏହା ଫଳରେ ଦେଶରେ ମୁଦ୍ରା ବ୍ୟବସ୍ଥା ଓ ଦେଶର ଅର୍ଥନୀତି ମଧ୍ୟ ବିପର୍ଯ୍ୟସ୍ତ ହୋଇ ପଡ଼ିଲା । ନୂତନ ମୁଦ୍ରାର ବିନିମୟରେ ବ୍ୟବସାୟୀମାନେ ପଣ୍ୟ ସାମଗ୍ରୀ ବିକ୍ରି କରିବାକୁ ଅସ୍ୱୀକାର କଲେ । ଶେଷକୁ ସୁଲତାନ୍ ବାଧ୍ୟ ହେଲେ ରୌପ୍ୟ ଓ ସ୍ୱର୍ଣ୍ଣର ବିନିମୟରେ ଏହି ନିଦର୍ଶନ ମୁଦ୍ରାକୁ କିଣି ନେବା ପାଇଁ । ଏହା ଫଳରେ ରାଜକୋଷ ଏକେବାରେ ଶୂନ୍ୟ ହୋଇଗଲା । ଏହା ଉପରେ ପୁଣି ହିମାଳୟର ପାହାଡ଼ ଅଞ୍ଚଳ କୋୟାରଜାଲରେ ମହମ୍ମଦ ବିନ୍ ତୁଘଲକଙ୍କ ଯୁଦ୍ଧାଭିଯାନର ପରିଣତି ଚରମ ବ୍ୟର୍ଥତା ଓ ବିପର୍ଯ୍ୟୟରେ ପର୍ଯ୍ୟବସିତ ହେଲା । ଏକଥା ଅବଶ୍ୟ ଠିକ୍ ଯେ, ପ୍ରଥମେ ସେ ସ୍ଥାନୀୟ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କୁ କର ଦେବାକୁ ବାଧ୍ୟ କରିଥିଲେ । କିନ୍ତୁ ଦେଶକୁ ଫେରିବା ପଥରେ ତାଙ୍କର ଏକ ଲକ୍ଷ୍ୟ ସୈନ୍ୟ ବିଶିଷ୍ଟ ବାହିନୀଟି କ୍ଷୁଧା, ବୃଷ୍ଟି ଏବଂ ଉପଯୁକ୍ତ ପଥର ଅଭାବରୁ କେବଳ ଯେ ସାଂଘାତିକ ଅବସ୍ଥାରେ ପଡ଼ିଥିଲା, ତା ନୁହେଁ, ତଦୁପରି ପାର୍ବତ୍ୟ ଅଧିବାସୀମାନଙ୍କର ଅନବରତ ଆକସ୍ମିକ ଗୁପ୍ତ ଆକ୍ରମଣ ଫଳରେ ପ୍ରାୟ ସଂପୂର୍ଣ୍ଣ ଧ୍ୱଂସ ପାଇ ଯାଇଥିଲା ।

ମହମ୍ମଦ ବିନ୍ ତୁଘଲକଙ୍କ ରାଜତ୍ୱର ଶେଷ ପନ୍ଦର ବର୍ଷ କଟିଥିଲା ତାଙ୍କ ବିଶାଳ ସାମ୍ରାଜ୍ୟର

ଅସ୍ପନକ ଭାବେ ଘନେଇ ଉଠୁଥିବା ବିଦ୍ରୋହ ଓ ଅଭ୍ୟୁତ୍‌ଥାନ ଦମନର ନିଷ୍ଫଳ ଚେଷ୍ଟା ଏବଂ ପ୍ରଚଳିତ ଧର୍ମବିରୋଧୀ ଆନ୍ଦୋଳନର ରୂପ ଧାରଣ କରୁଥିବା ଗଣ ଆନ୍ଦୋଳନକୁ ମୁକାବିଲା କରିବାର ପ୍ରୟାସରେ । ତାଙ୍କର ଉତ୍ପୀଡ଼ନମୂଳକ ଶାସନ ବ୍ୟବସ୍ଥାଦିର ଅନ୍ତର୍ନିହିତ ନିଷ୍ଠୁରତା କାରଣରୁ ମହମ୍ମଦ ବିନ୍ ତୁଘଲକଙ୍କ ନାମ ଲୋକେ ଦେଇଥିଲେ "ଖୁଣୀ" ବା ରକ୍ତପିପାସୁ । ୧୩୫୧ ଖ୍ରୀଷ୍ଟାବ୍ଦରେ ବିଦ୍ରୋହୀ ଅମିର୍‌ମାନଙ୍କ ପଛରେ ଅନୁଧାବନ କରି ସେ ଧାଟ୍ଟ ସହରରେ (ସିନ୍ଧୁ ପ୍ରଦେଶରେ) ପହଞ୍ଚି ଯାଇଥିଲେ ଏବଂ ସେଠାରେ ଜ୍ୱରରେ ପ୍ରପୀଡ଼ିତ ହୋଇ ମୃତ୍ୟୁବରଣ କଲେ । ସଙ୍ଗେ ସଙ୍ଗେ ଏହି ସିନ୍ଧୁ ଦେଶରେ ଅଭିଜାତମାନେ ମୃତ ସୁଲତାନ୍‌ଙ୍କର ଏକ ଜ୍ଞାତି ଭାଇଙ୍କୁ ସିଂହାସନରେ ବସେଇ ଦେଇଥିଲେ । ମହମ୍ମଦ ବିନ୍ ତୁଘଲକଙ୍କର ଏହି ଭାଇ ହେଲେ ଫିରୁଜ୍ ତୁଘଲକ (୧୩୫୧-୧୩୮୮ ଖ୍ରୀଷ୍ଟାବ୍ଦ) ।

ମହମ୍ମଦଙ୍କ ରାଜ୍ୟ ଶାସନର ବିଭିନ୍ନ ବିପର୍ଯ୍ୟୟକର ପରିଣତିଗୁଡ଼ିକୁ ଦୂର କରିବା ପାଇଁ ଫିରୁଜ୍ ବାଧ୍ୟ ହୋଇଥିଲେ ବହୁବିଧ ଦୃଢ଼ ବ୍ୟବସ୍ଥା ଅବଲମ୍ବନ କରିବାକୁ । ଯଥା, ସେ ନୂତନ କର ଆଦାୟ (ଆବଓୟାବ) ସଂଗ୍ରହ ବନ୍ଦ କରି ଦେଇଥିଲେ, ଭୂମିରାଜସ୍ୱ ହ୍ରାସ କଲେ, ଚାଷର ଉନ୍ନତି ଘଟାଇବା ଉଦ୍ଦେଶ୍ୟରେ ଦୋୟାବ୍ ଅଞ୍ଚଳରେ ପାଞ୍ଚଟି ନୂଆ କେନାଲ ଖୋଳାଇଥିଲେ, ବଜାରରୁ କର ତୋଳିବାର ହାର କମେଇ ଦେଲେ, ସେନାଧ୍ୟକ୍ଷମାନଙ୍କ ମଧ୍ୟରେ "ସହର" ଏବଂ "ଗ୍ରାମ" ଦାନ କଲେ ଏବଂ ଗୋଟିଏ ନିର୍ଦ୍ଦେଶ ଜାରି କରି ଶାରୀରିକ ଉତ୍ପୀଡ଼ନ ବ୍ୟବସ୍ଥା ବନ୍ଦ କରିଦେଲେ । ଏହା ଛଡ଼ା ମୁସଲିମ୍ ସେନାଧ୍ୟକ୍ଷମାନଙ୍କୁ ଦିଆଯାଇଥିଲା ବେଶ୍ ସୁବିଧାସୁଯୋଗ । ଏହା ଦ୍ୱାରା, ଅବଶ୍ୟ, ସେମାନଙ୍କ ମଧ୍ୟରେ ବିଚ୍ଛିନ୍ନତାବାଦୀ ମନୋଭାବର ଇନ୍ଧନ ଯୋଗାଇ ଦିଆଗଲା ।

ଏସବୁ ସାଙ୍ଗକୁ ଫିରୁଜ୍ ଅନ୍ୟ ସମସ୍ତ ଧର୍ମ ବିରୁଦ୍ଧରେ ନିଷ୍ଠୁର ଦମନ ପୀଡ଼ନ ଆରମ୍ଭ କରି ଦେଲେ—ଉତ୍ପୀଡ଼ନ କଲେ ହିନ୍ଦୁ ଆଉ ସିୟା ମୁସଲମାନମାନଙ୍କୁ । ହିନ୍ଦୁ ରାଜାମାନଙ୍କ ବିରୁଦ୍ଧରେ ଯୁଦ୍ଧାଭିଯାନ ପରିଚାଳନା କଲା ବେଳେ (ବିଶେଷ କରି କାଟେହର ବିରୁଦ୍ଧରେ) ସେ ସ୍ଥାନୀୟ ଜନସାଧାରଣଙ୍କୁ କ୍ରୀତଦାସରେ ପରିଣତ କରୁଥିଲେ ଏବଂ ରାଷ୍ଟ୍ରର ଖାସ୍ ତାଲୁକରେ ସେମାନଙ୍କ ଦ୍ୱାରା କାମ କରାଉଥିଲେ । ସୁଲତାନ୍‌ଙ୍କର ଏହି "ଆଦର୍ଶ" ଅନୁସରଣ କରି ତାଙ୍କ କର୍ମଚାରୀମାନେ କ୍ରୀତଦାସ ସଂଗ୍ରହରେ ମାତି ଉଠିଲେ । ଇତିହାସବିଦ୍ ବାରାନିଙ୍କ ମତରେ, ଏହି ସମୟରେ ଦେଶରେ କ୍ରୀତଦାସଙ୍କର ମୋଟ ସଂଖ୍ୟା ୧ ଲକ୍ଷ ୮୦ ହଜାରରେ ପହଞ୍ଚିଥିଲା ।

ସାମ୍ରାଜ୍ୟକୁ ଅତୁଟ ରଖିବା ପାଇଁ ଫିରୁଜ୍‌ଙ୍କ ପ୍ରଚେଷ୍ଟା ବ୍ୟର୍ଥ ହୋଇଥିଲା । ମହମ୍ମଦ ବିନ୍ ତୁଘଲକଙ୍କ ରାଜତ୍ୱକାଳରେ ବଙ୍ଗ ଦେଶ ଏବଂ ଦାକ୍ଷିଣାତ୍ୟ ସାମ୍ରାଜ୍ୟରୁ ବିଚ୍ଛିନ୍ନ ହୋଇ ଯାଇଥିଲା ଏବଂ ସିନ୍ଧୁ ଦେଶ ଓ ଓଡ଼ିଶାରେ ଫିରୁଜ୍‌ଙ୍କ ସାମରିକ ଅଭିଯାନସବୁ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥିଲା । ବୃଦ୍ଧ ସୁଲତାନ୍ ଫିରୁଜ୍‌ଙ୍କର ମୃତ୍ୟୁ ଘଟିଲା ବେଳକୁ ସାମନ୍ତ ଭୂସ୍ୱାମୀମାନଙ୍କର ପ୍ରଭାବଶାଳୀ ଗୋଷ୍ଠୀଗୁଡ଼ିକ ମଧ୍ୟରେ ଆରମ୍ଭ ହୋଇ ଯାଇଥିଲା ପ୍ରତିଦ୍ୱନ୍ଦ୍ୱିତା । ପ୍ରତିଟି ଗୋଷ୍ଠୀ ସେମାନଙ୍କର ପ୍ରାର୍ଥୀଙ୍କୁ ସମର୍ଥନ କରିବାକୁ ଲାଗିଲେ ସିଂହାସନର ଦାବିଦାର ହିସାବରେ ।

୧୩୯୮ ଖ୍ରୀଷ୍ଟାବ୍ଦରେ ସମର୍ଖନ୍ଦର ଶାସକ ତୈମୁର ଲଙ୍ଗ୍‌ଙ୍କ ସେନାବାହିନୀ ତୁଘଲକ ବଂଶର ଟଳାୟମାନ ସାମ୍ରାଜ୍ୟ ଉପରେ ଚରମ ଆଘାତ ହାଣିଥିଲେ । ତୈମୁର ଚରମ ନିଷ୍ଠୁରତାର ନମୁନା ପ୍ରଦର୍ଶନ କରି ଭାରତବାସୀଙ୍କୁ ସନ୍ତ୍ରସ୍ତ କରି ଦେବାର ପ୍ରୟାସ କରିଥିଲେ । ଅଗଣିତ ଜନସାଧାରଣଙ୍କୁ

ହତ୍ୟା କରି ସେମାନଙ୍କ ଖପୁରିରେ ପ୍ରାସାଦ ନିର୍ମାଣ କରିବାକୁ ସେ ଚାହିଁଥିଲେ । ଉତ୍ତର ଭାରତର ବିଭିନ୍ନ ଅଞ୍ଚଳରୁ ସେ ଯେଉଁ ଲକ୍ଷେ ଯୁଦ୍ଧ ବନ୍ଦୀଙ୍କୁ ଅଟକ କରିଥିଲେ, ସେମାନଙ୍କୁ ଦିଲ୍ଲୀ ବାହାରେ ହତ୍ୟା କରିବାକୁ ସେ ଆଦେଶ ଦେଇଥିଲେ, ଯଦ୍ୱାରା ଭବିଷ୍ୟତରେ ଆଉ କେହି ତାଙ୍କର ବିରୁଦ୍ଧାଚରଣ କରିବାକୁ ଆଉ ସାହସ କରିବ ନାହିଁ । ଦିଲ୍ଲୀ ସୁଲତାନ୍ ସେତେବେଳେ ପଳେଇ ଗଲେ ଗୁଜରାଟକୁ । ଏଣେ ତୈମୁରଙ୍କର ସେନାଦଳ ଦିଲ୍ଲୀରେ ପ୍ରବେଶ କରି କିଛି ଦିନ ଲୁଣ୍ଠନ ଏବଂ ହତ୍ୟାଲୀଳା ଚଳାଇଥିଲେ । ଲୁଣ୍ଠିତ ଐଶ୍ୱର୍ଯ୍ୟକୁ ଓଟ ଏବଂ ଘୋଡ଼ା ପିଠିରେ ବୋଝେଇ କରି ଏବଂ କେଇ ହଜାର ବନ୍ଦୀଙ୍କୁ ସାଙ୍ଗରେ ଧରି ତୈମୁର ତା'ପରେ ଫେରି ଯାଇଥିଲେ ସମର୍ଖନ୍ଦକୁ । ଭାରତରେ ଏହି ଆକ୍ରମଣ ପରେ ପରେ ମାଡ଼ି ଆସିଥିଲା ଦୁର୍ଭିକ୍ଷ ଆଉ ମହାମାରୀ; ସମସ୍ତ ରାଜ୍ୟର ଶାସକମାନେ ସ୍ୱାଧୀନ ହୋଇ ଉଠିଥିଲେ ଏବଂ ତୁଘଲକ ସାମ୍ରାଜ୍ୟ ଭୁଷୁଡ଼ି ପଡ଼ିଲା ।

## ସୈୟଦ ବଂଶ

ତୁଘଲକ ବଂଶର ଶେଷ ସୁଲତାନ୍ ମୃତ୍ୟୁବରଣ କରିଥିଲେ ୧୪୧୩ ଖ୍ରୀଷ୍ଟାବ୍ଦରେ । ସିଂହାସନ ପାଇଁ ତାଙ୍କର କୌଣସି ଉତ୍ତରାଧିକାରୀ ନଥିଲେ । ୧୪୧୪ ଖ୍ରୀଷ୍ଟାବ୍ଦରେ ମୁଲତାନ୍‌ର ପ୍ରାକ୍ତନ ଶାସକ ପ୍ରତିନିଧି ଖିଜ୍‌ର ଖାଁ ସୈୟଦ ଦିଲ୍ଲୀ ଦଖଲ କରି ରାଷ୍ଟ୍ର କ୍ଷମତା ନିଜର କରାୟତ କରିଥିଲେ । ଇତିପୂର୍ବରୁ ସେ ତୈମୁରଙ୍କ ସହିତ ସହଯୋଗିତା କରିଥିଲେ ଏବଂ ତୈମୁର ତାଙ୍କୁ ମୁଲତାନ୍ ଏବଂ ପଞ୍ଜାବ ଅଞ୍ଚଳରେ ଶାସକ ପ୍ରତିନିଧି ହିସାବରେ ମନୋନିତ କରିଥିଲେ । ୧୪୧୪ ଖ୍ରୀଷ୍ଟାବ୍ଦଟି ସୈୟଦ ମୁଲତାନ୍ ବଂଶର ଶାସନର ପ୍ରତିଷ୍ଠା କାଳ ରୂପେ ଚିହ୍ନିତ ।

୧୪୨୧ ଖ୍ରୀଷ୍ଟାବ୍ଦରେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଖିଜ୍‌ର ଖାଁ ନାମକୁ ମାତ୍ର ତୈମୁରଙ୍କ ରାଜ୍ୟର ଶାସକ ପ୍ରତିନିଧି ରୂପେ ଶାସନ ଚଳେଇ ଯାଇଥିଲେ । ତାଙ୍କ ରାଜତ୍ୱକାଳରେ ଦେଶ ନିଃସ୍ୱ ଅବସ୍ଥାରେ ଏବଂ କେବଳ ସୈନ୍ୟଦଳ ସାହାଯ୍ୟରେ ଜବରଦସ୍ତ ରାଜସ୍ୱ ସଂଗ୍ରହ କରାଯାଉଥିଲା । ରାଜକୋଷ ପୂର୍ଣ୍ଣ ରଖିବାକୁ ହେଉଥିଲା ପ୍ରତିବେଶୀ ରାଜ୍ୟଗୁଡ଼ିକ ବିରୁଦ୍ଧରେ ନିୟମିତ ବାର୍ଷିକ ଯୁଦ୍ଧ ଅଭିଯାନ ଚଳେଇ ଲୁଣ୍ଠିତ ଅର୍ଥ ସଂପଦ ସାହାଯ୍ୟରେ । ଖିଜ୍‌ର ଖାଁଙ୍କ ରାଜ୍ୟ ବିସ୍ତୃତ ଥିଲା କେବଳ ମାତ୍ର ଦିଲ୍ଲୀ, ପଞ୍ଜାବ ଓ ଦୋୟାବ୍‌ରେ । ତାଙ୍କ ପୁତ୍ର ଓ ରାଜ୍ୟର ଉତ୍ତରାଧିକାରୀ ମୁବାରକ ଶାହ୍ (୧୪୨୧-୧୪୩୪ ଖ୍ରୀଷ୍ଟାବ୍ଦ) ତାଙ୍କ ରାଜତ୍ୱର ଶେଷ ବର୍ଷରେ ତୈମୁର ବଂଶୀୟ ରାଜାଙ୍କ ନିର୍ଦ୍ଦେଶ ମାନି ଚଳିବାକୁ ଅସ୍ୱୀକାର କରିଥିଲେ ଏବଂ ନିଜ ନାମରେ ମୁଦ୍ରା ପ୍ରଚଳନ କରିବାକୁ ଆରମ୍ଭ କରି ଦେଇଥିଲେ । ଏହିସବୁ କାର୍ଯ୍ୟକୁ ଅବାଧ୍ୟତା ବୋଲି ଗଣ୍ୟ କରାଯାଇଥିଲା । ମୁବାରକ ଶାହ୍ ଦୋୟାବ୍ ଏବଂ ଦିଲ୍ଲୀର ନିକଟବର୍ତ୍ତୀ ଆଉ କେତେକ ଏଲାକାରେ ସାମନ୍ତ ଭୂସ୍ୱାମୀମାନଙ୍କ ବିରୁଦ୍ଧରେ କେତେ ଥର ସାମରିକ ଅଭିଯାନ ମଧ୍ୟ ପରିଚାଳନା କରିଥିଲେ । ତା'ଛଡ଼ା ସେ ଯୁଦ୍ଧ ପରିଚାଳନା କରିଥିଲେ ମାଳବର ଶାସକମାନଙ୍କ ବିରୁଦ୍ଧରେ, ପଞ୍ଜାବରେ ନିଜର ଆଧିପତ୍ୟ ବଜାଏ ରଖିବା ପାଇଁ ଖୋଖାରମାନଙ୍କ ବିରୁଦ୍ଧରେ ଏବଂ କାବୁଲର ତୈମୁର ବଂଶୀୟ ରାଜାଙ୍କ ବିରୁଦ୍ଧରେ । ଶେଷରେ ଦରବାରର ସାମନ୍ତମାନଙ୍କର ଗୋଟିଏ ଅଂଶର ଷଡ଼ଯନ୍ତ୍ର ଫଳରେ ମୁବାରକ ଶାହ୍ ନିହତ ହୋଇଥିଲେ ।

ଏହା ପରେ ସୁଲତାନ୍ ହିସାବରେ ସିଂହାସନରେ ଉପବିଷ୍ଟ ହୋଇଥିଲେ ମୁବାରକଙ୍କ ଭ୍ରାତୃଷ୍ପୁତ୍ର ମହମ୍ମଦ ଶାହ୍ (୧୪୩୪-୧୪୪୫ ଖ୍ରୀଷ୍ଟାବ୍ଦ) । ଲାହୋର ଓ ସିର୍‌ହିନ୍ଦ୍‌ର ଶାସକ ପ୍ରତିନିଧି ଆଫ୍‌ଗାନ ଲୋଦୀ ଉପଜାତିର ବାହଲୁଲ୍ ଖାଁ ମାଳବର ରାଜାଙ୍କ ବିରୁଦ୍ଧରେ ଯୁଦ୍ଧରେ ମହମ୍ମଦ ଶାହ୍‌ଙ୍କୁ ସହାୟତା କରିଥିଲେ । ଫଳରେ ବାହଲୁଲ୍ ଖାଁ ମହମ୍ମଦଙ୍କ ଦରବାରରେ ବିଶେଷ ପ୍ରଭାବଶାଳୀ ହୋଇ ଉଠିଥିଲେ । ଏହା ଦ୍ୱାରା ସେ କ୍ଷମତା ଦଖଲ ପାଇଁ ଚେଷ୍ଟା କରିଥିଲେ, କିନ୍ତୁ ସଫଳ ହୋଇ ନଥିଲେ । ମହମ୍ମଦ ଶାହ୍‌ଙ୍କ ମୃତ୍ୟୁ ପରେ ସୈୟଦ ଶେଷ ସୁଲତାନ୍ ଆଲମ୍ ଶାହ୍ (୧୪୪୫-୧୪୫୧ ଖ୍ରୀଷ୍ଟାବ୍ଦ) ସିଂହାସନରେ ବସିଲେ । ରାଜ୍ୟରେ ସାମନ୍ତବାଦୀ ବିଭିନ୍ନ ଅଭିଜାତ ଗୋଷ୍ଠୀଙ୍କ ମଧ୍ୟରେ ଅନବରତ ଦ୍ୱନ୍ଦ୍ୱ ଓ ସଂଘର୍ଷ ଲାଗିଥିବାରୁ ଏବଂ ସେମାନଙ୍କର ବିଚ୍ଛିନ୍ନତାବାଦୀ ଆଶା ଆକାଂକ୍ଷାର କାରଣରୁ ଏହି ସମୟରେ ଦିଲ୍ଲୀର ସୁଲତାନ୍‌ମାନେ ସଖୀକଣ୍ଢେଇ ରାଜା ଅପେକ୍ଷା ବେଶି କିଛି ନଥିଲେ ଏବଂ ନାମକୁ ମାତ୍ର ଶାସନ ଚଳାଉଥିଲେ । ଏହି ସମୟରେ ଲୋକେ ଢଗ ଆକାରରେ କହୁଥିଲେ, "ଶାସନ କରୁଛନ୍ତି ଶାହ୍ ଆଲମ୍ (ଆକ୍ଷରିକ ଅର୍ଥରେ, ଜଗତର ଅଧିପତି) ଦିଲ୍ଲୀଠାରୁ ମାତ୍ର ପାଲମ୍" (ପାଲମ୍ ଥିଲା ଦିଲ୍ଲୀଠାରୁ ଅଳ୍ପ ଦୂରରେ ଅବସ୍ଥିତ ଏକ ଛୋଟ ଜନବସତି । ଏବେ ଏଠାରେ ଦିଲ୍ଲୀର ବିମାନ ବନ୍ଦରଟି ଅବସ୍ଥିତ) ।

## ଲୋଦୀ ବଂଶ

ବାହଲୁଲ୍ ଖାଁ ଏହା ପରେ ଦ୍ୱିତୀୟ ଥର କ୍ଷମତା ଦଖଲ ପାଇଁ ଚେଷ୍ଟା କରିଥିଲେ । ଏଥର ସେ ସଫଳ ହୋଇଥିଲେ ଆଲମ୍ ଶାହ୍‌ଙ୍କୁ କ୍ଷମତାଚ୍ୟୁତ କରି କ୍ଷମତା ଦଖଲ କରିବାରେ । ୧୪୫୧ ଖ୍ରୀଷ୍ଟାବ୍ଦରୁ ୧୪୮୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସ୍ଥାୟୀ ବାହଲୁଲ୍ ଖାଁଙ୍କ ରାଜତ୍ୱକାଳରେ ସେ ଲୋଦୀ ଉପଜାତିର ଲୋକଙ୍କୁ ରାଜ୍ୟର ସବୁଠାରୁ ସର୍ବାପେକ୍ଷା ସୁବିଧାଭୋଗୀ ଅଭିଜାତ ସଂପ୍ରଦାୟରେ ପରିଣତ କରିଥିଲେ ଏବଂ ଆଫ୍‌ଗାନ ଉପଜାତିମାନଙ୍କର ବିଭିନ୍ନ ସଶସ୍ତ୍ର ବାହିନୀକୁ ତାଙ୍କ ସୈନ୍ୟଦଳର ଅନ୍ତର୍ଭୁକ୍ତ କରିଥିଲେ । ତାଙ୍କର ଗ୍ରନ୍ଥିଶ ବର୍ଷ କାଳ ରାଜତ୍ୱ ସମୟ ସୁଲତାନ୍ ଶାସନର ସୀମାକୁ ପ୍ରସାରଣ କରିବା ଲକ୍ଷ୍ୟରେ ପରିଚାଳିତ ଅନବରତ, ଅସଂଖ୍ୟ ଯୁଦ୍ଧ ବିଗ୍ରହରେ ପୂର୍ଣ୍ଣ ଥିଲା । ତାଙ୍କର ଶତ୍ରୁମାନଙ୍କ ମଧ୍ୟରେ ସବୁଠାରୁ ଶକ୍ତିଶାଳୀ ଥିଲା ଜୌନପୁର ରାଜ୍ୟ । ଶେଷକୁ ୧୪୭୯ ଖ୍ରୀଷ୍ଟାବ୍ଦରେ ଏହି ରାଜ୍ୟଟିକୁ ବାହଲୁଲ୍ ବିଲୁପ୍ତ କରିବାକୁ ସମର୍ଥ ହୋଇଥିଲେ । ଆଉରି ଅନେକ ଛୋଟ ଛୋଟ ରାଜ୍ୟ ଓ ରାଜାମାନଙ୍କୁ ସେ ବାଧ୍ୟ କରିଥିଲେ ତାଙ୍କର ପଦାନତ ହେବାକୁ ।

ବାହଲୁଲ୍‌ଙ୍କ ପୁତ୍ର ସିକନ୍ଦର ଶାହ୍ (୧୪୮୯-୧୫୧୭ ଖ୍ରୀଷ୍ଟାବ୍ଦ) ତାଙ୍କ ଅଧୀନସ୍ଥ ସମସ୍ତ ରାଜ୍ୟ ଓ ଶାସକ ପ୍ରତିନିଧିମାନଙ୍କର କଠୋର ନିୟନ୍ତ୍ରଣରେ ରଖିବାକୁ ଚେଷ୍ଟା କରିଥିଲେ ଏବଂ ଏହି ଉଦ୍ଦେଶ୍ୟରେ ସେ ନିୟୋଜିତ କରିଥିଲେ ଜଟିଳ ଶାଖାପ୍ରଶାଖା ବିଶିଷ୍ଟ ଗୁପ୍ତଚରମାନଙ୍କର ଏକ ସଂଗଠନକୁ । ସିକନ୍ଦର ଥିଲେ ଏକ ମତାନ୍ଧ ସୁନ୍ନି ମତାବଲମ୍ବୀ, ଯଦିଓ ତାଙ୍କର ମା ଥିଲେ ହିନ୍ଦୁ ପରିବାରର ମହିଳା । ହିନ୍ଦୁ ଜନସାଧାରଣଙ୍କୁ ନିଷ୍ଠୁର ଅତ୍ୟାଚାରରେ ସେ ଜର୍ଜରିତ କରିଥିଲେ, ସେମାନଙ୍କ ମଠ ମନ୍ଦିର ଓ ଦେବମୂର୍ତ୍ତି ଧ୍ୱଂସ କରି ଦେଇଥିଲେ । ୧୫୦୪ ଖ୍ରୀଷ୍ଟାବ୍ଦରେ ଯମୁନା

ନଦୀର ତୀରଦେଶସ୍ଥ ଆଗ୍ରାରେ ଏକ ଛୋଟ ଦୁର୍ଗ ନିର୍ମାଣ କରି ସେ ବାସ କରୁଥିଲେ । ଦୋୟାବ୍‌ର ସମସ୍ତ ଭୂସ୍ୱାମୀମାନଙ୍କ ବିରୁଦ୍ଧରେ ଯୁଦ୍ଧ ପରିଚାଳନା ପକ୍ଷରେ ଏହା ଥିଲା ଅପେକ୍ଷାକୃତ ଏକ ସୁବିଧାଜନକ ସ୍ଥାନ ।

ସିକନ୍ଦରଙ୍କ ପୁତ୍ର ଇବ୍ରାହିମ୍ (୧୫୧୭-୧୫୨୬ ଖ୍ରୀଷ୍ଟାବ୍ଦ) ଅଧୀନସ୍ଥ ସାମନ୍ତ ଭୂସ୍ୱାମୀମାନଙ୍କ କ୍ଷମତାକୁ ନିୟନ୍ତ୍ରଣ କରି ସୁଲତାନ୍‌ଙ୍କ କ୍ଷମତା ବୃଦ୍ଧି କରିବା ଦିଗରେ ମନ ଦେଇଥିଲେ । ଆଫ୍‌ଗାନ ସେନାଧ୍ୟକ୍ଷଙ୍କ ପ୍ରତି ପକ୍ଷପାତିତ୍ୱ ପ୍ରଦର୍ଶନ ସେ ବନ୍ଦ କରି ଦେଇଥିଲେ ଏବଂ ଘୋଷଣା କରିଥିଲେ, ସୁଲତାନ୍‌ଙ୍କର କୌଣସି ଆତ୍ମୀୟ ସ୍ୱଜନ, ଅଥବା ଏକା ଉପଜାତି ଗୋଷ୍ଠୀର ଲୋକ ରହି ନପାରନ୍ତି, କେବଳ ରହିଥାନ୍ତି ପ୍ରଜାବର୍ଗ ଆଉ ଅଧୀନସ୍ଥ ସାମନ୍ତ ଶାସକ । ଏହି ସୁଲତାନ୍‌ଙ୍କର ସବୁଠାରୁ ବଡ଼ ଯୁଦ୍ଧାଭିଯାନ ହେଲା ମାଳବ ଏବଂ ଗୋଆଲିଅର ରାଜ୍ୟ ଦୁଇଟି ବିରୁଦ୍ଧରେ ସଫଳ ଆକ୍ରମଣ । ତେବେ ସାଧାରଣ ଭାବେ ତାଙ୍କର ସ୍ୱୈରଶାସନ ଏବଂ ଆଫ୍‌ଗାନ ସେନାଧ୍ୟକ୍ଷମାନଙ୍କର କ୍ଷମତା ଚୂର୍ଣ୍ଣ କରିବା ବିଷୟରେ ତାଙ୍କର ପ୍ରୟାସ ଦ୍ୱାରା ଅଶାନ୍ତି ଏବଂ ବିଦ୍ରୋହ ଦେଖା ଦେଇଥିଲା । ସାମନ୍ତ ଭୂସ୍ୱାମୀମାନଙ୍କ ମଧ୍ୟ ପାରସ୍ପରିକ ଦ୍ୱନ୍ଦ୍ୱ ଏବଂ ଅସନ୍ତୋଷ ଲାଗି ରହିଥିଲା । ପରିଶେଷରେ, ଦଳେ ସାମନ୍ତ ତୈମୁରବଂଶୀୟ କାବୁଲର ଶାସକ ବାବରଙ୍କ ଦ୍ୱାରସ୍ଥ ହେଲେ । ସେମାନେ ତାଙ୍କୁ ଅନୁରୋଧ ଜଣାଇଲେ ସୁଲତାନ୍‌ଙ୍କ ଅତ୍ୟାଚାରରୁ ରକ୍ଷା କରିବା ପାଇଁ । ବାବର, ଅବଶ୍ୟ, ସେମାନଙ୍କର ଏହି ପ୍ରସ୍ତାବ ଗ୍ରହଣ କରିବାକୁ ଖୁବ୍ ଆଗ୍ରହୀ ଥିଲେ । ବସ୍ତୁତଃ, ଐଶ୍ୱର୍ଯ୍ୟସମୃଦ୍ଧ ହିନ୍ଦୁସ୍ତାନ ଦଖଲ ପାଇଁ ସେ ମନେ ମନେ ଇତିପୂର୍ବରୁ ସ୍ୱପ୍ନ ଦେଖୁଥିଲେ । ଏହା ପରେ ୧୫୨୬ ଖ୍ରୀଷ୍ଟାବ୍ଦରେ ପାନିପଥ ଯୁଦ୍ଧରେ ଇବ୍ରାହିମ୍ ଲୋଦୀଙ୍କୁ ବାବର ପରାସ୍ତ କଲେ ଏବଂ ଏହି ଭାବେ ସ୍ଥାପନ କଲେ ଭାରତରେ ମୋଗଲ ସାମ୍ରାଜ୍ୟର* ଭିତ୍ତି । ଏହା ପରେ ଏହି ସାମ୍ରାଜ୍ୟ ଦୁଇ ଶହ ବର୍ଷ ଧରି ଦିଗନିର୍ଦ୍ଦେଶ କରିଥିଲା ଭାରତର ଇତିହାସକୁ ।

---

* ଖୋରାସାନ୍‌ରେ, ଆଫ୍‌ଗାନ ଉପଜାତି ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ ଏବଂ ଉତ୍ତର ଭାରତରେ, କେବଳ ମଙ୍ଗୋଲମାନେ ନୁହେଁ, ଯେଉଁସବୁ ମୁସଲମାନ ରାଜା ଆଗେ ପୂର୍ବର ମଙ୍ଗୋଲମାନଙ୍କ ଅଧିକୃତ ଭୂଖଣ୍ଡଗୁଡ଼ିକରେ ରାଜତ୍ୱ କରୁଥିଲେ ଓ ମଙ୍ଗୋଲମାନଙ୍କ ସହିତ ବିବାହ ସୂତ୍ରରେ ଆବଦ୍ଧ ହୋଇଥିଲେ ସେମାନେ ମଧ୍ୟ ମଙ୍ଗୋଲ ନାମରେ ପରିଚିତ ହୋଇ ଆସିଛନ୍ତି । ମଧ୍ୟ ଏସିଆର ଏହି ସମସ୍ତ ଅଞ୍ଚଳ ଏବଂ ଆଫ୍‌ଗାନମାନଙ୍କର ଅଞ୍ଚଳଗୁଡ଼ିକ ମୋଗଲିସ୍ତାନ ନାମରେ ପରିଚିତ । ବାବର ଏହି ଅଞ୍ଚଳରୁ ଭାରତକୁ ଆସିଥିଲେ ଏବଂ ଏହି କାରଣରୁ ସେ ଏବଂ ତାଙ୍କ ସହିତ ଯେଉଁମାନେ ଭାରତ ଆସିଥିଲେ, ସେମାନେ ସମସ୍ତେ ମୋଗଲ ନାମରେ ପରିଚିତ ହୋଇ ଆସିଛନ୍ତି । ୟୁରୋପୀୟମାନେ ସମସ୍ତ ମୋଗଲ ଅଧିପତିଙ୍କୁ "ମହାନ୍ ମୋଗଲ" ବୋଲି ଆଖ୍ୟା ଦେଇଛନ୍ତି ।

# ଦିଲ୍ଲୀରେ ସୁଲ୍‌ତାନ୍ ରାଜତ୍ୱ ଅମଳରେ ସାମାଜିକ-ଅର୍ଥନୈତିକ ଅବସ୍ଥା

ଭାରତର ମୁସଲମାନ ବିଜେତାବୃନ୍ଦ ପୂର୍ବବର୍ତ୍ତୀ ହିନ୍ଦୁ ରାଜାମାନଙ୍କର ଜମିଜାଗା ଦଖଲ କରି ନେଇଥିଲେ ଏବଂ ସେସବୁଥିରେ ନିଜର କର୍ତ୍ତୃତ୍ୱ ପ୍ରତିଷ୍ଠା କରିଥିଲେ । କିନ୍ତୁ ତୁର୍କୀ ସେନାଧ୍ୟକ୍ଷମାନେ ବହୁ ଶତାବ୍ଦୀ ଧରି ବିବର୍ତ୍ତିତ ଭାରତର କୃଷି ବ୍ୟବସ୍ଥା ଓ ବ୍ୟବସାୟ ବାଣିଜ୍ୟର ପଦ୍ଧତିରେ କୌଣସି ମୌଳିକ ପରିବର୍ତ୍ତନ ଘଟାଇବାକୁ ଅସମର୍ଥ ହୋଇଥିଲେ । ଏସବୁ ସତ୍ତ୍ୱେ ମୋଟ ଉପରେ କୃଷକ ଓ ସାମନ୍ତବାଦୀ ଭୂସ୍ୱାମୀମାନଙ୍କ ମଧ୍ୟରେ ସଂପର୍କ ରହି ଯାଇଥିଲା ଆଗ ଭଳି, ଯଦିଓ ସାମନ୍ତବାଦୀ ମାଲିକାନାର ଧରଣରେ କେତେକ ପରିବର୍ତ୍ତନ ଘଟିଥିଲା । ଜମିରେ ରାଷ୍ଟ୍ରୀୟ ମାଲିକାନା ଏହା ପରେ ଆଉରି ଦୃଢ଼ ଭାବେ ପ୍ରତିଷ୍ଠିତ ହୋଇଥିଲା ଏବଂ ଏ ବାବଦରୁ ପ୍ରଚୁର ଅର୍ଥାଗମ ଫଳରେ ବିଦେଶୀ ବିଜେତାମାନେ ସେମାନଙ୍କର ବିଶାଳ ଏବଂ ପ୍ରବଳ ସେନାବାହିନୀକୁ ପୋଷଣ କରିବାକୁ ଏବଂ ତା ସାହାଯ୍ୟରେ ବିଦେଶୀ ଜନସାଧାରଣଙ୍କୁ ଶାସନ କରିବାକୁ ସମର୍ଥ ହୋଇଥିଲେ । ବସ୍ତୁତଃ, ଏହି ପର୍ବରେ ରାଷ୍ଟ୍ର ଯେଉଁ ଭୂସଂପତ୍ତିର ମାଲିକ ହୋଇଥିଲା, ତାହା ଆଗେ ଥିଲା ସେ କାଳରେ ନିର୍ବାସିତ ଓ ଯୁଦ୍ଧ ବିଧ୍ୱସ୍ତ ଭାରତୀୟ ସାମନ୍ତବାଦୀ ଭୂସ୍ୱାମୀ ପରିବାରଗୁଡ଼ିକର ସଂପତ୍ତି ।

ଏହି ସମୟରେ ଦୁଇ ଧରଣର ରାଷ୍ଟ୍ରୀୟ ଭୂସଂପତ୍ତିର ଅସ୍ତିତ୍ୱ ଥିଲା – ଇକ୍‌ତା ଓ ଖାଲିସା (ରାଜକୀୟ ଜମି) । ରାଜସ୍ୱ ଆଦାୟକାରୀ କର୍ମଚାରୀମାନେ ରାଜକୀୟ ଜମିରୁ ପ୍ରାପ୍ୟ ଖଜଣା ଆଦାୟ କରୁଥିଲେ । ଭୂମିରାଜସ୍ୱ ସାଧାରଣତଃ ନିର୍ଦ୍ଧାରିତ ହେଉଥିଲା ଆନୁମାନିକ ହିସାବ ଅନୁଯାୟୀ : ଯଥାରୀତି ମାପଚୁପ୍ ହେଉ ନଥିଲା ଏବଂ ଖଜଣା ଆଦାୟ କରାଯାଉଥିଲା ସିଧାସଳଖ ଗ୍ରାମୀଣ ସମାଜ ନିକଟରୁ । ଏହି ଧରଣର ଜମିରୁ ଆଦାୟ ହେଉଥିବା ରାଜସ୍ୱ ଦ୍ୱାରା ରାଜ ଦରବାରର ଖର୍ଚ୍ଚବାର୍ଚ୍ଚ ଚଳୁଥିଲା ଏବଂ ସେଇସବୁ ରାଜକର୍ମଚାରୀ ଓ ଯୋଦ୍ଧାମାନଙ୍କୁ ପୋଷଣ କରାଯାଉଥିଲା, ଯେଉଁମାନେ ସେମାନଙ୍କ ବେତନ ଜିନିଷପତ୍ର ବା ଟଙ୍କା ଆକାରରେ ପାଉଥିଲେ । କେତେକ ବଣ ଏବଂ ଚରଣ କ୍ଷେତ୍ର ମଧ୍ୟ ରାଷ୍ଟ୍ରୀୟ ସଂପତ୍ତି ବୋଲି ଗଣ୍ୟ ହେଉଥିଲା । ଦିଲ୍ଲୀର ସୁଲତାନ୍ ରାଜତ୍ୱର କୋଣସି କୌଣସି ବିଶେଷ ସମୟରେ (ଯଥା, ବିଶେଷ କରି ଫିରୁଜ୍ ତୁଘଲକଙ୍କ ରାଜତ୍ୱକାଳରେ) ରାଷ୍ଟ୍ରୀୟ ତାଲୁକରେ କେତେକ ରାଜାଙ୍କର ଖାସ୍ ଖମାର ମଧ୍ୟ ସ୍ଥାପନ କରାଯାଇଥିଲା । ଏହିସବୁ ଖମାରରେ ଚାଷବାସର କାମରେ ଲଗାଯାଉଥିଲା କ୍ରୀତଦାସମାନଙ୍କୁ । ତେବେ ଏହି ଧରଣର ଖାସ୍ ଖମାରର ସଂଖ୍ୟା ଅନେକ କମ୍ ଥିଲା ।

ଅଧିକାଂଶ ରାଷ୍ଟ୍ରୀୟ ତାଲୁକ ସେତେବେଳେ ସୁଲତାନ୍‌ଙ୍କର ହୋଇ ବିଭିନ୍ନ ଧରଣର କାମ ସଂପାଦନ କରିବାକୁ, ଅର୍ଥାତ୍, ରାଜ ସେବାର ବିନିମୟରେ ସର୍ତ୍ତାଧୀନ ଦାନ ହିସାବରେ ଦିଆଯାଉଥିଲା । ଏହି ପ୍ରଥାକୁ କୁହାଯାଉଥିଲା ଇକ୍‌ତା ବ୍ୟବସ୍ଥା । ଛୋଟ ଛୋଟ ଜମି ଖଣ୍ଡଗୁଡ଼ିକର

ନାମ ଦିଆଯାଇଥିଲା ଇକ୍ତା ବୋଲି ଏବଂ ଏହିସବୁ ଜମିର ମାଲିକଙ୍କୁ କୁହାଯାଉଥିଲା ଇକ୍ତାଦାର ବା ଓୟାଜ୍ଦାର (ଅର୍ଥାତ୍, ଭୂମିଦାନର ଗ୍ରହୀତା) । ଏହା ଛଡ଼ା ଅପେକ୍ଷାକୃତ ବଡ଼ ଭୂସଂପତ୍ତି ଦାନ କରାଯାଉଥିଲା ଏବଂ ଏସବୁର ଗ୍ରହୀତାମାନଙ୍କୁ "ମୁକ୍ତା" କୁହାଯାଉଥିଲା । ଓୟାଜ୍ଦାରମାନେ ସାଧାରଣତଃ ନିଜେ, କିମ୍ବା ସେମାନଙ୍କ ଖଜଣା ଆଦାୟକାରୀଙ୍କ ମାରଫତ୍ ଗ୍ରାମଗୁଡ଼ିକରୁ, କିମ୍ବା ଗ୍ରାମର ଅଂଶଗୁଡ଼ିକରୁ ଖଜଣା ଆଦାୟ କରୁଥିଲେ । ଲୋକେ ପରିବାର ପରିଜନ ନେଇ ଏହିସବୁ ଗ୍ରାମରେ ବାସ କରୁଥିଲେ । ଏହି ଭଳି ପ୍ରତିଟି ପରିବାରକୁ ରାଷ୍ଟ୍ରୀୟ ସେନାବାହିନୀ ପାଇଁ ଜଣେ କରି ସୈନ୍ୟ ଜୋଗାଇବାକୁ ପଡ଼ୁଥିଲା । ଗିୟାସ୍ ଉଦ୍ଦିନ୍ ବଲ୍‌ବନ୍ ଚେଷ୍ଟା କରିଥିଲେ ଏହି ଧରଣର ଯେଉଁସବୁ ପରିବାରରେ ଅସ୍ତଧାରଣ କଲା ଭଳି ଉପଯୁକ୍ତ ପୁରୁଷ ସଦସ୍ୟ ନଥିଲେ, ସେମାନଙ୍କୁ ଦିଆଯାଇଥିବା ଜମିକୁ ଛଡ଼େଇ ନେବା ପାଇଁ । ଏହା ଫଳରେ ସେତେବେଳେ ଏପରି ବ୍ୟାପକ ଆନ୍ଦୋଳନ ଦେଖା ଦେଲା ଯେ, ସୁଲତାନ୍ ତାଙ୍କ ଉଦ୍ଦେଶ୍ୟ ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ଏହି ଭାବେ ଇକ୍ତାଦାରମାନଙ୍କର ଜମି ଶେଷକୁ ବ୍ୟକ୍ତିଗତ ମାଲିକାନାଧୀନ ସାମନ୍ତବାଦୀ ଭୂସଂପତ୍ତିରେ ପରିଣତ ହେଲା । ଏହିସବୁ ଜମି ପରିଚିତ ହେଲା ମୁଲକ ବା ଇନାମ୍ ନାମରେ । ଏହା ଛଡ଼ା ମୁକ୍ତା ଜମିରୁ ଯେଉଁ ଖଜଣା ଆଦାୟ କରୁଥିଲେ, ତା'ର ବଡ଼ ଏକ ଅଂଶ ଜମା ଦେବାକୁ ହେଉଥିଲା ରାଷ୍ଟ୍ରୀୟ କୋଷାଗାରରେ । ଏମାନେ କେଉଁ ମାନରେ ଏବଂ କି ପ୍ରକାରର (ଅର୍ଥାତ୍, ଫସଲ ଆକାରରେ ନା ଟଙ୍କା ଆକାରରେ) ଖଜଣା ଜମିରୁ ଆଦାୟ କରିବେ, ତାହା ରାଷ୍ଟ୍ର ତରଫରୁ ନିର୍ଦ୍ଧାରଣ କରି ଦିଆଯାଉଥିଲା । ଏହି ରାଜସ୍ୱର ନିର୍ଦ୍ଦିଷ୍ଟ ଏକ ଅଂଶ ମୁକ୍ତା ଓ ତାଙ୍କ ଭଡ଼ାଟିଆ ସୈନ୍ୟବାହିନୀର ଭରଣ ପୋଷଣ ପାଇଁ ବ୍ୟୟ କରାଯାଉଥିଲା । ଜମି ଉପରେ ଭୋଗ ଦଖଲର ଅଧିକାର ଥିଲା ସର୍ତ୍ତାଧୀନ, ଅର୍ଥାତ୍, ରାଜସେବା ସହିତ ସଂପର୍କିତ ଏବଂ ଉତ୍ତରାଧିକାର ସୂତ୍ରରେ ତାହା ମିଳୁ ନଥିଲା ।

ଦିଲ୍ଲୀର ସୁଲତାନ୍ ରାଜତ୍ୱ ଅମଳରେ, ଅବଶ୍ୟ, ଏକ ଶ୍ରେଣୀର ବ୍ୟକ୍ତିଗତ ଜମିର ମାଲିକମାନଙ୍କ ଅସ୍ତିତ୍ୱ ଥିଲା, ଯେଉଁ ଜମିର ମାଲିକମାନେ ଅବାଧରେ ଜମି ହସ୍ତାନ୍ତର କରି ପାରୁଥିଲେ ଏବଂ ରାଷ୍ଟ୍ରର ହସ୍ତକ୍ଷେପ ଛଡ଼ା ତତ୍କାଳୀନ ପ୍ରଚଳିତ ରୀତି ଅନୁଯାୟୀ ଜମିର ଖଜଣା ସଂଗ୍ରହ କରି ପାରୁଥିଲେ । ତେବେ ଏହି ଧରଣର ଭୂସ୍ୱାମୀମାନଙ୍କ ସଂଖ୍ୟା ବେଶି ନଥିଲା । ଏହିସବୁ ଭୂସ୍ୱାମୀଙ୍କ ମଧ୍ୟରେ ପ୍ରଥମତଃ ଏବଂ ପ୍ରଧାନତଃ ଥିଲେ ମସଜିଦ୍ ଓ ମାଦ୍ରାସାଗୁଡ଼ିକ (ଏମାନଙ୍କ ମାଲିକାନାଧୀନ ଜମିକୁ ଓୟାକଫ୍ ଜମି ବୋଲି କୁହାଯାଉଥିଲା) ଓ ପବିତ୍ର ସ୍ଥାନସମୂହ ବା ସାଧାରଣତଃ ଶେଖ୍‌ମାନଙ୍କ କବରଗୁଡ଼ିକର ରକ୍ଷକ ଏବଂ ଉଲେମା (ମୁସଲିମ୍ ଧର୍ମ ଗୁରୁ), କବି, ଉଚ୍ଚ ପଦସ୍ଥ କେତେକ ଅମାତ୍ୟ; ଅମଲା ଏବଂ ଏହି ଧରଣର ଅଳ୍ପ କିଛି ଜମି (ସାଧାରଣତଃ ଯାହାକୁ ମୁଲକ କୁହାଯାଉଥିଲା) କିଣି ନେଇ ମାଲିକ ହେଉଥିଲେ ଯେଉଁ ଅଳ୍ପ ସଂଖ୍ୟକ ବଣିକ । ପ୍ରାୟ ଏହି ଧରଣର ଜମିର ବ୍ୟକ୍ତିଗତ ମାଲିକ ସେମାନେ ପାଲଟି ଯାଉଥିଲେ, ଯେଉଁମାନେ କି ଜଙ୍ଗଲ କାଟି ଜମି ଉଦ୍ଧାର କରୁଥିଲେ, କିମ୍ବା ଅନାବାଦୀ ଜମି ଚାଷ କରୁଥିଲେ । ତେବେ ଏହିସବୁ ଜମିରେ ବଂଶ ପରମ୍ପରା ଅଧିକାର ବଜାଏ ରଖିବା କେବଳ ସେତିକିବେଳେ ସମ୍ଭବ ହେଉଥିଲା, ଯେତେବେଳେ ସାଧାରଣତଃ କୌଣସି ସାମନ୍ତ ଭୂସ୍ୱାମୀ ଜଙ୍ଗଲ କାଟି ନୂଆ ବସତି ବସାଉଥିଲେ ଏବଂ ରାଜକୋଷର ଦାବୀ ବିରୁଦ୍ଧରେ ନିଜର ସଂପତ୍ତି ରକ୍ଷା କରିବାକୁ ସମର୍ଥ ହେଉଥିଲେ ।

ସୁଲତାନ୍ ରାଜତ୍ୱକାଳରେ ସାଧାରଣତଃ ହିନ୍ଦୁମାନଙ୍କ ଜମିଜମା, ବିଶେଷ କରି ରାଜପୁତମାନଙ୍କ ଜମିଜମା, ଅତୁଟ ରହିଥିଲା । ଏପରିକି ସେମାନଙ୍କର ଅଧୀନସ୍ଥ ଭୂଖଣ୍ଡ ମୁସ୍‌ଲିମ୍ ବିଜେତାମାନେ ଜୟ କରି ନେବା ପୂର୍ବରୁ ଏହି ଜାତିଗୋଷ୍ଠୀର ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ପୈତୃକ ଭୂସଂପତ୍ତି ଟୁକୁରା ଟୁକୁରା ହୋଇ ଯାଇଥିଲା । ଭାରତର ଏହି ଅଞ୍ଚଳରେ ରାଜସେବାର ପୁରସ୍କାର ସ୍ୱରୂପ ଭୂମିଦାନର ପ୍ରଥା ବହୁ ବ୍ୟାପକ ହୋଇ ପଡ଼ିଥିଲା । ରାଜପୁତାନାରେ ମୁସଲିମ୍‌ମାନଙ୍କର ଯୁଦ୍ଧାଭିଯାନ ଫଳରେ ଜମିର ବିଖଣ୍ଡୀକରଣର ଏହି ପ୍ରକ୍ରିୟା ଆଉରି ଦ୍ରୁତ ହୋଇ ଉଠିଥିଲା ଏହି ଦିଗରୁ ଯେ, କେତେକ ରାଜପୁତ ଭୂସ୍ୱାମୀ ଯେପରି ଏହା ଫଳରେ ବିଲୁପ୍ତ ହୋଇ ଗଲେ, ସେଇପରି ଅନ୍ୟମାନେ ସୁଲତାନ୍‌ଙ୍କ ବଶ୍ୟତା ସ୍ୱୀକାର କରି ସେମାନଙ୍କ ଭୂସଂପତ୍ତି ଫେରି ପାଇଥିଲେ, କିନ୍ତୁ ସେ ପାଇବାଟା ଥିଲା ସର୍ତ୍ତସମ୍ବଳିତ (ବା ଇକ୍‌ତା ଜମି) । ଏହିସବୁ ଇକ୍‌ତାଦାରମାନେ ବାଧ୍ୟ ରହୁଥିଲେ ସୁଲତାନ୍‌ଙ୍କର ବିଭିନ୍ନ ଯୁଦ୍ଧରେ ନିଜ ନିଜର ସେନାବାହିନୀ ସହ ଯୋଗ ଦେବାକୁ ଏବଂ ରାଷ୍ଟ୍ରୀୟ କୋଷାଗାରକୁ ବାର୍ଷିକ କର ଦେବାକୁ । ତେବେ ଏମାନଙ୍କର ଜମି, ଅବଶ୍ୟ, ବଂଶ ପରମ୍ପରାକ୍ରମେ ପରିବାରର ମାଲିକାନାଧୀନ ରହୁଥିଲା ।

ଆଲ୍ଲା ଉଦ୍ଦିନ୍‌ଙ୍କ ବିଭିନ୍ନ ସଂସ୍କାର – ଯଥା, ଜନସାଧାରଣଙ୍କ ଉପରେ ଅତିରିକ୍ତ ଉଚ୍ଚ ହାରରେ କର ବସାଇବା ଏବଂ ହିନ୍ଦୁ ସାମନ୍ତ ଭୂସ୍ୱାମୀମାନଙ୍କ ଉପରେ ଅଧିକାର ଧାର୍ଯ୍ୟ କରିବା ଏବଂ ସମସ୍ତ ଯୋଦ୍ଧାଙ୍କୁ ଜମିଦାନ ବଦଳରେ ଅର୍ଥ ଦେଇ ପୁରସ୍କୃତ କରିବା, ଆଦି – ପ୍ରାକ୍ତନ ନିୟମକାନୁନ୍‌କୁ ମୂଳଗତ ଭାବେ ବିପର୍ଯ୍ୟସ୍ତ କରି ଦେଇଥିଲା । ତେଣୁ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଏହିସବୁ ସଂସ୍କାର ବର୍ଜିତ ହୋଇଥିଲା । ଠିକ୍ ଏହି ଭାବେ ମହମ୍ମଦ ତୁଘଲକଙ୍କ ମୃତ୍ୟୁ ପରେ ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଅତିରିକ୍ତ ଓ ଅଧିକ ମାତ୍ରାର କର ବା ଆବଓୟାବଗୁଡ଼ିକ ପରିତ୍ୟକ୍ତ ହୋଇଥିଲା । ଭାରତୀୟ ସାମନ୍ତବାଦୀ ରାଷ୍ଟ୍ର ବ୍ୟବସ୍ଥାର ତରଫରୁ ଏଭଳି ଏକ ମାତ୍ରାର ରାଜକର ନିର୍ଦ୍ଧାରଣ କରିବା ପାଇଁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଉଦ୍ୟମ ଚାଲିଥିଲା । ଏହାର ଉଦ୍ଦେଶ୍ୟ ଥିଲା ରାଷ୍ଟ୍ରୀୟ କୋଷାଗାରରେ ଯଥେଷ୍ଟ ପରିମାଣର ରାଜସ୍ୱ ଜମା ପଡ଼ିବ, ଅଥଚ କରଦ ଭୂସ୍ୱାମୀମାନେ ତା ଫଳରେ ନିଃସ୍ୱ ହୋଇ ପଡ଼ିବେ ନାହିଁ ।

ପରବର୍ତ୍ତୀ କାଳରେ ଖାଲିସା ଜମିର ପରିମାଣ ହ୍ରାସ କରାଯାଇଥିଲା ଗୁରୁତର ଭାବେ ଏବଂ ସର୍ତ୍ତାଧୀନ ଜମିଦାନ ବିଷୟରେ ରାଷ୍ଟ୍ରୀୟ ନିୟନ୍ତ୍ରଣ କ୍ରମଶଃ ଶିଥିଳ ହୋଇ ପଡ଼ିଥିଲା । ପଞ୍ଚଦଶ ଶତାବ୍ଦୀ ବେଳକୁ ଇକ୍‌ତା ଜମି କ୍ରମଶଃ ଇନାମ୍ ବା ରାଜ ସେବା ପରିବର୍ତ୍ତେ ପ୍ରାପ୍ତ ବ୍ୟକ୍ତିଗତ ଭୂସଂପତ୍ତିର ସମତୁଲ୍ୟ ହୋଇ ପଡ଼ିଲା । ଲୋଦୀ ବଂଶର ରାଜତ୍ୱକାଳରେ ରାଷ୍ଟ୍ରୀୟ କୋଷାଗାରକୁ କିଛି ଦେବାକୁ ପଡ଼ୁ ନଥିଲା, ଯଦିବା ଆଗ ଭଳି ଭୂମିରାଜସ୍ୱର ପରିମାଣ ନୀତିଗତ ଭାବେ ରାଷ୍ଟ୍ର ହିଁ ନିର୍ଦ୍ଦିଷ୍ଟ କରି ଦେଇଥିଲା । ବାସ୍ତବରେ ସାମନ୍ତବାଦୀ ଭୂସ୍ୱାମୀମାନେ ସେମାନଙ୍କ ନିଜ ସ୍ୱାର୍ଥ ଦୃଷ୍ଟିରୁ କୃଷକମାନଙ୍କ ନିକଟରୁ ଅତିରିକ୍ତ ଖଜଣା ଆଦାୟ କରି ନେଉଥିଲେ ଏବଂ ଏହା ଫଳରେ ଗ୍ରାମାଞ୍ଚଳରେ ଖଜଣାର ବୋଝ ବଢ଼ିବାକୁ ଲାଗିଥିଲା । ସ୍ଥାନୀୟ ଭୂସ୍ୱାମୀମାନଙ୍କ ପକ୍ଷରେ ଏହା କରିବା ସମ୍ଭବ ହେଉଥିଲା କେନ୍ଦ୍ରୀୟ ପ୍ରଶାସନ ତରଫରୁ ନିୟନ୍ତ୍ରଣ ବ୍ୟବସ୍ଥା କ୍ରମଶଃ ଦୁର୍ବଳ ହୋଇ ପଡ଼ିବା ହେତୁ । ରାଷ୍ଟ୍ରୀୟ ପ୍ରଶାସନ ବ୍ୟବସ୍ଥାର କ୍ରମାବକ୍ଷୟ ଓ ପତନ ଏବଂ ସାମନ୍ତ ଭୂସ୍ୱାମୀମାନଙ୍କର ଖାମ୍‌ଖିଆଲୀ ଆଚରଣ ଫଳରେ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ଗ୍ରାମର ଜନସାଧାରଣଙ୍କ ଅବସ୍ଥାର

ଲକ୍ଷଣୀୟ ଭାବେ ଅବନତି ଘଟିଥିଲା । ପ୍ରସଙ୍ଗତଃ ଏକଥା ମନେ ରଖିବାକୁ ହେବ ଯେ, ଦେଶର କୃଷକମାନଙ୍କର ବିପୁଳ ସଂଖ୍ୟାଧିକ ଅଂଶ ଥିଲେ ହିନ୍ଦୁ । ମୁସଲମାନ ଶାସକମାନେ ହିନ୍ଦୁ ଜନସାଧାରଣଙ୍କ ଉପରେ ମୁଣ୍ଡପିଛା ଯେଉଁ କର ଚପେଇ ଦେଇଥିଲେ, ତାହା ଏକ ପ୍ରାଣାନ୍ତକ ବୋଝରେ ପରିଣତ ହୋଇଥିଲା ।

ଜମିର ସାମନ୍ତବାଦୀ ମାଲିକାନାର ଧରଣଗୁଡ଼ିକରେ ସେତେବେଳେ ଯେଉଁସବୁ ପରିବର୍ତ୍ତନ ଘଟିଥିଲା, ସେସବୁର ପ୍ରଭାବ, ସମ୍ଭବତଃ, କୃଷକ ଜୀବନ ଉପରେ ସାମାନ୍ୟ ଭାବେ ପଡ଼ିଥିଲା । ଗ୍ରାମ୍ୟ ସମାଜଗୁଡ଼ିକ ଅତୁଟ ରହିଯାଇଥିଲା; ମୁସଲମାନ ଇତିବୃତ୍ତକାରମାନେ ଏସବୁର ଉଲ୍ଲେଖ କରିଛନ୍ତି ଆରବୀ "ଜାମିୟାତ୍" ଶବ୍ଦଟି ଦ୍ୱାରା । ଦିଲ୍ଲୀର ସୁଲତାନ୍ ଶାସନ ନିକଟରେ ଏହିସବୁ ସମାଜ ଥିଲା ରାଜସ୍ୱ ଆଦାୟର ସୁବିଧାଜନକ ଏକକ ସ୍ୱରୂପ । ଗ୍ରାମର ମୁଖ୍ୟ ବା ପ୍ରଧାନମାନେ କ୍ରମଶଃ ଅଧିକରୁ ଅଧିକ ଗଣ୍ୟ ହେବାକୁ ଲାଗିଥିଲେ ରାଷ୍ଟ୍ରୀୟ କର୍ମଚାରୀ ରୂପେ ଏବଂ ସେମାନଙ୍କ ରାଷ୍ଟ୍ରୀୟ କାର୍ଯ୍ୟର ସ୍ୱୀକୃତି ସ୍ୱରୂପ ଛୋଟ ଛୋଟ ନିଷ୍କର ଜମି ସେମାନଙ୍କ ପାଇଁ ଅଲଗା ଅଲଗା ନିର୍ଦ୍ଦିଷ୍ଟ ହେବାକୁ ଲାଗିଲା । ଗ୍ରାମ୍ୟ ସମାଜ ମଧ୍ୟରେ ସଂପତ୍ତିଗତ ପାର୍ଥକ୍ୟ ଅନୁଭୂତ ହେବାକୁ ଲାଗିଲା ଆଗ ଅପେକ୍ଷା ଆଉରି ପ୍ରବଳ ଭାବେ । ତେବେ ଏହି ପାର୍ଥକ୍ୟ, ଅବଶ୍ୟ, ଏତେ ବିରାଟ ଓ ତାତ୍ପର୍ଯ୍ୟପୂର୍ଣ୍ଣ ନଥିଲା ଯେ, ଯାହା ଫଳରେ ପ୍ରାକୃତିକ ବିପର୍ଯ୍ୟୟ ବେଳେ, କିମ୍ବା ରାଜସ୍ୱ ଦାବୀ ଅତିରିକ୍ତ ହେଲେ ଗ୍ରାମ୍ୟ ସମାଜର କୌଣସି ସଦସ୍ୟ ସର୍ବସ୍ୱାନ୍ତ ହେବାର ସମ୍ଭାବ୍ୟ ବିପଦ ଏଡ଼େଇ ଯାଇ ପାରୁଥିଲେ ।

ତେବେ ଏଥି ସଙ୍ଗେ ସଙ୍ଗେ ଏକଥା ଉଲ୍ଲେଖ କରିବା ଦରକାର ଯେ, ଦିଲ୍ଲୀର ସୁଲତାନ୍ ରାଜତ୍ୱକାଳଟି ଥିଲା, ଧୀର ଗତିରେ ହେଲେ ମଧ୍ୟ, ଉତ୍ପାଦିକା ଶକ୍ତିସମୂହର ଧାରାବାହିକ ବିକାଶ କାଳ । ଏହାର ସୂଚନା ମିଳିଥାଏ ଜନସଂଖ୍ୟା ବୃଦ୍ଧି ଏବଂ ପୂର୍ବରୁ ଜଙ୍ଗଲ ଅଞ୍ଚଳ ଥିବା ଜମିରେ ଚାଷବାସ ମଧ୍ୟରେ । ଏହି ଯୁଗରେ ନୂଆ ନୂଆ ଜନବସତି ଗଢ଼ି ଉଠିଥିଲା ଏବଂ ଜମିଚାଷ ପାଇଁ ଅପେକ୍ଷାକୃତ ବ୍ୟାପକ ଓ ପୁଙ୍ଖାନୁପୁଙ୍ଖ ପଦ୍ଧତିସମୂହ ଗୃହୀତ ହୋଇଥିଲା । ଏହାର ପୂର୍ବ ପର୍ଯ୍ୟନ୍ତ ଅଧିକାଂଶ ଆବାଦୀ ଜମିରେ ଜଳସେଚନ ବ୍ୟବସ୍ଥା ନଥିଲା ଏବଂ ଫସଲର ଫଳନ ନିର୍ଭର କରୁଥିଲା ମୌସୁମୀ ବୃଷ୍ଟିପାତ ଉପରେ । ଏହା ଛଡ଼ା କୂପରୁ କପିକଳ ସାହାଯ୍ୟରେ ଜଳ ଉତ୍ତୋଳନ କରି ଚାଷ କାର୍ଯ୍ୟରେ ବ୍ୟବହାର କରାଯାଉଥିଲା । ତେବେ ଏହିସବୁ କୂପ ଜଳର ମାତ୍ରା ମଧ୍ୟ ନିର୍ଭର କରୁଥିଲା ବୃଷ୍ଟିପାତର ପରିମାଣ ଉପରେ । ସେଚନଯୁକ୍ତ ଚାଷ ଜମିର ଏଲକା ବୃଦ୍ଧି ନିମିତ୍ତ ଦିଲ୍ଲୀ ସରକାର ଏହି ଯୁଗରେ ବିଭିନ୍ନ ବ୍ୟବସ୍ଥା ଅବଲମ୍ବନ କରିଥିଲେ । ଯଥା, ଦୃଷ୍ଟାନ୍ତ ସ୍ୱରୂପ, ଦିଲ୍ଲୀ ଚତୁଃପାର୍ଶ୍ୱରେ ହୌଜ-ଇ-ସାମସି ଓ ହୌଜ-ଇ-ଖାସ୍‌ରେ ବଡ଼ ବଡ଼ ଦୁଇଟି ଜଳାଧାର ନିର୍ମିତ ହୋଇଥିଲା । ଫିରୁଜ୍ ଶାହ୍ ତୁଘଲକ ଶତଦ୍ରୁ ଓ ଯମୁନା ନଦୀରୁ ମୋଟ ୧୮୦ରୁ ୨୦୦ ମାଇଲ ଲମ୍ବ ବିଶିଷ୍ଟ କେତୋଟି କେନାଲ ଖୋଳେଇଥିଲେ ଏବଂ ଏହି ଭାବେ ବିରାଟ ଏକ ଅଞ୍ଚଳରେ ଜଳ ସରବରାହର ବ୍ୟବସ୍ଥା କରିଥିଲେ । ଏହିସବୁ କେନାଲ ଖୋଳିବା କାର୍ଯ୍ୟରେ ବାଧ୍ୟତାମୂଳକ ଶ୍ରମଦାନରେ ପଚାଶ ହଜାର ଶ୍ରମିକ ନିଯୁକ୍ତ ହୋଇଥିଲେ ।

ଭାରତରେ ଅନୁକୂଳ ଜଳବାୟୁର କଲ୍ୟାଣରୁ ସେତେବେଳେ ବର୍ଷକୁ ଦୁଇଟି କରି ଫସଲ ଅମଳ କରିବା ସମ୍ଭବ ହେଉଥିଲା – ଗୋଟିଏ ହେମନ୍ତ କାଳରେ (ଖରିଫ୍) ଓ ଅନ୍ୟଟି ବସନ୍ତକାଳରେ (ରବି) ।

ଏହା ଛଡ଼ା ଯେଉଁଠି ଜଳସେଚନର ବ୍ୟବସ୍ଥା ଥିଲା, ସେଠାରେ ଆଉ ଗୋଟିଏ ତୃତୀୟ ଫସଲ ଅମଳ କରିବା ମଧ୍ୟ ସମ୍ଭବ ଥିଲା । ପ୍ରଧାନ ଶସ୍ୟ ଥିଲା ଜଅ ଏବଂ ଧାନ । ସେତେବେଳେ ଏକୋଇଶ ପ୍ରକାରର ଧାନ ଚାଷ ହେଉଥିଲା ବୋଲି ଜଣାଯାଏ । ଏହି ଦୁଇଟି ପ୍ରଧାନ ଶସ୍ୟ ଛଡ଼ା ଦେଶରେ ସେତେବେଳେ ଗହମ, ଜଅ, ବିଭିନ୍ନ ଧରଣର ଡାଲି, ବହୁ ପ୍ରକାରର ପନିପରିବା ଓ ଫଳମୂଳ, ଆଖୁ ଏବଂ ତୈଳବୀଜ ଚାଷ ହେଉଥିଲା । ପୂର୍ବ ଅପେକ୍ଷା ଅଧିକ ଜମି ରଖାଯାଉଥିଲା ନୀଳ ଚାଷ ପାଇଁ । ନୀଳ ଥିଲା ସେତେବେଳେ ବସ୍ତ୍ରକୁ ରଙ୍ଗ କରିବାର ସାଧାରଣ ପ୍ରଚଳିତ ରଞ୍ଜକ ଦ୍ରବ୍ୟ । ଏହା ଛଡ଼ା ରେଶମ ଚାଷ ପାଇଁ ଗବଗଛର ଚାଷ ମଧ୍ୟ କରାଯାଉଥିଲା ।

ପରୋକ୍ଷ ସାକ୍ଷୀ ପ୍ରମାଣ ଦେଇ ବିଗ୍ଭର କଲେ, କହିବାକୁ ହୁଏ ଯେ, ଦିଲ୍ଲୀର ସୁଲତାନ୍ ରାଜତ୍ୱରେ ବିଭିନ୍ନ ଧରଣର କାରିଗର ଓ କାରୁଶିଳ୍ପୀଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା । ଗ୍ରାମର କାରିଗରମାନେ ସେତେବେଳେ ଗ୍ରାମ୍ୟ ସମାଜର ସଦସ୍ୟ ରୂପେ ଗଣ୍ୟ ହେଉଥିଲେ । ଗ୍ରାମ ଏବଂ ସହରମାନଙ୍କରେ ଗଢ଼ି ଉଠିଥିଲା କାରିଗରମାନଙ୍କର, ବିଶେଷ କରି ତନ୍ତୁବାୟମାନଙ୍କର ବିଭିନ୍ନ ବସତି; ଏହା ଛଡ଼ା ବନ୍ଧୁକ ନିର୍ମାଣକାରୀ କର୍ମକାର, ତମ୍ବା କାରିଗର ଓ ଅନ୍ୟାନ୍ୟ ପେଶାର କାରିଗରମାନଙ୍କର ବସତି ମଧ୍ୟ ଗଢ଼ି ଉଠିଥିଲା । କାରିଗରମାନେ ନିଜ ନିଜ ଜାତିର ବେଉସା ହିସାବରେ ବିଭିନ୍ନ ରକମର ପେଶା ଅବଲମ୍ବନ କରୁଥିଲେ । ସହରର କାରୁଶିଳ୍ପୀମାନେ ସେମାନଙ୍କ ପଣ୍ୟଦ୍ରବ୍ୟ ଦୋକାନରେ ବସି, କିମ୍ବା ସ୍ଥାନୀୟ ବଜାରରେ ବିକ୍ରି କରୁଥିଲେ । ଗୃହ ନିର୍ମାଣ ସହିତ ସଂପର୍କିତ ବିଭିନ୍ନ ଧରଣର ବିଶେଷ ପେଶା, ଯଥା, ପଥର ଗାନ୍ଥିନୀ ଓ ଇଟା ଗାନ୍ଥିନୀର କାମ ଜାଣିଥିବା ରାଜମିସ୍ତ୍ରୀ, ଆଦି, ଏହି ସମୟରେ ଦେଖା ଦେଇଥିଲେ ।

ଦରବାରର ବିଭିନ୍ନ ପ୍ରୟୋଜନ ମେଣ୍ଟାଇବାକୁ ଦିଲ୍ଲୀର ସୁଲତାନ୍‌ମାନେ ଅନେକ ସମୟରେ ବଡ଼ ବଡ଼ କାରଖାନା ସ୍ଥାପନ କରୁଥିଲେ । ଆଲ୍ଲା ଉଦ୍ଦିନ୍‌ଙ୍କ ଦ୍ୱାରା ସ୍ଥାପିତ ଏହିଭଳି ବିଭିନ୍ନ କାରଖାନାରେ କାମ କରୁଥିଲେ ସତର ହଜାର କାରିଗର ଓ କାରୁଶିଳ୍ପୀ (ଏମାନଙ୍କ ମଧ୍ୟରେ ସାତ ହଜାର ପର୍ଯ୍ୟନ୍ତ ଗୃହନିର୍ମାଣକାରୀ କାରିଗର ଥିଲେ) । ଏମାନଙ୍କୁ ବେତନ ଦିଆଯାଉଥିଲା ରାଷ୍ଟ୍ରୀୟ କୋଷାଗାରରୁ । ମହମ୍ମଦ ତୁଘଲକଙ୍କ ରାଜତ୍ୱକାଳରେ, କାରଖାନାଗୁଡ଼ିକରେ କାମ କରୁଥିଲେ ଅନ୍ୟମାନଙ୍କୁ ବାଦ୍ ଦେଲେ, ଗ୍ଭରି ହଜାର ତନ୍ତୁବାୟ ଶିଳ୍ପୀ ।

ମଧ୍ୟ ଏସିଆର ଉପଜାତିଗୁଡ଼ିକ ଭାରତ ଜୟ କରିବା ଫଳରେ ପ୍ରାରମ୍ଭରେ ଭାରତ ଏବଂ ମଧ୍ୟ ପ୍ରାଚ୍ୟର ମୁସ୍‌ଲିମ୍ ଦୁନିଆ ମଧ୍ୟରେ ଓଟ ଦଳ ସାହାଯ୍ୟରେ ବାଣିଜ୍ୟ ବୃଦ୍ଧି ପାଇଥିଲା । ଏହା ଫଳରେ ଦିଲ୍ଲୀର ସୁଲତାନ୍‌ଙ୍କ ପ୍ରତିକୃତି ସହ କେବଳ ପାରସ୍ୟ ଏବଂ ମଧ୍ୟ ଏସିଆରେ ନୁହେଁ, ସୁଦୂର ଭୋଲ୍‌ଗା ନଦୀର ତୀରରେ ମଧ୍ୟ ଗଦା ଗଦା ମୁଦ୍ରା ମିଳିଛି । ଦିଲ୍ଲୀ ସୁଲତାନ୍‌ଙ୍କ ସେନାବାହିନୀର ପ୍ରାଣ ଶକ୍ତି ଥିଲା ଅଶ୍ୱାରୋହୀ-ବାହିନୀ । ଅଥଚ ଭାରତରେ ଉପଯୁକ୍ତ ଗ୍ଭରଣ ଭୂମିର ଅଭାବରୁ ଘୋଡ଼ାର ପ୍ରଜନନ କାର୍ଯ୍ୟତଃ ଅସମ୍ଭବ ଥିଲା ବୋଲି ବୈଦେଶିକ ବାଣିଜ୍ୟର ଅନ୍ୟତମ ପ୍ରଧାନ ଆମଦାନିର ବସ୍ତୁ ଥିଲା ଘୋଡ଼ା । କିନ୍ତୁ ପରେ, ମଙ୍ଗୋଲମାନଙ୍କର ଅନବରତ ସାମରିକ ଅଭିଯାନ ଓ ତା'ଫଳରେ ଇରାନ ଏବଂ ମଧ୍ୟ ଏସିଆରେ ବହୁ ସହର ଧ୍ୱଂସ ପାଇଯିବା ଦ୍ୱାରା ଅଳ୍ପ ଦିନ ମଧ୍ୟରେ ଓଟନିର୍ଭର ଏହି ଭାରତୀୟ ବାଣିଜ୍ୟରେ ଭଟା ଦେଖା ଦେଇଥିଲା ।

ଏହା ଫଳରେ ଦିଲ୍ଲୀର ସୁଲତାନ୍‌ମାନଙ୍କ ପକ୍ଷରେ ଦାକ୍ଷିଣାତ୍ୟର ବନ୍ଦରଗୁଡ଼ିକୁ ଦଖଲ କରିବା

ଆଉରି ଜରୁରୀ ହୋଇ ପଡ଼ିଥିଲା । ଏହି ବନ୍ଦରଗୁଡ଼ିକର ଥିଲା ସମୁଦ୍ର ପଥରେ ବ୍ୟାପକ ବହିର୍ବାଣିଜ୍ୟର ଏକ ସୁଦୀର୍ଘ ଇତିହାସ । ସମୁଦ୍ର ପଥରେ ଭାରତ ରପ୍ତାନି କରୁଥିଲା ତୂଳା ଏବଂ ବଙ୍ଗଦେଶୀ ରେଶମ, ଅସ୍ତ୍ରଶସ୍ତ୍ର, ମୂଲ୍ୟବାନ ପଥର, ସୁନା, ରୂପା ଏବଂ ତମ୍ବା ନିର୍ମିତ ବାସନକୁସନ । କ୍ରୀତଦାସ କିଣାବିକା ଥିଲା ଏକ ସାଧାରଣ ଘଟଣା । ମଧ୍ୟ ଏସିଆ ଏବଂ ପାରସ୍ୟରୁ ବନ୍ଦୀ ଦଳଙ୍କୁ ଆଣି ଭାରତରେ ବିକ୍ରି କରାଯାଉଥିଲା ଏବଂ ଭାରତ ମଧ୍ୟରେ ଯେଉଁସବୁ ହିନ୍ଦୁ ରାଷ୍ଟ୍ର ବିରୁଦ୍ଧରେ ଜେହାଦ ବା ଧର୍ମଯୁଦ୍ଧ ଘୋଷଣା କରାଯାଉଥିଲା, ସେସବୁର ଅଧିବାସୀମାନଙ୍କୁ ଧରି ଆଣି କ୍ରୀତଦାସରେ ପରିଣତ କରାଯାଉଥିଲା । କ୍ରୀତଦାସମାନଙ୍କୁ, ମୁଖ୍ୟତଃ, ଗୃହକାର୍ଯ୍ୟରେ ଲଗାଯାଉଥିଲା ।

ଆଭ୍ୟନ୍ତରୀଣ ବାଣିଜ୍ୟର ବିକାଶ ପାଇଁ ଦାକ୍ଷିଣାତ୍ୟ ଦଖଲ କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଲୁଣ ଏବଂ ନଡ଼ିଆ (ନଡ଼ିଆରୁ ତେଲ ଏବଂ କତାରୁ ଦୌଡ଼ି ପ୍ରସ୍ତୁତ ହେଉଥିଲା) ଦକ୍ଷିଣ ଭାରତର ସମୁଦ୍ରୋପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକରୁ ଅଣାଯାଉଥିଲା । ଧାନ ଚାଷ କ୍ଷେତ୍ରରେ ସମୃଦ୍ଧ ବଙ୍ଗ ଦେଶର ଉର୍ବର ଅଞ୍ଚଳଗୁଡ଼ିକ ରାଜଧାନୀକୁ ଯୋଗାଉଥିଲା ଚାଉଳ । ସୁଲତାନ୍‌ମାନଙ୍କର ବିଶାଳ ସେନାବାହିନୀକୁ ଖୋଇବା ପାଇଁ ତା'ର ପ୍ରୟୋଜନ ଅନେକ ବେଶି ଥିଲା । କନୌଜର ବଣିକମାନେ ସମଗ୍ର ଭାରତରେ ଏବଂ ବିଶେଷ କରି ଦିଲ୍ଲୀରେ ଚିନି ବିକ୍ରି କରୁଥିଲେ । ତେବେ ଜିନିଷପତ୍ର ମଧ୍ୟରେ ବିନିମୟ ବ୍ୟବସ୍ଥା ଥିଲା ପ୍ରଧାନତଃ ଅର୍ଥନୀତିର ପ୍ରଚଳିତ ପ୍ରଥା । ରାଷ୍ଟ୍ରୀୟ କୋଷାଗାରରେ ଜମା ଦିଆଯାଉଥିବା ଖାଦ୍ୟ ଦ୍ରବ୍ୟ ଓ କାରିଗରି ଶିଳ୍ପଜାତ ଜିନିଷ, ମୁଖ୍ୟତଃ, ସୁଲତାନ୍ ଏବଂ ତାଙ୍କ ପରିବାରର, ଦରବାରର ଅମିର୍, ପାରିଷଦବର୍ଗ ଏବଂ ସୁଲତାନ୍‌ଙ୍କ ବିଶାଳ ଭଡ଼ାଟିଆ ସେନାବାହିନୀର ପ୍ରୟୋଜନ ମେଣ୍ଟାଇବାରେ ବ୍ୟବହୃତ ହେଉଥିଲା ।

ବିଭିନ୍ନ ପ୍ରକାରର ଅତିରିକ୍ତ ଶୁଳ୍କ ଆଦାୟ ଓ ବହୁ ଧରଣର ବାଧ୍ୟତାମୂଳକ ଶ୍ରମ ଦିଲ୍ଲୀର ସୁଲତାନ୍ ଶାସନ କାଳରେ ବ୍ୟବସାୟ ବାଣିଜ୍ୟ ଏବଂ କାରିଗରିର ବିସ୍ତାର ପଥରେ ବାଧ୍ୟ ହୋଇ ଦେଖା ଦେଇଥିଲା । ସମସ୍ତ ମୁସଲମାନ ପ୍ରଧାନ ଦେଶରେ ସାଧାରଣତଃ ଯାହା ଆଦାୟ ହେଉଥିଲା, ସେଇ ଜାକାତ୍ (ଅର୍ଥାତ୍, ବଣିକ, କାରିଗରମାନଙ୍କର ଦେୟ ପ୍ରତିଟି ପଣ୍ୟ ଓ ଉତ୍ପନ୍ନ ଦ୍ରବ୍ୟର ମୂଲ୍ୟର ୨.୫ ଶତାଂଶ ଏବଂ ତାହା ମୁଦ୍ରାରେ ଦେୟ) ବ୍ୟତୀତ ପ୍ରାପ୍ତ ମୂଳ ଲିଖିତ ପ୍ରମାଣଗୁଡ଼ିକ ଅନୁଯାୟୀ ଦିଲ୍ଲୀର ସୁଲତାନ୍ ରାଜତ୍ୱରେ ଆଦାୟ କରାଯାଉଥିଲା କୋତ୍‌ଓ୍ୱାଲି (ସହରର ଶାସକ ପ୍ରତିନିଧିମାନଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ କରି ଦିଆଯାଇଥିବା କର) ଏବଂ ସହରଗୁଡ଼ିକର ପ୍ରବେଶ ଦ୍ୱାରରେ ଏବଂ ନଦୀର ଘାଟଗୁଡ଼ିକରେ ପାରି ହେବା ପାଇଁ ବିଭିନ୍ନ ଖଜଣା, ଆଦି ।

ଇତିହାସର ଏହି ପର୍ବରେ ନୂଆ ନୂଆ ସହରର ନାମ ଇତିବୃତ୍ତଗୁଡ଼ିକରେ ଉଲ୍ଲେଖ ଥିବାର ଦେଖାଯାଏ ଏବଂ ତତ୍ ସଙ୍ଗେ ସଙ୍ଗେ ମିଳେ ପୁରୁଣା ସହରଗୁଡ଼ିକର ସଂପ୍ରସାରଣ, ସଂହତି ସାଧନ ଏବଂ ନବାୟନର ଘନ ଘନ ଉଲ୍ଲେଖ । ପ୍ରାୟ ସମସ୍ତ କ୍ଷେତ୍ରରେ ଏହି ବିଷୟଟି ଘଟୁଥିଲା ପ୍ରଶାସନ କେନ୍ଦ୍ର ଓ ସେନାବାହିନୀର ସହର କେନ୍ଦ୍ରଗୁଡ଼ିକରେ । କାରଣ, ବଣିକ ଏବଂ କାରିଗରମାନେ ପ୍ରଧାନତଃ ବ୍ୟସ୍ତ ରହୁଥିଲେ ସାମନ୍ତ ଭୂସ୍ୱାମୀ ଏବଂ ସେମାନଙ୍କ ସୈନ୍ୟଦଳମାନଙ୍କର ଚାହିଦା ମେଣ୍ଟାଇବା କାର୍ଯ୍ୟରେ । ତଥାକଥିତ "ଧର୍ମ ସ୍ଥାନଗୁଡ଼ିକରେ", ଯେଉଁଠି ତୀର୍ଥଯାତ୍ରୀମାନେ ଜମାୟତ ହେଉଥିଲେ ଏବଂ ମେଳା ବସୁଥିଲା, ସେଠାରେ ମଧ୍ୟ ସହର ସ୍ଥାପନ କରାଯାଉଥିଲା । କ୍ରମେ କ୍ରମେ ଏହିସବୁ ସହର କେନ୍ଦ୍ରର ଜନସଂଖ୍ୟା ବଢ଼ି ଉଠିଥିଲା । ତେବେ ସେପର୍ଯ୍ୟନ୍ତ ପତନ ମୁଖୀ ଭୂସ୍ୱାମୀମାନେ

ଥିଲେ ଏହିସବୁ ସହରର ପ୍ରଶାସନର ଭାରପ୍ରାପ୍ତ; ସେଇମାନେ ହିଁ ପ୍ରାୟ ହେଉଥିଲେ ସେଠାକାର ପାନ୍ଥଶାଳା ଓ କାରିଗରମାନଙ୍କର ଅସ୍ଥାୟୀ ଦୋକାନଗୁଡ଼ିକର ମାଲିକ ଏବଂ ସେଇମାନେ ହିଁ ବଜାରର ଦେୟ ଶୁଳ୍କ ନିର୍ଦ୍ଦିଷ୍ଟ କରି ଦେଉଥିଲେ । କେବଳ ହିନ୍ଦୁମାନଙ୍କର ଜାତିଗତ ବେଉସାଗୁଡ଼ିକ ମଧ୍ୟରେ ସ୍ୱାୟତ୍ତଶାସନର ଯାହା କିଛି ଲକ୍ଷଣ ଦେଖାଯାଉଥିଲା । ସଂପତ୍ତି ବ୍ୟାପାରରେ ସହରର ଜନସାଧାରଣଙ୍କର ସ୍ୱତ୍ୱ ମାଲିକାନାର କୌଣସି ନିରାପତ୍ତା ନଥିଲା । ସାମନ୍ତ ଭୂସ୍ୱାମୀମାନେ ଖୁସି ମୁତାବକ ଘରବାଡ଼ି ବା ଜମିର ଖଜଣା ବଢ଼େଇ ଦେଇ ପାରୁଥିଲେ, କିମ୍ବା ବଣିକମାନଙ୍କୁ ବାଧ୍ୟ କରୁଥିଲେ, ସେମାନଙ୍କ ଇଚ୍ଛା ମୁତାବକ ଧାର୍ଯ୍ୟକରା ଦରରେ ଜିନିଷପତ୍ର ବିକ୍ରି କରୁଥିଲେ । ସାମନ୍ତ ଭୂସ୍ୱାମୀମାନଙ୍କର ଏହି କର୍ତ୍ତୃତ୍ୱ ବିଶେଷ ରକମର ସ୍ୱେଚ୍ଛାଚାରିତା ଓ ନିପୀଡ଼ନର ରୂପ ଧାରଣ କରିଥିଲା ଆଲ୍ଲା ଉଦ୍ଦିନ୍ ଓ ମହମ୍ମଦ ତୁଘଲକଙ୍କ ରାଜତ୍ୱକାଳରେ । ତେଣୁ ଏହି ସମୟରେ ସହରର ଜନସାଧାରଣଙ୍କ ମଧ୍ୟରେ ଯେ ଅସନ୍ତୋଷ ଏବଂ ଆନ୍ଦୋଳନ ଦେଖା ଦେଲା ଏବଂ ବିଭିନ୍ନ ଧରଣର ଧର୍ମବିରୋଧୀ ମତ ପ୍ରଚାର ମଧ୍ୟ ଦେଇ ତାହା ପ୍ରକାଶ ପାଇଲା ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

କୃଷକମାନଙ୍କ କ୍ଷେତ୍ରରେ ଅତ୍ୟାଚାର ଉତ୍ପୀଡ଼ନ ବିରୁଦ୍ଧରେ ସେମାନଙ୍କ ପ୍ରତିବାଦ ସ୍ୱରୂପ ସେମାନେ ଗ୍ରାମ ଛାଡ଼ି ପଳାଇ ଯାଉଥିଲେ । ତତ୍କାଳୀନ ଇତିବୃତ୍ତଗୁଡ଼ିକ ସର୍ବତ୍ର ଲେଖିଥିଲେ ଦରବାରର ଇତିହାସବେତ୍ତାମାନେ, ତେଣୁ ସେସବୁଥିରେ "ଦସ୍ୟୁ ଉପଜାତିଗୁଡ଼ିକର" ଏବଂ "ଡକାଏତ୍ ଦଳଗୁଡ଼ିକର" ସଂକ୍ଷିପ୍ତ ଉଲ୍ଲେଖ ଦେଖିବାକୁ ମିଳେ, ଯେଉଁମାନେ ଅନେକ ସମୟରେ ପଳେଇ ଯାଇ ଜଙ୍ଗଲରେ ଆଶ୍ରୟ ନେଉଥିଲେ । ଖୁବ୍ ସମ୍ଭବତଃ, ଏହିସବୁ "ଉପଜାତି" ବା "ଦଳର" ଲୋକେ ଥିଲେ ଗ୍ରାମତ୍ୟାଗୀ କୃଷକ ।

ଏହି ଯୁଗରେ ଯେଉଁ କୃଷକ ବିଦ୍ରୋହଟି କଥା ଅପେକ୍ଷାକୃତ ବିସ୍ତାରିତ ଭାବେ ବର୍ଣ୍ଣିତ ହୋଇଛି, ସେ ହେଉଛି ୧୪୧୯ ମସିହାରେ ପଞ୍ଜାବରେ ସାରେଙ୍ଗ୍ ନାମକ ଏକ ବ୍ୟକ୍ତିଙ୍କ ନେତୃତ୍ୱରେ "ଅଜ୍ଞ ପ୍ରଜାବୃନ୍ଦ ଓ ଅଜ୍ଞତାରେ ଆଚ୍ଛନ୍ନ ଲୋକମାନଙ୍କର" ବିଦ୍ରୋହ । ପଞ୍ଜାବର ସାମନ୍ତ ଭୂସ୍ୱାମୀମାନେ ସାରେଙ୍ଗ୍‌ଙ୍କ ବିରୁଦ୍ଧରେ ସେମାନଙ୍କ ସୈନ୍ୟଦଳ ପଠାଇଥିଲେ । ସିର୍‌ହିନ୍ଦ୍ ନିକଟରେ ଏକ ଯୁଦ୍ଧରେ ସାରେଙ୍ଗ୍‌ଙ୍କ ଦଳବଳ ପରାଜିତ ହୋଇଥିଲେ ଏବଂ ସାରେଙ୍ଗ୍ ପାହାଡ଼ ଅଞ୍ଚଳକୁ ପଳାୟନ କରିଥିଲେ । କିନ୍ତୁ ଅସନ୍ତୁଷ୍ଟ କୃଷକକୁଳ ପୁଣି ଥରେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କ ନେତୃତ୍ୱରେ ପୁଣି ସମବେତ ହେବାକୁ ଆରମ୍ଭ କରିଥିଲେ । ଶେଷକୁ ଏକମାତ୍ର ତତ୍କାଳୀନ ଦିଲ୍ଲୀର ସୁଲତାନ୍ ଖିଜ୍‌ର୍ ଖାଁଙ୍କ ସେନାବାହିନୀ ସାରେଙ୍ଗ୍ ଓ ତାଙ୍କ ବାହିନୀକୁ ଚୂଡ଼ାନ୍ତ ଭାବେ ପରାସ୍ତ କରିବାକୁ ସମର୍ଥ ହୋଇଥିଲେ । ସାରେଙ୍ଗ୍ ବନ୍ଦୀ ହେଲେ, ତାଙ୍କୁ ପ୍ରାଣଦଣ୍ଡ ଦିଆଗଲା ।

# ଦକ୍ଷିଣ ଏବଂ ପଶ୍ଚିମ ଭାରତ

## ବାହ୍ମନି ରାଜ୍ୟ

ଦାକ୍ଷିଣାତ୍ୟ ଅଳ୍ପ କିଛି କାଳ ପାଇଁ ଦିଲ୍ଲୀ ସୁଲତାନ୍ ଶାସନର ଅନ୍ତର୍ଭୁକ୍ତ ହୋଇଥିଲା । ମହମ୍ମଦ ତୁଘଲକ ଦକ୍ଷିଣ ଭାରତ ଛାଡ଼ି ଯିବା ସଙ୍ଗେ ସଙ୍ଗେ ସେଠାକାର ବିଦ୍ରୋହୀ ଅମିର୍‌ମାନେ ସେମାନଙ୍କର

ଅନ୍ୟତମ ସେନାଧ୍ୟକ୍ଷ ଆବୁଲ ମୁଜଫ୍‌ଫର ଆଲ ଉଦ୍ଦିନ୍ ବାହ୍‌ମନଙ୍କୁ (୧୩୪୭-୧୩୫୮ ଖ୍ରୀଷ୍ଟାବ୍ଦ) ସୁଲତାନ୍ ବୋଲି ଘୋଷଣା କରିଥିଲେ । ଏହି ବାହ୍‌ମନ ହିଁ ହେଲେ ବାହ୍‌ମନି ସୁଲତାନ୍ ବଂଶର ପ୍ରତିଷ୍ଠାତା । ବାହ୍‌ମନି ବଂଶ କ୍ଷମତାର ଶୀର୍ଷଦେଶରେ ପହଞ୍ଚିଲା ବେଳେ ଏହି ରାଜ୍ୟର କର୍ତ୍ତୃତ୍ୱ ବିସ୍ତୃତ ଥିଲା ପଶ୍ଚିମରେ ଆରବ ସାଗରଠୁ ପୂର୍ବରେ ଓଡ଼ିଶା ପର୍ଯ୍ୟନ୍ତ । ଏହି ରାଜ୍ୟର ଉତ୍ତର ସୀମାନ୍ତ ଥିଲା ତାପ୍ତୀ ନଦୀ ଏବଂ ଦକ୍ଷିଣରେ କୃଷ୍ଣା ଓ ତୁଙ୍ଗଭଦ୍ରା । ଏ ରାଜ୍ୟର ଦକ୍ଷିଣରେ ପ୍ରତିଷ୍ଠିତ ହୋଇଥିଲା ବିଜୟନଗର ରାଜ୍ୟ । ଏହି ଦୁଇ ରାଜ୍ୟର ମଧ୍ୟବର୍ତ୍ତୀ ଶସ୍ୟ ସଂପଦରେ ସମୃଦ୍ଧ ଉର୍ବର ରାଇଚୁର ଉପତ୍ୟକା ଅଞ୍ଚଳଟିକୁ ଦଖଲ କରିବା ପାଇଁ ବାହ୍‌ମନି ରାଜ୍ୟର ସେନାବାହିନୀ ବିଜୟନଗର ବିରୁଦ୍ଧରେ ଦୀର୍ଘସ୍ଥାୟୀ ଯୁଦ୍ଧ ଚଳେଇଥିଲେ । ବାହ୍‌ମନିର ଦକ୍ଷିଣ ଦେଶାଭିମୁଖୀ ଅଭିଯାନଗୁଡ଼ିକ ସଫଳ ହୋଇଥିଲା । ଏହା ତା'ର ସମଗ୍ର ସାମ୍ରାଜ୍ୟଟିକୁ ଚାରିଟି ପ୍ରତିନିଧି ଶାସିତ ଅଞ୍ଚଳରେ (ବା ତରଫ୍), ଯଥା, ଗୁଲ୍‌ବର୍ଗା, ଦୌଲତାବାଦ, ବିଦର୍ ଓ ବେରାରେ ବିଭକ୍ତ କରିଥିଲେ ଏବଂ ଗୁଲ୍‌ବର୍ଗାକୁ ନୂଆ କରି ଆହ୍‌ସନାବାଦ ନାମ ଦେଇ ତା'ର ରାଜଧାନୀ କରିଥିଲେ (ବାହ୍‌ମନଙ୍କ ମୃତ୍ୟୁ ପରେ ଆହ୍‌ସନାବାଦ ନାମଟି ରଦ୍ କରି ଦେଇ ଗୁଲ୍‌ବର୍ଗା ନାମ ରଖାଯାଇଥିଲା) ।

ବାହ୍‌ମନି ରାଜ୍ୟର ରାଜନୈତିକ ଜୀବନ ନିର୍ଦ୍ଧାରିତ ହୋଇଥିଲା ବିଜୟନଗର ବିରୁଦ୍ଧରେ ବହୁବିଧ ଯୁଦ୍ଧ ଏବଂ ମୁସଲିମ୍ ସାମନ୍ତ ଭୂସ୍ୱାମୀମାନଙ୍କର ଦୁଇଟି ଗୋଷ୍ଠୀ ମଧ୍ୟରେ ଆଭ୍ୟନ୍ତରୀଣ ବିବାଦ ମଧ୍ୟ ଦେଇ । ଏହି ଦୁଇଟି ଗୋଷ୍ଠୀ ପରିଚିତ ଥିଲେ "ଦକ୍ଷିଣୀ" (ଦାକ୍ଷିଣାତ୍ୟରେ ଯେଉଁମାନେ ତାଙ୍କ ପୂର୍ବରୁ ଦୀର୍ଘ କାଳ ଧରି ବାସ କରି ଆସିଥିଲେ, ସେଇସବୁ ମୁସଲମାନଙ୍କର ବଂଶଧରଗଣ) ଏବଂ "ପରଦେଶୀ" (ଅର୍ଥାତ୍, ପାରସ୍ୟ ଓ ଅନ୍ୟାନ୍ୟ ଦେଶରୁ ଯେଉଁସବୁ ବିଦେଶୀ ସଂପ୍ରତି ଆସିଥିଲେ) ନାମରେ । ଏହି ବିରୋଧର ତୀବ୍ରତା ବୃଦ୍ଧି ପାଇଥିଲା ଧର୍ମୀୟ କାରଣରୁ ମଧ୍ୟ, କାରଣ ପରଦେଶୀମାନେ ଥିଲେ ପ୍ରଧାନତଃ ସିୟାମତାବଲମ୍ବୀ ମୁସଲମାନ ଏବଂ ଦକ୍ଷିଣୀମାନେ ଅଧିକାଂଶ ଥିଲେ ସୁନ୍ନିମତାବଲମ୍ବୀ । ଦକ୍ଷିଣୀ ଗୋଷ୍ଠୀର ଦୁର୍ଦ୍ଦାନ୍ତ ଶାସକ ଆହ୍‌ମଦ ଶାହ୍ ବାହ୍‌ମନି (୧୪୨୨-୧୪୩୫ ଖ୍ରୀଷ୍ଟାବ୍ଦ) ବିଜୟନଗର ରାଜ୍ୟ ଲୁଣ୍ଠନ କରି ଛାରଖାର କରି ଦେଇଥିଲେ । ସେ ରାଜ୍ୟର ରାଜଧାନୀ ବିଦର୍‌କୁ ସ୍ଥାନାନ୍ତରିତ କରି ନେଇଥିଲେ ।

ବାହ୍‌ମନି ରାଜ୍ୟର ସର୍ବାପେକ୍ଷା ସମୃଦ୍ଧିର ସମୟ ଆସିଥିଲା ସେଇ ପର୍ଯ୍ୟାୟରେ ଯେତେବେଳେ ରାଜ୍ୟର ଶାସନଭାର ନ୍ୟସ୍ତ ଥିଲା ଉଜିର ମାହ୍‌ମୁଦ୍ ଗାଓୟାନ୍‌ଙ୍କ (୧୪୪୬-୧୪୮୧ ଖ୍ରୀଷ୍ଟାବ୍ଦ) ଉପରେ । ସେ ମାଳବ ରାଜ୍ୟ ଏବଂ କଙ୍କଣ ପ୍ରଦେଶର ବହୁ କ୍ଷୁଦ୍ର ହିନ୍ଦୁ ରାଜାଙ୍କର ରାଜ୍ୟ ଜୟ କରିଥିଲେ ଏବଂ ବିପୁଳ ଦେବୋତ୍ତର ସଂପତ୍ତି ପାଇଁ ପ୍ରସିଦ୍ଧ କାଞ୍ଚିରେ ହିନ୍ଦୁ ମନ୍ଦିର ଲୁଣ୍ଠନ କରିଥିଲେ ଏବଂ ଗୋଆ ଅଞ୍ଚଳ ଜୟ କରି ନେଇଥିଲେ । କିନ୍ତୁ ସେ ଥିଲେ ଜଣେ ପରଦେଶୀ, ତେଣୁ ଦକ୍ଷିଣୀମାନେ ତାଙ୍କ କୁତ୍ସା ରଟନାରେ ଉନ୍ମୁଖ ହୋଇ ଉଠିଥିଲେ ଏବଂ ଉପରୋକ୍ତ ରାଜ୍ୟଗୁଡ଼ିକୁ ଜୟ କରିବାର ଅବ୍ୟବହିତ ପରେ ମଦ୍ୟପାନରେ ପ୍ରମତ୍ତ ଅବସ୍ଥାରେ ତତ୍କାଳୀନ ସୁଲତାନ୍‌ଙ୍କ ନିକଟରୁ ହୁକୁମ ଆଦାୟ କରି ବୃଦ୍ଧ ଉଜିରଙ୍କ ହତ୍ୟା କରାଗଲା । ଏହି ମାହ୍‌ମୁଦ୍ ଗାଓୟାନ୍‌ଙ୍କ ଶାସନ କାଳରେ ରୁଷ୍ ଦେଶର ତ୍‌ଭେର ସହରର ବଣିକ ଆଫାନାସି ନିକିତିନ୍ ବିଦର ଗସ୍ତ କରିଥିଲେ । ନିକିତିନ୍ ବାହ୍‌ମନି ରାଜ୍ୟର ପ୍ରକାଣ୍ଡ ସେନାବାହିନୀ, ଅଭିଜାତ ଅମିର୍ ପାରିଷଦବର୍ଗଙ୍କର ବିଳାସ ବହୁଳ ଜୀବନ ଏବଂ ଅବଶିଷ୍ଟ ଜନସାଧାରଣଙ୍କର ଦାରିଦ୍ର୍ୟର କଥା ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି,

"ଦେଶରେ ପ୍ରଚୁର ଲୋକ ସଂଖ୍ୟା , ଗ୍ରାମର ଲୋକେ ଅତ୍ୟନ୍ତ ସ୍ୱଳ୍ପ ଓ ଜୀର୍ଣ୍ଣ ପୋଷାକ ପିନ୍ଧିଛନ୍ତି , ଅଥଚ ଅମିର୍ ସାମନ୍ତମାନେ ଯେମିତି ପ୍ରବଳ ପ୍ରତାପୀ , ସେଇମିତି ଅତ୍ୟନ୍ତ ଧନୀ ।"

ସାମନ୍ତ ଭୂସ୍ୱାମୀମାନଙ୍କ ମଧ୍ୟରେ କଳହ ବିବାଦ ଏବଂ ସେସବୁର ପରିଣତି ସ୍ୱରୂପ ଗୃହ ଯୁଦ୍ଧ ରାଜ୍ୟଟିକୁ ଦୁର୍ବଳ କରି ଦେଇଥିଲା । ଷୋଡ଼ଶ ଶତାବ୍ଦୀରେ ବାହ୍‌ମନି ରାଜ୍ୟର ପତନ ଘଟିଥିଲା । ୧୪୯୦ ଖ୍ରୀଷ୍ଟାବ୍ଦରେ ବିଜାପୁର ସ୍ୱାଧୀନ ହୋଇ ଯାଇଥିଲା ଏବଂ ଏହି ରାଜ୍ୟଟିକୁ ଶାସନ କରିଥିଲେ ଆଦିଲ୍ ଶାହୀ ରାଜବଂଶ । ଏହାର କେତେ ମାସ ମଧ୍ୟରେ ବେରାର ଓ ଆହମଦ୍‌ନଗର ମଧ୍ୟ ସ୍ୱାଧୀନତା ଘୋଷଣା କଲେ ଏବଂ ଏହି ଅଞ୍ଚଳର ଶାସନକ୍ଷମତା ଗ୍ରହଣ କଲେ ନିଜାମ ଶାହୀ ବଂଶ । ୧୫୧୨ ଖ୍ରୀଷ୍ଟାବ୍ଦରେ ଗୋଲ୍‌କୋଣ୍ଡା ସ୍ୱାଧୀନ ହେଲା । ସେଠାରେ କ୍ଷମତାସୀନ ହେଲେ କୁତ୍‌ବଶାହୀ ବଂଶ । ୧୫୨୫ ଖ୍ରୀଷ୍ଟାବ୍ଦରେ ସମସ୍ତ ପ୍ରକାରର ପ୍ରକୃତ କ୍ଷମତାରୁ ବଞ୍ଚିତ ଶେଷ ବାହ୍‌ମନି ସୁଲତାନ୍ ବିଜାପୁରକୁ ପଳାୟନ କରିଥିଲେ । ତାଙ୍କ ଉପଦେଷ୍ଟା କାଶିମ୍ ବାରିଦ୍ ନିଜକୁ ବିଦରର ରାଜା ରୂପେ ଘୋଷଣା କଲେ ।

## ବିଜାପୁର

ବାହ୍‌ମନି ରାଜ୍ୟର ଧ୍ୱଂସାବଶେଷରୁ ଯେଉଁ ପାଞ୍ଚଟି ରାଜ୍ୟର (ବିଜାପୁର , ଗୋଲ୍‌କୋଣ୍ଡା , ଆହମଦ୍‌ନଗର , ବିଦର ଓ ବେରାର) ଉତ୍‌ଥାନ ଘଟିଥିଲା , ସେମାନଙ୍କ ମଧ୍ୟରେ ବୃହତ୍ତମ ଥିଲା ବିଜାପୁର ରାଜ୍ୟଟି । ଏହି ଯୁଗର ଦାକ୍ଷିଣାତ୍ୟର ଇତିହାସ ଏହି ରାଜ୍ୟଗୁଡ଼ିକ ସହିତ ବିଜୟନଗରର ଏବଂ ଏହି ପାଞ୍ଚଟି ରାଜ୍ୟ ମଧ୍ୟରେ ଯୁଦ୍ଧବିଗ୍ରହର ଘଟଣାସମୂହ ଦ୍ୱାରା ପରିପୂର୍ଣ୍ଣ । ଯଦିଓ ଏହିସବୁ ରାଜ୍ୟର ଶାସକମାନେ ଥିଲେ ଧର୍ମାନ୍ଧ ମୁସଲମାନ ଏବଂ ବିଜିତ ଭୂଖଣ୍ଡଗୁଡ଼ିକର ହିନ୍ଦୁ ଜନସାଧାରଣଙ୍କ ଉପରେ ଉତ୍ପୀଡ଼ନ ଚଳାଉଥିଲେ , ତେବେ ବିଜୟନଗର ବିରୁଦ୍ଧରେ ଓ ରାଜ୍ୟଗୁଡ଼ିକ ମଧ୍ୟରେ ଅନବରତ ଯୁଦ୍ଧ ଲାଗି ରହିଥିଲା ଏବଂ ଏହା ଚାଲିଥିଲା ରାଜନୈତିକ କାରଣରୁ , ଧର୍ମୀୟ କାରଣରୁ ନୁହେଁ । ସେତେବେଳେ ଦାକ୍ଷିଣାତ୍ୟର ଅନ୍ୟାନ୍ୟ ରାଜ୍ୟ ବିଜୟନଗରର ହିନ୍ଦୁ ରାଜାଙ୍କ ସହିତ ସେମାନଙ୍କ ପ୍ରତିଦ୍ୱନ୍ଦ୍ୱୀ ମୁସଲିମ୍ ରାଜ୍ୟ ବିରୁଦ୍ଧରେ ମୈତ୍ରୀ ଚୁକ୍ତିରେ ଆବଦ୍ଧ ହେଉଥିଲେ । ତେବେ ଏହି ଧରଣର ମୈତ୍ରୀ ଚୁକ୍ତି ସର୍ବଦା ବଡ଼ ଅସ୍ଥାୟୀ ଧରଣର ଥିଲା , ତଦୁପରି ମୁସଲିମ୍ ରାଜାମାନଙ୍କର ଶାସିତ ରାଜ୍ୟଗୁଡ଼ିକରେ ଯୋଦ୍ଧା ଏବଂ ରାଜକର୍ମଚାରୀମାନେ ଅଧିକାଂଶ କ୍ଷେତ୍ରରେ ଥିଲେ ହିନ୍ଦୁ ଏବଂ ଏଥି ସଙ୍ଗେ ସଙ୍ଗେ ବିଜୟନଗର ରାଜ୍ୟରେ ବହୁ ସଂଖ୍ୟକ ମୁସଲମାନ ରାଜକର୍ମଚାରୀ ନିଯୁକ୍ତ ଥିଲେ । ବସ୍ତୁତଃ , ଏହିସବୁ ଏବଂ ଅନ୍ୟାନ୍ୟ ଭାରତୀୟ ରାଜ୍ୟରେ ସେତେବେଳେ ଜନସଂଖ୍ୟାର ବିପୁଳ ସଂଖ୍ୟାଧିକ ଅଂଶ ଥିଲେ ହିନ୍ଦୁ ଧର୍ମାବଲମ୍ବୀ । ଏହି କାରଣରୁ ସ୍ମରଣ ରଖିବା ଦରକାର ଯେ , ଏହି ଯୁଗର ଯେଉଁସବୁ ରାଜ୍ୟକୁ ମୁସଲମାନ ରାଜ୍ୟ ବୋଲି ଅଭିହିତ କରାଯାଇଛି , ସେସବୁକୁ କରାଯାଇଛି ରାଷ୍ଟ୍ରୀୟ ଧର୍ମାନୁଯାୟୀ , ଯାହାକୁ ସେଇସବୁ ରାଷ୍ଟ୍ରର ଶାସନ କର୍ତ୍ତା ଓ ଅମିର୍ ସାମନ୍ତମାନେ ଜବରଦସ୍ତ ଜନସାଧାରଣଙ୍କ ଉପରେ ଚପେଇ ଦେଉଥିଲେ ।

୧୫୧୦ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜ୍‌ମାନେ ଗୋଆ ଦ୍ୱୀପଟିକୁ ଦଖଲ କରି ନେଲେ ବିଜାପୁର ରାଜ୍ୟ

ସେମାନଙ୍କୁ ରୋକିବାକୁ ଅସମର୍ଥ ହୋଇଥିଲ । ଏହି ଭାବେ ଗୋଆ ପ୍ରାଚ୍ୟ ଦୁନିଆରେ ପର୍ତ୍ତୁଗୀଜ୍ ଅଧିକୃତ ଅଞ୍ଚଳର ହୃତ୍‌କେନ୍ଦ୍ରରେ ପରିଣତ ହେଲ । ବିଜାପୁର ବିରୁଦ୍ଧରେ ଯୁଦ୍ଧରେ ଶୃଙ୍ଖଳା ପରାୟଣ ଓ ତତ୍‌କାଳୀନ ୟୁରୋପରେ ପ୍ରଚଳିତ ରୀତି ଅନୁଯାୟୀ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଛୋଟ ଛୋଟ ପର୍ତ୍ତୁଗୀଜ୍ ବାହିନୀ ବାରମ୍ବାର ବିଜାପୁରର ବିରାଟ ସେନାବାହିନୀ ଠାରୁ ସେମାନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ସମର୍ଥ ହୋଇଥିଲେ । ବିଜାପୁରର ଶାସକମାନେ ଏହିସବୁ ପର୍ତ୍ତୁଗୀଜ୍ ବାହିନୀକୁ ସେମାନଙ୍କ ସୈନ୍ୟଦଳରେ କାର୍ଯ୍ୟ କରିବା ପାଇଁ ଆମନ୍ତ୍ରଣ ଜଣାଇଥିଲେ ଏବଂ ଏହା ପରେ ସେମାନଙ୍କୁ ବ୍ୟବହାର କରିଥିଲେ ବିଜୟନଗର ବିରୁଦ୍ଧରେ ବିଭିନ୍ନ ଯୁଦ୍ଧରେ ।

୧୫୬୫ ଖ୍ରୀଷ୍ଟାବ୍ଦରେ ଦାକ୍ଷିଣାତ୍ୟର ଉପରୋକ୍ତ ପାଞ୍ଚଟି ରାଜ୍ୟ ବିଜୟନଗର ବିରୁଦ୍ଧରେ ମୈତ୍ରୀ ଚୁକ୍ତିରେ ଆବଦ୍ଧ ହୋଇଥିଲେ । ଏହା ପରେ କୃଷ୍ଣା ନଦୀ ତୀରରେ ତାଲିକୋଟାରେ ଯେଉଁ ଯୁଦ୍ଧ ହେଲ, ସେଥିରେ ବିଜୟନଗର ପରାସ୍ତ ହେଲ । ଏହି ଯୁଦ୍ଧର ଫଳ ସ୍ୱରୂପ ପତନ ଘଟିଥିଲ ବିଜୟନଗର ସାମ୍ରାଜ୍ୟର । ଏହାର ପାଞ୍ଚ ବର୍ଷ ପରେ ବିଜାପୁର ଆଉ ଗୋଟିଏ ମୈତ୍ରୀ ଚୁକ୍ତି କରିଥିଲ ଆହମଦ୍‌ନଗର ଓ କାଲିକଟ ସହିତ, ପର୍ତ୍ତୁଗୀଜ୍‌ମାନଙ୍କ ବିରୁଦ୍ଧରେ । ଏଥରକ ପ୍ରାୟ ତିନି ଲକ୍ଷ ବିଶିଷ୍ଟ ଏକ ଭାରତୀୟ ବାହିନୀ ମାତ୍ର କେଇ ହଜାର ପର୍ତ୍ତୁଗୀଜ୍ ସୈନ୍ୟବିଶିଷ୍ଟ ଗୋଆ ଓ ଚୌଲ ବନ୍ଦର ଦୁଇଟିକୁ ଅବରୋଧ କରିଥିଲେ । କିନ୍ତୁ ବନ୍ଦର ଦୁଇଟିକୁ ଜୟ କରିବାକୁ ଅସମର୍ଥ ହୋଇଥିଲେ । ଷୋଡ଼ଶ ଶତାବ୍ଦୀର ଶେଷ ଆଡ଼କୁ ମୋଗଲ ବାହିନୀ ଦାକ୍ଷିଣାତ୍ୟରେ ଅନୁପ୍ରବେଶ କରିବାକୁ ଆରମ୍ଭ କରିଥିଲେ ।

## ଗୋଲ୍‌କୋଣ୍ଡା

ଦାକ୍ଷିଣାତ୍ୟର ଦ୍ୱିତୀୟ ବୃହତ୍ତମ ସୁଲତାନ୍ ରାଜତ୍ୱ ପ୍ରତିଷ୍ଠିତ ହୋଇଥିଲ ଗୋଲ୍‌କୋଣ୍ଡାରେ । ଗୋଲ୍‌କୋଣ୍ଡା ଥିଲ ଏକ ସମୃଦ୍ଧ ରାଜ୍ୟ ଏବଂ ସମୁଦ୍ର ପଥରେ ତା'ର ବିପୁଳ ପରିମାଣର ବହିର୍ବାଣିଜ୍ୟ ଚାଲୁଥିଲ । ଏଠାକାର ବିଭିନ୍ନ କାରୁଶିଳ୍ପ, ବିଶେଷ କରି ବସ୍ତ୍ରଶିଳ୍ପ ସୁଉନ୍ନତ ଥିଲ ଏବଂ ବହୁ ଶାଖା ବିଶିଷ୍ଟ ଜଳସେଚନ ପ୍ରଣାଳୀର ବିକଶିତ ବ୍ୟବସ୍ଥା ହେତୁ କୃଷିରୁ ପ୍ରଚୁର ଫସଲ ଆମଦାନି ହେଉଥିଲ । ଏହା ଛଡ଼ା ଗୋଲକୋଣ୍ଡାର ଥିଲ ସୁବିଖ୍ୟାତ ହୀରା ଖଣି । ଗୋଲ୍‌କୋଣ୍ଡାର ତନ୍ତୁବାୟ ଏବଂ କର୍ମକାରମାନେ ବିଶେଷ ଧରଣର ବସ୍ତ୍ର ବୁଣା ଏବଂ ଚମତ୍କାର ଇସ୍‌ପାତ ନିର୍ମାଣ ପାଇଁ ଖ୍ୟାତି ଲଭ କରିଥିଲେ । ଗୋଲ୍‌କୋଣ୍ଡାରୁ ତରବାରି, ତୀର ଏବଂ ଅନ୍ୟାନ୍ୟ ଧରଣର ଇସ୍‌ପାତ ନିର୍ମିତ ଅସ୍ତ୍ରଶସ୍ତ୍ର ବିଦେଶକୁ ରପ୍ତାନି ହେଉଥିଲ । କୁତ୍‌ବ ରାଜବଂଶର ସୁଲତାନ୍‌ମାନେ ଏକ ପାହାଡ଼ର ଚୂଡ଼ାରେ ଗୋଲ୍‌କୋଣ୍ଡାର ବିଶାଳ ଦୁର୍ଗଟି ନିର୍ମାଣ କରିଥିଲେ । ଏହି ପାହାଡ଼ର ପାଦଦେଶରେ ଥିଲ ଗୋଲ୍‌କୋଣ୍ଡା ସହରଟି । ଏହି ରାଜ୍ୟର ଗୁରୁତ୍ୱପୂର୍ଣ୍ଣ ପଦବିଗୁଡ଼ିକ ଥିଲ "ପରଦେଶୀମାନଙ୍କ" ହାତରେ ; ହିନ୍ଦୁ ବଣିକ ଏବଂ ସାହୁକାରମାନେ ଏଠାରେ ଯଥେଷ୍ଟ ପ୍ରଭାବଶାଳୀ ଥିଲେ । ଗୋଲ୍‌କୋଣ୍ଡା ରାଜ୍ୟରେ ବାସ କରୁଥିବା ହିନ୍ଦୁମାନେ ଦାକ୍ଷିଣାତ୍ୟର ଅନ୍ୟାନ୍ୟ ମୁସଲମାନ ରାଜ୍ୟରେ ବାସ କରୁଥିବା ହିନ୍ଦୁ ପ୍ରଜାମାନଙ୍କ ଭଳି ଉତ୍ପୀଡ଼ିତ ହେଉ ନଥିଲେ ।

# ଗୁଜରାଟ

ଭାରତର ପଶ୍ଚିମରେ ଆଉ ଏକ ମୁସଲମାନ ରାଜବଂଶ ଶାସିତ ସମୃଦ୍ଧିଶାଳୀ ରାଜ୍ୟ ଥିଲା ଗୁଜରାଟ । ଗୁଜରାଟକୁ, ଅବଶ୍ୟ, ଗଣ୍ୟ କରାଯାଉ ନଥିଲା ଦାକ୍ଷିଣାତ୍ୟର ଅଂଶ ବୋଲି । ଦିଲ୍ଲୀର ସୁଲତାନ୍‌ମାନଙ୍କ ଦ୍ୱାରା ନିଯୁକ୍ତ ଗୁଜରାଟର ଶାସକ ପ୍ରତିନିଧି, ତୈମୁର ଲଙ୍ଗଙ୍କ ଦ୍ୱାରା ଦିଲ୍ଲୀ ବିଧ୍ୱସ୍ତ ହେଲା ପରେ, ନିଜକୁ ସ୍ୱାଧୀନ ସୁଲତାନ୍ ବୋଲି ଘୋଷଣା କରିଥିଲେ । ଏହି ସୁଲତାନ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ରାଜବଂଶଟି ଟଙ୍କ୍ ବା ଆହ୍‌ମଦ ଶାହୀ ନାମରେ ପରିଚିତ ହୋଇଥିଲା ଏବଂ ମୋଗଲମାନେ ଗୁଜରାଟ ଜୟ କରିବା ପୂର୍ବ ପର୍ଯ୍ୟନ୍ତ କ୍ଷମତାରେ ଅଧିଷ୍ଠିତ ଥିଲା । ଅର୍ଥନୈତିକ ଦିଗରୁ ଗୁଜରାଟ ଥିଲା ଭାରତର ସର୍ବାପେକ୍ଷା ଉନ୍ନତ ଅଞ୍ଚଳଗୁଡ଼ିକ ମଧ୍ୟରୁ ଅନ୍ୟତମ । କୃଷକମାନେ ଆଖୁ ଏବଂ ନୀଳ ଚାଷ କରୁଥିଲେ । ଗୁଜରାଟର ସଫେଦ ରେଶମ ଓ କାର୍ପାସ ବସ୍ତ୍ର, ମଖମଲ ଓ ତାଫ୍‌ତା ବା ଛାପା ବସ୍ତ୍ର ଭାରତ ବାହାରେ ମଧ୍ୟ ଜନପ୍ରିୟ ଥିଲା । ଗୁଜରାଟର ସମୃଦ୍ଧିର ପ୍ରଧାନ ଉତ୍ସ ଥିଲା ବୈଦେଶିକ ବାଣିଜ୍ୟ । ଭାରତର ପଶ୍ଚିମ ଉପକୂଳରେ କାମ୍ବେ ଥିଲା ପ୍ରଧାନ ବନ୍ଦର । କାମ୍ବେରୁ ବାଣିଜ୍ୟ ଜାହାଜସବୁ ଯାତ୍ରା କରୁଥିଲା ଆରବ, ଲୋହିତ ସାଗର ଏବଂ ପାରସ୍ୟ ଉପସାଗରର ବନ୍ଦରଗୁଡ଼ିକୁ । ଦକ୍ଷିଣ-ପୂର୍ବ ଏସିଆର ଦେଶଗୁଡ଼ିକର ଏବଂ ଏପରିକି ଚୀନ୍‌ର ପଣ୍ୟଦ୍ରବ୍ୟ ମଧ୍ୟ ଏହି ବନ୍ଦରରୁ କ୍ରୟ କରାଯାଉଥିଲା । ଗୁଜରାଟର ଚୀନ୍ ସହିତ ଯଦିଓ କୌଣସି ପ୍ରତ୍ୟକ୍ଷ ଯୋଗାଯୋଗ ନଥିଲା, ତେବେ ଏହିସବୁ ପଣ୍ୟଦ୍ରବ୍ୟ ମିଳିବା ସେତେବେଳେ ସମ୍ଭବ ଥିଲା । କାଳକ୍ରମେ ଗୁଜରାଟରେ ଗଢ଼ି ଉଠିଥିଲା ଆରବ ବଣିକମାନଙ୍କର ଏକ ଉପନିବେଶ ଏବଂ ପାରସ୍ୟରୁ ଆଗତ ପାରସିକମାନେ ସେଠାରେ ବସତି ସ୍ଥାପନ କରି ଆସିଥିଲେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରୁ । ଗୁଜରାଟର ବନ୍ଦରମାନଙ୍କରେ, ବିଶେଷ କରି କାମ୍ବେରେ ହିନ୍ଦୁ ଓ ମୁସଲମାନ ବଣିକମାନଙ୍କର ବଡ଼ ଏକ ସଂପ୍ରଦାୟ ଗଢ଼ି ଉଠିଥିଲା ।

ଗୁଜରାଟର ସୁଲତାନ୍‌ମାନଙ୍କ ମଧ୍ୟରେ ସବୁଠାରୁ ବିଖ୍ୟାତ ଥିଲେ ପ୍ରଥମ ଆହ୍‌ମଦ ଶାହ୍ (୧୪୧୧-୧୪୪୨ ଖ୍ରୀଷ୍ଟାବ୍ଦ) ଏବଂ ପ୍ରଥମ ମାହମୁଦ୍ ବେଗାର୍ହା (୧୪୫୮-୧୫୧୧ ଖ୍ରୀଷ୍ଟାବ୍ଦ) । ଆହ୍‌ମଦ ଶାହ୍ ଏହି ରାଜ୍ୟଟିକୁ ଶକ୍ତିଶାଳୀ କରି ଗଢ଼ି ତୋଳିଥିଲେ ଏବଂ ତାଙ୍କର ରାଜପୁତ ପ୍ରତିବେଶୀ ରାଜ୍ୟଗୁଡ଼ିକ ବିରୁଦ୍ଧରେ ସଫଳତାର ସହିତ ଯୁଦ୍ଧ ପରିଚାଳନା କରିଥିଲେ । ଯେଉଁସବୁ ରାଜପୁତ ସାମନ୍ତ ଭୂସ୍ୱାମୀ କେଇ ପୁରୁଷ ଧରି ଗୁଜରାଟ ଅନ୍ତର୍ଗତ ଭୂଖଣ୍ଡରେ ବସବାସ କରିଥିଲେ, ସେମାନେ ଆହ୍‌ମଦ ଶାହ୍‌ଙ୍କ ଆଧିପତ୍ୟ ମାନି ନେବାକୁ ବାଧ୍ୟ ହୋଇଥିଲେ । ଏହିସବୁ ଭୂସ୍ୱାମୀମାନେ ସେମାନଙ୍କ ଅଧୀନରେ ଥିବା ପୈତୃକ ଜମିଜମାର ମାତ୍ର ଏକଚତୁର୍ଥାଂଶ ବ୍ୟକ୍ତିଗତ ସଂପତ୍ତି ହିସାବରେ ରଖିବାର ଅଧିକାର ପାଇଥିଲେ ଏବଂ ଅବଶିଷ୍ଟ ତିନିଚତୁର୍ଥାଂଶ ଜମିକୁ ସୁଲତାନ୍ ସର୍ତ୍ତସମ୍ବଳିତ ଦାନ ରୂପେ ଗଣ୍ୟ କରିଥିଲେ ଏବଂ ରାଜସ୍ୱ ଦାନର ସର୍ତ୍ତ ସେଥିରେ ଆରୋପ କରିଥିଲେ । ଏହିସବୁ ଜମିର ପୂର୍ବତନ ମାଲିକମାନଙ୍କୁ ଏହା ପରେ ସରକାରଙ୍କ ଫୌଜରେ କାର୍ଯ୍ୟ କରିବାକୁ ବାଧ୍ୟ କରାଯାଉଥିଲା । ଆହ୍‌ମଦ ଶାହ୍ ଆହ୍‌ମଦାବାଦ ସହରଟିକୁ ନିର୍ମାଣ କରି ସେଠାକୁ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ । ପ୍ରଶାସନ ବ୍ୟବସ୍ଥାର ମଧ୍ୟ ସେ ଉନ୍ନତି ସାଧନ କରିଥିଲେ ।

ମାହମୁଦ୍ ବେଗାର୍ହା ତାଙ୍କ ରାଜତ୍ୱକାଳରେ ତାଙ୍କ ରାଜ୍ୟର ସୀମାକୁ ଆଉରି ପ୍ରସାରିତ କରିଥିଲେ । କଚ୍ଛ ଏବଂ କାଥିଆବାଡ଼ ବିରୁଦ୍ଧରେ ସେ ସଫଳ ଯୁଦ୍ଧାଭିଯାନ ପରିଚାଳନା କରିଥିଲେ,

ଚମ୍ପାନିର୍ ରାଜ୍ୟଟିକୁ ଜୟ କରିଥିଲେ ଏବଂ ସେତେବେଳେ ଦୁର୍ଭେଦ୍ୟ ବୋଲି ପରିଗଣିତ ରାଜପୁତମାନଙ୍କର ବିଖ୍ୟାତ ଗିର୍ଣାର ଦୁର୍ଗଟିକୁ ଦଖଲ କରି ନେଇଥିଲେ । ସେନାଧ୍ୟକ୍ଷମାନଙ୍କୁ ସେ ଯେଉଁସବୁ ଜମି ଦାନ କରିଥିଲେ, ତାହା ଚିରସ୍ଥାୟୀ ଭିତ୍ତିରେ ବଂଶପରମ୍ପରାଗତ ଭୂଖଣ୍ଡ ହିସାବରେ ହସ୍ତାନ୍ତରିତ କରାଯାଇଥିଲା । ତାଙ୍କ ରାଜତ୍ୱକାଳରେ ଭାରତର ବହୁ ଅଞ୍ଚଳରେ ଅନୁପ୍ରବେଶ କରିଥିଲେ ପର୍ତ୍ତୁଗୀଜ୍‌ମାନେ । ଆରବ ସାଗରର ଜଳପଥ ଉପରେ ସେମାନଙ୍କ କର୍ତ୍ତୃତ୍ୱ ବିସ୍ତାର କରିବାକୁ ଆରମ୍ଭ କରି ସେମାନଙ୍କ ପ୍ରତିଦ୍ୱନ୍ଦ୍ୱୀ ପ୍ରାଚ୍ୟ ଦେଶର ବଣିକମାନଙ୍କ ଜାହାଜଗୁଡ଼ିକ ଉପରେ ସେମାନେ ଜଳଦସ୍ୟୁତା ଚଳେଇଥିଲେ । ଗୁଜରାଟ ରାଜ୍ୟ ଏହାର ବିରୋଧିତା କରିଥିଲା । ମାହମୁଦ୍ ବେଗାର୍ହା ପର୍ତ୍ତୁଗୀଜ୍‌ମାନଙ୍କ ବିରୁଦ୍ଧରେ ମିଶର ସହିତ ଏକ ମୈତ୍ରୀ ଚୁକ୍ତି ସଂପନ୍ନ କରିଥିଲେ । ପ୍ରାରମ୍ଭରେ ପରିସ୍ଥିତି ମାହମୁଦ୍ ବେଗାର୍ହାଙ୍କ ଅନୁକୂଳରେ ଥିଲା, କିନ୍ତୁ ୧୫୦୯ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜ୍ ରାଜପ୍ରତିନିଧି ଆଲ୍‌ମେଇଦା ଡିଉ ନିକଟରେ ଏକ ନୌଯୁଦ୍ଧରେ ଦୟନୀୟ ଭାବେ ମିତ୍ରଶକ୍ତିର ମିଳିତ ନୌବାହିନୀକୁ ପରାସ୍ତ କରିଥିଲେ । ଫଳରେ ମାହମୁଦ୍ ବାଧ୍ୟ ହୋଇଥିଲେ ପର୍ତ୍ତୁଗୀଜ୍‌ମାନଙ୍କ ସହିତ ସନ୍ଧି ଚୁକ୍ତି କରିବାକୁ ଏବଂ କାମ୍ବେ ଉପସାଗରର ପ୍ରବେଶ ପଥରେ ସେମାନଙ୍କର ଏକ ବାଣିଜ୍ୟ କେନ୍ଦ୍ର ଖୋଲିବା ପାଇଁ ଅନୁମତି ଦେବାକୁ । ପର୍ତ୍ତୁଗୀଜ୍‌ମାନଙ୍କର ନିରନ୍ତର ଜଳଦସ୍ୟୁ ବୃତ୍ତି ଫଳରେ କାମ୍ବେର ବାଣିଜ୍ୟ ଶକ୍ତି କ୍ଷତିଗ୍ରସ୍ତ ହୋଇଥିଲା ଏବଂ ଗୁଜରାଟ ଦୁର୍ବଳ ହୋଇ ପଡ଼ିଥିଲା ।

ବାହାଦୁର ଶାହ୍‌ଙ୍କ ରାଜତ୍ୱର (୧୫୨୬-୧୫୩୭ ଖ୍ରୀଷ୍ଟାବ୍ଦ) ସମସ୍ତ ସମୟ ଅତିବାହିତ ହୋଇଥିଲା ନିରବଚ୍ଛିନ୍ନ ଯୁଦ୍ଧ ମଧ୍ୟ ଦେଇ । ୧୫୩୧ ଖ୍ରୀଷ୍ଟାବ୍ଦରେ ବାହାଦୁର ଶାହ୍ ମାଳବ ରାଜ୍ୟ ଦଖଲ କରିଥିଲେ ଏବଂ ୧୫୩୪ ଖ୍ରୀଷ୍ଟାବ୍ଦରେ ରାଜପୁତମାନଙ୍କର ସୁଦୃଢ଼ ଦୁର୍ଗ ଚିତୋର ଅଧିକାର କରିଥିଲେ । ଏହି ଯୁଦ୍ଧରେ ରାଜପୁତ ଦୁର୍ଗରକ୍ଷୀ ସୈନ୍ୟଦଳକୁ ଅସମସାହସିକତାର ସହିତ ନେତୃତ୍ୱ ଦେଇଥିଲେ ଚିତୋରର ତତ୍କାଳୀନ ନାବାଳକ ରାଣାଙ୍କ ମା, ରାଜମାତା ଜଓହିର ବାଈ । ରଣ କ୍ଷେତ୍ରରେ ରାଜମାତା ନିହତ ହେଲା ପରେ ନାବାଳକ ରାଣାଙ୍କୁ ସୁକୌଶଳରେ ବାହାର କରି ନିଆଯାଇଥିଲା । ଏହା ପରେ ଦୁର୍ଗ ମଧ୍ୟରେ ଥିବା ସମସ୍ତ ପୁରୁଷ ଉତ୍ସବର ଗେରୁଆବସନ ପିନ୍ଧି ଦୁର୍ଗ ବାହାରେ ଶତ୍ରୁ ସହିତ ପ୍ରାଣାନ୍ତକ ସଂଗ୍ରାମରେ ଯୋଗ ଦେଇଥିଲେ ଏବଂ ପ୍ରତ୍ୟେକେ ପ୍ରାଣବିସର୍ଜନ କରିଥିଲେ । ଅନ୍ୟ ଦିଗରେ, ଦୁର୍ଗ ମଧ୍ୟରେ ରହି ଯାଇଥିବା ମହିଳାମାନେ ପ୍ରାସାଦ ମଧ୍ୟରେ ଅଗ୍ନିକୁଣ୍ଡ ପ୍ରଜ୍ୱଳିତ କରି ତନ୍‌ମଧ୍ୟକୁ ଝାମ୍ପ ଦେଇ ରାଜପୁତ ଜହରବ୍ରତ ପାଳନ କରିଥିଲେ ।

ଇତି ମଧ୍ୟରେ ଗୁଜରାଟ ଉପରେ ବୃଦ୍ଧି ପାଇଥିଲା ପର୍ତ୍ତୁଗୀଜ୍‌ମାନଙ୍କ ଚାପ । ୧୫୩୫ ଖ୍ରୀଷ୍ଟାବ୍ଦରେ ବାହାଦୁର ଶାହ୍ ବାଧ୍ୟ ହୋଇଥିଲେ ପର୍ତ୍ତୁଗୀଜ୍‌ମାନଙ୍କୁ ଡିଉରେ ଏକ ଦୁର୍ଗ ନିର୍ମାଣ କରିବାକୁ ଅନୁମତି ଦେବାକୁ । ଏହାର ବିନିମୟରେ ପର୍ତ୍ତୁଗୀଜ୍‌ମାନେ ତାଙ୍କ ଶତ୍ରୁମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ତାଙ୍କୁ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ମୋଗଲ ସେନାବାହିନୀ ଗୁଜରାଟ ଆକ୍ରମଣ କଲା ବେଳେ ପର୍ତ୍ତୁଗୀଜ୍‌ମାନେ ପ୍ରତିଶ୍ରୁତି ରକ୍ଷା କରି ନଥିଲେ । ପର୍ତ୍ତୁଗୀଜ୍‌ମାନଙ୍କ ସହିତ ଏ ବିଷୟରେ ଆଲୋଚନା କରିବା ପାଇଁ ବାହାଦୁର ଶାହ୍ ପର୍ତ୍ତୁଗୀଜ୍ ରାଜପ୍ରତିନିଧିଙ୍କ ନିଜସ୍ୱ ରଣତରୀକୁ ଯାଇଥିଲେ । କିନ୍ତୁ ସେଠାରେ ବିଶ୍ୱାସଘାତକତା କରି ତାଙ୍କୁ ହତ୍ୟା କରାଯାଇଥିଲା । ତାଙ୍କ ମୃତ୍ୟୁ ପରେ ବିଭିନ୍ନ ସାମନ୍ତ ଗୋଷ୍ଠୀ ମଧ୍ୟରେ ଗୁଜରାଟରେ ସଂଘର୍ଷ ଲାଗି ଯାଇଥିଲା । ଏହି ଅନ୍ତର୍ଦ୍ୱନ୍ଦ୍ୱ ଫଳରେ ଗୁଜରାଟ ସହଜରେ ମୋଗଲମାନଙ୍କ ଦ୍ୱାରା ପରାଜିତ ହୋଇଥିଲା ଏବଂ ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା ।

ଭାରତରେ ପହଞ୍ଚିବା ପାଇଁ ସମୁଦ୍ର ପଥ ଆବିଷ୍କାର କରିବା ଉଦ୍ଦେଶ୍ୟରେ ପର୍ତ୍ତୁଗୀଜ୍‌ମାନେ ବହୁ ବର୍ଷ ଧରି ଅଭିଯାନ ପରେ ଅଭିଯାନ ଚଳେଇ ଆସିଥିଲେ । ଏହି ଉଦ୍ଦେଶ୍ୟ ଅବଶେଷରେ ସଫଳ ହୋଇଥିଲା ୧୪୯୮ ଖ୍ରୀଷ୍ଟାବ୍ଦରେ । ଏହି ବର୍ଷ ଭାସ୍କୋ ଡା ଗାମାଙ୍କ ଜାହାଜ ଆସି ଭାରତର ମାଲାବାର ଉପକୂଳବର୍ତ୍ତୀ ଏକ କ୍ଷୁଦ୍ର ରାଜ୍ୟ ଏବଂ ଏକ ଗୁରୁତ୍ୱପୂର୍ଣ୍ଣ ସମୁଦ୍ର ବନ୍ଦର କାଲିକଟରେ ଭିଡ଼ିଥିଲା । ପର୍ତ୍ତୁଗୀଜ୍‌ମାନେ ଆଫ୍ରିକାର ସମୁଦ୍ରୋପକୂଳ ଦେଇ ଜାହାଜ ଚଳାଚଳ କଲା ବେଳେ ବିଭିନ୍ନ ରକମର କପଡ଼ାର ଟୁକୁରା, ମଦ, ମାଳି ଏବଂ ଏହିଭଳି ତୁଚ୍ଛ ଜିନିଷର ବିନିମୟରେ ଆଫ୍ରିକାର ଉପଜାତିମାନଙ୍କ ଠାରୁ ସୁନା ଏବଂ ହାତୀଦାନ୍ତ ସଂଗ୍ରହ କରୁଥିଲେ । କିନ୍ତୁ ଭାରତରେ ପହଞ୍ଚି ପର୍ତ୍ତୁଗୀଜ୍‌ମାନେ ଆଶ୍ଚର୍ଯ୍ୟ ହୋଇ ଦେଖିଥିଲେ ଯେ, ୟୁରୋପୀୟ ପଣ୍ୟଦ୍ରବ୍ୟଗୁଡ଼ିକ ଭାରତୀୟମାନଙ୍କ ଆଖିରେ ମୋଟା ସୋଟା ହାତର ସ୍ଥୂଳ ଜିନିଷ ବୋଲି ବିବେଚିତ ହେଉଛି ଏବଂ ଅସମ୍ଭବ ଭାବେ ଧନୀ ଭାରତୀୟ ଅଭିଜାତ ସଂପ୍ରଦାୟଙ୍କ ନିକଟରେ ମୋଟେ କ୍ରୟଯୋଗ୍ୟ ହେଉ ନାହିଁ । ପର୍ତ୍ତୁଗୀଜ୍‌ମାନେ ଏଥିରୁ ଅନୁଭବ କଲେ ଯେ, ଭାରତୀୟମାନଙ୍କ ନିକଟରେ ଗ୍ରହଣଯୋଗ୍ୟ କୌଣସି ପଣ୍ୟ ସେମାନେ ବାଣିଜ୍ୟ କରିବା ପାଇଁ ଆଣି ପାରି ନାହାନ୍ତି ।

ଅନ୍ୟ ଦିଗରେ, ପର୍ତ୍ତୁଗୀଜ୍‌ମାନଙ୍କ ଯୁଦ୍ଧାସ୍ତ୍ର ଥିଲା ଭାରତୀୟ ଅସ୍ତ୍ରଶସ୍ତ୍ର ଠାରୁ ଉନ୍ନତ ଧରଣର । ବିଶେଷ କରି ମାଲବାରର ଅନବରତ ଯୁଦ୍ଧରତ ଛୋଟ ଛୋଟ ରାଜ୍ୟଗୁଡ଼ିକର ଯୁଦ୍ଧ ସରଞ୍ଜାମ ଠାରୁ ନିଶ୍ଚିତ ଭାବେ ଉନ୍ନତ ବୋଲି କହିବାକୁ ହେବ । ସମଗ୍ର ଆଫ୍ରିକା ମହାଦେଶକୁ ପ୍ରଦକ୍ଷିଣ କରି ପର୍ତ୍ତୁଗୀଜ୍‌ମାନଙ୍କର ଯେଉଁସବୁ ଜାହାଜ ଯାତାୟତ କରୁଥିଲା, ସେଗୁଡ଼ିକ ଆୟତନ ଏବଂ ଗତି ଦୃଷ୍ଟିରୁ, ମୁଖ୍ୟତଃ, ଉପକୂଳବର୍ତ୍ତୀ ବାଣିଜ୍ୟ ଉପଯୋଗୀ ଛୋଟ ଛୋଟ ଭାରତୀୟ ଜାହାଜଗୁଡ଼ିକ ଠାରୁ ବହୁ ଗୁଣରେ ଉନ୍ନତ ଥିଲା । ଜାହାଜୀ କମାଣ, ପାଦାନି ଉପରେ ରଖି ମାରିବା ଭଳି ପୁରୁଣାକାଳିଆ ବନ୍ଧୁକ ଓ ପରବର୍ତ୍ତୀ କାଳରେ ଅପେକ୍ଷାକୃତ ଉନ୍ନତ ଧରଣର ବନ୍ଧୁକରେ ସଜ୍ଜିତ ସୁଶୃଙ୍ଖଳ ପର୍ତ୍ତୁଗୀଜ୍ ବାହିନୀଗୁଡ଼ିକ ପକ୍ଷରେ ପ୍ରକାଣ୍ଡ ପ୍ରକାଣ୍ଡ ଭାରତୀୟ ବାହିନୀଗୁଡ଼ିକୁ ପରାସ୍ତ କରିବାରେ କୌଣସି ଅସୁବିଧା ହୋଇ ନଥିଲା । କାରଣ ଭାରତୀୟମାନଙ୍କର ଅସ୍ତ୍ର ବୋଇଲେ ଥିଲା କେବଳ "ଛୋଟ ଛୋଟ ତଲୁଆର ଓ ଗୋଲକାର ଢାଲ" କିମ୍ବା "ଛୋଟ ଛୋଟ ବର୍ଛା" (୧୫୦୫ ଖ୍ରୀଷ୍ଟାବ୍ଦରେ ଆଲ୍‌ମେଇଦାର ନୌବହର ସହିତ ଭାରତ ସଫରରତ ଜନୈକ ଜର୍ମାନ୍ ବଣିକଙ୍କ ବିବରଣ ଅନୁଯାୟୀ) । ତା ଅର୍ଥ ହେଲା, ପର୍ତ୍ତୁଗୀଜ୍‌ମାନେ ଭାରତୀୟମାନଙ୍କ ପକ୍ଷରେ ଗ୍ରହଣଯୋଗ୍ୟ କୌଣସି ପଣ୍ୟଦ୍ରବ୍ୟ ଯଦିଓ ଆଣି ନଥିଲେ, ତେବେ ବଳପୂର୍ବକ ଭାରତୀୟମାନଙ୍କ ଠାରୁ ପଣ୍ୟଦ୍ରବ୍ୟ କାଢ଼ି ନେବାର କ୍ଷମତା ସେମାନଙ୍କର ଥିଲା । ସେମାନଙ୍କ ଉଦ୍ଦେଶ୍ୟ ଥିଲା, ପ୍ରାଚ୍ୟର ସମୁଦ୍ରଗୁଡ଼ିକରେ ଆଧିପତ୍ୟ ବିସ୍ତାର କରିବା । ତେଣୁ ଏହି ଉଦ୍ଦେଶ୍ୟ ସାଧନ ପାଇଁ ସେମାନଙ୍କ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ନିର୍ମମ ଭାବେ ଉତ୍‌ଖାତ କରିବାକୁ ସେମାନେ କୁଣ୍ଠାବୋଧ କରି ନଥିଲେ । ସେମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ପ୍ରାଚ୍ୟ ଦେଶୀୟ ବଣିକମାନଙ୍କର ସମୁଦ୍ରଗାମୀ ଜାହାଜଗୁଡ଼ିକ ଏବଂ ଭାରତ, ଆରବ ଓ ଆଫ୍ରିକାର ବନ୍ଦରଗୁଡ଼ିକରେ, ଯେଉଁଠି ଭାରତୀୟ ପଣ୍ୟଦ୍ରବ୍ୟ କିଣାବିକା ହେଉଥିଲା, ସେଇସବୁ ସ୍ଥାନ ଥିଲା ସେମାନଙ୍କ ଆକ୍ରମଣର ଲକ୍ଷ୍ୟସ୍ଥଳ । ମାଲବାରର ରାଜ୍ୟଗୁଡ଼ିକ ମଧ୍ୟରେ ପ୍ରୀତି ଏବଂ

ସହଯୋଗିତାର ଅଭାବର ସୁଯୋଗ ନେଇ ପର୍ତ୍ତୁଗୀଜ୍‌ମାନେ ସେମାନଙ୍କ ଅବସ୍ଥାନକୁ ଦୃଢ଼ କରି ପାରିଥିଲେ – ବିଭିନ୍ନ ରାଜ୍ୟକୁ ପରସ୍ପର ବିରୁଦ୍ଧରେ ପ୍ରରୋଚନା ଯୋଗାଇ ଏବଂ ସମୁଦ୍ରୋପକୂଳବର୍ତ୍ତୀ ଭୂଖଣ୍ଡର ସାମନ୍ତ ଭୂସ୍ୱାମୀମାନଙ୍କ ମଧ୍ୟରେ ପାରସ୍ପରିକ ବିରୋଧ ବଢ଼େଇ ଦେଇ । ସେମାନଙ୍କୁ ବାଧା ଦେବା ପାଇଁ ଚେଷ୍ଟା ହେଲା ବେଳେ ପର୍ତ୍ତୁଗୀଜ୍‌ମାନେ ତା'ର ଜବାବ ଦେଉଥିଲେ ସମୁଦ୍ର ବନ୍ଦର ଓ ଉପକୂଳବର୍ତ୍ତୀ ଗ୍ରାମଗୁଡ଼ିକ ଉପରେ ଜାହାଜରୁ ଗୋଳାବର୍ଷଣ କରି । ତା'ପରେ ତାର ଦେଶରେ ସୈନ୍ୟ ଓହ୍ଲାଇ ଦେଇ ବେପରୁଆ ଭାବେ ଲୁଟ ପାଟ, ଅଗ୍ନି ସଂଯୋଗ, ନରହତ୍ୟା କରୁଥିଲେ, ତାଳ, ନାରିକେଳ ବଗିଚ୍ଛସବୁ ନଷ୍ଟ କରି ଦେଉଥିଲେ ବା ଯାହା କିଛି ସାଙ୍ଗରେ ଧରି ନେଇ ଯାଇ ପାରୁ ନଥିଲେ, ସେସବୁକୁ ଧ୍ୱଂସ କରି ଦେଉଥିଲେ ।

ଭାସ୍‌କୋ ଡା ଗାମା ଭାରତରେ ପ୍ରଥମ ଥର ପହଞ୍ଚି ନିଜେ ଭାରତୀୟ ବନ୍ଦରଗୁଡ଼ିକ ଉପରେ ଗୋଳାବର୍ଷଣ କରି ବିପୁଳ କ୍ଷତି ସାଧନ କରିଥିଲେ । ଏହାର ପରବର୍ତ୍ତୀ ପର୍ତ୍ତୁଗୀଜ୍ ରଣାଭିଯାନଗୁଡ଼ିକ କାବ୍ରାଲ (୧୫୦୦ ଖ୍ରୀ:), ଭାସ୍‌କୋ ଡା ଗାମା (୧୫୦୨ ଖ୍ରୀ :) ଓ ଦ୍ୟ ଆଲ୍‌ବୁକୋୟେର୍କଙ୍କ (୧୫୧୦-୧୫୧୧ ଖ୍ରୀ :) ନେତୃତ୍ୱରେ ପରିଚାଳିତ ହୋଇଥିଲା ଏବଂ ଏହା ଫଳରେ ପର୍ତ୍ତୁଗୀଜ୍‌ମାନଙ୍କ ପକ୍ଷରେ ସମ୍ଭବ ହୋଇଥିଲା ଭାରତର ସମୁଦ୍ର ତୀରବର୍ତ୍ତୀ କେତେକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଓ ବିଜାପୁର ରାଜ୍ୟର ଅଧୀନସ୍ଥ ଗୋଆ ଦ୍ୱୀପଟିକୁ ଦଖଲ କରିବାରେ । ଏହି ଗୋଆ ପରେ ପ୍ରାଚ୍ୟ ଦେଶରେ ପର୍ତ୍ତୁଗୀଜ୍‌ମାନଙ୍କ ଦ୍ୱାରା ଅଧିକୃତ ଅଞ୍ଚଳର କେନ୍ଦ୍ର ବିନ୍ଦୁରେ ପରିଣତ ହୋଇଥିଲା । ପର୍ତ୍ତୁଗୀଜ୍‌ମାନଙ୍କ ଦୁର୍ଗଗୁଡ଼ିକ ସେତେବେଳେ ଏକ ହାର ଭଳି ଲମ୍ବି ଯାଇଥିଲା ଓର୍‌ମୁଜ୍‌ରୁ ପାରସ୍ୟ ଉପସାଗର ତୀର, ଆରବ ଦେଶ ଓ ଆଫ୍ରିକାର ସମୁଦ୍ର ତୀର, ଭାରତର ପଶ୍ଚିମ ଓ ପୂର୍ବ ଉପକୂଳ ଧରି, ସିଂହଳ, ମଲାକା ପ୍ରଣାଳୀ, ମଲୁକା ଦ୍ୱୀପସମୂହ ଏବଂ ବର୍ତ୍ତମାନ ଥାଇଲାଣ୍ଡ, ଏପରିକି ସୁଦୂର ଚୀନ୍ ପର୍ଯ୍ୟନ୍ତ । ଏହିସବୁ ଦୁର୍ଗ ଥିଲା ପର୍ତ୍ତୁଗୀଜ୍ ଜାହାଜଗୁଡ଼ିକ ପକ୍ଷରେ ମରାମତିର ସ୍ଥାନ, ପ୍ରତିବର୍ଷ ପର୍ତ୍ତୁଗାଲକୁ ପଠାଯାଉଥିବା ନାନାବିଧ ପଣ୍ୟର (ବିଶେଷ କରି ମସଲା ଓ କାର୍ପାସବସ୍ତ୍ର) ସୁନିର୍ଭରଯୋଗ୍ୟ ଓ ସୁରକ୍ଷିତ ଭଣ୍ଡାର ଏବଂ ପର୍ତ୍ତୁଗୀଜ୍ ସୈନ୍ୟଦଳର ସୁରକ୍ଷିତ ଘାଟି । ପର୍ତ୍ତୁଗୀଜ୍ ସୈନ୍ୟବାହିନୀ, ଅବଶ୍ୟ, ଭାରତର ଆଭ୍ୟନ୍ତରୀଣ ଅଞ୍ଚଳଗୁଡ଼ିକରେ ବିଶେଷ ଭାବେ ଅନୁପ୍ରବେଶ କରିବାକୁ ସମର୍ଥ ହୋଇ ନଥିଲେ । ସେମାନଙ୍କ ଦ୍ୱାରା ଅଧିକୃତ ଭାରତୀୟ ଅଞ୍ଚଳଗୁଡ଼ିକରେ ପର୍ତ୍ତୁଗୀଜ୍‌ମାନେ ସ୍ଥାନୀୟ ଜନସାଧାରଣଙ୍କୁ ଶୋଷଣ କରୁଥିଲେ ନିଷ୍ଠୁର ଭାବେ, ଯଦିଓ ଗୋଆର ନିକଟବର୍ତ୍ତୀ ଅଧିକୃତ ଗ୍ରାମଗୁଡ଼ିକରେ ସେମାନେ ଗ୍ରାମୀଣ ସମାଜଗୁଡ଼ିକୁ ଅଟୁଟ ରଖିବାକୁ ଚେଷ୍ଟା କରିଥିଲେ । ଧର୍ମ ବିଷୟରେ ପର୍ତ୍ତୁଗୀଜ୍‌ମାନଙ୍କର ଅସହିଷ୍ଣୁତା (ସେମାନେ ସ୍ଥାନୀୟ ହିନ୍ଦୁ ମନ୍ଦିରଗୁଡ଼ିକୁ ଧ୍ୱଂସ କରି ପକାଇଥିଲେ ଏବଂ ୧୫୬୦ ଖ୍ରୀଷ୍ଟାବ୍ଦରେ ଗୋଆରେ ଯେଉଁ ଧର୍ମୀୟ ବିଚାର ସଭା ସ୍ଥାପନ କରିଥିଲେ, ତାହା ଧର୍ମଦ୍ୱେଷୀମାନଙ୍କର ବିଚାର ନାମରେ ନିଷ୍ଠୁର ଉତ୍ପୀଡ଼ନ ଆରମ୍ଭ କରି ଦେଇଥିଲେ) ସ୍ଥାନୀୟ ଅଧିବାସୀମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଉତ୍ତେଜିତ କରି ଦେଇଥିଲା ।

ଭାରତର ନିକଟବର୍ତ୍ତୀ ସମୁଦ୍ରଗୁଡ଼ିକରେ ପର୍ତ୍ତୁଗୀଜ୍‌ମାନଙ୍କର ଏକଚାଟିଆ ଆଧିପତ୍ୟ ପ୍ରାଚ୍ୟର ଅନ୍ୟାନ୍ୟ ଦେଶ ସହିତ ଭାରତର ସୁପ୍ରତିଷ୍ଠିତ ବାଣିଜ୍ୟିକ ଯୋଗାଯୋଗର ଗୁରୁତର କ୍ଷତି ସାଧନ କରିଥିଲା ଏବଂ ଭାରତର ଆଭ୍ୟନ୍ତରୀଣ ଅଞ୍ଚଳଗୁଡ଼ିକ ସହିତ ବହିର୍ଜଗତର ସଂପର୍କକୁ ନଷ୍ଟ କରି ଦେଇଥିଲା । ଏହି ଭାବେ ଭାରତର ବିକାଶରେ ବାଧା ଦେଇଥିଲା ପର୍ତ୍ତୁଗୀଜ୍‌ମାନଙ୍କ ଆଧିପତ୍ୟ ।

ମାଲବାର ଉପକୂଳରେ ନିରନ୍ତର ଧ୍ୱଂସମୂଳକ ଯୁଦ୍ଧବିଗ୍ରହ ବନ୍ଦରଗୁଡ଼ିକର ଧ୍ୱଂସ ସାଧନ ଓ ସ୍ଥାନୀୟ ଲୋକମାନଙ୍କୁ ବିନଷ୍ଟ କରି ଦେବା ଫଳରେ ପରବର୍ତ୍ତୀ ଦୀର୍ଘ କାଳ ପାଇଁ ଏହି ଅଞ୍ଚଳଟିର ବିକାଶ ବହୁ ପରିମାଣରେ ଧିମେଇ ଯାଇଥିଲା । ଉପରୋକ୍ତ ଏହିସବୁ କାରଣରୁ ଗୁଜରାଟ ରାଜ୍ୟଟି ମଧ୍ୟ ଦୁର୍ବଳ ହୋଇ ପଡ଼ିଥିଲା ।

ପର୍ତ୍ତୁଗୀଜ୍ ଏବଂ ସ୍ଥାନୀୟ ସେନାବାହିନୀଗୁଡ଼ିକ ମଧ୍ୟରେ ଉପରୋକ୍ତ ଏହିସବୁ ଯୁଦ୍ଧବିଗ୍ରହ ଫଳରେ ଓ ପର୍ତ୍ତୁଗୀଜ୍‌ମାନଙ୍କର ଉନ୍ନତତର ଅସ୍ତ୍ରଶସ୍ତ୍ର ହେତୁ ସେମାନେ ସେମାନଙ୍କର ଅଧିକୃତ ଅଞ୍ଚଳଗୁଡ଼ିକୁ ଯେ କେବଳ ରକ୍ଷା କରିବାକୁ ସମର୍ଥ ହୋଇଥିଲେ, ତା ନୁହେଁ, ସେମାନେ ଆଉରି ବିସ୍ତୃତି ସାଧନ କରିବାକୁ ସମର୍ଥ ହୋଇଥିଲେ । କିନ୍ତୁ ଭାରତ ମହାସାଗର ଓ ଦକ୍ଷିଣ ଦୁନିଆର ସମୁଦ୍ରଗୁଡ଼ିକରେ ଓଲନ୍ଦାଜମାନଙ୍କର ଜାହାଜଗୁଡ଼ିକର ଆବିର୍ଭାବ ଘଟିବା ଫଳରେ ସମୁଦ୍ର ପଥରେ ପର୍ତ୍ତୁଗୀଜ୍‌ମାନଙ୍କର ଏକଚ୍ଛତିଆ ଆଧିପତ୍ୟର ଅବସାନ ଘଟିଥିଲା । ପର୍ତ୍ତୁଗୀଜ୍‌ମାନେ ସେତେବେଳେ ସ୍ଥାନୀୟ ଭାରତୀୟ ରାଜାମାନଙ୍କର ସୈନ୍ୟ ଦଳଗୁଡ଼ିକ ବିରୁଦ୍ଧରେ ଛିଡ଼ା ହେବାକୁ ସମର୍ଥ ହେଲେ ନାହିଁ । ଭାରତୀୟ ସେନାଦଳ ସେତେବେଳେ ଗୋଟାକ ପରେ ଗୋଟାଏ ପର୍ତ୍ତୁଗୀଜ୍‌ମାନଙ୍କର ଅଧିକୃତ ଅଞ୍ଚଳକୁ ପୁନର୍ଦଖଲ କରିନେଲେ ।

## ବିଜୟନଗର

ଏକ ଦିଗରେ ବାହ୍‌ମନି ରାଜ୍ୟ ପ୍ରବଳ ହୋଇ ଉଠୁଥିଲା ବେଳେ, ଅନ୍ୟ ଦିଗରେ, ଦକ୍ଷିଣରେ ବିଶିଷ୍ଟ ରୂପ ପରିଗ୍ରହ କରୁଥିଲା ଆଉ ଏକ ସ୍ୱାଧୀନ ରାଜ୍ୟ । ଏମାନଙ୍କ ମଧ୍ୟରେ ଦୁଇଟି ରାଜ୍ୟର ନାମ ଉଲ୍ଲେଖ କରିବାକୁ ହେଲେ ମଦୁରାଇର ସୁଲତାନ୍ ଶାସିତ ରାଜ୍ୟ ଓ ରେଡ୍ଡିବଂଶୀୟ ରାଜ୍ୟ କଥା କହିବାକୁ ହେବ । ଏହାର ଅଳ୍ପ କାଳ ମଧ୍ୟରେ କାମ୍ପିଲି ଶାସନ ପାଇଁ ମହମ୍ମଦ ବିନ୍ ତୁଘଲକଙ୍କ ଦ୍ୱାରା ନିଯୁକ୍ତ ଦୁଇଜଣ ଶାସକ ପ୍ରତିନିଧି ଓ ସଙ୍ଗମ ରାଜବଂଶର ଦୁଇ ଭାଇ, ହରିହର ଏବଂ ବୁକ୍କ, ଛୋଟ ଏକ ରାଜ୍ୟ ପ୍ରତିଷ୍ଠା କରିବାକୁ ସକ୍ଷମ ହୋଇଥିଲେ । ତୁଙ୍ଗଭଦ୍ରା ନଦୀ ତୀରରେ ସେମାନେ ଶକ୍ତିଶାଳୀ ବିଜୟନଗର ଦୁର୍ଗଟି ନିର୍ମାଣ କରିଥିଲେ ଏବଂ କ୍ରମଶଃ ମନ ଦେଇଥିଲେ ସେମାନଙ୍କ ଅଧିକୃତ ଅଞ୍ଚଳକୁ ଆଉରି ବିସ୍ତୃତ କରିବା ଦିଗରେ । ୧୩୪୬ ଖ୍ରୀଷ୍ଟାବ୍ଦ ବେଳକୁ ହୟସଲ ରାଜ୍ୟ ସେମାନଙ୍କ ହସ୍ତଗତ ହୋଇଥିଲା ଏବଂ ତା ପର ବର୍ଷ ବନବାସୀର କଦମ୍ବ ବଂଶ ଶାସିତ ରାଜ୍ୟଟି ସେମାନଙ୍କ ଅଧୀନକୁ ଆସିଲା । ଏହା ପରେ ୧୩୬୦ ଖ୍ରୀଷ୍ଟାବ୍ଦ ବେଳକୁ ସେମାନଙ୍କ ଅଧୀନସ୍ଥ ହେଲା ଉତ୍ତର ତାମିଲନାଡୁର ଶମ୍ବୁଭାର୍ଯ୍ୟ ରାଜ୍ୟଟି । ପରବର୍ତ୍ତୀ ସତୁରି ଦଶକରେ ମଦୁରାଇର ସୁଲତାନ୍ ଶାସିତ ରାଜ୍ୟ ମଧ୍ୟ ସେମାନଙ୍କ ହାତକୁ ଆସିଲା । ଏହା ପରେ ରେଡ୍ଡିବଂଶୀୟ ରାଜାମାନେ ସେମାନଙ୍କ ଭୂଖଣ୍ଡର ଏକାଂଶକୁ ବିଜୟନଗରକୁ ଛାଡ଼ି ଦେବାକୁ ବାଧ୍ୟ ହେଲେ ଏବଂ ପରେ ୧୪୨୦ ଖ୍ରୀଷ୍ଟାବ୍ଦରେ ଏହି ରାଜ୍ୟଟି ପୂରାପୂରି ଧ୍ୱଂସ ପାଇଗଲା । ଏହି ଭାବେ ୧୩୭୦ ଦଶକ ବେଳକୁ ପ୍ରାୟ ସମଗ୍ର ଦକ୍ଷିଣ ଭାରତ ବିଜୟନଗର ଅନ୍ତର୍ଭୁକ୍ତ ହେଲା । ପରେ, ଅବଶ୍ୟ, ବାହ୍‌ମନି ସୁଲତାନ୍‌ଙ୍କ ସହିତ ବାହ୍‌ମନିକୁ ସଂଘର୍ଷରେ ଲିପ୍ତ ହେବାକୁ ପଡ଼ିଥିଲା ଏବଂ ଏହି ସୁଲତାନ୍ ରାଜତ୍ୱର ଅବକ୍ଷୟ ଏବଂ

ପତନ ପରେ ଦାକ୍ଷିଣାତ୍ୟର ଅନ୍ୟାନ୍ୟ ରାଜ୍ୟ ସହିତ ଯୁଦ୍ଧ କରି ଯିବାକୁ ପଡ଼ିଥିଲା । ତେବେ ପ୍ରାୟ ଦୁଇ ଶହ ବର୍ଷ ଧରି ଅନବରତ ଯୁଦ୍ଧରେ ଲିପ୍ତ ରହିବା ସତ୍ତ୍ୱେ ବିଜୟନଗର ରାଜ୍ୟର ସୀମା କାର୍ଯ୍ୟତଃ ପୂର୍ବରୁ ଯେଉଁଠି ଥିଲା, ସେଇଠି ରହି ଯାଇଥିଲା ।

୧୪୮୬ ଖ୍ରୀଷ୍ଟାବ୍ଦରେ ସାମନ୍ତ ଭୂସ୍ୱାମୀମାନଙ୍କ ବିଦ୍ରୋହ ଏବଂ ବିଜୟନଗର ଭୂଖଣ୍ଡରେ ବାହ୍ମନି ରାଜ୍ୟର ଓ ଓଡ଼ିଶାର ଶାସକମାନଙ୍କର ବିଜୟ ଅଭିଯାନ ପରେ ବିଜୟନଗରର ଏକ ସେନାପତି ସଙ୍ଗମ ରାଜବଂଶକୁ ସିଂହାସନଚ୍ୟୁତ କରିଥିଲେ । ରାଜ୍ୟାଭିଷେକ ବେଳେ ନରସିଂହମ୍ ସଲୁଭା ଉପାଧି ଧାରଣ କରି ଏହା ପରେ ଏହି ସେନାପତି ସିଂହାସନ ଆରୋହଣ କରିଥିଲେ । ବିଜୟନଗରର ହସ୍ତଚ୍ୟୁତ ହୋଇଥିବା ଏକ ବିରାଟ ଅଂଶକୁ ସେ ପୁନର୍ଦଖଲ କରିବାକୁ ସକ୍ଷମ ହୋଇଥିଲେ । ତେବେ ନରସିଂହମ୍‌ଙ୍କ ପୁତ୍ରମାନଙ୍କ ରାଜତ୍ୱକାଳରେ ଇତିହାସର ପୁନରାବୃତ୍ତି ଘଟିଥିଲା । କାରଣ, ୧୫୦୫ ଖ୍ରୀଷ୍ଟାବ୍ଦରେ ସେନାପତି ବୀର ନରସିଂହମ୍ ରାଜାଙ୍କୁ ସିଂହାସନଚ୍ୟୁତ କରି ନିଜେ ରାଜା ହୋଇଥିଲେ ଏବଂ ତୁଲୁଭ ରାଜବଂଶ ପ୍ରତିଷ୍ଠା କରିଥିଲେ ।

ବୀର ନରସିଂହମ୍‌ଙ୍କ ଭାଇ କୃଷ୍ଣଦେବରାୟଙ୍କ ରାଜତ୍ୱକାଳରେ (୧୫୦୯-୧୫୨୯ ଖ୍ରୀ :) ବିଜୟନଗର ସାମ୍ରାଜ୍ୟର ଶକ୍ତି ଏବଂ ସମୃଦ୍ଧି ଶୀର୍ଷଦେଶକୁ ଉଠିଥିଲା । କୃଷ୍ଣଦେବରାୟ ରାଜ୍ୟର ପ୍ରଶାସନିକ ବିଭାଗଗୁଡ଼ିକରେ ପରିବର୍ତ୍ତନ ସାଧନ କରି ସେସବୁର ଉନ୍ନତି ବିଧାନ କରିଥିଲେ । ଅର୍ଥନୀତି ସଂକ୍ରାନ୍ତ ପ୍ରଶାସନିକ ପରିଚାଳନାର ଉନ୍ନତି ମଧ୍ୟ ସେ ଘଟାଇଥିଲେ । ରାଜ କାର୍ଯ୍ୟର ପୁରସ୍କାର ହିସାବରେ ପ୍ରଦତ୍ତ ଜମିର ରାଜସ୍ୱ ନିର୍ଦ୍ଧାରଣ କ୍ଷେତ୍ରରେ ସେ ନୂତନ ଉଚ୍ଚତର କର ଧାର୍ଯ୍ୟ କରିଥିଲେ । ପର୍ତ୍ତୁଗୀଜ୍‌ମାନଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ସ୍ଥାପନ କଲା ପରେ କୃଷ୍ଣଦେବରାୟ ସେମାନଙ୍କ ସାହାଯ୍ୟରେ ପାରସ୍ୟ ଓ ଆରବରୁ ଘୋଡ଼ା ଆମଦାନି କରିବାକୁ ଆରମ୍ଭ କରିଥିଲେ । ଅନ୍ୟ ଦିଗରେ, ପର୍ତ୍ତୁଗୀଜ୍‌ମାନେ ଦାକ୍ଷିଣାତ୍ୟର ସୁଲତାନ୍ ଶାସିତ ରାଜ୍ୟଗୁଡ଼ିକ ଉପରେ ଏହି ଘୋଡ଼ା ଆମଦାନି ବିଷୟରେ ବିଭିନ୍ନ ବିଧି ନିଷେଧ ଆରୋପ କରିଥିଲେ । ଏହା ଫଳରେ ବିଜୟନଗର ଗୋଟିକ ପରେ ଗୋଟିଏ ଯୁଦ୍ଧରେ ଜୟଲାଭ କରିବାକୁ ଲାଗିଲା । ଏହା ବିଶେଷ କରି ସେଇ ସମୟରେ ଘଟିଥିଲା, ଯେତେବେଳେ ଅଶ୍ୱାରୋହୀ ବାହିନୀଗୁଡ଼ିକ ଭାରତୀୟ ସେନାବାହିନୀଗୁଡ଼ିକର ମେରୁଦଣ୍ଡରେ ପରିଣତ ହୋଇଥିଲେ । ଇତିପୂର୍ବରୁ ଭାରତର ମୁସଲମାନ ରାଜ୍ୟଗୁଡ଼ିକ ପକ୍ଷରେ ଇସ୍‌ଲାମ୍ ଧର୍ମାବଲମ୍ବୀ ଅନ୍ୟାନ୍ୟ ବନ୍ଧୁ ଦେଶ—ଯଥା, ଆରବ ଓ ପାରସ୍ୟରୁ ଘୋଡ଼ା ଆମଦାନି କରିବାରେ କୌଣସି ଅସୁବିଧା ନଥିଲା । କିନ୍ତୁ ଭାରତ ମହାସାଗର ଓ ପାରସ୍ୟ ଉପସାଗରରେ ପର୍ତ୍ତୁଗୀଜ୍ ନୌଶକ୍ତିର ଆବିର୍ଭାବ ଘଟିବା ଫଳରେ ସବୁକିଛି ବଦଳି ଯିବାକୁ ଲାଗିଲା । ଏହା ପରେ ପର୍ତ୍ତୁଗୀଜ୍‌ମାନଙ୍କ ସିଦ୍ଧାନ୍ତ ଉପରେ ନିର୍ଭର କରିଥିଲା, ଭାରତର କେଉଁ କେଉଁ ରାଜ୍ୟକୁ ସମୁଦ୍ର ଆରପାରିରୁ ଘୋଡ଼ା ଆମଦାନି କରିବାକୁ ଦିଆଯିବ ।

ଅନେକଗୁଡ଼ିଏ ସାମନ୍ତ ରାଜ୍ୟର ଅବସ୍ଥିତି ସତ୍ତ୍ୱେ ବିଜୟନଗର ସାମ୍ରାଜ୍ୟ ଦକ୍ଷିଣ ଭାରତର ପୂର୍ବବର୍ତ୍ତୀ ରାଜ୍ୟଗୁଡ଼ିକଠାରୁ ଅଧିକ ପରିମାଣର କେନ୍ଦ୍ରୀଭୂତ ଶାସନ ଅଧୀନରେ ଥିଲା । ସାମ୍ରାଜ୍ୟର ଅଧିପତି "ମହାରାଜା" ନାମରେ ନାମିତ ହୋଇଥିଲେ ମଧ୍ୟ ସମସ୍ତ କ୍ଷମତା କେନ୍ଦ୍ରୀଭୂତ ହୋଇଥିଲା ରାଜ୍ୟର ମନ୍ତ୍ରୀ ବା ମହାପ୍ରଧାନଙ୍କ ହାତରେ । ମହାରାଜାଙ୍କ ଅଧୀନରେ ଥିଲା ବିରାଟ ଏକ ରାଷ୍ଟ୍ର ପରିଷଦ । ସେଥିରେ ସଭାସଦମାନଙ୍କ ବ୍ୟତୀତ ସଦସ୍ୟ ହିସାବରେ ପ୍ରଧାନ ପ୍ରଧାନ ସାମନ୍ତ ଭୂସ୍ୱାମୀ

ଓ ବଣିକ ସଂପ୍ରଦାୟର ପ୍ରତିନିଧିମାନେ ରହୁଥିଲେ । ପ୍ରାଦେଶିକ ଶାସନକର୍ତ୍ତାମାନେ ସିଧାସଳଖ ଦାୟୀ ରହୁଥିଲେ ମହାପ୍ରଧାନଙ୍କ ନିକଟରେ । ଏହି ଶାସନକର୍ତ୍ତାମାନଙ୍କୁ ସାଧାରଣତଃ ଦୁଇ ବା ତିନି ବର୍ଷ ମଧ୍ୟରେ ପରିବର୍ତ୍ତନ କରାଯାଉଥିଲା, ରାଜ୍ୟରେ ବିଚ୍ଛିନ୍ନତାବାଦୀ କ୍ରିୟାକଳାପର ବିପଦକୁ ଏଡ଼େଇବା ପାଇଁ । ଏହିସବୁ ଶାସନ କର୍ତ୍ତାମାନଙ୍କର କାର୍ଯ୍ୟ ଥିଲା ରାଷ୍ଟ୍ରୀୟ ତାଲୁକଗୁଡ଼ିକରୁ ଖଜଣା ଆଦାୟ କରି ରାଜକୋଷରେ ଜମା ଦେବା ଏବଂ ସାମନ୍ତବାଦୀ ଅମରନାୟକ ଭୂସ୍ୱାମୀ ଓ ସାମନ୍ତ ରାଜନ୍ୟବର୍ଗଙ୍କ ନିକଟରୁ ରାଜକର ଆଦାୟ କରିବା । ଆଦାୟ କରୁଥିବା ଭୂରାଜସ୍ୱର ଅଳ୍ପ ଏକ ଅଂଶ ସେମାନେ ପାଉଥିଲେ । ରାଜ୍ୟର ଅନ୍ତର୍ଗତ ପ୍ରଦେଶଗୁଡ଼ିକୁ ସେତେବେଳେ ଭାଗ କରାଯାଇଥିଲା କେତେକ ଜିଲ୍ଲାରେ ଏବଂ ଏହିସବୁ ଜିଲ୍ଲା ଜଣେ ଜଣେ ରାଜକର୍ମଚାରୀଙ୍କ ଶାସନାଧୀନରେ ରହିଥିଲା ।

ଯୋଦ୍ଧାମାନଙ୍କୁ କେତେକ ସର୍ତ୍ତରେ ରାଷ୍ଟ୍ରୀୟ ଜମି ଦାନ କରାଯାଉଥିଲା ସେମାନଙ୍କ ରାଜ ସେବାର ବିନିମୟର ପୁରସ୍କାର ସ୍ୱରୂପ । ଅମରନାୟକମାନଙ୍କ ସହିତ ଇକ୍‌ତାଦାରମାନଙ୍କର ପାର୍ଥକ୍ୟ ଥିଲା ଏହିଠି ଯେ, ଅମରନାୟକମାନେ କୃଷକମାନଙ୍କ ଉପରେ ରାଜସ୍ୱର ପରିମାଣ ନିଜେ ଧାର୍ଯ୍ୟ କରି ଦେଉଥିଲେ । ଏହା ଛଡ଼ା ଜମି ହସ୍ତାନ୍ତର କରିବାର ଅଧିକାର ମଧ୍ୟ ସେମାନଙ୍କର ଥିଲା । ଅମରନାୟକମାନେ ନିଜେ ଯେଉଁ ରାଜକର ରାଷ୍ଟ୍ରୀୟ କୋଷରେ ଜମା ଦେଉଥିଲେ, ତା ସହିତ କୃଷକମାନଙ୍କ ନିକଟରୁ ଆଦାୟ ହେଉଥିବା ରାଜସ୍ୱର ପରିମାଣର କୌଣସି ସଂପର୍କ ନଥିଲା । ସାମନ୍ତବାଦୀ ଭୂସ୍ୱାମୀମାନଙ୍କର ରାଜକରର ପରିମାଣ ନିର୍ଭର କରୁଥିଲା ରାଜସଭାରେ ସେମାନଙ୍କର ବ୍ୟକ୍ତିଗତ ପ୍ରଭାବ ଉପରେ । ସର୍ବତ୍ର ଅମରନାୟକମାନେ ସେମାନଙ୍କ ତାଲୁକରୁ ଆଦାୟ ହେଉଥିବା ରାଜସ୍ୱର ଆନୁମାନିକ ଏକତୃତୀୟାଂଶ ରାଜକୋଷରେ ଜମା ଦେଉଥିଲେ ସୈନ୍ୟବାହିନୀର ଭରଣପୋଷଣ ବାବଦକୁ ଯାବତୀୟ ଖର୍ଚ୍ଚବାର୍ଚ୍ଚ ବାଦ୍ ଦେବା ପରେ । ତେବେ ଅମରନାୟକମାନେ ଏବାବଦକୁ ଖର୍ଚ୍ଚ କମାଉଥିଲେ ଏବଂ କ୍ରମଶଃ ଅନେକ କମ୍ ସଂଖ୍ୟକ ପଦାତିକ ଓ ଅଶ୍ୱାରୋହୀ ସୈନ୍ୟ ନିଯୁକ୍ତ କରିବାକୁ ଆରମ୍ଭ କରିଥିଲେ । ନୀତିଗତ ଭାବେ ଅମରନାୟକମାନଙ୍କର ସେମାନଙ୍କ ଭୂସଂପତ୍ତିକୁ ବଂଶ ପରମ୍ପରା କ୍ରମେ ଭୋଗ କରିବାର ଅଧିକାର ନଥିଲା, କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ବିଜୟନଗରର ସମଗ୍ର ଇତିହାସରେ ଏହିସବୁ ଭୂସଂପତ୍ତି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଜଣେ ଜଣେ ଭୂସ୍ୱାମୀ ପରିବାରର ଅଧୀନରେ ରହି ଯାଇଥିଲା ବୋଲି ଜଣାଯାଏ । ଅମରନାୟକମାନଙ୍କର ସେନାବାହିନୀ ଅନ୍ତର୍ଗତ ଛୋଟ ଛୋଟ ସୈନ୍ୟଦଳର ଅଧିନାୟକମାନେ ଅମରନାୟକମାନଙ୍କ ନିକଟରୁ, କିମ୍ବା ଖୋଦ୍ ରାଜାଙ୍କ ନିକଟରୁ ଦାନ ହିସାବରେ ଜମି ପାଇଥିଲେ । ଏହିସବୁ ଜମି ସର୍ବଦା ପିତା ପରେ ପୁତ୍ର ଲାଭ କରୁଥିଲେ ।

ବ୍ୟକ୍ତିଗତ ଭୂସଂପତ୍ତିର ପ୍ରବଳ ପରାକ୍ରାନ୍ତ ମାଲିକମାନଙ୍କ ମଧ୍ୟରେ ଏହି ସମୟରେ ମନ୍ଦିରଗୁଡ଼ିକ ମଧ୍ୟ ଅନ୍ତର୍ଭୁକ୍ତ ଥିଲେ । ସେଗୁଡ଼ିକ ସାଧାରଣତଃ ଆଖପାଖର ଗୋଟିଏ ଗୋଟିଏ ବିଶାଳ ଏଲାକାରେ ଅର୍ଥନୈତିକ ଓ ସାଂସ୍କୃତିକ କେନ୍ଦ୍ରରେ ପରିଣତ ହୋଇଥିଲେ । ଆନୁଷ୍ଠାନିକ ପୂଜାପାର୍ବଣ ଉପଲକ୍ଷେ ତୀର୍ଥଯାତ୍ରୀମାନେ ମନ୍ଦିରମାନଙ୍କରେ ଭିଡ଼ କରୁଥିଲେ ଏବଂ ଆଖପାଖରେ ସେତେବେଳେ ମେଳା ମଧ୍ୟ ବସୁଥିଲା । କାରିଗର ଏବଂ ବଣିକମାନେ ମନ୍ଦିର ନିକଟରେ ବାସ କରୁଥିଲେ ଏବଂ ବେଳେ ବେଳେ ମନ୍ଦିରଗୁଡ଼ିକ ମଧ୍ୟ ବ୍ୟବସାୟ ବାଣିଜ୍ୟ ଏବଂ ମହାଜନୀ କାମରେ ଅଂଶଗ୍ରହଣ କରୁଥିଲେ । କେତେକ କାରିଗର ପ୍ରତ୍ୟକ୍ଷ ଭାବେ ମନ୍ଦିର ସଂକ୍ରାନ୍ତ ବିଭିନ୍ନ କାର୍ଯ୍ୟ ସହିତ ଯୁକ୍ତ ରହୁଥିଲେ, ଏହାର ବିନିମୟରେ

ଜିନିଷପତ୍ର ଆକାରରେ ସେମାନେ ବେତନ ପାଉଥିଲେ । ଏହା ଛଡ଼ା ମନ୍ଦିରର ଦେବୋତ୍ତର ଜମିରୁ କେଉ ଖଣ୍ଡ ସେମାନଙ୍କୁ ମଧ୍ୟ ଦିଆଯାଉଥିଲା । କାର୍ଯ୍ୟତଃ ଏହିସବୁ ଜମି ବଂଶାନୁକ୍ରମେ ସେମାନେ ଭୋଗ ଦଖଲ କରୁଥିଲେ ଏବଂ ତତ୍ ସଙ୍ଗେ ସଙ୍ଗେ ମନ୍ଦିରର ସେବା ଖିଜମତ ବଂଶାନୁକ୍ରମେ କରୁଥିଲେ । ମନ୍ଦିରଗୁଡ଼ିକ ଥିଲା ଶାସକ ଶ୍ରେଣୀର ଜମୋଜ ସ୍ତରବିନ୍ୟାସର ଗୋଟିଏ ଅଂଶବିଶେଷ : ସେମାନେ ଉର୍ଦ୍ଧ୍ୱତନ ସାମନ୍ତ ଭୂସ୍ୱାମୀଙ୍କୁ କର ଦେଉଥିଲେ ଏବଂ ସେମାନଙ୍କର ମଧ୍ୟ ଥିଲେ ଅନୁଗତ ସାମନ୍ତ ଭୂସ୍ୱାମୀବୃନ୍ଦ, ଯେଉଁମାନେ ବିଦେଶୀ ସେନାବାହିନୀ ବା ଦସ୍ୟୁମାନଙ୍କ ବିରୁଦ୍ଧରେ ଲୋକବାକ ନେଇ ମନ୍ଦିରକୁ ରକ୍ଷା କରିବାକୁ ବାଧ୍ୟ ହେଉଥିଲେ ।

ଗ୍ରାମଗୁଡ଼ିକର ଏକ ପ୍ରଧାନ ଅଂଶ ବ୍ରାହ୍ମଣ ସଭାଗୁଡ଼ିକର କର୍ତ୍ତୃତ୍ୱାଧୀନ ଥିଲା । ଏହି ବ୍ରାହ୍ମଣମାନେ ଅନେକ ସମୟରେ କର୍ତ୍ତୃତ୍ୱ କରୁଥିଲେ ଖୁବ୍ ଛୋଟ ଛୋଟ ଜମି ଉପରେ । କାରଣ, ଗୋଟିଏ ଗୋଟିଏ ଗ୍ରାମ, ଏପରିକି ଏକ ଶହଜଣ ପର୍ଯ୍ୟନ୍ତ ବ୍ରାହ୍ମଣଙ୍କ ଅକ୍ତିଆର ଭୁକ୍ତ ଥିଲା । ତା ସତ୍ତ୍ୱେ ଏମାନେ ଥିଲେ ବ୍ରାହ୍ମଣ ଭୂସ୍ୱାମୀ, କାରଣ, ଏମାନଙ୍କ ପାଇଁ ଜମି ଚାଷ କରି ଦେଉଥିଲେ ଭଡ଼ାଟିଆ ପ୍ରଜା, କିମ୍ବା ଅଛୁଆଁ ଜାତିର ଲୋକମାନେ । ଏହି କ୍ଷେତ ମଜୁରିଆମାନଙ୍କୁ ବ୍ରାହ୍ମଣମାନେ ଭୂମିଦାସ ଠାରୁ ଅଧିକ କିଛି ମନେ କରୁ ନଥିଲେ ।

ପୂର୍ବବର୍ତ୍ତୀ ଯୁଗର ବୈଶିଷ୍ଟ୍ୟସୂଚକ ବଡ଼ ବଡ଼ ଗ୍ରାମ୍ୟ ସମାଜ ଇତି ମଧ୍ୟରେ ଭାଙ୍ଗି ଟୁକୁରା ଟୁକୁରା ହୋଇ ଯାଇଥିଲା । ଏବେ ସେସବୁ ଗଠିତ ହୋଇଥିଲା ଗୋଟିଏ ଗୋଟିଏ ଗ୍ରାମର ଜମିଜମାକୁ ଭିତ୍ତି କରି । ଆବାଦ ଜମିସବୁ ଭାଗ ବଣ୍ଟା ହୋଇ ଯାଇଥିଲା ଏବଂ କେବଳ ପତିତ ଜମିସବୁ ଥିଲା ଗ୍ରାମ୍ୟ ସମାଜର ଯୌଥ ଏବଂ ନିଷ୍କର ସଂପତ୍ତି ରୂପେ । ତାମିଲନାଡ଼ୁରେ ଥିଲା ଜଳସେଚନ ବ୍ୟବସ୍ଥା ଯୁକ୍ତ ପ୍ରଚୁର ଜମି ଏବଂ ସେସବୁକୁ ଭାଗବାଣ୍ଟ କରାଯାଉଥିଲା ଲଟାରି ବା ଗୁଳା ପକେଇ । କାରଣ, ଅପେକ୍ଷାକୃତ ବୃଷ୍ଟିହୀନ ବର୍ଷଗୁଡ଼ିକରେ ଉଚ୍ଚ ଟାଙ୍ଗରା ଜମିସବୁ ଯଥେଷ୍ଟ ପରିମାଣରେ ଜଳ ପାଉ ନଥିଲା ।

ଅମରନାୟକମାନେ ସେମାନଙ୍କ ଦ୍ୱାରା ଆଦାୟକୃତ ଖଜଣାର ପରିମାଣ ବୃଦ୍ଧି କରିବାକୁ ଚେଷ୍ଟା କରୁଥିଲେ, ଫଳରେ ଖଜଣାର ମୋଟ ପରିମାଣ ବଢ଼ି ଯାଇଥିଲା ବୋଲି ମନେ ହୁଏ । ଚତୁର୍ଦ୍ଦଶ ଶତାବ୍ଦୀର ମଝାମଝି ବେଳକୁ ସିଦ୍ଧାନ୍ତ କରାଯାଇଥିଲା ସମସ୍ତ ଦେୟକୁ ମୁଦ୍ରା ଆକାରରେ ଆଦାୟ କରିବା ପାଇଁ । ଏହା ଫଳରେ କୃଷକମାନଙ୍କ ଅବସ୍ଥା ଆଉରି ଖରାପ ହୋଇ ଯାଇଥିଲା । ତତ୍କାଳୀନ ଖୋଦିତ ଲିପିଗୁଡ଼ିକ ଦ୍ୱାରା ବିଚାର କଲେ, ଜଣାଯାଏ ଯେ, କେତେକ ଗ୍ରାମ୍ୟ ସମାଜ ସେତେବେଳେ ଗ୍ରାମ୍ୟ ଜମିର କେତେକାଂଶକୁ ବିକ୍ରି କରି ଦେବାକୁ, କିମ୍ବା ସିଧାସଳଖ ଘର ଦ୍ୱାର ଉଠେଇ ନେଇ ଅନ୍ୟତ୍ର ଚାଲିଯିବାକୁ ବାଧ୍ୟ ହୋଇଥିଲେ । ଏହି ସମୟରେ ସମାଜର ସଦସ୍ୟମାନେ ମଧ୍ୟ ସେମାନଙ୍କ ପୂର୍ବ ଅଧିକାର ହରେଇବାକୁ ଆରମ୍ଭ କରିଥିଲେ । ଅମରନାୟକମାନେ ଗ୍ରାମର ମୁଖିଆ ଓ ପୋଥିଲେଖକ ନିଯୁକ୍ତ କରୁଥିଲେ । ଗ୍ରାମ୍ୟ ସମାଜର ସଦସ୍ୟବୃନ୍ଦଙ୍କ (କେନ୍ୟଚି) ସଂପତ୍ତିରେ ପ୍ରକୃତ ଅଧିକାର କ୍ରମଶଃ ଅଧିକରୁ ଅଧିକ ଏହି ତଥ୍ୟ ମଧ୍ୟ ଦେଇ ପ୍ରକାଶ ପାଇବାକୁ ଲାଗିଲା ଯେ, ଏପରିକି ଦୀର୍ଘ ସମୟର ବ୍ୟବଧାନରେ ଜମିରେ ସେମାନଙ୍କ ଅଧିକାରକୁ ସେମାନେ ଫେରି ପାଇ ପାରୁଥିଲେ । ଗ୍ରାମ୍ୟ ସମାଜର ବିପୁଳ ସଂଖ୍ୟକ ସଦସ୍ୟ ଅଳ୍ପ କାଳ ମଧ୍ୟରେ ମାଲିକଙ୍କ ଇଚ୍ଛାଧୀନ ଭଡ଼ାଟିଆ ପ୍ରଜାରେ (ପାୟାକାରୀରେ) ପରିଣତ ହେଲେ, ଯେଉଁମାନେ ଫସଲର ଏକ ଅଂଶର ବିନିମୟରେ

ଜମି ଚାଷ କରୁଥିଲେ । ଏହି ପାୟାକାରୀମାନେ ଭୂସ୍ୱାମୀମାନଙ୍କ ନିକଟରେ ଅଧିକାଂଶ ସମୟରେ ଋଣରେ ଆବଦ୍ଧ ରହୁଥିଲେ ଏବଂ ଯେଉଁ ଜମିରେ ସେମାନେ ଚାଷବାସ କରୁଥିଲେ, ତାହା ଯେତେବେଳେ ହସ୍ତାନ୍ତରିତ ହୋଇ ଯାଉଥିଲା, ସେତେବେଳେ ଭୂମିଦାସମାନଙ୍କ ଭଳି ସେମାନେ ମଧ୍ୟ ନୂତନ ଭୂସ୍ୱାମୀଙ୍କ ପ୍ରଜାରେ ପରିଣତ ହେଉଥିଲେ । ଅବସ୍ଥାର ଏହି ଅବନତି ଫଳରେ କୃଷକମାନଙ୍କ ମଧ୍ୟରେ ବେଳେ ବେଳେ ଅସନ୍ତୋଷ ମଧ୍ୟ ଦେଖା ଦେଉଥିଲା । କୃଷକମାନେ ଗ୍ରାମ ଛାଡ଼ି ପଳେଇ ଯାଉଥିଲେ ଏବଂ ଏହି ପଳେଇ ଯିବା ମଧ୍ୟରେ ସେମାନଙ୍କ ପ୍ରତିବାଦ ସାଧାରଣତଃ ପ୍ରକାଶ ପାଉଥିଲା । ତେବେ ୧୩୭୯, ୧୫୦୬ ଓ ୧୫୫୧ ଖ୍ରୀଷ୍ଟାବ୍ଦରେ ବଡ଼ ବଡ଼ କୃଷକ ବିଦ୍ରୋହ ଦମନର ଉଲ୍ଲେଖ ମିଳିଥାଏ ।

କେବଳ ଗ୍ରାମାଞ୍ଚଳରେ ସାମନ୍ତବାଦୀ ଭୂସ୍ୱାମୀମାନଙ୍କର କ୍ଷମତା ନିୟମିତ ଭାବେ ବୃଦ୍ଧି ପାଉ ନଥିଲା, ସହରଗୁଡ଼ିକରେ ମଧ୍ୟ ବୃଦ୍ଧି ପାଉଥିଲା । ସହରଗୁଡ଼ିକର ପ୍ରଶାସନକୁ ପରିଚାଳନା କରୁଥିଲେ କେନ୍ଦ୍ରୀୟ କର୍ତ୍ତୃପକ୍ଷଙ୍କ ଦ୍ୱାରା ନିଯୁକ୍ତ ଶାସନ କର୍ତ୍ତାବୃନ୍ଦ (ଇତିପୂର୍ବରୁ ପ୍ରଚଳିତ ପ୍ରଥା ଅନୁଯାୟୀ ବିଭିନ୍ନ ଜାତିର ଲୋକଙ୍କୁ ନେଇ ଗଠିତ ନଗର ପରିଷଦଗୁଡ଼ିକ ପରିବର୍ତ୍ତେ) ଏବଂ ସମୁଦ୍ର ବନ୍ଦର ଓ ବଜାରଗୁଡ଼ିକର ଦେୟ ଶୁଳ୍କ ନିର୍ଦ୍ଧାରଣ ଓ ସେସବୁ ଆଦାୟର ଦାୟିତ୍ୱ ନେଉଥିଲେ ସାମନ୍ତ ଭୂସ୍ୱାମୀ ଓ ସୁଧଖୋର ମହାଜନମାନେ । ବିଜୟନଗର ରାଜ୍ୟରେ ଏହି ସାମନ୍ତ ଭୂସ୍ୱାମୀମାନଙ୍କର ପ୍ରତିପତ୍ତି କ୍ରମଶଃ ବୃଦ୍ଧି ପାଇଥିଲା ଏବଂ ସେମାନେ କ୍ରମଶଃ ଧନୀ ହୋଇ ଉଠିଥିଲେ । ରାଜ୍ୟର ରାଜଧାନୀ ସେତେବେଳେ ବହିରାଗତ ପର୍ଯ୍ୟଟକମାନଙ୍କୁ ଅଭିଭୂତ କରି ଦେଉଥିଲା ତା'ର ବିରାଟ ଆୟତନ, ସହରର ଚାରି ପାଖରେ ଥିବା ସାତଟି ପ୍ରକାଣ୍ଡ ଦୁର୍ଗ ପ୍ରାଚୀର, ତା'ର ବିଶାଳ ଜନସଂଖ୍ୟା, ବଜାର ଏବଂ ମଣିକାରମାନଙ୍କର ମହଲାଗୁଡ଼ିକର ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ଏବଂ ଆମୋଦ ପ୍ରମୋଦର ବିପୁଳ ବ୍ୟବସ୍ଥା ଦ୍ୱାରା । ଅନ୍ୟ ଦିଗରେ, ପର୍ତ୍ତୁଗୀଜ୍ ଇତିହାସବିଦ୍ ନୁନିଶ୍‌ଙ୍କ ଭାଷାରେ, କୃଷକମାନେ ବାଧ୍ୟ ହୋଇଥିଲେ ସେମାନଙ୍କ ଉତ୍ପନ୍ନ ଫସଲର ନବଦଶମାଂଶ ଅମରନାୟକମାନଙ୍କୁ ଦେବାକୁ ଏବଂ ଅମରନାୟକମାନେ ରାଜାଙ୍କୁ ଦେଉଥିଲେ ସେମାନଙ୍କ ଆୟର ଏକ ତୃତୀୟାଂଶରୁ ଅର୍ଦ୍ଧେକ । ମନେ ହୁଏ, ନୁନିଶ୍ ଏଠାରେ କୃଷକ ବୋଇଲେ ପାୟାକାରୀମାନଙ୍କୁ ବୁଝିଛନ୍ତି ।

କୃଷ୍ଣଦେବରାୟଙ୍କ ମୃତ୍ୟୁ ପରେ ପୁଣି ଥରେ ସାମନ୍ତ ଭୂସ୍ୱାମୀମାନଙ୍କ ମଧ୍ୟରେ ବିରୋଧ ତେଜି ଉଠିଥିଲା । ତେବେ ଏଥର ସଂଘର୍ଷ ଦେଖା ଦେଇଥିଲା କୃଷ୍ଣଦେବରାୟଙ୍କ ଭାଇ ରାଜା ଅଚ୍ୟୁତ (୧୫୩୦-୧୫୪୨ ଖ୍ରୀଷ୍ଟାବ୍ଦ) ଏବଂ ମନ୍ତ୍ରୀ ରାମ ରାୟଙ୍କ ମଧ୍ୟରେ । ଦେଖୁ ଦେଖୁ ଏହା ରୂପ ପରିଗ୍ରହ କରିଥିଲା ଦୁଇଟି ସାମନ୍ତ ଗୋଷ୍ଠୀ ମଧ୍ୟରେ ମାରାତ୍ମକ ରକ୍ତକ୍ଷୟୀ ସଂଘର୍ଷରେ । ଅଚ୍ୟୁତଙ୍କ ମୃତ୍ୟୁ ପରେ ରାମ ରାୟ ଅଚ୍ୟୁତଙ୍କ ଭ୍ରାତୃଷ୍ପୁତ୍ର ସଦାଶିବଙ୍କୁ ସିଂହାସନରେ ବସାଇଥିଲେ ମଧ୍ୟ କାର୍ଯ୍ୟତଃ ସେ ନିଜେ କ୍ଷମତା ହସ୍ତଗତ କରି ରଖିଥିଲେ । ଏହା ପରେ ବିଜୟନଗର ରାଜ୍ୟ ଗୋଟିକ ପରେ ଗୋଟିଏ ଦକ୍ଷିଣ ଭାରତୀୟ ରାଜ୍ୟ ସହିତ ସନ୍ଧି ଚୁକ୍ତିରେ ଆବଦ୍ଧ ହୋଇଥିଲା ଏବଂ ଅନବରତ ଅନ୍ୟ ପ୍ରତିପକ୍ଷୀୟ ରାଜ୍ୟଗୁଡ଼ିକ ଉପରେ ଆକ୍ରମଣ କରି ଲୁଣ୍ଠନ ଚଳେଇ ଯାଇଥିଲା । ଏହାର ପ୍ରତିକ୍ରିୟା ସ୍ୱରୂପ ଦାକ୍ଷିଣାତ୍ୟର ସୁଲତାନ୍ ଶାସିତ ରାଜ୍ୟଗୁଡ଼ିକ ବିଜୟନଗର ବିରୁଦ୍ଧରେ ଐକ୍ୟବଦ୍ଧ ହୋଇ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ୧୫୬୫ ଖ୍ରୀଷ୍ଟାବ୍ଦରେ ତାଲିକୋଟା ଯୁଦ୍ଧରେ ରାମ ରାୟଙ୍କ ବାହିନୀକୁ ପରାସ୍ତ କରିଥିଲେ । ଶତ୍ରୁ ବାହିନୀଗୁଡ଼ିକ ରାଜଧାନୀ ବିଜୟନଗରକୁ ମାଟି ସହିତ ମିଶେଇ ଦେଲେ ।

ତାଲିକୋଟା ଯୁଦ୍ଧ ପରେ ବିଜୟନଗର ରାଜ୍ୟର ପତନ ଆରମ୍ଭ ହୋଇଥିଲା ଦ୍ରୁତ ଗତିରେ । ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ଏହି ବିଶାଳ ସାମ୍ରାଜ୍ୟଟି ପରିଣତ ହୋଇଥିଲା ଏକ ଛୋଟ ରାଜ୍ୟରେ, ଯାହାର ରାଜଧାନୀ ଥିଲା ପେନୁକୋଣ୍ଡା । ସାମ୍ରାଜ୍ୟର ଅନ୍ତର୍ଗତ ପୂର୍ବତନ ସାମନ୍ତ ରାଜ୍ୟଗୁଡ଼ିକ , ଯଥା , ମଦୁରାଇ , ତାଞ୍ଜୋର , ଜିଞ୍ଜି , ଇକ୍କେରି (ବା ବେଦ୍‌ନୋର) , ଆଦି ଇତିମଧ୍ୟରେ ସ୍ୱାଧୀନତା ଅର୍ଜନ କରିଥିଲେ । ଏହି ସମୟରେ ନୂଆ ଏକ ରାଜ୍ୟ ମଧ୍ୟ ଗଢ଼ି ଉଠିଥିଲା – ତା'ର ନାମ ହେଲା ମହୀଶୂର ।

ରାମ ରାୟଙ୍କ ଭାଇ ତିରୁମଲ ଏହା ପରେ ନିଜକୁ ବିଜୟନଗରର ରାଜା ବୋଲି ଘୋଷଣା କରିଥିଲେ । ଏହା ହିଁ ବିଜୟନଗରର ଶେଷ ରାଜବଂଶ ଅରବିଦୁ ବଂଶର ପ୍ରତିଷ୍ଠାତା । ଏହି ରାଜବଂଶର ସବୁଠାରୁ ଉଲ୍ଲେଖଯୋଗ୍ୟ ରାଜା ଥିଲେ ଦ୍ୱିତୀୟ ଭେଙ୍କଟ (୧୫୮୬-୧୬୧୪ ଖ୍ରୀଷ୍ଟାବ୍ଦ) । ସେ ପ୍ରାୟ ବିଜୟନଗରର ପୂର୍ବବର୍ତ୍ତୀ ଆୟତନକୁ ଫେରେଇ ଆଣିବାକୁ ସମର୍ଥ ହୋଇଥିଲେ । ତେବେ , ତାଙ୍କ ମୃତ୍ୟୁ ପରେ ସିଂହାସନ ଅଧିକାର ନେଇ ବିଭିନ୍ନ ଦାବିଦାରମାନଙ୍କ ମଧ୍ୟରେ ଏକ ଦୀର୍ଘ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇ ଯାଇଥିଲା , ଯେଉଁଥିରେ ପ୍ରତିବେଶୀ ରାଜ୍ୟଗୁଡ଼ିକ ମଧ୍ୟ ଯୋଗ ଦେଇଥିଲେ । ଫଳରେ ସଂପ୍ରତି ପୁନଃ ଅର୍ଜିତ ଭୂଖଣ୍ଡଗୁଡ଼ିକ ପୁଣି ବିଚ୍ଛିନ୍ନ ହୋଇଗଲେ । ଦୀର୍ଘ ସଂଘର୍ଷ ପରେ ସିଂହାସନ ଅଧିକାର କରିଥିଲେ ଦ୍ୱିତୀୟ ରାମ (୧୬୧୪-୧୬୩୦ ଖ୍ରୀଷ୍ଟାବ୍ଦ) । ରାଜସିଂହାସନରେ ବସିଲା ପରଠାରୁ ତାଙ୍କୁ ତାଙ୍କ ଜୀବନ ବ୍ୟୟ କରିବାକୁ ପଡ଼ିଥିଲା ମଦୁରାଇ ରାଜ୍ୟ ବିରୁଦ୍ଧରେ ବହୁ ଯୁଦ୍ଧ ଏବଂ ତାଙ୍କ ଅଧୀନସ୍ଥ ସାମନ୍ତ ରାଜ୍ୟଗୁଡ଼ିକର ବିଦ୍ରୋହ ଦମନ କରିବାରେ । ରାଜା ଦ୍ୱିତୀୟ ଶ୍ରୀରଙ୍ଗମ୍‌ଙ୍କ ରାଜତ୍ୱକାଳରେ (୧୬୪୨-୧୬୭୦ ଖ୍ରୀଷ୍ଟାବ୍ଦରେ) ବିଜୟନଗର ସାମ୍ରାଜ୍ୟଟି ବିଜାପୁର ଏବଂ ଗୋଲ୍‌କୋଣ୍ଡା ରାଜ୍ୟରେ ବିଭକ୍ତ ହୋଇ ଯାଇଥିଲା । ସାମ୍ରାଜ୍ୟର ପ୍ରାକ୍ତନ ରାଜା ତାଙ୍କ ଜୀବନ ଅତିବାହିତ କରିଥିଲେ ପାଳି କରି ଏହି ଦୁଇ ପ୍ରାକ୍ତନ ସାମନ୍ତ ରାଜ୍ୟର ରାଜସଭାରେ ଅପଦାର୍ଥ ପରୋପଜୀବୀ ହିସାବରେ ।

# ତ୍ରୟୋଦଶ ଏବଂ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ଭାରତର ସାଂସ୍କୃତିକ ଅବସ୍ଥା

## ଧର୍ମ

ଦିଲ୍ଲୀରେ ସୁଲତାନ୍ ରାଜତ୍ୱ ପ୍ରତିଷ୍ଠା ହେଲା ପରେ ଭାରତବର୍ଷ ତଥାକଥିତ ମୁସଲିମ୍ ଦୁନିଆର ସଂସ୍କୃତିର ବୃତ୍ତର ଅନ୍ତର୍ଗତ ହୋଇ ପଡ଼ିଲା । ସିନ୍ଧୁ ଦେଶରେ ଇସ୍‌ଲମ୍ ଧର୍ମର ଧ୍ୟାନଧାରଣାର ଅନୁପ୍ରବେଶ ଆରମ୍ଭ ହୋଇଥିଲା ସପ୍ତମ ଶତାବ୍ଦୀରେ ଏବଂ ଉତ୍ତର ଭାରତର ଅନ୍ୟାନ୍ୟ ଅଂଶରେ ତାହା ଆରମ୍ଭ ହୋଇଥିଲା ନବମ ଶତାବ୍ଦୀରେ । ତେବେ ଦିଲ୍ଲୀର ସୁଲତାନ୍ ରାଜତ୍ୱ ଅମଳରେ ଇସ୍‌ଲମ୍‌କୁ ରାଷ୍ଟ୍ରୀୟ ଧର୍ମରେ ପରିଣତ କରାଯାଇଥିଲା ଏବଂ ସ୍ଥାନୀୟ ଅଧିବାସୀମାନଙ୍କ ଉପରେ ବଳପୂର୍ବକ

ଏହାକୁ ଚପେଇ ଦିଆଯାଇଥିଲା । ହିନ୍ଦୁ ଅଧିବାସୀମାନଙ୍କର ବିଭିନ୍ନ ଅଂଶ ଏହି ନୂତନ ଧର୍ମରେ ଦୀକ୍ଷିତ ହୋଇଥିଲେ । ସେମାନଙ୍କ ମଧ୍ୟରୁ କ୍ଷୁଦ୍ର ଏକ ଅଂଶ ବଳପୂର୍ବକ ହୋଇଥିଲା ବେଳେ ଆଉ କେତେକ ଅଂଶ ବିଭିନ୍ନ ସୁବିଧା ସୁଯୋଗ ପାଇବା ଆଶାରେ ଇସ୍‌ଲାମ୍ ଧର୍ମ ଗ୍ରହଣ କରିଥିଲେ । କାରଣ ଏକମାତ୍ର ଇସ୍‌ଲାମ୍ ଧର୍ମାବଲମ୍ବୀମାନଙ୍କ ପକ୍ଷରେ ହିଁ ରାଜସଭାରେ ଉଚ୍ଚ ପଦ ଲାଭ କରିବା ସମ୍ଭବ ଥିଲା । ଏହା ଛଡ଼ା ତୃତୀୟ ଅଂଶଟି ଏହି ପଥ ଅବଲମ୍ବନ କରିଥିଲେ ଅଣମୁସଲମାନମାନଙ୍କ ଉପରେ ମୁଣ୍ଡପିଛା ଧାର୍ଯ୍ୟ କରାଯାଇଥିବା ଜିଜିଆ କରକୁ ଏଡ଼େଇ ଯିବାର ଉପାୟ ହିସାବରେ । ଚତୁର୍ଥ ଅଂଶଟି, ଅର୍ଥାତ୍, ନିମ୍ନ ଜାତିର ହିନ୍ଦୁମାନେ ଧର୍ମାନ୍ତରକରଣକୁ ମାନି ନେଇଥିଲେ ହିନ୍ଦୁ ସମାଜରେ ସେମାନଙ୍କ ସାମାଜିକ ଅବସ୍ଥାନର ଅସୁବିଧାଗୁଡ଼ିକୁ ଏଡ଼େଇ ଯିବା ଆଶାରେ ।

ନୂତନ ଭାରତ ବିଜୟୀମାନେ କେବଳ ଏକା ଏକା ଭାରତକୁ ଆସି ନଥିଲେ । ଅବିଳମ୍ବେ ସେମାନଙ୍କ ପଛେ ପଛେ ଆସିଥିଲେ ସେମାନଙ୍କ ଆତ୍ମୀୟ ସ୍ୱଜନ ଓ ନିଜ ଉପଜାତିର ଲୋକମାନେ । ଅନ୍ୟାନ୍ୟ ଦେଶରୁ ମୁସଲିମ୍ ଧର୍ମଗୁରୁ, ପଣ୍ଡିତ ଏବଂ କବିମାନେ ଆସି ସମବେତ ହୋଇଥିଲେ ଭାରତୀୟ ସୁଲତାନ୍‌ମାନଙ୍କର ଦରବାରଗୁଡ଼ିକରେ । ଏହା ଫଳରେ ଭାରତରେ ମୁସଲିମ୍ ଧର୍ମାବଲମ୍ବୀମାନଙ୍କ ସଂଖ୍ୟା ବହୁତ ବଢ଼ି ଯାଇଥିଲା ଏବଂ ଦେଶର କେତେକ ଅଞ୍ଚଳରେ (ଯଥା, ବଙ୍ଗ ଦେଶରେ ବୌଦ୍ଧ ଧର୍ମର ଅବକ୍ଷୟ ପରେ ବହୁ ସଂଖ୍ୟକ ପୂର୍ବତନ ବୌଦ୍ଧ ଏହି ନୂତନ ଧର୍ମ ବିଶ୍ୱାସକୁ ଗ୍ରହଣ କରି ନେଇଥିଲେ) ମୁସଲମାନମାନେ ପରିଣତ ହୋଇଥିଲେ ଜନସଂଖ୍ୟାର ସଂଖ୍ୟାଗରିଷ୍ଠ ଅଂଶରେ । ତେବେ ଅନ୍ୟାନ୍ୟ ମୁସଲିମ୍ ଦେଶମାନଙ୍କ ସହିତ ଭାରତର ପାର୍ଥକ୍ୟଟି ଏହି କ୍ଷେତ୍ରରେ ଯେ, ଭାରତରେ ଇସ୍‌ଲାମ୍ ଧର୍ମ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଦୁଇଟି ମୁଖ୍ୟ ଧର୍ମ ମଧ୍ୟରୁ ଗୋଟିଏ ହୋଇ ରହିଯାଇଛି, ଏହା ଦେଶର ଏକମାତ୍ର ଧର୍ମ କେବେ ହୋଇ ପାରି ନି । ଦିଲ୍ଲୀର ସୁଲତାନ୍ ରାଜତ୍ୱକାଳର ଶେଷ ଆଡ଼କୁ ମୁସଲମାନମାନେ ଦେଶର ଅଧିକାଂଶ ଅଞ୍ଚଳରେ ଶାସକ ସଂପ୍ରଦାୟରେ ପରିଣତ ହୋଇଥିଲେ । ଦିଲ୍ଲୀର ସେନାବାହିନୀର ଅଧିକାଂଶ ସେନାଧ୍ୟକ୍ଷ ଓ ସୈନ୍ୟ ଥିଲେ ମୁସଲମାନ, ପ୍ରାଦେଶିକ ଶାସନ କର୍ତ୍ତା ଓ ସହରର ପ୍ରଶାସକମାନଙ୍କ ମଧ୍ୟରେ ଚିତ୍ରଟା ମଧ୍ୟ ଥିଲା ଅନୁରୂପ । ଅନ୍ୟ ଦିଗରେ, ହିନ୍ଦୁମାନେ ସେ ପର୍ଯ୍ୟନ୍ତ ଥିଲେ ଖଜଣା ଆଦାୟକାରୀ, ବଣିକ ଏବଂ ସୁଧଖୋର ମହାଜନମାନଙ୍କର ପ୍ରଧାନ ଅଂଶ । ସାଧାରଣ ଭାବେ କୃଷକ ସଂପ୍ରଦାୟର ପ୍ରାୟ ଅଧିକାଂଶ ଅଂଶ ଥିଲେ ହିନ୍ଦୁ ।

ଦେଶରେ ହିନ୍ଦୁ ଏବଂ ମୁସଲମାନମାନଙ୍କ ମଧ୍ୟରେ ବାରମ୍ବାର ମାରାତ୍ମକ ସଂଘର୍ଷ ଘଟୁଥିଲେ ମଧ୍ୟ ଏକା ଦେଶ ମାଟିରେ ଦୀର୍ଘ କେଇ ଶହ ବର୍ଷ ଧରି ସହଅବସ୍ଥାନ ଫଳରେ ଦୁଇଟି ସଂପ୍ରଦାୟ ଉପରେ ପାରସ୍ପରିକ ପ୍ରଭାବ ବିସ୍ତାର ଏବଂ ଧର୍ମବିଶ୍ୱାସ ଓ ଆଗ୍ରର ଆଚରଣ କ୍ଷେତ୍ରରେ ପାରସ୍ପରିକ ସମ୍ମିଶ୍ରଣ ମଧ୍ୟ ଘଟିଥିଲା । ଭାରତୀୟ ମୁସଲମାନମାନେ ଜାତି ଭେଦ ପ୍ରଥାକୁ ଗ୍ରହଣ କରି ନେଇଥିଲେ ଏବଂ ଲୌକିକ ଦେବଦେବୀମାନଙ୍କୁ ମାନିବାକୁ ଆରମ୍ଭ କରି ଦେଇଥିଲେ । ଫଳତଃ, ଶେଷକୁ ସେମାନେ ଏପରିସବୁ ଦେବଦେବୀଙ୍କର ପୂଜା କରିବାକୁ ଆରମ୍ଭ କରିଥିଲେ, ଯେଉଁମାନଙ୍କୁ ମୁସଲମାନମାନେ କେବେ ମାନୁ ନଥିଲେ । ସେମାନେ ଯୋଗ ଦର୍ଶନର କେତେକ ଦିଗକୁ ମଧ୍ୟ ଗ୍ରହଣ କରି ନେଇଥିଲେ ଏବଂ ହିନ୍ଦୁମାନଙ୍କର ଉତ୍ସବଗୁଡ଼ିକରେ ଯୋଗ ଦେବାକୁ ଆରମ୍ଭ କରିଥିଲେ । ଫଳରେ ଭାରତୀୟ ପଟ୍ଟଭୂମିରେ ଇସ୍‌ଲାମ୍ ଧର୍ମ ଏକ ଧରଣର ସର୍ବେଶ୍ୱରବାଦୀ ବୈଶିଷ୍ଟ୍ୟ ଅର୍ଜନ

କରିଥିଲା । ଅନ୍ୟ ଦିଗରେ, ହିନ୍ଦୁମାନେ ମୁସଲିମ୍ ଭ୍ରାତୃବୋଧର ଧ୍ୟାନଧାରଣା ଦ୍ୱାରା ପ୍ରଭାବିତ ହୋଇଥିଲେ ଏବଂ ସୁଫୀ ସଂପ୍ରଦାୟଗୁଡ଼ିକର ଜୀବନଯାତ୍ରାର ପଦ୍ଧତି ଓ ଈଶ୍ୱରପ୍ରାପ୍ତି ପକ୍ଷରେ ବହୁବିଧ ପଥର ଅସ୍ତିତ୍ୱ ସଂପର୍କରେ ସୁଫୀ ମତବାଦ ମଧ୍ୟ ସେମାନଙ୍କୁ ପ୍ରଭାବିତ କରିଥିଲା । ଏପରିକି ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ମୁସଲିମ୍ ଧର୍ମନାୟକମାନେ ଜନସାଧାରଣଙ୍କ ମଧ୍ୟରେ ବିଷ୍ଣୁଙ୍କ ଅବତାର ରାମଙ୍କ ସହିତ ରହିମ୍‌ଙ୍କୁ (ଅର୍ଥାତ୍, ଆଲ୍ଲାଙ୍କର ଏକ ବିଶେଷଣ – ପରମ କରୁଣାମୟ) ମିଶେଇ ନେବା ବ୍ୟାପାରରେ ଆପତ୍ତି କରିଥିବାର ଦେଖାଯାଏ । ଇସ୍‌ଲାମ୍ ଧର୍ମ କାହିଁକି ଭାରତରେ ସୁଫୀ ମତବାଦର ଆବରଣ ନେଇ ଜନସାଧାରଣଙ୍କ ମନରେ ଚେର ମେଲେଇଥିଲା, ତାହା ବୁଝିବା କଷ୍ଟକର ନୁହେଁ, କାରଣ ଏହି ଅତୀନ୍ଦ୍ରିୟବାଦୀ ଧ୍ୟାନଧାରଣା ପ୍ରକୃତରେ ରକ୍ଷଣଶୀଳ ମୁସଲିମ୍ ଧ୍ୟାନଧାରଣା ସହିତ ଖାପ ନଖାଉଥିବା କେତେକ ଚିନ୍ତାଧାରାକୁ ଇସ୍‌ଲାମ୍ ଧର୍ମରେ ଅନ୍ତର୍ଭୁକ୍ତ କରି ଦେବାର ପଥ ପରିଷ୍କାର କରିଥିଲା ।

ସମଗ୍ର ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତାବ୍ଦୀରେ ଉଲେମାମାନଙ୍କ ସହିତ ସୁଫୀମାନଙ୍କ ଧର୍ମ ନେଇ ବିରୋଧ ଲାଗିଥିଲା । ଉଲେମାମାନେ ଥିଲେ କୋରାନ୍‌ସମ୍ମତ ଆପୋଷହୀନ ଧ୍ୟାନଧାରଣାର ବାହକ । ମୁସଲିମ୍ ଧର୍ମଗୁରୁ ଏବଂ ସୁଫୀମାନଙ୍କର ଅଧିକାଂଶ କୋରାନ୍‌ର ପଣ୍ଡିତିଆ ବ୍ୟାଖ୍ୟାଠାରୁ ସୁଫୀ ସଂପ୍ରଦାୟର ଆଧ୍ୟାତ୍ମିକ ଗୁରୁ ପଦକୁ ଉନ୍ନୀତ ଶେଖ୍‌ମାନଙ୍କ ଦିବ୍ୟ ଉପଲବ୍ଧିକୁ ପ୍ରାଧାନ୍ୟ ଦେଉଥିଲେ । ସୁଫୀମାନଙ୍କ ମଧ୍ୟରେ କେତେକ ସଂପ୍ରଦାୟରେ (ଯଥା, ଚିଷ୍ଟିଆ ଓ ଫିରଦୌସୀ ସଂପ୍ରଦାୟ ଦ୍ୱୟ) ଏଭଳିସବୁ ଧ୍ୟାନଧାରଣା ଓ ଆଗ୍ରହ ପଦ୍ଧତିର ସମର୍ଥକ ଥିଲେ, ଯେଉଁଗୁଡ଼ିକ ଥିଲା ହିନ୍ଦୁ ଧର୍ମର ଧ୍ୟାନଧାରଣା ଆଗ୍ରହ ବିଗ୍ରହର ଅପେକ୍ଷାକୃତ ନିକଟବର୍ତ୍ତୀ । ଅନ୍ୟମାନେ (ଏମାନଙ୍କ ମଧ୍ୟରେ ଥିଲେ ସାଉରିୟା ଓ ସୋହରାବର୍ଦ୍ଦୀ ସଂପ୍ରଦାୟ ଦୁଇଟି) ଭାରତୀୟ ଇସ୍‌ଲାମ୍ ଧର୍ମରେ ସଂଯୋଜିତ "ନୂତନ ଉଦ୍‌ଭାବନଗୁଡ଼ିକର" ଘୋରତର ବିରୋଧୀ ଥିଲେ ।

ଅନ୍ୟାନ୍ୟ ଇସ୍‌ଲାମୀ ଦେଶର ମୁସଲିମ୍ ଧର୍ମଗୁରୁମାନେ ଯେଉଁସବୁ ମତାଦର୍ଶଗତ କଳହରେ ଲିପ୍ତ ଥିଲେ, ଭାରତୀୟ ମୁସଲିମ୍ ସମାଜକୁ ମଧ୍ୟ ତାହା ପ୍ରଭାବିତ କରିଥିଲା । ଏହି ଯୁଗ ପର୍ବର ସବୁଠାରୁ ପ୍ରଖ୍ୟାତ ସୁଫୀ ଶେଖ୍‌ମାନଙ୍କ ମଧ୍ୟରେ ଥିଲେ : ନିଜାମ ଉଦ୍ଦିନ୍ ଆଉଲିଆ (ମୃତ୍ୟୁ– ୧୩୨୫ ଖ୍ରୀଷ୍ଟାବ୍ଦ) – ହିନ୍ଦୁମାନଙ୍କ ପ୍ରତି ସହନଶୀଳତା ଏବଂ ଅନୁଗାମୀମାନଙ୍କ ନିକଟରୁ ଉଚ୍ଚ ନୈତିକ ଆଦର୍ଶ ଅନୁସରଣ ଦାବି କରୁଥିଲେ; ଆଲ୍ଲା ଉଦ୍ଦୌଲ୍ଲା ସିମ୍‌ନାନି (୧୨୬୧-୧୩୩୬ ଖ୍ରୀଷ୍ଟାବ୍ଦ) ଅନ୍ୟ ପକ୍ଷରେ ସୁନ୍ନି ମତର ଅବଧାରଣାଗୁଡ଼ିକୁ ଦୃଢ଼ ଭାବେ ଟେକି ଧରିବା ପାଇଁ ସୁଫୀମାନଙ୍କୁ ଆବେଦନ କରିଥିଲେ; ସରାଫ ଉଦ୍ଦିନ୍ ଆହମଦ ମାନେରି ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟ ଭାଗରେ ଲିଖିତ ଧର୍ମ ସଂକ୍ରାନ୍ତ ପତ୍ରାବଳୀ ପାଇଁ ଖ୍ୟାତି ଲାଭ କରିଥିଲେ । ଏହିସବୁ ଚିଠିରେ ମୁସଲିମ୍ ସମାଜରେ ସେତେବେଳେ ଅନୁପ୍ରବିଷ୍ଟ ହିନ୍ଦୁ ରୀତିନୀତି ସଂପର୍କରେ ସହନଶୀଳତାର ପରିଚୟ ସେ ଦେଇଥିଲେ ଏବଂ ଶେଖ୍‌ମାନଙ୍କର ଧର୍ମୀୟ ଶାସନରୁ ମୁକ୍ତ ହେବା ବିରୁଦ୍ଧରେ ପ୍ରତିବାଦ କରି ଆଧ୍ୟାତ୍ମିକ ଶିକ୍ଷା ଗୁରୁମାନେ ପ୍ରଥମତଃ ଓ ପ୍ରଧାନତଃ ପାର୍ଥିବ ଭୋଗ ବାସନାକୁ ବର୍ଜନ କରିବା ପାଇଁ ଦାବୀ କରିଥିଲେ । ଫରିଦ ଉଦ୍ଦିନ୍ ଗଞ୍ଜ-ଇ-ଶାକାର (୧୧୭୫-୧୨୬୫ ଖ୍ରୀଷ୍ଟାବ୍ଦ) ବ୍ୟାପକ ଜନପ୍ରିୟତା ଲାଭ କରିଥିଲେ ଏବଂ ତାଙ୍କ ସଂପ୍ରଦାୟଭୁକ୍ତ ସୁଫୀମାନଙ୍କ ଦ୍ୱାରା ଅନୁସୃତ ଅତୀନ୍ଦ୍ରିୟବାଦୀ ଅନୁଶାସନଗୁଡ଼ିକୁ ଅନୁବାଦ କରିଥିଲେ ହିନ୍ଦି ଭାଷାରେ । ଏହି ସଂପ୍ରଦାୟଭୁକ୍ତ ସୁଫୀମାନେ ଧର୍ମୀୟ

ସଂଗୀତ ଗାଇବା ଓ ନାଚ ମାଧ୍ୟମରେ ଭାବ ସମାଧି ଅବସ୍ଥାରେ ପହଞ୍ଚୁଥିଲେ । ଫରିଦ ଉଦ୍ଦିନ୍ ବିଖ୍ୟାତ ଥିଲେ ତାଙ୍କର ମୃଦୁ ସ୍ୱଭାବ ଓ ମାନବିକତା ପାଇଁ (ସେ କହୁଥିଲେ : "ଛୁରି ଠାରୁ ଛୁଞ୍ଚି ଭଲ, କାରଣ ଛୁଞ୍ଚି ଦ୍ୱାରା ସବୁ କିଛିକୁ ସିଲେଇ କରି ଯୋଡ଼ି ଦିଆଯାଇ ପାରେ ଏବଂ ଛୁରି ସବୁ କିଛିକୁ କାଟି ଟୁକୁରା ଟୁକୁରା କାଟି ଦିଏ), ତେବେ "ଆଦି ଗ୍ରନ୍ଥ" ନାମରେ ଶେଖ୍‌ମାନଙ୍କର ପବିତ୍ର ରଚନାବଳୀର ସଂକଳିତ ଗ୍ରନ୍ଥରେ ଯେଉଁସବୁ ପଂକ୍ତି ଫରିଦ ଉଦ୍ଦିନ୍‌ଙ୍କ ଦ୍ୱାରା ରଚିତ ବୋଲି ପରିଚିତ, ତାହା ଅନେକ ପରେ ରଚିତ ହୋଇଛି ବୋଲି ଅନୁମାନ କରାଯାଏ । ଏହିଭଳି ସନ୍ଦେହର କାରଣ ସୃଷ୍ଟି କରେ, ସେଇସ୍ତାନ୍‌ରୁ ଭାରତକୁ ଆସିଥିବା ମୈନ ଉଦ୍ଦିନ୍ ଚିଷ୍ତିଙ୍କ (୧୧୪୧-୧୨୩୬ ଖ୍ରୀଷ୍ଟାବ୍ଦ) ଲିପିବଦ୍ଧ ଜୀବନୀ ଓ ଶିକ୍ଷାବଳୀ ।

ହିନ୍ଦୁ ଓ ଇସ୍‌ଲାମୀ ଭାବଧାରା ପରସ୍ପରର ସମୀପବର୍ତ୍ତୀ ହେବାର ବିଷୟଟି ବିଶେଷ ଭାବେ ଅନୁଭବ କରାଯାଏ ଭକ୍ତିବାଦୀ ଆନ୍ଦୋଳନର ଶେଷ ପର୍ଯ୍ୟାୟଗୁଡ଼ିକରେ । ସାମନ୍ତବାଦୀ ସମାଜର ନିପୀଡ଼ିତ ସ୍ତରଗୁଡ଼ିକର (ବିଶେଷ କରି ସହରାଞ୍ଚଳର ବଣିକ ଓ କାରିଗର ସଂପ୍ରଦାୟଗୁଡ଼ିକର) ଏହି ଆନ୍ଦୋଳନ ସାମନ୍ତବାଦୀ ଶାସନ ବିରୁଦ୍ଧରେ ପ୍ରତିବାଦ ଓ ଅସନ୍ତୋଷ ପ୍ରକାଶର ଏକ ଧର୍ମୀୟ ଓ ଅତୀନ୍ଦ୍ରିୟ ମାଧ୍ୟମରେ ପରିଣତ ହୋଇଥିଲା । ଆନୁଷ୍ଠାନିକ ହିନ୍ଦୁ ଧର୍ମ ଓ ଇସ୍‌ଲାମ୍ ଧର୍ମ ମଧ୍ୟରେ ଧର୍ମୀୟ ଅସହିଷ୍ଣୁତା ଓ ସୂକ୍ଷ୍ମ ପଣ୍ଡିତପଣିଆ ପରିବର୍ତ୍ତେ ଭକ୍ତିବାଦୀ ଆନ୍ଦୋଳନର ପ୍ରବକ୍ତାମାନେ ପ୍ରଚାର କରିଥିଲେ ଏକ ଓ ଅଦ୍ୱିତୀୟ ଈଶ୍ୱରର ଧାରଣା ଏବଂ କହିଥିଲେ ଯେ, ଏହି ଈଶ୍ୱରଙ୍କ ପ୍ରତି ଭକ୍ତି ଓ ପ୍ରେମ ନିବେଦନ କରିବା ଧର୍ମୀୟ ଆଚାର ବିଚାରଠାରୁ ବହୁ ଗୁଣରେ ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ଯେକୌଣସି ଜାତି, ବର୍ଣ୍ଣ ଓ ଧର୍ମବିଶ୍ୱାସର ପ୍ରତ୍ୟେକ ମଣିଷ ପକ୍ଷରେ ଏହି ଈଶ୍ୱର ପ୍ରାପ୍ତି ସମ୍ଭବ । ଈଶ୍ୱରଙ୍କ ସମୀପରେ ସମସ୍ତ ମଣିଷର ମୂଲ୍ୟ ସମାନ – ଭକ୍ତିବାଦ ଦ୍ୱାରା ପ୍ରଚାରିତ ଏହି ନୀତି ମଧ୍ୟରେ ସାମାଜିକ ସାମ୍ୟର ଆଦର୍ଶ, କ୍ଷମତାସୀନଙ୍କ ବିରୁଦ୍ଧରେ ପ୍ରତିବାଦ, ହିନ୍ଦୁ ଓ ଇସ୍‌ଲାମ୍ ଉଭୟ ଧର୍ମମତର ପୂଜାଧାରୀମାନଙ୍କର ବିରୋଧିତା ଏବଂ ମୁସଲମାନମାନଙ୍କର ସୁବିଧାବାଦୀ ଆଧିପତ୍ୟ ଓ ହିନ୍ଦୁମାନଙ୍କର ଜାତିଭେଦ ପ୍ରଥା ବିରୁଦ୍ଧରେ ଆପତ୍ତିର ପ୍ରତିଫଳନ ଲକ୍ଷ୍ୟ କରାଯାଏ । ସ୍ୱଭାବତଃ, ଅଧିକାଂଶ କ୍ଷେତ୍ରରେ ଭକ୍ତିବାଦୀ ଆନ୍ଦୋଳନ ସହିତ ହିନ୍ଦୁମାନେ ଜଡ଼ିତ ଥିଲେ । ତେବେ ଆନ୍ଦୋଳନଟିର କେତେକ ବିଶିଷ୍ଟ ପ୍ରବକ୍ତା ଆସିଥିଲେ ମୁସଲମାନ ସଂପ୍ରଦାୟ ମଧ୍ୟରୁ । ଏ କ୍ଷେତ୍ରରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟଟି ହେଉଛି ଯେ, ଭକ୍ତିବାଦର ଆଧ୍ୟାତ୍ମିକ ଶିକ୍ଷାଗୁରୁମାନେ କେବଳମାତ୍ର ହିନ୍ଦୁମାନଙ୍କ ଉଦ୍ଦେଶ୍ୟରେ ନୁହେଁ, ମୁସଲମାନମାନଙ୍କ ଉଦ୍ଦେଶ୍ୟରେ ମଧ୍ୟ ଶିକ୍ଷା ପ୍ରଚାର କରିଥିଲେ । ସେମାନେ ଶିକ୍ଷା ପ୍ରଚାର କରିଥିଲେ ବିଭିନ୍ନ ଆଞ୍ଚଳିକ ଭାଷାରେ ରଚିତ ଗୀତ ଗାନ ମାଧ୍ୟମରେ । ଏହିଭଳି ବୋଧଗମ୍ୟ ଉପାୟରେ ପ୍ରଚାରିତ ହେବା ଦ୍ୱାରା ଭକ୍ତିବାଦର ଧ୍ୟାନଧାରଣାଗୁଡ଼ିକ ଜନସାଧାରଣଙ୍କର ବ୍ୟାପକ ଓ ବିଭିନ୍ନ ସ୍ତର ମଧ୍ୟରେ ବିସ୍ତାର ଲାଭ କରିଥିଲା ଏବଂ ଗୀତଗୁଡ଼ିକ ପ୍ରାୟ ଲୋକ ଗୀତିରେ ପରିଣତ ହୋଇଥିଲା । ଭକ୍ତିବାଦୀ ଆନ୍ଦୋଳନ କ୍ରମେ ଭାରତର ବିଭିନ୍ନ ଅଞ୍ଚଳରେ ବ୍ୟାପି ଯାଇଥିଲା, ତେବେ ଏ ଆନ୍ଦୋଳନର କୌଣସି ଏକ ସାଂଗଠନିକ କେନ୍ଦ୍ର ନଥିଲା ।

ଭକ୍ତିବାଦୀ ଆନ୍ଦୋଳନ କ୍ଷେତ୍ରରେ ସବୁଠାରୁ ଅଧିକ ପ୍ରଭାବ ବିସ୍ତାର କରିଥିଲେ କବିର (ଆନୁମାନିକ ୧୩୮୦ରୁ ୧୪୧୪ ଖ୍ରୀଷ୍ଟାବ୍ଦ) । କବିର ଥିଲେ ମୁସଲମାନ ତନ୍ତୁବାୟ । ସେ ତାଙ୍କ ଗୀତଗୁଡ଼ିକ ଲେଖିଥିଲେ ହିନ୍ଦି ଭାଷାର ଅନ୍ୟତମ ଉପଭାଷାରେ । କବିର କହୁଥିଲେ, ଈଶ୍ୱର ରାମ

ନୁହନ୍ତି କି ଆଲ୍ଲା ବି ନୁହନ୍ତି, ସେ ପ୍ରତ୍ୟେକ ମଣିଷର ହୃଦୟରେ ରହିଛନ୍ତି । ସେ ବିଧର୍ମୀମାନଙ୍କ ବିରୁଦ୍ଧରେ ଶତ୍ରୁତା ଆଚରଣ କରିବାକୁ ଚାହାନ୍ତି ନାହିଁ, ସେ ଚାହାନ୍ତି ମଣିଷ ମଣିଷ ମଧ୍ୟରେ ମୈତ୍ରୀ, ସହୃଦୟତା । ପଞ୍ଚଦଶ ଶତାବ୍ଦୀରେ ମହାରାଷ୍ଟ୍ରର ପାଣ୍ଢାପୁର ସହରଟି ଭକ୍ତିବାଦୀ ଆନ୍ଦୋଳନର କେନ୍ଦ୍ର ହୋଇ ଉଠିଥିଲା । ଏହି ସହରର ଏକ ହିନ୍ଦୁ ଦରଜିଙ୍କ ପୁଅ ନାମଦେବ ଜାତି ପ୍ରଥାର ଅନ୍ୟାୟ ଅବିଚାର ବିରୁଦ୍ଧରେ ପ୍ରତିବାଦ କରିଥିଲେ । ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ସତ୍ପନ୍ଥ (ବା ସଠିକ ପଥ) ନାମରେ ଏକ ସଂପ୍ରଦାୟର ଆତ୍ମପ୍ରକାଶ ଘଟିଥିଲା । ଏହି ସଂପ୍ରଦାୟଟି ବହୁ ଜନସମର୍ଥକ ଓ ଅନୁସରଣକାରୀ ଲାଭ କରିଥିଲା ଗୁଜରାଟ, ସିନ୍ଧୁ ଓ ପଞ୍ଜାବରେ । ଏହି ସଂପ୍ରଦାୟର ଭକ୍ତମାନେ ଐଶ୍ୱର୍ଯ୍ୟ ବିଳାସର ନିନ୍ଦା କରୁଥିଲେ ଏବଂ ପରିଶ୍ରମ ତଥା ସଦାଚାର ମୂଲ୍ୟବୋଧ ପ୍ରଚାର କରୁଥିଲେ । ସାମାଜିକ ପଦମର୍ଯ୍ୟାଦା ନିର୍ବିଶେଷରେ ସମସ୍ତ ଲୋକଙ୍କୁ ଏମାନେ ସଂପ୍ରଦାୟ ଭୁକ୍ତ କରିବାକୁ ସାଦର ଅଭ୍ୟର୍ଥନା ଜଣାଉଥିଲେ । ଇତିମଧ୍ୟରେ ପଞ୍ଜାବରେ ବଣିକ ଓ କାରିଗରମାନଙ୍କ ମଧ୍ୟରେ ଉଦ୍‌ଭବ ଘଟିଥିଲା ଶିଖ୍ (ବା ଶିଷ୍ୟ) ସଂପ୍ରଦାୟର । ଶିଖ୍ ଧର୍ମାନ୍ଦୋଳନର ପ୍ରତିଷ୍ଠାତା ଥିଲେ ନାନକ (୧୪୬୯ରୁ ୧୫୩୯ ଖ୍ରୀଷ୍ଟାବ୍ଦ) । ସେ ଥିଲେ ଜଣେ ହିନ୍ଦୁ ଓ ଲାହୋର ଅଞ୍ଚଳର ଜଣେ ଶସ୍ୟ ବିକ୍ରେତା ବଣିକର ପୁତ୍ର । ତାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥିଲେ ବଣିକ, କାରିଗରମାନଙ୍କ ସମେତ ଜାଟ ଜାତିର କୃଷକମାନେ । ଜାତିଭେଦ ପ୍ରଥା ଫଳରେ ସୃଷ୍ଟ ଅସାମ୍ୟ ବିରୁଦ୍ଧରେ ଦୃଢ଼ ଭାବେ ପ୍ରତିବାଦ ଜଣାଇଥିଲେ ଗୁରୁ ନାନକ ଏବଂ ନିର୍ଦ୍ଦେଶ ଦେଇଥିଲେ, ଜାତି ନିର୍ବିଶେଷରେ ତାଙ୍କ ଶିଷ୍ୟମାନଙ୍କୁ ଏକାଠି ବସି ପଂକ୍ତି ଭୋଜନ କରିବାକୁ । ସନ୍ନ୍ୟାସୀ ଜୀବନଯାପନ ଓ କୃଚ୍ଛ୍ରସାଧନର ଧାରଣାଟିକୁ ନାନକ ପ୍ରତ୍ୟାଖ୍ୟାନ କରି ତାଙ୍କ ଶିଷ୍ୟମାନଙ୍କୁ କହିଥିଲେ, ସେମାନଙ୍କ ଦେଶବାସୀଙ୍କ ଉନ୍ନତି ବିଧାନ ପାଇଁ ସକ୍ରିୟ ଅଂଶ ଗ୍ରହଣ କରିବାକୁ । ଆଧ୍ୟାତ୍ମିକ ଶିକ୍ଷାଦାତାଙ୍କ ନିକଟରେ ଶିଷ୍ୟମାନଙ୍କର ସଂପୂର୍ଣ୍ଣ ଆତ୍ମସମର୍ପଣକୁ ସୁନିଶ୍ଚିତ କରିବା ନିମିତ୍ତ ସୁଫୀ ସଂପ୍ରଦାୟର ସାଂଗଠନିକ ବ୍ୟବସ୍ଥାଟିକୁ ସେ ଗ୍ରହଣ କରିଥିଲେ ଏବଂ ଶିଖ୍‌ମାନଙ୍କର ଉପାସ୍ୟ ଦଶଜଣ ଗୁରୁଙ୍କ (ଆଧ୍ୟାତ୍ମିକ ଉପଦେଷ୍ଟା ବା ନେତା) ମଧ୍ୟରେ ପ୍ରଥମ ବୋଲି ଗଣ୍ୟ ହୋଇଥିଲେ । ଏହା ପରେ ବଙ୍ଗ ଦେଶରେ ଜନ୍ମ ନେଇଥିଲେ ଶ୍ରୀ ଚୈତନ୍ୟ (୧୪୮୬-୧୫୩୪ ଖ୍ରୀଷ୍ଟାବ୍ଦ) ନାମକ ଆଉ ଜଣେ ଧର୍ମ ପ୍ରଚାରକ । ସେ ଭକ୍ତିବାଦର ନୀତିଗୁଡ଼ିକୁ କୃଷ୍ଣ ଉପାସକ ବୈଷ୍ଣବ ଧର୍ମମତର ଅଙ୍ଗୀଭୂତ କରି ନୂତନ ଏକ ଧର୍ମମତ ପ୍ରଚାର କରିଥିଲେ । ଶିଷ୍ୟ ହିସାବରେ ହିନ୍ଦୁ ଧର୍ମର ଯେକୌଣସି ଜାତିର ଲୋକଙ୍କୁ ଏବଂ ମୁସଲମାନମାନଙ୍କୁ ସେ ଗ୍ରହଣ କରିଥିଲେ । ଶ୍ରୀ ଚୈତନ୍ୟ ରାଧା କୃଷ୍ଣଙ୍କ ପ୍ରେମକୁ ଭଗବାନଙ୍କ ପ୍ରତି ଭକ୍ତର ପ୍ରେମ ସହିତ ଅଭିନ୍ନ କରି ଦେଖାଇଥିଲେ ଏବଂ ଆନୁଷ୍ଠାନିକ ଶୋଭାଯାତ୍ରା ଓ ପ୍ରେମ ସଂଗୀତ ବା କୀର୍ତ୍ତନ ସଂଗୀତ ମଧ୍ୟ ଦେଇ ନିଜକୁ ଓ ଭକ୍ତମାନଙ୍କୁ ଭାବ-ସମାଧି ସ୍ତରକୁ ଉନ୍ନୀତ କରିବାକୁ ଲାଗିଲେ । ତାଙ୍କ ଶିକ୍ଷାନୁଯାୟୀ, ଏହି ଭାବ-ସମାଧି ସ୍ତରକୁ ଉନ୍ନୀତ ହୋଇ ପାରିଲେ ଭଗବାନଙ୍କ ପ୍ରତି ଭକ୍ତର ପ୍ରେମର ଚରମ ବିକାଶ ଘଟିଥାଏ ଏବଂ ଦିବ୍ୟଦର୍ଶନ ସମ୍ଭବ ହୁଏ ।

ବିଭିନ୍ନ ଧରଣର ଏହିସବୁ ଧର୍ମୀୟ ସଂସ୍କାର ଆନ୍ଦୋଳନ ଓ ନୂତନ ଭାବେ ଉଦ୍‌ଭୂତ ଧର୍ମ ସଂପ୍ରଦାୟଗୁଡ଼ିକ ଜାତିଭେଦ ପ୍ରଥାର ବିରୋଧିତା କରିଥିଲେ ମଧ୍ୟ ନିଜେ କ୍ରମଶଃ ପରସ୍ପର ମଧ୍ୟରେ ସୀମାବଦ୍ଧ ଗୋଷ୍ଠୀ ସଂପ୍ରଦାୟ ବା ଜାତିରେ ପରିଣତ ହୋଇ ପଡ଼ିଲେ । ଏହିସବୁ ସଂପ୍ରଦାୟ ମଧ୍ୟରେ ଅନେକଙ୍କର ଅନୁଗାମୀ ଭକ୍ତମାନେ କ୍ରମଶଃ ନିୟମିତ ରୀତି ଅନୁଯାୟୀ ସେମାନଙ୍କ ଆର୍ଥିକ

ଆୟର ଏକ ଅଂଶ ସେମାନଙ୍କ ସଂପ୍ରଦାୟର ନେତାମାନଙ୍କୁ ଦାନ କରିବାକୁ ଲଗିଲେ ଏବଂ ନେତାମାନେ କାଳକ୍ରମେ ଆର୍ଥିକ ଦାନକୁ ସାମନ୍ତବାଦୀ ସାମାଜିକ ସଂପର୍କର ରୀତି ଅନୁଯାୟୀ ସେମାନଙ୍କ ନ୍ୟାଯ୍ୟ ପ୍ରାପ୍ୟ ହିସାବରେ ଗଣ୍ୟ କରିବାକୁ ଆରମ୍ଭ କରି ଦେଲେ । ଅର୍ଥାତ୍, ଏହିସବୁ ସଂପ୍ରଦାୟର ନେତୃବୃନ୍ଦ କ୍ରମଶଃ ଆବିର୍ଭୂତ ହେଲେ ଛୋଟ ଛୋଟ ସାମନ୍ତ ଭୂସ୍ୱାମୀ ରୂପରେ । ଯଥା, ବିଶେଷ କରି, ଏହି ବିଷୟଟି ଘଟିଥିଲା ସତ୍‌ପନ୍ଥ ଓ ଶିଖ୍ ଧର୍ମାନ୍ଦୋଳନ କ୍ଷେତ୍ରରେ ।

## ସାହିତ୍ୟ

ଦିଲ୍ଲୀର ସୁଲତାନ୍ ରାଜତ୍ୱ ଅମଳରେ ଫାରସୀ ଭାଷା ରାଷ୍ଟ୍ର ଭାଷାର ମର୍ଯ୍ୟାଦା ଲଭ କରିବା ଫଳରେ ସାହିତ୍ୟ, ବିଶେଷ କରି କବିତା ରଚିତ ହେବାକୁ ଲଗିଲା ଏହି ଭାଷାରେ । ଉତ୍ତର ଭାରତରେ ନୂଆ ଏକ ଭାଷା ଉର୍ଦ୍ଦୁର (ସେନାବାହିନୀ ଶିବିରର ଭାଷା) ଉଦ୍‌ଭବ ଉପରେ ମଧ୍ୟ ଫାରସୀ ଭାଷାର ପ୍ରବଳ ପ୍ରଭାବ ପଡ଼ିଥିଲା । ନୂତନ ଉଦ୍‌ଭୂତ ଏହି ଉର୍ଦ୍ଦୁ ଭାଷାର ବ୍ୟାକରଣ ଥିଲା ଭାରତୀୟ ପଦ୍ଧତି ଅନୁଯାୟୀ । କିନ୍ତୁ ଏହାର ଶବ୍ଦ ସମ୍ଭାର ପ୍ରଧାନତଃ ଫାରସୀ ଏବଂ ଆରବୀ ଶବ୍ଦରୁ ସଂଗୃହୀତ ହୋଇଥିଲା । ସୁଲତାନ୍ ରାଜତ୍ୱ ଅମଳର ପ୍ରଧାନ କବି ଥିଲେ ଅମିର୍ ଖସ୍ରୁ (୧୨୫୩-୧୩୨୫ ଖ୍ରୀଷ୍ଟାବ୍ଦ) । କେବଳ ଫାରସୀ ଭାଷାରେ ନୁହେଁ, ଉର୍ଦ୍ଦୁରେ ମଧ୍ୟ ଖସ୍ରୁ କବିତା ଲେଖିଥିଲେ । ଏହି ନୂଆ ଭାଷାଟିକୁ ସେ ଆଖ୍ୟା ଦେଇଥିଲେ ହିନ୍ଦାବୀ ବୋଲି । ଏହି ସମୟରେ ଭାରତର ନୂତନ ଆଞ୍ଚଳିକ ଭାଷାଗୁଡ଼ିକରେ କବିତା ରଚିତ ହୋଇଥିଲା : ଗୁଜରାଟି, ମରାଠୀ ଓ ପଞ୍ଜାବି ଭାଷାରେ ତାହା ରୂପ ପରିଗ୍ରହ କରିଥିଲା ମହାକାବ୍ୟ ଛନ୍ଦରେ ଲିଖିତ ଗାଥା କବିତାରେ, ହିନ୍ଦି (ଯଥା, ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତାବ୍ଦୀରେ କବିରଙ୍କ ଦୋହା), ମରାଠୀ (ପଞ୍ଚଦଶ ଶତାବ୍ଦୀରେ ନାମଦେବଙ୍କ ଗୀତ) ଓ ପଞ୍ଜାବିରେ (ପଞ୍ଚଦଶ ଶତାବ୍ଦୀର ଶେଷ ଓ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ନାନକଙ୍କ ଗୀତ) ଭକ୍ତିବାଦୀ ଧର୍ମାନ୍ଦୋଳନର ଭାବମୟ କବିତା ଓ ଗୀତରେ । ଏହିସବୁ ଭକ୍ତିବାଦୀ ଓ ଅନ୍ୟାନ୍ୟ କବିତାରେ ଲୋକ କାହାଣୀର ବହୁ ବିଷୟ ଅନ୍ତର୍ଭୁକ୍ତ ହୋଇଛି । ଏହି ଯୁଗର ଫାରସୀ ଗଦ୍ୟ ସାହିତ୍ୟ ଇତିବୃତ୍ତ ରଚନାର ରୂପ ନେଇଥିଲା ।

ଦ୍ୱାଦଶ ଶତାବ୍ଦୀର ମଧ୍ୟ ଭାଗରେ ସଂସ୍କୃତ ଭାଷାରେ କବି କହ୍ଲାନଙ୍କ ରଚିତ କାଶ୍ମୀର ରାଜବଂଶର କାବ୍ୟିକ ଇତିବୃତ୍ତ "ରାଜତରଙ୍ଗିଣି" (ବା "ରାଜବଂଶର ନଦୀ") ଗ୍ରନ୍ଥଟିର କଥା ବାଦ୍ ଦେଲେ, ଭାରତରେ ମୁସଲିମ୍ ବିଜୟ ପୂର୍ବରୁ କୌଣସି ଇତିହାସ ଲେଖା ହୋଇ ନଥିଲା । ଖୋୟାରେଜ୍‌ମରୁ ଆବୁ ରାୟହାନ୍ ବିରୁନି ବା ଆଲ୍ ବିରୁନି (୯୭୩-୧୦୪୮ ଖ୍ରୀଷ୍ଟାବ୍ଦ) ସୁଲତାନ୍ ମହମ୍ମଦଙ୍କ ହାତରେ ବନ୍ଦୀ ହୋଇ ଗଜ୍‌ନିକୁ ଅଣାଯାଇଥିଲେ । ତା'ପରେ ମହମ୍ମଦଙ୍କ ବାହିନୀ ସହିତ ସେ ଥରେ ପଞ୍ଜାବକୁ ଆସିଥିଲେ (ଆପାତତଃ ଦୃଷ୍ଟିରେ ମନେ ହୁଏ ସୁଲତାନ୍‌ଙ୍କ ଜ୍ୟୋତିଷୀ ହିସାବରେ) । ଭାରତ ସଂପର୍କରେ ମିଳୁଥିବା ସମସ୍ତ ସଂବାଦ ସେ ନିଷ୍ଠାର ସହିତ ଲିପିବଦ୍ଧ କରି ଯାଇଛନ୍ତି । ପରେ ସେ "ହିନ୍ଦୁସ୍ଥାନ" ନାମରେ ଏକ ବିଶ୍ୱକୋଷ ସଂକଳନ କରିଥିଲେ । ଏହି ପୁସ୍ତକଟି ବିଭିନ୍ନ ଅମୂଲ୍ୟ ଐତିହାସିକ ତଥ୍ୟର ଭଣ୍ଡାର ।

ପ୍ରଥମ ପ୍ରକୃତ ଇତିବୃତ୍ତ, ଅବଶ୍ୟ, ରଚନା କରିଥିଲେ ମିନ୍‌ହାଜ ଉଦ୍ଦିନ୍ ଜୁଜଜାନି (ଜନ୍ମ

୧୧୯୩ ଖ୍ରୀଷ୍ଟାବ୍ଦରେ) ନାମକ ଜନୈକ ପାରସ୍ୟବାସୀ । ମଙ୍ଗୋଲ ଆକ୍ରମଣକାରୀମାନଙ୍କର ଅତ୍ୟାଚାରକୁ ଏଡ଼ାଇବାକୁ ଯାଇ ସେ ଭାରତକୁ ପଳେଇ ଆସିଥିଲେ । ସେ ତାଙ୍କ ରଚିତ ଇତିବୃତ୍ତଟିର ନାମ ଦେଇଥିଲେ ତାଙ୍କ ପୃଷ୍ଠପୋଷକ ସୁଲତାନ୍ ନାସିର୍ ଉଦ୍ଦିନ୍ ମାହମୁଦ୍‌ଙ୍କ ନାମାନୁଯାୟୀ "ତବାଖତ୍ – ଇ – ନାସିରି" । ଚତୁର୍ଦ୍ଦଶ ଶତାବ୍ଦୀରେ ଫାରସୀ ଭାଷାରେ ମୂଲ୍ୟବାନ ବିଭିନ୍ନ ଐତିହାସିକ ତଥ୍ୟ ସଂକଳିତ କରିଥିଲେ ଜିଆ ଉଦ୍ଦିନ୍ ବାରାନି ଓ ଶାମସ୍ ସିରାଜ ଆଫିଫ୍ । ଏମାନଙ୍କ ରଚନା ଫାରସୀ ଭାଷାରେ ଆଦର୍ଶ ଗଦ୍ୟରଚନାର ନମୁନା ବୋଲି ବିବେଚିତ । ଏହି ଲେଖକ ଦ୍ୱୟ ସୁଲତାନ୍ ଫିରୁଜ୍ ଶାହ୍ ତୁଘଲକଙ୍କ ସମ୍ମାନରେ ଏମାନଙ୍କ ଗ୍ରନ୍ଥଟିର ନାମ ଦେଇଥିଲେ "ତାରିଖ୍-ଇ ଓ ଫିରୁଜ୍-ଶାହୀ" ।

## ସ୍ଥାପତ୍ୟ

ଦିଲ୍ଲୀରେ ସୁଲତାନ୍ ରାଜତ୍ୱକାଳରେ ମୁସଲିମ୍‌ମାନଙ୍କ ଉପାସନା ଉପଯୋଗୀ ପ୍ରଥମ ଅଟ୍ଟାଳିକାଗୁଡ଼ିକ ନିର୍ମିତ ହୋଇଥିଲା । ଏସବୁ ମଧ୍ୟରେ ଥିଲା ମସ୍‌ଜିଦ୍, ମିନାର, ସମାଧିସୌଧ ଓ ମାଦ୍ରାସାସମୂହ । ଏହି ସୌଧଗୁଡ଼ିକର ଆକାର ଆକୃତି ସେତେବେଳେ ଭାରତ ପକ୍ଷରେ ଅପରିଚିତ ଥିଲା । କାରଣ, ସେସବୁ ଦେହରେ କୌଣସି ଭାସ୍କର୍ଯ୍ୟ ଅଳଙ୍କରଣ ନଥିଲା । ତେବେ ଅନୁପାତବୋଧ, ସୂକ୍ଷ୍ମତା ଓ ରେଖାର ସୌନ୍ଦର୍ଯ୍ୟ ବିଗ୍ରର ଦୃଷ୍ଟିରୁ ଏସବୁ ଥିଲା ଲକ୍ଷଣୀୟ । ଯଥା, କୁତୁବ୍‌ମିନାର ହେଉଛି ଏକ ସୁଉଚ୍ଚ ସୁଦୃଢ଼ ମିନାର, ଏହାର କାନ୍ଥଗୁଡ଼ିକ ସବୁଜ, ଶିରାଳ ଏବଂ ଲାଲ ରଙ୍ଗର ପଥରରେ ମୋଡ଼ା ହୋଇଛି । ଏହାର ଅଳଙ୍କରଣସମୂହ ଜ୍ୟାମିତିକ ଢାଞ୍ଚାର ଏବଂ ସେସବୁ ଖୋଦିତ ଆରବୀ ଲିପି ସହିତ ସୂକ୍ଷ୍ମ ଭାବେ ସନ୍ନିବିଷ୍ଟ । ମିନାରଟି ଦେଖିବାକୁ ଯେପରି ସୁନ୍ଦର, ସେଇପରି ଚମତ୍କାର । ଇଲ୍‌ତୁତ୍‌ମିଶ୍‌ଙ୍କ ସମାଧିସୌଧଟି ଚତୁଷ୍କୋଣ ଗମ୍ବୁଜ ଦ୍ୱାରା ଶୋଭିତ ଏବଂ ଚତୁର୍ଦ୍ଦିଗରୁ ଧନୁକାକୃତି ଖିଲାଣ ସହ ପ୍ରବେଶ ପଥ ଯୁକ୍ତ । ପରବର୍ତ୍ତୀ କାଳର ସମାଧିସୌଧଗୁଡ଼ିକ ମଧ୍ୟରେ ଏହା ଥିଲା ଏକ ଆଦର୍ଶସ୍ଥାନୀୟ ଦୃଷ୍ଟାନ୍ତ ଭଳି । ଏହି ସମାଧିସୌଧଟିର କାନ୍ଥଗୁଡ଼ିକ ଅଳଙ୍କରଣ ଏବଂ ଛବି ଭଳି ହସ୍ତ ଲିପିରେ ସୁସଜ୍ଜିତ । ତୁଘଲକ ଯୁଗର ସୌଧଗୁଡ଼ିକ ରେଖାର ସରଳତା ପାଇଁ ବୈଶିଷ୍ଟ୍ୟପୂର୍ଣ୍ଣ, ତେବେ ସେସବୁର ବିପୁଳତା ଏବଂ ଚମତ୍କାର ଭାବ ମନରେ ଗଭୀର ରେଖାପାତ କରିଥାଏ । ଆଲ୍ଲା ଉଦ୍ଦିନ୍‌ଙ୍କ ଦ୍ୱାରା ନିର୍ମିତ ସିରି ସହରର ଓ ମହମ୍ମଦ ତୁଘଲକଙ୍କ ଦ୍ୱାରା ନିର୍ମିତ ତୁଘଲକାବାଦର ଧ୍ୱଂସାବଶେଷ ଦିଲ୍ଲୀର ସୁଲତାନ୍ ରାଜତ୍ୱ ଅମଳରେ ନିର୍ମିତ ଦୁର୍ଗ ପ୍ରାସାଦ ଓ ନଗର ସ୍ଥାପତ୍ୟର ବୈଶିଷ୍ଟ୍ୟ ସଂପର୍କରେ ମୋଟାମୋଟି ଏକ ଧାରଣା ପ୍ରଦାନ କରିଥାଏ । ଲୋଦୀ ସୁଲତାନ୍ ବଂଶର ରାଜତ୍ୱକାଳରେ ହିନ୍ଦୁ ସ୍ଥାପତ୍ୟ ଶୈଳୀର କେତେକ ନମୁନା ଇସ୍‌ଲାମୀ ସ୍ଥାପତ୍ୟ କଳାରେ ସ୍ଥାନ ପାଇଥିବାର ଦେଖାଯାଏ । ଲୋଦୀ ଯୁଗର ପ୍ରାସାଦଗୁଡ଼ିକ ଆକାର ଦୃଷ୍ଟିରୁ ଛୋଟ ହେଲେ ମଧ୍ୟ ଦେଖିବାକୁ ସୁନ୍ଦର । ମୁସଲିମ୍ ସ୍ଥାପତ୍ୟ ଶିଳ୍ପ ବିଦର, ମାଣ୍ଡୁ, ଆହ୍‌ମଦାବାଦ, ଗୁଲ୍‌ବର୍ଗା, ଆଦି କେନ୍ଦ୍ର ଓ ପଶ୍ଚିମ ଭାରତ ତଥା ଦାକ୍ଷିଣାତ୍ୟର ବିଭିନ୍ନ ସୁଲତାନ୍ ଶାସିତ ରାଜ୍ୟର ରାଜଧାନୀଗୁଡ଼ିକରେ ବିକଶିତ ହୋଇଥିବାର ଦେଖାଯାଏ । ଏଥି ସଙ୍ଗେ ସଙ୍ଗେ ଭାରତର ମୁସଲିମ୍ ବିଜୟ ହିନ୍ଦୁ ସ୍ଥାପତ୍ୟ ଶିଳ୍ପର ବିକାଶ କ୍ଷେତ୍ରରେ ବାଧା ସୃଷ୍ଟି କରିଥିଲା । ମୁସଲିମ୍ ରାଜତ୍ୱକାଳରେ ଅନେକ ହିନ୍ଦୁ ମନ୍ଦିରକୁ ଧ୍ୱଂସ କରି ଦିଆଯାଇଥିଲା ଏବଂ କୌଣସି ଉଲ୍ଲେଖନୀୟ ନୂତନ ହିନ୍ଦୁ ଅଟ୍ଟାଳିକା ସେତେବେଳେ ଗଢ଼ି ଉଠି ନଥିଲା ।

# ମୋଗଲ ସାମ୍ରାଜ୍ୟ କାଳରେ ଭାରତ
# (ଷୋଡ଼ଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ)

## ମୋଗଲ ରାଷ୍ଟ୍ରର ପ୍ରତିଷ୍ଠା

ଦିଲ୍ଲୀରେ ସୁଲତାନ୍ ରାଜତ୍ୱର ଅସ୍ତିତ୍ୱ, ମୁସଲିମ୍ ସାମନ୍ତ ଭୂସ୍ୱାମୀମାନଙ୍କୁ ନେଇ ଗଠିତ ଏକ ଶାସକ ସଂପ୍ରଦାୟର ଉଦ୍‌ଭବ, ହିନ୍ଦୁ ଏବଂ ମୁସଲମାନ ସଂପ୍ରଦାୟର ଦୀର୍ଘକାଳୀନ ସହାବସ୍ଥାନ ଏବଂ ଏହି ଦୁଇ ସଂପ୍ରଦାୟ ଉପରେ ପାରସ୍ପରିକ ପ୍ରଭାବ – ଏସବୁ ଉତ୍ତର ଭାରତରେ ନୂଆ ଏକ ଶକ୍ତିଶାଳୀ ସାମ୍ରାଜ୍ୟ ଗଠନର ପଥକୁ ପ୍ରଶସ୍ତ କରି ଦେଇଥିଲା । ଏହି ଉପମହାଦେଶରେ ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକ – ଯଥା, ମାଲାବାର, ଗୁଜରାଟ, କରମଣ୍ଡଳ ଓ ବଙ୍ଗ – ଦୀର୍ଘ କାଳ ଧରି ଆରବ ଦେଶଗୁଡ଼ିକ, ପାରସ୍ୟ, ମାଳୟ, ମଲୁକା ଦ୍ୱୀପପୁଞ୍ଜ ସହିତ ସମୁଦ୍ର ପଥରେ ମସଲା ଏବଂ ବସ୍ତ୍ର ବ୍ୟବସାୟ ପ୍ରଚୁର ପରିମାଣରେ ଚଳେଇ ଯାଇଥିବା ହେତୁ ଅର୍ଥନୈତିକ ଦିଗରୁ ଅଧିକତର ଉନ୍ନତ ହୋଇ ଉଠିଥିଲେ । ତେବେ ଏହିସବୁ ଅଞ୍ଚଳ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ସଂଘର୍ଷ ଦ୍ୱାରା ଛିନ୍ନ ବିଚ୍ଛିନ୍ନ ଅବସ୍ଥାରେ ଥିଲା ଏବଂ ୟୁରୋପୀୟ ବାଣିଜ୍ୟ ପ୍ରତିଷ୍ଠାନଗୁଡ଼ିକ ସମୁଦ୍ର ପଥରେ ବହିର୍ବାଣିଜ୍ୟରୁ ଭାରତୀୟମାନଙ୍କୁ କ୍ରମଶଃ ହଟେଇ ଦେଇ ଏହିସବୁ ଅଞ୍ଚଳର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରୁଥିବା ଫଳରେ ଅଞ୍ଚଳଗୁଡ଼ିକର ଶକ୍ତି କ୍ରମଶଃ ହୀନ ହୋଇ ପଡ଼ିଥିଲା । ଏହି ଘଟଣାଗୁଡ଼ିକରୁ ଏ କଥା ସହଜରେ ବୁଝି ହୁଏ ଯେ, ସପ୍ତଦଶ ଶତାବ୍ଦୀରେ ସାମନ୍ତବାଦୀ କେନ୍ଦ୍ରୀଭୂତ ଏକ ବ୍ୟବସ୍ଥା ଦ୍ୱାରା ମୋଗଲ ସାମ୍ରାଜ୍ୟ ସମସ୍ତ ବିରୋଧିତାକୁ ଦମନ କରିବାରେ ସମର୍ଥ ହୋଇଥିଲା ଏବଂ ଦକ୍ଷିଣ ଭାରତରେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଅଂଶ ଦଖଲ କରି ନେଇଥିଲା ।

ଉତ୍ତର ଭାରତରେ ଏହି ନୂତନ ରାଜ୍ୟଟିର ପ୍ରତିଷ୍ଠାତା ଥିଲେ ତୈମୁରବଂଶୀୟ ଜହିରୁଦ୍ଦୀନ ମହମ୍ମଦ ବାବର (୧୫୨୬-୧୫୩୦ ଖ୍ରୀଷ୍ଟାବ୍ଦ) । ପ୍ରଥମେ ସେ ଥିଲେ ଫେରଗାନାର ଅଧିପତି । ପରେ ସାଇବେରିଆରୁ ଆଗତ ଉଜ୍‌ବେକମାନେ ତାଙ୍କୁ ମଧ୍ୟ ଏସିଆରୁ ବିତାଡ଼ିତ କରିଥିଲେ । ମହମ୍ମଦ ବାବରଙ୍କୁ ତାଙ୍କର ଜଣେ ଆତ୍ମୀୟ, ହିରାଟର ତୈମୁରବଂଶୀୟ ଶାସକ ସାହାଯ୍ୟ କରିଥିଲେ ଏବଂ ସମର୍ଥନ ଜଣାଇଥିଲେ । ତା'ପରେ ବାବର ଆଫ୍‌ଗାନ ଭୂଖଣ୍ଡଗୁଡ଼ିକୁ ଦଖଲ କରି ନିଜକୁ କାବୁଲରେ ପ୍ରତିଷ୍ଠା କରିଥିଲେ । କିନ୍ତୁ ସେ ସର୍ବଦା ସ୍ୱପ୍ନ ଦେଖୁଥିଲେ ଭାରତ ଜୟ କରିବାକୁ ଏବଂ କେବଳ ଭାରତକୁ ଜୟ କରି ପାରିଲେ ସମୃଦ୍ଧ ଓ ଶକ୍ତିଶାଳୀ ଏକ ରାଜ୍ୟର ଅଧିପତି ହୋଇ ପାରିବେ ବୋଲି ସେ ଭାବୁଥିଲେ । ୧୫୧୮ ଓ ୧୫୨୪ ଖ୍ରୀଷ୍ଟାବ୍ଦରେ ବାବର ଏକାଧିକବାର ପଞ୍ଜାବ ଆକ୍ରମଣ କରିଥିଲେ । ତା'ପରେ ୧୫୨୫ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସରେ ପୁଣି ଥରେ ସେ ଭାରତ ଆକ୍ରମଣ

କଲେ । ଏଥର ସେ ସଙ୍ଗରେ ଆଣିଥିଲେ ମଧ୍ୟ ଏସିଆର ଯୋଦ୍ଧୃବୃନ୍ଦ ଓ ତତ୍ ସଙ୍ଗେ ସଙ୍ଗେ ଆଫ୍‌ଗାନ ଓ ଗାନ୍ଧାର ଯୋଦ୍ଧାମାନଙ୍କୁ ନେଇ ଗଠିତ ଏକ ପ୍ରବଳ ଶକ୍ତିଶାଳୀ ସୈନ୍ୟବାହିନୀ । ମଙ୍ଗୋଲମାନଙ୍କ ଦ୍ୱାରା ଅନୁସୃତ ଯୁଦ୍ଧକୌଶଳ ଅବଲମ୍ବନ କରି, ଅର୍ଥାତ୍, ଅଶ୍ୱାରୋହୀ ବାହିନୀଗୁଡ଼ିକ ଦ୍ୱାରା ଅସ୍ୱନକ ଝଟିକା ଆକ୍ରମଣ ଚଳେଇ ଏବଂ ଦୌଡ଼ି ଦେଇ ପରସ୍ପର ସହିତ ବନ୍ଧା ଧାଡ଼ି ଧାଡ଼ି ଗାଡ଼ି ପଛରେ ପଦାତିକ ସୈନ୍ୟଦଳକୁ ଆଗେଇ ନେଇ ବାବର ଶେଷକୁ ଦିଲ୍ଲୀର ସୁଲତାନ୍ ଇବ୍ରାହିମ୍ ଶାହ୍ ଲୋଦୀଙ୍କ ସୈନ୍ୟଦଳକୁ ୧୫୨୬ ଖ୍ରୀଷ୍ଟାବ୍ଦରେ, ପାନିପଥ ଯୁଦ୍ଧରେ ପରାସ୍ତ କରିବାକୁ ସମର୍ଥ ହୋଇଥିଲେ । ଏହାର ବର୍ଷକ ପରେ ଫତେପୁର ସିକ୍ରି ଯୁଦ୍ଧରେ ଚିତୋରର ରାଜା ଓ ଅଭିଜ୍ଞ ଯୁଦ୍ଧ ବିଶାରଦ ରାଣା ସଙ୍ଗଙ୍କ ନେତୃତ୍ୱରେ ପରିଗ୍ଭଳିତ ରାଜପୁତ ବାହିନୀକୁ ପରାସ୍ତ କଲେ । ଏହା ଫଳରେ, ଗୋଟିଏ ଦିଗରେ, ସମଗ୍ର ରାଜପୁତାନାର ଭୂଖଣ୍ଡକୁ ନିଜର ଶାସନାଧୀନରେ ଐକ୍ୟବଦ୍ଧ କରିବା ପାଇଁ ରାଣା ସଙ୍ଗଙ୍କ ବାସନା ଧୂଳିସାତ୍ ହେବା ସଙ୍ଗେ ସଙ୍ଗେ, ଅନ୍ୟ ଦିଗରେ, ପାନିପଥରେ ଓ ଫତେପୁର ସିକ୍ରିରେ ଏକାଦିକ୍ରମେ ଦୁଇଟି ଯୁଦ୍ଧରେ ବିଜୟ, ଉତ୍ତର ଭାରତରେ ବାବରଙ୍କ ଶାସନକୁ ସୁନିଶ୍ଚିତ ଓ ସୁଦୃଢ଼ କରିଦେଲା । ଏହା ପରେ ବାବର ସଫଳ ହୋଇଥିଲେ ସମଗ୍ର ଗାଙ୍ଗେୟ ଉପତ୍ୟକାକୁ ଅଧିକାର କରି ନେବାରେ ।

ଏହା ପରେ କେତେକ ଆଫ୍‌ଗାନ ବାହିନୀ ଲୁଣ୍ଠିତ ଦ୍ରବ୍ୟ ସାମଗ୍ରୀକୁ ଓଟ ଏବଂ ଘୋଡ଼ା ପୃଷ୍ଠରେ ଭାରାକ୍ରାନ୍ତ କରି ସ୍ୱଦେଶକୁ ଫେରି ଗଲେ । ଆଉ ଯେଉଁ ଯୋଦ୍ଧାମାନେ ରହି ଗଲେ ବାବର ସେମାନଙ୍କୁ ଭାରତରେ ରାଜସେବାର ବିନିମୟରେ ଜମି ଦାନ କଲେ । ଏହି ଭୂସଂପତ୍ତିଗୁଡ଼ିକ ପରେ "ଜାଏଗିରି" ନାମରେ ପରିଚିତ ହୋଇଥିଲା । ଏହିଭଳି ସବୁ ତାଲୁକର ଦେଖା ଶୁଣା ତଦାରକ ଯେଉଁସବୁ ରାଜକର୍ମଚାରୀ କରୁଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ହିନ୍ଦୁ । ଏହିସବୁ ହିନ୍ଦୁ କର୍ମଚାରୀ ଦେଶର କେଉଁ ରୀତିନୀତି ଏବଂ କେତେ ପରିମାଣର ରାଜସ୍ୱ ଧାର୍ଯ୍ୟ କଲେ କୃଷକମାନେ ଦେଇ ପାରିବେ ଜାଣିଥିଲେ ।

ବାବର ଭାରତ ଶାସନ କରିଥିଲେ ମାତ୍ର ତିନି ବର୍ଷ । ସେ ଥିଲେ ଖୁବ୍ ସୁଶିକ୍ଷିତ ଏବଂ ପର୍ଯ୍ୟବେକ୍ଷଣଶୀଳ ଲୋକ । ଶିଳ୍ପକଳା ସମ୍ବନ୍ଧରେ ସୂକ୍ଷ୍ମ ବିଚାରସଂପନ୍ନ କବି ମଧ୍ୟ ସେ ଥିଲେ । ସେ ଯେଉଁସବୁ ସ୍ମୃତିକଥା, "ବାବର-ନାମା" ଲେଖି ଯାଇଛନ୍ତି, ସେସବୁର ଭାଷା ଯେପରି ସରଳ, ସେଇପରି ବିଶୁଦ୍ଧ । ହିନ୍ଦୁମାନଙ୍କୁ ସେ, ଅବଶ୍ୟ, ବିଧର୍ମୀ ବୋଲି ମନେ କରୁଥିଲେ, ହେୟଜ୍ଞାନ କରୁଥିଲେ, କିନ୍ତୁ ସେମାନଙ୍କ ଉପରେ ଉତ୍ପୀଡ଼ନ କରୁ ନଥିଲେ ।

ମୃତ୍ୟୁ ପୂର୍ବରୁ ବାବର ତାଙ୍କ ଅଧିକୃତ ରାଜ୍ୟକୁ ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ଭାଗ ଭାଗ କରି ଦେଇ ଯାଇଥିଲେ । ତେବେ ରାଜ୍ୟର ପ୍ରଧାନ ଅଂଶଟିକୁ ସେ ଦାନ କରିଥିଲେ ଜ୍ୟେଷ୍ଠ ପୁତ୍ର ହୁମାୟୁନ୍‌ଙ୍କୁ ଏବଂ ଅନ୍ୟ ତିନି ପୁତ୍ର ପାଇଥିଲେ ପଞ୍ଜାବ, କାବୁଲ ଓ କାନ୍ଦାହାରର ରାଜ୍ୟାଂଶ । କିନ୍ତୁ ବାବର ସେମାନଙ୍କୁ ନିର୍ଦ୍ଦେଶ ଦେଇ ଯାଇଥିଲେ ହୁମାୟୁନ୍‌ଙ୍କ ଆଧିପତ୍ୟକୁ ମାନି ନେବାକୁ ।

ହୁମାୟୁନ୍ ଗୁଜରାଟ, ରାଜପୁତାନାର ଅଂଶବିଶେଷ ଏବଂ ବିହାର ଜୟ କରି ତାଙ୍କ ରାଜ୍ୟର ସୀମା ପରିବର୍ଦ୍ଧନ କରିବାକୁ ଚେଷ୍ଟା କରିଥିଲେ । ପ୍ରାରମ୍ଭରେ ସାଫଲ୍ୟ ସତ୍ତ୍ୱେ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ କଳହ ହେତୁ ତାଙ୍କର ଏହି ବିଜୟକୁ ସେ ସୁସଂହତ ଏବଂ ସୁଦୃଢ଼ କରିବାକୁ ସମର୍ଥ ହୋଇ ପାରି ନଥିଲେ । ତାଙ୍କ ଭାଇମାନେ ତାଙ୍କ ଆଧିପତ୍ୟରୁ ମୁକ୍ତ ହେବା ଉଦ୍ଦେଶ୍ୟରେ ଦିଲ୍ଲୀ ଅଧିକାର ୨ ଭି

ନେବାକୁ ଚେଷ୍ଟା କରିଥିଲେ । ହୁମାୟୁନ୍‌ଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ , ଅବଶ୍ୟ , ଥିଲେ ବିହାର ଓ ବଙ୍ଗରେ ଆଫ୍‌ଗାନ ସାମନ୍ତ ରାଜାମାନଙ୍କର ପ୍ରଧାନ ଶେର୍ ଖାଁ ସୁର । ଶେର୍ ଖାଁଙ୍କ ବିରୁଦ୍ଧରେ ବିହାରରେ ଯୁଦ୍ଧରେ ପରାସ୍ତ ହୋଇ ହୁମାୟୁନ୍ ଶେଷକୁ ସିନ୍ଧୁ ଦେଶକୁ ପଳାଇ ଯାଇଥିଲେ । ସେଠାରେ ସେ ସ୍ଥାନୀୟ ମୁସଲିମ୍ ସେନାଧ୍ୟକ୍ଷଙ୍କର ଚୌଦବର୍ଷୀୟା କନ୍ୟାକୁ ବିବାହ କରିଥିଲେ ଏବଂ ୧୫୪୨ ଖ୍ରୀଷ୍ଟାବ୍ଦରେ ତାଙ୍କର ଏହି ସ୍ତ୍ରୀଙ୍କ ଗର୍ଭରୁ ଏକ ପୁତ୍ର ଜାତ ହୋଇଥିଲା । ଏହି ପୁତ୍ରଟିର ନାମ ହେଉଛି ଆକବର । ଏହାର ଅଳ୍ପ କେଇ ଦିନ ପରେ ତାଙ୍କର ଏକାଧିକ ଭାଇ ତାଙ୍କର ପଶ୍ଚାଦ୍‌ଧାବନ କରି ଆଗେଇ ଆସିବାରୁ ହୁମାୟୁନ୍ ଦେଶ ଛାଡ଼ି ଆଉରି ଦୂରକୁ – ପାରସ୍ୟକୁ ପଳାଇ ଯାଇଥିଲେ । ଏହି ସମୟରେ ଶିଶୁ ଆକବରଙ୍କର ତତ୍ତ୍ୱାବଧାନର ଦାୟିତ୍ୱ ଗ୍ରହଣ କରିଥିଲେ କାବୁଲର ଶାସକ , ହୁମାୟୁନ୍‌ଙ୍କ ଭାଇ କାମରାନ୍ ।

ହୁମାୟୁନ୍ ଥିଲେ ଫାରସୀ ସାହିତ୍ୟରେ ସୁପଣ୍ଡିତ ଏବଂ ଯୁଦ୍ଧ କ୍ଷେତ୍ରରେ ସାହସୀ ସେନାଧ୍ୟକ୍ଷ । ତେବେ ଅଫିମ ପ୍ରତି ତାଙ୍କର ଆସକ୍ତି ତାଙ୍କର ବିଗ୍ରହ ଶକ୍ତିକୁ ପ୍ରାୟ ନିଷ୍କ୍ରିୟ କରି ଦେଉଥିଲା । ଦିଲ୍ଲୀରେ ଅବସ୍ଥାନ କାଳରେ ତାଙ୍କର ରାଜତ୍ୱ ସମୟରେ ହୁମାୟୁନ୍ ସାମ୍ରାଜ୍ୟରେ ଏକ ନୂତନ ପ୍ରଶାସନ ବ୍ୟବସ୍ଥା ଶୁରୁ କରିବାକୁ ସେ ପ୍ରୟାସ କରିଥିଲେ । ତେବେ ଏହି ଶାସନ ବ୍ୟବସ୍ଥାର ଅନ୍ତର୍ନିହିତ ନୀତିଗୁଡ଼ିକ ଥିଲା କୃତ୍ରିମ , ବାସ୍ତବ ଜୀବନ ସହିତ ସଂପର୍କହୀନ । ସେ ତାଙ୍କ ଦରବାରର ମନ୍ତ୍ରୀମାନଙ୍କୁ ତିନୋଟି ଗୋଷ୍ଠୀରେ ବିଭକ୍ତ କରି ଦେଇଥିଲେ : ଯଥା , ମନ୍ତ୍ରୀମଣ୍ଡଳୀ , ଧର୍ମୀୟ ନେତୃବୃନ୍ଦ ଓ ଶିଳ୍ପୀଗୋଷ୍ଠୀ (କବି , ନର୍ତ୍ତକୀ , ଆଦି) । ଏହା ଛଡ଼ା ସେ ଚାରିଟି ସରକାରୀ ଦପ୍ତର ମଧ୍ୟ ସ୍ଥାପନ କରିଥିଲେ : ଯଥା , ଅଗ୍ନିକାଣ୍ଡ ବୈଷୟିକ ଦପ୍ତର – ସାମରିକ ବୈଷୟିକ ଦାୟିତ୍ୱ ଏହି ଦପ୍ତର ଉପରେ ନ୍ୟସ୍ତ ଥିଲା ; ଜଳ ଦପ୍ତର – ଏହି ଦପ୍ତର ଜମିରେ ଜଳସେଚନ ବିଷୟଟି ନିୟନ୍ତ୍ରଣ କରୁଥିଲା ଏବଂ ରାଜକୀୟ ମଦ୍ୟଭଣ୍ଡାରର ଭାରପ୍ରାପ୍ତ ଥିଲା , ଭୂମି ସଂକ୍ରାନ୍ତ ଦପ୍ତର – ଏହି ଦପ୍ତର ଉପରେ ରାଜସ୍ୱ ଆଦାୟ , ଖାଲିସା ଜମିର ତତ୍ତ୍ୱାବଧାନ ଓ ବିଭିନ୍ନ ନିର୍ମାଣ କାର୍ଯ୍ୟର ଦାୟିତ୍ୱ ନ୍ୟସ୍ତ ଥିଲା । ଏହା ଛଡ଼ା ଥିଲା ବାୟବୀୟ ଦପ୍ତର – ଧର୍ମୀୟ ନେତୃବୃନ୍ଦ , କବିକୁଳ ଓ ଇତିହାସବିଦ୍‌ମାନଙ୍କର ରାଜକର୍ମ ସଂପର୍କିତ ବ୍ୟାପାର ଓ ସେମାନଙ୍କ ବୃତ୍ତି ତଥା ଭତ୍ତାଦାନ ସହିତ ଏହି ଦପ୍ତରଟି ସଂଶ୍ଳିଷ୍ଟ ଥିଲା । ଏହି ଧରଣର ପ୍ରଶାସନିକ ବ୍ୟବସ୍ଥା , ଯାହାକି ଏକାସାଙ୍ଗରେ ଗୁରୁତ୍ୱପୂର୍ଣ୍ଣ ଓ ଗୌଣ ଗୁରୁତ୍ୱର ବ୍ୟାପାରଗୁଡ଼ିକୁ ମିଳେଇବାକୁ ଚେଷ୍ଟା କରୁଥିଲା , ତାହା , ସ୍ୱଭାବତଃ , ସ୍ଥାୟୀ ହୋଇ ପାରିନ ନାହିଁ ଏବଂ ଶେର୍ ଶାହ୍ ସିଂହାସନରେ ବସିବା କ୍ଷଣି ତାହା ବର୍ଜିତ ହୋଇଥିଲା ।

୧୫୪୦ରୁ ୧୫୪୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶେର୍ ଖାଁ ଶେର୍ ଶାହ୍ ଉପାଧି ଗ୍ରହଣ କରି ଦିଲ୍ଲୀରେ ରାଜତ୍ୱ କରିଥିଲେ । ସାମନ୍ତ ଭୂସ୍ୱାମୀମାନଙ୍କୁ ନିୟନ୍ତ୍ରଣରେ ରଖିବା , ବିଶେଷ କରି ବିହାର ଓ ବଙ୍ଗର ଆଫ୍‌ଗାନ ଭୂସ୍ୱାମୀମାନଙ୍କୁ ନିୟନ୍ତ୍ରଣ କରିବାକୁ ସେ ତାଙ୍କର ମୁଖ୍ୟ କର୍ତ୍ତବ୍ୟ ବୋଲି ମନେ କରୁଥିଲେ । ପ୍ରସଙ୍ଗତଃ କହିବା ଦରକାର ଯେ , କ୍ଷମତା ଦଖଲ ବେଳେ ଏହି ଶେଷୋକ୍ତ ଭୂସ୍ୱାମୀମାନଙ୍କ ସମର୍ଥନ ଉପରେ ଶେର୍ ଶାହ୍‌ଙ୍କୁ ନିର୍ଭର କରିବାକୁ ପଡ଼ିଥିଲା । ସେ ଯାହା ହେଉ , ଏହି ନିୟନ୍ତ୍ରଣକୁ କାଏମ କରିବା ଉଦ୍ଦେଶ୍ୟରେ ସେ ଜାଏଗିର୍‌ଦାର୍‌ମାନଙ୍କ ଉପରେ କଡ଼ା ନିର୍ଦ୍ଦେଶ ଜାରି କରିଥିଲେ , ସେମାନଙ୍କ ନିର୍ଦ୍ଦିଷ୍ଟ ସଂଖ୍ୟକ ଅଶ୍ୱାରୋହୀ ଯୋଦ୍ଧାଙ୍କୁ ନେଇ ଅଶ୍ୱାରୋହୀ ବାହିନୀ ଗଠନ କରିବା ପାଇଁ (ଏହି ଅଶ୍ୱାରୋହୀ ସୈନ୍ୟଙ୍କ ସଂଖ୍ୟା ନିର୍ଭର କରୁଥିଲା ଜାୟଗିର୍‌ର ଆକାର

ଉପରେ) । ଏହିସବୁ ଅଶ୍ୱାରୋହୀ ବାହିନୀ ଥିଲେ ସମ୍ମିଳିତ ଭାବେ ରାଷ୍ଟ୍ରୀୟ ସେନାବାହିନୀର ପ୍ରାଣ କେନ୍ଦ୍ର ସ୍ୱରୂପ । ଏ ବିଷୟରେ ପରିସ୍ଥିତିକୁ ଆୟତ୍ତରେ ରଖିବା ପାଇଁ ଶେର୍ ଶାହ୍ ନିୟମ କରିଥିଲେ, ଘୋଡ଼ାମାନଙ୍କ ଦେହରେ ବିଶେଷ ବିଶେଷ ଜାୟଗିର୍‌ଦାରମାନଙ୍କର ନିଜସ୍ୱ ସିଲ୍‌ମୋହରର ଦାଗ ଦେବାକୁ ହେବ ଏବଂ କେନ୍ଦ୍ରୀୟ କର୍ତ୍ତୃପକ୍ଷଙ୍କୁ ସେମାନଙ୍କ ସେନାବାହିନୀଗୁଡ଼ିକର ନିୟମିତ ପରିଦର୍ଶନ ଆୟୋଜନ କରି ଦେବାକୁ ପଡ଼ିବ । ରାଷ୍ଟ୍ରୀୟ ପରିଦର୍ଶନ ସମୟରେ ନିଜର ଖୁସି ମୁତାବକ ଭଡ଼ାରେ ଲୋକ ଆଣି ସେମାନଙ୍କୁ ଅଶ୍ୱାରୋହୀ ସୈନ୍ୟ ହିସାବରେ ଦେଖେଇ ଦେଇ ପରିଦର୍ଶନ ଶେଷ ହେଲା ପରେ ସେମାନଙ୍କୁ ପୁଣି ବିଦାୟ କରି ଦେବାର ଯେଉଁ ଅଭ୍ୟାସ ଜାୟଗିର୍‌ଦାରମାନେ ଇତିପୂର୍ବରୁ ପ୍ରଚଳନ କରି ଚାଲିଥିଲେ, ତା'ର ଅବସାନ ପାଇଁ ଶେର୍ ଶାହ୍ ଏହି ନିୟମ ପ୍ରବର୍ତ୍ତନ କରିଥିଲେ । ଶେର୍ ଶାହ୍ ରାଷ୍ଟ୍ରର ପ୍ରାପ୍ୟ ଫସଲର ଅଂଶ ନିର୍ଦ୍ଦିଷ୍ଟ କରି ଦେବାକୁ ଚାହିଁଥିଲେ ଏବଂ ରାଜକୋଷର ସ୍ୱାର୍ଥ ଦୃଷ୍ଟିରୁ ଚାହିଁଥିଲେ କୃଷକମାନଙ୍କ ଜମିର ପରିମାଣ ଯଥାର୍ଥ ଭାବେ ମାପଚୁପ ନକରି ଏବଂ ତା'ର ଭିତ୍ତିରେ ଫସଲର ଅଂଶ ଦାବୀ ନକରି ଖଜଣା ଆଦାୟକାରୀମାନେ ନିଜର ଖିଆଲ ଖୁସି ମୁତାବକ ଯେପରି ଖଜଣା ଆଦାୟ କରୁଥିଲେ, ତା'ର ଅବସାନ ଘଟାଇବାକୁ । ସେ ନିୟମ କରି ଦେଇଥିଲେ, ସୈନ୍ୟମାନଙ୍କୁ କେବଳ ଅର୍ଥ ଆକାରରେ ବେତନ ଦେବାକୁ ଏବଂ ଯେଉଁଠି ସମ୍ଭବ ହେଉଥିଲା, ସେଠାରେ ସେ ଜିନିଷପତ୍ର ପରିବର୍ତ୍ତେ ଅର୍ଥ ଆକାରରେ ଖଜଣା ଆଦାୟର ବ୍ୟବସ୍ଥା ଚାଲୁ କରିବାକୁ । ଶେର୍ ଶାହ୍ ନିଷ୍ଠୁର ଭାବେ କୃଷକମାନଙ୍କର ପ୍ରତିରୋଧ ଓ ସମସ୍ତ ବିଚ୍ଛିନ୍ନତାବାଦୀ ଆନ୍ଦୋଳନକୁ ଦମନ କରିଥିଲେ (ଯଥା, ଆଗ୍ରା ଅଞ୍ଚଳରେ ବାସ କରୁଥିବା ଆଫ୍‌ଗାନ ନିୟାଜି ଉପଜାତିର ବିଦ୍ରୋହ ସେ ଦମନ କରିଥିଲେ) ।

ନିଜ ରାଜ୍ୟର ସୀମା ସଂପ୍ରସାରଣ କରିବା ଉଦ୍ଦେଶ୍ୟରେ ହୁମାୟୁନ୍‌ଙ୍କ ଭଳି ଶେର୍ ଶାହ୍ ମଧ୍ୟ ରାଜପୁତ ରାଜ୍ୟଗୁଡ଼ିକୁ ଜୟ କରିବା ଦିଗରେ ମନୋନିବେଶ କରିଥିଲେ ଏବଂ ଚେଷ୍ଟା କରିଥିଲେ ଭାରତର ପଶ୍ଚିମ ଉପକୂଳର ବାଣିଜ୍ୟିକ ବନ୍ଦରଗୁଡ଼ିକୁ ଦଖଲ କରିବା ପାଇଁ । କିନ୍ତୁ ୧୫୪୫ ଖ୍ରୀଷ୍ଟାବ୍ଦରେ ରାଜପୁତାନାର କାଲଞ୍ଜର ଦୁର୍ଗଟି ଅବରୋଧ କଲା ବେଳେ ତାଙ୍କର ମୃତ୍ୟୁ ଘଟିଥିଲା ।

## ଆକବରଙ୍କ ରାଜତ୍ୱକାଳ

ଶେର୍ ଶାହ୍‌ଙ୍କ ମୃତ୍ୟୁ ଫଳରେ ପୁଣି ଦିଲ୍ଲୀ ସିଂହାସନ ଘେନି ଆଫ୍‌ଗାନ ସାମନ୍ତ ଭୂସ୍ୱାମୀମାନଙ୍କ ମଧ୍ୟରେ ସଂଘର୍ଷ ଦେଖା ଦେଇଥିଲା । ଶେଷକୁ ଶେର୍ ଶାହ୍‌ଙ୍କ କନିଷ୍ଠ ପୁତ୍ର କ୍ଷମତା ଦଖଲ କରିଥିଲେ । ସେ ରାଜତ୍ୱ କରିଥିଲେ ୧୫୫୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ଏହା ପରେ ସିଂହାସନ ପାଇଁ ଦାବୀ କରୁଥିବା ଚାରିଜଣ ଦାବିଦାରଙ୍କ ମଧ୍ୟରେ ପୁଣି ସଂଘର୍ଷ ଲାଗିଗଲା । ଏହି ପରିସ୍ଥିତିର ସୁଯୋଗ ନେଇଥିଲେ ହୁମାୟୁନ୍ । ସେ ଏହି ସମୟରେ ପାରସ୍ୟରୁ ଫେରି ଆସିଥିଲେ ତୁର୍କୀ, ପାରସିକ, ଆଫ୍‌ଗାନ, ତୁର୍କମାନ୍ ଓ ଉଜ୍‌ବେକମାନଙ୍କୁ ନେଇ ଗଠିତ ଏକ ବହୁଜାତିକ ସେନାବାହିନୀଙ୍କୁ ସଙ୍ଗରେ ଧରି । ସିଂହାସନର ଅନ୍ୟାନ୍ୟ ଦାବିଦାରମାନଙ୍କ ସେନାବାହିନୀକୁ ଉତ୍‌ଖାତ କରି ୧୫୫୫

ଖ୍ରୀଷ୍ଟାବ୍ଦରେ ସେ ଦିଲ୍ଲୀ ଦଖଲ କରିଥିଲେ । ତେବେ ଏଥରକ ମଧ୍ୟ ତାଙ୍କ ରାଜତ୍ୱ ଥିଲା ସ୍ୱଳ୍ପସ୍ଥାୟୀ । କାରଣ ମାତ୍ର କେଇ ମାସ ପରେ ଶଙ୍ଖମଲମଲ ପଥରର ଏକ ଶିଡ଼ିରୁ ପଡ଼ିଯାଇ ତାଙ୍କର ମୃତ୍ୟୁ ଘଟିଥିଲା । ଏଥରକ ତାଙ୍କର ତେର ବର୍ଷର ପୁଅ ଆକବରଙ୍କ ଅଭିଭାବକ ଓ ରକ୍ଷକ ତୁର୍କମାନ୍ ବୈରାମ ଖାଁ ଆକବରଙ୍କୁ ଦରବାରରେ ସିଂହାସନରେ ବସେଇ ଦେଇ ତାଙ୍କର ପ୍ରତିନିଧି ହିସାବରେ ରାଜ୍ୟ ଶାସନ କରିବାକୁ ଲାଗିଲେ ।

ଏହି ସମୟରେ ମୋଗଲମାନଙ୍କର ରାଜ୍ୟ ଗଙ୍ଗା – ଯମୁନା ଉପତ୍ୟକା ମଧ୍ୟରେ ସୀମିତ ଥିଲା (କାରଣ ଉତ୍ତରରେ ପଞ୍ଜାବ ଓ ଆଫ୍‌ଗାନ ଭୂଖଣ୍ଡଗୁଡ଼ିକ ସହିତ ଯୋଗାଯୋଗ ବିଚ୍ଛିନ୍ନ ହୋଇ ଯାଇଥିଲା) । ମୋଗଲ ରାଜ୍ୟ ପକ୍ଷରେ ସେତେବେଳେ ପ୍ରଧାନ ବିପଦ ହୋଇ ଦେଖା ଦେଇଥିଲେ ହିମୁ । ସେ ଥିଲେ ସୁର ସୁଲତାନ୍‌ମାନଙ୍କର ଜଣେ ସେନାପତି । "ନୀଚ" ବଂଶରୁ ଜାତ ହେବା ସତ୍ତ୍ୱେ (ହିନ୍ଦୁ ବଣିକ ପରିବାରରୁ ସେ ଆସିଥିଲେ) ପ୍ରତିଭାବାନ ସେନାଧ୍ୟକ୍ଷ ହିସାବରେ ହିମୁ ଖ୍ୟାତି ଅର୍ଜନ କରିଥିଲେ । ସେ ଦିଲ୍ଲୀ ଦଖଲ କରିଥିଲେ ଏବଂ ରାଜା ବିକ୍ରମାଦିତ୍ୟ ଉପାଧି ଗ୍ରହଣ କରି ନିଜକୁ ଶାସକ ବୋଲି ଘୋଷଣା କରିଥିଲେ । ୧୫୫୬ ଖ୍ରୀଷ୍ଟାବ୍ଦରେ ମୋଗଲମାନଙ୍କ ବିରୁଦ୍ଧରେ ପାନିପଥର ଅତୀବ ଗୁରୁତ୍ୱପୂର୍ଣ୍ଣ ଯୁଦ୍ଧରେ ହିମୁ ଆକବରଙ୍କ ସେନାବାହିନୀର ସଂଖ୍ୟାଗରିଷ୍ଠତା ସତ୍ତ୍ୱେ ତାଙ୍କ ପାର୍ଶ୍ୱଦେଶରେ ଭଙ୍ଗନ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ । କିନ୍ତୁ ହଠାତ ଏକ ତୀର ତାଙ୍କର ଏକ ଚକ୍ଷୁରେ ବିନ୍ଧି ହୋଇଥିବା ଫଳରେ ହାତୀ ପୃଷ୍ଠରୁ ସେ ପଡ଼ି ଯାଇଥିଲେ । ଫଳରେ ସେନାପତିଙ୍କୁ ରଣକ୍ଷେତ୍ରରେ ନଦେଖି ହିମୁଙ୍କ ସୈନ୍ୟମାନେ ପଳାୟନ କରିବାକୁ ଆରମ୍ଭ କରି ଦେଲେ (ଭାରତରେ ସେତେବେଳେ ଭଡ଼ାଟିଆ ସୈନ୍ୟମାନଙ୍କ ମଧ୍ୟରେ ଏହି ରୀତି ପରିଲକ୍ଷିତ ହେଉଥିଲା – ବେତନ ପ୍ରଦାନକାରୀ ମାଲିକ ସେନାପତିର ମୃତ୍ୟୁ ଘଟିଲେ, ସୈନ୍ୟମାନେ ଅବିଳମ୍ବେ ରଣକ୍ଷେତ୍ର ଛାଡ଼ି ପଳାଇ ଯାଉଥିଲେ) ଏବଂ ଯୁଦ୍ଧରେ ବିଜୟୀ ହୋଇଥିଲେ ଆକବର । ବୈରାମ ଖାଁଙ୍କ ନିର୍ଦ୍ଦେଶରେ ଏହି ଯୁଦ୍ଧ କ୍ଷେତ୍ରରେ ଦଣ୍ଡାୟମାନ ହୋଇ ଆକବର ତାଙ୍କର ସେନାପତିମାନଙ୍କୁ ଜମିଦାନ ଏବଂ ଖେତାବ୍ ବିତରଣ ଆରମ୍ଭ କରି ଦେଇଥିଲେ ।

ଆକବର ପ୍ରାୟ ପଚାଶ ବର୍ଷ ଧରି ଦିଲ୍ଲୀରେ (୧୫୫୬-୧୬୦୫ ଖ୍ରୀଷ୍ଟାବ୍ଦ) ରାଜତ୍ୱ କରିଥିଲେ ଏବଂ ଏହି ସମୟରେ ଉତ୍ତର ଭାରତରେ ଦୃଢ଼ ଭାବେ ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । ସେ ଯମୁନା ନଦୀ ତୀରରେ ଆଗ୍ରା ସହରରେ ରାଜଧାନୀ ସ୍ଥାପନ କରିଥିଲେ ।

## ଆକବରଙ୍କ ବିଜୟ ଅଭିଯାନ

ପ୍ରାରମ୍ଭରେ ଆକବରଙ୍କ ଅଭିଭାବକ ବୈରାମ ଖାଁଙ୍କ ହାତରେ ପ୍ରକୃତ ଶାସନ କ୍ଷମତା ନ୍ୟସ୍ତ ଥିଲା । ସେ ଆଜମିର ଦଖଲ କରିଥିଲେ ଏବଂ ରାଜପୁତମାନଙ୍କ ହାତରୁ ଗୋଆଲିଅର ଦୁର୍ଗ ଦଖଲ ଏବଂ ପଞ୍ଜାବରେ ମୋଗଲ ଶାସନ ପ୍ରତିଷ୍ଠା କରିଥିଲେ । ତେବେ ନିଜେ ଶିୟା ସଂପ୍ରଦାୟର ଲୋକ ହୋଇଥିବାରୁ ନିଜ ସଂପ୍ରଦାୟଭୁକ୍ତ ଲୋକମାନଙ୍କ ମଧ୍ୟରେ ସରକାରୀ ଉଚ୍ଚ ପଦ ଓ ଜମିଜମା ବିତରଣ କରିଥିଲେ । ଏହା ଫଳରେ ଦରବାରର ସୁନ୍ନି ସଂପ୍ରଦାୟଭୁକ୍ତ ଲୋକଙ୍କ ମଧ୍ୟରେ ପ୍ରବଳ

ଅସନ୍ତୋଷ ଓ ଶତ୍ରୁତା ଦେଖା ଦେଇଥିଲା । ୧୫୬୦ ଖ୍ରୀଷ୍ଟାବ୍ଦରେ ଦରବାରର ଆଉ ଏକ ଗୋଷ୍ଠୀ କ୍ଷମତା ଦଖଲ କରିଥିଲେ । ତା'ପରେ ବୈରାମ ଖାଁଙ୍କୁ ସମ୍ମାନର ସହିତ ମକ୍କାକୁ ନିର୍ବାସିତ କରାଯାଇଥିଲା, କିନ୍ତୁ ପଥରେ ଗୁଜରାଟରେ ଗୁପ୍ତଘାତକ ହାତରେ ସେ ନିହତ ହୋଇଥିଲେ ।

ଏହି ସମୟରେ ରାଷ୍ଟ୍ର କ୍ଷମତା କିଛି କାଳ ପାଇଁ ଆକବରଙ୍କ ଧାତ୍ରୀର ଆତ୍ମୀୟ ସ୍ୱଜନଙ୍କୁ ନେଇ ଗଠିତ ଏକ ଉଜ୍‌ବେକ ଉପଦଳ ହାତରେ ରହି ଯାଇଥିଲା । ମାଳବ ରାଜ୍ୟ ଏହି ସମୟରେ ଅନ୍ତର୍ଭୁକ୍ତ ହୋଇଥିଲା ମୋଗଲ ସାମ୍ରାଜ୍ୟରେ । ମାଳବର ରାଜା ବଜ୍ର ବାହାଦୂର ପ୍ରଥମେ ଦେଶ ଛାଡ଼ି ପଳେଇ ଯାଇଥିଲେ, ଅବଶ୍ୟ, ପରେ ସେ ଆକବରଙ୍କ ଅଧୀନରେ ଚାକିରି ଗ୍ରହଣ କରିଥିଲେ । ତାଙ୍କ ପ୍ରେମିକା ନର୍ତ୍ତକୀ ରୂପମତୀ ବନ୍ଦୀଦଶା ଅପେକ୍ଷା ମୃତ୍ୟୁକୁ ଶ୍ରେୟଜ୍ଞାନ କରି ଆତ୍ମହତ୍ୟା କରିଥିଲେ । ଏହି ବଜ୍ର ବାହାଦୂର ଓ ରୂପମତୀଙ୍କ ପ୍ରେମ କାହାଣୀ ପରେ ଅନେକ ଆଞ୍ଚଳିକ ଗାଥାକାରଙ୍କର ବିଷୟବସ୍ତୁରେ ପରିଣତ ହୋଇଥିଲା ।

ଏହାର ଅଳ୍ପ ଦିନ ମଧ୍ୟରେ ଅଭିଭାବକଙ୍କ (ଅସ୍ଥାୟୀ ଶାସକ) କବଳରୁ ନିଜକୁ ମୁକ୍ତ କରି ଆକବର ନିଜ ହାତକୁ ଶାସନ ଭାର ନେଇଥିଲେ । ଅଠର ବର୍ଷର ତରୁଣ ଆକବର ଥିଲେ ବୁଦ୍ଧିମାନ, ଶକ୍ତିଶାଳୀ ଏବଂ ସାହସୀ । ସେ ଶିକାର ପ୍ରିୟ ଥିଲେ ଏବଂ ତାଙ୍କର ସ୍ମୃତି ଶକ୍ତି ଥିଲା ଆଶ୍ଚର୍ଯ୍ୟ ଧରଣର । ସେ ଥିଲେ ଜଣେ ଶ୍ରୁତିଧର ପୁରୁଷ, ତେବେ ତାଙ୍କର ଶିକ୍ଷକମାନଙ୍କର ପ୍ରବଳ ପ୍ରଚେଷ୍ଟା ସତ୍ତ୍ୱେ ତାଙ୍କ ମଧ୍ୟରେ ଲେଖିବା ପଢ଼ିବା ପାଇଁ କୌଣସି ଆଗ୍ରହ ପ୍ରକାଶ ପାଇ ନଥିଲା । ଏହି ଅଳ୍ପ ବୟସରେ ସେ ଉପଲବ୍ଧି କରିଥିଲେ ଯେ, ଏକମାତ୍ର ହିନ୍ଦୁ ମୁସଲମାନମାନଙ୍କ ମିଳିତ ସାହାଯ୍ୟରେ ଭାରତକୁ ଶାସନ କରିବା ସମ୍ଭବ । ପ୍ରଥମେ ସେ ଯୋଦ୍ଧୃଜାତି ରାଜପୁତମାନଙ୍କର ସମର୍ଥନ ଲାଭ ପାଇଁ ବ୍ରତୀ ହୋଇଥିଲେ ଏବଂ ଏହି ଉଦ୍ଦେଶ୍ୟରେ ସେମାନଙ୍କ ସହିତ ଗୋଟାକ ପରେ ଗୋଟାଏ ମୈତ୍ରୀ ଚୁକ୍ତି କରିବାକୁ ଓ ରାଜପୁତ ରାଜକନ୍ୟାମାନଙ୍କୁ ବିବାହ କରି ଏହି ମୈତ୍ରୀକୁ ସୁଦୃଢ଼ କରିବାରେ ଉଦ୍‌ଯୋଗୀ ହୋଇଥିଲେ । ଫଳରେ ମାନ ସିଂହଙ୍କର ନେତୃତ୍ୱରେ ରାଜପୁତ ଅଶ୍ୱାରୋହୀ ବାହିନୀ ଯୁକ୍ତ ହେଲା ମୋଗଲ ସେନାବାହିନୀ ସହିତ । ମାନ ସିଂହ ଥିଲେ ଜଣେ ପ୍ରତିଭାବାନ ସେନାଧ୍ୟକ୍ଷ ଏବଂ ଅମ୍ବର ରାଜାଙ୍କର ପାଳିତ ପୁତ୍ର । ମୁସଲମାନ ସମ୍ରାଟଙ୍କ ନିକଟରେ ରାଜପୁତମାନଙ୍କର ଗୋଟିଏ ଅଂଶର ଆନୁଗତ୍ୟ ସ୍ୱୀକାର ରକ୍ଷଣଶୀଳ ରାଜପୁତଙ୍କ ମହଲଗୁଡ଼ିକରେ, ଅବଶ୍ୟ, ବିରୂପ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ରକ୍ଷଣଶୀଳମାନେ କହିଲେ, ମୁସଲମାନ ସମ୍ରାଟଙ୍କ ଦରବାରରେ ହାଜିରା ଦେଇ ହିନ୍ଦୁମାନେ ନିଜକୁ ଅବମାନନା କରିଛନ୍ତି ।

ରାଜପୁତ ମିତ୍ରମାନଙ୍କ ସାହାଯ୍ୟରେ ଆକବର ବିଦ୍ରୋହୀ ରାଜପୁତ ରାଜ୍ୟଗୁଡ଼ିକୁ ଦମନ କରିଥିଲେ ଏବଂ ୧୫୬୮ ମସିହାରେ ଚିତୋର, ୧୫୬୯ରେ ରନ୍‌ଥମ୍ବର ଶକ୍ତିଶାଳୀ ଦୁର୍ଗ ଦୁଇଟି ଓ ପରେ ରାଜପୁତାନାର ଅଧିକାଂଶ ଅଞ୍ଚଳ ଦଖଲ କରି ନେଇଥିଲେ । ଏକମାତ୍ର ମେବାରର (ଚିତୋର) ରାଣା ପ୍ରତାପ ସିଂହ ମୁଷ୍ଟିମେୟ କେତେକ ଅନୁଚରଙ୍କୁ ନେଇ ପାର୍ବତ୍ୟ ଅଞ୍ଚଳରେ ଆଶ୍ରୟ ନେଇଥିଲେ ଏବଂ ଆକବରଙ୍କ ବିରୁଦ୍ଧରେ ପ୍ରାୟ ପଚିଶ ବର୍ଷ ଧରି ସଂଗ୍ରାମ ଚଳାଇ ଯାଇଥିଲେ ।

ଆକବରଙ୍କ ସେନାପତି ଆସଫ୍ ଖାଁ ଇତିପୂର୍ବରୁ ରାଣୀ ଦୁର୍ଗାବତୀଙ୍କ ଶାସନାଧୀନ ବିସ୍ତୃତ ଗଣ୍ଡଓଆନା ରାଜ୍ୟ ଦଖଲ କରି ନେଇଥିଲେ । ରାଜ୍ୟ ରକ୍ଷା କରିବା ପାଇଁ ଏହି ରାଣୀ ନିର୍ଭୀକ ଭାବେ ଯୁଦ୍ଧ କରିଥିଲେ ଏବଂ ପରାଜିତ ହେଲେ ଛୁରିକାଘାତରେ ଆତ୍ମହତ୍ୟା କରିଥିଲେ । ଏହି

ସମୃଦ୍ଧ ଅଞ୍ଚଳଟି ଜୟ କରି ଏବଂ ଏ ରାଜ୍ୟର ପୂର୍ବତନ ରାଜାମାନଙ୍କ ଦ୍ୱାରା ସଞ୍ଚିତ ଅର୍ଥ ସଂପଦକୁ ରାଜକୋଷରୁ ଲୁଣ୍ଠନ କରି ଆସଫ୍ ଖାଁ ନିଜକୁ ସ୍ୱାଧୀନ ରାଜା ବୋଲି ଘୋଷଣା କରିବା ପକ୍ଷରେ ଯଥେଷ୍ଟ ଶକ୍ତି ସଞ୍ଚୟ କରିଛନ୍ତି ବୋଲି ବିଗ୍ଭର କରିଥିଲେ । ଏହି ଉଦ୍ଦେଶ୍ୟରେ ସେ ପଞ୍ଜାବର ବିଦ୍ରୋହୀମାନଙ୍କ ସହିତ ଯୋଗ ଦେଇଥିଲେ । ପଞ୍ଜାବରେ ୧୫୬୩ ମସିହାରୁ ବିଦ୍ରୋହ ଧୂମାୟିତ ହେଉଥିଲା ଏବଂ ତାକୁ ନେତୃତ୍ୱ ଦେଉଥିଲେ ଆକବରଙ୍କ ସେନାଧ୍ୟକ୍ଷମାନଙ୍କ ମଧ୍ୟରେ ଥିବା ବିଚ୍ଛିନ୍ନତାବାଦୀମାନେ । ଏହି ବିଦ୍ରୋହୀମାନେ ଏହା ପରେ ଲାହୋର ଦଖଲ କରି ନେଇଥିଲେ ଏବଂ କାବୁଲ ନିବାସୀ ଆକବରଙ୍କ ଛୋଟ ଭାଇଙ୍କୁ ସେମାନଙ୍କ ସୁଲତାନ୍ ବୋଲି ଘୋଷଣା କରିଥିଲେ । ସମ୍ଭଲର ପ୍ରଭାବଶାଳୀ ଉଜ୍‌ବେକ ଗୋଷ୍ଠୀପତି ବା ତଥାକଥିତ "ମିର୍ଜାମାନେ" ମଧ୍ୟ ଯୋଗ ଦେଇଥିଲେ ଏହି ବିଦ୍ରୋହୀମାନଙ୍କ ସହିତ । ଏମାନେ ସମସ୍ତେ ଥିଲେ ଆକବରଙ୍କ ଦରବାରରେ ବିଭିନ୍ନ ହିନ୍ଦୁ ରାଜପୁତ ରାଜାମାନଙ୍କ ସ୍ଥାନ ଲାଭର ବିରୋଧୀ । ଆକବରଙ୍କ ସୌଭାଗ୍ୟକୁ ଏହି ବିଦ୍ରୋହୀମାନେ ସମୟ ମୁତାବକ ନିଜର ବିଭିନ୍ନ ଗୋଷ୍ଠୀ ମଧ୍ୟରେ ସଂଯୋଗ ସ୍ଥାପନ କରିବାକୁ ଅସମର୍ଥ ହେବାରୁ ୧୫୬୭ ଖ୍ରୀଷ୍ଟାବ୍ଦରେ ସାମନ୍ତ ଭୂସ୍ୱାମୀମାନଙ୍କର ଏହି ବିଦ୍ରୋହ ଦମନ କରିବା ସମ୍ଭବ ହୋଇଥିଲା । "ମିର୍ଜାମାନେ" ଏହା ପରେ ପଳେଇ ଯାଇ ଆଶ୍ରୟ ନେଇଥିଲେ ଗୁଜରାଟରେ ।

ଗୁଜରାଟରେ ୧୫୩୭ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜ୍‌ମାନେ ବିଶ୍ୱାସଘାତକତା କରି ବାହାଦୂର ଶାହଙ୍କୁ ହତ୍ୟା କଲା ପରେ ଅନେକ ଦିନ ଧରି ତୁର୍କୀ, ଆଫ୍‌ଗାନ, ଆବିସିନୀୟ, ଆଦି ବିଭିନ୍ନ ନୃକୁଳ ଗୋଷ୍ଠୀର ଭିତ୍ତିରେ ଗଠିତ ବିଭିନ୍ନ ସାମନ୍ତ ଚକ୍ରଗୁଡ଼ିକ ମଧ୍ୟରେ କ୍ଷମତାର ଲଢ଼େଇ ଚାଲିଥିଲା । "ମିର୍ଜାମାନେ" ଗୁଜରାଟକୁ ଆସିଲା ପରେ ଏହି ଲଢ଼େଇରେ ଯୋଗ ଦେଇଥିଲେ । କାରଣ, କ୍ଷମତା ଲାଭର ଲାଳସା ସେମାନଙ୍କର ମଧ୍ୟ କମ୍ ନଥିଲା । ଏହିସବୁ ସାମନ୍ତ ଚକ୍ର ବିରୁଦ୍ଧରେ ଗୁଜରାଟକୁ ଆକବରଙ୍କ ସେନାବାହିନୀ ପ୍ରେରିତ ହୋଇଥିଲେ ଏବଂ ୧୫୭୨ ଖ୍ରୀଷ୍ଟାବ୍ଦରେ ମୋଗଲ ସୈନ୍ୟ ଗୁଜରାଟ ରାଜ୍ୟ ଅଧିକାର କରି ନେଇଥିଲେ । ତେବେ ମୋଗଲ ବାହିନୀ ଗୁଜରାଟ ଛାଡ଼ି ଆଗ୍ରାକୁ ଫେରି ଆସିବା ସଙ୍ଗେ ସଙ୍ଗେ "ମିର୍ଜାମାନେ" ପୁଣି ଥରେ ବିଦ୍ରୋହ ଆରମ୍ଭ କରି ଦେଲେ, ଫଳରେ ମୋଗଲ ସେନାବାହିନୀ ବାଧ୍ୟ ହୋଇଥିଲା ନୂଆ କରି ଗୁଜରାଟ ଦଖଲ କରିବାକୁ ।

ବଙ୍ଗର ମୁସଲମାନ ସୁଲତାନ୍ ନିଜକୁ ସ୍ୱାଧୀନ ବୋଲି ଘୋଷଣା କରିବାରୁ (ଯଦିଓ ସେ ଆକବରଙ୍କ ସାମନ୍ତ ରାଜା ବୋଲି ଗଣ୍ୟ ହେଉଥିଲେ) ବଙ୍ଗକୁ ଦମନ କରିବାକୁ ମୋଗଲ ବାହିନୀକୁ ଦୁଇ ବର୍ଷରୁ ଅଧିକ ସମୟ ଲାଗିଥିଲା । ଏହା ପରେ ନୂଆ ନୂଆ ରାଜ୍ୟ ଜୟରୁ ଆକବର କିଛି କାଳ ପାଇଁ କ୍ଷାନ୍ତ ରହିଥିଲେ । ଏହି ସମୟରେ ସେ ମନୋଯୋଗ ଦେଇଥିଲେ ତାଙ୍କ ଦ୍ୱାରା ଇତିମଧ୍ୟରେ ଅର୍ଜିତ ପ୍ରକାଣ୍ଡ ସାମ୍ରାଜ୍ୟର ଆଭ୍ୟନ୍ତରୀଣ ପ୍ରଶାସନ ସଂପର୍କିତ ବିଭିନ୍ନ ସମସ୍ୟାବଳୀ ଉପରେ ।

## ପ୍ରଶାସନ ବ୍ୟବସ୍ଥା

ମୋଗଲ ରାଷ୍ଟ୍ରରେ ପ୍ରଧାନ ପ୍ରଶାସନିକ ବିଭାଗ ଥିଲା ରାଜସ୍ୱ ସଂକ୍ରାନ୍ତ ବିଭାଗଟି । ଏହି ବିଭାଗର ମୁଖ୍ୟ ଥିଲେ ଦେଓ୍ୱାନ । ରାଜସ୍ୱ ଆଦାୟକାରୀ କର୍ମଚାରୀମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ହିନ୍ଦୁ । ସୈନ୍ୟ ବିଭାଗରେ ସୈନ୍ୟମାନଙ୍କର ଖାଦ୍ୟବସ୍ତ୍ର ଆଦିର ପ୍ରଧାନ ତତ୍ତ୍ୱାବଧାରକ ଓ

ଖାଜାଞ୍ଚି (କୋଷାଧ୍ୟକ୍ଷ) ଥିଲେ "ମିର୍‌ – ଇ – ବଖଶି" ଜାୟଗିରଗୁଡ଼ିକର ବଣ୍ଟନ ତତ୍ତ୍ୱାବଧାନ କରୁଥିଲେ ଏବଂ ସିଏ ହିଁ ଫୌଜି କୁଚକାଓଜ ସମୟରେ ସୈନ୍ୟମାନଙ୍କୁ ଏବଂ ସେମାନଙ୍କ ସାଜସରଞ୍ଜାମକୁ ପରିଦର୍ଶନ କରୁଥିଲେ । ଏହା ଛଡ଼ା ଅନ୍ୟାନ୍ୟ ବିଷୟରେ ସେନାବାହିନୀଗୁଡ଼ିକର ସେନାଧ୍ୟକ୍ଷମାନେ ସିଦ୍ଧାନ୍ତ ନେଉଥିଲେ । ଧର୍ମୀୟ ବିଷୟର ଭାରପ୍ରାପ୍ତ ବିଭାଗଟି ପରିଚିତ ଥିଲା ସଦାରତ୍‌ ନାମରେ । ଏହି ବିଭାଗର ପ୍ରଧାନ ସଦର ମୁସଲମାନମାନଙ୍କ ଫୌଜଦାରୀ ଓ ଦେଓ୍ୱାନୀ କେସ୍‌ସବୁ ପରିଚାଳନା କରିବା ପାଇଁ ବିଚାରକମାନଙ୍କୁ ନିଯୁକ୍ତ କରୁଥିଲେ ଏବଂ ସୁୟୁରଗାଲ ବିତରଣର ଭାର ପ୍ରାପ୍ତ ଥିଲେ । ବିଭିନ୍ନ ଅଞ୍ଚଳ ଓ ଜିଲ୍ଲାଗୁଡ଼ିକରେ ପାଖାପାଖି କାମ କରୁଥିଲେ ବେସାମରିକ ଓ ସାମରିକ କର୍ତ୍ତୃପକ୍ଷ – ପରସ୍ପର କାର୍ଯ୍ୟ ଉପରେ ନଜର ରଖିବାକୁ ଏବଂ ବିଚ୍ଛିନ୍ନତାବାଦୀ କୌଣସି ଲକ୍ଷଣ କେଉଁଠି ପ୍ରକାଶ ପାଇଲେ, ତାକୁ ଦମନ କରିବାକୁ ସେମାନେ ବାଧ୍ୟ ହେଉଥିଲେ । କେତେକ ବଡ଼ ଅଞ୍ଚଳରେ ସ୍ଥାନୀୟ ଭାବେ ମଧ୍ୟ ସଦରମାନେ ନିଯୁକ୍ତ ହେଉଥିଲେ ।

## କୃଷକମାନଙ୍କର ଅବସ୍ଥା

ମୋଗଲ ସାମ୍ରାଜ୍ୟର ଜନସାଧାରଣ ଥିଲେ ବହୁବିଧ ଉପଜାତି ଓ ଜାତି ଗୋଷ୍ଠୀରେ ବିଭକ୍ତ ଏବଂ ବହୁ ବିଚିତ୍ର ଭାଷାଭାଷୀ । ସେମାନଙ୍କ ସାମାଜିକ ବିକାଶର ସ୍ତର ମଧ୍ୟ ଭିନ୍ନ ଭିନ୍ନ ଥିଲା ଓ ସେମାନେ ବିଭିନ୍ନ ଧର୍ମମତ ଓ ଜାତିଗତ ପଂକ୍ତିରେ ବିଭକ୍ତ ଥିଲେ । ଜନସଂଖ୍ୟାର ଅଧିକାଂଶ ବାସ କରୁଥିଲେ ସେମାନଙ୍କ ଗ୍ରାମୀଣ ସମାଜର ଛୋଟ ସଂକୀର୍ଣ୍ଣ ଜଗତରେ । କୃଷକମାନେ ରାଷ୍ଟ୍ରକୁ ଖଜଣା ଦେଉଥିଲେ ଭୂମିରାଜସ୍ୱ ହିସାବରେ । ଏହି ରାଜକର ତଥା ଖଜଣା କୃଷକମାନେ ଯେପରି ନିୟମିତ ଦିଅନ୍ତି, ତାହାକୁ ଦେଖିବା ରାଷ୍ଟ୍ରର ସ୍ୱାର୍ଥ ସମ୍ମତ ଥିଲା । କିନ୍ତୁ ରାଷ୍ଟ୍ର, କିମ୍ବା ସାମନ୍ତ ଭୂସ୍ୱାମୀମାନେ କେହି କୃଷକମାନଙ୍କ ନିଜସ୍ୱ ବ୍ୟାପାରରେ ହସ୍ତକ୍ଷେପ କରୁ ନଥିଲେ ।

ଫସଲର ଏକତୃତୀୟାଂଶ ଥିଲା ରାଜସ୍ୱ ହିସାବରେ ରାଷ୍ଟ୍ରର ପ୍ରାପ୍ୟ । ରାଜସ୍ୱର ଏହି ପରିମାଣକୁ ସାଧାରଣ ଭାବେ "ନ୍ୟାଯ୍ୟ" ବୋଲି ମନେ କରାଯାଉଥିଲା, ଯଦିଓ ବେଳେ ବେଳେ କୃଷକମାନେ ଏହି ପରିମାଣ ରାଜସ୍ୱ ଦେବାକୁ ମଧ୍ୟ ଅସମର୍ଥ ହେଉଥିଲେ । ଏଭଳି କ୍ଷେତ୍ରରେ ସୈନ୍ୟବାହିନୀକୁ ଡକାଯାଉଥିଲା ରାଜସ୍ୱ ଆଦାୟ କରିବାରେ ସାହାଯ୍ୟ କରିବା ପାଇଁ । ଇତିବୃତ୍ତଗୁଡ଼ିକରେ ତଥାକଥିତ "ଅବାଧ୍ୟ ଦସ୍ୟୁମାନଙ୍କର" ଏପରି ଉଲ୍ଲେଖ ଦେଖିବାକୁ ମିଳେ, ଯେଉଁଠି କୃଷକମାନେ ଆକବରଙ୍କ ସୈନ୍ୟମାନଙ୍କ ଆକ୍ରମଣ ବିରୁଦ୍ଧରେ କାନ୍ଥ ଆଡ଼ୁଆଳରେ ଆଶ୍ରୟ ନେବାକୁ ବାଧ୍ୟ ହେଉଥିଲେ । ଥରେ ଆକବର ସ୍ୱୟଂ ତାଙ୍କ ପିଟୁଣୀ ବାହିନୀକୁ ନେତୃତ୍ୱ ଦେଇ ହାତୀ ପିଠିରେ ବସି ହାତୀ ଧକାରେ ମାଟି କାନ୍ଥକୁ ଭାଙ୍ଗି ଏକ ଗ୍ରାମ ମଧ୍ୟରେ ପ୍ରବେଶ କରିଥିଲେ ।

ଜମି ଆବାଦ କରିବା ପ୍ରଜାବର୍ଗଙ୍କ ପକ୍ଷରୁ ରାଷ୍ଟ୍ର ପ୍ରତି କର୍ତ୍ତବ୍ୟ ବୋଲି ଯେତେବେଳେ ଘୋଷଣା କରାଯାଇଥିଲା ଏବଂ ଖଜଣା ଆଦାୟକାରୀ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା, ସମସ୍ତ ଆବାଦଯୋଗ୍ୟ ଜମିରେ ଯେପରି ଫସଲ ବୁଣାଯାଏ, ସେଥି ପ୍ରତି କଡ଼ା ନଜର ରଖିବାକୁ । ଖଜଣା ଆଦାୟର ବିଷୟଟିକୁ ସୁନିୟନ୍ତିତ କରିବା ପାଇଁ ଆକବରଙ୍କ ମନ୍ତ୍ରୀ ତୋଦର ମଲ୍ଲଙ୍କ ଅଧୀନସ୍ଥ

ଅର୍ଥ ବିଭାଗ ଏକ ଫରମାସ ଜାରି କରିଥିଲେ । ସେଥିରେ କୁହାଯାଇଥିଲା ଯେ, ତାଙ୍କ ରାଜ୍ୟର ସମସ୍ତ ଜମିକୁ ଜରିପ୍ କରିବାକୁ ହେବ ଏବଂ ଏହି ଜରିପ୍ ଦୌଡ଼ି ଦ୍ୱାରା ନକରି (କାରଣ, ଦୌଡ଼ି ଦ୍ୱାରା କଲେ, ଇଚ୍ଛା ମୁତାବକ ଢିଲା ବା ଟାଣ କରି ଦିଆଯାଇ ପାରେ) ବାଉଁଶ ବାଡ଼ିରେ କରିବାକୁ ହେବ ।

ମୋଗଲ ସାମ୍ରାଜ୍ୟରେ ଗ୍ରାମ୍ୟ ସମାଜଗୁଡ଼ିକ ଥିଲା ଜଟିଳ ଧରଣର ସଂସ୍ଥା । ଯୌଥ ଭୂସ୍ୱାମୀ ହିସାବରେ ସମାଜର ନିୟନ୍ତ୍ରଣାଧିକାର ଥିଲା, ସାଧାରଣତଃ, ଗ୍ରାମ ଚତୁଃପାର୍ଶ୍ୱସ୍ଥ ଛୋଟ ଏକ ଭୂଖଣ୍ଡ ଉପରେ । ସମାଜର ପ୍ରଧାନ ବା ମୁଖିଆଙ୍କ ଉପରେ ଦାୟିତ୍ୱ ଥିଲା ଏହି ଭୂଖଣ୍ଡର ଅନ୍ତର୍ଗତ ଆବାଦୀ ଜମିର ପ୍ରତ୍ୟେକ ଟୁକୁରା ଉପରେ ଖଜଣା ଧାର୍ଯ୍ୟ କରିବା ଏବଂ ତାକୁ ଆଦାୟ କରିବା । କିନ୍ତୁ ଗ୍ରାମ୍ୟ ସମାଜର କାରିଗର ଓ ଭୃତ୍ୟମାନଙ୍କୁ ଯେଉଁସବୁ କ୍ରେତାମାନେ ଭଜୟ କରୁଥିଲେ, ସେମାନେ, ସାଧାରଣତଃ, ଏକାଧିକ ଗ୍ରାମରେ ବାସ କରୁଥିଲେ । ଫଳରେ କହିବାକୁ ଗଲେ, କାର୍ଯ୍ୟତଃ, ପ୍ରତ୍ୟେକ ଗ୍ରାମର ନିଜସ୍ୱ ମୁଖର, ଅର୍ଥାତ୍, କ୍ଷେତ ଖମାରର ପହରାଦାର ଓ ଜିମ୍ମାଦାର ଥିଲେ ମଧ୍ୟ ଗ୍ରାମର କର୍ମକାରର କ୍ରେତା ହୋଇ ପାରୁଥିଲେ ଏକାଧିକ ଗ୍ରାମ ଏବଂ ଗ୍ରାମର ସ୍ୱର୍ଣ୍ଣକାରର ଖରିଦ୍‌ଦାର ହୋଇ ପାରୁଥିଲେ ପାଞ୍ଚଟି ଗ୍ରାମ ପର୍ଯ୍ୟନ୍ତ, ଆଦି । ବିଭିନ୍ନ ଧରଣର କାରିଗର, ଯେଉଁମାନେ କି ପୂରା ଏକ ଗ୍ରାମାଞ୍ଚଳର ଗ୍ରହିଦା ମେଣ୍ଟାଉଥିଲେ, ସେମାନଙ୍କ ସଂଖ୍ୟା ହାରାହାରି ସାତରୁ ବାରଜଣ ପର୍ଯ୍ୟନ୍ତ ହେବାକୁ ବାଧା ନଥିଲା । ଏହିସବୁ କାରିଗର ଯେଉଁସବୁ ବସ୍ତୁ ତିଆରି କରୁଥିଲେ, ତନ୍-ମଧ୍ୟରୁ ପ୍ରତିଟି ବସ୍ତୁ ପାଇଁ, ସାଧାରଣତଃ, ସେମାନେ ଅର୍ଥ ଆକାରରେ ମୂଲ୍ୟ ପାଉ ନଥିଲେ । ସେମାନଙ୍କ ପ୍ରାପ୍ୟ ମୂଲ୍ୟ ମିଳୁଥିଲା ଫସଲର ଏକ ଅଂଶ ଦେଇ, କିମ୍ବା ନିଷର ଖଣ୍ଡେ ଜମିର ବିନିମୟରେ । ପ୍ରସଙ୍ଗତଃ, ଏକଥା ମଧ୍ୟ ଲକ୍ଷ୍ୟ କରିବାର କଥା ଯେ, କୌଣସି ଏକ ଗ୍ରାମ୍ୟ ସମାଜର ସଦସ୍ୟମାନଙ୍କ ପକ୍ଷରେ ନିକଟବର୍ତ୍ତୀ ଅନ୍ୟ ଏକ ବସତି ଅଞ୍ଚଳରେ ଅଧିକ ଆଉ ଖଣ୍ଡେ ଜମି ସଂଗ୍ରହ କରିବାରେ କୌଣସି ବାଧା ନଥିଲା (ଯଦିଓ ଏହି ଦ୍ୱିତୀୟ ବସତିରେ ସେସବୁ ବିଷୟରେ ପୂର୍ଣ୍ଣ ଅଧିକାର ସେ ଭୋଗ କରି ପାରୁ ନଥିଲେ) । ଏହା ଫଳରେ କୌଣସି ଏକ ଗ୍ରାମ୍ୟ ସମାଜର ପ୍ରଭାବାଧୀନରେ ଠିକ୍ କେତେ ପରିମାଣର ଭୂଖଣ୍ଡ ରହୁଥିଲା, ତାହାକୁ ବର୍ତ୍ତମାନ ହିସାବ କରିବା ଖୁବ୍ ଦୁରୂହ ଥିଲା । ତେବେ ଏହା ଠିକ୍ ଯେ, ଅନେକ ଗ୍ରାମର ବାସିନ୍ଦା କୃଷକମାନେ ହାଟ ବା ବଜାରକୁ ନଯାଇ କାରିଗରମାନଙ୍କ ଦ୍ୱାରା ନିର୍ମିତ ସେମାନଙ୍କର ପ୍ରୟୋଜନୀୟ ଜିନିଷପତ୍ର ସଂଗ୍ରହ କରି ପାରୁଥିଲେ ।

ଗ୍ରାମ୍ୟ ସମାଜର ମୁଖିଆ ଓ ପୋଥି ଲେଖକ, ଏକ ଦିଗରେ, ଯେମିତି ସମାଜର ଦୁଇଟି ପ୍ରତିନିଧି ଥିଲେ, ସେଇପରି, ଅନ୍ୟ ଦିଗରେ, ସେମାନେ ଥିଲେ ରାଜକର୍ମଚାରୀ । ମୁଖିଆ ତାଙ୍କ ପରିଚାଳନାଧୀନ ଗ୍ରାମରୁ ପୂରା ରାଜସ୍ୱ ଆଦାୟ କରି ଦେଇ ପାରିଲେ ତାଙ୍କ ସମାଜର ସ୍ୱାଧୀନ ସମସ୍ତ ଆବାଦୀ ଜମିର ଚାଳିଶ ଭାଗରୁ ଏକ ଭାଗ ଜମି ନିଜସ୍ୱ ବୋଲି ପାଇବାକୁ ଅଧିକାରୀ ଥିଲେ । ଏହି ଜମି ନିଷର ହେଉଥିଲା ।

ଆକବର ତାଙ୍କ ସାମ୍ରାଜ୍ୟର କେନ୍ଦ୍ରୀୟ ଅଞ୍ଚଳଗୁଡ଼ିକରେ ଜିନିଷପତ୍ର ଆକାରରେ ଖଜଣା ଦେବାର ରୀତି ପରିବର୍ତ୍ତେ ଅର୍ଥ ଆକାରରେ ଖଜଣା ଦେବାର ରୀତି ପ୍ରବର୍ତ୍ତନ କରିବା ଫଳରେ କୃଷକମାନଙ୍କ ପକ୍ଷରେ ତାହା ବଡ଼ ଏକ ବୋଝରେ ପରିଣତ ହୋଇଥିଲା । ଏହି ଅର୍ଥ ସଂଗ୍ରହ ପାଇଁ ଭାରତୀୟ

କୃଷକ ଏହା ପରେ ବାଧ୍ୟ ହେଲେ ନିଜ ଦ୍ୱାରା କିମ୍ବା ଗାଁର ମୁଖିଆ ସାହାଯ୍ୟରେ ତା କ୍ଷେତର ଫସଲକୁ ହାଟରେ ବିକ୍ରି କରିବା ପାଇଁ । ଏହା ଦ୍ୱାରା ସେମାନେ ଅତ୍ୟଧିକ ଭାବେ ନିର୍ଭରଶୀଳ ହୋଇ ପଡ଼ିଲେ ବ୍ୟବସାୟୀ ଓ ସୁଧଖୋର ମହାଜନମାନଙ୍କ ଉପରେ । ଆକବର ଯଦିଓ କୃଷକମାନଙ୍କ ଉପରେ ଧାର୍ଯ୍ୟକରା ଯାଇଥିବା ଅନେକ ପ୍ରକାରର ଛୋଟ ଛୋଟ ଖଜଣା ଛାଡ଼ କରି ଦେଇଥିଲେ, ତେବେ ସାମନ୍ତ ଭୂସ୍ୱାମୀମାନେ ଯଥାରୀତି ସେସବୁ ଆଦାୟ କରି ନେଉଥିଲେ କୃଷକମାନଙ୍କ ଠାରୁ ଏବଂ ନିଜେ ସେସବୁକୁ ଆତ୍ମସାତ୍ କରି ନେଉଥିଲେ ।

ଖଜଣା ଦେବା ଛଡ଼ା କୃଷକମାନେ ବେଳେ ବେଳେ ବାଧ୍ୟ ହେଉଥିଲେ ବିନା ମଜୁରିରେ ରାଷ୍ଟ୍ର ପାଇଁ କାମ କରିବାକୁ । ଏସବୁ ପ୍ରଧାନତଃ ଥିଲା ଦୁର୍ଗ, ସହର, ଆଦି ନିର୍ମାଣ କାର୍ଯ୍ୟ । ବିନା ପାରିଶ୍ରମିକରେ ଏହି ଶ୍ରମକୁ କୁହାଯାଉଥିଲା ବେଗାରି ବୋଲି । ଏହି ଶ୍ରମ ବିଶେଷ କରି କଠିନ ହୋଇ ଉଠୁଥିଲା, ଯେତେବେଳେ ଗ୍ରାମଗୁଡ଼ିକର ନିକଟରେ କୌଣସି ଦୁର୍ଗ ନିର୍ମିତ ହେଉଥିଲା । କାରଣ ଆକବର ସେତେବେଳେ ସିଧାସଳଖ ହୁକୁମ ଜାରି କରୁଥିଲେ ଯେ, ଆଖପାଖର ସମସ୍ତ ଗ୍ରାମର ଲୋକଙ୍କୁ ଏହି ନିର୍ମାଣ କାର୍ଯ୍ୟରେ ଲଗେଇବାକୁ ହେବ ।

## ରାଷ୍ଟ୍ରୀୟ ଓ ବ୍ୟକ୍ତିଗତ ଭୂସଂପତ୍ତି

ସାମନ୍ତବାଦୀ ଭାରତରେ ପ୍ରତ୍ୟେକଟି ବଡ଼ ରାଷ୍ଟ୍ର ଭୂସଂପତ୍ତି ଉପରେ ତା'ର ଅଧିକାରକୁ କାଏମ କରିବାକୁ ଚେଷ୍ଟା କରୁଥିଲା । ରାଷ୍ଟ୍ରୀୟ ମାଲିକାନାଧୀନ ଜମିଜମାର ଅସ୍ତିତ୍ୱ ରାଜକୋଷ ପୂର୍ଣ୍ଣ କରିବା ପାଇଁ ଖଜଣା ଆଦାୟ ସମ୍ଭବ ହୋଇ ପାରୁଥିଲା, ଏବଂ ଏହା ଫଳରେ ରାଷ୍ଟ୍ର ପକ୍ଷରେ ସମ୍ଭବ ହେଉଥିଲା ରାଜସେବା ବିନିମୟରେ ସାମନ୍ତ ଭୂସ୍ୱାମୀମାନଙ୍କୁ ସର୍ତ୍ତାଧୀନରେ ଜମି ବଣ୍ଟନ କରିବା । ଏହିସବୁ ଜମିର ସ୍ୱତ୍ୱଭୋଗୀମାନେ ପୁଣି ବାଧ୍ୟ ହେଉଥିଲେ ଛୋଟ ବଡ଼ ସୈନ୍ୟବାହିନୀକୁ ପୋଷିବାକୁ ଏବଂ ସେସବୁ ହେଉଥିଲା ରାଷ୍ଟ୍ରୀୟ ସେନାବାହିନୀର ଅଂଶବିଶିଷ୍ଟ । ରାଷ୍ଟ୍ର ଅଧୀନରେ ଶକ୍ତିଶାଳୀ ସେନାବାହିନୀ ଥିଲେ ଆଭ୍ୟନ୍ତରୀଣ ବିଦ୍ରୋହ ଆଦିକୁ ଦମନ କରିବା, ପ୍ରତିବେଶୀ ରାଜ୍ୟଗୁଡ଼ିକର ଆକ୍ରମଣରୁ ରାଜ୍ୟକୁ ରକ୍ଷା କରିବା ଏବଂ ନୂଆ ନୂଆ ରାଜ୍ୟ ଜୟ କରିବା ସମ୍ଭବ ହେଉଥିଲା । ଅବଶ୍ୟ, ନୂଆ କରି ଭୂସ୍ୱାମୀ ପାଲଟି ଯାଉଥିବା ଲୋକେ କ୍ରମଶଃ ଶକ୍ତିଶାଳୀ ହୋଇ ଉଠିବା ପରେ ରାଷ୍ଟ୍ର ନିକଟରୁ ପାଇଥିବା ସର୍ତ୍ତାଧୀନ ଜମିକୁ ସେମାନଙ୍କ ବ୍ୟକ୍ତିଗତ ଭୂସଂପତ୍ତିରେ ପରିଣତ କରିବାକୁ ଚେଷ୍ଟା ମଧ୍ୟ କରୁଥିଲେ । ଏହି ଭାବେ ଜମିରେ ରାଷ୍ଟ୍ରୀୟ ଓ ବ୍ୟକ୍ତିଗତ ମାଲିକାନା କାଏମ କରିବାର ଲଢ଼େଇ ଭାରତର ସମଗ୍ର ସାମନ୍ତବାଦୀ ଯୁଗରେ ଚାଲିଥିଲା ।

ମୋଗଲ ସାମ୍ରାଜ୍ୟର ଦୁଇ ଧରଣର ରାଷ୍ଟ୍ରୀୟ ମାଲିକାନାଧୀନ ଜମି ଥିଲା – ଯଥା, ଖାଲିସା ଓ ଜାୟଗିର୍ ।

ସମସ୍ତ ବିଜିତ ଭୂଖଣ୍ଡ ରାଷ୍ଟ୍ରୀୟ ମାଲିକାନାଧୀନ ଜମି ବା ଖାଲିସାର ଅଂଶ ଭୁକ୍ତ ହେଉଥିଲା । ଏହି ଜମିରୁ ସମ୍ରାଟ ଜାୟଗିର୍ ଭୂସଂପତ୍ତି ବଣ୍ଟନ କରୁଥିଲେ ଏବଂ ଏଥିରୁ ସେ ଜମି ଦାନ କରୁଥିଲେ ଧର୍ମୀୟ ଉପାସନା ପରିଚାଳନା ପାଇଁ ଭାରପ୍ରାପ୍ତ ବ୍ୟକ୍ତି ଏବଂ ଧର୍ମ ଗୁରୁମାନଙ୍କୁ । ଏହି

ଖାଲିସା ଜମିର ପରିମାଣରେ ଅନବରତ ଅଦଳ ବଦଳ ଘଟୁଥିବାରୁ ଏସବୁ ଜମିର ମୋଟ ପରିମାଣ ହିସାବ କରିବା ଅସମ୍ଭବ ଥିଲା । ଖାଲିସା ଜମି ଥିଲା ପୂରାପୂରି ରାଷ୍ଟ୍ରର ସଂପତ୍ତି ।

ଜାୟଗିର୍ ଭୂସଂପତ୍ତି ବୋଇଲେ ସର୍ତ୍ତସମ୍ବଳିତ ପ୍ରଦତ୍ତ ଜମିକୁ ବୁଝାଉଥିଲା । ଏହିସବୁ ସଂପତ୍ତିର ସ୍ୱତ୍ୱଭୋଗୀମାନେ ବାଧ୍ୟ ରହୁଥିଲେ ସ୍ୱତ୍ୱାଧୀନ ଜମିର ପରିମାଣ ସହିତ ସଂଗତି ରଖି ବଡ଼ ବା ଛୋଟ ଆକାରର ସେନାଦଳ ପୋଷଣ କରିବାକୁ । ଏହିସବୁ ସେନାଦଳ ସମ୍ରାଟଙ୍କ ସେନାବାହିନୀର ପ୍ରଧାନ ଅଂଶ ହେଉଥିଲେ । ଜାୟଗିର୍ ହିସାବରେ ପ୍ରଦତ୍ତ ଜମି ମଧ୍ୟ ରାଷ୍ଟ୍ରୀୟ ସଂପତ୍ତି ହିସାବରେ ଗଣ୍ୟ ହେଉଥିଲା । ଜାୟଗିର୍ ଉପରେ ଦେୟ ଭୂମି ରାଜସ୍ୱର ପରିମାଣ ଓ ତା'ର ଧରଣ ନିର୍ଦ୍ଧାରଣ ଜାୟଗିର୍‌ଦାରମାନେ କରୁ ନଥିଲେ, ସ୍ୱୟଂରାଷ୍ଟ୍ର ଏବଂ ରାଷ୍ଟ୍ର ତରଫରୁ ଠିକ୍ କରି ଦିଆଯାଉଥିଲା, କିପରି ଏହି ରାଜସ୍ୱ ଆଦାୟ କରାଯିବ । ନିୟମ ହିସାବରେ ଜାୟଗିର୍‌ଦାରଙ୍କ ଜମିର ସ୍ୱତ୍ୱ ତାଙ୍କ ପରିବାର ବା ବଂଶାନୁକ୍ରମେ ଭୋଗ କରୁ ନଥିଲେ, ବରଂ, ତାଙ୍କ ମୃତ୍ୟୁ ପରେ ତାହା ପୁଣି ରାଷ୍ଟ୍ର ସଂପତ୍ତିରେ ପରିଣତ ହେଉଥିଲା । ଏପରିକି ବେଳେ ବେଳେ ଜାୟଗିର୍‌ଦାରଙ୍କ ନିକଟରୁ ତା'ର ତାଲୁକ ରାଷ୍ଟ୍ରର ତରଫରୁ ନିଆଯାଉଥିଲା ଏବଂ ତା ପରିବର୍ତ୍ତେ ଅପର ଏକ ତାଲୁକ ଦିଆଯାଉଥିଲା । ପ୍ରତିବଦଳରେ ଦିଆଯାଉଥିବା ଏହି ଦ୍ୱିତୀୟ ତାଲୁକଟି ଦେଶର ସଂପୂର୍ଣ୍ଣ ଭିନ୍ନ ଏକ ଅଞ୍ଚଳରେ ହେବାଟା ବିଚିତ୍ର ନଥିଲା । ଆକବରଙ୍କ ରାଜତ୍ୱକାଳରେ ସାମନ୍ତ ଭୂସ୍ୱାମୀମାନଙ୍କ ମଧ୍ୟରେ ବିଚ୍ଛିନ୍ନତାବାଦୀ କ୍ରିୟାକଳାପ ବନ୍ଦ କରିବା ପାଇଁ ଏଭଳି ଭାବେ ତାଲୁକର ପରିବର୍ତ୍ତନ ପ୍ରାୟ ଘନ ଘନ ଘଟୁଥିଲା । ଏହା ଅର୍ଥ, ଜାୟଗିର୍‌ଦାରମାନେ ସେତେବେଳେ ସାଧାରଣତଃ ଏକାଜମିର ମାଲିକାନା ଏକ ସଙ୍ଗରେ ଦଶବର୍ଷରୁ ଅଧିକ କାଳ ଧରି ବ୍ୟବହାର କରି ପାରୁ ନଥିଲେ ।

ଜାୟଗିର୍ ଭୂସଂପତ୍ତିର ମାଲିକାନା ସହିତ ସାମନ୍ତବାଦୀ ବ୍ୟକ୍ତିଗତ ମାଲିକାନାର ଧରଣ ସହିତ, ଅବଶ୍ୟ, ଅନେକ କ୍ଷେତ୍ରରେ ସୁନିର୍ଦ୍ଦିଷ୍ଟ ମେଳ ଲକ୍ଷ୍ୟ କରାଯାଏ । ବଡ଼ ବଡ଼ ଜାୟଗିର୍‌ଦାରମାନେ ଜମିରୁ ସେମାନଙ୍କ ଦ୍ୱାରା ଆଦାୟ ହେଉଥିବା ରାଜସ୍ୱର ଏକତୃତୀୟାଂଶ ମାତ୍ର ବ୍ୟୟ ହେଉଥିଲା ସେମାନଙ୍କ ସେନାବାହିନୀଗୁଡ଼ିକର ଭରଣପୋଷଣ ପାଇଁ ଏବଂ ଅପେକ୍ଷାକୃତ ଛୋଟ ଜାୟଗିର୍ ପାଉଥିଲେ ସେଇମାନେ, ଯେଉଁମାନେ ଏହି କାର୍ଯ୍ୟରେ ଆଦାୟୀକୃତ ରାଜସ୍ୱରୁ ଅର୍ଦ୍ଧେକ ବ୍ୟୟ କରୁଥିଲେ । ଆକବରଙ୍କ ରାଜତ୍ୱକାଳର ଆଉ ଏକ ବୈଶିଷ୍ଟ୍ୟ ହେଲା, ଯେଉଁସବୁ ହିନ୍ଦୁ ରାଜା ତାଙ୍କ ଆନୁଗତ୍ୟ ସ୍ୱୀକାର କରି ନେଉଥିଲେ ସେମାନଙ୍କର ପୂର୍ବତନ ଭୂସଂପତ୍ତି ସାଧାରଣତଃ ଜାୟଗିର୍ ହିସାବରେ ସେମାନଙ୍କୁ ଦାନ କରାଯାଉଥିଲା ଏବଂ ଏହିସବୁ ଜମିକୁ ସେମାନେ ଉତ୍ତରାଧିକାର ସୂତ୍ରରେ ଭୋଗ ଦଖଲ କରୁଥିଲେ । ସପ୍ତଦଶ ଶତାବ୍ଦୀ ବେଳକୁ ବଂଶଗତ ଜାୟଗିର୍ ଦୃଢ଼ ଭାବେ ତା'ର ଚେର ମୂଳ ମେଲି ପାରିଥିଲା ।

ସାଧାରଣ ଭାବେ ଜାୟଗିରଗୁଡ଼ିକ ହେଉଥିଲା ତିରିଶ ଚାଳିଶ ହଜାର ଏକର ବିଶିଷ୍ଟ ପ୍ରକାଣ୍ଡ ପ୍ରକାଣ୍ଡ ଭୂସଂପତ୍ତି । ଆକବରଙ୍କ ରାଜତ୍ୱକାଳରେ ଜାୟଗିର୍‌ଦାରମାନେ ସେମାନଙ୍କ ମାଲିକାନା ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପ କରୁଥିଲେ । ଷୋଡ଼ଶ ଶତାବ୍ଦୀର ସପ୍ତମ ଦଶକର ଶେଷ ଓ ଅଷ୍ଟମ ଦଶକର ପ୍ରାରମ୍ଭରେ ଆକବର ଯେତେବେଳେ ଚେଷ୍ଟା କଲେ ଜାୟଗିର୍ ପ୍ରଥାର ବିଲୋପ ଘଟେଇ ତା'ର ପରିବର୍ତ୍ତେ ଅର୍ଥ ମୂଲ୍ୟରେ ବେତନଦାନ ବ୍ୟବସ୍ଥା ପ୍ରବର୍ତ୍ତନ କରିବାକୁ, ସେତେବେଳେ ପଞ୍ଜାବର ଜାୟଗିର୍‌ଦାରମାନେ ବିଗିଡ଼ି ଯାଇ ବିଦ୍ରୋହ ଘୋଷଣା କରିଥିଲେ । ପଞ୍ଜାବରେ ମୋଗଲ ବାହିନୀର

ସେନାଧ୍ୟକ୍ଷ ଶାହ୍‌ବାଜ ଖାଁ ସେତେବେଳେ ସମ୍ରାଟଙ୍କ ନାମରେ ଏହି ଅଞ୍ଚଳର ସମସ୍ତ ଖାଲିସା ଭୂସଂପତ୍ତି ଜାୟଗିର୍ ହିସାବରେ ବଣ୍ଟନ କରିବାକୁ ବାଧ୍ୟ ହୋଇଥିଲେ । ପାତ୍‌ଶାହ୍ ବା ଚଳନ୍ତି କଥାରେ ବାଦ୍‌ଶାହଙ୍କୁ ସେ ଲେଖିଥିଲେ : "ଏହି ଭାବେ ଯଦି ଆମେ ଯୋଦ୍ଧୃବୃନ୍ଦଙ୍କର ଅଶାନ୍ତ ହୃଦୟକୁ ଶାନ୍ତ ନକରିଥାନ୍ତୁ, ତେବେ ସେମାନେ ସିଧାସଳଖ ବିଦ୍ରୋହ ଆରମ୍ଭ କରି ଦେଇଥାନ୍ତେ । ଏବେ ସମଗ୍ର ରାଜ୍ୟ ଓ ସେନାବାହିନୀ ଆପଣଙ୍କ ହୁକୁମ ପାଳନ କରିବେ ।" ଆକବରଙ୍କ ରାଜତ୍ୱକାଳରେ ମୋଗଲ ସାମ୍ରାଜ୍ୟ ଦୃଢ଼ ହୋଇ ଗଢ଼ି ଉଠୁଥିଲା, ତେଣୁ ଜାୟଗିର୍‌ଦାରମାନଙ୍କର ମୋଟ ସଂଖ୍ୟା ଥିଲା ମାତ୍ର ଦୁଇ ହଜାର ପର୍ଯ୍ୟନ୍ତ (ବଡ଼ ଏବଂ ଛୋଟ ଜାୟଗିର୍‌ଦାରଙ୍କୁ ମିଶେଇ) ।

ମୋଗଲ ସାମ୍ରାଜ୍ୟ ଅମଳରେ ବ୍ୟକ୍ତିଗତ ଜମିମାଲିକମାନେ ମଧ୍ୟ ଥିଲେ । ସେମାନଙ୍କୁ ଜମିଦାର ବୋଲି କୁହାଯାଉଥିଲା । ଆକବରଙ୍କ ରାଜତ୍ୱକାଳରେ ଯେଉଁସବୁ ଶକ୍ତିଶାଳୀ ଛୋଟ ରାଜାମାନଙ୍କୁ ସେ ପଦାନତ କରିଥିଲେ, ସେମାନେ ମୋଗଲ ସାମ୍ରାଜ୍ୟର କର୍ତ୍ତୃତ୍ୱ ମାନି ନେଲା ପରେ ଏବଂ ଆକବରଙ୍କୁ କର ବା ସେଲାମି ଦେବାକୁ ରାଜି ହେବା ଦ୍ୱାରା ଏହିସବୁ ଜମିଦାର ଖେତାବ୍ ପାଇଥିଲେ । ଏହି ସେଲାମିର ପରିମାଣ ନିର୍ଭର କରୁଥିଲା ରାଜାମାନେ ବଶ୍ୟତା ସ୍ୱୀକାର କଲା ବେଳେ ଶକ୍ତିର ପ୍ରକୃତ ଭାରସାମ୍ୟ ଉପରେ । ମୋଗଲ ସାମ୍ରାଜ୍ୟର ରାଜସ୍ୱ ବିଭାଗ ଜମିଦାର ଓ ତାଙ୍କ ପ୍ରଜା ବା କୃଷକମାନଙ୍କ ମଧ୍ୟରେ ସଂପର୍କ ନେଇ ହସ୍ତକ୍ଷେପ କରୁ ନଥିଲା । କହିବା ବାହୁଲ୍ୟ ଯେ, ଏହି ଜମିଦାରମାନେ କୃଷକମାନଙ୍କ ନିକଟରୁ ଭୂମି ରାଜସ୍ୱ ବୋଇଲେ ଯାହା ବୁଝାଏ, ଜମିର ସେଇ ଭଡ଼ା ବା ଖଜଣା ଆଦାୟ କରୁଥିଲେ । ଏହି ଖଜଣାର ପରିମାଣ ଓ ତାହା ଆଦାୟର ପଦ୍ଧତି ନିର୍ଦ୍ଧାରିତ ହେଉଥିଲା ସ୍ଥାନୀୟ ପ୍ରଥା ଅନୁଯାୟୀ । ରାଜପୁତ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ, ଓଡ଼ିଶା, ବିହାର ଓ ଅନ୍ୟାନ୍ୟ କେତେକ ଜାଗାରେ କେତେକ ଜମିଦାର ସେମାନଙ୍କ ଭୂସଂପତ୍ତିକୁ ଖାସ୍ ମୌଜାରେ ବେଗାର ଖଟଣିର ଅନୁରୂପ ପଦ୍ଧତିରେ ପରିଚାଳନା କରୁଥିଲେ । କିନ୍ତୁ ମୋଗଲ ସାମ୍ରାଜ୍ୟ ଅମଳରେ ଭାରତରେ ପ୍ରଧାନତଃ କୃଷକ ଶୋଷଣର ଏହି ପଦ୍ଧତି କ୍ରମଶଃ ଲୋପ ପାଇ ଆସୁଥିଲା । ଜମିଦାରମାନଙ୍କର ଭୂସଂପତ୍ତିସମୂହ ସରକାରୀ ଭାବେ ବଂଶାନୁକ୍ରମିକ ବୋଲି ଘୋଷିତ ହୋଇଥିଲା, ଯଦିଓ ପ୍ରତି ଥର ଏହି ସଂପତ୍ତିର ଉତ୍ତରାଧିକାରୀଙ୍କୁ ମାଲିକାନା ସ୍ୱତ୍ୱ ଭୋଗ କରିବା ପୂର୍ବରୁ ତାଙ୍କର ଊର୍ଦ୍ଧ୍ୱତନ ଶାସକଙ୍କ ନିକଟରୁ ବିଶେଷ ସନନ୍ଦ ସଂଗ୍ରହ କରିବାକୁ ପଡ଼ୁଥିଲା । ତେବେ ଏହି ଜମିରେ ଯଦି ଏକାଧିକ ଦାବିଦାର ରହୁଥିଲେ, ତେବେ ଏହି ସନନ୍ଦ ଗୁରୁତ୍ୱପୂର୍ଣ୍ଣ ହେଉଥିଲା । ଏହା ଛଡ଼ା ଛୋଟ ଛୋଟ ଭୂସ୍ୱାମୀମାନଙ୍କୁ ମଧ୍ୟ ଅନେକ ସମୟରେ କୁହାଯାଉଥିଲା ଜମିଦାର ବୋଲି । ତେବେ ଇତିବୃତ୍ତଗୁଡ଼ିକରେ ଉଲ୍ଲେଖ କରାଯାଇଛି ଏକମାତ୍ର ଜମିଦାର - ରାଜାମାନଙ୍କୁ ।

ମୋଗଲ ସାମ୍ରାଜ୍ୟରେ ସୁୟୁରଗାଲ ତାଲୁକଗୁଡ଼ିକୁ ମୁଲକ, ଓୟାକଫ୍ ବା ଇନାମ ବୋଲି ଉଲ୍ଲେଖ କରାଯାଇଛି । ଏହିସବୁ ତାଲୁକ ଥିଲା ସାମନ୍ତବାଦୀ ପଦ୍ଧତିରେ ପରିଚାଳିତ ବ୍ୟକ୍ତିଗତ ମାଲିକାନାଧୀନ ଭୂସଂପତ୍ତି । ପ୍ରାୟ ସବୁ କ୍ଷେତ୍ରରେ ଏହି ସୁୟୁରଗାଲ ତାଲୁକଗୁଡ଼ିକୁ ଦାନ କରାଯାଉଥିଲା ସୁଫୀ ଶେଖ୍ ଓ ମୁସଲିମ୍ ଧର୍ମଗୁରୁମାନଙ୍କୁ । ସାମାନ୍ୟ ଦୁଇ ଚାରିଟା କ୍ଷେତ୍ରରେ ଧର୍ମନିରପେକ୍ଷ ଭାବେ ଜମି ଦାନ କରାଯାଉଥିଲା ଅନ୍ୟମାନଙ୍କୁ । ଆକବରଙ୍କ ରାଜତ୍ୱକାଳରେ ତାଙ୍କ ଧର୍ମୀୟ ସହନଶୀଳତାର ନୀତି ଅନୁସରଣ ଫଳରେ କେତେକ ସୁୟୁରଗାଲ – ଜମି ଅନ୍ୟାନ୍ୟ ଧର୍ମାବଲମ୍ବୀ ପୁରୋହିତମାନଙ୍କୁ

ଦିଆଯାଇଥିଲା । ସୁୟୁରଗାଲ ଜମିଗୁଡ଼ିକ, ସାଧାରଣତଃ, ଥିଲା ଛୋଟ ଆକାର ବିଶିଷ୍ଟ ଓ ବଂଶାନୁକ୍ରମିକ । ଜମିମାଲିକମାନଙ୍କର ବିଶେଷ କୌଣସି ବାଧ୍ୟବାଧକତା ନଥିଲା, ଏକମାତ୍ର ସମ୍ରାଟଙ୍କ ମଙ୍ଗଳ କାମନା କରି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ଜଣାଇବା ବ୍ୟତୀତ । ଏହିସବୁ ସୁୟୁରଗାଲ ତାଲୁକଗୁଡ଼ିକର ମୋଟ ଆୟତନ ରାଷ୍ଟ୍ରୀୟ ଭୂସଂପତ୍ତିର ତିନି ଶତାଂଶ ପର୍ଯ୍ୟନ୍ତ ଥିଲା । ତେବେ ଜମିଦାରମାନଙ୍କର ଭୂସଂପତ୍ତି ମଧ୍ୟରେ ମନ୍ଦିରଗୁଡ଼ିକୁ ପ୍ରଦତ୍ତ ବା ଦେବୋତ୍ତର ଜମିର ପରିମାଣ କେତେ ଥିଲା, ତାହା ଅନୁମାନ କରିବା ସମ୍ଭବ ନୁହେଁ ।

## କାରିଗରି ଶିଳ୍ପ

ଗ୍ରାମ୍ୟ ସମାଜରେ କାରିଗର କୌଣସି ପ୍ରୟୋଜନୀୟ ଦ୍ରବ୍ୟ ନିର୍ମାଣ କଲେ, ତା ବିନିମୟରେ ସମାଜ ନିକଟରୁ ଫସଲରୁ ଗୋଟିଏ ଭାଗ, କିମ୍ବା ନିଷ୍କର ଖଣ୍ଡେ ଜମି ପାଉଥିଲା । ତେବେ କାରୁଶିଳ୍ପୀମାନଙ୍କର ଗୋଟିଏ ବଡ଼ ଅଂଶ ସେତେବେଳେ ବାସ କରୁଥିଲେ ସହରରେ, କିମ୍ବା କାରିଗରମାନଙ୍କ ବସତିରେ । ସେମାନେ ସାମନ୍ତ ଭୂସ୍ୱାମୀମାନଙ୍କର ଫରମାସ ଅନୁଯାୟୀ ସେମାନଙ୍କ ନିମିତ୍ତ ବିଭିନ୍ନ ବ୍ୟବହାର ସାମଗ୍ରୀ ନିର୍ମାଣ କରୁଥିଲେ, କିମ୍ବା ଜିନିଷପତ୍ର ତିଆରି କରି ହାଟ ବା ବଜାରରେ ବିକ୍ରି କରୁଥିଲେ ।

ଏହି ସମୟରେ ଭାରତରେ ସବୁଠାରୁ ଉନ୍ନତ କୁଟୀର ଶିଳ୍ପ ଥିଲା ବସ୍ତ୍ର ବୟନ ଶିଳ୍ପ । କାର୍ପାସ ଓ ରେଶମ ବସ୍ତ୍ର, ସୂଚୀକାମ କରା ଓ ଛାପା କପଡ଼ା, ସ୍ୱାଭାବିକ ଓ ରଙ୍ଗକରା ବସ୍ତ୍ର – ଏସବୁ ଉତ୍ପନ୍ନ ହେଉଥିଲା ବିପୁଳ ପରିମାଣରେ । ସମ୍ରାଟ ଆକବରଙ୍କର ପୋଷାକ ପରିଚ୍ଛଦ ଭଣ୍ଡାରର ଯେଉଁ ତାଲିକା ମିଳେ, ସେଥିରୁ ପ୍ରାୟ ଶହେ ରକମର ଭାରତୀୟ ବସ୍ତ୍ରର ଉଲ୍ଲେଖ ଅଛି ।

ଆଗ୍ରାରେ ସେତେବେଳେ ବିଭିନ୍ନ ଧରଣର ସଂଶ୍ଳିଷ୍ଟ ପେଶାର ବିଶେଷଜ୍ଞ ଗୃହନିର୍ମାଣକାରୀ କର୍ମୀମାନଙ୍କର ବିପୁଳ ଏକ ସଂଖ୍ୟା ବାସ କରୁଥିଲେ । ଗୁଜରାଟରେ ବାସ କରୁଥିଲେ ମର୍ମର ପଥର କାମରେ ଦକ୍ଷ ଶିଳ୍ପୀମାନେ ଏବଂ ବଙ୍ଗଳାରେ ଦକ୍ଷ ଜାହାଜ ନିର୍ମାତାମାନେ । ଏହା ଛଡ଼ା ଅନ୍ୟାନ୍ୟ ଧରଣର କାରିଗରି ପେଶାରେ ମଧ୍ୟ ଭାରତର ଲୋକେ ଦକ୍ଷ ଥିଲେ: ଲୌହ ଓ ଲୌହେତର ବିଭିନ୍ନ ଧାତୁ ଖଣିରୁ ତୋଳା ଯାଉଥିଲା, ନିଷ୍କାସନ କରାଯାଉଥିଲା ଲବଣ ଆଉ ଶୋରା, ଗୃହ ଆଦି ନିର୍ମାଣ ପାଇଁ ଖଣିରୁ ପଥର କଟା ଯାଉଥିଲା, ତିଆରି ହେଉଥିଲା କାଗଜ ଓ ମଣି ମୁକ୍ତା ଖଚିତ ଅଳଙ୍କାର, ଉଦ୍‌ଭିଦଜ ତୈଳ ଉତ୍ପନ୍ନ ହେଉଥିଲା ଏବଂ ତିଆରି ହେଉଥିଲା ବିଭିନ୍ନ ଧରଣର ମିଷ୍ଟାନ୍ନ ଆଦି । ଭାରତୀୟ କାରିଗରମାନଙ୍କର ହାତ କାମରେ ଶିଳ୍ପ ରୁଚି ବୋଧ ଓ ସୂକ୍ଷ୍ମ କାରିଗରି ପାଇଁ ଏହାର ବହୁ ପୂର୍ବରୁ ଦେଶ ବିଦେଶରେ ତାହା ସମାଦୃତ ହୋଇ ଆସିଥିଲା । ତେବେ ଭାରତୀୟ କାରିଗରମାନେ କାମ କରୁଥିଲେ ଖୁବ୍ ଧୀର ଗତିରେ । କାରଣ ସେମାନେ ଅତ୍ୟନ୍ତ ସାଦାସିଧା ଯନ୍ତ୍ରପାତି ସାହାଯ୍ୟରେ କାମ କରୁଥିଲେ ଏବଂ ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ଏହି ଶିଳ୍ପୀମାନେ ନିଜେ ତିଆରି କରି ନେଉଥିଲେ । ଏଥି ସଙ୍ଗେ ସଙ୍ଗେ ଏକଥା ମଧ୍ୟ ଜାଣିବା ଦରକାର ଯେ, ତନ୍ତଦଣ୍ଡ ସେତେବେଳେ ବିକ୍ରୟ ପାଇଁ ତିଆରି କରାଯାଉଥିଲା । ଏଥିରୁ ବୁଝାଯାଏ ଯେ, ଭାରତରେ କାରିଗରି ଶିଳ୍ପ ସେତେବେଳେ କେଉଁ ସ୍ତରକୁ ଉନ୍ନୀତ ହୋଇଥିଲା ।

କାରିଗରମାନଙ୍କର ଜାତିଗୁଡ଼ିକ ସେତେବେଳେ ନିର୍ଭରଶୀଳ ଥିଲେ ସାମନ୍ତବାଦୀ ବର୍ଗ ପକ୍ଷଙ୍କ ଉପରେ ଏବଂ ଏହିସବୁ ବର୍ଗ ସ୍ଥାନୀୟ ବ୍ୟକ୍ତିମାନେ ଜାତିମାନଙ୍କର ମୁଖିଆମାନଙ୍କୁ ମନୋନୀତ କରୁଥିଲେ ଏବଂ ନିଯୁକ୍ତ କରୁଥିଲେ ସେଇମାନଙ୍କୁ (ଦଲାଲ), ଯେଉଁମାନେ ସେମାନଙ୍କ ହାତ କାମଗୁଡ଼ିକୁ ବଜାରରେ ବିକ୍ରି କରୁଥିଲେ । ଯେଉଁସବୁ କାରୁଶିଳ୍ପୀ ନିଯୁକ୍ତ ହେଉଥିଲେ ରାଷ୍ଟ୍ରୀୟ କର୍ମଶାଳାଗୁଡ଼ିକରେ, ସେମାନେ ଆଉରି ନିର୍ଭରଶୀଳ ହୋଇ ପଡ଼ୁଥିଲେ । ସେମାନଙ୍କୁ ତିଆରି କରିବାକୁ ପଡ଼ୁଥିଲା ସେନାବାହିନୀ ପାଇଁ ଅସ୍ତ୍ରଶସ୍ତ୍ର ଓ ସାଜସରଞ୍ଜାମ ଏବଂ ସମ୍ରାଟଙ୍କ ବ୍ୟବହାରଯୋଗ୍ୟ ବିଭିନ୍ନ ସାମଗ୍ରୀ । ଏହିସବୁ ସାମଗ୍ରୀରୁ କେତେକାଂଶ ସମ୍ରାଟ ବଣ୍ଟନ କରୁଥିଲେ ତାଙ୍କ ଅନୁଗୃହୀତ ବ୍ୟକ୍ତିବର୍ଗଙ୍କ ମଧ୍ୟରେ ।

ଆଗରୁ ଦାଦନ ଦିଆଯାଇଥିବା ଅର୍ଥ ଓ ତା'ପରେ ପାଇକାରି ହାରରେ ଉତ୍ପନ୍ନ ସାମଗ୍ରୀ କିଣି ନେବା ପ୍ରଥା ଥିଲା କାରିଗରମାନଙ୍କୁ ଶୋଷଣ କରିବା ପକ୍ଷରେ ବ୍ୟବସାୟୀ ବଣିକମାନଙ୍କ ଦ୍ୱାରା ସବୁଠାରୁ ବ୍ୟାପକ ପ୍ରଚଳିତ ପଦ୍ଧତି । ବଣିକମାନେ ଅଗ୍ରିମ୍ ଟଙ୍କା ଦାଦନ ଆକାରରେ ଦେଉଥିଲେ, ଯା ଦ୍ୱାରା କାରିଗରମାନେ ଖାଇବା ପିଇବାକୁ ଓ ସାମଗ୍ରୀ ଉତ୍ପାଦନ ଉପଯୋଗୀ କଞ୍ଚାମାଲ କିଣିବାକୁ ସକ୍ଷମ ହେଉଥିଲେ । ଏହା ଫଳରେ ଉତ୍ପାଦନକାରୀ କାରିଗର ତା'ର ପୃଷ୍ଠପୋଷକ ସେଇ ବିଶେଷ ବଣିକକୁ ତା'ର ଉତ୍ପନ୍ନ ଦ୍ରବ୍ୟାଦି ଦେବାକୁ ବାଧ୍ୟ ହେଉଥିଲା ଏବଂ ତାକୁ ଦେବାକୁ ପଡ଼ୁଥିଲା ଏଭଳି ଏକ ମୂଲ୍ୟରେ ଯାହା ପ୍ରଚଳିତ ବଜାର ଦରଠାରୁ (ଅର୍ଥାତ୍, ଏହି କାରିଗର ନିଜେ ଏହି ଜିନିଷଗୁଡ଼ିକୁ ବଜାରରେ ବିକ୍ରି କଲେ, ଯେଉଁ ଦାମ ପାଉଥିଲେ, ତା ଠାରୁ) କମ୍ ହେଉଥିଲା । ଭାରତର ପଶ୍ଚିମ ଉପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକରେ ପ୍ରଧାନ ପ୍ରଧାନ ଢଙ୍ଗର କାରିଗରୀ ଦ୍ରବ୍ୟ ସାମଗ୍ରୀ ଓ ସେସବୁ ସଂପର୍କିତ ବାଣିଜ୍ୟ ଥିଲା ରାଜକରର ଅଧୀନ । ଏହି କର ଧାର୍ଯ୍ୟ କରିବାର ଅଧିକାର ପାଉଥିଲେ ନିର୍ଦ୍ଦିଷ୍ଟ ଅର୍ଥଦାନର ବିନିମୟରେ କେତେକ ପରନଦାର । ଏହି ମଧ୍ୟବର୍ତ୍ତୀ ପରନଦାରମାନଙ୍କର ଏକଚଟିଆ ଅଧିକାର ଥିଲା ବିଶେଷ ଏକ ଧରଣର ପଣ୍ୟ ସାମଗ୍ରୀ ଉତ୍ପାଦନର ବା ଉତ୍ପାଦନ ତଦାରକିର (ଏହିସବୁ ପଣ୍ୟ ମଧ୍ୟରେ ରହୁଥିଲା କାର୍ପାସ ବସ୍ତ୍ର, ପାନ, ଧାନ ଓ ହାତୀ ଦାନ୍ତର ଦ୍ରବ୍ୟ ସାମଗ୍ରୀ ଆଦି) । ଯେତେଦୂର ମନେ ହୁଏ, ଉପରୋକ୍ତ ଏହିସବୁ ଧରଣର ପଣ୍ୟଦ୍ରବ୍ୟକୁ କରପରନଦାରମାନଙ୍କ ଦ୍ୱାରା ଲିଖିତ ଅନୁମତି ବ୍ୟତୀତ ଆଉ କେହି ବିକ୍ରି କରି ପାରୁ ନଥିଲେ । ସାଧାରଣତଃ, ଏହି ପରନଦାରମାନେ ହେଉଥିଲେ ଧନୀ ଭାରତୀୟ ବଣିକ କିମ୍ବା ବିଶେଷ ଧରଣର କାରିଗରି ଉତ୍ପାଦନର କାର୍ଯ୍ୟରେ ନିଯୁକ୍ତ ଜାତିର କାରୁଶିଳ୍ପୀମାନଙ୍କର ମୁଖ୍ୟ ।

## ବ୍ୟବସାୟ ବାଣିଜ୍ୟ ଓ ମହାଜନୀ ପ୍ରଥା

ଗୁଜରାଟ ଏବଂ ବଙ୍ଗଳା ଜୟ କରିବା ଫଳରେ ସମୁଦ୍ର ବନ୍ଦରଗୁଡ଼ିକ ଉପରେ ମୋଗଲ ସାମ୍ରାଜ୍ୟ ଆଧିପତ୍ୟ ଲାଭ କରିଥିଲା, କିନ୍ତୁ ତାକୁ ସଙ୍ଗେ ସଙ୍ଗେ ପର୍ତ୍ତୁଗୀଜ୍‌ମାନଙ୍କ ଦ୍ୱାରା ବାଧାର ସମ୍ମୁଖୀନ ହେବାକୁ ହେଲା । ଏପରିକି ହଜ୍ ଯାତ୍ରୀମାନେ ସମୁଦ୍ର ପଥରେ ମକ୍କାକୁ ଗଲା ବେଳେ ପର୍ତ୍ତୁଗୀଜ୍‌ମାନଙ୍କ ଠାରୁ ଅନୁମତି ନେବାକୁ ପଡ଼ୁଥିଲା । ଗୁଜରାଟର ଦୁଇଟି ସୁରକ୍ଷିତ ଦୁର୍ଗ ସମନ୍ୱିତ

ବନ୍ଦର ଡମନ ଓ ଡିଉରୁ ପର୍ତ୍ତୁଗୀଜ୍‌ମାନଙ୍କୁ ବିତାଡ଼ିତ କରିବା ବିଷୟରେ ମୋଗଲମାନଙ୍କର ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଥିଲା । ବଙ୍ଗ ଦେଶର ସପ୍ତଗ୍ରାମ (ସାତଗାଁ) ଓ ହୁଗୁଳିର ବନ୍ଦର ଦୁଇଟିରେ ପର୍ତ୍ତୁଗୀଜ୍‌ମାନଙ୍କର ଆଧିପତ୍ୟକୁ ମୋଗଲମାନେ ମାନି ନେଇଥିଲେ । ମୋଗଲ ସାମ୍ରାଜ୍ୟର ସର୍ବାପେକ୍ଷା ବଡ଼ ସମୁଦ୍ର ବନ୍ଦର ଥିଲା ଗୁଜରାଟର ସୁରାଟରେ । ସେତେବେଳେ କାମ୍ବେ ବନ୍ଦରର ସ୍ଥାନ ଗ୍ରହଣ କରିଥିଲା ସୁରାଟ ଏବଂ କାମ୍ବେ ପରିଣତ ହୋଇଥିଲା ତା'ର ପୂର୍ବ ଗୌରବର ଛାୟାରେ । କାରଣ ଏହି ଶେଷୋକ୍ତ ବନ୍ଦରର ପ୍ରବେଶ ପଥଟି ଇତିମଧ୍ୟରେ ରୁଦ୍ଧ ହୋଇ ଯାଇଥିଲା କାମ୍ବେ ଉପସାଗରର ଉଭୟ ତୀରରେ ଅନେକ ପର୍ତ୍ତୁଗୀଜ୍ ଦୁର୍ଗର ଅବସ୍ଥାନ ହେତୁ ।

ମୋଗଲମାନଙ୍କର ଅନେକ ବାଣିଜ୍ୟ ଜାହାଜ ଥିଲା, କିନ୍ତୁ ନିଜସ୍ୱ କୌଣସି ନୌବହର ନଥିଲା । ପ୍ରସଙ୍ଗତଃ କହିବା ଉଚିତ ଯେ, ଭାରତୀୟ ବଣିକମାନଙ୍କର ବ୍ୟବସାୟଗତ ଅଭିଜ୍ଞତା ଓ ବାହାରର ବହୁ ଦେଶ ସହିତ ସେମାନଙ୍କ ଦୀର୍ଘ କାଳର ବାଣିଜ୍ୟ ସଂପର୍କକୁ ନିଜର କାମରେ ଲଗାଇବା ଉଦ୍ଦେଶ୍ୟରେ ପର୍ତ୍ତୁଗୀଜ୍‌ମାନେ ଷୋଡ଼ଶ ଶତାବ୍ଦୀର ମଧ୍ୟ ଭାଗଠାରୁ ଭାରତୀୟ ବଣିକମାନଙ୍କୁ ନିଜର ଅଂଶୀଦାର ରୂପେ ନିଯୋଗ କରି ଆସିଥିଲେ । ଏହାର ଅର୍ଥ ହେଲା, ସମୁଦ୍ର ପଥରେ ଭାରତୀୟ ବଣିକମାନଙ୍କର ବ୍ୟବସାୟଗତ କ୍ରିୟାକଳାପ ଇତିମଧ୍ୟରେ ସଂପୂର୍ଣ୍ଣ ରୂପେ ବନ୍ଦ ହୋଇ ଯାଇ ନଥିଲା, କିନ୍ତୁ ତାହା ଯେ ବହୁ ପରିମାଣରେ ସୀମାବଦ୍ଧ ହୋଇ ଯାଇଥିଲା, ସେଥିରେ ସନ୍ଦେହ ନାହିଁ । ଗୁଜରାଟ ଆଗ ଭଳି ପାରସ୍ୟ ଉପସାଗରର ଦେଶସମୂହ, ଆଫ୍ରିକା ଓ ଆରବ ସହିତ ବାଣିଜ୍ୟ ଚଳେଇ ଯାଉଥିଲା । ଅନ୍ୟ ଦିଗରେ, ବଙ୍ଗାଳୀମାନେ ସମୁଦ୍ର ପଥରେ, ପ୍ରଧାନତଃ, ବାଣିଜ୍ୟ କରୁଥିଲେ ପ୍ରାଚ୍ୟର ପେଗୁ ଓ ମଲ୍ଲୁକା ପ୍ରଣାଳୀର ଦ୍ୱୀପପୁଞ୍ଜ ସହିତ । ବଙ୍ଗାଳୀମାନେ ସିଂହଳ ଓ ମାଲାବାର ଏବଂ କରମଣ୍ଡଳର ସମୁଦ୍ର ତୀରବର୍ତ୍ତୀ ବନ୍ଦରଗୁଡ଼ିକ ସହିତ ମଧ୍ୟ ବାଣିଜ୍ୟ କାରବାର କରୁଥିଲେ । ମୋଗଲ ସାମ୍ରାଜ୍ୟ ବାଣିଜ୍ୟ ଶୁଳ୍କ ଆଦାୟ ଦ୍ୱାରା ଏହିସବୁ ବ୍ୟବସାୟ ବାଣିଜ୍ୟରୁ ଲାଭବାନ ହେଉଥିଲା ଏବଂ ସେଇ କାରଣରୁ ୟୁରୋପୀୟ ବଣିକମାନଙ୍କର ଭାରତରେ ଅନୁପ୍ରବେଶ ନେଇ ଏକ ଅନିଶ୍ଚିତ ଦ୍ୱ୍ୟର୍ଥବ୍ୟଞ୍ଜକ ମନୋଭାବ ପୋଷଣ କରୁଥିଲା । ଏକ ଦିଗରେ, ତାହା ବିଦେଶୀମାନଙ୍କ ପ୍ରଭାବକୁ ସୀମିତ କରିବାକୁ ଚାହୁଁଥିଲା ବେଳେ ଅନ୍ୟ ଦିଗରେ ସେମାନଙ୍କୁ ବାଣିଜ୍ୟ ସଂକ୍ରାନ୍ତ ବିଭିନ୍ନ ସୁଯୋଗ ମଧ୍ୟ ଦେଉଥିଲା ।

ଭାରତୀୟ ତନ୍ତବୁଣା ଲୁଗା ସେତେବେଳେ ସମଗ୍ର ପ୍ରାଚ୍ୟ ଦୁନିଆରେ ଅତ୍ୟନ୍ତ ସମାଦର ଲାଭ କରୁଥିଲା ଏବଂ ଭାରତୀୟ ମହାସାଗରୀୟ ଓ ଦକ୍ଷିଣ ସମୁଦ୍ରଗୁଡ଼ିକର ଉପକୂଳବର୍ତ୍ତୀ ଦେଶମାନଙ୍କରେ ତାହା ଥିଲା ସମସ୍ତଙ୍କ ପକ୍ଷରେ ଗ୍ରହଣଯୋଗ୍ୟ ପଣ୍ୟ । ଅନ୍ୟାନ୍ୟ ଦେଶରୁ ବଣିକମାନେ ଭାରତକୁ ଆସୁଥିଲେ ଏହିସବୁ ତନ୍ତବୁଣା ଲୁଗା ଓ ବିଭିନ୍ନ ଧରଣର ମସଲା କିଣିବାକୁ । ଭାରତକୁ ସେମାନେ ଆଣୁଥିଲେ ନାନା ଧରଣର ବିଦେଶୀ ପଣ୍ୟ । ଭାରତୀୟ ବଣିକମାନଙ୍କ ମଧ୍ୟରୁ ଅଧିକାଂଶ ନିଯୁକ୍ତ ଥିଲେ ସେତେବେଳେ ଦେଶର ଆଭ୍ୟନ୍ତରୀଣ ବିଭିନ୍ନ ହାଟବଜାରରୁ ଦେଶରେ ଉତ୍ପନ୍ନ ବିଭିନ୍ନ ପଣ୍ୟ ସାମଗ୍ରୀ ପାଇକାରି ହାରରେ କିଣିବାରେ ଏବଂ ତା'ପରେ ସେସବୁକୁ ପ୍ରେରଣ କରୁଥିଲେ ଭାରତୀୟ ବନ୍ଦରଗୁଡ଼ିକୁ । ବିଦେଶୀ ପଣ୍ୟ ସାମଗ୍ରୀ ବନ୍ଦରଗୁଡ଼ିକରୁ ଭାରତୀୟ ରାଜାମାନଙ୍କର

ଦରବାରଗୁଡ଼ିକୁ ଯୋଗାଇ ଦେବା କାର୍ଯ୍ୟ ମଧ୍ୟ ସେମାନେ କରୁଥିଲେ । ଯେଉଁସବୁ ଭାରତୀୟ ବଣିକ ସମୁଦ୍ର ପଥରେ ବିଦେଶକୁ ଯାଉଥିଲେ, ସେମାନେ ସେଇସବୁ ବସତି ସ୍ଥାପନକାରୀ ଭାରତୀୟମାନଙ୍କ ସହିତ ସେମାନଙ୍କ ଜାତିଗତ ସଂପର୍କର ସୂତ୍ର ଧରି ଯୋଗାଯୋଗ ରଖୁଥିଲେ । ଏହିସବୁ ବଣିକ ଜାତି, କହିବାକୁ ଗଲେ, ଗୋଟିଏ ଗୋଟିଏ ବାଣିଜ୍ୟ ପ୍ରତିଷ୍ଠାନ ଭଳି କାର୍ଯ୍ୟ କରୁଥିଲେ । ବାଣିଜ୍ୟ ବିଷୟରେ ସେମାନେ ନିଜ ନିଜ ଜାତି ମଧ୍ୟରେ ବିଭିନ୍ନ ଧରଣର ସହଯୋଗିତା ଓ ସାହାଯ୍ୟ ଯୋଗାଉଥିଲେ, ଋଣ ଦେଉଥିଲେ, ଆଦି । ଯଥା, ଦୃଷ୍ଟାନ୍ତ ସ୍ୱରୂପ, ଗୁଜରାଟରେ ସବୁଠାରୁ ପ୍ରଭାବଶାଳୀ ବ୍ୟବସାୟୀ ଜାତି ଥିଲେ ବୋହରା ଓ ଖୋଜା ଜାତି ଦୁଇଟି । ସେମାନେ ଥିଲେ ସିୟା ସଂପ୍ରଦାୟର ମୁସଲମାନମାନଙ୍କ ଗୋଷ୍ଠୀର ଅନ୍ତର୍ଗତ ।

ସମୁଦ୍ର ପଥରେ ଭାରତୀୟମାନେ ବାଣିଜ୍ୟ କରିବା ବ୍ୟାପାରରେ ପର୍ତ୍ତୁଗୀଜ୍‌ମାନେ ବାଧା ସୃଷ୍ଟି କରିବା ଫଳରେ ପାରସ୍ୟ ସହିତ ଓଟ କ୍ୟାରାଭାନ ପିଠିରେ ପଣ୍ୟଦ୍ରବ୍ୟ ନେବା ଆଣିବା ଜରିଆରେ ବ୍ୟବସାୟ ବୃଦ୍ଧି ପାଇଥିଲା । ଏହିସବୁ କ୍ୟାରାଭାନ ପଥଗୁଡ଼ିକ ସେତେବେଳେ ଦେଶ ମଧ୍ୟରେ ବିସ୍ତୃତ ଥିଲା ବଙ୍ଗଳାରୁ ଲାହୋର ଏବଂ ଗୁଜରାଟରୁ କାଶ୍ମୀର ପର୍ଯ୍ୟନ୍ତ । ଆଭ୍ୟନ୍ତରୀଣ ବାଣିଜ୍ୟ କ୍ଷେତ୍ରରେ ଏହି ପଥଗୁଡ଼ିକ ସହାୟକ ହୋଇଥିଲା ।

ଆଭ୍ୟନ୍ତରୀଣ ବାଣିଜ୍ୟ ଦୁଇ ଧରଣର ସଂପ୍ରଦାୟଙ୍କ ହାତରେ ନିହିତ ଥିଲା । ଗୋଟିଏ ଦିଗରେ ଥିଲେ ପ୍ରତିପତ୍ତିଶାଳୀ ଧନୀ ବଣିକ ସଂପ୍ରଦାୟ, ଯେଉଁମାନେ ନଦୀ ପଥରେ ଓ ବଳଦ ଓ ଓଟ ଦଳ ସାହାଯ୍ୟରେ ଜିନିଷପତ୍ର ଯୋଗାଉଥିଲେ ଏବଂ ଅନ୍ୟ ଦିଗରେ ଥିଲେ ଗାଁ ଗାଁ ବୁଲିକି ବିକ୍ରି କରୁଥିବା ଫେରିଓ୍ୱାଲାମାନେ । ଗ୍ରାମ ବା ବଜାରମାନଙ୍କରେ ନିୟମିତ ହାଟ ବସୁଥିଲା । ଏହିସବୁ ହାଟରୁ କୃଷକମାନେ ପ୍ରଧାନତଃ ଲୁଣ, କିମ୍ବା ନଡ଼ିଆ କିଣୁଥିଲେ, ଲୁହା ବାଡ଼ି, ଦୈନନ୍ଦିନ ଜୀବନଯାତ୍ରା ପାଇଁ ଆବଶ୍ୟକ ଅନ୍ୟାନ୍ୟ ଦ୍ରବ୍ୟ କିଣୁଥିଲେ । ସେନାବାହିନୀକୁ ଖାଦ୍ୟ ଯୋଗାଉଥିଲେ ବିଶେଷ ଏକ ଧରଣର ଉପଜାତି ତଥା ଜାତି, ସେମାନଙ୍କୁ କୁହାଯାଉଥିଲା "ବିରିଞ୍ଜାରି" ବା "ବଞ୍ଜାରା" । ସୈନ୍ୟଦଳଙ୍କ ପଛେ ପଛେ ଏହି ବଞ୍ଜାରାମାନେ ସେମାନଙ୍କ ଭାରବାହୀ ପଶୁ ବଳଦ ବା ଓଟ ପିଠିରେ ଗ୍ୱଉଳ, ଲୁଣ ଆଦି ଲଦି ଯାଉଥିଲେ । ସମଗ୍ର ଦକ୍ଷିଣ ଭାରତରେ ଏହି "ବଞ୍ଜାରାମାନେ" ଦେଖିବାକୁ ମିଳୁଥିଲେ ।

ମୋଗଲ ସାମ୍ରାଜ୍ୟ ଅମଳରେ ସମୁଦ୍ରୋପକୂଳବର୍ତ୍ତୀ ଅଞ୍ଚଳଗଡ଼ିକରେ ଯେତେ ବେଶି ସଂଖ୍ୟାରେ ଧନୀ ବଣିକ ବାସ କରୁଥିଲେ, ସାମ୍ରାଜ୍ୟର କେନ୍ଦ୍ରାଞ୍ଚଳରେ ସେମାନଙ୍କ ସଂଖ୍ୟା ମୋଟେ ସେତେ ବେଶି ନଥିଲା । ତେବେ ଏହି କେନ୍ଦ୍ରାଞ୍ଚଳରେ ସୁଧଖୋର ମହାଜନୀ କାରବାର ଥିଲା ଖୁବ୍ ବେଶି । ଏହିସବୁ ମହାଜନ ପଦସ୍ଥ ସାମରିକ କର୍ମଗ୍ୱରୀ, ଦରବାରର ଓମରାହ୍ ଓ କୃଷକ କୁଳ ନିର୍ବିଶେଷରେ ସମସ୍ତଙ୍କୁ ଟଙ୍କା ଧାର ଦେଉଥିଲେ । ବିଶେଷ କରି ସାମ୍ରାଜ୍ୟର କେନ୍ଦ୍ରାଞ୍ଚଳରେ ଟଙ୍କା ଆକାରରେ ଖଜଣା ଦେବାର ପ୍ରଥା କଡ଼ାକଡ଼ି ଭାବେ ଗ୍ୱଲୁଥିବାରୁ ସମସ୍ତଙ୍କ ପକ୍ଷରେ ଏହି ଋଣ ନେବାଟା ପ୍ରୟୋଜନ ପଡ଼ୁଥିଲା । ଆକବରଙ୍କ ରାଜତ୍ୱକାଳରେ ମହାଜନମାନେ ଟଙ୍କା ଧାର ଦେଉଥିଲେ ଦୈନିକ ୧/୪୦ ଶତାଂଶ ସୁଧ ହାରରେ (ଅର୍ଥାତ୍, ବାର୍ଷିକ ୯୦୦ ଶତାଂଶ ସୁଧରେ) । ଏଥିରୁ ବୁଝାଯାଏ, ଗ୍ରାମଗୁଡ଼ିକରେ ଟଙ୍କା ନେଣ ଦେଣର ସଂପର୍କ କେତେ ଦୁର୍ବଳ ଏବଂ ଅନୁନ୍ନତ ଥିଲା ।

ଭାରତରେ ପଣ୍ୟ – ବନାମ – ଟଙ୍କାର ସଂପର୍କରେ ଯଥେଷ୍ଟ ବିକାଶ ଘଟିଥିଲେ ମଧ୍ୟ ଦେଶରେ

ସମସ୍ତ ପ୍ରକାରର ପ୍ରକୃତ କ୍ଷମତା ପୁଞ୍ଜୀଭୂତ ଥିଲା ସାମନ୍ତବାଦୀ ଭୂସ୍ୱାମୀମାନଙ୍କ ହାତରେ । ବାଣିଜ୍ୟ ସହିତ ସଂଶ୍ଳିଷ୍ଟ ମହଲଗୁଡ଼ିକ, ଯଥା, ବଣିକ ଓ ମହାଜନ ସଂପ୍ରଦାୟଗୁଡ଼ିକର (କାରିଗର ଏବଂ କାରୁଶିଳ୍ପୀମାନଙ୍କ କଥା ଆମେ ଧରୁ ନାହୁଁ) ଦେଶର ରାଜନୈତିକ ଜୀବନରେ କୌଣସି ପ୍ରକୃତ ଭୂମିକା ନଥିଲା । ତେବେ ସେମାନଙ୍କ ସ୍ୱାର୍ଥକୁ କିଛି ପରିମାଣରେ ରକ୍ଷା କରିବା ପାଇଁ, ହୁଏତ, ଚେଷ୍ଟା ଯାଉଥିଲା । ଯଥା, ଦୃଷ୍ଟାନ୍ତ ସ୍ୱରୂପ, ବାଣିଜ୍ୟ ବିକାଶ ଘଟାଇବା ଉଦ୍ଦେଶ୍ୟରେ ଆକବର ସ୍ୱୟଂ କେତେକ ପଦକ୍ଷେପ ନେଇଥିଲେ – ଯଥା, ସହରର ତୋରଣ ଦ୍ୱାରରେ ଓ ନଦୀର ଘାଟଗୁଡ଼ିକରେ ମୁଣ୍ଡ ପିଛା ଶୁଳ୍କର ହାର ହ୍ରାସ କରି ୧.୫ ଶତାଂଶ କରାଯାଇଥିଲା ଏବଂ ବିଶାଳ ମୋଗଲ ସାମ୍ରାଜ୍ୟରେ ସର୍ବତ୍ର ସାଧାରଣ ମାପ ଓ ମୁଦ୍ରାର ଏକକଗୁଡ଼ିକୁ ଚାଲୁ କରାଯାଇଥିଲା ।

## ଆକବରଙ୍କ ଶାସନ-ସଂସ୍କାରସମୂହ

୧୫୬୯ ଖ୍ରୀଷ୍ଟାବ୍ଦରେ ଆକବର ନିର୍ଦ୍ଦେଶ ଦେଇଥିଲେ ଆଗ୍ରାରୁ କୋଡ଼ିଏ କିଲୋମିଟର ଦୂରରେ ଅବସ୍ଥିତ ସିକ୍ରିଠାରେ, ବାବର ଯେଉଁଠି ରାଣା ସଙ୍ଗଙ୍କୁ ପରାସ୍ତ କରିଥିଲେ, ନୂଆ ଏକ ସହର ନିର୍ମାଣ କରିବାକୁ । ପାତ୍‌ଶାହଙ୍କ ହୁକୁମ ଅନୁସାରେ ଆକବରଙ୍କ ଦରବାରର ଅମିର ଓମରାହ୍‌ମାନେ ଏକ ବିଶାଳ ନିଛାଟିଆ ପ୍ରାନ୍ତରରେ ବହୁବିଧ ପ୍ରାସାଦ ଓ ପ୍ରମୋଦ ଉଦ୍ୟାନ ନିର୍ମାଣ କରିଥିଲେ । ଏହି ଭାବେ ଲାଲ ପଥରରେ ନିର୍ମିତ ଅପରୂପ ଏକ ସୁରମ୍ୟ ସହର ଗଢ଼ି ଉଠିଥିଲା ଏବଂ ତାହା ଆକବରଙ୍କ ରାଜଧାନୀରେ ପରିଣତ ହେଲା । ଏହି ରାଜଧାନୀର ନୂତନ ନାମକରଣ ହେଲା ଫତେପୁର ସିକ୍ରି ବା ବିଜୟ ନଗର । ଏହି ସହରରେ ଶେଖ୍ ସେଲିମ୍ ଚିସ୍ତି ଏକଦା ଯେଉଁ ଘରଟିରେ ବାସ କରୁଥିଲେ, (ଏହି ସେଲିମ୍ ଚିସ୍ତି ଆକବରଙ୍କ ପ୍ରଥମ ପୁତ୍ର ସନ୍ତାନଙ୍କ ଜନ୍ମ ସଂପର୍କରେ ଭବିଷ୍ୟତବାଣୀ କରିଥିଲେ), ସେଠାରେ ପରେ ଏକ ଅଟ୍ଟାଳିକା ନିର୍ମାଣ କରାଯାଇଥିଲା ଏବଂ ପୁଣି ଅନେକ ବର୍ଷ ପରେ ତାହା ପୁନର୍ନିର୍ମିତ ହୋଇଥିଲା ସଫେଦ ପଥର ଦ୍ୱାରା । ଏହି ପ୍ରାସାଦଟି ପରବର୍ତ୍ତୀ ମୋଗଲ ଅମଳରେ ନିର୍ମିତ ଅନ୍ୟାନ୍ୟ ଶ୍ୱେତ ପଥରରେ ନିର୍ମିତ ପ୍ରାସାଦ ଓ ସମାଧିସୌଧର ଅନୁକରଣୀୟ ଦୃଷ୍ଟାନ୍ତ ହୋଇ ରହିଥିଲା । ଫତେପୁର ସିକ୍ରି ସହରଟି ଗଢ଼ି ଉଠିଲା ପରେ ଜଣାଗଲା ସହରରେ ଜଳ ସରବରାହ ଯଥେଷ୍ଟ ନୁହେଁ । ଏହି କାରଣରୁ ଷୋଡ଼ଶ ଶତାବ୍ଦୀର ଅଶି ଦଶକରେ ଆକବରଙ୍କ ଦରବାର ଫତେପୁର ସିକ୍ରି ତ୍ୟାଗ କରି ଚାଲି ଆସିଥିଲା । ସହରଟି ଏବେ ମଧ୍ୟ ସେଇଭଳି ଶୂନ୍ୟ, ପତିତ ରହିଛି । ଏହା ଏବେ ଅମୂଲ୍ୟ ସ୍ଥାପତ୍ୟ ଶିଳ୍ପର ଏକ ସମାହାର ଏବଂ ଅସଂଖ୍ୟ ପର୍ଯ୍ୟଟକଙ୍କ ଦର୍ଶନ କ୍ଷେତ୍ରରେ ପରିଣତ ହୋଇଛି ।

ଆକବର ଏକ ପ୍ରକାଣ୍ଡ ସାମ୍ରାଜ୍ୟର ଅଧିପତି ହୋଇ ଆସୀନ ହେଲା ପରେ ସ୍ଥିର କଲେ ତାଙ୍କର ସମଗ୍ର ପ୍ରଶାସନ ବ୍ୟବସ୍ଥାକୁ ଆଉରି ଉନ୍ନତ ଏବଂ ଦୃଢ଼ କରିବେ । ଫଳରେ ତାଙ୍କ ପରବର୍ତ୍ତୀ ପ୍ରଶାସନିକ ସଂସ୍କାର ବ୍ୟବସ୍ଥାଗୁଡ଼ିକର ଲକ୍ଷ୍ୟ ହେଲା ତାଙ୍କ ରାଜବଂଶର ଶାସନକୁ ସୁଦୃଢ଼ କରିବା ଏବଂ ସାରା ଭାରତରେ ମୁସଲିମ୍ ସାମନ୍ତ ଭୂସ୍ୱାମୀମାନଙ୍କର ପ୍ରାଧାନ୍ୟକୁ କାଏମ କରିବା । ଏଥି ସାଥେ ସାଥେ ବୈଷମ୍ୟମୂଳକ ଧର୍ମୀୟ ଉତ୍ପୀଡ଼ନର ବୋଝ କିଛି ପରିମାଣରେ ଲଘବ କରି ସେ

ଦେଶର ହିନ୍ଦୁ ସଂପ୍ରଦାୟର ସମର୍ଥନ ଲାଭ କରିବାକୁ ଚାହିଁଥିଲେ । ତେବେ ତାଙ୍କର ଏହି ଶେଷୋକ୍ତ ନୀତିର ପ୍ରତିବନ୍ଧକ ହୋଇ ଛିଡ଼ା ହେଲେ ମୁସଲିମ୍ ଜାୟଗିର୍‌ଦାର ଓ ଶେଖ୍‌ମାନେ । ସେମାନେ ଚାହିଁଲେ, କଠୋର ନୀତି ଅନୁସରଣ କରିବାକୁ ଏବଂ ସମସ୍ତ ପ୍ରକାର ଅସନ୍ତୋଷ ପ୍ରକାଶକୁ ନିଷ୍ଠୁର ଭାବେ ଦମନ କରିବାକୁ ।

୧୫୭୪ ଖ୍ରୀଷ୍ଟାବ୍ଦରେ ସାମନ୍ତବାଦୀ ଶ୍ରେଣୀର ସମସ୍ତ ଅଂଶ ମଧ୍ୟରେ ସଂପର୍କକୁ ନିୟମିତ ଭିତ୍ତି ଉପରେ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଆକବର ସରକାରୀ ପଦସମୂହ (ମନସବ୍‌ସମୂହ) ମଧ୍ୟରେ ଏକ କ୍ରମିକ ସ୍ତରବିନ୍ୟାସର ପ୍ରବର୍ତ୍ତନ କରିଥିଲେ ଏବଂ ତାଙ୍କ ସେନାଧ୍ୟକ୍ଷମାନଙ୍କ ମଧ୍ୟରେ ସେମାନଙ୍କ ପଦ (ବା ଜାଟ) ଅନୁଯାୟୀ ଛୋଟଠାରୁ ବଡ଼ ଜାୟଗିର୍ ବିତରଣ କରିଥିଲେ । ତେବେ ଜାୟଗିର୍‌ଦାରମାନେ, ଅବଶ୍ୟ, ଏଥରକ ମଧ୍ୟ ପୂର୍ବ ପରି ସମ୍ରାଟଙ୍କ ହୁକୁମନାମାକୁ ଏଡ଼େଇ ଯିବାର କୌଶଳ ଉଦ୍‌ଭାବନ କରି ପକାଇଲେ ଏବଂ ସମ୍ରାଟଙ୍କ ଦ୍ୱାରା ନିର୍ଦ୍ଧାରିତ ଅର୍ଥଠାରୁ କମ୍ ଅର୍ଥ ବ୍ୟୟ କରିବାକୁ ଲାଗିଲେ ସେମାନଙ୍କ ସେନାଦଳଗୁଡ଼ିକର ଭରଣପୋଷଣ ପାଇଁ । ଫଳରେ ଆଉରି କଡ଼ା ନିୟମକାନୁନ୍‌ର ପ୍ରୟୋଜନ ଦେଖା ଦେଲା ଏବଂ ଏଥର ପୁଣି ନୂଆ ଏକ ସ୍ତରବିନ୍ୟାସର ପ୍ରବର୍ତ୍ତନ କରାଗଲା । ଏହି ସ୍ତରବିନ୍ୟାସଟିକୁ କୁହାଗଲା ସାଭାର । ସେତେବେଳେ, ଅବଶ୍ୟ, ଜାଟ ଦ୍ୱାରା ସରକାରୀ ପଦର କ୍ରମକୁ ବୁଝାଗଲା ଏବଂ ସାଭାର କଥାଟି ଦ୍ୱାରା ବୁଝାଗଲା ଜଣେ ସେନାଧ୍ୟକ୍ଷ ଠିକ୍ କେତେଜଣ ଅଶ୍ୱାରୋହୀ ସୈନ୍ୟଙ୍କର ଭରଣପୋଷଣ ଭାର ସରକାରୀ ଭାବେ ନେବାକୁ ବାଧ୍ୟ (ଯଥା, ଦୃଷ୍ଟାନ୍ତ ସ୍ୱରୂପ, ଏକ ହଜାର ଅଶ୍ୱାରୋହୀଙ୍କର ଅଧିନାୟକ ଏକ ସେନାଧ୍ୟକ୍ଷଙ୍କର ଏକ ହଜାର, ପାଞ୍ଚ ଶହ, ଏପରିକି ମାତ୍ର ଚାରି ଶହ ଅଶ୍ୱାରୋହୀଙ୍କର ଭରଣପୋଷଣ କରିବା କରଣୀୟ ଥିଲା) । ଜାୟଗିର୍‌ର ଆୟତନ କ୍ରମଶଃ ନିର୍ଭର କରିବାକୁ ଲାଗିଲା ଜାୟଗିର୍ ପ୍ରାପକଙ୍କ ଜାଟ ଓ ସାଭାର ଉପରେ । ଏହା ଫଳରେ ପ୍ରଦତ୍ତ ଜମିର ଆୟତନ ବଢ଼ି ଗଲା ଏବଂ ରାଷ୍ଟ୍ରୀୟ ଖାଲିସା ଜମିର ପାଣ୍ଠି ହ୍ରାସ ପାଇଲା ।

ଏହା ପରେ ଆକବର ସ୍ଥିର କଲେ ଜାୟଗିର୍ ପ୍ରଥାର ସଂପୂର୍ଣ୍ଣ ଅବସାନ ଘଟାଇବା ପାଇଁ । ତତ୍କାଳୀନ ଇତିବୃତ୍ତରୁ ଆମେ ଜାଣିବାକୁ ପାଏଁ ଯେ, ୧୫୭୪ ଖ୍ରୀଷ୍ଟାବ୍ଦରେ ଆକବର ତିନି ବର୍ଷ ପାଇଁ ଗୋଟିଏ ପରୀକ୍ଷାମୂଳକ ପରିକଳ୍ପନା କାର୍ଯ୍ୟକାରୀ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏହି ପରିକଳ୍ପନା ଅନୁଯାୟୀ "ସମସ୍ତ ରାଷ୍ଟ୍ରୀୟ ଭୂସଂପତ୍ତି ଖାଲିସା ଜମି ହିସାବରେ ଗଣ୍ୟ ହେବ ଏବଂ ବାଦ୍‌ଶାହ୍ ତାଙ୍କ ସେନାଧ୍ୟକ୍ଷମାନଙ୍କ ବେତନ ଅର୍ଥ ଆକାରରେ ଦେବେ" । ଏଥି ସଙ୍ଗେ ସଙ୍ଗେ ଆକବର ସ୍ଥିର କଲେ, ଭୂମିରାଜସ୍ୱ ଏହା ପରେ ଆଦାୟ କରିବେ କ୍ରୋରି ନାମକ ରାଜକର୍ମଚାରୀମାନେ । ଏହି ରାଜକର୍ମଚାରୀମାନଙ୍କୁ ଅଗ୍ରିମ୍ ହିସାବରେ ମୋଟା ପରିମାଣର ଅର୍ଥ ଦେବାକୁ ପଡ଼ିଥିଲା । ଏହି ପ୍ରଶାସନ ବ୍ୟବସ୍ଥା ପ୍ରବର୍ତ୍ତନ ଫଳରେ ହସ୍ତଚ୍ୟୁତ ତାଲୁକର ମାଲିକ ଜାୟଗିର୍‌ଦାରମାନଙ୍କ ପକ୍ଷରୁ ପ୍ରବଳ ବାଧା ସୃଷ୍ଟି ହୋଇଥିଲା ଏବଂ ଏହା ଫଳରେ ରୟତମାନେ ମଧ୍ୟ ଆଉରି ଦରିଦ୍ର ହୋଇ ପଡ଼ିଥିଲେ । ଏହି ଶେଷୋକ୍ତ ବ୍ୟାପାରଟି ଘଟିଥିଲା ଏହି କାରଣରୁ ଯେ, ସେ ତିନି ବର୍ଷ ପାଇଁ ନିଯୁକ୍ତ ଉପରୋକ୍ତ ନୂତନ ରାଜସ୍ୱ ଆଦାୟକାରୀମାନେ ସେମାନଙ୍କ ଜାମିନ୍ ଟଙ୍କାର କ୍ଷତି ପୂରଣ ହିସାବରେ ଏବଂ ତା ଉପରେ ଯେତେ ସମ୍ଭବ, ବେଶି ଲାଭ କରିବା ଉଦ୍ଦେଶ୍ୟରେ ରୟତମାନଙ୍କ ନିକଟରୁ ଯେତେ ପାରୁଥିଲେ, ଆଦାୟ କରି ନେଉଥିଲେ । ଏହି ସଂସାରକୁ ତା'ପରେ ବଦଳେଇ ଦିଆଯାଇଥିଲା ।

# ଆକବରଙ୍କ ଧର୍ମ ସଂସ୍କାର

ଆକବର ଯେଉଁ ଉଦ୍ଦେଶ୍ୟରେ ଅନ୍ୟାନ୍ୟ ପ୍ରଶାସନିକ ପରିବର୍ତ୍ତନସବୁ ସାଧନ କରିଥିଲେ, ତାଙ୍କ ପ୍ରବର୍ତ୍ତିତ ଧର୍ମ ସଂସ୍କାରଗୁଡ଼ିକର ଉଦ୍ଦେଶ୍ୟ ମଧ୍ୟ ଥିଲା ସେଇଆ । ଅର୍ଥାତ୍, ତାଙ୍କ ରାଜ କ୍ଷମତାର ସାମାଜିକ ଭିତ୍ତିକୁ ଆଉରି ପ୍ରସାରିତ କରିବା । ଆକବର ବୁଝିଥିଲେ, ହିନ୍ଦୁମାନେ ଏକନିଷ୍ଠ ଭାବେ ତାଙ୍କ ସେବା କରିବେ ସେତିକିବେଳେ, ଯେତେବେଳେ ସେ ସେମାନଙ୍କ ଧର୍ମୀୟ ଆଚାର ବ୍ୟବହାର ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରିବେ । ଏହି କାରଣରୁ ୧୫୬୩ ଖ୍ରୀଷ୍ଟାବ୍ଦରେ ହିନ୍ଦୁ ତୀର୍ଥଯାତ୍ରୀମାନେ ଦେଉଥିବା କର ବ୍ୟବସ୍ଥାକୁ ଉଚ୍ଛେଦ କରିଥିଲେ ଏବଂ ଏହା ପର ବର୍ଷ ଜିଜିଆ କର ଉଠାଇ ଦେଇଥିଲେ । ଯେତେଦୂର ମନେ ହୁଏ, ମୁସଲିମ୍ ଜାୟଗିରଦାରମାନଙ୍କ ଚାପ ଫଳରେ ଏହି ଦୁଇଟି କର ବ୍ୟବସ୍ଥା ପୁଣି ଥରେ ଚାଲୁ କରାଯାଇଥିଲା । ତେବେ ୧୫୮୦ ଦଶକର ପ୍ରାରମ୍ଭରେ ଏହି ଦୁଇଟି କର ପୁଣି ଉଠି ଯାଇଥିଲା ।

ଆକବରଙ୍କ ଦ୍ୱାରା ପ୍ରବର୍ତ୍ତିତ ନୂତନ ଧର୍ମୀୟ ନୀତି ବିରୁଦ୍ଧରେ ରକ୍ଷଣଶୀଳ ଉଚ୍ଚ ପଦସ୍ଥ ମୁସଲିମ୍ ଧର୍ମ ନେତାମାନଙ୍କର ଆପତ୍ତି ଦେଖି ରକ୍ଷଣଶୀଳ ଇସ୍‌ଲାମ୍ ଧର୍ମର ସଠିକତା ସଂପର୍କରେ ଆକବରଙ୍କ ମନରେ ସନ୍ଦେହ ଜନ୍ମିଥିଲା । ୧୫୭୫ ଖ୍ରୀଷ୍ଟାବ୍ଦରେ ଫତେପୁର ସିକ୍ରିରେ ଏକ ଉପାସନାଳୟ (ବିଶେଷ ଭାବେ ଧର୍ମୀୟ ମତବାଦ ନେଇ ଆଲୋଚନା ଉଦ୍ଦେଶ୍ୟରେ) ନିର୍ମିତ ହୋଇଥିଲା । ଏଠାରେ ଅନୁଷ୍ଠିତ ବିଭିନ୍ନ ଆଲୋଚନା ସଭାରେ ପ୍ରଚଣ୍ଡ ତର୍କବିତର୍କ ଦେଖି ଆକବର କ୍ରମଶଃ ରକ୍ଷଣଶୀଳ ଇସ୍‌ଲାମ୍ ଧର୍ମଠାରୁ ଦୂରେଇ ଯାଇଥିଲେ । ଏହି ସମୟରେ ଆକବରଙ୍କର ଜଣେ ପ୍ରଧାନ ବନ୍ଧୁ ଓ ଅନ୍ୟାନ୍ୟ ବିଷୟ ସମେତ ଧର୍ମୀୟ ସମସ୍ୟାଦି କ୍ଷେତ୍ରରେ ତାଙ୍କର ଉପଦେଷ୍ଟା ଥିଲେ ଆବୁଲ ଫଜଲ୍ । ଆବୁଲ ଫଜଲ୍‌ଙ୍କ ପିତା ଶେଖ୍ ମୁବାରକ ତାଙ୍କ ମାହ୍‌ଦି ମତବାଦ ପ୍ରଚାର ପାଇଁ ନିପୀଡ଼ିତ ହୋଇଥିଲେ ଏବଂ ବାଳକ ବୟସରେ ଆବୁଲ ଫଜଲ୍‌ଙ୍କୁ ପିତାଙ୍କ ସହିତ ଦେଶାନ୍ତରୀ ହୋଇ ବିଭିନ୍ନ ଜାଗାରେ ଘୁରି ବୁଲିବାକୁ ପଡ଼ିଥିଲା । ଆବୁଲ ଫଜଲ୍ ନିଜେ ସୁଫୀବାଦର ଏକ ଅତ୍ୟନ୍ତ ଉଦାରନୈତିକ ପ୍ରକାର ଭେଦର ପ୍ରବକ୍ତା ଥିଲେ ଏବଂ ଆନୁଷ୍ଠାନିକ ମୋଲ୍ଲାତନ୍ତ୍ର ବିରୁଦ୍ଧରେ ପ୍ରତିବାଦ ଜଣାଇଥିଲେ । ସେ କହୁଥିଲେ, ସମସ୍ତ ଧର୍ମର ପଥ ହେଉଛି ଈଶ୍ୱରଙ୍କ ସନ୍ଧାନ କରିବା ଏବଂ ପ୍ରତ୍ୟେକ ଧର୍ମ ମଧ୍ୟରେ ଅଛି ସତ୍ୟର କିଛି ନା କିଛି ଉପାଦାନ । ଆବୁଲ ଫଜଲ୍ ଆକବରଙ୍କ ମଧ୍ୟରେ ଅମୁସଲିମ୍ ଧର୍ମ ସମେତ ବିଭିନ୍ନ "ଧର୍ମବିରୋଧୀ" ମତବାଦ ସଂପର୍କରେ ଆଗ୍ରହ ଉଦ୍ରେକ କରିଥିଲେ । ଏହି ସମୟରେ ଏହି ଶେଷୋକ୍ତ ମତବାଦଗୁଡ଼ିକ ଥିଲା କାଏମୀ ସାମନ୍ତବାଦୀ ସ୍ୱାର୍ଥ ବିରୁଦ୍ଧରେ ଜନସାଧାରଣଙ୍କ ବିରୋଧିତାର ତାତ୍ତ୍ୱିକ ରୂପ ।

ଆକବର ଅନେକ ଧର୍ମ ସମ୍ବନ୍ଧରେ ଆନ୍ତରିକ ଭାବେ ଆଗ୍ରହୀ ହୋଇ ଉଠିବା ସଙ୍ଗେ ସଙ୍ଗେ ହିନ୍ଦୁ ଧର୍ମବିଶ୍ୱାସ ସମେତ ପାରସୀ, ଜୈନ ଓ ଖ୍ରୀଷ୍ଟ ଧର୍ମ ସହିତ ପରିଚିତ ହୋଇ ଉଠିଥିଲେ । ତାଙ୍କ ଅନୁରୋଧ କ୍ରମେ ଗୋଆରୁ ଜେସୁଇଟ ଖ୍ରିଷ୍ଟିଆନମାନଙ୍କର ତିନୋଟି ପ୍ରତିନିଧି ଦଳଙ୍କୁ ତାଙ୍କ ଦରବାରକୁ ପଠାଯାଇଥିଲା । ଏଇଭଳି ଏକ ଧର୍ମୀୟ ଦଳର ନେତା ମନସେରରାତେ ମନ୍ତବ୍ୟ ନାମରେ କିଛି ବିବରଣୀ ଲେଖି ଯାଇଛନ୍ତି । ଏହି ବିବରଣୀଗୁଡ଼ିକ ଅତ୍ୟନ୍ତ ମୂଲ୍ୟବାନ ବୋଲି ଇତିହାସବିଦ୍‌ମାନେ

ମନେ କରନ୍ତି । ଆକବର ଏହି ସମୟରେ ତାଙ୍କ ଦରବାରରେ ହିନ୍ଦୁ ଓ ପାରସୀ ନିୟମକାନୁନ୍ ପ୍ରବର୍ତନ କରିବାକୁ ଆରମ୍ଭ କରିଥିଲେ ।

ଏହା ଫଳରେ ୧୫୮୦ ଖ୍ରୀଷ୍ଟାବ୍ଦରେ ଏକ ବ୍ୟାପକ ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା ଏବଂ ଆକବର ଭୟଙ୍କର ବିପଦର ସମ୍ମୁଖୀନ ହୋଇଥିଲେ । ଏହି ଅଭ୍ୟୁତ୍‌ଥାନର ନେତୃତ୍ୱ ନେଇଥିଲେ ଶେଖ୍‌ମାନେ । ସେମାନେ ଏକ ଫତୋଆ ବା ଧର୍ମୀୟ ନିର୍ଦ୍ଦେଶ ଜାରି କରି ସେଥିରେ ଅଭିଯୋଗ କରିଥିଲେ, ଆକବର ଧର୍ମଦ୍ୱେଷୀ, ଅତଏବ ତାଙ୍କୁ ସିଂହାସନଚ୍ୟୁତ କରିବାକୁ ହେବ । ଏହି ଅଭ୍ୟୁତ୍‌ଥାନର କେନ୍ଦ୍ର ଥିଲା ବଙ୍ଗଳା ଓ ପଞ୍ଜାବ । ସେଠାକାର ବିଦ୍ରୋହୀ ସାମନ୍ତ ଭୂସ୍ୱାମୀମାନେ ମୋଗଲ ସିଂହାସନର ସମ୍ଭାବ୍ୟ ଅଧିକାରୀ (ଅବଶ୍ୟ, ସେମାନଙ୍କ ପସନ୍ଦ ମୁତାବକ) ବୋଲି ସେମାନେ ଘୋଷଣା କରିଥିଲେ କାବୁଲସ୍ଥିତ ଆକବରଙ୍କ ଶାସକ ପ୍ରତିନିଧି ଓ ଅନ୍ୟ ଏକ ସ୍ତ୍ରୀର ଗର୍ଭଜାତ ହୁମାୟୁନ୍‌ଙ୍କ ସର୍ବକନିଷ୍ଠ ପୁତ୍ରକୁ । ବହୁ କଷ୍ଟରେ ଆକବର ଏହି ଅଭ୍ୟୁତ୍‌ଥାନକୁ ଦମନ କରିବାରେ ସଫଳ ହୋଇଥିଲେ । ବିଜୟୀ ହୋଇ ଆଗ୍ରାକୁ ଫେରି ଆସିଲା ପରେ ଆକବର ତାଙ୍କ ଦରବାରରେ ଏକ ନୂତନ ଧର୍ମମତର ପ୍ରବର୍ତନ ଆରମ୍ଭ କରିଥିଲେ । ଏହି ଧର୍ମର ନାମ ସେ ଦେଇଥିଲେ "ଦିନ୍-ଇ-ଇଲାହି" (ବା ଦିବ୍ୟ ବିଶ୍ୱାସ) । ଏହି "ଦିନ୍-ଇ-ଇଲାହି" ଧର୍ମମତରେ ଆକବର ଭାରତର ପ୍ରଧାନ ପ୍ରଧାନ ଧର୍ମମତଗୁଡ଼ିକ ମଧ୍ୟରେ ଯେଉଁସବୁ ଉପାଦାନକୁ ଯୁକ୍ତିସଙ୍ଗତ ବୋଲି ମନେ କରିଥିଲେ, ସେଇସବୁ ଏକୀଭୂତ କରିବାକୁ ଚାହିଁଥିଲେ । ଏହି ଧର୍ମବିଶ୍ୱାସ ମଧ୍ୟରେ ପ୍ରଧାନ ବିଷୟଗୁଡ଼ିକ ଥିଲା : ମାହ୍‌ଦିବାଦୀମାନଙ୍କ ଭାବଧାରା ସହିତ ସଙ୍ଗତି ରଖି ଆକବରଙ୍କୁ "ନ୍ୟାୟ ବିଚାରକ" ସମ୍ରାଟ ବୋଲି ତାଙ୍କ ଗୁଣକୀର୍ତନ କରିବା ଓ ହିନ୍ଦୁ ଧର୍ମର କେତେକ ଓ ମୁସଲିମ୍ ଧର୍ମର ଆଚାରବିଚାର, ପଦ୍ଧତି ଓ ପୁରାଣ କଥାକୁ କିଛି ପରିମାଣରେ ଅସ୍ୱୀକାର କରିବା ।

କୃତ୍ରିମ ଭାବେ ତାଳିପକା ଆକବରଙ୍କର ଏହି ଧର୍ମମତର ସପକ୍ଷରେ ପ୍ରଧାନତଃ ସମର୍ଥନ ମିଳିଥିଲା ଜନସମାଜର ଦରିଦ୍ରତର ଅଂଶଗୁଡ଼ିକ ମଧ୍ୟରୁ । ଆକବର, ଅବଶ୍ୟ, ଆଶା କରିଥିଲେ ତାଙ୍କ ଦରବାରର ବିଭିନ୍ନ ମହଲକୁ ଏହି ଧର୍ମ ଆକର୍ଷଣ କରି ପାରିବ । ଏହା ପରେ ଆଉ କୌଣସି ବିଦ୍ରୋହ ବା ଅଭ୍ୟୁତ୍‌ଥାନ ନଘଟିଲେ ମଧ୍ୟ ଆକବରଙ୍କ ଧର୍ମୀୟ ନୀତି ବିରୁଦ୍ଧରେ ଅସହିଷ୍ଣୁ ମୁସଲମାନମାନଙ୍କର ପ୍ରତିବାଦ ଓ ପ୍ରତିରୋଧ ଅବିରତ ଚାଲିଥିଲା । ଏଥିରୁ ଜଣାଯାଏ, କାହିଁକି ତାଙ୍କ ଜୀବନର ଶେଷ ବର୍ଷଗୁଡ଼ିକରେ ଆକବର ମୁସଲିମ୍ ଧର୍ମୀୟ ନେତାମାନଙ୍କ ବିରୁଦ୍ଧରେ ଦମନମୂଳକ ବ୍ୟବସ୍ଥାଦି ଗ୍ରହଣ କରିଥିଲେ, ତାଙ୍କ ବିରୁଦ୍ଧରେ ପ୍ରଚାର କରୁଥିବା ଶେଖ୍‌ମାନଙ୍କୁ ସାମ୍ରାଜ୍ୟର ଉପାନ୍ତ ଅଞ୍ଚଳକୁ ନିର୍ବାସିତ କରିଥିଲେ ଏବଂ କେତେକ ମସଜିଦ୍ ଆଦିକୁ ବନ୍ଦ କରି ଦେଇଥିଲେ । ଆକବରଙ୍କ ମୃତ୍ୟୁ ପରେ "ଦିନ୍-ଇ-ଇଲାହି" ଆଉରି ଅର୍ଦ୍ଧ ଶତାବ୍ଦୀ ପର୍ଯ୍ୟନ୍ତ ଛୋଟ ଏକ ଧର୍ମୀୟ ସଂପ୍ରଦାୟ ଭଳି ତିଷ୍ଠିଥିଲା । ତେବେ ଧର୍ମୀୟ ସହିଷ୍ଣୁତାର ମର୍ମବାଣୀ ଏବଂ ଭାରତର ଦୁଇଟି ଧର୍ମକୁ ପରସ୍ପର ବିରୁଦ୍ଧରେ ସନ୍ନିବେଶିତ ନକରି ବରଂ ପରସ୍ପରର ଘନିଷ୍ଠ କରି ତୋଳିବାର ଉପାୟାଦିର ସନ୍ଧାନ ଓ ଏକ ପ୍ରକାରର ସଂଶ୍ଳେଷଣ ଅର୍ଜନ—ଯାହାକି ଥିଲା ଆକବରଙ୍କ ଉଦ୍ଦେଶ୍ୟ—ତାହା ଭାରତୀୟ ସମାଜକୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

ଇତିପୂର୍ବରୁ କୁହାଯାଇଛି ଯେ, ଶେଖ୍ ମୁବାରକ ମାହ୍‌ଦିବାଦୀ ଆନ୍ଦୋଳନର ଅନୁସାରକ ଥିଲେ ଏବଂ ଏହି ଆନ୍ଦୋଳନ ଆବୁଲ ଫଜଲ୍‌ଙ୍କ ଚିନ୍ତାଧାରାକୁ ବହୁଳାଂଶରେ ପ୍ରଭାବିତ କରିଥିଲା । ସହରର ମୁସଲିମ୍ ବ୍ୟବସାୟୀ ଓ କାରୁଶିଳ୍ପୀମାନଙ୍କ ମଧ୍ୟରେ ଏହି ଧର୍ମଟି ପ୍ରସାର ଲାଭ କରିଥିଲା । ପଞ୍ଚଦଶ ଶତାବ୍ଦୀରେ ଗୁଜରାଟରେ ମୀର୍ ସହୀଦ ମହମ୍ମଦ (୧୪୪୩-୧୫୦୫ ଖ୍ରୀଷ୍ଟାବ୍ଦ) ନାମରେ ଏକ ପ୍ରଖ୍ୟାତ ପଣ୍ଡିତ ନିଜକୁ ମାହ୍‌ଦି (ଅର୍ଥାତ୍, ମାନବଜାତିର ତ୍ରାଣକର୍ତ୍ତା) ବୋଲି ଘୋଷଣା କରିଥିଲେ । ସେ ତାଙ୍କର ସମଧର୍ମୀମାନଙ୍କୁ ଆହ୍ୱାନ ଦେଇଥିଲେ ଇସ୍‌ଲାମ୍ ଧର୍ମର ପ୍ରାଥମିକ ଯୁଗର ଗଣତାନ୍ତ୍ରିକ ନୀତିଗୁଡ଼ିକୁ ପୁନର୍ବାର ଅଙ୍ଗୀକାର କରିବାକୁ ଓ ମୁସଲମାନମାନଙ୍କ ମଧ୍ୟରେ ସଂପତ୍ତି ଉପରେ ସମାନାଧିକାର ଅବସ୍ଥାକୁ ଫେରେଇ ଆଣିବାକୁ । ଗୁଜରାଟର ମାହ୍‌ଦି ସଂପ୍ରଦାୟ ମଧ୍ୟରେ ଏହି ଶେଷୋକ୍ତ ନୀତିଟିକୁ ଦୃଢ଼ ଭାବେ ଅନୁସରଣ କରାଯାଉଥିଲା । ସଂପ୍ରଦାୟଭୁକ୍ତ ପ୍ରତ୍ୟେକ ଲୋକ ଦ୍ୱାରା ଅର୍ଜିତ ଅର୍ଥ ଜମା ହେଉଥିଲା ସାଧାରଣ ଏକ ପାଣ୍ଠିରେ ଏବଂ ତା'ପରେ ସମାନ ଭାବେ ତାହା ସମସ୍ତଙ୍କ ମଧ୍ୟରେ ଭାଗ ଭାଗ କରି ଦିଆଯାଉଥିଲା । ମାହ୍‌ଦିବାଦୀ ଆନ୍ଦୋଳନର ଅନୁଗାମୀମାନେ, ଅବଶ୍ୟ, ଭକ୍ତିବାଦୀ ଆନ୍ଦୋଳନର ସମର୍ଥକମାନଙ୍କ ଭଳି ହିନ୍ଦୁ ମୁସଲମାନ ଉଭୟ ସଂପ୍ରଦାୟର ଲୋକଙ୍କ ମଧ୍ୟରେ ପ୍ରଚାର କରୁ ନଥିଲେ । ସେମାନଙ୍କ ଆବେଦନ ସୀମିତ ଥିଲା କେବଳ ମୁସଲମାନମାନଙ୍କ ମଧ୍ୟରେ । ମାହ୍‌ଦିବାଦୀମାନେ ଆଶା କରୁଥିଲେ, ଦିନେ ନା ଦିନେ ଏକ ଯଥାର୍ଥ ନ୍ୟାୟ ପରାୟଣ ଶାସକ ସିଂହାସନରେ ବସିବେ ଏବଂ ଇସ୍‌ଲାମ୍ ଧର୍ମର ପ୍ରଥମ ଯୁଗର ନୀତିଗୁଡ଼ିକୁ ସେ ଅନୁସରଣ କରିବେ ଓ ମୁସଲମାନ ସମାଜ ମଧ୍ୟରେ ସମାନାଧିକାର ସଂପର୍କିତ ନୀତିଗୁଡ଼ିକୁ କାର୍ଯ୍ୟକର କରିବେ ।

ଶେର୍ ଶାହ୍‌ଙ୍କ ପୁତ୍ର ଇସ୍‌ଲାମ୍ ଶାହ୍‌ଙ୍କ ରାଜତ୍ୱକାଳରେ ମାହ୍‌ଦିବାଦୀମାନେ ଆକ୍ଷରିକ ଅର୍ଥରେ ଦୋୟାବର ବିୟାନା ଓ ହିନ୍ଦିୟା ଅଞ୍ଚଳ ଦଖଲ କରି ବଳପୂର୍ବକ ବିୟାନା ସହରରେ ସେମାନଙ୍କ ଶାସନ ପ୍ରତିଷ୍ଠା କରିଥିଲେ । ତା'ପରେ ସଂପତ୍ତି ଏବଂ ସଂପତ୍ତିରୁ ଅର୍ଜିତ ଆୟ ବଣ୍ଟନର ନୀତିଟି ମାହ୍‌ଦି ସଂପ୍ରଦାୟ ମଧ୍ୟରେ ପୁଣି ଥରେ ପ୍ରବର୍ତ୍ତିତ ହୋଇଥିଲା । ସହରର ବାସିନ୍ଦାମାନଙ୍କ ବ୍ୟତୀତ ମାହ୍‌ଦିବାଦ ସହିତ ଯୋଗ ଦେଇଥିଲେ ରୟତମାନେ, ଗ୍ରାମୀଣ କାରିଗର ଏବଂ ପୂର୍ବୋକ୍ତ ଶେଖ୍ ମୁବାରକଙ୍କ ସହ ଇସ୍‌ଲାମ୍ ଶାହ୍‌ଙ୍କ ଶାସନର ବିରୋଧୀ କେତେକ ସାମନ୍ତ ଭୂସ୍ୱାମୀ ମଧ୍ୟ । ଇସ୍‌ଲାମ୍ ଶାହ୍ ଏହାର ଜବାବ ଦେଇଥିଲେ ଦମନ ନୀତି ଚଳେଇ । ଆନ୍ଦୋଳନର ଜଣେଙ୍କ ନେତାଙ୍କୁ ସେ ପିଟିପିଟି ହତ୍ୟା କରିଥିଲେ, ଆଉ ଜଣଙ୍କୁ ଶାସ୍ତି ଦେଲେ ଏବଂ ଅନ୍ୟମାନଙ୍କୁ ଉତ୍ପୀଡ଼ିତ କଲେ । ୧୫୪୯ ଖ୍ରୀଷ୍ଟାବ୍ଦ ବେଳକୁ ଆନ୍ଦୋଳନଟିକୁ ଦମନ କରି ଦିଆଯାଇଥିଲା । ଆଉ ଥରେ ୧୫୬୩ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ଏବଂ ପଞ୍ଜାବରେ ଏହି ଧର୍ମ ଆନ୍ଦୋଳନଟି ପୁଣି ଉଦ୍‌ଜୀବିତ ହୋଇଥିଲା, କିନ୍ତୁ ଏଥର କୌଣସି ବିଦ୍ରୋହ ବା ଅଭ୍ୟୁତ୍‌ଥାନ ଦେଖା ଦେଇ ନଥିଲା ।

ଏହି ଯୁଗର ଆଉ ଏକ ଅରକ୍ଷଣଶୀଳ ଧର୍ମମତ (ପରବର୍ତ୍ତୀ ଭକ୍ତିବାଦୀ ମତାଦର୍ଶ ସହିତ ସଂପର୍କିତ) ହେଲା ଶିଖ୍‌ବାଦ । ଏହି ମତବାଦର ପ୍ରତିଷ୍ଠାତା ଥିଲେ ଗୁରୁ (ଶିକ୍ଷାଦାତା ଓ ନେତା) ନାନକ (୧୪୬୯-୧୫୩୯ ଖ୍ରୀଷ୍ଟାବ୍ଦ) । ଆକବରଙ୍କ ରାଜତ୍ୱକାଳରେ ଶିଖ୍‌ମାନେ ନିଜକୁ ସୀମାବଦ୍ଧ ରଖିଥିଲେ ପଞ୍ଜାବ ମଧ୍ୟରେ ଏବଂ ଏହି ସଂପ୍ରଦାୟଟି ସେତେବେଳେ ଗଠିତ ହୋଇଥିଲା ବଣିକ ଏବଂ

କାରିଗରମାନଙ୍କୁ ନେଇ । ଶିଖ୍ ସଂପ୍ରଦାୟର ଚତୁର୍ଥ ଗୁରୁ ରାମଦାସ୍‌ଙ୍କ ଅମଳରେ (୧୫୭୪-୧୫୮୧ ଖ୍ରୀଷ୍ଟାବ୍ଦ) ସେ ବର୍ତ୍ତମାନର ଅମୃତସର ନିକଟରେ କିଛି ଜମି ପାଇଥିଲେ । ବିଶେଷ ଭାବେ ନିଯୁକ୍ତ ଓ ଭାରପ୍ରାପ୍ତ କର୍ମୀମାନଙ୍କ ସାହାଯ୍ୟରେ ରାମଦାସ୍ ପୂଜାର ଉପଗ୍ଭର ହିସାବରେ ନିୟମିତ ଅର୍ଥ ଆଦି ସଂଗ୍ରହ କରିବାର ବ୍ୟବସ୍ଥା କରିଥିଲେ । ତାଙ୍କ ପରବର୍ତ୍ତୀ ଗୁରୁ ଅର୍ଜ୍ଜନ ଦେବ (୧୫୮୧-୧୬୦୬ ଖ୍ରୀଷ୍ଟାବ୍ଦ) ଏକଦା ଯାହା ସ୍ୱେଚ୍ଛିକ ଦାନ ଥିଲା, ତାକୁ ନିୟମିତ ଦାନରେ ପରିଣତ କରିଥିଲେ । ଶିଖ୍‌ମାନଙ୍କ ପ୍ରଭୁତ୍ୱ ଥିବା ଜିଲ୍ଲାଗୁଡ଼ିକରେ ବାସ କରୁଥିବା ସମସ୍ତ ଲୋକଙ୍କ ଠାରୁ, ଅର୍ଥାତ୍, ପରିବାର ପିଛା ଏହି କର ଆଦାୟ ହେବାକୁ ଲାଗିଲା । ଆକବର ଶିଖ୍ ଧର୍ମ ପ୍ରତି ସହାନୁଭୂତିଶୀଳ ଥିଲେ ଏବଂ ଏକ ଶିଖ୍ ଉପାଖ୍ୟାନ ଅନୁଯାୟୀ ସେ ଗୁରୁ ରାମଦାସ୍‌ଙ୍କ ସହିତ ଧର୍ମୀୟ ଆଲୋଚନା କରିଥିଲେ ।

ରାଜପୁତାନାରେ ଏହି ସମୟରେ ଭକ୍ତ ଦାଦୁ (୧୫୪୪-୧୬୦୩ ଖ୍ରୀଷ୍ଟାବ୍ଦ) ରାଜପୁତମାନଙ୍କ ରାଜ୍ୟଗୁଡ଼ିକରେ ପରିଭ୍ରମଣ କରି ଲୋକଙ୍କୁ ଆହ୍ୱାନ ଦେଇଥିଲେ ଆତ୍ମସମର୍ପିତ ଭାବ, ବିନୟ ଓ ପ୍ରେମଚର୍ଚ୍ଚା କରିବାକୁ । ତତ୍କାଳୀନ ଏକ ଉପାଖ୍ୟାନ ଅନୁଯାୟୀ ଦାଦୁ କାଳେ ଆକବରଙ୍କ ସହିତ ଆଳାପ କରିବା ପାଇଁ ଆମନ୍ତ୍ରିତ ହୋଇଥିଲେ । ତେବେ ଆକବର ହିନ୍ଦି ଭକ୍ତ କବି ତୁଳସି ଦାସଙ୍କୁ ଜାଣିଥିଲେ ବୋଲି ମନେ ହୁଏ ନାହିଁ । ତୁଳସି ଦାସଙ୍କ ସୁଦୀର୍ଘକାବ୍ୟ "ରାମଚରିତ ମାନସ" (ରାମାୟଣ, ୧୫୭୪ ଖ୍ରୀଷ୍ଟାବ୍ଦ) ଅବିଳମ୍ବେ ଭାରତର ହିନ୍ଦି ଭାଷୀ ଜନସାଧାରଣଙ୍କ ମଧ୍ୟରେ ପରିଚିତ ହୋଇ ଉଠିଥିଲା । ଏହି କାବ୍ୟରେ ତୁଳସି ଦାସ ତାଙ୍କ ଲେଖନି ଚଳାଇଥିଲେ ଜାତି ଭେଦ ପ୍ରଥା ଓ ସାମାଜିକ ନିପୀଡ଼ନ ବିରୁଦ୍ଧରେ । ଚତୁର୍ପାର୍ଶ୍ୱସ୍ଥ ଜଗତରେ ଭଣ୍ଡାମିର ମଧ୍ୟ ସେ ସମାଲୋଚନା କରିଥିଲେ । ତେବେ, ତାଙ୍କ ମତରେ, ଏଥିରୁ ନିସ୍ତାର ପାଇବାର ଏକମାତ୍ର ଉପାୟ ହେଲା ରାମଚନ୍ଦ୍ର ରୂପେ ଅବତୀର୍ଣ୍ଣ ଈଶ୍ୱରଙ୍କ ସହିତ ଅତୀନ୍ଦ୍ରିୟ ମିଳନ ମଧ୍ୟ ଦେଇ ।

ତେବେ ମୋଗଲ ସାମ୍ରାଜ୍ୟର କ୍ଷମତା ବିରୁଦ୍ଧରେ ପରିଗ୍ଭଳିତ ଧର୍ମୀୟ ସଂପ୍ରଦାୟ ଆନ୍ଦୋଳନଗୁଡ଼ିକୁ ଦୃଢ଼ ହସ୍ତରେ ଦମନ କରିଥିଲେ ଆକବର । ମୁସଲିମ୍ ରୋସନିୟା ଧର୍ମ ସଂପ୍ରଦାୟକୁ ଦମନ କରିବା ପାଇଁ ସେ ସର୍ବଶକ୍ତି ନିୟୋଗ କରିଥିଲେ । ଆଉ କେତୋଟି ଆଫ୍‌ଗାନ ଉପଜାତିଗୋଷ୍ଠୀ, ବିଶେଷ କରି ଇଉସୁଫ୍‌ଜାଇରା, ରୋସନିୟା ଧର୍ମ ସଂପ୍ରଦାୟର ଅନ୍ତର୍ଭୁକ୍ତ ଥିଲେ । ଏହି ଧର୍ମୀୟ ଆନ୍ଦୋଳନର ପ୍ରତିଷ୍ଠାତା ଥିଲେ ବାୟାଜିଦ୍ ଆନ୍‌ସାରି (୧୫୨୪-୧୫୮୫ ଖ୍ରୀଷ୍ଟାବ୍ଦ) । ସେତେବେଳେ ଯେଉଁସବୁ ଆଫ୍‌ଗାନ ଅଭିଜାତ ବଂଶୀୟ ସେମାନଙ୍କ ଭୂସଂପତ୍ତିକୁ ସାମନ୍ତବାଦୀ ଢଙ୍ଗରେ ପରିଗ୍ଭଳନା କରିବାକୁ ଆରମ୍ଭ କରିଥିଲେ, ସେମାନଙ୍କ ବିରୁଦ୍ଧରେ ଏବଂ ମୋଗଲ ସାମ୍ରାଜ୍ୟରେ ଜନସାଧାରଣଙ୍କୁ ନିପୀଡ଼ନ କରିବା ବିରୁଦ୍ଧରେ ଆନ୍‌ସାରି ପ୍ରଗ୍ଭର ଚଳାଉଥିଲେ । ୧୫୮୫-୧୬୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଆକବର ରୋସନିୟା ସଂପ୍ରଦାୟ ବିରୁଦ୍ଧରେ ଅନେକଗୁଡ଼ିଏ ପିଟୁଣି ଅଭିଯାନ ପ୍ରେରଣ କରିଥିଲେ । ରୋସନିୟାମାନେ ଏହି ସମୟରେ ଭାରତ ଓ କାବୁଲ ମଧ୍ୟରେ ସଂଯୋଗ ରକ୍ଷାକାରୀ ଗିରିପଥଗୁଡ଼ିକୁ ଦଖଲ କରି ନେଇଥିଲେ । କିନ୍ତୁ କେଇ ବର୍ଷ ବ୍ୟାପୀ ଯୁଦ୍ଧ ପରିଗ୍ଭଳନା କରି ଏବଂ କେତେକ ପରାଜୟ ପରେ ଆକବର ଆଫ୍‌ଗାନ ରୋସନିୟାମାନଙ୍କ ଅଭ୍ୟୁତ୍‌ଥାନକୁ ଧୂଳିସାତ୍ କରି ଦେବାକୁ ସମର୍ଥ ହୋଇଥିଲେ । ତେବେ ତାଙ୍କ ମୃତ୍ୟୁ ପରେ ପୁଣି ଏହି ସଂପ୍ରଦାୟଟି ମୁଣ୍ଡ ଟେକି ଉଠିଥିଲା ।

## ନୂତନ ବିଜୟ ଅଭିଯାନ

୧୫୮୦ ଦଶକରେ ଆକବର ପୁଣି ଥରେ ନୂଆ ନୂଆ ରାଜ୍ୟ ଜୟ ପାଇଁ ମନ ଦେଇଥିଲେ । ତେବେ ଏଥର ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ଇତିମଧ୍ୟରେ ଦୃଢ଼ ଭାବେ ପ୍ରତିଷ୍ଠିତ ତାଙ୍କ ସାମ୍ରାଜ୍ୟର ସୀମା ବିସ୍ତାର କରିବା । ୧୫୮୬ ଖ୍ରୀଷ୍ଟାବ୍ଦରେ, କାଶ୍ମୀର ପ୍ରଦେଶରେ ସିଂହାସନର ବିଭିନ୍ନ ଦାବିଦାରମାନଙ୍କ ଦ୍ୱାରା ସୃଷ୍ଟ ବିଭିନ୍ନ ବିଦ୍ରୋହର ସୁଯୋଗ ଗ୍ରହଣ କରି ଆକବର ସେନାବାହିନୀ ପଠାଇ କାଶ୍ମୀର ଜୟ କରି ନେଇଥିଲେ । ତେବେ ଏହି ପାହାଡ଼ୀ ଦେଶଟିରେ ତାଙ୍କ ଆଧିପତ୍ୟ କାଏମ କରି ରଖିବା ନିମିତ୍ତ ତାଙ୍କୁ ପୁଣି ଦ୍ୱିତୀୟ ଥର ପାଇଁ ସୈନ୍ୟବାହିନୀ ପଠାଇବାକୁ ପଡ଼ିଥିଲା । ୧୫୮୯ ଖ୍ରୀଷ୍ଟାବ୍ଦରେ କାଶ୍ମୀରକୁ ତାଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଆକବର କରି ନେଲେ ଏବଂ ସେଠାରେ ଜିନିଷପତ୍ର ଉପରେ (ପଶମ ଓ ଜାଫ୍‌ରାନ୍) କର ଦେବାର ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । କାଶ୍ମୀରର ଶୀତଳ ଜଳବାୟୁ ଓ ସେଠାକାର ହ୍ରଦଗୁଡ଼ିକର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଥିଲେ ଆକବର । ଏହା ପରେ ପ୍ରତିବର୍ଷ ସେ ଗ୍ରୀଷ୍ମ କାଳଟିକୁ କାଶ୍ମୀରରେ ଅତିବାହିତ କରିବାକୁ ଆରମ୍ଭ କରି ଦେଇଥିଲେ ।

୧୫୯୦ ଖ୍ରୀଷ୍ଟାବ୍ଦରେ ଆକବର ବୈରାମ ଖାଁଙ୍କ ପୁତ୍ର ଓ ତାଙ୍କ ରକ୍ଷଣାଧୀନ ଆବ୍‌ଦୁର ରହିମକୁ ଥାଟ୍ଟା (ସିନ୍ଧୁ ଦେଶ) ଜୟ କରିବାକୁ ପ୍ରେରଣ କରିଥିଲେ । ଥାଟ୍ଟାର ପୂର୍ବତନ ଶାସକ ଏହା ପରେ ଆକବରଙ୍କ ସଭାସଦ୍ ହୋଇଥିଲେ । ୧୫୯୨ ଖ୍ରୀଷ୍ଟାବ୍ଦରେ ଆକବର ଓଡ଼ିଶା ଦଖଲ କରିଥିଲେ ଏବଂ ଏହି ରାଜ୍ୟଟିକୁ ତାଙ୍କ ଶାସନାଧୀନରେ ଥିବା ବଙ୍ଗ ଦେଶ ସହିତ ଯୋଗ କରି ଦେଲେ । ଏହା ପରେ ୧୫୯୫ ଖ୍ରୀଷ୍ଟାବ୍ଦରେ ସେ ଜୟ କରିଥିଲେ ବେଲୁଚିସ୍ତାନକୁ ଏବଂ ପାରସ୍ୟ ଠାରୁ କାନ୍ଦାହାରକୁ ଛଡ଼େଇ ନେଇଥିଲେ । ଏହି ସମୟରେ ବା ଏହାର କିଛି ବର୍ଷ ପୂର୍ବରୁ ମୋଗଲ ବାହିନୀ ଦାକ୍ଷିଣାତ୍ୟ ଉପରେ ଚଢ଼ଉ କରିବାରେ ଲାଗିଥିଲେ । ୧୫୮୩ ଖ୍ରୀଷ୍ଟାବ୍ଦରେ ମୋଗଲ ସେନା ଆହମଦ୍‌ନଗର ନାମକ ଦାକ୍ଷିଣାତ୍ୟର ଦୁର୍ବଳତମ ସୁଲତାନ୍ ଶାସିତ ଏକ ଛୋଟ ରାଜ୍ୟର ରାଜଧାନୀ ଅବରୋଧ କଲେ । ପରିଶେଷରେ, ୧୫୯୯ ଖ୍ରୀଷ୍ଟାବ୍ଦରେ ଆହମଦ୍‌ନଗରର ସୁଲତାନ୍ ମୋଗଲମାନଙ୍କର ସାର୍ବଭୌମତ୍ୱକୁ ମାନି ନେଇଥିଲେ ଏବଂ ସାମନ୍ତ ରାଜାରେ ପରିଣତ ହୋଇଥିଲେ । ତେବେ ତାଙ୍କ ଦ୍ୱାରା ଶାସିତ ଭୂଖଣ୍ଡର ଅଧିକାଂଶ ଏବଂ ଦୌଲତାବାଦ ମଧ୍ୟ ସିଧାସଳଖ ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଗଲା । ଏହା ପରେ ସ୍ୱୟଂ ଆକବରଙ୍କ ନେତୃତ୍ୱରେ ମୋଗଲ ସେନାବାହିନୀ ଆସିରଗଡ଼ ଅବରୋଧ କରିଥିଲା ଦୁଇ ବର୍ଷ କାଳ । ଆହମଦ୍‌ନଗରରୁ ଇତିପୂର୍ବରୁ ବିଚ୍ଛିନ୍ନ ଓ ସ୍ୱାଧୀନ, ଛୋଟ ଖାନ୍ଦେଶ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ଏହି ଅତୀବ ସୁରକ୍ଷିତ ଦୁର୍ଗଟି । କିନ୍ତୁ ଏହି ଦୁର୍ଗଟି ମଧ୍ୟ ଆତ୍ମସମର୍ପଣ କରିଥିଲା ୧୬୦୧ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ । ଏହିସବୁ ଯୁଦ୍ଧ ମଧ୍ୟ ଦେଇ ମୋଗଲ ସେନାବାହିନୀର ଦୁର୍ବଳତା ମଧ୍ୟ ପରିସ୍ଫୁଟ ହୋଇ ଉଠିଥିଲା । ଏହି ସେନାବାହିନୀର ସେନାଧ୍ୟକ୍ଷମାନଙ୍କ ମଧ୍ୟରେ ସର୍ବସ୍ୱପଣ କରି ନିଜକୁ ଯୁଦ୍ଧରେ ଆହୂତି ଦେବାର ପ୍ରେରଣାରେ ଭଟା ଦେଖା ଦେଇଥିଲା । ଇତିମଧ୍ୟରେ ଆରାମ ଓ ବିଳାସମୟ ଜୀବନରେ ଅଭ୍ୟସ୍ତ ହୋଇ ପଡ଼ିଥିବାରୁ ଯୁଦ୍ଧ ସମୟରେ ମଧ୍ୟ ସର୍ବତ୍ର ଅସଂଖ୍ୟ ଗାଡ଼ିରେ ବୋଝେଇ କରି ବ୍ୟକ୍ତିଗତ ବିଳାସର ଉପକରଣ ନେଇ ସେମାନେ ଘୁରୁଥିଲେ । ଫଳରେ ସମଗ୍ର ବାହିନୀ ପକ୍ଷରେ ଦ୍ରୁତ ଗତି ପରିବର୍ତ୍ତନ ଓ ରଣକୌଶଳ ପ୍ରୟୋଗ ପକ୍ଷରେ ତାହା

ବାଧା ସୃଷ୍ଟି କରୁଥିଲା । ତା'ଛଡ଼ା ଏହିସବୁ ସେନାଧ୍ୟକ୍ଷମାନେ ଯୁଦ୍ଧରେ ଜୟ ଲାଭର ଚିନ୍ତା ଅପେକ୍ଷା ଖାନାପିନାର ଚିନ୍ତାରେ ଅଧିକ ସମୟ ବ୍ୟୟ କରୁଥିଲେ ।

୧୬୦୫ ଖ୍ରୀଷ୍ଟାବ୍ଦରେ ଆକବରଙ୍କ ମୃତ୍ୟୁ ଘଟିଲା । ତାଙ୍କ ପରେ ସିଂହାସନରେ ବସିଥିଲେ ତାଙ୍କ ପୁତ୍ର ସେଲିମ୍ । ସେ ଜାହାଙ୍ଗିର ଉପାଧି ଗ୍ରହଣ କରିଥିଲେ । ଆକବରଙ୍କ ଜୀବନର ଶେଷ ଆଡ଼କୁ ସେଲିମ୍ ତାଙ୍କ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ ଏବଂ ଏଲାହାବାଦରେ ନିଜକୁ ସ୍ୱାଧୀନ ସୁଲତାନ୍ ରୂପେ ପ୍ରତିଷ୍ଠା କରିଥିଲେ । ତେବେ ସେଲିମ୍‌ଙ୍କ ରାଜତ୍ୱକାଳରେ ଆଗ୍ରା ସାମ୍ରାଜ୍ୟର ରାଜଧାନୀ ହୋଇ ରହି ଯାଇଥିଲା ।

## ଜାହାଙ୍ଗିରଙ୍କ ରାଜତ୍ୱକାଳ

ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ଜାହାଙ୍ଗିରଙ୍କର ମୋଗଲ ସିଂହାସନ ଆରୋହଣ ଆକବରଙ୍କ ଦ୍ୱାରା ଘୋଷିତ ଧର୍ମୀୟ ସହନଶୀଳତାର ନୀତିରୁ କିଛି ପରିମାଣରେ ବିଚ୍ୟୁତିର ସୂଚନା ଦେଇଥିଲା । ଏହା ଫଳରେ ହିନ୍ଦୁ ଜାୟଗିର୍‌ଦାରମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ମଧ୍ୟରେ ଏବଂ ମୁସଲମାନମାନଙ୍କ ମଧ୍ୟରୁ କେତେକ ଅଂଶ ମଧ୍ୟରେ ଅସନ୍ତୋଷ ଦେଖା ଦେଇଥିଲା । ଏହାର ଅଳ୍ପ କିଛି ଦିନ ପରେ ଜାହାଙ୍ଗିରଙ୍କ ଜ୍ୟେଷ୍ଠ ପୁତ୍ର ଖୁସ୍‌ରୋ ପଞ୍ଜାବକୁ ପଳାଇ ଯାଇ ସେଠାରେ ଏକ ବିଦ୍ରୋହକୁ ନେତୃତ୍ୱ ଦେଇଥିଲେ । ଶିଖ୍‌ମାନଙ୍କର ପଞ୍ଚମ ଗୁରୁ ଅର୍ଜନ୍ ଦେବ ତାଙ୍କୁ ଆର୍ଥିକ ସାହାଯ୍ୟ ଯୋଗାଇଥିଲେ । ତା ସତ୍ତ୍ୱେ ମୋଗଲ ବାହିନୀ ସହିତ ଯୁଦ୍ଧରେ ଖୁସ୍‌ରୋଙ୍କ ସେନାବାହିନୀ ପରାଜିତ ହୋଇଥିଲେ ଏବଂ ତାଙ୍କ ସମର୍ଥକମାନଙ୍କୁ ମୃତ୍ୟୁ ଦଣ୍ଡ ଦିଆଗଲା ଓ ତାଙ୍କୁ ଅନ୍ଧ କରି ଦିଆଗଲା । ଅର୍ଜନଦେବଙ୍କ ଉପରେ ଜାହାଙ୍ଗିର ଏକ ବିରାଟ ପରିମାଣର ଅର୍ଥଦଣ୍ଡ ବରାଦ କରି ଦେଲେ ଏବଂ ସେ ଅର୍ଥ ଦେବାକୁ ଅସ୍ୱୀକାର କରିବାରୁ ତାଙ୍କୁ ଜାହାଙ୍ଗିର ହତ୍ୟା କରିଥିଲେ । ଏହା ପରଠୁଁ ମୋଗଲମାନଙ୍କ ବିରୁଦ୍ଧରେ ସକ୍ରିୟ ଶତ୍ରୁତାର ସୂତ୍ରପାତ ଘଟିଥିଲା ଶିଖ୍‌ମାନଙ୍କର ।

ଏହା ପରେ ଜାହାଙ୍ଗିର ଭାରତର ସେହିସବୁ ଅଞ୍ଚଳ ଜୟ କରିବାକୁ ଉଦ୍ୟୋଗୀ ହୋଇଥିଲେ, ଯେଉଁଗୁଡ଼ିକୁ ତାଙ୍କ ପିତା ଜୟ କରିବାକୁ ଅକ୍ଷମ ହୋଇଥିଲେ । ୧୬୧୪ ଖ୍ରୀଷ୍ଟାବ୍ଦରେ ମେବାରର ରାଜପୁତମାନେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହୋଇଥିଲେ ମୋଗଲ ସେନାବାହିନୀ ନିକଟରେ । ମେବାରର ରାଜାଙ୍କ ପୁତ୍ରକୁ ଏହା ପରେ ଜାହାଙ୍ଗିରଙ୍କ ନିକଟକୁ ଅଣାଯାଇଥିଲା ଏବଂ ତାଙ୍କ ପ୍ରତି ସଦୟ ବ୍ୟବହାର କରି ଓ ପ୍ରଚୁର ଉପହାର ଦେଇ ଜାହାଙ୍ଗିର ଚାହିଁଥିଲେ ଏହି କୌଶଳ ଦ୍ୱାରା ଅନ୍ୟାନ୍ୟ ସ୍ୱାଧୀନ ରାଜାରାଜୁଡ଼ାଙ୍କୁ ତାଙ୍କ ପକ୍ଷକୁ ଟାଣି ଆଣିବାକୁ ।

ମୋଗଲ ବାହିନୀର ଆସାମ ଅଭିଯାନ କିନ୍ତୁ ପରିସମାପ୍ତି ଘଟିଥିଲା ଏହି ବାହିନୀର ଗୁରୁତର ପରାଜୟ ଓ ବହୁ ସୈନ୍ୟ କ୍ଷୟ ମଧ୍ୟ ଦେଇ । ଏହି ଯୁଦ୍ଧରେ ମୋଗଲ ସାମ୍ରାଜ୍ୟର ନଦୀବାହିତ ନୌବାହିନୀ ଧ୍ୱଂସ ହୋଇଗଲା । ଏହା ପରେ କାଙ୍ଗଡ଼ାରେ ଅବସ୍ଥିତ ପଞ୍ଜାବର ଦୁର୍ଗଟିର ହିନ୍ଦୁ ଅଧିପତି ଆତ୍ମସମର୍ପଣ କରିଥିଲେ । ତା'ପରେ ୧୬୧୫ ଖ୍ରୀଷ୍ଟାବ୍ଦରେ ସେମାନେ ଏହି ଦୁର୍ଗଟିକୁ

ଅବରୋଧ କରିଥିଲେ, କିନ୍ତୁ ଏହାକୁ ଦଖଲ କରିବାକୁ ଲାଗିଥିଲା ପାଞ୍ଚ ବର୍ଷ । ଅତୀତରେ ଆକବରଙ୍କ ସୈନ୍ୟଦଳ ଏହି ଦୁର୍ଗ ଅଧିକାର କରିବାକୁ ଚେଷ୍ଟା କରି ଶେଷକୁ ସେ ଚେଷ୍ଟାରୁ ବିରତ ହେବାକୁ ବାଧ୍ୟ ହୋଇଥିଲେ । ତେଣୁ ଜାହାଙ୍ଗିର ତାଙ୍କର ଏହି ସାଫଲ୍ୟକୁ ଉଦ୍‌ଯାପନ କରିଥିଲେ ବିପୁଳ ଏକ ବିଜୟୋତ୍ସବ ମଧ୍ୟ ଦେଇ ଏବଂ ହୁକୁମ ଦେଇଥିଲେ ଏହି ଦୁର୍ଗର ଅଭ୍ୟନ୍ତରରେ ଏକ ମସଜିଦ୍ ନିର୍ମାଣ କରିବାକୁ ।

ଉତ୍ତର ଭାରତରେ ଜାହାଙ୍ଗିରଙ୍କର ଶେଷ ବିଜୟ ଅଭିଯାନ ପରିଗ୍ରହିତ ହୋଇଥିଲା ୧୬୨୨ ଖ୍ରୀଷ୍ଟାବ୍ଦରେ, କାଶ୍ମୀରର ଛୋଟ ଏକ ରାଜ୍ୟ କିସତ୍‌ଓୟାର ଜୟ କରିବା ମଧ୍ୟରେ ।

ଜାହାଙ୍ଗିରଙ୍କୁ ବାରମ୍ବାର ପର୍ତ୍ତୁଗୀଜ୍‌ମାନଙ୍କ ସହିତ ସଂଘର୍ଷରେ ଲିପ୍ତ ହେବାକୁ ପଡ଼ିଥିଲା । କାରଣ ପର୍ତ୍ତୁଗୀଜ୍‌ମାନେ ଅନବରତ ମୋଗଲ ନୌବନ୍ଦରଗୁଡ଼ିକୁ ଆକ୍ରମଣ କରୁଥିଲେ । ଫଳରେ ମୋଗଲ ପାତ୍‌ଶାହ୍ ପର୍ତ୍ତୁଗୀଜ୍‌ମାନଙ୍କ ପ୍ରତିଦ୍ୱନ୍ଦ୍ୱୀ ବ୍ରିଟିଶ୍ ଓ ଓଲନ୍ଦାଜମାନଙ୍କୁ ପୃଷ୍ଠପୋଷକତା କରିବାକୁ ଆରମ୍ଭ କରିଥିଲେ । ଏହି ସମୟରେ ବ୍ରିଟିଶ୍ ଓ ଓଲନ୍ଦାଜମାନେ ଅଳ୍ପ କାଳ ପୂର୍ବରୁ ଭାରତ ମହାସାଗରରେ ଆବିର୍ଭୂତ ହୋଇଥିଲେ । ଓଲନ୍ଦାଜ ଏବଂ ବ୍ରିଟିଶ୍ ବଣିକମାନେ ପର୍ତ୍ତୁଗୀଜ୍‌ମାନଙ୍କ ଭଳି କେବଳ ଭାରତର ସମୁଦ୍ରୋପକୂଳବର୍ତ୍ତୀ ଅଞ୍ଚଳରେ ବାଣିଜ୍ୟ ସୀମାବଦ୍ଧ କରି ନଥିଲେ, ଦେଶର ଅଭ୍ୟନ୍ତରରେ ସେମାନେ ପ୍ରବେଶ କରିବାକୁ ଉଦ୍ୟମ କରିଥିଲେ ଏବଂ ଆଗ୍ରା, ଢାକା, ପାଟଣା ଓ ଦେଶର ଅନ୍ୟାନ୍ୟ କାରୁଶିଳ୍ପ ଉତ୍ପାଦନ କେନ୍ଦ୍ରଗୁଡ଼ିକରେ ମଧ୍ୟ ବାଣିଜ୍ୟ କୋଠି ତିଆରି କରିଥିଲେ । ଇଂଲଣ୍ଡର ତତ୍କାଳୀନ ରାଜା ପ୍ରଥମ ଜେମସ୍ ମୋଗଲ ଦରବାରକୁ ଟମାସ୍ ରୋ ନାମକ ଜଣେ ପ୍ରତିନିଧିକୁ ପଠାଇ ଦେଇଥିଲେ ଭାରତସ୍ଥିତ ବ୍ରିଟିଶ୍ ବ୍ୟବସାୟୀମାନଙ୍କ ପକ୍ଷରୁ ବିଭିନ୍ନ ସୁବିଧା ସୁଯୋଗ ଆଦାୟ କରିବା ଉଦ୍ଦେଶ୍ୟରେ । ଏହି ଟମାସ୍ ରୋ ଜାହାଙ୍ଗିରଙ୍କ ଦରବାରରେ ତିନି ବର୍ଷ (୧୬୧୫-୧୬୧୮ ଖ୍ରୀଷ୍ଟାବ୍ଦ) କାଳ ଅବସ୍ଥାନ କରିଥିଲେ । ଭାରତରେ ତାଙ୍କର ଏହି ତିନି ବର୍ଷର ଜୀବନଯାତ୍ରାର ଯେଉଁସବୁ ପୁଙ୍ଖାନୁପୁଙ୍ଖ ବିବରଣୀ ତାଙ୍କ ଡାଇରିରେ ଲିପିବଦ୍ଧ କରି ଯାଇଛନ୍ତି, ତାହା ପରବର୍ତ୍ତୀ ଇତିହାସ ବେତ୍ତାମାନଙ୍କ କାର୍ଯ୍ୟରେ ଲାଗିଛି ।

## ବଙ୍ଗଳାରେ ମୋଗଲ ଶାସନର ବିଶେଷ ବୈଶିଷ୍ଟ୍ୟସମୂହ

ଆକବରଙ୍କ ରାଜତ୍ୱକାଳରେ ବଙ୍ଗଳା ଯଦିଓ ମୋଗଲ ଶାସନ ଅଧୀନକୁ ଆସିଥିଲା, ତେବେ ସାମ୍ରାଜ୍ୟର ଏହି ଉପାନ୍ତ ଦେଶଟିରେ ମୋଗଲ ଶାସନ ଯଥେଷ୍ଟ ନିଶ୍ଚିତ ଏବଂ ନିରାପଦ ନଥିଲା । ବଙ୍ଗଳାର ଜମିଦାର ଏବଂ ଜାୟଗିର୍‌ଦାରମାନେ ସେମାନଙ୍କ ଭୂସଂପତ୍ତିଗୁଡ଼ିକୁ ନିଜର ବାହୁ ବଳରେ ସ୍ୱାଧୀନ ରାଜ୍ୟରେ ପରିଣତ କରିବାକୁ ସର୍ବଦା ଉଦ୍ୟମ କରୁଥିଲେ । ବଙ୍ଗଳାର ଜମିଦାରମାନଙ୍କର ବଶ୍ୟତା ସ୍ୱୀକାର କରାଇବାକୁ ମୋଗଲମାନଙ୍କୁ ସମୟ ଲାଗିଥିଲା ଚାରି ବର୍ଷ—୧୬୦୮ରୁ ୧୬୧୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ବଙ୍ଗଳାର ଜମିଦାରମାନଙ୍କ ମଧ୍ୟରୁ ଦୁଇଜଣ ନେତୃ ସ୍ଥାନୀୟ ବ୍ୟକ୍ତି ମୁସା ଖାଁ ଓ ଉସ୍‌ମାନ ଖାଁ ଏପର୍ଯ୍ୟନ୍ତ ବଙ୍ଗଳା ସ୍ୱାଧୀନତାର ଦୁଇ ଅଗ୍ରଣୀ ଯୋଦ୍ଧା ବୋଲି ସମ୍ମାନିତ ।

ବଙ୍ଗ ଦେଶର ବ୍ୟବସାୟ ବାଣିଜ୍ୟ ଓ କାରୁଶିଳ୍ପ ଥିଲା ଅତ୍ୟନ୍ତ ଉନ୍ନତ ସ୍ତରର ଏବଂ କେତେକ ପାର୍ବତ୍ୟ ଅଞ୍ଚଳ ଥିଲା ଯାତାୟତ ପକ୍ଷରେ ଅତ୍ୟନ୍ତ କଷ୍ଟସାଧ୍ୟ । ଏହି କାରଣରୁ ସେଠାରେ ସାମନ୍ତ ରାଜାମାନଙ୍କର ଅଧୀନରେ ମଧ୍ୟ ଜମାନ୍ୟରେ ସାମନ୍ତସବୁ ଗଢ଼ି ଉଠିବାରୁ ମୋଗଲ ସାମ୍ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳ ଠାରୁ ଆଗରୁ ବିକଶିତ ହେବାକୁ ଆରମ୍ଭ କରିଥିଲା । ବଙ୍ଗଳାର ମୋଗଲ ଶାସନକର୍ତ୍ତା ଓ ପ୍ରଭାବଶାଳୀ ସେନାଧ୍ୟକ୍ଷମାନେ ଏପରି ଭାବେ ଏହି ବିଜିତ ଭୂଖଣ୍ଡଟିକୁ ବ୍ୟବହାର କରିବାକୁ ଲାଗିଲେ ଯେ, ସତେ, ଯେମିତି ଏହି ରାଜ୍ୟଟି ସେମାନଙ୍କର ନିଜସ୍ୱ । ସେମାନେ ଖୁସି ମୁତାବକ ଜାୟଗିର୍ ବାଣ୍ଟିବାକୁ ଲାଗିଲେ, ରାଜସ୍ୱ ଆଦାୟକାରୀ କର୍ମଚାରୀ ନିଯୁକ୍ତ କରିବାକୁ ଲାଗଲେ ଓ ଅନ୍ୟାନ୍ୟ ରାଜକର୍ମଚାରୀ ଏବଂ ଖାଲିସା ଜମିରେ ବହୁ ମଧ୍ୟସ୍ୱତ୍ୱ ଭୋଗୀଙ୍କୁ ବସେଇ ଦେଲେ । ଜଣେ ଲୋକର ଏକାଧିକ ରାଜକର୍ମଚାରୀ ପଦରେ ବାହାଲ ହେବାଟା ଏକ ସାଧାରଣ ବ୍ୟାପାରରେ ପରିଣତ ହେଲା । ବଙ୍ଗଳାରେ ମୋଗଲମାନଙ୍କ ଦ୍ୱାରା ନିଯୁକ୍ତ ଶାସକ ପ୍ରତିନିଧିମାନେ ଥିଲେ କାର୍ଯ୍ୟତଃ ସ୍ୱାଧୀନ । ଜାହାଙ୍ଗୀର ଯେତେବେଳେ ବେଆଇନ୍ ରାଜକାର୍ଯ୍ୟର ଅପରାଧରେ ବଙ୍ଗଳାର ଜଣୈକ ଶାସନକର୍ତ୍ତାଙ୍କୁ ବରଖାସ୍ତ କଲେ, ସେତେବେଳେ ସେଇ ଶାସନକର୍ତ୍ତା ଢାକା ନିକଟରେ ଏକ ଦୁର୍ଗରେ ଘାଟି ପାତି ବସିଥିଲେ ଏବଂ ତା'ପରେ ତାଙ୍କୁ ଦୁର୍ଗରୁ ବିତାଡ଼ିତ କରିବାକୁ ଦରକାର ପଡ଼ିଥିଲା ସାମରିକ ବାହିନୀର ସାହାଯ୍ୟ ।

ମୋଗଲମାନଙ୍କର ଅନବରତ ଆକ୍ରମଣ ଓ ଯୁଦ୍ଧବିଗ୍ରହ ବଙ୍ଗଳାର କୃଷକମାନଙ୍କ ଜୀବନରେ ନିରବଚ୍ଛିନ୍ନ ବିପର୍ଯ୍ୟୟରେ ପରିଣତ ହୋଇଥିଲା । ବଙ୍ଗଳାର ରୟତମାନଙ୍କର ଜୀବନରେ ଆଉ ଏକ ଅଭିଶାପ ସ୍ୱରୂପ ଥିଲେ ପତ୍ତନଦାରମାନେ । ଏହିସବୁ ପତ୍ତନଦାରମାନଙ୍କର କାର୍ଯ୍ୟକଳାପରେ କୃଷକମାନେ ଅତିଷ୍ଠ ହୋଇ ପଡ଼ିଥିଲେ । କାମପୁରରେ ଥରେ ସନାତନ ନାମକ ଜଣୈକ ବ୍ୟକ୍ତିର ନେତୃତ୍ୱରେ କୃଷକମାନେ ଖଜଣା ଆଦାୟକାରୀ ଓ ପତ୍ତନଦାରମାନଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ରାଙ୍ଗାମାଟିର ଦୁର୍ଗ ଦଖଲ କଲା ପରେ କୃଷକମାନେ ଦଖଲ କରି ନେଇଥିଲେ ଏକ ବିସ୍ତୃତ ଅଞ୍ଚଳ । ପରିଶେଷରେ, ଅବଶ୍ୟ, ମୋଗଲ ସେନା ସେମାନଙ୍କୁ ରାଙ୍ଗାମାଟିରୁ ବିତାଡ଼ିତ କରିଥିଲେ ସତ, ତେବେ ବିଦ୍ରୋହୀମାନେ ତା'ପରେ ଘାଟି ତିଆରି କରିଥିଲେ ଧୂନ୍ଦୁମା ଦୁର୍ଗରେ । ଦୀର୍ଘ କାଳ ଅବରୋଧ କଲା ପରେ ଏହି ଦୁର୍ଗଟି ମୋଗଲ ସୈନ୍ୟମାନଙ୍କ ହସ୍ତଗତ ହୋଇଥିଲା ।

## ଗଣ ଆନ୍ଦୋଳନସମୂହ – ରୋସନିୟା ଓ ଶିଖ୍

ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ଇଉସୁଫ୍‌ଜାଇ ଉପଜାତି ଗୋଷ୍ଠୀ ରୋସନିୟା ଧର୍ମାନ୍ଦୋଳନରୁ ବାହାରି ଯାଇଥିଲେ, କିନ୍ତୁ ଅନ୍ୟାନ୍ୟ ଆଫ୍‌ଗାନ ଉପଜାତି ଓ ବିଶେଷ କରି ବାଙ୍ଗାସି ଉପଜାତି ଗୋଷ୍ଠୀଟି ସେପର୍ଯ୍ୟନ୍ତ ଏହି ଆନ୍ଦୋଳନର ସମର୍ଥକ ରୂପେ ରହି ଗଲେ । ରୋସନିୟା ଗୋଷ୍ଠୀ ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ ମୋଗଲ ଶାସନରୁ ମୁକ୍ତିର ଆକାଂକ୍ଷା ସହିତ କୃଷକର ମୂଳତଃ ସାମନ୍ତବାଦ ବିରୋଧୀ ସାମ୍ୟ ଲଭର ସ୍ୱପ୍ନ ମଧ୍ୟରୁ । ଏହି ସମୟରେ ରୋସନିୟା ଗୋଷ୍ଠୀକୁ ନେତୃତ୍ୱ ଦେଇଥିଲେ ପୂର୍ବୋକ୍ତ ବାୟାଜିଦ୍ ଆନ୍‌ସାରିଙ୍କ ପୌତ୍ର ଆହ୍‌ଦାଦ । ୧୬୧୧ ଖ୍ରୀଷ୍ଟାବ୍ଦରେ ଆହ୍‌ଦାଦ

କାବୁଲ ଦଖଲ କରିବାକୁ ସମର୍ଥ ହୋଇଥିଲେ, କିନ୍ତୁ ଅଳ୍ପ କେଇ ଦିନ ପରେ ସହରରୁ ବିତାଡ଼ିତ ହେଲେ । ମୋଗଲମାନଙ୍କ ପିଟୁଣି ଅଭିଯାନଗୁଡ଼ିକୁ ପ୍ରାୟ ରୋସନିୟାମାନଙ୍କ ଅଧିକୃତ ଅଞ୍ଚଳଗୁଡ଼ିକୁ ପଠାଯାଉଥିଲା । ଆକ୍ରମଣକାରୀ ସୈନ୍ୟଦଳଗୁଡ଼ିକ ପ୍ରତି ନିର୍ଦ୍ଦେଶ ଥିଲା ରୋସନିୟା ସଂପ୍ରଦାୟର କୌଣସି ଲୋକକୁ ଦେଖିଲେ, ସଙ୍ଗେ ସଙ୍ଗେ ତାକୁ ହତ୍ୟା କରିବାକୁ । ରୋସନିୟା ଗୋଷ୍ଠୀର ଅଭ୍ୟନ୍ତରସ୍ଥ ବିଶ୍ୱାସଘାତକମାନଙ୍କ ସାହାଯ୍ୟରେ ମୋଗଲମାନେ ଶେଷକୁ ରୋସନିୟାମାନଙ୍କର ସଦରଘାଟିଟିକୁ ଧ୍ୱଂସ କରି ଦେବାକୁ ସକ୍ଷମ ହୋଇଥିଲେ । ବିଦ୍ରୋହୀମାନଙ୍କ ମଧ୍ୟରେ ଯେଉଁମାନେ ବଞ୍ଚି ଯାଇଥିଲେ, ସେମାନେ ଦୁର୍ଗମ ପାର୍ବତ୍ୟ ଅଞ୍ଚଳକୁ ପଳାଇ ଯାଇଥିଲେ । ବହୁବର୍ଷ ଧରି ପଶ୍ଚାଦ୍‌ଧାବନ କଲା ପରେ ୧୬୨୬ ଖ୍ରୀଷ୍ଟାବ୍ଦରେ ଆହ୍‌ଦାଦଙ୍କୁ ହତ୍ୟା କରିବା ସମ୍ଭବ ହୋଇଥିଲା । ଏହା ପରେ ଅନ୍ୟାନ୍ୟ ନେତାମାନେ ସଂପ୍ରଦାୟର ନେତୃତ୍ୱ ନେଇଥିଲେ ଏବଂ କେବଳ ୧୬୩୦ ଦଶକର ଶେଷ ଆଡ଼କୁ ରୋସନିୟା ଆନ୍ଦୋଳନ ନେତୃତ୍ୱହୀନ ହୋଇ ପଡ଼ିବା ଫଳରେ ଦୁର୍ବଳ ହୋଇ ପଡ଼ିଥିଲା ।

ଶିଖ୍‌ମାନେ ଇତିମଧ୍ୟରେ ମୋଗଲମାନଙ୍କ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ ଆରମ୍ଭ କରିବାକୁ ଗୋପନରେ ପରିକଳ୍ପନା କରି ଚାଲିଥିଲେ । ଗୁରୁ ହର୍ ଗୋବିନ୍ଦ (୧୬୦୬-୧୬୩୮ ବା ୧୬୪୫ ଖ୍ରୀଷ୍ଟାବ୍ଦ) ନିର୍ଦ୍ଦେଶ ଦେଇଥିଲେ ପ୍ରତ୍ୟେକ ଶିଖ୍‌କୁ ଅସ୍ତ୍ର ଧାରଣ କରିବା ପାଇଁ ଏବଂ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ । ତାଙ୍କର ଏହି ଆହ୍ୱାନ କ୍ରମେ କେଇ ହଜାର ବିଶିଷ୍ଟ ଶିଖ୍‌ଙ୍କର କେତୋଟି ବାହିନୀ ପ୍ରସ୍ତୁତ ହୋଇଥିଲା । ଏହି ବାହିନୀଗୁଡ଼ିକ ହାତରେ କମାଣ ପର୍ଯ୍ୟନ୍ତ ବି ରହିଥିଲା । ୧୬୧୨ ଖ୍ରୀଷ୍ଟାବ୍ଦରେ ଗୁରୁ ହର୍ ଗୋବିନ୍ଦଙ୍କୁ ଜାହାଙ୍ଗିରଙ୍କ ଦରବାରକୁ ଆସିବା ପାଇଁ ଡାକରା ଯାଇଥିଲା । ତାଙ୍କ ବାହିନୀଗୁଡ଼ିକୁ ଅତୁଟ ରଖିବା ଉଦ୍ଦେଶ୍ୟରେ ହର୍ ଗୋବିନ୍ଦ ମୋଗଲମାନଙ୍କ ଅଧୀନରେ ଚାକିରି ଗ୍ରହଣ କରିଥିଲେ । ତେବେ, ତତ୍ ସଙ୍ଗେ ସଙ୍ଗେ ତାଙ୍କ ଯୋଦ୍ଧାମାନଙ୍କୁ ଗୋପନରେ ଅସ୍ତ୍ର ଶିକ୍ଷା ଦେଉଥିଲେ । କିନ୍ତୁ ତାଙ୍କ ଆଗର ଆଚରଣରେ ଏତେ ବେଶି ସ୍ୱାଧୀନ ଚେତନାର ଭାବ ପ୍ରକାଶ ପାଇଥିଲା ଯେ, ଶେଷକୁ ତାଙ୍କୁ କାରାରୁଦ୍ଧ ହେବାକୁ ପଡ଼ିଥିଲା । ବାର ବର୍ଷ ଧରି ଏହି ଭାବେ କାରାରୁଦ୍ଧ ଅବସ୍ଥାରେ ସେ ରହିଥିଲେ ।

୧୬୨୮ରୁ ୧୬୩୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ପଞ୍ଜାବର ମୋଗଲମାନଙ୍କ ଦ୍ୱାରା ନିଯୋଜିତ ଶାସନକର୍ତ୍ତାମାନେ ବେଶ୍ କେଇ ଥର ପିଟୁଣି ସୈନ୍ୟଦଳ ପଠାଇଥିଲେ ଶିଖ୍‌ମାନଙ୍କ ବିରୁଦ୍ଧରେ । ତେବେ ସପ୍ତଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସେମାନଙ୍କୁ ଦମନ କରିବା ଅସମ୍ଭବ ହୋଇଥିଲା ।

## ଦାକ୍ଷିଣାତ୍ୟରେ ଯୁଦ୍ଧ

ସପ୍ତଦଶ ଶତାବ୍ଦୀର ମୋଗଲ ସମ୍ରାଟମାନେ ସମଗ୍ର ଦକ୍ଷିଣ ଭାରତକୁ ନିଜର ପଦାନତ କରିବାର ସ୍ୱପ୍ନ ତ୍ୟାଗ କରି ନଥିଲେ । ଏହି ସମୟରେ ମୋଗଲ ସେନାବାହିନୀର ଦାକ୍ଷିଣାତ୍ୟ ଅଭିଯାନ ଆରମ୍ଭ କରିବା ପକ୍ଷରେ ପ୍ରଧାନ ଅଗ୍ରସର ଘାଟି ଥିଲା ଗୁଜରାଟ । ଆହମଦ୍‌ନଗର, ବିଜାପୁର ଓ ଗୋଲ୍‌କୋଣ୍ଡା ରାଜ୍ୟ ମୋଗଲମାନଙ୍କ ବଶ୍ୟତା ସ୍ୱୀକାର କରିବାକୁ ରାଜି ନଥିଲେ । ଏହି ତିନୋଟି

ରାଜ୍ୟ ସର୍ବଦା ନିଜର ସୀମା ସଂଲଗ୍ନ ଭୂଖଣ୍ଡର ଦାବି ନେଇ ପରସ୍ପର ମଧ୍ୟରେ ଯୁଦ୍ଧବିଗ୍ରହରେ ଲିପ୍ତ ରହୁଥିଲେ । ତେବେ ବିରଳ କେତେକ କ୍ଷେତ୍ରରେ ମୋଗଲ ସେନାବାହିନୀ ବିରୁଦ୍ଧରେ ଯୌଥ ଭାବେ ପ୍ରତିରୋଧ ଉଦ୍ଦେଶ୍ୟରେ ନିଜ ମଧ୍ୟରେ ମୈତ୍ରୀ ଚୁକ୍ତିରେ ଆବଦ୍ଧ ହେଉଥିଲେ ।

ଦାକ୍ଷିଣାତ୍ୟର ସବୁଠାରୁ ଦୁର୍ବଳ ରାଜ୍ୟ ଆହମଦ୍‌ନଗର ଉପରେ ଆକ୍ରମଣ କରି ମୋଗଲମାନେ ଦାକ୍ଷିଣାତ୍ୟ ଅଭିଯାନ ଆରମ୍ଭ କରିଥିଲେ । ତେବେ ଏହି ଆକ୍ରମଣ ଆରମ୍ଭ ହେବାର ଠିକ୍ କେଇ ବର୍ଷ ମଧ୍ୟରେ ଇଥିଓପିଆର ଦାସରାଜା ମାଲିକ ଅମ୍ବରଙ୍କ ପ୍ରବର୍ତ୍ତିତ ବିଭିନ୍ନ ସଂସ୍କାର ସାଧନ ଫଳରେ ରାଜ୍ୟଟି ଉଲ୍ଲେଖନୀୟ ଭାବେ ଶକ୍ତିଶାଳୀ ହୋଇ ଉଠିଥିଲା । ୧୬୧୪ ଖ୍ରୀଷ୍ଟାବ୍ଦରେ ମାଲିକ ଅମ୍ବର ଦେଶର ଭୂମିରାଜସ୍ୱ ପରିମାଣ ହ୍ରାସ କରି ଉତ୍ପନ୍ନ ଫସଲର ଏକ ତୃତୀୟାଂଶ ଧାର୍ଯ୍ୟ କରିଥିଲେ ଏବଂ କୃଷକମାନଙ୍କ ପକ୍ଷରେ ରାଜସ୍ୱ ଦେବା ଏହା ଦ୍ୱାରା ସମ୍ଭବ ହୋଇଥିଲା । ଏଥି ସଙ୍ଗେ ସଙ୍ଗେ ସେ ବ୍ୟାପକ ଭାବେ ତାଙ୍କ ସୈନ୍ୟବାହିନୀର ଲଢ଼େଇ କ୍ଷମତା ପାଇଁ ତତ୍କାଳୀନ ବିଖ୍ୟାତ ମରହଟ୍ଟା ସୈନ୍ୟମାନଙ୍କୁ ନିଯୁକ୍ତ କରିବାକୁ ଆରମ୍ଭ କରି ଦେଇଥିଲେ ।

ସପ୍ତଦଶ ଶତାବ୍ଦୀରେ ଏହି ମରହଟ୍ଟାମାନେ ଏକ ଉଲ୍ଲେଖଯୋଗ୍ୟ ବିଶିଷ୍ଟ ସ୍ଥାନ ଭାରତର ଇତିହାସରେ ଲାଭ କରିଥିଲେ । ମହାରାଷ୍ଟ୍ରର ଗ୍ରାମ୍ୟ ସମାଜଗୁଡ଼ିକରେ ସେତେବେଳେ ଆଭ୍ୟନ୍ତରୀଣ ସଂଘର୍ଷ କ୍ରମଶଃ ଚରମକୁ ଉଠିଥିଲା ଏବଂ ଗ୍ରାମ୍ୟ ସମାଜଗୁଡ଼ିକର ଅପେକ୍ଷାକୃତ କ୍ଷମତାଶାଳୀ ସଦସ୍ୟମାନେ କ୍ରମଶଃ ଛୋଟିଆ ସାମନ୍ତବାଦୀ ଭୂସ୍ୱାମୀରେ ପରିଣତ ହୋଇଥିଲେ । ଅନ୍ୟ ଦିଗରେ, ମୋଗଲ ସାମ୍ରାଜ୍ୟ ଅନ୍ତର୍ଗତ ଭୂଖଣ୍ଡଗୁଡ଼ିକରୁ ପଶ୍ଚିମ ସମୁଦ୍ରୋପକୂଳ ଅଭିମୁଖୀ ବଣିକମାନଙ୍କର କ୍ୟାରାଭାନ ପଥଗୁଡ଼ିକ ମରହଟ୍ଟୀ ଭୂଖଣ୍ଡର ମଧ୍ୟ ଦେଇ ଯାଇଥିଲା । ଫଳରେ ମହାରାଷ୍ଟ୍ରର ସମାଜଗୁଡ଼ିକରେ ଅନେକ ପୂର୍ବରୁ ପଣ୍ୟ-ବନାମ-ମୁଦ୍ରା ସଂପର୍କର ଅନୁପ୍ରବେଶ ଘଟିଥିଲା । ଜମି କିଣାବିକା ହେଉଥିଲା, କହିବାକୁ ଗଲେ, ଅବାଧ ସ୍ୱାଧୀନତାର ସହିତ, ଯଦିଓ ଆଇନ୍ ସଙ୍ଗତ ଭାବେ ଏକମାତ୍ର ଗ୍ରାମ୍ୟ ସମାଜର ସଦସ୍ୟମାନଙ୍କର ଅଧିକାର ଥିଲା ନିଜ ମଧ୍ୟରେ ଜମିର ସ୍ୱତ୍ୱ ସମେତ ସମସ୍ତ ସ୍ୱତ୍ୱ ବିକ୍ରି କରିବାକୁ ।

ହାଲୁକା ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଆହମଦ୍‌ନଗରର ମରହଟ୍ଟୀ ଅଶ୍ୱାରୋହୀ ବାହିନୀ ଶତ୍ରୁର ବାହିନୀଗୁଡ଼ିକ ଉପରେ ବିଦ୍ୟୁତ୍‌ବେଗରେ ଆଘାତ ହାଣୁଥିଲେ, ଖାଦ୍ୟ ଆଦି ରସଦରେ ପରିପୂର୍ଣ୍ଣ ଗାଡ଼ିଗୁଡ଼ିକୁ ଛତ୍ରଭଙ୍ଗ କରି ଦେଉଥିଲେ ଏବଂ ମୋଗଲମାନଙ୍କର ବିଶାଳ, ଅଥଚ ଜବରଜଙ୍ଗ ସେନାବାହିନୀରେ ଗୁରୁତର ଲୋକ କ୍ଷୟ ଓ କ୍ଷତି ଘଟାଉଥିଲେ । ମୋଗଲମାନଙ୍କର ଏହି ସାମରିକ ଅଭିଯାନ ଚାଲିଥିଲା ୧୬୦୯ରୁ ୧୬୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ତେବେ ଏହି ଅଭିଯାନଗୁଡ଼ିକ ମଧ୍ୟରେ ମୋଗଲ ସୈନ୍ୟ ନୂଆ କୌଣସି ସାଫଲ୍ୟ ଅର୍ଜନ କରିବାକୁ ସମର୍ଥ ହୋଇ ନଥିଲେ । କିନ୍ତୁ ବିଜାପୁର ଓ ଗୋଲ୍‌କୋଣ୍ଡାର ସହାୟତା ସତ୍ତ୍ୱେ ଆହମଦ୍‌ନଗର ରାଜ୍ୟ ପକ୍ଷରେ ଆଉ ବେଶି ଦିନ ପ୍ରତିରୋଧ ଚଳେଇଯିବା ସମ୍ଭବ ହୋଇ ନଥିଲା । ଏହି ରାଜ୍ୟଟି ଉପର ଦେଇ ବଡ଼ ବଡ଼ ସେନାବାହିନୀ ଯିବା ଆସିବା କରିବା ଫଳରେ ଏହା ବିଧ୍ୱସ୍ତ ହୋଇ ପଡ଼ିଥିଲା ଏବଂ ଦୀର୍ଘସ୍ଥାୟୀ ଯୁଦ୍ଧ ଫଳରେ ଜନସାଧାରଣଙ୍କ ଶକ୍ତି ସାମର୍ଥ୍ୟ ମଧ୍ୟ ନିଃଶେଷ ହୋଇ ପଡ଼ିଥିଲା । ୧୬୨୧ ଖ୍ରୀଷ୍ଟାବ୍ଦରେ ଆହମଦ୍‌ନଗରର ରାଜଧାନୀକୁ ମୋଗଲମାନେ ଦଖଲ କରି ନେଇଥିଲେ । ଏହା ପରେ ଯେଉଁ ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା, ସେଥିରେ କୁହାଯାଇଥିଲା, ଆହମଦ୍‌ନଗରର ଏକ ଅଂଶ ମୋଗଲମାନେ ପାଇବେ ।

ଦାକ୍ଷିଣାତ୍ୟର ଉପରୋକ୍ତ ତିନୋଟି ରାଜ୍ୟକୁ ମୋଟା ପରିମାଣର ଅର୍ଥ ଖେଷାରତ୍ ଦେବାକୁ ପଡ଼ିଲା । ଏହା ପରେ ପ୍ରାୟ ଦଶ ବର୍ଷ ଧରି ମୋଗଲମାନଙ୍କ ସହିତ ଏହି ଅଞ୍ଚଳରେ ଯୁଦ୍ଧବିଗ୍ରହ ଘଟିଲା ନାହିଁ ।

## ଗୁଜରାଟର ଅର୍ଥନୈତିକ ଅବସ୍ଥା

ମୋଗଲ ସାମ୍ରାଜ୍ୟ ମଧ୍ୟରେ ସର୍ବାପେକ୍ଷା ଉନ୍ନତ ଏଲାକା ଓ ସାମ୍ରାଜ୍ୟର ଅର୍ଥନୈତିକ କ୍ରିୟାକଳାପର କେନ୍ଦ୍ର ଥିଲା ଗୁଜରାଟ । ନାନା ଧରଣର ଅପୂର୍ବ ବସ୍ତ୍ର ବୁଣାଯାଉଥିଲା ସେଠାରେ, ନୀଳ ଚାଷ ମଧ୍ୟ ସେଠାରେ ହେଉଥିଲା । ମୂଲ୍ୟବାନ ରତ୍ନମାଳ କରନିଲିୟାନ ପଥରର ବିଭିନ୍ନ ହସ୍ତ ନିର୍ମିତ ଜିନିଷ ଏବଂ ଅଳଂକୃତ ନାନା ଅସ୍ତ୍ରଶସ୍ତ୍ର ତିଆରି ହେଉଥିଲା । ଅଞ୍ଚଳଟିର ଆଭ୍ୟନ୍ତରୀଣ ପ୍ରଦେଶଗୁଡ଼ିକରେ ମଧ୍ୟ ବ୍ୟବସାୟ ବାଣିଜ୍ୟ ବିକାଶ ଲାଭ କରିଥିଲା ଏବଂ ଅଧିକାଂଶ ସହର ଓ ବଡ଼ ବଡ଼ ଗ୍ରାମରେ ଦୈନିକ ଯେଉଁ ବଜାର ବସୁଥିଲା, ସେଠାରେ କୃଷିଜାତ ଦ୍ରବ୍ୟ ଓ କାରିଗରୀ ଶିଳ୍ପକାର୍ଯ୍ୟ ବିକ୍ରି ହେଉଥିଲା । ଏହି ସମୟରେ ଏହାଠାରୁ ଆଉରି ଗୁରୁତ୍ୱପୂର୍ଣ୍ଣ ଥିଲା ଗୁଜରାଟର ବୈଦେଶିକ ବାଣିଜ୍ୟ । ସୁରାଟ ଥିଲା ସେତେବେଳେ ଭାରତର ସର୍ବବୃହତ୍ ବନ୍ଦର । ଏଠାରୁ ବାଣିଜ୍ୟ ଜାହାଜସବୁ ପଣ୍ୟଦ୍ରବ୍ୟ ନେଇ ଯାତ୍ରା କରୁଥିଲା ପାରସ୍ୟ ଉପସାଗର ଓ ଆରବ ସାଗରର ବନ୍ଦରଗୁଡ଼ିକୁ । ଏହା ଛଡ଼ା ଭାରତର ସମଗ୍ର ପଶ୍ଚିମ ସମୁଦ୍ରୋପକୂଳରେ ଚାଲୁଥିଲା ଉପକୂଳବର୍ତ୍ତୀ ବାଣିଜ୍ୟ । ସ୍ୱଭାବତଃ, ଏହା ଫଳରେ ଗୁଜରାଟରେ ଗଢ଼ି ଉଠିଥିଲେ ମୁସଲମାନ ଏବଂ ହିନ୍ଦୁ ଉଭୟ ସଂପ୍ରଦାୟର ବଡ଼ ବଡ଼ ବଣିକ ଗୋଷ୍ଠୀ ।

ମୁସଲିମ୍ ଖାଜା ଓ ବୋହରା ଏବଂ ହିନ୍ଦୁ ବଣ୍ଟରା, ଆଦି ବଣିକମାନଙ୍କର ସୁନିର୍ଦ୍ଦିଷ୍ଟ ଜାତି ବା ସଂପ୍ରଦାୟଗୁଡ଼ିକ ବ୍ୟତୀତ ତତ୍କାଳୀନ ଲିଖିତ ବିବରଣୀରୁ ଦେଖିବାକୁ ମିଳେ ଯେ, ହିନ୍ଦୁ ବଣିକମାନଙ୍କ ଉଦ୍ଦେଶ୍ୟରେ ସାଧାରଣ ଭାବେ ବ୍ୟବହୃତ ହେଉଥିଲା "ବଣିଆ" ବା "ବାଣ୍ଯାଲ" ଶବ୍ଦ ଦୁଇଟି । ଗୁଜରାଟର କେତେକ ବଣିକ ସେତେବେଳେ ଅତ୍ୟନ୍ତ ଧନୀ ଓ ପ୍ରତିପତ୍ତିଶାଳୀ ଥିଲେ । ସୁରାଟର ବଣିକ ଭିର୍ଜି ଭୋରାଙ୍କୁ (ବା ବୋହରା) ତାଙ୍କ ସମକାଳୀନମାନେ ଦୁନିଆର ସବୁଠାରୁ ଧନୀ ବ୍ୟକ୍ତି ବୋଲି ମନେ କରୁଥିଲେ । ସେ ବାଣିଜ୍ୟ ଦପ୍ତର ଖୋଲିଥିଲେ ଆହ୍ମଦାବାଦ, ଆଗ୍ରା, ବୁରହାନପୁର ଓ ପରେ ଏପରିକି ଗୋଲ୍‌କୋଣ୍ଡାରେ ମଧ୍ୟ । ତେବେ, ତାଙ୍କ କ୍ଷମତାର ଅସଲ ଉତ୍ସ ଥିଲା ଗୁଜରାଟ ସହିତ ମାଲାବାରର ସମଗ୍ର ବାଣିଜ୍ୟ ବ୍ୟବସ୍ଥା ଉପରେ କାର୍ଯ୍ୟତଃ ତାଙ୍କର ଏକଚାଟିଆ କର୍ତ୍ତୃତ୍ୱ । ସୁରାଟର ସମସ୍ତ ବଣିକ ଭିର୍ଜି ଭୋରାଙ୍କ ଇଚ୍ଛା ମୁତାବକ ଚଳୁଥିଲେ ଏବଂ ସେ ନିର୍ଦ୍ଦିଷ୍ଟ କରି ଦେଉଥିଲେ ବିଦେଶରୁ ଆମଦାନି ହେଉଥିବା ପଣ୍ୟର ଦାମ୍ ।

ଭାରତ ସହିତ ବ୍ରିଟିଶ୍ ଓ ଓଲନ୍ଦାଜମାନଙ୍କ ବାଣିଜ୍ୟର ଏକ ପ୍ରଧାନ କେନ୍ଦ୍ର ଥିଲା ସୁରାଟ । ଏହି ସମୟରେ ୟୁରୋପୀୟ ବଣିକମାନେ ସମୁଦ୍ର ପଥରେ ବାଣିଜ୍ୟ କ୍ଷେତ୍ରରୁ ଭାରତୀୟ ବଣିକମାନଙ୍କୁ କ୍ରମଶଃ ଉତ୍‌ଖାତ କରି ଚାଲିଥିଲେ । ଦେଶର ସାମନ୍ତ ଭୂସ୍ୱାମୀମାନଙ୍କର ଓ ପାତ୍‌ଶାହ୍‌ର ଜାରି କରା ବିଭିନ୍ନ ବିଧି ନିଷେଧକୁ ଏଡ଼ାଇବା ପାଇଁ ୟୁରୋପୀୟମାନେ ପାଳି କରି ଉତ୍କୋଚ ଓ ଧମକ ଦେଉଥିଲେ

ଏବଂ ଏହି ଭାବେ କ୍ରମଶଃ ସେମାନେ ଭାରତୀୟ ବଣିକମାନଙ୍କ ଠାରୁ ବେଶି ସୁବିଧା ସୁଯୋଗ ଆଦାୟ କରି ନିଜ ଅବସ୍ଥାନକୁ ଆଉରି ଦୃଢ଼ କରି ନେଇଥିଲେ ।

ଭାରତୀୟ ବଣିକମାନଙ୍କ ମଧ୍ୟରେ ଯେଉଁମାନେ ବେଶି କ୍ଷମତାଶାଳୀ ଥିଲେ, ସେମାନେ ବାଣିଜ୍ୟ ବିଷୟରେ ୟୁରୋପୀୟମାନଙ୍କ ସହିତ ସହଯୋଗିତା କରିବାକୁ ଏବଂ ୟୁରୋପୀୟ ବଣିକମାନଙ୍କର ବ୍ୟବସାୟରେ ଅଂଶୀଦାର ପାଲଟି ଯାଇ ୟୁରୋପୀୟମାନଙ୍କର ପୃଷ୍ଠପୋଷକତା ପାଇବାକୁ ଲାଗିଲେ । ଏହି ଭାବେ ଗୁଜରାଟରେ ଗଢ଼ି ଉଠିଥିଲା ବେନିଆନ ବଣିକମାନଙ୍କର (ଅର୍ଥାତ୍, ଯେଉଁମାନେ ବିଦେଶୀ ବଣିକମାନଙ୍କର ଅଂଶୀଦାର ବା ଦଲାଲ ହିସାବରେ କାମ କରୁଥିଲେ) ଏକ ଗୋଷ୍ଠୀ । ସାମନ୍ତ ଭୂସ୍ୱାମୀମାନେ ମଧ୍ୟ (ଏପରିକି ପାତ୍‌ଶାହ୍ ପରିବାରର ଲୋକମାନେ) ସମୁଦ୍ର ପଥରେ ବାଣିଜ୍ୟ କରିବା ବ୍ୟାପାରରେ ସକ୍ରିୟ ଅଂଶ ନେବାକୁ ଲାଗିଲେ – ଜାହାଜମାନଙ୍କୁ ସାଜସରଞ୍ଜାମ ଯୋଗେଇ ଏବଂ ୟୁରୋପୀୟମାନଙ୍କ ନିକଟରେ ବଡ଼ ବଡ଼ ଜାହାଜ ଭରା ଭାରତୀୟ ପଣ୍ୟଦ୍ରବ୍ୟ ବିକ୍ରି କରି ।

## ଶାହ୍ ଜାହାନ ଓ
## ମହବ୍‌ବତ ଖାଁଙ୍କ ବିଦ୍ରୋହ

ଆହମଦ୍‌ନଗର ଜୟ କରିବାର ପୁରସ୍କାର ସ୍ୱରୂପ ଜାହାଙ୍ଗିର ତାଙ୍କ ଦ୍ୱିତୀୟ ପୁତ୍ରକୁ ଶାହ୍ ଜାହାନ (ଅର୍ଥାତ୍, ଦୁନିଆର ଶାସନକର୍ତ୍ତା) ଉପାଧି ଅର୍ପଣ କରି ତାଙ୍କୁ ସମୃଦ୍ଧ ଗୁଜରାଟର ଶାସନକର୍ତ୍ତା ରୂପେ ନିଯୁକ୍ତ କରିଥିଲେ । ଏହି ସମୟରେ ଜାହାଙ୍ଗିର ତାଙ୍କ ପ୍ରଧାନ ମହିଷୀ ନୂର୍ ଜାହାନଙ୍କ ହାତର ପୁତୁଳି ପାଲଟି ଯାଇଥିଲେ ଏବଂ ଏହି ପ୍ରମତ୍ତ, ଅଫିମଖୋର ସମ୍ରାଟ ତାଙ୍କ ରାଜ୍ୟର ଶାସନ ଦାୟିତ୍ୱ କ୍ରମଶଃ ଛାଡ଼ି ଦେଇଥିଲେ ନୂର୍ ଜାହାନଙ୍କ ହାତରେ । ନୂର୍ ଜାହାନ ଥିଲେ ଜାହାଙ୍ଗିରଙ୍କର ଅନ୍ୟ ଏକ ପୁତ୍ର ଶାହରିଆରଙ୍କ ପୃଷ୍ଠପୋଷିକା ଏବଂ ଏହା ଫଳରେ ଶାହ୍ ଜାହାନଙ୍କ ପକ୍ଷରେ ସିଂହାସନ ଲାଭ କରିବା ପଥରେ ବିଘ୍ନ ଦେଖା ଦେଇଥିଲା ।

ସିଂହାସନ ହରେଇବାର ବିପଦ ଉପସ୍ଥିତ ହେବାରୁ ଶାହ୍ ଜାହାନ ଗୁଜରାଟରୁ ସଂଗୃହୀତ ରାଜସ୍ୱ ବ୍ୟୟ କରି ପ୍ରକାଣ୍ଡ ଏକ ସେନାବାହିନୀ ଗଢ଼ି ତୋଳିବାକୁ ଲାଗି ପଡ଼ିଲେ ଏବଂ ୧୬୨୨ ମସିହାରେ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । କିନ୍ତୁ ସମ୍ରାଟଙ୍କ ସେନାବାହିନୀ ସହିତ ଯୁଦ୍ଧରେ ସେ ପରାଜିତ ହେଲେ ଏବଂ ଗୋଲ୍‌କୋଣ୍ଡାକୁ ପଳାଇ ଯିବାକୁ ବାଧ୍ୟ ହେଲେ । ସେଠାରୁ ସେ ଗୋପନରେ ପଳେଇ ଗଲେ ବଙ୍ଗଳାକୁ । ସେଠାରେ ସେ ବହୁ ସେନାଧ୍ୟକ୍ଷଙ୍କ ସମର୍ଥନ ଲାଭ କରିଥିଲେ । ବଙ୍ଗଳାରୁ ଦିଲ୍ଲୀକୁ ଯାତ୍ରା କରିବା ପଥରେ ଏଲାହାବାଦ ନିକଟରେ ସେ ପୁଣି ଆଉ ଥରେ ପରାସ୍ତ ହେଲେ ସମ୍ରାଟଙ୍କ ସେନାବାହିନୀ ହାତରେ । ଆହମଦ୍‌ନଗରରେ ଆଉ ଥରେ ସେନାବାହିନୀ ଗଢ଼ି ମୋଗଲ ବାହିନୀକୁ ବୁର୍‌ହାନ୍‌ପୁରରୁ ବିତାଡ଼ିତ କରିବାର ଚେଷ୍ଟାରେ ଶାହ୍ ଜାହାନ ପୁଣି ବ୍ୟର୍ଥ ହେଲେ । ଅବଶେଷରେ, ସେ ବାଧ୍ୟ ହୋଇଥିଲେ ଆତ୍ମସମର୍ପଣ କରିବାକୁ । ଜାହାଙ୍ଗିର ତାଙ୍କୁ କ୍ଷମା ଦେଇଥିଲେ ସତ, ତେବେ ତାଙ୍କ ହାତରୁ ଗୁଜରାଟର ଶାସନ

ଦାୟିତ୍ୱ କାଢ଼ି ନେଇ ତା ପରିବର୍ତ୍ତେ ତାଙ୍କୁ ଦାକ୍ଷିଣାତ୍ୟରେ ଛୋଟ ଏକ ଜାଗିର୍ ପ୍ରଦାନ କରିଥିଲେ ।

ଯେଉଁ ମୋଗଲ ସେନାବାହିନୀ ଶାହ୍ ଜାହାନଙ୍କ ବାହିନୀକୁ ବାରମ୍ବାର ଯୁଦ୍ଧରେ ପରାସ୍ତ କରିଥିଲା, ତା'ର ନେତୃତ୍ୱରେ ଥିଲେ ସେନାଧ୍ୟକ୍ଷ ମହବ୍ବତ ଖାଁ । ମହବ୍ବତ ଖାଁଙ୍କର ପ୍ରଧାନ ସମର୍ଥକ ଥିଲେ ରାଜପୁତ ସୈନ୍ୟମାନେ । ନୂର୍ ଜାହାନଙ୍କ ଘନିଷ୍ଠ ଚକ୍ର ମହବ୍ବତ ଖାଁଙ୍କ କ୍ରମବର୍ଦ୍ଧମାନ ପ୍ରଭାବ ଦେଖି ଭୟଭୀତ ହୋଇ ପଡ଼ିଥିଲେ ଏବଂ ତାଙ୍କୁ ବଦ୍‌ନାମ କରିବା ପାଇଁ ସମସ୍ତ ପ୍ରକାରର ଛଳନାର ଆଶ୍ରୟ ନେଇଥିଲେ । ମହବ୍ବତ ଖାଁଙ୍କୁ ଦରବାରକୁ ଡକାଗଲା ଏବଂ ସେଠାରେ ତାଙ୍କୁ ସମାଦର ପ୍ରଦର୍ଶନ କରାଗଲା ନାହିଁ । ଏହା ପରେ ମହବ୍ବତ ତାଙ୍କ ସେନାବାହିନୀ ସାହାଯ୍ୟରେ ପାତ୍‌ଶାହଙ୍କ ଶିବିର ଘେରାଉ କରି ସମ୍ରାଟଙ୍କୁ ବନ୍ଦୀ କଲେ । କିଛି ଦିନ ପାଇଁ ମହବ୍ବତ ଖାଁ ହିଁ ହେଲେ କାର୍ଯ୍ୟତଃ ଦେଶର ଶାସକ ।

ମହବ୍ବତ ଖାଁଙ୍କ ରାଜପୁତ ସେନାବାହିନୀ ହଠାତ୍ ପ୍ରବଳ ଏବଂ ପ୍ରତିପତ୍ତିଶାଳୀ ହୋଇ ଉଠିବାର ଦେଖି ମୋଗଲ ସେନାଧ୍ୟକ୍ଷମାନେ କ୍ଷେପି ଉଠିଲେ । ଶେଷକୁ ମୋଗଲ ଓ ରାଜପୁତ ସୈନ୍ୟଦଳ ମଧ୍ୟରେ ଛୋଟ ଛୋଟ ସଂଘର୍ଷ ପରିଣତ ହେଲା ବଡ଼ ଏକ ଖଣ୍ଡ ଯୁଦ୍ଧରେ ଏବଂ ଏହି ଯୁଦ୍ଧରେ ମହବ୍ବତଙ୍କର ପ୍ରଧାନ ସମର୍ଥକ ଦୁଇ ହଜାର ରାଜପୁତ ସୈନ୍ୟ ନିହତ ହେଲେ । ଫଳରେ ମହବ୍ବତ ଖାଁ ବାଧ୍ୟ ହେଲେ ଶାହ୍ ଜାହାନଙ୍କ ଦରବାରରେ ଆଶ୍ରୟ ନେବାକୁ ।

୧୬୨୭ ଖ୍ରୀଷ୍ଟାବ୍ଦରେ ଜାହାଙ୍ଗିରଙ୍କ ମୃତ୍ୟୁ ଘଟିଲା ଏବଂ ସିଂହାସନରେ ବସିଲେ ଶାହ୍ ଜାହାନ । ସିଂହାସନର ଅନ୍ୟାନ୍ୟ ଦାବିଦାରମାନଙ୍କର ବିଦ୍ରୋହକୁ ମୂଳପୋଛ କରିବା ଉଦ୍ଦେଶ୍ୟରେ ଶାହ୍ ଜାହାନ ହୁକୁମ ଦେଲେ ତାଙ୍କର ସମସ୍ତ ନିକଟତମ ଆତ୍ମୀୟଙ୍କୁ ଅବିଳମ୍ବେ ହତ୍ୟା କରିବାକୁ ।

## ଶାହ୍ ଜାହାନଙ୍କ ରାଜତ୍ୱକାଳ

ଶାହ୍ ଜାହାନଙ୍କ ଦରବାର ତାଙ୍କ ପୂର୍ବର ସମସ୍ତ ସମ୍ରାଟଙ୍କ ରାଜସଭାକୁ ଐଶ୍ୱର୍ଯ୍ୟ ଏବଂ ଚାକଚକ୍ୟରେ ମ୍ଳାନ କରି ଦେଇଥିଲା । ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ମୁଖ୍ୟ ସହରଗୁଡ଼ିକରେ ନିର୍ମାଣ କରାଯାଇଥିଲା ଶ୍ୱେତ ଶଙ୍ଖମଲମଲ ପଥରରେ ଗଢ଼ା ଏବଂ ଅର୍ଦ୍ଧମୂଲ୍ୟବାନ ମଣିମାଣିକ ଖଚିତ (ଆଗ୍ରାର ବିଖ୍ୟାତ ତାଜ ମହଲ ସମେତ) ଆଖି ଝଲସିଆ ବିଭିନ୍ନ ପ୍ରାସାଦ । ଏହା ଦ୍ୱାରା ରାଜକୋଷରୁ ପ୍ରଚୁର ଅର୍ଥ ଖର୍ଚ୍ଚ ହୋଇଥିଲା । ସୈନ୍ୟବାହିନୀରେ ଇତିମଧ୍ୟରେ ସୈନିକମାନଙ୍କର ସଂଖ୍ୟା ବୃଦ୍ଧି ପାଇଥିଲେ ମଧ୍ୟ ଅତୀତ ଭଳି ମୋଗଲ ସେନାବାହିନୀର ପାରଦର୍ଶିତା ଏତେ ନଥିଲା । ଏହି ସମୟରେ ଯୁଦ୍ଧାଭିଯାନ ପରିଚାଳନା କାର୍ଯ୍ୟରେ ମୋଗଲ ବାହିନୀରେ ସୈନ୍ୟମାନଙ୍କ ସଂଖ୍ୟାଠାରୁ ବହୁଗୁଣ ବେଶି ସଂଖ୍ୟାରେ ଥିଲେ ଶିବିରର ସହଯାତ୍ରୀ ଅନ୍ୟ ଲୋକବାକ ଓ ଭୃତ୍ୟଗଣ । ଯୁଦ୍ଧ କ୍ଷେତ୍ରରେ ସେତେବେଳେ ପ୍ରଚଳିତ ରୀତି ହୋଇଥିଲା, ପଦାତିକ ବା ଅଶ୍ୱାରୋହୀ ବାହିନୀ ଉପରେ ଏତେ ନିର୍ଭର ନକରି ଯୁଦ୍ଧ ହସ୍ତୀଗୁଡ଼ିକୁ ଶତ୍ରୁର ସେନାଦଳ ମଧ୍ୟରେ ଭର୍ତ୍ତି କରି ଦେବା । ଏହା ଫଳରେ

ମୋଗଲ ବାହିନୀ ସେପର୍ଯ୍ୟନ୍ତ ଦାକ୍ଷିଣାତ୍ୟର କୌଣସି କୌଣସି ଯୁଦ୍ଧରେ ଜୟ ଲାଭ କରିଲେ ମଧ୍ୟ, ହାତୀମାନଙ୍କ ପକ୍ଷରେ ଯାତାୟତ କରିବା ପାଇଁ ଅସାଧ୍ୟ ପାହାଡ଼ୀ ଆଫ୍‌ଗାନ ଭୂଖଣ୍ଡରେ ଶାହ୍ ଜାହାନ କିନ୍ତୁ ନିଶ୍ଚିତ ସାଫଲ୍ୟ ଅର୍ଜନ କରିବା ଭଳି ଅବସ୍ଥାରେ ନଥିଲେ ।

## ଆଭ୍ୟନ୍ତରୀଣ ନୀତି

ସିଂହାସନ ଆରୋହଣ କରିବା ସଙ୍ଗେ ସଙ୍ଗେ ଶାହ୍ ଜାହାନଙ୍କୁ ବିଦ୍ରୋହୀ ସାମନ୍ତ ଭୂସ୍ୱାମୀମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ଅବତୀର୍ଣ୍ଣ ହେବାକୁ ପଡ଼ିଥିଲା । ଜନୈକ ବୁନ୍ଦେଲା ରାଜା ନିଜକୁ ସ୍ୱାଧୀନ ନରପତି ରୂପେ ପ୍ରତିଷ୍ଠା କରିବାକୁ ଯାଇ ବ୍ୟର୍ଥ ହୋଇଥିଲେ । ପରେ ତାଙ୍କୁ ନତିସ୍ୱୀକାର କରିବାକୁ ପଡ଼ିଥିଲା ଶାହ୍ ଜାହାନଙ୍କ ନିକଟରେ । ଏହା ପରେ ଜାହାଙ୍ଗିରଙ୍କର ଜଣେ ପ୍ରିୟ ପାତ୍ର ଖାଁ ଜାହାନ ମଧ୍ୟ ସମ୍ରାଟଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ ଏବଂ ଆହମଦ୍‌ନଗର ରାଜ୍ୟ ସହିତ ଯୋଗ ଦେଇଥିଲେ । କିନ୍ତୁ ମୋଗଲ ବାହିନୀ ଆହମଦ୍‌ନଗର ସେନାବାହିନୀକୁ ପରାସ୍ତ କଲେ ଏବଂ ଖାଁ ଜାହାନ ପଳେଇ ଯାଇ ବୁନ୍ଦେଲ ଖଣ୍ଡରେ ଆଶ୍ରୟ ନେଲେ । ସେଠାରେ ବୁନ୍ଦେଲା ରାଜା ପାତ୍‌ଶାହଙ୍କ ଅନୁଗ୍ରହ ଲାଭ ଆଶାରେ ଖାଁ ଜାହାନଙ୍କୁ ହତ୍ୟା କରିଥିଲେ ।

ଦାକ୍ଷିଣାତ୍ୟର ବିଭିନ୍ନ ଯୁଦ୍ଧ ଏବଂ ଶୂନ୍ୟ ରାଜକୋଷ ପୂରଣ ପାଇଁ ଅଧିକ ମାତ୍ରାରେ ଭୂମି ରାଜସ୍ୱ ଆଦାୟ କରିବା ଫଳରେ ଗୁଜରାଟ, ଦାକ୍ଷିଣାତ୍ୟ ଓ ଗୋଲ୍‌କୋଣ୍ଡାର କେତେକ ଅଂଶରେ ଦାରୁଣ ଦୁର୍ଭିକ୍ଷ ଦେଖା ଦେଲା । ଯୁଦ୍ଧ ବିଧ୍ୱସ୍ତ ଦାକ୍ଷିଣାତ୍ୟରେ ସବୁଠାରୁ ଅଧିକ ଭାବେ ଏହି ଦୁର୍ଭିକ୍ଷର ଶିକାର ହେଲେ ଗ୍ରାମର ଜନସାଧାରଣ ଏବଂ ଗୁଜରାଟରେ ସହରଗୁଡ଼ିକର ଲୋକେ । ଇତିବୃତ୍ତସମୂହର ବିବରଣ ଅନୁଯାୟୀ ଏହି ଦୁର୍ଭିକ୍ଷ ଫଳରେ ଗୁଜରାଟର ଅସଂଖ୍ୟ କାରୁଶିଳ୍ପୀଙ୍କ ସମେତ ପ୍ରାୟ ତିରିଶ ଲକ୍ଷ ଲୋକ ମୃତ୍ୟୁ ମୁଖରେ ପଡ଼ିଥିଲେ । ଏହି ଅଞ୍ଚଳରେ ଏତେ ବେଶି ସଂଖ୍ୟାରେ କାରିଗର ମରିଥିଲେ ଏବଂ ତା'ଫଳରେ କାରିଗରୀ ଶିଳ୍ପୋତ୍ପାଦନ ଏତେ ହ୍ରାସ ପାଇ ଯାଇଥିଲା ଯେ, ବ୍ରିଟିଶ ଇଷ୍ଟ ଇଣ୍ଡିଆ କଂପାନି ଏହା ପରେ କରମଣ୍ଡଳ ସମୁଦ୍ରୋପକୂଳରେ କେତୋଟି ବାଣିଜ୍ୟ କୋଠି ନିର୍ମାଣ କରିବାକୁ ମନସ୍ଥ କରିଥିଲେ । ସେମାନେ ଏହି ଉପକୂଳରେ ଜମିଜମା କିଣିଥିଲେ ଏବଂ ସେଠାରେ ପରେ ମାଦ୍ରାଜ ବନ୍ଦରଟି ଗଢ଼ି ଉଠିଥିଲା ।

ଏହା ଫଳରେ ଗୁଜରାଟରେ ଏକମାତ୍ର ଜାହାଜ ନିର୍ମାଣ ଶିଳ୍ପ ତିଷ୍ଠି ରହିଲା ଏବଂ କ୍ରମଶଃ ତାହା ବିକଶିତ ହେବାକୁ ଲାଗିଲା । ଏତେ ବେଶି ସଂଖ୍ୟାରେ ଜାହାଜ ନିର୍ମିତ ହେବାକୁ ଲାଗିଲା ଯେ, କେବଳ ମାତ୍ର ସ୍ଥାନୀୟ ବ୍ୟବସାୟୀ ନୁହେଁ, ବ୍ରିଟିଶ୍ କଂପାନି ମଧ୍ୟ ଗୁଜରାଟରେ ନିର୍ମିତ ଜାହାଜ କିଣିବାକୁ ଲାଗିଲେ । ତେବେ ସବୁ ଦିଗରୁ ବିଚାର କଲେ କହିବାକୁ ହେବ, ଅର୍ଥନୈତିକ କ୍ରିୟାକଳାପର କେନ୍ଦ୍ର ହିସାବରେ କ୍ରମଶଃ ଗୁଜରାଟର ଗୁରୁତ୍ୱ କମି ଆସିବାକୁ ଲାଗିଲା । ସେତେବେଳେ ଗୁଜରାଟର ସ୍ଥାନ ଗ୍ରହଣ କଲା ବଙ୍ଗଳା । ବଙ୍ଗଳାରେ ସୂକ୍ଷ୍ମ ତନ୍ତବସ୍ତ୍ର ଉତ୍ପାଦନ ତେଜି ଉଠିଲା (ବିଶେଷ କରି ଢାକା ଏବଂ ପାଟଣାରେ) ଏବଂ ବୃଦ୍ଧି ପାଇଲା ତମାଖୁ ଏବଂ ଘୋଡ଼ା ଉତ୍ପାଦନ ।

ସପ୍ତଦଶ ଶତାବ୍ଦୀରେ ପର୍ତ୍ତୁଗୀଜ୍‌ମାନେ ବଙ୍ଗଳାରେ ସେମାନଙ୍କ ଅବସ୍ଥାନକୁ ଦୃଢ଼ କରି

ପାରିଥିଲେ । ବର୍ଦ୍ଧିଷ୍ଣୁ ସହର, ହୁଗୁଳି ଏହି ସମୟରେ କାର୍ଯ୍ୟତଃ ସେମାନଙ୍କ ଅଧୀନରେ ଥିଲା । ପର୍ତ୍ତୁଗୀଜ୍‌ମାନେ ତମାଖୁ ଉପରେ କର ଧାର୍ଯ୍ୟ କରି ଦେଲେ ଏବଂ ଭାରତୀୟମାନଙ୍କୁ ବଳପୂର୍ବକ ଖ୍ରୀଷ୍ଟିଆନ କରିବାକୁ ଲାଗିଲେ । ସମୁଦ୍ରୋପକୂଳବର୍ତ୍ତୀ ଗ୍ରାମଗୁଡ଼ିକ ଉପରେ ଚଡ଼ଉ କରି ଗ୍ରାମର ବାସିନ୍ଦାମାନଙ୍କୁ ଜୋରଜବରଦସ୍ତ ଧରି ନେଇ କ୍ରୀତଦାସ ହିସାବରେ ବିଦେଶରେ ବିକ୍ରି ପାଇଁ ପଠେଇ ଦେଉଥିଲେ । ଏପରିକି ଜାହାଙ୍ଗିରଙ୍କ ଅମଳରେ ପର୍ତ୍ତୁଗୀଜ୍‌ମାନଙ୍କ ବିରୁଦ୍ଧରେ ଏକ ସୈନ୍ୟଦଳକୁ ପଠାଯାଇଥିଲା । ଶେଷକୁ ୧୬୩୨ ଖ୍ରୀଷ୍ଟାବ୍ଦରେ ଶାହ୍ ଜାହାନଙ୍କ ରାଜତ୍ୱକାଳରେ ମୋଗଲ ସେନାବାହିନୀ ଦୀର୍ଘ ସମୟ ଅବରୋଧ କଲା ପରେ ଝଟିକା ଆକ୍ରମଣ ଦ୍ୱାରା ହୁଗୁଳି ଦଖଲ କରି ନେଇଥିଲେ । ଚାରି ହଜାର ବନ୍ଦୀ ପର୍ତ୍ତୁଗୀଜ୍‌ଙ୍କୁ ଆଗ୍ରାକୁ ପଠାଇ ଦିଆଗଲା । ଏହି ବନ୍ଦୀମାନଙ୍କ ମଧ୍ୟରୁ ଯେଉଁମାନେ ଇସ୍‌ଲାମ୍ ଧର୍ମ ଗ୍ରହଣ କରିବାକୁ ରାଜି ହୋଇଥିଲେ, ସେମାନଙ୍କୁ ପରେ ମୁକ୍ତି ଦିଆଗଲା ଏବଂ ଅନ୍ୟମାନଙ୍କୁ ହତ୍ୟା କରାଗଲା ।

## ଦାକ୍ଷିଣାତ୍ୟରେ ଯୁଦ୍ଧ

ଶାହ୍ ଜାହାନ ଦାକ୍ଷିଣାତ୍ୟ ଅଧିକାରକୁ ତାଙ୍କର ଅନ୍ୟତମ ମୁଖ୍ୟ କାର୍ଯ୍ୟ ବୋଲି ଗ୍ରହଣ କରିଥିଲେ । ଏହି ଉଦ୍ଦେଶ୍ୟରେ, ଅର୍ଥାତ୍, ଯୁଦ୍ଧ ପରିଚାଳନା କ୍ଷେତ୍ରର ନିକଟରେ ରହିବା ପାଇଁ ସେ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ ବୁର୍‌ହାନ୍‌ପୁରକୁ । ଏଣେ ମାଲିକ ଅମ୍ବରଙ୍କ ମୃତ୍ୟୁ ପରେ ପୁଣି ଥରେ ଆହମଦ୍‌ନଗରରେ ସାମନ୍ତବାଦୀ ବିବାଦ ଆରମ୍ଭ ହୋଇଗଲା । ସେତେବେଳେ ଦରବାରର କେତେକ ଧର୍ମାନ୍ଧ ମୁସଲମାନ ଓମରାହଙ୍କ ପ୍ରଭାବର ପ୍ରଭାବିତ ହୋଇ ଆହମଦ୍‌ନଗରର ତତ୍କାଳୀନ ଶାସକ ତାଙ୍କ ହିନ୍ଦୁ ମରହଟ୍ଟୀ ସେନାଧ୍ୟକ୍ଷମାନଙ୍କୁ ହତ୍ୟା କରେଇଥିଲେ । ମାଲିକ ଅମ୍ବରଙ୍କ ପୁତ୍ର ଫତେ ଖାଁଙ୍କୁ ମଧ୍ୟ ସେ କାରାରୁଦ୍ଧ କଲେ । ମୋଗଲ ବାହିନୀ ଆହମଦ୍‌ନଗରର ଗୁଡ଼ିଏ ଦୁର୍ଭେଦ୍ୟ ଦୁର୍ଗକୁ ଦଖଲ କରି ନେଇ ପରେ ଆହମଦ୍‌ନଗର ସୁଲତାନ୍ ଫତେ ଖାଁଙ୍କୁ ମୁକ୍ତି ଦେଇ ତାଙ୍କୁ ପ୍ରଧାନ ଉଜିର ହିସାବରେ ନିଯୁକ୍ତ କରି ଦେଲେ । କିନ୍ତୁ ଫତେ ଖାଁ ସୁଲତାନ୍‌ଙ୍କୁ ହତ୍ୟା କରି ଓ ରାଜ୍ୟ ଦଖଲ କରି ମୋଗଲ ପକ୍ଷରେ ଯୋଗ ଦେଇଥିଲେ ଏବଂ ମୋଗଲମାନଙ୍କ ଅଧୀନରେ ଚାକିରି କଲେ । ଏହି ଭାବେ ସ୍ୱାଧୀନତା ହରେଇଥିଲା ଆହମଦ୍‌ନଗର, ୧୬୩୨ ଖ୍ରୀଷ୍ଟାବ୍ଦରେ ।

ଏହା ପରେ ମୋଗଲମାନେ ବିଜାପୁର ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଦେଲେ । ଏହି ରାଜ୍ୟର ରାଜଧାନୀ ଦୁଇ ଥର ମୋଗଲ ସୈନ୍ୟମାନଙ୍କ ଦ୍ୱାରା ଅବରୁଦ୍ଧ ହୋଇଥିଲା । କିନ୍ତୁ ମୋଗଲ ଶିବିରରେ ଖାଦ୍ୟାଭାବ ଦେଖା ଦେବାରୁ (ନିକଟବର୍ତ୍ତୀ ଗ୍ରାମର ଦୁର୍ଭିକ୍ଷ ପ୍ରପୀଡ଼ିତ ନିଃସ୍ୱ କୃଷକମାନେ ମୋଗଲ ସୈନ୍ୟମାନଙ୍କୁ ଖାଦ୍ୟ ଯୋଗାଇବାକୁ ଅସମର୍ଥ ହେବାରୁ) ଏବଂ ମୋଗଲ ସେନାପତିମାନଙ୍କ ମଧ୍ୟରେ ବିଭିନ୍ନ ବିଷୟରେ ମତଭେଦ ଦେଖା ଦେବାରୁ ଶେଷକୁ ମୋଗଲ ବାହିନୀ ପଶ୍ଚାଦ୍‌ପସରଣ କରିଥିଲା ।

୧୬୩୬ ଖ୍ରୀଷ୍ଟାବ୍ଦରେ ମୋଗଲମାନେ ପୁଣି ଥରେ ଯୁଦ୍ଧାଭିଯାନ ସଂଘଟିତ କରିଥିଲେ ଦାକ୍ଷିଣାତ୍ୟ ବିରୁଦ୍ଧରେ । ଏହି ସମୟରେ ଦାକ୍ଷିଣାତ୍ୟର ରାଜ୍ୟଗୁଡ଼ିକ ପୂର୍ବ ଭଳି ପରସ୍ପର ସହିତ

ଯୁଦ୍ଧବିଗ୍ରହରେ ଲିପ୍ତ ଥିଲେ । ଏହିସବୁ ରାଜ୍ୟର ଦରବାରଗୁଡ଼ିକ ମଧ୍ୟ ଷଡ଼ଯନ୍ତ୍ର ଏବଂ ହତ୍ୟାରେ ପୂର୍ଣ୍ଣ ଥିଲା, ସାମନ୍ତ ଭୂସ୍ୱାମୀମାନେ ପରସ୍ପରକୁ ହତ୍ୟା କରିବାରେ ବ୍ୟସ୍ତ ଥିଲେ । ଏହି ସୁଯୋଗ ନେଇ ମୋଗଲ ବାହିନୀ ଏହିସବୁ ଦେଶ ଉପରେ ଦସ୍ୟୁ ଲୁଣ୍ଠନକାରୀମାନଙ୍କ ଭଳି ଅବ୍ୟାହତ ଗତିରେ ଯୁଦ୍ଧାଭିଯାନ ଚଳାଇ ଆଗେଇ ଚାଲିଲା ଏବଂ ପଛରେ ସେମାନଙ୍କର ପଡ଼ି ରହିଲା ବିଧ୍ୱସ୍ତ ସହର ଓ ଗ୍ରାମସବୁ । ବିଜାପୁର ଏବଂ ଗୋଲ୍‌କୋଣ୍ଡା ଯଥେଷ୍ଟ ଶକ୍ତିମତ୍ତାର ସହିତ ପ୍ରତିରୋଧ କରି ପାରିଲେ ନାହିଁ । ଫଳରେ ସେମାନଙ୍କୁ ମୋଗଲ ସାମ୍ରାଜ୍ୟ ଅଧୀନରେ ସାମନ୍ତ ରାଜ୍ୟର ଅବସ୍ଥା ମାନି ନେବାକୁ ପଡ଼ିଲା ଏବଂ ନୂତନ ସାର୍ବଭୌମ ଶାସକଙ୍କୁ ଯୁଦ୍ଧର କ୍ଷତିପୂରଣ ବାବଦକୁ କ୍ଷତିପୂରଣ ଓ ବାର୍ଷିକ କର ଦେବାକୁ ବାଧ୍ୟ ହେଲେ ।

ଶାହ୍ ଜାହାନଙ୍କ ତୃତୀୟ ପୁତ୍ର ଆଓରଙ୍ଗଜେବ ନିଯୁକ୍ତ ହେଲେ ଦାକ୍ଷିଣାତ୍ୟର ଶାସନକର୍ତ୍ତା ରୂପେ । ଏହି ଯୁଦ୍ଧ ଏବଂ ଦୁର୍ଭିକ୍ଷଧ୍ୱସ୍ତ ଦେଶରେ ଭୂମିରାଜସ୍ୱ ସଂଗ୍ରହର ବିଷୟଟିକୁ ନିୟମିତ କରିବା ପାଇଁ ଆଓରଙ୍ଗଜେବଙ୍କ ଦେଓ୍ୱାନ୍ (ଭୂମିରାଜସ୍ୱ ବିଭାଗର ପ୍ରଧାନ) ମୁର୍ଶିଦ୍ କୁଲି ଖାଁ ଖଜଣା ଧାର୍ଯ୍ୟ କରିବାର ନୂଆ ଏକ ପଦ୍ଧତି ପ୍ରବର୍ତ୍ତନ କଲେ । ଏହି ପଦ୍ଧତିଟି "ମୁର୍ଶିଦ୍ କୁଲି ଖାଁ ଧାରା" ନାମରେ ପରିଚିତ । ଏହି ନୂତନ ପଦ୍ଧତିଟି ଚାଲୁ କରିବାର ଉଦ୍ଦେଶ୍ୟ ଥିଲା ରୟତମାନଙ୍କ ଦ୍ୱାରା ପରିତ୍ୟକ୍ତ ଜମିଗୁଡ଼ିକରେ ଆସି ବସବାସ କରିବା ଏବଂ ଚାଷ କରିବା ପାଇଁ ତକାବି ବା ଅଗ୍ରିମ ଟଙ୍କା ଦେଇ ସେମାନଙ୍କୁ ଆକୃଷ୍ଟ କରିବା । ଜଳସେଚନ ବ୍ୟବସ୍ଥା ଥିବା ଜମିରେ ନୀଚ ହାରରେ ଖଜଣା ଧାର୍ଯ୍ୟ କରାଗଲା ଏବଂ ରାଜକର୍ମଚାରୀ ଓ ରୟତମାନଙ୍କ ମଧ୍ୟରେ ଆଲୋଚନା ଦ୍ୱାରା ରାଜସ୍ୱ ସ୍ଥିର କରିବାର ପ୍ରଥା ଚାଲୁ ହେଲା । ଅର୍ଥାତ୍, ରାଜସ୍ୱ ଦେବା ବିଷୟରେ କୃଷକମାନଙ୍କ କ୍ଷମତାକୁ ହିସାବ ମଧ୍ୟରେ ଧରାଗଲା । ପରେ ଯଦିଓ ଦାକ୍ଷିଣାତ୍ୟର ସାମନ୍ତ ଭୂସ୍ୱାମୀ ପ୍ରଧାନ ଭୂମି ରାଜସ୍ୱ ଛଡ଼ା ପ୍ରାୟ ୧୪ଟି ପର୍ଯ୍ୟନ୍ତ ଅତିରିକ୍ତ କର କୃଷକମାନଙ୍କ ଉପରେ ଚପେଇ ଦେଇଥିଲେ । ତେବେ, ମୁର୍ଶିଦ୍ କୁଲି ଖାଁ ଧାରା ଚାଲୁ ହେବା ଫଳରେ ଦାକ୍ଷିଣାତ୍ୟରେ ଚାଷବାସର କ୍ରମଶଃ ପୁନରୁଦ୍ଧାର ସମ୍ଭବ ହୋଇଥିଲା ।

## ଗଣ ଆନ୍ଦୋଳନସମୂହ

ଏହି ସମୟର ଇତିବୃତ୍ତଗୁଡ଼ିକରେ ଯଦିଓ ବଡ଼ ଧରଣର କୌଣସି ଗଣ ଆନ୍ଦୋଳନର ଉଲ୍ଲେଖ ନାହିଁ, ତେବେ ମୋଗଲ ଶାସନ ବିରୁଦ୍ଧରେ ପ୍ରତିବାଦ ଓ ପ୍ରତିରୋଧର ଅବସାନ ଏହି ଯୁଗରେ ଘଟି ନଥିଲା । ପଞ୍ଜାବରେ ଶିଖ୍‌ମାନେ ବାରମ୍ବାର ମୁଣ୍ଡ ଟେକି ଉଠିଥିଲେ, ସେମାନଙ୍କ ବିରୁଦ୍ଧରେ ଶାହ୍ ଜାହାନ ତିନୋଟି ପିଟୁଣି ଅଭିଯାନ (୧୬୨୯, ୧୬୩୦, ୧୬୩୧ ଖ୍ରୀଷ୍ଟାବ୍ଦ) ପ୍ରେରଣ କରିବା ସତ୍ତ୍ୱେ । ବଙ୍ଗଳାରେ ତଥାକଥିତ "ଦସ୍ୟୁମାନଙ୍କ" ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ ଅବିରାମ ଚାଲିଥିଲା । ଦୋୟାବ୍‌ରେ କୃଷକ ଅଭ୍ୟୁତ୍ଥାନ ଦେଖା ଦେବାରୁ ୧୬୨୯ ଖ୍ରୀଷ୍ଟାବ୍ଦରେ ରଏତମାନଙ୍କୁ ଶାସ୍ତି ଦେବା ପାଇଁ ସୈନ୍ୟ ପଠାଯାଇଥିଲା । ୧୬୫୦ ଖ୍ରୀଷ୍ଟାବ୍ଦରେ ଏହି ଏକେଇ ଅଞ୍ଚଳରେ ମେଓୟାତି ଉପଜାତି ବିଦ୍ରୋହ କରିଥିଲେ ଏବଂ ପରେ ଜଙ୍ଗଲକୁ ପଳେଇ ଯାଇ ବାଧ୍ୟ ହୋଇଥିଲେ ଆଶ୍ରୟ ନେବାକୁ । ଏଣେ ଦଶ

ହଜାର ମୋଗଲ ସୈନ୍ୟ ସମଗ୍ର ଜଙ୍ଗଲ ଅଞ୍ଚଳକୁ ଗ୍ରାସ କରି ପକାଇଲେ ଏବଂ ମେଓୟାତିମାନଙ୍କ ଗ୍ରାମଗୁଡ଼ିକୁ ପୋଡ଼ି ଦେଲେ ଏବଂ ସେମାନଙ୍କ ମଧ୍ୟରେ ଜୀବିତ ଥିବା ଲୋକଙ୍କୁ ବନ୍ଦୀ କରି ଘେନି ଗଲେ ।

## ଯୁଦ୍ଧ ଓ ସାମନ୍ତଭୂସ୍ୱାମୀମାନଙ୍କ ମଧ୍ୟରେ କଳହ

ଉପରୋକ୍ତ ଏହିସବୁ ଗଣ ଆନ୍ଦୋଳନ ଫଳରେ ମୋଗଲ ରାଜକୋଷରେ ରାଜସ୍ୱର ପରିମାଣ ହ୍ରାସ ପାଇଥିଲା । ଗୋଲ୍‌କୋଣ୍ଡାର ରାଜା ୧୬୩୬ ଖ୍ରୀଷ୍ଟାବ୍ଦରେ ମୋଗଲମାନଙ୍କୁ ଯେଉଁ ବାର୍ଷିକ ସେଲାମି ଦେବେ ବୋଲି ଚୁକ୍ତି କରିଥିଲେ, ତାହା ଦେଲେ ନାହିଁ । ମୋଗଲ ରାଜକୋଷରେ ଅର୍ଥାଭାବ ହେତୁ ଏହି ସେଲାମି ଆଦାୟର ପ୍ରୟୋଜନ ଥିଲା ଅଧିକ, ତା'ଛଡ଼ା ଗୋଲ୍‌କୋଣ୍ଡା ଥିଲା ଏକ ଧନୀ ଦେଶ । ଗୋଲ୍‌କୋଣ୍ଡାର ଅର୍ଥନୀତିର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ଥିଲା, ପ୍ରାୟ ସମସ୍ତ ଭୂମିରାଜସ୍ୱ ଓ ଅନ୍ୟାନ୍ୟ ରାଷ୍ଟ୍ରୀୟ କର ସେଠାରେ ଆଦାୟ ହେଉଥିଲା ମଧ୍ୟବର୍ତ୍ତୀ ଫଉଜଦାରମାନଙ୍କ ଜରିଆରେ । ଏହି ପ୍ରଥାଟି, ଅବଶ୍ୟ, ଗ୍ରାମର କୃଷକ ଏବଂ ସହରର ଜନସାଧାରଣଙ୍କ ପକ୍ଷରେ ମାରାତ୍ମକ ଭାବେ କ୍ଷତିକାରକ ଥିଲା । କିନ୍ତୁ ଏହି ବ୍ୟବସ୍ଥା ବିତ୍ତବାନ ସଂପ୍ରଦାୟ ପକ୍ଷରେ ସରକାରୀ କର୍ମଚାରୀ ପଦ କ୍ରୟ କରିବା ଏବଂ ରାଜ୍ୟରେ ଗୁରୁତ୍ୱପୂର୍ଣ୍ଣ କର୍ମଚାରୀ ବନିଯିବା ପକ୍ଷରେ ଅନେକ ବେଶି ସୁଯୋଗ ସୃଷ୍ଟି କରିଥିଲା । ଯଥା, ଦୃଷ୍ଟାନ୍ତ ସ୍ୱରୂପ, ଧନୀ ପାରସୀ ବଣିକ ମହମ୍ମଦ ସୟୀଦ୍ ଆର୍ଦିସ୍ତାନୀ ଗୋଲ୍‌କୋଣ୍ଡାରେ ନିଜସ୍ୱ ଏକ ବିରାଟ ସେନାବାହିନୀ ରଖିଥିଲେ ଏବଂ ବିଜୟନଗର ରାଜ୍ୟରୁ କର୍ଣ୍ଣାଟକର ଏକ ଅଂଶ କାଢ଼ି ନେଇ ସେଠାକାର ହୀରା ଖଣିଗୁଡ଼ିକରୁ ହୀରା କାଢ଼ିବାକୁ ଲାଗିଲେ । ଏହା ପରେ ତାଙ୍କର ଉଚ୍ଚାକାଂକ୍ଷା ଆଉରି ବଢ଼ି ଯାଇଥିଲା ଏବଂ ଗୋଲ୍‌କୋଣ୍ଡାର ଭୂମିରାଜସ୍ୱ ବିଭାଗର ପ୍ରଧାନ ବା "ମୀର୍ ଜୁମଲା" ପାଲଟି ଯାଇଥିଲେ । ଇତିହାସରେ ସେ ଏହି ଉପାଧି ଦ୍ୱାରା ପରିଚିତ ଏବଂ ପରେ ସେ ଏହି ଉପାଧିକୁ ନିଜର ନାମ ହିସାବରେ ଗ୍ରହଣ କରି ନେଇଥିଲେ । କ୍ରମଶଃ ଗୋଲ୍‌କୋଣ୍ଡା ରାଜ୍ୟର ସମସ୍ତ ବଡ଼ ବଡ଼ ପଦକୁ ନିଜର ହସ୍ତଗତ କରି ମୀର୍ ଜୁମଲା କାର୍ଯ୍ୟତଃ ଗୋଲ୍‌କୋଣ୍ଡାର ଶାସକ ହୋଇଗଲେ । ଏହି ପର୍ଯ୍ୟାୟରେ ଗୋଲ୍‌କୋଣ୍ଡାର ଶାହ୍ ଏବଂ ତାଙ୍କର ଏହି ପ୍ରବଳ ପ୍ରତାପ ଉଜିରଙ୍କ ମଧ୍ୟରେ ବିରୋଧ ଉପସ୍ଥିତ ହେଲେ ମୀର୍ ଜୁମଲା ଗୋପନରେ ମୋଗଲମାନଙ୍କ ସହିତ ଷଡ଼ଯନ୍ତ୍ର କରି ସେମାନଙ୍କ ପକ୍ଷକୁ ଚାଲିଗଲେ ଏବଂ ଚାକିରି ଗ୍ରହଣ କରିଥିଲେ ।

ଏ ସମ୍ବାଦ ଜାଣିବାକୁ ପାଇ ଗୋଲ୍‌କୋଣ୍ଡାର ଶାହ୍ ମୀର୍ ଜୁମଲାଙ୍କ ପୁତ୍ରକୁ କାରାରୁଦ୍ଧ କଲେ, ୧୬୫୬ ଖ୍ରୀଷ୍ଟାବ୍ଦରେ । ଫଳରେ ଆଓରଙ୍ଗଜେବଙ୍କୁ ଏକ ବାହାନା ମିଳିଗଲା ଗୋଲ୍‌କୋଣ୍ଡା ଆକ୍ରମଣ କରିବା ପାଇଁ । ମୋଗଲ ସେନା ରାଜ୍ୟ ମଧ୍ୟରେ ଅନୁପ୍ରବେଶ କରି ରାଜଧାନୀ ଭାଗନଗର (ବର୍ତ୍ତମାନର ହାୟଦରାବାଦ) ମଧ୍ୟକୁ ପ୍ରବେଶ କଲେ ଏବଂ ଶାହ୍ ଯେଉଁ ଦୁର୍ଗ ମଧ୍ୟରେ ଆଶ୍ରୟ ନେଇଥିଲେ, ତାହାକୁ ଅବରୋଧ କରି ନେଲେ । ଏହି ଅବରୋଧ ଦୁଇ ମାସ କାଳ ଚାଲିଥିଲା । ଏହା ପରେ ଯେଉଁ ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା, ସେଥିରେ ତଦନୁଯାୟୀ ଗୋଲ୍‌କୋଣ୍ଡା ରାଜ୍ୟର

ଏକାଂଶ ମୋଗଲମାନଙ୍କୁ ଛାଡ଼ି ଦେବାକୁ ପଡ଼ିଥିଲା ଏବଂ ଯୁଦ୍ଧର କ୍ଷତିପୂରଣ ବାବଦକୁ ଗୋଲ୍‌କୋଣ୍ଡାର ଜନସାଧାରଣଙ୍କୁ ଏକ ମୋଟା ଅର୍ଥର ଖେସାରତ୍ ଦେବାକୁ ହେଲା । ରାଜଧାନୀ ଲୁଣ୍ଠିତ ହେବା ଫଳରେ ଏବଂ ସେଇମି ବାବଦକୁ ମୋଟ ଅର୍ଥ ବହନ କରିବା ହେତୁ ରାଜ୍ୟରେ କରହାର ପ୍ରଚୁର ପରିମାଣରେ ବଢ଼ାଇବାକୁ ହେଲା । ଏହି ପରାଜୟ ଫଳରେ ଗୋଲ୍‌କୋଣ୍ଡାର ଅର୍ଥନୈତିକ ଅବନତିର ସୂତ୍ରପାତ ହୋଇଥିଲା ।

ଗୋଲ୍‌କୋଣ୍ଡାକୁ ପଦାନତ କଲା ପରେ ମୀର୍ ଜୁମଲାଙ୍କ ସେନାବାହିନୀର ସମର୍ଥନ ସହ ଆଓରଙ୍ଗଜେବ ବିଜାପୁର ଆକ୍ରମଣ କଲେ । କିନ୍ତୁ ଠିକ୍ ଏହି ସମୟରେ (୧୬୫୬ ଖ୍ରୀଷ୍ଟାବ୍ଦରେ) ସମ୍ରାଟ ଶାହ୍ ଜାହାନ ଗୁରୁତର ଭାବେ ଅସୁସ୍ଥ ହୋଇ ପଡ଼ିଲେ । ଭାରତରେ ଜ୍ୟେଷ୍ଠ ପୁତ୍ର ଉତ୍ତରାଧିକାରୀ ହେବାର ବିଧି ପ୍ରଚଳିତ ନଥିବାରୁ ଏବଂ ପାତ୍‌ଶାହ୍‌ଙ୍କର ପ୍ରତ୍ୟେକ ପୁତ୍ର ସମାନ ଭାବେ ସିଂହାସନର ଦାବିଦାର ଥିଲେ, ତେଣୁ ଏବେ ଶାହ୍ ଜାହାନଙ୍କର ପୁତ୍ରମାନଙ୍କ ମଧ୍ୟରେ ସିଂହାସନ ପାଇଁ କଳହ ତେଜି ଉଠିଲା । ଜ୍ୟେଷ୍ଠ ପୁତ୍ର ଦାରା ଶୁକୋହ୍ ଥିଲେ ଶାହ୍ ଜାହାନଙ୍କର ପ୍ରିୟପାତ୍ର । ଦାରା ଥିଲେ ଉଚ୍ଚ ଶିକ୍ଷିତ ଏବଂ ତାଙ୍କର ମାନସିକ ପ୍ରବଣତା ଥିଲା ଅତୀନ୍ଦ୍ରିୟବାଦ ପ୍ରତି । ସେ ହିନ୍ଦୁ "ସାଧୁ ସନ୍ନ୍ୟାସୀମାନଙ୍କ" ସହିତ ମିଳାମିଶା କରୁଥିଲେ, ସୁଫୀ ମତବାଦ ବୈଷୟିକ ଗ୍ରନ୍ଥ ରଚନା କରୁଥିଲେ ଏବଂ ସ୍ୱପ୍ନ ଦେଖୁଥିଲେ ଇସ୍‌ଲାମ୍ ଧର୍ମ ଏବଂ ହିନ୍ଦୁ ଧର୍ମକୁ ଏକତ୍ର ମିଳାଇବା ପାଇଁ । କିନ୍ତୁ ତାଙ୍କର ଯୁଦ୍ଧ ବିଷୟରେ କୌଣସି ଅଭିଜ୍ଞତା ନଥିଲା, କାରଣ ଶାହ୍ ଜାହାନ ତାଙ୍କୁ ସାରା ଜୀବନ ଦରବାର ମଧ୍ୟରେ ରଖିଥିଲେ । ଦାରା ଶୁକୋହ୍‌ଙ୍କୁ ସମର୍ଥନ କରୁଥିଲେ ହିନ୍ଦୁ ରାଜପୁତମାନେ । ସେମାନେ ଆଶା କରୁଥିଲେ, ଦାରା ସିଂହାସନରେ ବସିଲେ, ଆକବରଙ୍କ ଧର୍ମୀୟ ସହନଶୀଳତା ରାଷ୍ଟ୍ରନୀତିର ପୁନରାବିର୍ଭାବ ଘଟିବ ।

ଶାହ୍ ଜାହାନଙ୍କ ଦ୍ୱିତୀୟ ପୁତ୍ର ଶାହ୍ ଶୁଜା ଦୀର୍ଘ ଦିନ ଧରି ବଙ୍ଗଳାର ଶାସନ କର୍ତ୍ତା ଥିଲେ । ଶାହ୍ ଜାହାନଙ୍କର ମୃତ୍ୟୁ ଘଟିଛି, ଏହି ଭୁଲ ଖବର ପାଇ ଶୁଜା ସଙ୍ଗେ ସଙ୍ଗେ ନିଜକୁ ପାତ୍‌ଶାହ୍ ବୋଲି ଘୋଷଣା କରି ସସୈନ୍ୟ ଆଗ୍ରା ଅଭିମୁଖେ ଯାତ୍ରା କରିଥିଲେ । ଦାରା ଶୁକୋହ୍ ଶୁଜାଙ୍କ ବାହିନୀକୁ ପରାସ୍ତ କଲେ ମଧ୍ୟ ଦାରାଙ୍କ ସେନାବାହିନୀ ବଙ୍ଗ ଦେଶରେ ବ୍ୟସ୍ତ ଥିଲା ବେଳେ ଶାହ୍ ଜାହାନଙ୍କ ଅନ୍ୟ ଦୁଇ ପୁତ୍ର – ଗୁଜରାଟର ଶାସନକର୍ତ୍ତା ମୁରାଦ ଓ ଦାକ୍ଷିଣାତ୍ୟର ଶାସନକର୍ତ୍ତା ଆଓରଙ୍ଗଜେବ – ତାଙ୍କ ବିରୁଦ୍ଧରେ ଯୁଦ୍ଧରେ ଅଗ୍ରସର ହୋଇଥିଲେ । ଶାହ୍ ଜାହାନଙ୍କ ଚାରି ପୁତ୍ରଙ୍କ ମଧ୍ୟରେ ଏହି ସଂଘର୍ଷ ଓ ଯୁଦ୍ଧବିଗ୍ରହ ଚାଲିଥିଲା ଦୁଇ ବର୍ଷରୁ ଅଧିକ କାଳ ଧରି ଏବଂ ଶେଷରେ ଆଓରଙ୍ଗଜେବ ବିଜୟୀ ହେଲେ । ଆଓରଙ୍ଗଜେବ ଥିଲେ ଅସହିଷ୍ଣୁ ରକ୍ଷଣଶୀଳ ମୁସଲିମ୍ ଏବଂ ନିଜ ଶକ୍ତି ସାମର୍ଥ୍ୟ ଜୋରରେ ସେ ଯେତିକି ରାଜତ୍ୱ କରିଥିଲେ, ତା'ଠାରୁ ଅନେକ ବେଶି କରିଥିଲେ ଚକ୍ରାନ୍ତ ଏବଂ ନିଷ୍ଠୁର ଆଚରଣ ଉପରେ ନିର୍ଭର କରି ।

# ଆଓରଙ୍ଗଜେବଙ୍କ ରାଜତ୍ୱକାଳ

ସିଂହାସନ ନିମିତ୍ତ ଲଢ଼େଇରେ ଆଓରଙ୍ଗଜେବଙ୍କୁ ପ୍ରଚୁର ସାହାଯ୍ୟ କରିଥିଲେ ମୀର୍ ଜୁମଲା । କିନ୍ତୁ ସିଂହାସନରେ ବସିଲା ପରେ ବିଶ୍ୱାସଘାତକ ଆଓରଙ୍ଗଜେବ ଶୀଘ୍ର ମୀର୍ ଜୁମଲାଙ୍କୁ ଦୂରେଇ ଦେବାକୁ ଉଦ୍‌ଯୋଗୀ ହୋଇଥିଲେ ଏବଂ ତାଙ୍କୁ ବଙ୍ଗଳାର ଶାସନକର୍ତ୍ତା କରି ପଠାଇ ଦେଲେ । କିନ୍ତୁ ସେଠାରେ ମଧ୍ୟ ମୀର୍ ଜୁମଲାଙ୍କ ସକ୍ରିୟତା ତଥା କର୍ମୋଦ୍ୟୋଗ ଅବ୍ୟାହତ ରହିଥିଲା । ପ୍ରତିବେଶୀ ଆହମ (ବର୍ତ୍ତମାନ ଆସାମର ଅନ୍ତର୍ଗତ) ରାଜ୍ୟ ସେ ଜୟ କରି ନେଲେ । ତେବେ ମୀର୍ ଜୁମଲାଙ୍କ ମୃତ୍ୟୁ ପରେ ଆସାମର ଜନସାଧାରଣ ସଶସ୍ତ୍ର ବିଦ୍ରୋହ ଆରମ୍ଭ କରି ଦେଇ ସେମାନଙ୍କ ଦେଶରେ ଅବସ୍ଥାନକାରୀ ମୋଗଲ ବାହିନୀଗୁଡ଼ିକୁ ଭଗେଇ ଦେଇଥିଲେ ।

## ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ମୋଗଲ ସାମ୍ରାଜ୍ୟର ଅର୍ଥନୈତିକ ଅବସ୍ଥା

ଆଓରଙ୍ଗଜେବ ତାଙ୍କ ସୁଦୀର୍ଘ ରାଜତ୍ୱକାଳରେ (୧୬୫୮-୧୭୦୭ ଖ୍ରୀଷ୍ଟାବ୍ଦ) ଅନବରତ ଲିପ୍ତ ଥିଲେ ବିଭିନ୍ନ ଯୁଦ୍ଧବିଗ୍ରହରେ, କେତେବେଳେ ଉତ୍ତରକୁ ତ ଆଉ କେତେବେଳେ ପୂର୍ବ ଭାରତକୁ ତାଙ୍କୁ ସେନାବାହିନୀ ପଠାଇବାକୁ ପଡ଼ୁଥିଲା । ତା'ଛଡ଼ା ସାମ୍ରାଜ୍ୟର ବିଭିନ୍ନ ଅଂଶରେ ଦେଖା ଦେଉଥିବା ବିଦ୍ରୋହ ଦମନ କରିବାରେ ତାଙ୍କୁ ବ୍ୟସ୍ତ ରହିବାକୁ ପଡ଼ୁଥିଲା । ଏହି ସମୟରେ ମୋଗଲ ସେନାବାହିନୀର ସଂଖ୍ୟା ବୃଦ୍ଧି ପାଇ ଏକ ଲକ୍ଷ ସତୁରି ହଜାର ଅଶ୍ୱାରୋହୀ ଏବଂ କେଇ ଲକ୍ଷ ଶିବିର ସହଯାତ୍ରୀରେ ପହଞ୍ଚିଥିଲା । ତା ସତ୍ତ୍ୱେ ମୋଗଲ ବାହିନୀଗୁଡ଼ିକର ଯୁଦ୍ଧ କ୍ଷମତା ଅନବରତ ହ୍ରାସ ପାଇବାରେ ଲାଗିଥିଲା । ଆଓରଙ୍ଗଜେବ କ୍ରମଶଃ ଅଧିକରୁ ଅଧିକ ଯୁଦ୍ଧରେ ଜୟ ଲାଭ କରିଥିଲେ ଉତ୍କୋଚ ପ୍ରଦାନ ଏବଂ ଚକ୍ରାନ୍ତ ସାହାଯ୍ୟରେ, ମୋଗଲ ବାହିନୀର ସର୍ବାଧିନାୟକ ହିସାବରେ ତାଙ୍କ କୃତିତ୍ୱ ପାଇଁ ନୁହେଁ । ଏହିସବୁ ବ୍ୟବସ୍ଥା ଗ୍ରହଣ ପାଇଁ ତାଙ୍କର ପ୍ରଚୁର ଅର୍ଥର ପ୍ରୟୋଜନ ପଡ଼ୁଥିଲା ।

ଆଓରଙ୍ଗଜେବଙ୍କ ରାଜତ୍ୱକାଳରେ ପଦସ୍ଥ ସାମରିକ କର୍ମଚାରୀ ଓ ବେସାମରିକ କର୍ମଚାରୀମାନଙ୍କ ସଂଖ୍ୟା ତାଙ୍କ ପିତାଙ୍କ ଅମଳଠାରୁ ଅନେକ ବଢ଼ି ଯାଇଥିଲା ଏବଂ ଏହି ସମୟରେ ଜାୟଗିର୍ ହିସାବରେ ପ୍ରଦାନ କଲା ଭଳି ଯଥେଷ୍ଟ ପରିମାଣ ଜମିର ଅଭାବ ଘଟିଥିଲା । ରାଜକୋଷର ତରଫରୁ ସେତେବେଳେ ବିଭିନ୍ନ ଧରଣର ବହୁ ସଂଖ୍ୟକ କର ଆଦାୟ ପାଇଁ ଦାବି କରାଯାଉଥିଲା ବୋଲି ଜାୟଗିର୍‌ଦାରମାନଙ୍କର ଆୟ ମଧ୍ୟ କମି ଯାଇଥିଲା । ତା'ଛଡ଼ା ଅନବରତ ଯୁଦ୍ଧବିଗ୍ରହ ଲାଗି ରହିଥିବା ଫଳରେ ବହୁ ଜାୟଗିର୍‌ଦାର ନିଃସ୍ୱ ହୋଇ ପଡ଼ିଥିଲେ । ଫଳରେ ତାଙ୍କ ପକ୍ଷରେ ସେତେବେଳେ ଆଉ ମୋଗଲ ଦରବାରର ବିଧିବଦ୍ଧ ନିର୍ଦ୍ଦିଷ୍ଟ ସଂଖ୍ୟକ ଅଶ୍ୱାରୋହୀ ସୈନ୍ୟ ପୋଷଣ

କରିବା ସମ୍ଭବ ନଥିଲା । ଅନେକ ସମୟରେ ବର୍ଷ ପରେ ବର୍ଷ ଏହିସବୁ ସୈନ୍ୟଦଳ ବେତନ ପାଉ ନଥିଲେ ଏବଂ ସେତେବେଳେ ସେମାନେ ଜୀବନ ଧାରଣ କରୁଥିଲେ, ମୁଖ୍ୟତଃ, ବେସାମରିକ ଜନସାଧାରଣଙ୍କ ଧନସଂପତ୍ତି ଲୁଣ୍ଠନ କରି । ଅନ୍ୟ ଦିଗରେ, ଆଗ ଅପେକ୍ଷା ଅନେକ ବେଶି ଜାୟଗିର୍‌ଗୁଡ଼ିକ ପିତାଠାରୁ ପୁତ୍ର ହାତକୁ, ଅର୍ଥାତ୍, ବଂଶ ପରମ୍ପରା କ୍ରମେ, ହସ୍ତାନ୍ତରିତ ହେଉଥିଲା, ଯଦିଓ ଅଷ୍ଟାଦଶ ଶତାବ୍ଦୀରେ ଜାୟଗିର୍‌ଗୁଡ଼ିକୁ ରାଜସେବାର ବିନିମୟରେ ସର୍ତ୍ତସମ୍ବଳିତ ଦାନ ହିସାବରେ ସରକାରୀ ଭାବେ ଗଣ୍ୟ କରାଯାଉଥିଲା । ସରକାରୀ ନିୟମାନୁଯାୟୀ ଆଗ ଭଳି ଜାୟଗିର୍‌ଦାର ଅଧୀନସ୍ଥ ଜମି ତାଙ୍କ ମୃତ୍ୟୁ ପରେ ପୁଣି ରାଜକୋଷର ସଂପତ୍ତିରେ ପରିଣତ ହେଉଥିଲା ଏବଂ ରାଜକୋଷ ହିଁ ତା'ର ଚୂଡ଼ାନ୍ତ ହିସାବ ନିକାଶ ଓ ସିଦ୍ଧାନ୍ତ ନେଉଥିଲା । ତେବେ ଏହି ପ୍ରକ୍ରିୟାଟି ଅନେକ ସମୟରେ ବହୁ ବର୍ଷ ଧରି ଚାଲୁଥିଲା ଏବଂ ଏହି କାରଣରୁ ଜାୟଗିର୍‌ଦାରମାନେ ରାଜକୋଷ ନିକଟରେ ପ୍ରାର୍ଥନା କରୁଥିଲେ ଯେ, ସେମାନଙ୍କୁ ଜାୟଗିର୍ ପରିବର୍ତ୍ତେ ଅର୍ଥ ଆକାରରେ ବେତନ ଦିଆଯାଉ । କିନ୍ତୁ ଆଓରଙ୍ଗଜେବଙ୍କ ଅମଳରେ ମୋଗଲ ସାମ୍ରାଜ୍ୟ ସର୍ବଦା ଏହି ପ୍ରାର୍ଥନା ଅଗ୍ରାହ୍ୟ କରିଥିଲା ।

ସେ ଯାହା ହେଉ, ଏହି ଭଳି ପରିସ୍ଥିତି ଉପୁଜିବାରୁ, ଅର୍ଥାତ୍, ସରକାରଙ୍କ ପାଖରେ ପ୍ରୟୋଜନୀୟ ଅର୍ଥ ସଂପଦର ଅଭାବ ଘଟିବାରୁ, ଜାୟଗିର୍‌ଦାରମାନେ ସେମାନଙ୍କ ଆୟର ଅଧିକାଂଶରୁ ବଞ୍ଚିତ ହେବାରୁ ଏବଂ ସେନାବାହିନୀ ଦୀର୍ଘ କାଳ ଧରି ଠିକ୍ ମୁତାବକ ବେତନ ନପାଇବାରୁ ସରକାର, ଜାୟଗିର୍‌ଦାର ଓ ସୈନ୍ୟମାନେ ସମସ୍ତେ ମନୋନିବେଶ କଲେ କୃଷକମାନଙ୍କୁ ଶୋଷଣ କରି ନିଜର ଅବସ୍ଥାର ଉନ୍ନତି କରିବାକୁ । ଆକବରଙ୍କ ଅମଳରେ ଯେଉଁଠି ସାଧାରଣ ଭାବେ ଭୂମିରାଜସ୍ୱ ନିର୍ଦ୍ଦିଷ୍ଟ ଥିଲା ଉତ୍ପନ୍ନ ଫସଲର ଏକତୃତୀୟାଂଶ, ସେଠାରେ ଆଓରଙ୍ଗଜେବଙ୍କ ଅମଳରେ ତାହା ବୃଦ୍ଧି ପାଇ ଉତ୍ପନ୍ନ ଫସଲର ଅର୍ଦ୍ଧେକରେ ପରିଣତ ହେଲା । ଏବଂ କାର୍ଯ୍ୟତଃ ରୟତମାନଙ୍କ ନିକଟରୁ ନାନାବିଧ ଆଦାୟର ପରିମାଣ ଏହା ଠାରୁ ଅନେକ ବେଶି ଥିଲା । କୃଷକମାନଙ୍କ ଉପରେ ଯେତେ ବେଶି ଖଜଣା ଧାର୍ଯ୍ୟ କରାଗଲା, ଖଜଣା ଆଦାୟ କରିବା ସେତେ ବେଶି କଠିନ ହୋଇ ପଡ଼ିଲା । ସାମ୍ରାଜ୍ୟର ବହୁ ଅଞ୍ଚଳରେ କୃଷକମାନଙ୍କର ଜମିରେ ଲଗାଇଲା ଭଳି ସାମାନ୍ୟ ପୁଞ୍ଜି ବି ନଥିଲା ଏବଂ ଫଳରେ ପିତୃ ପିତାମହଙ୍କ ବାସଭୂମି ଗ୍ରାମକୁ ଛାଡ଼ି ସେମାନେ ଅନ୍ୟତ୍ର ଚାଲି ଯିବାକୁ ଆରମ୍ଭ କରିଥିଲେ । ଏହି ସମୟର ଇତିବୃତ୍ତଗୁଡ଼ିକରେ କୃଷକମାନଙ୍କର ଦାରିଦ୍ର୍ୟ ଓ ପରିତ୍ୟକ୍ତ ଜନଶୂନ୍ୟ ଗ୍ରାମଗୁଡ଼ିକ ସଂବନ୍ଧରେ ବହୁ ଅଭିଯୋଗ ଲିପିବଦ୍ଧ ରହିଛି ।

ଏହା ଫଳରେ ସରକାର ତରଫରୁ ଚେଷ୍ଟା କରାଯାଉଥିଲା ଗ୍ରାମର ଅବଶିଷ୍ଟ କୃଷକମାନଙ୍କ ନିକଟରୁ ପଳାଇ ଯାଇଥିବା କୃଷକମାନଙ୍କ ବାକୀ ଖଜଣା ଆଦାୟ କରିବାକୁ ଏବଂ କ୍ରମଶଃ ଏହା ଏକ ସାଧାରଣ ନୀତିରେ ପରିଣତ ହୋଇଥିଲା । କାର୍ଯ୍ୟତଃ ସାମ୍ରାଜ୍ୟର ବିଭିନ୍ନ ଅଞ୍ଚଳରେ ଘୂରି ଘୂରି ଯେ ଦୁର୍ଭିକ୍ଷ ଦେଖା ଦେଉଥିଲା, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ! ବିଶେଷ କରି ୧୭୦୨ରୁ ୧୭୦୪ ଖ୍ରୀଷ୍ଟାବ୍ଦରେ ଦାକ୍ଷିଣାତ୍ୟରେ ଯେଉଁ ଦୁର୍ଭିକ୍ଷ ଦେଖା ଦେଇଥିଲା, ତାହା ଏପରି ଭୟଙ୍କର ରୂପ ନେଇଥିଲା ଯେ, ସେଥିରେ କୋଡ଼ିଏ ଲକ୍ଷରୁ ଅଧିକ ଲୋକ ମୃତ୍ୟୁ ମୁଖରେ ପଡ଼ିଥିଲେ । ଏହି ଅର୍ଥନୈତିକ ପରିସ୍ଥିତିର ଉନ୍ନତି ସାଧନ କେବଳ ସମ୍ଭବ ହୋଇ ପାରିଥାନ୍ତା ରାଜସ୍ୱର ହାର କମେଇ ଦେବା ଦ୍ୱାରା । ତା ହେଲେ ଯେଉଁମାନେ ଜମି ଚାଷ କରୁଥିଲେ, ସେମାନେ କାମ କରି କିଛି ଆୟ

କରି ପାରିଥାନ୍ତେ । କିନ୍ତୁ ମୋଗଲ ସରକାର ସେମାନଙ୍କର ବହୁ ସଂଖ୍ୟକ ସାମରିକ ଅଭିଯାନର ବ୍ୟୟ ପୂରଣ ପାଇଁ ଅର୍ଥ ସଂଗ୍ରହ କରିବାକୁ ବାଧ୍ୟ ହେଉଥିଲେ ବୋଲି ରାଜସ୍ୱର ବୋଝକୁ ଲଘବ କରିବାକୁ ରାଜି ନଥିଲେ । ବରଂ ଘଟଣାଟା ଘଟୁଥିଲା ଓଲଟା, କୃଷକମାନଙ୍କ ନିକଟରୁ ରାଜସ୍ୱ ଓ ଅନ୍ୟାନ୍ୟ କର ଆଦାୟର ଦାବୀକୁ କ୍ରମଶଃ ସାମନ୍ତ ଭୂସ୍ୱାମୀମାନେ ବଢ଼ାଇ ଚାଲିଥିଲେ ।

## କୁଟୀରଶିଳ୍ପ ଓ ବ୍ୟବସାୟ ବାଣିଜ୍ୟ

ସପ୍ତଦଶ ଶତାବ୍ଦୀରେ କୁଟୀରଶିଳ୍ପ କାରଖାନାଗୁଡ଼ିକ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଥିଲା, ବିଶେଷ କରି ବୃଦ୍ଧି ପାଉଥିଲା ବୟନଶିଳ୍ପ (ୟୁରୋପୀୟ ଏବଂ ଏସୀୟ ବଜାରମାନଙ୍କରେ ଭାରତୀୟ ବସ୍ତ୍ରର ଚାହିଦା କ୍ରମଶଃ ବୃଦ୍ଧି ପାଇବା ଫଳରେ) ଏବଂ ସଂଶ୍ଲିଷ୍ଟ ଅନ୍ୟାନ୍ୟ ଶିଳ୍ପ – ଯଥା, ସୂତା କଟା, ଛପାକପଡ଼ା ବୁଣା, କପଡ଼ାରେ ରଙ୍ଗ ଦେବା, ଆଦି । ବଡ଼ ବଡ଼ ଗ୍ରାମ ଓ ସହରଗୁଡ଼ିକରେ, ବିଶେଷ କରି ୟୁରୋପୀୟମାନଙ୍କ ଦ୍ୱାରା ପ୍ରତିଷ୍ଠିତ କାରଖାନାଗୁଡ଼ିକର ଆଖପାଖରେ, କାରିଗରମାନଙ୍କର ସଂଖ୍ୟା ଓ ବସତି ବଢ଼ି ଚାଲିଥିଲା । ଯଥା, ଦୃଷ୍ଟାନ୍ତ ସ୍ୱରୂପ, ଛୋଟ ଏକ ଗ୍ରାମରୁ ମାଦ୍ରାଜ କ୍ରମଶଃ ବୃଦ୍ଧି ପାଇ ସାରା ଦକ୍ଷିଣ ଭାରତର ବାଣିଜ୍ୟ କେନ୍ଦ୍ର ଏବଂ ବସ୍ତ୍ରବୟନଶିଳ୍ପର ହୃତ୍‌କେନ୍ଦ୍ରରେ ପରିଣତ ହେଲା । ସେତେବେଳେ ପ୍ରଥା ଅନୁଯାୟୀ ସହରଗୁଡ଼ିକର ଉପକଣ୍ଠରେ ଗଢ଼ି ଉଠିଥିଲା କାରିଗରମାନଙ୍କର ବସବାସ ଓ କର୍ମଶାଳା । ସେମାନେ ଯେଉଁସବୁ ଶିଳ୍ପ ଦ୍ରବ୍ୟ ତିଆରି କରୁଥିଲେ, ସେସବୁକୁ କିଣି ନେଉଥିଲେ ବଣିକମାନଙ୍କ ଦଲାଲମାନେ । ତା'ପରେ ସେଇସବୁ ଜିନିଷକୁ ସେମାନେ ପଠେଇ ଦେଉଥିଲେ ବିଭିନ୍ନ ବାଣିଜ୍ୟ କେନ୍ଦ୍ରକୁ । ବଡ଼ ବଡ଼ ବାଣିଜ୍ୟ କେନ୍ଦ୍ରର ଚତୁର୍ପାର୍ଶ୍ୱରେ ଗଢ଼ି ଉଠୁଥିଲା ଅନେକ ଛୋଟ ଛୋଟ ସହର, ତା'ପରେ ସେସବୁ ମିଶି ଯାଉଥିଲା ଏବଂ ସବୁ ମିଶି ଗୋଟିଏ ଗୋଟିଏ ଅର୍ଥନୈତିକ ଅଞ୍ଚଳରେ ପରିଣତ ହେଉଥିଲା । ବିଭିନ୍ନ କାରୁଶିଳ୍ପର ବିକାଶ ଓ ଅର୍ଥନୈତିକ କେନ୍ଦ୍ରଗୁଡ଼ିକର ପ୍ରତିଷ୍ଠା, ଅବଶ୍ୟ, ଚାଲିଥିଲା ଅସମ ଭାବେ ଏବଂ ଅଧିକାଂଶ କ୍ଷେତ୍ରରେ ସମୁଦ୍ରୋପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକରେ । ସମୁଦ୍ରୋପକୂଳବର୍ତ୍ତୀ ଏହିସବୁ କେନ୍ଦ୍ର ମଧ୍ୟରେ ଉପକୂଳ ଦେଇ ଯାତାୟତ କରୁଥିବା ନୌବହର ଜରିଆରେ ପ୍ରଚୁର ବାଣିଜ୍ୟ କାରବାର ଚାଲୁଥିଲା ।

ବୈଦେଶିକ ବାଣିଜ୍ୟ କ୍ଷେତ୍ରରେ ଭାରତର ବାଣିଜ୍ୟ ବଳକା ଥିଲା ଭାରତ ପକ୍ଷରେ ଅନୁକୂଳ, କିନ୍ତୁ ଏହି ଲାଭକରା ବ୍ୟବସାୟରୁ ଯେଉଁ ଅର୍ଥ ସଂପଦ ମିଳୁଥିଲା, ତାହା ଜମା ହେଉଥିଲା ପରଜୀବୀ ଅଭିଜାତ ସଂପ୍ରଦାୟ ହାତରେ ବିଳାସ ବ୍ୟସନ ଦ୍ରବ୍ୟ ଆକାରରେ, କିମ୍ବା ଜମା ପଡ଼ିଥିଲା ସିନ୍ଦୁକରେ । ପୁଞ୍ଜିର ପ୍ରାଥମିକ ସଞ୍ଚୟ ହିସାବରେ ତାହା ମୋଟେ ଗଣ୍ୟ ହେଉ ନଥିଲା ।

ଛୋଟ ଧରଣର କୁଟୀରଶିଳ୍ପ ଉପରେ ନିର୍ଭର କରୁଥିବା ଏହି ଅର୍ଥନୈତିକ ବ୍ୟବସ୍ଥା ମଧ୍ୟରେ ପଣ୍ୟ-ବନାମ-ମୁଦ୍ରା ସଂପର୍କର ଉଲ୍ଲେଖଯୋଗ୍ୟ ବିକାଶ ଫଳରେ ଅବଶ୍ୟମ୍ଭାବୀ ରୂପେ ଆବିର୍ଭାବ ଘଟିଥିଲା ବଣିକମାନଙ୍କ ଦ୍ୱାରା ନିୟୋଜିତ ଦଲାଲମାନଙ୍କର । ସେମାନେ କୁଟୀରଶିଳ୍ପୀମାନଙ୍କ ଠାରୁ ପଣ୍ୟଦ୍ରବ୍ୟ କିଣି ନେଉଥିଲେ ଏବଂ କୁଟୀରଶିଳ୍ପୀମାନେ ସେମାନଙ୍କ ଉପରେ କ୍ରମଶଃ ନିର୍ଭରଶୀଳ ହୋଇ ପଡ଼ୁଥିଲେ । ଏ କ୍ଷେତ୍ରରେ ଏହି ଶେଷୋକ୍ତମାନଙ୍କର ଶୋଷଣର ପ୍ରଧାନ ଧରଣଟା ଥିଲା ଫରମାସ ଅନୁଯାୟୀ ଭବିଷ୍ୟତ ଚୁକ୍ତିରେ ଅଗ୍ରିମ୍ ଟଙ୍କା ଦେବା ପଦ୍ଧତି । ୟୁରୋପୀୟ ବାଣିଜ୍ୟ କେନ୍ଦ୍ରଗୁଡ଼ିକ

ମଧ୍ୟ ଏହି ଦଲଇମାନଙ୍କ କେନ୍ଦ୍ରରେ ଲଗୁଥିଲ । "ସେମାନଙ୍କ" କାରୁଶିଳ୍ପୀମାନଙ୍କ ଉପରେ ବଣିକମାନଙ୍କର ପ୍ରଭାବ ପ୍ରତିପତ୍ତି ଏତେ ବେଶି ଥିଲ ଯେ, ବଣିକମାନେ ସେମାନଙ୍କ ପ୍ରୟୋଜନ ଓ ସୁବିଧା ମୁତାବକ ବେଳେ ବେଳେ କାରିଗରମାନଙ୍କୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଘେନି ଯାଉଥିଲେ ।

ଭାରତରେ କେତେକ ଅପେକ୍ଷାକୃତ ଧନୀ ବଣିକ ସେତେବେଳେ ଶାସକ ଶ୍ରେଣୀ ସହିତ ମିଶି ଯାଉଥିଲେ । କେବଳ ସାମନ୍ତ ଭୂସ୍ୱାମୀମାନେ ସେତେବେଳେ ନିଜର ଆୟ ବୃଦ୍ଧି ପାଇଁ ଯେ ବ୍ୟବସାୟରେ ଲିପ୍ତ ହେଉଥିଲେ, ତା ନୁହେଁ, ବଣିକମାନେ ମଧ୍ୟ ବ୍ୟବସାୟରେ ସେମାନଙ୍କ ମୁନାଫା ବୃଦ୍ଧି କରିବା ଦିଗରେ ଯଥେଷ୍ଟ ଉତ୍ସାହିତ ଥିଲେ ସାମନ୍ତବାଦୀ ଶୋଷଣର ବିଭିନ୍ନ ଫନ୍ଦିଫିକର ଅବଲମ୍ବନ କରିବାକୁ । ଧନୀ ବଣିକମାନେ ବେଳେ ବେଳେ ସଶସ୍ତ୍ର ସେନାବାହିନୀ ପୋଷଣ କରୁଥିଲେ ଏବଂ ଜାୟଗିର୍‌ଦାର ବନି ଯାଉଥିଲେ । ଅନ୍ୟ ଦିଗରେ, ଜାୟଗିର୍‌ଦାରମାନଙ୍କର ମାଲିକାନାଧୀନରେ ବାଣିଜ୍ୟପୋତ, ବଜାରର ଦୋକାନାଦି, ଓଟ-କ୍ୟାରାଭାନ ଓ ପାନ୍ଥଶାଳା ମାନ ଥିବାର ପ୍ରାୟ ଦେଖାଯାଉଥିଲ । ଏହିସବୁ ଜାୟଗିର୍‌ଦାରମାନେ ବ୍ୟବସାୟ ବାଣିଜ୍ୟରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ଦେଶରେ ଉତ୍ପନ୍ନ ସବୁଠାରୁ ମୂଲ୍ୟବାନ ପଣ୍ୟଦ୍ରବ୍ୟଗୁଡ଼ିକ କ୍ଷେତ୍ରରେ ବେଳେ ବେଳେ ଏହି ମର୍ମରେ ଘୋଷଣା କରାଯାଉଥିଲ ଯେ, ଏସବୁଥିରେ ଏକମାତ୍ର ପାତ୍‌ଶାହଙ୍କର ଏକଚାଟିଆ ମାଲିକାନା ରହିଛି । ସେତେବେଳେ ଏସବୁକୁ କିଣାବିକା କରିବା ପାଇଁ ଅନ୍ୟମାନଙ୍କ ପକ୍ଷରେ ପାତ୍‌ଶାହଙ୍କର ଅନୁମତି ଦରକାର ପଡ଼ୁଥିଲ ।

ସପ୍ତଦଶ ଶତାବ୍ଦୀର ଶେଷ ଆଡ଼କୁ କେନ୍ଦ୍ରୀୟ ମୋଗଲ ପ୍ରଶାସନର କର୍ତ୍ତୃତ୍ୱ କ୍ରମଶଃ ଦୁର୍ବଳ ହୋଇ ପଡ଼ିଥିଲ । ସେତେବେଳେ ସମସ୍ତ ସାମନ୍ତବାଦୀ ରାଜକର୍ମଚାରୀ ଓ ଭୂସ୍ୱାମୀମାନେ ସେମାନଙ୍କ ନିଜସ୍ୱ ସ୍ୱାର୍ଥସିଦ୍ଧି ମାନସରେ କାରିଗର ଓ ବଣିକମାନଙ୍କ ଉପରେ ଅତିରିକ୍ତ ବିଭିନ୍ନ କରର ବୋଝ ଚପେଇବାରେ ଲଗିଥିଲେ ଏବଂ ପ୍ରାୟ କେତେକ ପଣ୍ୟଦ୍ରବ୍ୟର ଏକଚାଟିଆ ମାଲିକରେ ପରିଣତ ହୋଇ ଏହି ସଂପ୍ରଦାୟ ଦୁଇଟିର ପକ୍ଷରେ ସମସ୍ତ ପ୍ରକାରର ସମ୍ଭାବ୍ୟ ବାଧା ଏବଂ ଅସୁବିଧା ସୃଷ୍ଟି କରୁଥିଲେ । ଏହା ଛଡ଼ା ମୋଗଲ ସାମ୍ରାଜ୍ୟ ଅମଳରେ ଅଧିକାଂଶ କାରୁଶିଳ୍ପୀ ଓ ବଣିକ ହିନ୍ଦୁ ସଂପ୍ରଦାୟଭୁକ୍ତ ଥିଲେ ବୋଲି ଆଓରଙ୍ଗଜେବଙ୍କ ରାଜତ୍ୱରେ ସେମାନେ ଧର୍ମୀୟ ଉତ୍ପୀଡ଼ନର ଶିକାର ହୋଇଥିଲେ ଏବଂ ଅଣମୁସଲମାନମାନଙ୍କ ଉପରେ ଧାର୍ଯ୍ୟ କରାଯାଇଥିବା ମୁଣ୍ଡ ପିଛା ଅତିରିକ୍ତ ଖଜଣା (ଜିଜିଆ) ଭାରରେ ଅତିଷ୍ଠ ହୋଇ ପଡ଼ିଥିଲେ । ଏହି କାରଣରୁ ସେମାନଙ୍କ ମଧ୍ୟରେ ବିରୋଧିତା ଓ ବିରୂପତାର ଅନ୍ତ ନଥିଲ ।

## ଆଓରଙ୍ଗଜେବଙ୍କ ଧର୍ମନୀତି

ଆଓରଙ୍ଗଜେବ ସିଂହାସନ ଆରୋହଣ କଲ ଫଳରେ ଜାୟଗିର୍‌ଦାରମାନଙ୍କ ମଧ୍ୟରେ ଅପେକ୍ଷାକୃତ ପ୍ରତିକ୍ରିୟାଶୀଳ ମହଲଗୁଡ଼ିକ ଏହା ପରେ ମୋଗଲ ଦରବାରରେ ଆସ୍ଥାନ ଜମେଇ ବସିଲେ ଏବଂ ସମସ୍ତ ବ୍ୟାପାରରେ ସେମାନଙ୍କ ପ୍ରଭାବ ନିଷ୍ପତ୍ତିମୂଳକ ହୋଇ ଉଠିଲ । ଧୀରମତି ଏବଂ ହିସାବୀ ରାଜନୀତିଜ୍ଞ ଆଓରଙ୍ଗଜେବ ଥିଲେ ଧର୍ମାନ୍ଧ ମୁସଲମାନ ଏବଂ ଦାରା ଶୁକୋହଙ୍କ ବିରୁଦ୍ଧରେ

ତାଙ୍କ ବିଜୟ ଏପରି ଏକ ରାଷ୍ଟ୍ରନୀତିର ସୂଚନା ଦେଇଥିଲା, ଯାର ମୂଳକଥା ଥିଲା ହିନ୍ଦୁମାନଙ୍କର ସମସ୍ତ ଅଧିକାର ହରଣ ଓ ସିୟା ମତାବଲମ୍ବୀ ମୁସଲମାନମାନଙ୍କ ଉପରେ ଅତ୍ୟାଚାର । ଦେଶର ଜୀବନଯାତ୍ରାକୁ ଇସ୍ଲାମ୍‌ର ଶିକ୍ଷାନୁଯାୟୀ ଗଢ଼ି ତୋଳିବା ଉଦ୍ଦେଶ୍ୟରେ ଆଓରଙ୍ଗଜେବ ସିୟାମତାବଲମ୍ବୀ ଉତ୍ସବଗୁଡ଼ିକୁ ନିଷିଦ୍ଧ କରିଥିଲେ ଏବଂ ମଦ୍ୟପାନ, ଗୀତ ବାଦ୍ୟ, ନୃତ୍ୟ, ଗଞ୍ଜେଇଗଛ (ଭାଙ୍ଗ) ରୋପଣ, ଆଦି ନିଷିଦ୍ଧ କରି ଦେଇଥିଲେ । ୧୬୬୪ରୁ ୧୬୬୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେ ହୁକୁମ ଦେଇଥିଲେ ହିନ୍ଦୁ ମନ୍ଦିରଗୁଡ଼ିକୁ ଭାଙ୍ଗି ସେସବୁର ଧ୍ୱଂସସ୍ତୂପ ଉପରେ ମସ୍‌ଜିଦ ନିର୍ମାଣ କରି ଦେବାକୁ । ହିନ୍ଦୁମାନଙ୍କ ମଧ୍ୟରେ ମର୍ଯ୍ୟାଦାସୂଚକ କୌଣସି ଚିହ୍ନ ଧାରଣ କରିବା, ହାତୀରେ ବସିବା, ଆଦି ନିଷିଦ୍ଧ ହୋଇଗଲା ।

ସବୁଠାରୁ ଅସହନୀୟ ବୋଝ ଥିଲା ଅଣମୁସଲମାନମାନଙ୍କ ଉପରେ ମୁଣ୍ଡପିଛା କର ବା ଜିଜିଆ । ଆକବର ଏହି କର ଉଠେଇ ଦେଇଥିଲେ, କିନ୍ତୁ ଆଓରଙ୍ଗଜେବ ୧୬୭୯ ଖ୍ରୀଷ୍ଟାବ୍ଦରେ ଏହାକୁ ପୁଣି ପ୍ରବର୍ତ୍ତନ କରିଥିଲେ । ଏହା ଫଳରେ ଦିଲ୍ଲୀ, ଗୁଜରାଟ, ବୁର୍‌ହାନ୍‌ପୁର, ଆଦି ସ୍ଥାନରେ ଗଣ ବିଦ୍ରୋହ ଦେଖା ଦେଇଥିଲା । ମରହଟ୍ଟା, ରାଜପୁତ, ଜାଠମାନେ ବିଦ୍ରୋହରେ ଫାଟି ପଡ଼ିଲେ । ଆଫ୍‌ଗାନ ମୁସଲମାନମାନେ ମଧ୍ୟ ବିଦ୍ରୋହ କଲେ । ମୋଗଲ ଶାସନ କବଳରୁ ସ୍ୱାଧୀନତା ଓ ସ୍ୱାଧିକାର ଲାଭର ଏହି ପ୍ରୟାସ ଥିଲା ଭାରତର ଅନେକ ଜାତିଗୋଷ୍ଠୀ ମଧ୍ୟରେ ଜାତୀୟ ଚେତନା ଉନ୍ମେଷର ପ୍ରଥମ ଲକ୍ଷଣ । ଏହିସବୁ ଜାତି ମୋଗଲ ରାଷ୍ଟ୍ରକୁ ଶତ୍ରୁ ଓ ଉତ୍ପୀଡ଼କ ବୋଲି ମନେ କରିବାକୁ ଲାଗିଲେ ଏବଂ ସେମାନଙ୍କ ଧର୍ମୀୟ ମନୋଭାବ ପକ୍ଷରେ ଅନିଷ୍ଟକାରୀ ବୋଲି ବିଚାର କଲେ । ଏହିସବୁ ଗଣ ଆନ୍ଦୋଳନ ଫଳରେ ମୋଗଲ ସାମ୍ରାଜ୍ୟର କ୍ଷମତାର ଭିତ୍ତି ଦୋହଲି ଗଲା ।

## ମରହଟ୍ଟା ଆନ୍ଦୋଳନ

ସ୍ୱାଧୀନତା ଏବଂ ସ୍ୱାଧିକାର ଅର୍ଜନ ଲକ୍ଷ୍ୟରେ ପରିଚାଳିତ ସଂଗ୍ରାମରେ ମରହଟ୍ଟାମାନଙ୍କର ଐକ୍ୟ, ଜାତି ହିସାବରେ ଗଢ଼ି ଉଠିବା ପଥରେ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ସ୍ୱରୂପ । ଦାକ୍ଷିଣାତ୍ୟର ଶାସକମାନଙ୍କ ଅଧୀନରେ ସୈନିକ ହିସାବରେ ଚାକିରି କରି ମରହଟ୍ଟାମାନଙ୍କ ମଧ୍ୟରେ ଯେଉଁ ଦୀର୍ଘ ଦିନର ଐତିହ୍ୟ ଗଢ଼ି ଉଠିଥିଲା, ତାହା ମୋଗଲମାନଙ୍କ ବିରୁଦ୍ଧରେ ସେମାନଙ୍କ ସଂଗ୍ରାମକୁ ସହାୟକ ହୋଇଥିଲା । ଏହି ସଂଗ୍ରାମ ପଛରେ ଚାଳିକା ଶକ୍ତି ସ୍ୱରୂପ ଥିଲେ ସମଗ୍ର ମରହଟ୍ଟୀ ଜନସାଧାରଣ । ସେମାନେ ଏ ବିଷୟରେ ନିଶ୍ଚିତ ଥିଲେ ଯେ, ମୋଗଲ ରାଜ ଶକ୍ତିକୁ ଥରେ ଚୂର୍ଣ୍ଣ କରି ଦେଇ ପାରିଲେ, ସେମାନେ ଦେଶରେ ନ୍ୟାୟପୂର୍ଣ୍ଣ ରାଜତ୍ୱ ପ୍ରତିଷ୍ଠା କରି ପାରିବେ । ମରହଟ୍ଟୀ ଭକ୍ତିବାଦୀ କବିମାନେ ମଧ୍ୟ ସେମାନଙ୍କ କାବ୍ୟରେ ମଣିଷକୁ ଏହି ନ୍ୟାୟ ସଂଗ୍ରାମରେ ଯୋଗ ଦେବା ପାଇଁ ଉଦ୍‌ବୁଦ୍ଧ କରିଥିଲେ । ଶିବାଜୀଙ୍କ ଗୁରୁ ରାମ ଦାସ (୧୬୦୮-୧୬୮୧ ଖ୍ରୀଷ୍ଟାବ୍ଦ) ଘୋଷଣା କରିଥିଲେ –
"ସବୁ ତ ଗଲଣି, ଜାଣ କ'ଣ ତୁମେ, ଅଛି ଏ କେବଳ ଜନ୍ମ ଭୂମି !"

ପ୍ରଥମେ ଯେଉଁ ମରହଟ୍ଟା ନେତା ଦାକ୍ଷିଣାତ୍ୟରେ ଏକ ବିଶିଷ୍ଟ ରାଜନୈତିକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ତାଙ୍କ ନାମ ହେଲା ଶାହ୍‌ଜୀ । ତାଙ୍କ ନେତୃତ୍ୱାଧୀନ ଯୋଦ୍ଧାମାନଙ୍କୁ ଥରେ ଆହମଦ୍‌ନଗର

ତ ଆଉ ଥରେ ବିଜାପୁର ଆଦି ରାଜ୍ୟର ଚାକିରୀରେ ଭର୍ତ୍ତି କରି ଶାହ୍‌ଜୀ ତା'ର ବିନିମୟରେ ସର୍ତ୍ତସାପେକ୍ଷିତ କେତେକ ଜମି ଲାଭ କରିଥିଲେ ଏବଂ ଏହି ଭାବେ ପୁନା ଓ ମାଓୟାଲେଙ୍କ ଜାୟଗିର୍ ଦୁଇଟିର ଅଧିପତି ହୋଇଥିଲେ । ଶାହ୍‌ଜୀ ପରେ ତାଙ୍କ ପୁତ୍ର ଶିବାଜୀ ମରହଟ୍ଟା ଯୋଦ୍ଧାମାନଙ୍କୁ ନେଇ ଛୋଟ ଛୋଟ ବାହିନୀ ଗଢ଼ି ତୋଳିବାକୁ ସକ୍ରିୟ ହୋଇଥିଲେ ଏବଂ ଅଭିଜାତ ମରହଟ୍ଟା ପରିବାରଗୁଡ଼ିକ ଅଧୀନସ୍ଥ ଛୋଟ ଛୋଟ ଦୁର୍ଗକୁ ଆକ୍ରମଣ କରି ଗୋଟିକ ପରେ ଗୋଟିକୁ ଜୟ କରି ନେଇଥିଲେ । ଏ ଦିଗରେ ସାମରିକ କୃତିତ୍ୱ ବ୍ୟତୀତ ବିଭିନ୍ନ ରକମର ଷଡ଼ଯନ୍ତ୍ର ଓ ଚକ୍ରାନ୍ତ ତାଙ୍କ କାମରେ ଲାଗିଥିଲା ।

ଶିବାଜୀଙ୍କ ଶକ୍ତି ବୃଦ୍ଧି ଦ୍ୱାରା ବିଜାପୁର ସୁଲତାନ୍ ଭୟଭୀତ ହୋଇ ପଡ଼ିଲେ । ଫଳରେ ୧୬୫୮ ଖ୍ରୀଷ୍ଟାବ୍ଦରେ ବୟସ୍କ ସେନାପତି ଆଫ୍‌ଜଲ ଖାଁଙ୍କ ନେତୃତ୍ୱରେ ଏକ ପ୍ରକାଣ୍ଡ ସେନାବାହିନୀ ତାଙ୍କ ବିରୁଦ୍ଧରେ ପଠାଗଲା । ସଂକୀର୍ଣ୍ଣ ଗିରି ପଥଗୁଡ଼ିକ ମଧ୍ୟ ଦେଇ ଯୁଦ୍ଧ ଚାଲିଲେ ତାଙ୍କ ସେନାବାହିନୀ ପକ୍ଷରେ ଚଳାଚଳ ପାଇଁ ଅସୁବିଧା ହେବ ଏବଂ ମରହଟ୍ଟାମାନେ ତା'ର ସୁବିଧା ନେବେ — ଏହା ଅନୁଭବ କରି ଆଫ୍‌ଜଲ ଖାଁ ଶିବାଜୀଙ୍କୁ ଆମନ୍ତ୍ରଣ ଜଣାଇଲେ ଏକ ପାହାଡ଼ ଚୂଡ଼ାରେ ତାଙ୍କ ସହିତ ଆଲୋଚନା କରିବାକୁ ଏବଂ ପ୍ରସ୍ତାବ ଦେଲେ ଏହି ପାହାଡ଼ ଚୂଡ଼ାରେ କେବଳ ସେମାନେ ଦୁଇଜଣ ରହିବେ, ଅନ୍ୟ କେହି ରହିବେ ନାହିଁ । ଆଫ୍‌ଜଲ ଖାଁ ତାଙ୍କ ପୋଷାକ ତଳେ ଏକ ଛୁରିକା ଲୁଚେଇକି ରଖିଥିଲେ । ଶିବାଜୀଙ୍କ ସହିତ ଦେଖା ହେଲା କ୍ଷଣି ସେ ଶିବାଜୀଙ୍କୁ ଆଲିଙ୍ଗନ କରିବା ଛଳରେ ତାଙ୍କ ଦେହରେ ଏହି ଛୁରିକା ଦ୍ୱାରା ଆଘାତ କଲେ । କିନ୍ତୁ ଶିବାଜୀ ବର୍ମ ପିନ୍ଧି ଆସିଥିବାରୁ ଏହି ଆଘାତ ଦ୍ୱାରା ତାଙ୍କର କ୍ଷତି ଘଟିଲା ନାହିଁ । ଉପରନ୍ତୁ, ଆଫ୍‌ଜଲ ଖାଁଙ୍କୁ ଆଲିଙ୍ଗନ କଲା ବେଳେ ସେ ତାଙ୍କ ଜାମା ଅସ୍ତିନ ତଳେ ଲୁଚେଇ ଆଣିଥିବା ଲୌହ ନିର୍ମିତ "ବାଘନଖ" ଦ୍ୱାରା ଆଫ୍‌ଜଲ ଖାଁଙ୍କୁ ଗୁରୁତର ଭାବେ ଆହତ କରିଥିଲେ । ଏହା ପରେ ସେ ନିଜ ଅନୁଚରମାନଙ୍କୁ ଡାକିଲେ ଏବଂ ସେମାନେ ପାହାଡ଼ ଉପରକୁ ଉଠି ମୋଗଲ ସେନାପତି ଆଫ୍‌ଜଲ ଖାଁଙ୍କ ମୁଣ୍ଡକୁ କାଟି ପକାଇଲେ । ସେନାପତି ନିହତ ହେଲା ଫଳରେ ବିଜାପୁରର ସେନାବାହିନୀ ମଧ୍ୟ ଛିନ୍ନଛତ୍ର ହୋଇ ପଡ଼ିଲେ । ଏହା ପରେ ମରହଟ୍ଟାମାନେ ବିଜାପୁର ରାଜ୍ୟ ଉପରେ ଚଢ଼ାଉ ଆରମ୍ଭ କରି ଦେଲେ ଏବଂ ପ୍ରଚୁର ଧନସଂପଦ ଲୁଟ କରିବାକୁ ଲାଗିଲେ ।

ଆଓରଙ୍ଗଜେବ ମରହଟ୍ଟାମାନଙ୍କୁ ଘୃଣାରେ "ପାହାଡ଼ୀ ମୂଷା" ବୋଲି କହୁଥିଲେ । ସେମାନଙ୍କ ଉପଦ୍ରବର ପୂର୍ଣ୍ଣଚ୍ଛେଦ ଘଟାଇବା ପାଇଁ ସେ ସ୍ଥିର କଲେ । ଶାଏସ୍ତା ଖାଁଙ୍କ ନେତୃତ୍ୱରେ ଏକ ମୋଗଲ ବାହିନୀ ପଠାଗଲା । ଶାଏସ୍ତା ଖାଁ ପୁନା ଦଖଲ କରି ନେଲେ, କିନ୍ତୁ ଥରେ ରାତ୍ରିରେ ଶିବାଜୀ ଏକ ଆକ୍ରମଣ ଚଳେଇ ଶାଏସ୍ତା ଖାଁଙ୍କୁ ପରାସ୍ତ କରି ଦେଲେ । ଶାଏସ୍ତା ଖାଁ ଭୟରେ ଶିବିର ଛାଡ଼ି ପଳେଇ ଗଲେ । ଫଳରେ ମୋଗଲ ସେନାବାହିନୀ ମଧ୍ୟ ପଶ୍ଚାଦ୍‌ପସରଣ କଲା । ୧୬୬୪ ଖ୍ରୀଷ୍ଟାବ୍ଦରେ ଶିବାଜୀ ସୁରାଟର ଅରକ୍ଷିତ ବନ୍ଦରଟିକୁ ଆକ୍ରମଣ କଲେ । ସେଠାକାର ବଣିକମାନଙ୍କର ବିପୁଳ ଐଶ୍ୱର୍ଯ୍ୟ ଲୁଣ୍ଠନ ଓ ବନ୍ଦରଗୁଡ଼ିକର ବାସଗୃହ ଓ ଗୋଦାମଗୁଡ଼ିକୁ ଧ୍ୱଂସ କରି ଦେବା ଫଳରେ ସାମଗ୍ରିକ ଭାବେ ଗୁଜରାଟର ବ୍ୟବସାୟ ବାଣିଜ୍ୟ ଓ ମୋଗଲ ସାମ୍ରାଜ୍ୟ ମଧ୍ୟ ଗୁରୁତର ଭାବେ ଧକ୍କା ଖାଇଲା । ଏହା ପରେ ଆଓରଙ୍ଗଜେବ ଶିବାଜୀଙ୍କ ବିରୁଦ୍ଧରେ ମୋଗଲ ବାହିନୀକୁ ପଠାଇଲେ ତାଙ୍କର ଅନ୍ୟତମ ଶ୍ରେଷ୍ଠ ସେନାପତି ରାଜପୁତ ଜୟ ସିଂହଙ୍କ ନେତୃତ୍ୱରେ । ଏଥର ଶିବାଜୀ ବଶ୍ୟତା

ସ୍ୱୀକାର କରିବାକୁ ରାଜି ହେଲେ । ୧୬୬୫ ଖ୍ରୀଷ୍ଟାବ୍ଦରେ ପୁରନ୍ଦରରେ ଯେଉଁ ଶାନ୍ତି ଚୁକ୍ତି ହେଲା, ସେଇ ଚୁକ୍ତିର ସର୍ତ୍ତ ଅନୁଯାୟୀ ସେ ତାଙ୍କର ସର୍ବବୃହତ୍ ଦୁର୍ଗଟିକୁ ମୋଗଲମାନଙ୍କୁ ଛାଡ଼ି ଦେଲେ । ମୋଗଲମାନଙ୍କର ଅଧୀନରେ କାମ କରିବା ପାଇଁ ତାଙ୍କୁ ପ୍ରତିଶ୍ରୁତି ଦେବାକୁ ପଡ଼ିଲା । ଜୟ ସିଂହ ଶିବାଜୀଙ୍କୁ ବୁଝେଇ ସୁଝେଇ ରାଜି କରେଇଲେ ଆଗ୍ରାକୁ ଯାଇ ସମ୍ରାଟଙ୍କୁ ସମ୍ମାନ ଜଣାଇବାକୁ । ଏ କାର୍ଯ୍ୟ କଲେ, ଶିବାଜୀ ପାତ୍‌ଶାହ୍‌ଙ୍କର ଅନୁଗ୍ରହ ଲାଭ କରିବେ ବୋଲି ସେ ପ୍ରତିଶ୍ରୁତି ଦେଲେ । କିନ୍ତୁ ଶିବାଜୀ ନିଜ ପୁତ୍ରକୁ ନେଇ ମୋଗଲ ରାଜଧାନୀରେ ଉପସ୍ଥିତ ହେଲା କ୍ଷଣି, ତାଙ୍କୁ ବନ୍ଦୀ କରାଗଲା । ଅନେକ କଷ୍ଟରେ, ବହୁ କୂଟକୌଶଳ ପ୍ରୟୋଗ କରି ଶିବାଜୀ ପୁତ୍ର ସହ ବନ୍ଦୀଶାଳାରୁ ମୁକ୍ତ ହୋଇ ଆଗ୍ରାରୁ ପଳେଇବାକୁ ସକ୍ଷମ ହୋଇଥିଲେ । ଦେଶକୁ ଫେରି ଆସିଲା ପରେ ୧୬୭୦ ଖ୍ରୀଷ୍ଟାବ୍ଦରେ ପୁଣି ସେ ଆକ୍ରମଣ ଆରମ୍ଭ କରି ଦେଇଥିଲେ । ପୁଣି ଦ୍ୱିତୀୟ ଥର ସେ ସୁରାଟ ବନ୍ଦର ଆକ୍ରମଣ କଲେ । ଏହା ଫଳରେ ବିଦେଶୀ ବଣିକମାନେ ସେଠାରେ ବ୍ୟବସାୟ କରିବାକୁ, ଏପରିକି ଜାହାଜ ଭିଡ଼ିବାକୁ ସାହସ ପାଇଲେ ନାହିଁ । ବନ୍ଦରଟିର ଅର୍ଥନୈତିକ ଗୁରୁତ୍ୱ ଏହା ଦ୍ୱାରା ହ୍ରାସ ପାଇଥିଲା ।

ଏହି ସମୟରେ ଶିବାଜୀ ବାରମ୍ବାର ବିଜାପୁର, ବେରାର, ଖାନ୍ଦେଶ, ଗୁଜରାଟ ଓ କର୍ଣ୍ଣାଟକ ଅଞ୍ଚଳରେ ଚଢ଼ାଉ କଲେ । ହାଲୁକା ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ମରହଟ୍ଟା ଅଶ୍ୱାରୋହୀ ବାହିନୀ ସେତେବେଳେ ତା'ର ଦ୍ରୁତ ଚଳାଚଳ ପାଇଁ ବିଖ୍ୟାତ ଥିଲେ : ମୋଗଲ ସୈନ୍ୟମାନଙ୍କର ଗୋଟିଏ ଗୋଟିଏ ବିଚ୍ଛିନ୍ନ ବାହିନୀକୁ ଅତର୍କିତ ଆକ୍ରମଣ କରି ଏବଂ ସବୁ କିଛି ଲୁଣ୍ଠନ କରି ବିଦ୍ୟୁତ ବେଗରେ ସେମାନେ କୁଆଡ଼େ ଅଦୃଶ୍ୟ ହୋଇ ଯାଉଥିଲେ । ଏହି ସମୟର ସମସ୍ତ ଭାରତୀୟ ଶାସକମାନଙ୍କର ସୈନ୍ୟଦଳ ପରି ଶିବାଜୀଙ୍କ ସେନାବାହିନୀ ମଧ୍ୟ ଭଡ଼ାଟିଆ ସୈନ୍ୟମାନଙ୍କୁ ନେଇ ଗଠିତ ଥିଲା । ତେବେ ଶିବାଜୀଙ୍କ ସୈନ୍ୟମାନଙ୍କୁ ସିଧାସଳଖ ରାଜକୋଷରୁ ବେତନ ଦିଆଯାଉଥିଲା, ଜାଗିରଦାର ସେନାଧ୍ୟକ୍ଷମାନେ ବ୍ୟକ୍ତିଗତ ଭାବେ ସେମାନଙ୍କୁ ବେତନ ଦେଉ ନଥିଲେ । ତାଙ୍କ ସୈନ୍ୟଦଳଙ୍କ ମଧ୍ୟରେ ପ୍ରବର୍ତ୍ତିତ ହୋଇଥିଲା କଠୋର ସାମରିକ ନିୟମକାନୁନ୍ ଏବଂ ଉପରିକମାନଙ୍କୁ ମାନିକି ଚଳିବାର ନୀତି । ପ୍ରତ୍ୟେକ ସେନାପତି ଏବଂ ସୈନିକ ସୁନିର୍ଦ୍ଦିଷ୍ଟ ହାରରେ ବେତନ ପାଉଥିଲେ । ଯୁଦ୍ଧାଭିଯାନ ପରିଚାଳନା ସମୟରେ ଅବଶ୍ୟ, ଅର୍ଥାତ୍ ବର୍ଷ ମଧ୍ୟରୁ ଆଠ ମାସ — ସୈନ୍ୟମାନେ ଏବଂ ସେନାପତିଗଣ ବେତନ ପାଉ ନଥିଲେ । ସେମାନେ ସେତେବେଳେ ବିଜିତ ଅଞ୍ଚଳମାନଙ୍କ ଜନସାଧାରଣଙ୍କ ଖର୍ଚ୍ଚରେ ଜୀବନଯାତ୍ରା ନିର୍ବାହ କରୁଥିଲେ । ତେବେ ଶତ୍ରୁର ଭୂଖଣ୍ଡସ୍ଥ ଜନସାଧାରଣଙ୍କ ଭଳି ମରହଟ୍ଟା କୃଷକମାନଙ୍କର ଧନସଂପଦ ଲୁଣ୍ଠନ କରିବା କିନ୍ତୁ ନିଷିଦ୍ଧ ଥିଲା । ବର୍ଷାକାଳରେ ମରହଟ୍ଟା ବାହିନୀ ଘରକୁ ଫେରି ଆସିଲା ବେଳେ ସମସ୍ତ ଲୁଣ୍ଠିତ ଦ୍ରବ୍ୟ ରାଜକୋଷକୁ ସମର୍ପଣ କରିବା ଥିଲା ବାଧ୍ୟତାମୂଳକ । ତା'ପରେ ଏହି ଲୁଣ୍ଠିତ ଦ୍ରବ୍ୟ ଯୁଦ୍ଧକାଳୀନ ସମୟ ପାଇଁ ନିର୍ଦ୍ଦିଷ୍ଟ ପ୍ରତ୍ୟେକର ବେତନ ହାର ସହିତ ସଙ୍ଗତି ରଖି ସମସ୍ତ ଯୋଦ୍ଧାମାନଙ୍କ ମଧ୍ୟରେ ଭାଗ କରି ଦିଆଯାଉଥିଲା । ଅବଶିଷ୍ଟ ଅଂଶ ଜମା ପଡ଼ୁଥିଲା ରାଜକୋଷରେ ।

ମୋଗଲ ସାମ୍ରାଜ୍ୟ ଓ ବିଜାପୁର ରାଜ୍ୟରୁ ବିଚ୍ଛିନ୍ନ ସ୍ୱାଧୀନ ଓ ସୁନିର୍ଭର ଏକ ମରହଟ୍ଟା ରାଷ୍ଟ୍ର ଗଠନ କରିବା ପରେ ୧୬୭୪ ଖ୍ରୀଷ୍ଟାବ୍ଦରେ ଶିବାଜୀ ପୁନାରେ ରାଜା ହିସାବରେ ଅଭିଷିକ୍ତ ହେଲେ । ଉତ୍ପୀଡ଼କମାନଙ୍କ କବଳରୁ ନିଜ ମାତୃଭୂମିକୁ ଯେଉଁମାନେ ମୁକ୍ତ କରିଥିଲେ, ସେଇ ମରହଟ୍ଟାମାନଙ୍କର ଜାତୀୟ ସଚେତନତା ଏହି ରାଷ୍ଟ୍ର ପ୍ରତିଷ୍ଠା ଫଳରେ ଆଉରି ଶକ୍ତିଶାଳୀ ହେଲା ।

ମହାରାଷ୍ଟ୍ରରେ (ମରହଟ୍ଟାମାନଙ୍କର ମୂଳଭୂଖଣ୍ଡ) ଶିବାଜୀ ରାଜସ୍ୱ ଧାର୍ଯ୍ୟ କରିଥିଲେ ଅପେକ୍ଷାକୃତ ସ୍ୱଳ୍ପ ହାରରେ । ସେ ରାଜକୋଷର ଅର୍ଥାଭାବ ପୂରଣ କରୁଥିଲେ ଲୁଣ୍ଠିତ ଦ୍ରବ୍ୟ ସାହାଯ୍ୟରେ ଏବଂ ଚୌଠ (ତଥାକଥିତ ଉପଦ୍ରବ ଏଡ଼େଇବା ପାଇଁ ଏକ ପ୍ରକାରର ଉତ୍କୋଚ । ଆଓରଙ୍ଗଜେବଙ୍କ ଦ୍ୱାରା ନିଯୁକ୍ତ ବିଭିନ୍ନ ଅଞ୍ଚଳର ଶାସନକର୍ତ୍ତାମାନେ ମରହଟ୍ଟାମାନଙ୍କର ଅତର୍କିତ ଆକ୍ରମଣରୁ ରକ୍ଷା ପାଇବା ଆଶାରେ ଏହି ଅର୍ଥ ମରହଟ୍ଟାମାନଙ୍କୁ ଦେଉଥିଲେ । ଏହି ଶାସନକର୍ତ୍ତାମାନେ ସେମାନଙ୍କ ଶାସିତ ଅଞ୍ଚଳ ପାଇଁ ଆଗେ ମୋଗଲମାନଙ୍କୁ ଯେଉଁ ପରିମାଣର ରାଜସ୍ୱ ଦେଉଥିଲେ ମରହଟ୍ଟାମାନେ ତା'ର ଏକ ଚତୁର୍ଥାଂଶ ବା ଚୌଠ ଦାବି କରୁଥିଲେ ସେମାନଙ୍କ ପାଖରୁ) । ଶିବାଜୀ ଏହି ଚୌଠକୁ ନିୟମିତ ଦାନ ବା ରାଜସ୍ୱରେ ପରିଣତ କରୁଥିଲେ । ଅଷ୍ଟାଦଶ ଶତାବ୍ଦୀରେ ମରହଟ୍ଟାମାନେ ଏହା ଛଡ଼ା ଆଉ ଏକ ଅତିରିକ୍ତ କର ପ୍ରବର୍ତ୍ତନ କରିଥିଲେ, ଏହାର ପରିମାଣ ଥିଲା କୌଣସି ଏକ ଅଞ୍ଚଳର ମୋଟ ରାଜସ୍ୱର ଏକଦଶମାଂଶ । ଏହାକୁ କୁହାଯାଉଥିଲା ସର୍‌ଦେଶମୁଖୀ ।

୧୬୭୭ ଖ୍ରୀଷ୍ଟାବ୍ଦରେ ଶିବାଜୀ ଗୋଲ୍‌କୋଣ୍ଡା ସହିତ ସନ୍ଧି ଚୁକ୍ତିରେ ଆବଦ୍ଧ ହୋଇ କର୍ଣ୍ଣାଟକ ଆକ୍ରମଣ କଲେ । ତାଙ୍କ ସୈନ୍ୟବାହିନୀର ପଛେ ପଛେ ଏଥର ଯାଇଥିଲେ ଧ୍ୱଂସସାଧକ ଏବଂ ଲୁଣ୍ଠନକାରୀମାନଙ୍କର କେତୋଟି ବିଶେଷ ବାହିନୀ । ଯେଉଁ ପଥ ଦେଇ ଏହି ବାହିନୀଗୁଡ଼ିକ ଯାଉଥିଲେ, ସେଠାକାର ସବୁ କିଛିକୁ ଧ୍ୱଂସ କରି ଦେଉଥିଲେ । ମରହଟ୍ଟା ବାହିନୀ ଆସୁଛନ୍ତି ଶୁଣିଲା କ୍ଷଣି ଆକ୍ରାନ୍ତ ଅଞ୍ଚଳର ଅଧିବାସୀମାନେ ସବୁକିଛି ଛାଡ଼ି ପ୍ରାଣ ନେଇ ପଳାଇ ଯାଉଥିଲେ । ନିଛକ୍ ଆକ୍ରମଣର ଉଦ୍ଦେଶ୍ୟ ନେଇ ମରହଟ୍ଟା ବାହିନୀଗୁଡ଼ିକ ଅନ୍ୟ ରାଜ୍ୟମାନଙ୍କୁ ସେତେବେଳେ ଯାଉଥିଲେ । ସେମାନଙ୍କ ଚରମ ଲକ୍ଷ୍ୟ ଥିଲା ନୂଆ ନୂଆ ଭୂଖଣ୍ଡ ଦଖଲ କରି ନିଜ ରାଜ୍ୟର ଅନ୍ତର୍ଭୁକ୍ତ କରିବା ।

ଶିବାଜୀଙ୍କ ଅମଳରେ ତାଙ୍କ ସହଯୋଦ୍ଧାମାନେ ବୈଷୟିକ ଲାଭ କ୍ଷତିର ଚିନ୍ତା ନକରି ସେମାନଙ୍କ ଦେଶବାସୀଙ୍କର ଜାତୀୟ ଓ ଧର୍ମୀୟ ମୁକ୍ତି ଆଦର୍ଶରେ ଅନୁପ୍ରାଣିତ ହୋଇ ଯୁଦ୍ଧ କରୁଥିଲେ । କାରଣ, ସେମାନେ ଯଦି ମୋଗଲ ବାହିନୀରେ ଚାକିରି କରିଥାନ୍ତେ, ତାହେଲେ ସେମାନେ ଅନେକ ଆର୍ଥିକ ସ୍ୱାଚ୍ଛନ୍ଦ୍ୟ ଲାଭ କରିଥାନ୍ତେ । କିନ୍ତୁ କ୍ରମଶଃ ଭୂସଂପତ୍ତି ଏବଂ କ୍ଷମତାର ସ୍ୱାଦ ପାଇ ସେମାନେ ପରିଣତ ହେଲେ – ସେତେବେଳେ ଯେପରି ହେବାର କଥା ସେଇପରି – ସାମନ୍ତ ଭୂସ୍ୱାମୀରେ । ଶିବାଜୀଙ୍କ ନିଜସ୍ୱ ପୁତ୍ର ଶମ୍ଭାଜୀ ମଧ୍ୟ ମାତି ଗଲେ ସ୍ୱଚ୍ଛନ୍ଦ ଓ ବିଳାସବହୁଳ ଜୀବନଯାପନରେ । ୧୬୮୦ ଖ୍ରୀଷ୍ଟାବ୍ଦରେ ଶିବାଜୀଙ୍କ ମୃତ୍ୟୁ ପରେ ସିଏ ହେଲେ ମରହଟ୍ଟା ରାଜ୍ୟର ଅଧିପତି ।

## ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ
## ଗଣ ଅଭ୍ୟୁତ୍ଥାନ

ମୋଗଲ ସାମ୍ରାଜ୍ୟର ବିଭିନ୍ନ ଅଂଶରେ ସେତେବେଳେ ବିଭିନ୍ନ ଗଣ ଅଭ୍ୟୁତ୍ଥାନ କ୍ରମାଗତ ଦେଖି ଉଠୁଥିଲା । ଏହିସବୁ ଅଭ୍ୟୁତ୍ଥାନର ଚରିତ୍ର ଥିଲା ଭିନ୍ନ ଭିନ୍ନ ଏବଂ ଏସବୁ ମଧ୍ୟରେ ସାମାନ୍ୟ ସମନ୍ୱୟ ବା ସଂଯୋଗ ଥିଲା । ଏସବୁ ପଛରେ ଚାଳିକା ଶକ୍ତି ଏବଂ ଲକ୍ଷ୍ୟ ଆଦି ଥିଲା ଭିନ୍ନ ଭିନ୍ନ ଏବଂ ବିଚିତ୍ର । ଯଥା, ଦୃଷ୍ଟାନ୍ତ ସ୍ୱରୂପ, ବିଦ୍ରୋହୀ ଜାଠମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ କୃଷକ, ଶିଖ୍ ଧର୍ମାନ୍ଦୋଳନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ ସହରର ଜନସାଧାରଣ । ମରହଟ୍ଟା, ରାଜପୁତ

ଓ ଶିଖ୍‌ମାନେ ଅତ୍ୟାଚାର ବିରୁଦ୍ଧରେ ଓ ସେମାନଙ୍କ ଧର୍ମବିଶ୍ୱାସ ଅକ୍ଷୁଣ୍ଣ ରଖିବା ସପକ୍ଷରେ ଯେମିତି ସଂଗ୍ରାମକୁ ଅତ୍ୟନ୍ତ ଗୁରୁତ୍ୱ ଦେଇଥିଲେ, ସ୍ୱାଧୀନତା ଅର୍ଜନରେ ଉଦ୍ୟୋଗୀ ଆଫ୍‌ଗାନମାନଙ୍କ ନିକଟରେ ସେଇମିତି ଏହି ଧର୍ମବିଶ୍ୱାସ ସମସ୍ୟାଟି ଥିଲା ଅନେକ ପରିମାଣରେ ଅବାନ୍ତର । ଆଫ୍‌ଗାନମାନେ ବରଂ ଆଓରଙ୍ଗଜେବଙ୍କ ଭଳି ସୁନ୍ନି ମତାବଲମ୍ବୀ ମୁସଲମାନ ଥିଲେ । ଏହିସବୁ ବିଦ୍ରୋହ ଓ ଅଭ୍ୟୁତ୍‌ଥାନ ଘଟିଥିଲା ବିଭିନ୍ନ ଜାତିଗୋଷ୍ଠୀ ମଧ୍ୟରେ ଜାତୀୟ ଚେତନାର ଉନ୍ମେଷ ଘଟିବା ଫଳରେ । ଆଗ୍ରା ଓ ଦିଲ୍ଲୀ ଅଞ୍ଚଳରେ ଜାଠ କୃଷକମାନେ ଉଚ୍ଚ ହାରରେ କର ଧାର୍ଯ୍ୟ କରିବା ବିରୁଦ୍ଧରେ ବିଦ୍ରୋହ କରିଥିଲେ । ସେମାନଙ୍କ ନେତା ଗୋକଲଙ୍କ ଅନୁପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ୧୬୬୯ ଖ୍ରୀଷ୍ଟାବ୍ଦରେ ସେମାନେ କେତୋଟି ଦୁର୍ଗ ନିର୍ମାଣ କରିଥିଲେ ଏବଂ ଆଗ୍ରାରୁ ଦିଲ୍ଲୀକୁ ଯାଇଥିବା ବାଣିଜ୍ୟ ପଥଟିକୁ ବନ୍ଦ କରି ଦେଲେ । ମୋଗଲ ବାହିନୀ ବିରୁଦ୍ଧରେ ଅଧିକ ଦିନ ଯୁଦ୍ଧ ଚଳେଇବା ଜାଠମାନଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ, ଫଳରେ ବୀରୋଚିତ ପ୍ରତିରୋଧ ସତ୍ତ୍ୱେ ସେମାନେ ପରାଜିତ ହେଲେ । ସୈନ୍ୟ ଶିବିରରେ ଗୋକଲଙ୍କୁ ବନ୍ଦୀ କରି ପରେ ତାଙ୍କୁ ଆଗ୍ରାରେ ହତ୍ୟା କରାଗଲା ।

୧୬୭୨ ଖ୍ରୀଷ୍ଟାବ୍ଦରେ ନାର୍‌ନୋଲରେ ସତ୍‌ନାମୀ (ଅର୍ଥାତ୍, ପ୍ରକୃତ ନାମଧାରୀ) ସଂପ୍ରଦାୟ ବିଦ୍ରୋହ କରିଥିଲେ । ଏହି ସଂପ୍ରଦାୟଭୁକ୍ତ ବିଦ୍ରୋହୀ ଜାଠମାନେ ଆଓରଙ୍ଗଜେବଙ୍କୁ କ୍ଷମତାରୁ ଉତ୍‌ଖାତ କରି ନ୍ୟାୟ ଶାସନ ପ୍ରତିଷ୍ଠା କରିବାକୁ ଆଗ୍ରହୀ ଥିଲେ । ଦଶ ହଜାର ମୋଗଲ ସୈନ୍ୟ ବିଶିଷ୍ଟ ଏକ ବାହିନୀ ଏହି ବିଦ୍ରୋହକୁ ଦମନ କରିଥିଲେ । କିନ୍ତୁ ଜାଠମାନଙ୍କର ଅଭ୍ୟୁତ୍‌ଥାନ ପୁଣି ଥରେ ଘଟିଥିଲା ୧୬୮୫ରୁ ୧୬୯୧ ଖ୍ରୀଷ୍ଟାବ୍ଦରେ ଏବଂ ପୁଣି ଥରେ ୧୭୦୪ ଖ୍ରୀଷ୍ଟାବ୍ଦରେ ଚୌରାମନ ନାମକ ଜନୈକ ବ୍ୟକ୍ତିଙ୍କ ନେତୃତ୍ୱରେ ।

ଏଣେ ଇଉସୁଫ୍‌ଜାଇ, ଖଟ୍‌ଟକ କିମ୍ବା ଆଫ୍ରିଦି ସଂପ୍ରଦାୟଗୁଡ଼ିକ ନେତୃତ୍ୱରେ ଆଫ୍‌ଗାନମାନଙ୍କର ବିଦ୍ରୋହ ବାରମ୍ବାର ଦେଖା ଦେଇଥିଲା । ବେଳେ ବେଳେ, ଯଥା, ୧୬୬୭ ଓ ୧୬୭୪ ଖ୍ରୀଷ୍ଟାବ୍ଦରେ, ଆଫ୍‌ଗାନମାନେ ସେମାନଙ୍କ ସଂକୀର୍ଣ୍ଣ ଗିରିପଥଗୁଡ଼ିକ ମଧ୍ୟରେ ଯୁଦ୍ଧ କରି ଗୋଟିଏ ଗୋଟିଏ ମୋଗଲ ବାହିନୀକୁ ଧ୍ୱଂସ କରି ଦେଇ ପାରିଥିଲେ । କିନ୍ତୁ ଏହା ପରେ ଆଓରଙ୍ଗଜେବ ନିଜେ ତାଙ୍କ ସେନାବାହିନୀର ସର୍ବାଧିନାୟକ ପଦ ଗ୍ରହଣ କଲେ ଏବଂ କେତେକ ଆଫ୍‌ଗାନ ଉପଦଳୀୟ ନେତାଙ୍କୁ ଉତ୍କୋଚ ଦେଲେ ଏବଂ ବିଭିନ୍ନ ଗୋଷ୍ଠୀର ଆଫ୍‌ଗାନ ସେନାଧ୍ୟକ୍ଷଙ୍କ ମଧ୍ୟରେ ବିରୋଧ ସୃଷ୍ଟି କରି ଦେଲେ । ଫଳରେ ୧୬୭୬ ଖ୍ରୀଷ୍ଟାବ୍ଦର ମଝାମଝି ବେଳକୁ ଆଫ୍‌ଗାନ ଉପଜାତିମାନଙ୍କର ଐକ୍ୟ ଭାଙ୍ଗି ଧୂଳିସାତ୍ ହୋଇଗଲା । ଏକମାତ୍ର ଜନୈକ ଏକନିଷ୍ଠ ଦେଶପ୍ରେମୀ ଓ ବିଶିଷ୍ଟ କବି କୁଶ୍‌ହଲ ଖାଁ ମୋଗଲମାନଙ୍କ ବିରୁଦ୍ଧରେ ସଂଗ୍ରାମ ଚଳେଇ ଯାଇଥିଲେ ଏବଂ ଖଟ୍‌ଟକ ଭୂଖଣ୍ଡରେ ଏକ ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା କରିଥିଲେ । କିନ୍ତୁ ତାଙ୍କ ମୃତ୍ୟୁ ପରେ (୧୬୮୯ ଖ୍ରୀଷ୍ଟାବ୍ଦରେ) ଆଭ୍ୟନ୍ତରୀଣ କଳହ ବିବାଦ ହେତୁ ଏହି ରାଜ୍ୟର ପତନ ଘଟିଥିଲା । ଏପରିକି ଆଜି ମଧ୍ୟ ଆଫ୍‌ଗାନମାନେ କବି ଓ ବୀରନାୟକ ହିସାବରେ କୁଶ୍‌ହଲ ଖାଁଙ୍କ ସ୍ମୃତି ପ୍ରତି ଶ୍ରଦ୍ଧା ନିବେଦନ କରିଥାନ୍ତି ।

ଶିଖ୍‌ମାନେ ମଧ୍ୟ ମୋଗଲମାନଙ୍କ ବିରୁଦ୍ଧରେ ଆମରଣ ସଂଗ୍ରାମ ଚଳେଇ ଯାଇଥିଲେ । କ୍ରମଶଃ ଅଧିକରୁ ଅଧିକ ପଞ୍ଜାବର ଜନସାଧାରଣଙ୍କର ବିଭିନ୍ନ ଅଂଶ ଶିଖ୍‌ମାନଙ୍କ ଦଳରେ ଯୋଗ ଦେବାକୁ ଲାଗିଲେ । ଶିଖ୍‌ମାନଙ୍କର ନବମ ଗୁରୁ ତେଗ୍ ବାହାଦୂର ଏହି ବିଦ୍ରୋହୀମାନଙ୍କୁ ଐକ୍ୟବଦ୍ଧ କରି

ଆନନ୍ଦପୁରରେ ଏକ ଦୁର୍ଗ ନିର୍ମାଣ କରିଥିଲେ । ତାଙ୍କ ଆହ୍ୱାନ ପ୍ରତି ସୁପ୍ରତିକ୍ରିୟା ପ୍ରଦର୍ଶନ କରିଥିଲେ ପଞ୍ଜାବୀ କୃଷକଗଣ । କିନ୍ତୁ ଇତି ମଧ୍ୟରେ ସେ ଧରା ପଡ଼ିଯାଇଥିଲେ ମୋଗଲମାନଙ୍କ ହାତରେ ଏବଂ ୧୬୭୫ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀରେ ତାଙ୍କୁ ପ୍ରାଣଦଣ୍ଡ ଦିଆଯାଇଥିଲା । ତାଙ୍କ ପୁତ୍ର ଗୁରୁ ଗୋବିନ୍ଦ ସମଗ୍ର ଶିଖ୍ ଆନ୍ଦୋଳନକୁ ସାମରିକ ଶିକ୍ଷାର ଭିତ୍ତିରେ ଐକ୍ୟବଦ୍ଧ କଲେ । ଏହା ପରେ ଶିଖ୍ ଆନ୍ଦୋଳନ କେବଳ ବଣିକ ଓ କାରିଗରମାନଙ୍କର ଏକ ସଂପ୍ରଦାୟଗତ ଧର୍ମୀୟ ଆନ୍ଦୋଳନ ହୋଇ ଆଉ ରହିଲା ନାହିଁ, ଏହା ଗଢ଼ି ଉଠିଲା ବିଦ୍ରୋହୀ କୃଷକମାନଙ୍କର ସାମନ୍ତବାଦ ବିରୋଧୀ ମତାଦର୍ଶ ଭିତ୍ତିକ ଏକ ଆନ୍ଦୋଳନ ହିସାବରେ । ଗୁରୁ ଗୋବିନ୍ଦ ଘୋଷଣା କଲେ, ଏହା ପରେ ଗୁରୁଙ୍କ କର୍ତ୍ତୃତ୍ୱ ସମଗ୍ର ଶିଖ୍ ସଂପ୍ରଦାୟ ଉପରେ (ଖାଲସା) ଅର୍ପିତ ହେବ । ଶିଖ୍‌ମାନଙ୍କ ନିକଟରେ ଦାବୀ କରାଗଲା ସେମାନଙ୍କର ପୂର୍ବବର୍ତ୍ତୀ ଜାତି ପଂକ୍ତି ଓ ଧର୍ମୀୟ ଆନୁଗତ୍ୟକୁ ବର୍ଜନ କରିବା ପାଇଁ ଏବଂ କେବଳ ଅନ୍ୟାନ୍ୟ ଶିଖ୍‌ମାନଙ୍କ ସହିତ ସେମାନଙ୍କ ଐକ୍ୟ ଆଉ ସଂଯୁକ୍ତିକୁ ସ୍ୱୀକାର କରିବା ପାଇଁ । ଶିଖ୍ ଧର୍ମାବଲମ୍ବୀମାନଙ୍କ ପାଇଁ ବିଶେଷ ନିୟମକାନୁନ୍ ପ୍ରବର୍ତ୍ତନ କରାଗଲା ଏବଂ ଏହା ଫଳରେ ସେମାନେ ନିର୍ଭୁଲ ଭାବେ ହିନ୍ଦୁ ଏବଂ ମୁସଲମାନମାନଙ୍କ ଠାରୁ ପୃଥକ୍ ବୋଲି ଚିହ୍ନିତ ହେଲେ । ତା'ପରେ ସେମାନେ ବିଶେଷ ଧରଣର ପୋଷାକ ପିନ୍ଧିଲେ, ଲମ୍ବବାଳ ରଖିଲେ ଏବଂ ବିଶେଷ ଧର୍ମୀୟ ପ୍ରତୀକ ଚିହ୍ନ ବ୍ୟବହାର କଲେ ।

ଉପରୋକ୍ତ ଏହିସବୁ ବ୍ୟବସ୍ଥା ଗ୍ରହଣ କରିବାରୁ ଗୁରୁ ଗୋବିନ୍ଦ ସିଂହ ଶିଖ୍ ସଂପ୍ରଦାୟକୁ ପ୍ରବଳ ଏକ ଶକ୍ତିଶାଳୀ ସଂଗଠନରେ ପରିଣତ କରିବାକୁ ସକ୍ଷମ ହୋଇଥିଲେ ଏବଂ ଏହା ଫଳରେ ଏହି ସଂପ୍ରଦାୟ ପଞ୍ଜାବରେ ମୋଗଲ ରାଜ ଶକ୍ତି ବିରୁଦ୍ଧରେ ଗୁରୁତର ବିପଦର କାରଣ ହୋଇ ଦେଖା ଦେଲା । ଶିଖ୍ ଆନ୍ଦୋଳନର ମୂଳ ଭିତ୍ତି ଅବଶ୍ୟ ଥିଲେ ପଞ୍ଜାବୀମାନେ, ତେବେ ଭାରତର ଯେକୌଣସି ଅନ୍ୟ ଅଞ୍ଚଳର ଯେକୌଣସି ଲୋକ ପକ୍ଷରେ ଏହି ସଂପ୍ରଦାୟରେ ଯୋଗ ଦେବାରେ ବାଧା ନଥିଲା । ଗୁରୁ ଗୋବିନ୍ଦ ସିଂହ ପଞ୍ଜାବରେ କେତୋଟି ଦୁର୍ଗ ନିର୍ମାଣ କରାଇଲେ, ପାହାଡ଼ୀ ଅଞ୍ଚଳର ଛୋଟ ଛୋଟ ରାଜା ଓ ଜମିଦାରମାନଙ୍କ ସହିତ ସନ୍ଧି ଚୁକ୍ତିରେ ଆବଦ୍ଧ ହେଲେ । ତେବେ ଏସବୁ ସତ୍ତ୍ୱେ ମୋଗଲ ସେନାବାହିନୀଗୁଡ଼ିକର ଆକ୍ରମଣକୁ ପ୍ରତିରୋଧ କରିବା ପାଇଁ ସେମାନେ ସକ୍ଷମ ହୋଇ ନଥିଲେ । ଦୀର୍ଘ ଏବଂ ଦୃଢ଼ ସଂକଳ୍ପବଦ୍ଧ ପ୍ରବଳ ପ୍ରତିରୋଧ ପରେ ଆନନ୍ଦପୁରର ପତନ ଘଟିଲା ଏବଂ ଗୁରୁ ଗୋବିନ୍ଦ ପଳେଇବାକୁ ବାଧ୍ୟ ହେଲେ । ଏହା ପରେ ଦୀର୍ଘ ଦିନ ଧରି ତାଙ୍କୁ ଇତସ୍ତତଃ ଘୁରି ବୁଲିବାକୁ ପଡ଼ିଥିଲା ଏବଂ ୧୭୦୮ ଖ୍ରୀଷ୍ଟାବ୍ଦରେ ସେ ନିହତ ହୋଇଥିଲେ । କିନ୍ତୁ ଏସବୁ ସତ୍ତ୍ୱେ ଶିଖ୍‌ମାନେ ସେମାନଙ୍କ ସଂଗ୍ରାମ ଚଳେଇ ଯାଇଥିଲେ ।

ମୋଗଲ ବାହିନୀ ମଧ୍ୟରେ ଯେଉଁମାନେ ସର୍ବଦା ଶକ୍ତିର ଉତ୍ସ ଭଳି ଥିଲେ, ସେଇ ରାଜପୁତମାନଙ୍କ ମଧ୍ୟରେ ଏହି ସମୟରେ ଅସନ୍ତୋଷ ଦେଖା ଦେଲା । ୧୬୭୮ ଖ୍ରୀଷ୍ଟାବ୍ଦରେ ଆଓରଙ୍ଗଜେବଙ୍କ ଦରବାରର ଏକ ପୂର୍ବତନ ଉଚ୍ଚ ପଦସ୍ଥ ଓମରାହ୍ ମାରୋୟାର ରାଜ୍ୟର ରାଜାଙ୍କ ମୃତ୍ୟୁ ଘଟିଲେ, ଏହି ରାଜ୍ୟରେ ମୋଗଲ ସମ୍ରାଟଙ୍କ ପୃଷ୍ଠପୋଷିତ ବ୍ୟକ୍ତି ଓ ମୃତ ରାଜାଙ୍କ ଶିଶୁ ପୁତ୍ରଙ୍କ ସମର୍ଥକଙ୍କ ମଧ୍ୟରେ ଯୁଦ୍ଧ ଲାଗିଗଲା । ପ୍ରସଙ୍ଗତଃ, ଉଲ୍ଲେଖଯୋଗ୍ୟ ଯେ, ମାରୋୟାର ରାଜ୍ୟର ଏହି ଶିଶୁ ପୁତ୍ର ରାଜ୍ୟରେ ମୋଗଲ ଉତ୍ପୀଡ଼ନ ବିରୁଦ୍ଧରେ ବିଦ୍ରୋହୀମାନଙ୍କର ପ୍ରତୀକ ନେତା ରୂପେ ଗଣ୍ୟ ଥିଲେ । ଫଳରେ ମାରୋୟାର ବିରୁଦ୍ଧରେ ଆଓରଙ୍ଗଜେବ ସେନାବାହିନୀ ପ୍ରେରଣ

କଲେ । ଏହି ସେନାବାହିନୀ ରୀତିମତ ରାଜ୍ୟଟିର ଗ୍ରାମଗୁଡ଼ିକୁ ଧ୍ୱଂସ କରି ଦେଲେ, ସହରଗୁଡ଼ିକୁ ଲୁଟ୍ କରିଲେ ଏବଂ ହିନ୍ଦୁ ମନ୍ଦିରଗୁଡ଼ିକୁ ବିନଷ୍ଟ କରି ଦେଲେ । ଠିକ୍ ଏହି ସମୟରେ ମାରୋୟାରର ପ୍ରତିବେଶୀ ରାଜପୁତ ମେବାର ରାଜ୍ୟର ରାଣା ରାଜ ସିଂହ ମଧ୍ୟ ବିଦ୍ରୋହ କରିଥିଲେ । ମେବାର ବିରୁଦ୍ଧରେ ଆଓରଙ୍ଗଜେବ ପଠାଇଲେ ପୁତ୍ର ଆକବର ଓ ତାଙ୍କ ସେନାବାହିନୀକୁ । କିନ୍ତୁ ମେବାର ସୈନ୍ୟ ଆକବରଙ୍କ ବାହିନୀକୁ ପରାସ୍ତ କରି ଦେଲେ ଏବଂ ରାଜ ସିଂହ ଆକବରଙ୍କ ସହିତ ଗୋପନରେ ଏକ ଚୁକ୍ତିରେ ଆବଦ୍ଧ ହେଲେ । ଏହି ଚୁକ୍ତି ଅନୁଯାୟୀ ଆକବର ଯଦି ତାଙ୍କ ପିତାଙ୍କୁ ସିଂହାସନରୁ ଉତ୍ଖାତ କରିବାକୁ ଚେଷ୍ଟା କରନ୍ତି, ତେବେ ରାଜପୁତମାନେ ତାଙ୍କୁ ସାହାଯ୍ୟ କରିବେ । ଏହା ପରେ ଆକବର ପିତାଙ୍କ ବିରୁଦ୍ଧରେ ବିଦ୍ରୋହ କଲେ, କିନ୍ତୁ ଧୂର୍ତ୍ତ ଆଓରଙ୍ଗଜେବ ଆକବର ଓ ରାଜପୁତଙ୍କ ମଧ୍ୟରେ ମୈତ୍ରୀ ସମ୍ଭାବନାକୁ ନଷ୍ଟ କରି ଦେଇଥିଲେ । ଏହା ପରେ ଆକବର ପଳାଇ ଯାଇ ମରହଟ୍ଟାମାନଙ୍କର ଆଶ୍ରୟ ନେଇଥିଲେ ।

ମେବାର ରାଜ୍ୟ ସହିତ ଆଓରଙ୍ଗଜେବ ଏଥର ସନ୍ଧି କଲେ । ତେବେ ମାରୋୟାର ମୋଗଲମାନଙ୍କ ବିରୁଦ୍ଧରେ ସଂଗ୍ରାମ ଚଳେଇ ଯାଇଥିଲା ୧୭୦୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ରାଜପୁତମାନଙ୍କର ଦୁଇଟି ବୃହତ୍ତମ ରାଜ୍ୟର ସାମନ୍ତବାଦୀ ବିଚ୍ଛିନ୍ନତା ସେମାନଙ୍କ ଐକ୍ୟବଦ୍ଧ ସଂଗ୍ରାମ ପଥରେ ବାଧା ହୋଇ ଦେଖା ଦେଇଥିଲା । ତେବେ ରାଜପୁତମାନଙ୍କ ବିରୁଦ୍ଧରେ ଅଭିଯାନ ପରିଚାଳନା କରିବାକୁ ଯାଇ ମୋଗଲ ବାହିନୀ କିଛି ପରିମାଣରେ ଦୁର୍ବଳ ହୋଇ ପଡ଼ିଥିଲା । କାରଣ ରାଜସ୍ଥାନରେ ସେନାବାହିନୀର ବଡ଼ ଏକ ଅଂଶ ଥାନାଦାରି କାମରେ ନିଯୁକ୍ତ ରହିଥିବାରୁ ସେଇ ଅଂଶଟିକୁ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ନିୟୋଗ କରିବା ମୋଗଲମାନଙ୍କ ପକ୍ଷରେ ସମ୍ଭବ ନଥିଲା ।

## ବିଜାପୁର ଏବଂ ଗୋଲ୍କୋଣ୍ଡା ବିଜୟ

ଗଣ ଅଭ୍ୟୁତ୍ଥାନଗୁଡ଼ିକୁ ଦମନ କରିବା ପାଇଁ ପ୍ରଚୁର ଅର୍ଥର ପ୍ରୟୋଜନ ପଡ଼ୁଥିଲା । ତେଣୁ ଆଓରଙ୍ଗଜେବ ତାଙ୍କ ରାଜକୋଷ ପୂର୍ଣ୍ଣ କରିବା ନିମିତ୍ତ ମନସ୍ଥ କଲେ ଏବଂ ଏହି ଉଦ୍ଦେଶ୍ୟରେ ଆକ୍ରମଣ କଲେ ବିଜାପୁର ରାଜ୍ୟଟିକୁ । ବିଜାପୁରର ରାଜଧାନୀ ଅବରୁଦ୍ଧ ହେଲା ଏବଂ ଆଖପାଖର ଅଞ୍ଚଳଗୁଡ଼ିକ ବିଧ୍ୱସ୍ତ ହୋଇଗଲା । ଦୁର୍ଗକୁ କେନ୍ଦ୍ର କରି ଗଠିତ ରାଜଧାନୀ ଦୀର୍ଘ ଅଠର ମାସ କାଳ ଅବରୋଧ ମଧ୍ୟରେ ରହିଲା ପରେ ୧୬୮୬ ଖ୍ରୀଷ୍ଟାବ୍ଦରେ ଦୁର୍ଭିକ୍ଷ ଓ ମହାମାରୀ ପୀଡ଼ିତ ପ୍ରତିରୋଧକାରୀମାନଙ୍କର ମନୋବଳ ଭାଙ୍ଗି ପଡ଼ିଲା । ଆତ୍ମସମର୍ପଣ କଲା ପରେ ସମଗ୍ର ସହରଟିକୁ ମୋଗଲ ବାହିନୀ ଲୁଣ୍ଠନ କରି ଧ୍ୱଂସ କରି ଦେଲେ । ଜଳ ସରବରାହ ବ୍ୟବସ୍ଥାକୁ ମଧ୍ୟ ନଷ୍ଟ କରି ଦିଆଗଲା । ଏକଦା ଐଶ୍ୱର୍ଯ୍ୟଶାଳୀ ଘଳଚକ୍ୟଭରା ଏହି ରାଜଧାନୀ ଧ୍ୱଂସ ସ୍ତୂପରେ ପରିଣତ ହେଲା ଏବଂ କାଳକ୍ରମେ ତାକୁ ଗ୍ରାସ କରି ନେଲା ଅରଣ୍ୟ । ଏହା ପରେ ଗୋଲ୍କୋଣ୍ଡାର ପାଳି ପଡ଼ିଲା । ମୋଗଲମାନେ ଗୋଲ୍କୋଣ୍ଡାର ସେନାଧ୍ୟକ୍ଷଙ୍କୁ ଉତ୍କୋଚ ଦେଇ ଦୁର୍ଗ ରାଜଧାନୀକୁ ଦଖଲ କରି ନେଲେ (୧୬୮୭ ଖ୍ରୀଷ୍ଟାବ୍ଦ) । ଖୋଦ୍ ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଗଲା ଗୋଲ୍କୋଣ୍ଡା । ଫଳରେ ଆଓରଙ୍ଗଜେବଙ୍କ ରାଜକୋଷରେ ଐଶ୍ୱର୍ଯ୍ୟର ଅଭାବ ରହିଲା ନାହିଁ ।

ଏହା ଘଟିଥିଲା ସେଇ ସମୟରେ, ଯେତେବେଳେ ମୋଗଲ ସାମ୍ରାଜ୍ୟ ତା'ର ଇତିହାସରେ ବୃହତ୍ତମ ହୋଇଥିଲା । ଏହାର ଅନ୍ତର୍ଭୁକ୍ତ ହୋଇଥିଲା ସମଗ୍ର ଭାରତ ଉପମହାଦେଶଟି । ଦକ୍ଷିଣକୁ ଏହା ବିସ୍ତୃତ ହୋଇଥିଲା ସୁଦୂର ପେନ୍ନୋର ଓ ତୁଙ୍ଗଭଦ୍ରା ନଦୀ ପର୍ଯ୍ୟନ୍ତ ଏବଂ ଉତ୍ତରରେ ତା'ର ଅନ୍ତର୍ଭୁକ୍ତ ଥିଲା କାଶ୍ମୀର ଏବଂ କାବୁଲ ଓ ଗଜ୍‌ନି ସହର ଆଫ୍‌ଗାନ ପ୍ରଦେଶଗୁଡ଼ିକ । କେବଳ କାନ୍ଦାହାରଂ ସେପର୍ଯ୍ୟନ୍ତ ପାରସ୍ୟର ଅନ୍ତର୍ଭୁକ୍ତ ଥିଲା ।

## ମରହଟ୍ଟା ରାଷ୍ଟ୍ରରେ ସାମନ୍ତବାଦର ବିକାଶ

ଶିବାଜୀଙ୍କ ମୃତ୍ୟୁ ପରେ ଯେଉଁସବୁ ଜରୁରୀ ଆଇନ୍‌କାନୁନ୍ ମରହଟ୍ଟାମାନଙ୍କ ରାଜ୍ୟରେ ସାମନ୍ତବାଦୀ ବିକାଶକୁ ସୀମାବଦ୍ଧ କରି ରଖିଥିଲା, ସେସବୁ ଲଘିତ ହେବାକୁ ଲାଗିଲା । ମରହଟ୍ଟା ସେନାପତିମାନେ ସେନାବାହିନୀ ଦ୍ୱାରା ଲୁଣ୍ଠନକରା ଅର୍ଥ ଏବଂ ଜିନିଷପତ୍ରର ଅଧିକାଂଶ ନିଜର ବ୍ୟକ୍ତିଗତ ଅଧିକାରରେ ରଖିବାକୁ ଆରମ୍ଭ କରି ଦେଲେ । ଫଳରେ ମରହଟ୍ଟା ସେନାପତିମାନଙ୍କର ଓ ସାଧାରଣ ସୈନିକମାନଙ୍କ ମଧ୍ୟରେ ବିଷୟ ସଂପତ୍ତିର ପାର୍ଥକ୍ୟ ବଢ଼ିବାକୁ ଲାଗିଲା । ଶମ୍ଭାଜୀ ଏବଂ ତାଙ୍କ ଘନିଷ୍ଠ ଅନୁଚରମାନେ ଯୁଦ୍ଧାଭିଯାନ ସଂଗଠନ ଅପେକ୍ଷା ଅନେକ ବେଶି ମନୋନିବେଶ କଲେ ଆରାମ ଏବଂ ବିଳାସ ସମ୍ଭୋଗ ଦିଗରେ । ସିଦି ରାଜବଂଶ ଶାସିତ ଜାଞ୍ଜିରା ଦ୍ୱୀପ ଦଖଲ ପାଇଁ ମରହଟ୍ଟାମାନଙ୍କ ପ୍ରୟାସ ବ୍ୟର୍ଥ ହେଲା (୧୬୮୦-୧୬୮୨ ଖ୍ରୀଷ୍ଟାବ୍ଦରେ), ୧୬୮୩ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗୀଜ୍‌ମାନଙ୍କ ଚୌଲ ବନ୍ଦର ଉପରେ ଆକ୍ରମଣ ମଧ୍ୟ ବିଫଳ ହେଲା । ୧୬୮୯ ଖ୍ରୀଷ୍ଟାବ୍ଦରେ ମୋଗଲ ବାହିନୀ ଅତର୍କିତ ଆକ୍ରମଣ କରି ଶମ୍ଭାଜୀଙ୍କ ରାଜଧାନୀକୁ ଦଖଲ କରି ନେଲେ ଏବଂ ପୁତ୍ର ଶାହୁ ସହ ବନ୍ଦୀ ହେଲେ ଶମ୍ଭାଜୀ । ପୁଣି ଥରେ ମହାରାଷ୍ଟ୍ର ମୋଗଲ ଶାସନର ଅଧୀନ ହେଲା ।

ମରହଟ୍ଟା ରାଜ୍ୟର ପତନ ପରେ ସେମାନଙ୍କର ପ୍ରତିରୋଧ ସଂଗ୍ରାମ ବିପୁଳ ଆକାରରେ ବଢ଼ିବାକୁ ଲାଗିଲା ଏବଂ ପରେ ତାହା ପରିଣତ ହେଲା ପ୍ରକୃତ ଏକ ଗଣ ଯୁଦ୍ଧରେ । ଶିବାଜୀଙ୍କ ଶିଶୁ ପୁତ୍ର ରାଜାରାମ ସେତେବେଳେ ଜିଞ୍ଜିରେ ମରହଟ୍ଟାମାନଙ୍କର ନାମକୁ ମାତ୍ର ରାଜା ହିସାବରେ ବାସ କରୁଥିଲେ ଏବଂ ଏହି ଘଟଣାଟି ମରହଟ୍ଟା ସେନାପତିମାନଙ୍କର ଯୁଦ୍ଧବିଗ୍ରହକୁ ବୈଧ କ୍ରିୟାକଳାପର ଏକ ରୂପ ପ୍ରଦାନ କରିଥିଲା । ତେବେ ମରହଟ୍ଟା ସେନାବାହିନୀ କ୍ରମଶଃ ସେମାନଙ୍କ ବୈଶିଷ୍ଟ୍ୟସୂଚକ ଜାତୀୟ ସତ୍ତା ହରେଇ ପକାଉଥିଲା । ବହୁ ମରହଟ୍ଟା ସେତେବେଳେ ମୋଗଲମାନଙ୍କର ଅଧୀନରେ ଚାକିରି ଗ୍ରହଣ କରିଥିଲେ, ମୋଗଲ ସୈନ୍ୟମାନଙ୍କ ମଧ୍ୟରୁ ଅନେକ ମଧ୍ୟ ସେମାନଙ୍କ ପ୍ରାପ୍ୟ ବେତନ ଆଦି ନିୟମିତ ନପାଉଥିବାରୁ ଓ ଲୁଣ୍ଠିତ ସାମଗ୍ରୀର ଭାଗ ପାଇବା ଆଶାରେ ବେଳେ ବେଳେ ପଳେଇ ଆସି ମରହଟ୍ଟୀ ସେନାବାହିନୀ ସହିତ ଯୋଗ ଦେଉଥିଲେ । ମରହଟ୍ଟା ସେନାପତିମାନଙ୍କ ମଧ୍ୟରେ ମଧ୍ୟ ବିବାଦ କଳହ ଦେଖା ଦେବାକୁ ଲାଗିଲା ଏବଂ ବେଳେ ବେଳେ ତାହା ପରିଣତ ହେଲା ରକ୍ତକ୍ଷୟୀ ସଂଘର୍ଷରେ । ଐକ୍ୟବଦ୍ଧ ଏକ ସାମରିକ ଶକ୍ତି ହିସାବରେ ମରହଟ୍ଟୀ ବାହିନୀର ଅସ୍ତିତ୍ୱ ଆଉ ରହିଲା ନାହିଁ ।

ମୋଗଲ ସେନାବାହିନୀ ମଧ୍ୟ ଇତିମଧ୍ୟରେ ମରହଟ୍ଟୀ ବାହିନୀଗୁଡ଼ିକ ବିରୁଦ୍ଧରେ ଯୁଦ୍ଧ ଚଳାଇ

ଯାଉଥିଲେ ଏବଂ ସେମାନଙ୍କ ଦୁର୍ଗଗୁଡ଼ିକୁ ଅବରୋଧ କରୁଥିଲେ । ତେବେ ଏହିସବୁ ଦୁର୍ଗକୁ ମୋଗଲମାନେ ଜୟ କରି ନେବା ସତ୍ତ୍ୱେ ମୋଗଲ ଆଧିପତ୍ୟରେ ବିଶେଷ କୌଣସି ପରିବର୍ତ୍ତନ ଘଟିଲା ନାହିଁ । କାରଣ ଗୋଟିଏ ଗୋଟିଏ ଛୋଟ ବାହିନୀକୁ ଏହିସବୁ ଦୁର୍ଗରେ ବସେଇ ଦେଇ ମୂଳ ମୋଗଲ ବାହିନୀ ଚାଲିଯିବା ପରେ ପରେ ମରହଟ୍ଟାମାନେ ପୁଣି ସେଗୁଡ଼ିକୁ ଦଖଲ କରି ନେଉଥିଲେ । ଜନୈକ ଭାରତୀୟ ଐତିହାସିକଙ୍କର ଚମତ୍କାର ଏକ ମନ୍ତବ୍ୟର ପୁନରାବୃତ୍ତି କରି କୁହାଯାଇ ପାରେ ଯେ, ଆଓରଙ୍ଗଜେବଙ୍କର ଏହିସବୁ ସାମରିକ ଅଭିଯାନ ଥିଲା ନଦୀ ବୁକୁରେ ନୌକା ଭାସିଗଲା ପରି । କାରଣ, ନୌକାଟି ଚାଲିଗଲା ପରେ ପଛରେ ରହି ଯାଉଥିବା ନଦୀର ବୁକୁ ଚିରା ଦାଗଟିକୁ ପାର୍ଶ୍ୱବର୍ତ୍ତୀ ଜଳ ଆସି ପୁଣି ଢାଙ୍କି ପକାଉଥିଲା ।

୧୭୦୭ ଖ୍ରୀଷ୍ଟାବ୍ଦରେ କୌଣସି ଏକ ସାମରିକ ଅଭିଯାନ ଶେଷ କରି ମୋଗଲ ସେନାବାହିନୀ ବୁର୍‌ହାନ୍‌ପୁରକୁ ଫେରିଲା ବେଳେ (ଏହି ବୁର୍‌ହାନ୍‌ପୁରକୁ ଆଓରଙ୍ଗଜେବ ୧୬୮୧ ଖ୍ରୀଷ୍ଟାବ୍ଦରେ ତାଙ୍କ ରାଜଧାନୀ ସ୍ଥାନାନ୍ତର କରିଥିଲେ) ମରହଟ୍ଟା ବାହିନୀଗୁଡ଼ିକ ସମଗ୍ର ମୋଗଲ ବାହିନୀଗୁଡ଼ିକୁ ଚାରି ଆଡ଼ୁ ଘେରି ଗଲେ । ମୋଗଲ ବାହିନୀର ଏହି ଅଭିଯାନ ପରିଚାଳନା କରୁଥିଲେ ସ୍ୱୟଂ ଆଓରଙ୍ଗଜେବ । ସେତେବେଳେ ତାଙ୍କୁ ଅଣାନବେ ବର୍ଷ । ଏବଂ ଠିକ୍ ଏହି ସମୟରେ ସେ ଅସୁସ୍ଥ ହୋଇ ପଡ଼ିଥିଲେ । ମୃତ୍ୟୁର ଠିକ୍ ପୂର୍ବରୁ ତାଙ୍କର ଅନୁଚରମାନେ ତାଙ୍କୁ କୌଣସିମତେ ଆହମଦ୍‌ନଗରକୁ ଆଣି ପାରିଥିଲେ । ପୁତ୍ରମାନଙ୍କୁ ଲିଖିତ ଆଓରଙ୍ଗଜେବଙ୍କ ଚିଠିଟି ତିକ୍ତତାରେ ଭରପୂର । ସେ ଲେଖିଥିଲେ : "ଯେଉଁ ଜୀବନ ଏତେ ମୂଲ୍ୟବାନ, ତାହା ଅକାରଣରେ ନଷ୍ଟ ହୋଇଗଲା ।" ଦୌଲତାବାଦ ନିକଟରେ (ମୃତ୍ୟୁ ପରେ ତାଙ୍କ ଶବଟିକୁ ଏହିଠାକୁ ନିଆଯାଇଥିଲା) ତାଙ୍କ ସମାଧି ଉପରେ କୌଣସି ଜାକଜମକପୂର୍ଣ୍ଣ ସମାଧି ନିର୍ମିତ ହୋଇ ନାହିଁ, ସମାଧି ଉପରେ ଅଛି କେବଳ ଏକ ସାଦାସିଧା ସଫେଦ ପଥର ଫଳକ ଓ ସେ ଫଳକ ଉପରେ ଖୋଦାଇ କରା ଏକ ଲେଖା ।

ଆଓରଙ୍ଗଜେବଙ୍କ ଉତ୍ତରାଧିକାରୀମାନଙ୍କର – ବାହାଦୁର ଶାହ୍ (୧୭୦୭-୧୭୧୨ ଖ୍ରୀଷ୍ଟାବ୍ଦ), ମହମ୍ମଦ ଶାହ୍ (୧୭୧୯-୧୭୪୮ ଖ୍ରୀଷ୍ଟାବ୍ଦ) ଏବଂ ଆହ୍ମଦ ଶାହ୍ (୧୭୪୮-୧୭୫୪ ଖ୍ରୀଷ୍ଟାବ୍ଦ) ରାଜତ୍ୱକାଳରେ ମୋଗଲ ସମ୍ରାଟମାନେ ସଖୀ କଣ୍ଢେଇ ରାଜାମାନଙ୍କ ଠାରୁ ଅଧିକ କିଛି ନଥିଲେ । ସେମାନେ ଥିଲେ ବହୁ ପରିମାଣରେ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ସାମନ୍ତବାଦୀ ଭୂସ୍ୱାମୀ ଚକ୍ରର ପୃଷ୍ଠପୋଷିତ ଅକ୍ଷମ ବ୍ୟକ୍ତି ମାତ୍ର । ସାମ୍ରାଜ୍ୟ ଅନ୍ତର୍ଗତ ନୂଆ ନୂଆ ଭୂଖଣ୍ଡ ଗୋଟାକ ପରେ ଗୋଟାଏ ବିଚ୍ଛିନ୍ନ ହୋଇ ଯିବାକୁ ଲାଗିଲା, ନିଜକୁ ସେମାନେ ସ୍ୱାଧୀନ ରାଜ୍ୟ ବୋଲି ଘୋଷଣା କରିବାକୁ ଲାଗିଲେ । ତେବେ ସାର୍ବଭୌମ ମୋଗଲ ସାମ୍ରାଜ୍ୟର ଜନମାନସରେ ଆଉରି କିଛି କାଳ ବିରାଜ କରିଥିଲା ।

# ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ଭାରତୀୟ ସଂସ୍କୃତି

## ସର୍ବାଙ୍ଗୀନ ପରିଚିତି

ଆକବରଙ୍କ ରାଜତ୍ୱକାଳରେ ଭାରତୀୟ ସଂସ୍କୃତି କ୍ଷେତ୍ରରେ ପ୍ରାଧାନ୍ୟ ଲାଭ କରିଥିଲା ମୁସଲମାନ ଓ ହିନ୍ଦୁ ଏହି ଦୁଇଟି ପ୍ରଧାନ ସଂସ୍କୃତିରୁ ଆହୃତ ଉପାଦାନସମୂହର ଏକ ସମନ୍ୱୟୀ ପ୍ରକ୍ରିୟା । ହିନ୍ଦୁ ସଂସ୍କୃତିର ଉପାଦାନଗୁଡ଼ିକ ସ୍ପଷ୍ଟତଃ ପ୍ରାଧାନ୍ୟ ପାଇଥିଲା ଫତେପୁର ସିକ୍ରିର ଅଟ୍ଟାଳିକାଗୁଡ଼ିକର ସ୍ଥାପତ୍ୟ

ଶୈଳୀରେ । ତେଣୁ ଆମେ ସେଠାରେ ଦେଖିବାକୁ ପାଏଁ ସମତଳ ବିଶିଷ୍ଟ ଛାତର ଗଠନ, ଫୁଲ ମାଳାରେ ବିଜଡ଼ିତ ହିନ୍ଦୁ ଅଳଙ୍କରଣ ଶୈଳୀର ଛାପ, ଆଦି । ଫତେପୁର ସିକ୍ରିର କେତେକ ପ୍ରାସାଦର ଛାତର କାର୍ଣ୍ଣିସ୍ ଅଳଙ୍କୃତ କରାଯାଇଥିଲା ଜୀବଜନ୍ତୁର ମୂର୍ତ୍ତି ଦ୍ୱାରା । ରାଜ ପ୍ରାସାଦର ଏକ ଗୃହର କାନ୍ଥରେ ଥିଲା ପଶୁପକ୍ଷୀମାନଙ୍କର ମୂର୍ତ୍ତି ଶୋଭିତ ଏକ ବ୍ୟାସ୍ ରେଲିଫ୍‌ର ଖୋଦେଇ କାମ । ଏହିସବୁ ମୂର୍ତ୍ତିକୁ ପରେ ଖୋଳି କି ନଷ୍ଟ କରି ଦିଆଯାଇଥିଲା ଆଓରଙ୍ଗଜେବଙ୍କ ନିର୍ଦ୍ଦେଶରେ । କାରଣ ଆଓରଙ୍ଗଜେବ ଥିଲେ କୋରାନ୍‌ର କଠୋର ଅନୁଗାମୀ ଏବଂ କୋରାନ୍‌ରେ ନିର୍ଦ୍ଦେଶ ଅଛି ଯେ, କୌଣସି ପ୍ରାଣୀର ପ୍ରତିମୂର୍ତ୍ତି ନିର୍ମାଣ କରାଯାଇ ପାରିବ ନାହିଁ ।

ପାରସୀ ଭାଷାରେ ଲିଖିତ ଆକବରଙ୍କ ଦରବାରର କାବ୍ୟଗୁଡ଼ିକରେ ଧର୍ମୀୟ ସହିଷ୍ଣୁତାର ବିଭିନ୍ନ ଲକ୍ଷଣ ଲକ୍ଷ୍ୟ କରାଯାଏ – ଯଥା, କବିଙ୍କ ପ୍ରିୟତମା ସହିତ ହିନ୍ଦୁ ଦେବୀଙ୍କର ତୁଳନା ଏବଂ ବ୍ରାହ୍ମଣ ସହିତ କବିଙ୍କର ସ୍ୱତୁଳନା । ଏହା ଛଡ଼ା ସାର୍ବଜନୀନ ମାନବ ପ୍ରେମର କାବ୍ୟିକ ପ୍ରଶସ୍ତି ରଚନା ମଧ୍ୟ । କେତେକ କବି ସେତେବେଳେ ହିନ୍ଦୁ ପୁରାଣରୁ ଉପାଖ୍ୟାନ ସଂଗ୍ରହ କରି ସେସବୁ ବିଷୟରେ କାବ୍ୟ ରଚନା କରିଥିଲେ (ଯଥା, ଆବୁଲ ଫଜଲ୍‌ଙ୍କ ଭାଇ ଓ ଆକବରଙ୍କ ସମୟରେ ପାରସୀ ଭାଷାର କବିମାନଙ୍କ ମଧ୍ୟରେ ଅନ୍ୟତମ ପ୍ରଧାନ ଫୈଜୀ ରଚନା କରିଥିଲେ "ନଳଦମୟନ୍ତୀ" କାବ୍ୟ) । ଆବୁଲ ଫଜଲ୍ ସ୍ୱୟଂ ତାଙ୍କ "ଆଇନ୍-ଇ-ଆକବରି" ("ଆକବରଙ୍କ ଦ୍ୱାରା ପ୍ରବର୍ତ୍ତିତ ସଂବିଧି") ଗ୍ରନ୍ଥରେ (ଏହା ତାଙ୍କ ଇତିହାସ ଗ୍ରନ୍ଥ "ଆକବର ନାମାର" ଅଂଶ ହିସାବରେ ଲେଖା ଯାଇଥିଲା, ବର୍ତ୍ତମାନ କିନ୍ତୁ ଏହା ପୃଥକ୍ ଏକ ଗ୍ରନ୍ଥ ହିସାବରେ ପ୍ରକାଶିତ ହୋଇଛି), ଅନେକ ସ୍ଥାନ ପ୍ରଦାନ କରିଥିଲେ ପ୍ରାଚୀନ ଭାରତର ଦାର୍ଶନିକ ମତବାଦ, ହିନ୍ଦୁ ସମାଜରେ ସ୍ୱୀକୃତ ଅଧିକାରସମୂହ ଓ ହିନ୍ଦୁ ରୀତିନୀତି ଏବଂ ହିନ୍ଦୁ ପୁରାଣମାନଙ୍କର ବର୍ଣ୍ଣନା ତଥା ବ୍ୟାଖ୍ୟା ପାଇଁ । "ଆଇନ୍-ଇ-ଆକବରିର" "ଦଶଟି ସୁବାର ଜରିପ" ଶୀର୍ଷକ ଅଧ୍ୟାୟଟିରେ ପ୍ରତିଟି ସୁବାର (ଅଞ୍ଚଳ) ବିଶଦ ବିବରଣ ଦେବାକୁ ଯାଇ ଆବୁଲ ଫଜଲ୍ ଏହି ଅଞ୍ଚଳର ହିନ୍ଦୁ ଜନସାଧାରଣଙ୍କର ରୀତିନୀତି, ଆଗ୍ରର ବ୍ୟବହାର, ସେମାନଙ୍କ ମନ୍ଦିର, ତୀର୍ଥସ୍ଥାନ ଏବଂ ଅନ୍ୟାନ୍ୟ କୀର୍ତ୍ତି ସ୍ତମ୍ଭ ଆଦି ସଂପର୍କିତ ବହୁ ତଥ୍ୟର ଅବତାରଣା କରିଛନ୍ତି । ପରବର୍ତ୍ତୀ ଯୁଗରେ, ଅବଶ୍ୟ, ଉପରୋକ୍ତ ଏହି ପ୍ରବଣତାର ପ୍ରକାଶ ହ୍ରାସ ପାଇଥିଲା ଏବଂ ବିଶେଷ କରି ଆଓରଙ୍ଗଜେବଙ୍କ ଅମଳରେ କେବଳ ଯେ ଗଳ୍ପକଥା ଓ କବିତା ଅବକ୍ଷୟ ଯୁଗରେ ଯେ କେବଳ ପ୍ରବେଶ କରିଥିଲା, ତାହା ନୁହେଁ, ଏପରିକି ଇତିବୃତ୍ତ ରଚନା ମଧ୍ୟ ସମ୍ରାଟଙ୍କ ସମର୍ଥନ ଲାଭ କରିବାରୁ ବଞ୍ଚିତ ହୋଇଥିଲା । ଗୋଟିଏ କଥାରେ କହିବାକୁ ଗଲେ, ଶିଳ୍ପ ସାହିତ୍ୟର ସବୁ କିଛି ଥିଲା ଏହି ଧର୍ମାନ୍ଧ ସମ୍ରାଟଙ୍କ ଅରୁଚି ।

## ସାହିତ୍ୟ

ଏହି ଯୁଗର ସାହିତ୍ୟ ସୃଷ୍ଟି କେବଳ ମାତ୍ର ବାଦଶାହ୍‌ଙ୍କ ଦରବାରରେ ସୀମାବଦ୍ଧ ନଥିଲା । ବହୁ ଆଞ୍ଚଳିକ ଭାଷାରେ ଓ ବହୁବିଧ ସାହିତ୍ୟ ରୀତିରେ ତା'ର ପ୍ରକାଶ ଘଟିଥିଲା । ଏହି ଯୁଗରେ ସାହିତ୍ୟର, ସମ୍ଭବତଃ, ସବୁଠାରୁ ପ୍ରଭାବଶାଳୀ ଧାରଣଟି ଥିଲା ଭକ୍ତିବାଦୀ କାବ୍ୟ । ଆଞ୍ଚଳିକ

ଭାଷାଗୁଡ଼ିକରେ ଲିଖିତ ଲୋକ ଗୀତିଗୁଡ଼ିକ ମଧୁର ସୁରରେ ଗାଇ ଶୁଣାଉଥିଲେ ଭକ୍ତ କବିମାନେ । ସେସବୁର ବିଷୟ ଥିଲା ରୂପକ କାହାଣୀ, କିମ୍ବା ସେମାନଙ୍କ ଧ୍ୟାନ ଲକ୍ଷ୍ୟର ଉପଲବ୍ଧି କଥା । ଏହିସବୁ ଗାନର ଅନେକ ଏପର୍ଯ୍ୟନ୍ତ ଲୋକଗୀତି ହିସାବରେ ଟିକି ରହିଛି । ଭକ୍ତ କବିମାନେ ମଣିଷ ନିକଟରେ ଆବେଦନ ଜଣାଉଥିଲେ ଜାତିଭେଦ ପ୍ରଥାର ବିରୋଧିତା କରିବାକୁ । ସେମାନେ ଘୋଷଣା କରିଥିଲେ ଯେ, ଈଶ୍ୱରଙ୍କ ଆଖିରେ ସମସ୍ତ ମଣିଷ ସମାନ ଏବଂ ଧନୀ, ଭୂସ୍ୱାମୀ ଓ ଧର୍ମୀୟ ନେତାମାନଙ୍କର କ୍ଷମତା ପ୍ରତିପତ୍ତିକୁ ସେମାନେ ବ୍ୟଙ୍ଗବିଦ୍ରୂପରେ ଜର୍ଜରିତ କରୁଥିଲେ । ତେବେ ଏହିସବୁ ମୂଳତଃ ମାନସିକ ଧ୍ୟାନଧାରଣା ସେମାନେ ପ୍ରକାଶ କରୁଥିଲେ ସାଧାରଣ ଧର୍ମ କଥାର ଆବରଣ ମଧ୍ୟରେ । ଶ୍ରେଷ୍ଠ ଭକ୍ତିବାଦୀ କବିମାନଙ୍କ ମଧ୍ୟରେ ଥିଲେ : ତୁଳସି ଦାସ (୧୫୩୨ରୁ ୧୬୨୩ ଖ୍ରୀଷ୍ଟାବ୍ଦ), ଯାହାଙ୍କ ଦ୍ୱାରା ପ୍ରଣୀତ "ରାମଚରିତ ମାନସ" ନାନାବିଧ ହିନ୍ଦି କଥାବଳିରେ ରୂପାନ୍ତରିତ ହୋଇ ଗୀତ ଆକାରରେ ବୋଲା ଯାଉଥିଲା ହିନ୍ଦୁମାନଙ୍କ ଉତ୍ସବଗୁଡ଼ିକରେ ଏବଂ ଏହି ଭାବେ ତାହା ଜନସାଧାରଣଙ୍କ ମଧ୍ୟରେ ବ୍ୟାପକ ଭାବେ ପରିଚିତ ହୋଇଥିଲା ; ଏହା ଛଡ଼ା ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧର କବିକୁଳ ମଧ୍ୟ ଥିଲେ — ରାଜପୁତାନାର ଅଧିବାସୀ ସୁର ଦାସ, ରାଜପୁତ ମହିଳା କବି ମୀରାବାଈ, ମହାରାଷ୍ଟ୍ରର ଏକନାଥ, ଆସାମର ଶଙ୍କରଦେବ ଏବଂ ଶିଖ୍ ଗୁରୁବୃନ୍ଦ । ବଙ୍ଗଳାରେ ଏହି ଯୁଗର ବିଖ୍ୟାତ କାବ୍ୟ ଗ୍ରନ୍ଥ ହେଲା ମୁକୁନ୍ଦରାମ ଚକ୍ରବର୍ତ୍ତୀଙ୍କ "ଚଣ୍ଡୀମଙ୍ଗଳ" କାବ୍ୟ । ମୁକୁନ୍ଦରାମଙ୍କ "ଚଣ୍ଡୀମଙ୍ଗଳରେ" ଅଛି, ସେ ଯୁଗର ବଙ୍ଗଳାର ବାସ୍ତବବାଦୀ ଜୀବନ ଚିତ୍ର ଓ ତତ୍ ସଙ୍ଗେ ସଙ୍ଗେ ମିଶିଥିବା ଲୋକ ଗାଥା ଓ ଅଲୌକିକ କଳ୍ପନା । ସପ୍ତଦଶ ଶତାବ୍ଦୀରେ ସକ୍ରିୟ ସଂଗ୍ରାମର ଆବେଦନରେ ପୂର୍ଣ୍ଣ ମରହଟ୍ଟା ଓ ଶିଖ୍‌ମାନଙ୍କ ଗାନରେ ଏବଂ ଗୀତିକାବ୍ୟରେ ଭକ୍ତିବାଦୀ ଧାରଣା ବିକଶିତ ହୋଇଥିଲା ।

ଭାରତରେ ଦରବାରୀ କବିତା ଲେଖା ହୋଇଥିଲା ରାଷ୍ଟ୍ର ଭାଷାରେ । କିନ୍ତୁ ସେ ଭାଷା ଜନସାଧାରଣଙ୍କ କଥିତ ଭାଷା ନଥିଲା । ମୋଗଲ ସାମ୍ରାଜ୍ୟରେ ଏହି ରାଷ୍ଟ୍ର ଭାଷା ଥିଲା ଫାରସୀ ଏବଂ ଦାକ୍ଷିଣାତ୍ୟର ରାଷ୍ଟ୍ରଗୁଡ଼ିକରେ ତାହା ଥିଲା ଉତ୍ତର ଭାରତରେ ପ୍ରଚଳିତ ଉର୍ଦ୍ଦୁ । ଏହି ଦୁଇଟି ଭାଷାରେ ଲିଖିତ କାବ୍ୟରେ ଐତିହ୍ୟସିଦ୍ଧ ଭାରତୀୟ ବିଷୟବସ୍ତୁ ବ୍ୟବହାର କରାଯାଉଥିଲା ଏବଂ ଏପରିକି ଭାରତୀୟ ଭୂଦୃଶ୍ୟ, ଜୀବନଯାତ୍ରା ପଦ୍ଧତି, ଆଦିର ବର୍ଣ୍ଣନା ମଧ୍ୟ କ୍ରମଶଃ ସ୍ଥାନ ପାଉଥିଲା । ତେବେ ସମସ୍ତ କ୍ଷେତ୍ରରେ ଏହିସବୁ କାବ୍ୟର ରଚନାରୀତି ଓ ଚିତ୍ର କଳ୍ପର ବ୍ୟବହାର ତାଜିକ୍ ଓ ପାରସି କାବ୍ୟ ଉପରେ ନିର୍ଭରଶୀଳ । ଏହି ଫାରସୀ ଏବଂ ଉର୍ଦ୍ଦୁ ଭାଷା ଦେଶର ବ୍ୟାପକ ଜନସାଧାରଣଙ୍କ ନିକଟରେ ପର ହେଲେ ମଧ୍ୟ ଏହି ଦରବାରୀ କବିମାନଙ୍କ ମଧ୍ୟରେ କେତେକ ତା ସତ୍ତ୍ୱେ ପ୍ରକୃତ ଶିଳ୍ପସିଦ୍ଧ କାବ୍ୟ ରଚନା କରିବାରେ ସମର୍ଥ ହୋଇଥିଲେ । ଫାରସୀ ଭାଷାରେ ଯେଉଁମାନେ ଲେଖିଥିଲେ ସେଇସବୁ ଭାରତୀୟ କବିମାନଙ୍କ ମଧ୍ୟରେ ସର୍ବାପେକ୍ଷା ଜନପ୍ରିୟ ଥିଲେ ଫୈଜୀ — ବିଶେଷ କରି ଗୀତିକବିତା ରଚନାରେ — ଏବଂ ବେଦିଲ (୧୬୬୪-୧୭୨୧ ଖ୍ରୀଷ୍ଟାବ୍ଦ) । ବେଦିଲ ଯଦିଓ ସୁଫୀ ରୂପକ ବର୍ଣ୍ଣନାକୁ ତାଙ୍କ ରଚନାର ମୁଖ୍ୟ ଅବଲମ୍ବନ ରୂପେ ଗ୍ରହଣ କରିଥିଲେ, ତେବେ ତାଙ୍କ କାବ୍ୟ ଗଭୀର ଆବେଗ ଓ ବିଷାଦରେ ଉଚ୍ଛଳ ଥିଲା । ଜନସାଧାରଣଙ୍କର ନିପୀଡ଼କ ସ୍ୱୈରାଗ୍ରରୀ ଶାସକମାନଙ୍କର ନିଷ୍ଠୁରତାକୁ ସେ ନିନ୍ଦା କରିଥିଲେ । ଫାରସୀ ଭାଷା ଭାରତର ରାଷ୍ଟ୍ର ଭାଷା ରୂପେ ନରହିବାରୁ ଦେଶର ଲୋକଙ୍କ ନିକଟରେ ବେଦିଲ କାର୍ଯ୍ୟତଃ ବିସ୍ମୃତ ହୋଇ ପଡ଼ିଲେ । କିନ୍ତୁ ତାଙ୍କ

କାବ୍ୟ ସେତେବେଳେ ଦ୍ୱିତୀୟ ଆଶ୍ରୟ ଖୋଜି ପାଇଥିଲା ମଧ୍ୟ ଏସିଆରେ । ଉର୍ଦ୍ଦୁ ଭାଷାରେ କାବ୍ୟ ରଚୟିତା ଦାକ୍ଷିଣାତ୍ୟର କବି ଗାଓୟାସିଙ୍କ (ଷୋଡ଼ଶ ଶତାବ୍ଦୀ) ଭାଗ୍ୟରେ ଏହି ଏକା ଯଶଃ ଘଟିଛି, ଉତ୍ତର ଭାରତରେ ସେ ପରିଚିତ ହେଲେ ମଧ୍ୟ ଦାକ୍ଷିଣାତ୍ୟର ଲୋକେ ତାଙ୍କ କାବ୍ୟ ପାଠ କରିବାକୁ ଅସମର୍ଥ ।

## ଇତିହାସ

ଭାରତର ଇତିହାସବିଦ୍‌ମାନେ ସେମାନଙ୍କ ରଚନାବଳୀରେ ବହୁ ପରିମାଣରେ ଲିଖିତ ମୂଳ ଉପାଦାନଗୁଡ଼ିକୁ ବ୍ୟବହାର କରିଛନ୍ତି ଏବଂ ଅଧିକାଂଶ କ୍ଷେତ୍ରରେ ସେମାନଙ୍କ ବର୍ଣ୍ଣନାରେ ଅଙ୍ଗୀଭୂତ କରିଛନ୍ତି ପ୍ରକୃତ ମୂଳ ଦଲିଲ ପତ୍ର ଏବଂ ସେସବୁର ସାରାଂଶ । ଷୋଡ଼ଶ ଶତାବ୍ଦୀର ମୂଲ୍ୟବାନ ଐତିହାସିକ ଲିଖିତ ଉପାଦାନଗୁଡ଼ିକ ମିଳିଥାଏ ବାବରଙ୍କ ସ୍ମୃତି କଥା "ବାବର ନାମାରେ" ଏବଂ ଆବୁଲ ଫଜଲ୍‌ଙ୍କ ଇତିବୃତ୍ତ "ଆକବର ନାମା" ଓ ବାଦାଉନିଙ୍କ "ମୁନ୍ତାଖବ୍-ଉତ୍-ତାଓୟାରିଖରେ" । ସପ୍ତଦଶ ଶତାବ୍ଦୀରେ ଏହି ଧାରାର ଅନୁସରଣରେ ଲିଖିତ ହୋଇଥିଲା ବଙ୍ଗଳାରେ ତତ୍କାଳୀନ ମୋଗଲ ସେନାଧ୍ୟକ୍ଷ ମିର୍ଜା ନାଥାନ୍‌ଙ୍କ ସ୍ମୃତି କଥା "ବାଖାରିସ୍ତାନ-ଇ-ଗାଇବି" ("ବସନ୍ତବର୍ଜିତ ଦେଶ") ଏବଂ ଆବ୍‌ଦୁଲ ହାମିଦ୍ ଲହୋରୀଙ୍କ ରଚିତ ଇତିବୃତ୍ତ "ପାତ୍‌ଶାହ୍ ନାମା" ଓ ମହମ୍ମଦ ସାଲିହ୍ କାମ୍ବୁର "ଆମାଲ-ଇ-ସାଲିହ୍" ("ସାଲିହ୍‌ଙ୍କ ଶ୍ରମ") । ଆଓରଙ୍ଗଜେବଙ୍କ ରାଜତ୍ୱକାଳରେ କାଫି ଖାଁଙ୍କ ରଚିତ "ମୁନ୍ତାଖବ୍-ଉଲ୍-ଲୁବବ" ("ନିର୍ବାଚିତ ରଚନାଂଶ") ଆମ ସମୟ ପର୍ଯ୍ୟନ୍ତ ତିଷ୍ଠି ରହିଛି ।

## ସ୍ଥାପତ୍ୟ

ଅନ୍ୟ ସମସ୍ତ ଶିଳ୍ପଠାରୁ ସ୍ଥାପତ୍ୟ ଶିଳ୍ପ ସେତେବେଳେ ନିର୍ଭରଶୀଳ ଥିଲା ଧନୀ ପୃଷ୍ଠପୋଷକଙ୍କ ଉପରେ । ମୋଗଲ ସାମ୍ରାଜ୍ୟର ଶକ୍ତି ଓ ଆଧିପତ୍ୟ ପ୍ରସାରିତ ହେବା ସଙ୍ଗେ ସଙ୍ଗେ କ୍ରମଶଃ ବେଶି ବେଶି ସଂଖ୍ୟାରେ ଚାକଚକ୍ୟପୂର୍ଣ୍ଣ ପ୍ରାସାଦାଦିର ଆବିର୍ଭାବ ଘଟିଥିଲା । ଏହିସବୁ ଅଟ୍ଟାଳିକାରେ ମୁସଲିମ୍ ସ୍ଥାପତ୍ୟ ଶୈଳୀର ପାଖେ ପାଖେ ସ୍ଥାନ ପାଇବାକୁ ଲାଗିଲା ସ୍ଥାନୀୟ ଭାରତୀୟ ଶିଳ୍ପରୀତିର ଐତିହ୍ୟ । ଫତେପୁର ସିକ୍ରି ସହରଟି ତା'ର ଚାରିପାର୍ଶ୍ୱର ପ୍ରାକୃତିକ ଦୃଶ୍ୟପଟ୍ଟ ସହିତ ଖାପ ଖାଇ ଯାଇଥିଲା, ସ୍ଥାପତ୍ୟ ଶୈଳୀର ବିଚାର ଦୃଷ୍ଟିରୁ ସହରଟିର ଅଟ୍ଟାଳିକାଗୁଡ଼ିକ ଥିଲା ନିରାଭରଣ ଓ ସରଳ ଚଙ୍ଗର ବିଶିଷ୍ଟ । ଶାହ୍ ଜାହାନଙ୍କ ରାଜତ୍ୱକାଳ ଥିଲା ସ୍ଥାପତ୍ୟ ଶୈଳୀ ଦ୍ୱାରା ସମୃଦ୍ଧ ଚାକଚକ୍ୟପୂର୍ଣ୍ଣ ଭାବ ପ୍ରସ୍ଫୁଟନ ବିଚାର ଦୃଷ୍ଟିରୁ ସବୁଠାରୁ ଉଲ୍ଲେଖଯୋଗ୍ୟ । ଆକବରଙ୍କ ଅମଳରେ ମଧ୍ୟ ଫତେପୁର ସିକ୍ରିରେ ଗୋଟିଏ ମାତ୍ର ଶ୍ୱେତ ଶଙ୍ଖମଲମଲ ପଥରରେ ଶେଖ୍ ସେଲିମ୍ ଚିସ୍ତିଙ୍କ ସ୍ମୃତି ସମାଧିଟି ନିର୍ମିତ ହୋଇଥିଲା । ଶାହ୍ ଜାହାନଙ୍କ ରାଜତ୍ୱକାଳରେ ବିଶେଷ କରି ଆଗ୍ରା ଆଉ ଦିଲ୍ଲୀରେ ସ୍ଥାପତ୍ୟ ଶିଳ୍ପରେ ଅଳଙ୍କରଣର ପ୍ରଧାନ ବୈଶିଷ୍ଟ୍ୟ ହେଲା ଅର୍ଦ୍ଧ ମୂଲ୍ୟବାନ ଏବଂ ବେଳେ ବେଳେ ଏପରିକି ମହାମୂଲ୍ୟବାନ ମଣିରଙ୍ଗରେ ଖଚିତ ଚମତ୍କାର ଶ୍ୱେତ ଶଙ୍ଖମଲମଲ ପଥରର ବ୍ୟବହାର ।

ଆଓରଙ୍ଗଜେବଙ୍କ ରାଜତ୍ୱକାଳର ପ୍ରାରମ୍ଭରେ ମଧ୍ୟ ମୋତି-ମସଜିଦ୍ ଭଳି ମୂଲ୍ୟବାନ ଉପାଦାନରେ ହର୍ମ୍ୟ ନିର୍ମାଣର ପରମ୍ପରା ପ୍ରଚଳିତ ଥିଲା । କିନ୍ତୁ ପରେ ରାଜକୋଷରେ ଅର୍ଥାଭାବ ଦେଖା ଦେବାରୁ ବାଦଶାହ୍ ଅଲଗି ସାଧାରଣ ଢଙ୍ଗରେ ହର୍ମ୍ୟ ନିର୍ମାଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଫଳରେ ଆଓରଙ୍ଗଜେବଙ୍କ ପ୍ରିୟତମା ପତ୍ନୀ ରାବେୟା ଦୌରାନିଙ୍କ କବର ଉପରେ ନିର୍ମିତ ସମାଧିସୌଧଟି ମୋଟାମୋଟି ଭାବେ ତାଜ ମହଲ ଢଙ୍ଗରେ ତିଆରି ହେଲେ ମଧ୍ୟ ସେଥିରେ ଆଦି ତାଜ ମହଲର ସୁଶୋଭନ ସାଜସଜ୍ଜାର ଅଭାବ ଦେଖାଯାଏ । ଆଓରଙ୍ଗାବାଦରେ ନିର୍ମିତ ସମାଧିର କେବଳ ମାତ୍ର ପ୍ରଧାନ ସୌଧଟି ସମ୍ମୁଖସ୍ଥ ଦିଆଲରେ ମଣିଷେ ଉଚ୍ଚର ଶଙ୍ଖମଲମଲ ପଥର ଲଗାଯାଇଛି ଏବଂ ସୌଧଟିର ଅବଶିଷ୍ଟ ଅଂଶ ନିର୍ମିତ ହୋଇଛି ହାଲୁକା ରଙ୍ଗର କୃଷ୍ଣାପଥର ଦ୍ୱାରା । ତା'ଛଡ଼ା ଏହି ସୌଧସମାହାରର ମନାରଗୁଡ଼ିକ ନିର୍ମିତ ହୋଇଛି ଇଟା ଗାନ୍ଥିନୀ ଏବଂ ତା ଉପରେ ଚୂନ ପ୍ରଲେପ ଦେଇ ।

ପାରସ୍ୟ, ମଧ୍ୟ ଏସିଆ ଏବଂ ଦିଲ୍ଲୀ ଓ ଆଗ୍ରାରୁ ଆନୀତ ଦାକ୍ଷିଣାତ୍ୟର ହର୍ମ୍ୟଗୁଡ଼ିକର ମୁସଲିମ୍ ସ୍ଥାପତ୍ୟ ଶୈଳୀର ବୈଶିଷ୍ଟ୍ୟ ଥିଲା ରେଖା ସୌନ୍ଦର୍ଯ୍ୟ, କାରୁକାର୍ଯ୍ୟର ଜଟିଳତା ଓ ସୁସମଞ୍ଜସ ଅନୁପାତ ବୋଧ । ଅନ୍ୟ ପକ୍ଷରେ, ବଙ୍ଗ ଦେଶରେ ପ୍ରଚଳିତ ସ୍ଥାପତ୍ୟ ଶୈଳୀ ସେତେ ଭାବପ୍ରକାଶକ ହୋଇ ପାରି ନଥିଲା । ଯଦିଓ କେତେକ ମନ୍ଦିର ଓ ଆବାସ ସୌଧ ସେଠାରେ ଥିଲା ଇଟା ନିର୍ମିତ ଏବଂ କାନ୍ଥମାନଙ୍କରେ ଖୁବ୍ କମ୍ ସଂଖ୍ୟକ ସଂକୀର୍ଣ୍ଣ ଜଳକବାଟି ଥିଲା ।

## ଚିତ୍ରକଳା

ଏହି ଯୁଗରେ ଚିତ୍ରଶିଳ୍ପର ପ୍ରଧାନ ଧରଣଟି ଥିଲା ମିନିଏଚର ବା କ୍ଷୁଦ୍ରାବୟବ ଚିତ୍ର । ଷୋଡ଼ଶ ଶତାବ୍ଦୀରେ କ୍ଷୁଦ୍ରାବୟବ ଚିତ୍ରର ରାଜପୁତ ଧାରାଟି ଗଢ଼ି ଉଠିଥିଲା ରାଜାସ୍ଥାନର ଭିତ୍ତି ଚିତ୍ରର ପ୍ରଭାବରେ । ଏହା ଜୈନ କ୍ଷୁଦ୍ରାବୟବ ଚିତ୍ର ଐତିହ୍ୟର ପ୍ରବହମାନ ଧାରା ହିସାବରେ ପରିଚିତ । ବାଦଶାହଙ୍କ ଦରବାରରେ ମୋଗଲ କ୍ଷୁଦ୍ରାବୟବ ଚିତ୍ରର ଏକ ଧାରା ଗଢ଼ି ଉଠିଥିଲା । ଏହା ଥିଲା ପାରସିକ ଚିତ୍ର ଐତିହ୍ୟର ପ୍ରଭାବାଧୀନ । ବସ୍ତୁତଃ, ଚିତ୍ରକଳାର ଏହି ବିଶେଷ ଧରଣଟିର ସୃଷ୍ଟି ହୋଇଥିଲା ପାରସ୍ୟରେ, ଯଦିଓ ପାରସ୍ୟର କ୍ଷୁଦ୍ରାବୟବ ଚିତ୍ର ଠାରୁ ଏହା ଅଧିକ ବାସ୍ତବବାଦୀ ଓ କମ୍ ଶୈଳୀପୂର୍ଣ୍ଣ ଥିଲା । ବାସ୍ତବରେ, ରାଜପୁତ ଓ ମୋଗଲ କ୍ଷୁଦ୍ରାବୟବ ଚିତ୍ରକଳା ପରସ୍ପରକୁ ପ୍ରଭାବିତ କରିଥିଲା । ମୋଗଲ କ୍ଷୁଦ୍ରାବୟବ ଚିତ୍ରକଳାଗୁଡ଼ିକ ଥିଲା ଏକମାତ୍ରିକ, କେବଳ ତୁଳି ଦ୍ୱାରା ଚିତ୍ରିତ ବିଷୟଟିର ଆୟତନ ବା ତ୍ରିମାତ୍ରିକତା ଏବଂ ନିମ୍ନ, ମଧ୍ୟ ଓ ଉଚ୍ଚତର ଏହି ତିନୋଟି ସ୍ତର ସାହାଯ୍ୟରେ ଚିତ୍ରାନୁପାତ ବୁଝାଯାଉଥିଲା । ଏହି ମଧ୍ୟସ୍ତରବର୍ତ୍ତୀ ମଣିଷ ବା ଅନ୍ୟାନ୍ୟ ବସ୍ତୁର ଆକାରଗୁଡ଼ିକ ଅନ୍ୟ ଦୁଇଟି ସ୍ତରଠାରୁ ଅପେକ୍ଷାକୃତ ବଡ଼ ହେଉଥିଲା । ଏହିସବୁ ଚିତ୍ରକୁ ଦେଖିଲେ, ମନେ ହେଉଥିଲା, ଶିଳ୍ପୀ ଯେପରି ଗୃହରାଶିକୁ ଉପରରୁ ଦେଖୁଛନ୍ତି । ସପ୍ତଦଶ ଶତାବ୍ଦୀରୁ, ବିଶେଷ କରି ଶାହ୍ ଜାହାନଙ୍କ ରାଜତ୍ୱକାଳରେ, ୟୁରୋପୀୟ ବିଷୟବସ୍ତୁ ଆଦି ମଧ୍ୟ ଏହି କ୍ଷୁଦ୍ରାବୟବ ଚିତ୍ରରେ ବେଳେ ବେଳେ ପ୍ରବେଶ କରିଥିବାର ଲକ୍ଷ୍ୟ କରାଯାଏ (ଯଥା, ମ୍ୟାଡୋନା ଓ ଶିଶୁ ଚିତ୍ର)

ଏବଂ କେତେକ ୟୁରୋପୀୟ ଅଙ୍କନରୀତିକୁ ଗ୍ରହଣ କରାଯାଇଥିଲା (ଯଥା, କେତେକ ମୂର୍ତ୍ତିର ଚିତ୍ରାଙ୍କନରେ ଆଲୋକ ଅନ୍ଧାର ସାହାଯ୍ୟରେ ତ୍ରିମାତ୍ରିକତା ପ୍ରକାଶ କରିବା) । ଚିତ୍ରଗୁଡ଼ିକରେ ବ୍ୟବହୃତ ରଙ୍ଗ ପ୍ରାକୃତିକ ବସ୍ତୁଜାତ, ସାଧାରଣତଃ ଥିଲା ଖଣିଜ ପଦାର୍ଥ ଏବଂ ଏହି ରଙ୍ଗ ଆଜି ପର୍ଯ୍ୟନ୍ତ ଅମଳିନ ରହି ଯାଇଛି । ଆଗ୍ରାର କ୍ଷୁଦ୍ରାବୟବ ଚିତ୍ରଧାରା ଭଳି ଦାକ୍ଷିଣାତ୍ୟରେ ଏକା ଭଳି ଗୋଟିଏ କ୍ଷୁଦ୍ରାବୟବ ଚିତ୍ରାଙ୍କନ ଧାରା ଗଢ଼ି ଉଠିଥିଲା । କିନ୍ତୁ ମୋଗଲ ଦରବାରରେ ଯେପରି ଘଟିଥିଲା, ଏହା ସେପରି ପ୍ରାଞ୍ଜଳ ନଥିଲା । ଅଷ୍ଟାଦଶ ଶତାବ୍ଦୀରେ ପାରମ୍ପରିକ ଅଙ୍କନ ଶୈଳୀର ପତନ ଘଟିଥିଲା । ତେବେ ସେତେବେଳେ ରାଜପୁତମାନଙ୍କର ଛୋଟ ଛୋଟ ରାଜ୍ୟରେ ଚିତ୍ରାଙ୍କନର ନୂତନ ନୂତନ ଧାରାର ଆବିର୍ଭାବ ଘଟିଥିଲା । ଏସବୁ ପରେ ପରିଚିତ ହୋଇଥିଲା ପାହାଡ଼ୀ ଧାରା ନାମରେ ।

## ଜନପ୍ରିୟ ଉତ୍ସବସମୂହ

ମଧ୍ୟଯୁଗୀୟ ଭାରତରେ ଅତୀତ ମହାକାବ୍ୟର ବିଭିନ୍ନ ଘଟଣା ଓ ଲୋକ ଗାଥାରେ ପରିଣତ ହିନ୍ଦୁ ବୀର କାହାଣୀ ଉପରେ ଭିତ୍ତି କରି ସଙ୍ଗୀତ ଓ ନୃତ୍ୟ ସହଯୋଗରେ ବିଭିନ୍ନ ଧରଣର ଉତ୍ସବ ଓ ଆମୋଦପ୍ରମୋଦର ଅନୁଷ୍ଠାନ ଅନୁଷ୍ଠିତ ହେଉଥିଲା । ବିଶେଷ କରି ବିଷ୍ଣୁଙ୍କ ଉପାସନା ଓ ବୈଷ୍ଣବ ଧର୍ମ ସହିତ ଏସବୁ ସଂପୃକ୍ତ ଥିଲା । ତାମିଲନାଡ଼ୁରେ ଏହି ଜନପ୍ରିୟ ଉତ୍ସବଗୁଡ଼ିକ ଟେରାକୁଟ୍ଟୁ ନାମରେ ପରିଚିତ ଥିଲା, କର୍ଣ୍ଣାଟକରେ – ଯକ୍ଷଗଣ ଓ ଅନ୍ଧ୍ର ପ୍ରଦେଶରେ – ବିଧିନାଟକ ନାମରେ ଏବଂ ଉତ୍ତର ଭାରତରେ – ରାମଲୀଳା । ଅତୀତର ମହାକାବ୍ୟଗୁଡ଼ିକର ବିଷୟବସ୍ତୁ ଉପରେ ଭିତ୍ତି କରି ଗଢ଼ି ଉଠିଥିବା ଏହିସବୁ ଅନୁଷ୍ଠାନ ସହିତ ଅବଶ୍ୟ, ସମକାଳୀନ ମୋଗଲ ଉତ୍ପୀଡ଼କମାନଙ୍କ ବିରୁଦ୍ଧରେ (ଏବଂ ପରେ ବ୍ରିଟିଶ୍ ଶାସକମାନଙ୍କ ବିରୁଦ୍ଧରେ) ବ୍ୟଙ୍ଗବିଦ୍ରୂପ ନାନା ଦୃଶ୍ୟ ଯୋଗ କରାଯାଉଥିଲା । ବେଳେ ବେଳେ ଏହିସବୁ ଉତ୍ସବ ମଞ୍ଚସ୍ଥ ହେଉଥିଲା ସାମନ୍ତ ଭୂସ୍ୱାମୀମାନଙ୍କ ଗୃହ ଓ ମଣ୍ଡପରେ । ତେବେ ଏହିସବୁ ଜନପ୍ରିୟ ଉତ୍ସବ ସେମାନଙ୍କ ସ୍ୱାଭାବିକ ସ୍ୱତଃସ୍ଫୂର୍ତ୍ତତା ହରେଇ ଦେଉଥିଲା ଏବଂ କୃତ୍ରିମ ଭଙ୍ଗୀମାରେ ପରିଣତ ହେଉଥିଲା ।

